# ତିରିଶ ବର୍ଷର ଗଳ୍ପ ଓ ଆଳାପ-୧

କିଶୋରୀ ଚରଣ ଦାସ



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

ତିରିଶ ବର୍ଷର ଗଳ୍ପ ଓ ଆଳାପ (ପ୍ରଥମ ଭାଗ), ଲେଖକ : କିଶୋରୀ ଚରଣ ଦାସ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍‌ସ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୮୮, ପ୍ରଚ୍ଛଦପଟ : ଅସିତ ମୁଖାର୍ଜି, ମୁଦ୍ରଣ : ନନ୍ଦକିଶୋର ପ୍ରେସ୍, ଡଗର ପଡ଼ା, କଟକ ।

**TIRISH BARSHARA GALPA O' ALAPA—** (Vol-I Author : Kishori Charan Das, Publisher : Sahadev Pradhan, Friends' Publishers, Binodbehari, Cuttack 753002, Orissa, (India) First Edition : 1988 : Cover Design : Asit Mukherjee, Printer : Nandakishore Press, Dagar Pada, Cuttack.

**Price—Rs 100.**

ଯେ ଆଠ ମାସ ନ ପୂରୁଣୁ ମାଆର କୋଳ ଖାଲିକରି ଚାଲିଗଲା ତା'କୁ ଆଦୌ ଭଲପାଇ ପାରିଲି ନାହିଁ, ଏଭଳି ଅନୁଶୋଚନାର କାରଣ ଅଛି କି ନାହିଁ ଜାଣେ ନାହିଁ । ତେବେ ଆଜି ମୋର 'ସୃଜନ'ର ପାଲି ସାଙ୍ଗ କଲା ବେଳକୁ ସେଇଁ ଅପୂରଣର ଦୁଃଖ ମନରେ ଆସୁଛି, ସେଇ ମୋର ଅପହୃତ ସନ୍ତାନ, ସେଇ ମୋର ସୀମାହୀନ ସମ୍ଭାବନା । ଏବଂ ଗୌରବ । ଗୋଟିଏ ଜନ୍ମରେ ସରିଯାଇ ନାହିଁ ମ, ଆଗକୁ ଅଛି, ଅନେକ ଆଗକୁ···

ତୁ'ଇ ତା'ର ପ୍ରତୀକ, ମୋର ପହିଲି ପୁଅ ବାବୁ । ତୋର ପବିତ୍ର ସ୍ମୃତିରେ ଏଇ ଢରଣ ବର୍ଷର ଭେଟି ଓ ଜନ୍ମାନ୍ତରକୁ ଲେଉଡ଼ିବାର କାମନା ।

# ପହିଲି ଆଳାପ

ଠିକ୍ ଚାଳିଶ ବର୍ଷ ନୁହେଁ, ତା'ଠାରୁ ଅଧିକ । ମୋର ପ୍ରଥମ ଗଳ୍ପ ପ୍ରକାଶିତ ହୁଏ ପ୍ରାୟ ଚଉରାଳିଶ ବର୍ଷ ତଳେ । କିନ୍ତୁ ସଙ୍କଳନରେ ପ୍ରକାଶିତ ଗଳ୍ପଗୁଡ଼ିକର ଇତିହାସ ଦୃଷ୍ଟିରୁ ପଇଁଚାଳିଶ ବର୍ଷ ପୂରି ହୋଇ ନାହିଁ, ତେଣୁ ମୋଟାମୋଟି ଚାଳିଶ ବର୍ଷ କହିଲେ ଭଲ ଶୁଭୁଛି । ୧୯୫୪ରୁ ଆରମ୍ଭ, କେବେ ସରିବ ଭଗବାନ୍ ଜାଣନ୍ତି ।

ପ୍ରଶ୍ନ ଉଠିପାରେ ଯେ ଶେଷସୀମା ଧାର୍ଯ୍ୟ ହେବା ପୂର୍ବରୁ ଲେଖା ସରିଥିବା, ଛପା ହୋଇଥିବା ଗଳ୍ପଗୁଡ଼ିକୁ ଏମିତି ବୁଣ୍ଡେଇ ପୁଟଣ୍ଡେଇ ତୋଳି ଧରିବା ନିରର୍ଥକ, ଯଦି ମୋ ମନରେ ନ ଥାଏ ଯେ 'ଶେଷ' ପାଖ ହୋଇ ଆସିଲାଣି, ତେଣୁ ବେଳ ଥାଉଁ ଥାଉଁ ବସ୍ତାନି ବାନ୍ଧିଲେ ସୁବିଧା । ଆପଣଙ୍କ ଅନୁମାନ ଭୁଲ୍ ନୁହେଁ । ମୋର ମନେ ହୁଏ ଯେ ଶାସ୍ତ୍ର ଅନୁଯାୟୀ ସୃଜନର, ବିଶେଷତଃ ଗଳ୍ପରଚନାର କାର୍ଯ୍ୟକାଳକୁ ଏଥିଁ ଅଧିକ ବଢ଼ାଇବା ଉଚିତ ନୁହେଁ । ବସନ୍ତ କେବେଠୁଁ ଗଲାଣି ଦୁଃଖ ନାହିଁ ହେମନ୍ତ ମୋତେ ଯଥେଷ୍ଟ ପରିପକ୍ୱତା ଆଣି ଦେଇଛି । ତେଣୁ ସେଇଆକୁ ପୂର୍ଣ୍ଣତା ବୋଲି ମାନି ନେଲେ ଭଲ ହେବ ନାହିଁକି ? ଏଣିକି ଭୂଇଁକୁ ଖାସଦାନ୍ତ କରି ରଖିବା ଏକାଧାରରେ ଅନ୍ୟାୟ ଏବଂ ଅସୁନ୍ଦର ନୁହେଁ କି ?

ଗ୍ରନ୍ଥାବଳୀ ପ୍ରସ୍ତୁତ କରିବାର ସମୟ ହୋଇ ଗଲାଣି । କିନ୍ତୁ ମୋର ଉଦ୍ଦେଶ୍ୟ କେବଳ ତା' ନୁହେଁ । ମୁଁ ଭାବିଲି ଯେ ଯେତେକ ନୂଆ ପୁରୁଣା ଗଳ୍ପକୁ ଏକାଠି କରି ପାଠକମାନଙ୍କ ସାମ୍ନାରେ ବାଢ଼ି ଦେଲେ ଅତିଥିସତ୍କାର ପୂରି ହେବ ନାହିଁ । ଯାହା ବାଢ଼ି ଦେଲି ତା'କୁ ନେଇ ମୋର ଆଜିର ପାଠକ ସାଙ୍ଗରେ ଗପ ଜମେଇଲେ ମଜା ହେବ । ଦୁଇ ପକ୍ଷକୁ ଅଧିକ ସୁଖ ମିଳିବ ପରା ! ଭାବିଲି ଯେ ମୁଁ

ମୋର ପ୍ରତ୍ୟେକ ଗଳ୍ପକୁ ପୁଣି ଥରେ ପଢ଼ିବି ଓ ପଢ଼ି ସାରିଲା ପରେ ମୋର ଯାହା କହିବାକୁ ମନ ହେଉଛି କହିବି । ସେଥିରେ ସାହିତ୍ୟ ଥାଉ, ଜୀବନ ଦର୍ଶନ ଥାଉ, ବା କାନ୍ତ କଉତୁକ । ଆଜିର ପାଠକ କଣ ପୁରୁଣା ଲେଖକର ଏଇ ଗପୁଡ଼ାପଣରେ ବୋର୍ ହୋଇଯିବ ? ମୋର ଖୁବ୍ ଆଶା ଯେ ଅଳ୍ପବହୁତ ବୋର୍ ହେଲେ ମଧ୍ୟ ତା'ଙ୍କୁ ଯଥେଷ୍ଟ ଆନନ୍ଦ ମିଳିବ । ଏବଂ ସେଥି ସହ ସେ ମୋତେ ଓ ମୋର ଲେଖାଗୁଡ଼ିକୁ ଆହୁରି ଭଲ ଭାବରେ (କେତେକ କ୍ଷେତ୍ରରେ ଠିକ୍ ଭାବରେ) ଚିହ୍ନି ପାରିବ ।

ତା'ଛଡ଼ା ମୋର ଦୋଷୀଭାବର ମହତ୍ତ୍ୱକୁ କେହି କଣ ବୁଝିବେ ନାହିଁ ? ହୋଇପାରେ ଯେ ଲେଖକ ସ୍ୱଭାବତଃ ନିର୍ମମ, ତା'ର ସନ୍ତାନଟିକୁ ଗଢ଼ିସାରିଲା ପରେ ସେ ତା'କୁ ଭୁଲିଯାଏ, କାହିଁକିନା ତା'ର ମନେ ହୁଏ ଯେ ଆହୁରି କେତେ ସନ୍ତାନ ପଦାକୁ ଆସିବେ ବୋଲି ଅପେକ୍ଷା କରି ରହିଛନ୍ତି । ତେଣୁ ଆହନ୍ତାକୁ ଗଢ଼ିବାର ଯନ୍ତ୍ରଣା ଓ ପାଇବାର ଉଲ୍ଲାସ ନ ଆସିବା ଯାଏଁ ତା'ର ଆଖିକୁ ନିଦ ନ ଥାଏ । କିନ୍ତୁ ଅସନ୍ତା ଆସିଲାକ୍ଷଣି ଭୁଲିଯାଏ· · ·ଗୋଟିକ ପରେ ଗୋଟିଏ· · ·ଫେର୍ ଫୁର୍‌ର୍· · ·ଯଦିଓ ସନ୍ଦେହ ନାହିଁ ଯେ ଲେଖକ-ଜନକ ପ୍ରତ୍ୟେକର ଶୁଭ ମନାସୁ ଥାଏ । ମୁଁ ସ୍ୱୀକାର କରୁଛି ଯେ ମୁଁ ମଧ୍ୟ ସେମାନଙ୍କ ମଧ୍ୟରୁ ଜଣେ । ମୋତେ ଲଜ୍ଜା ଲାଗୁଛି କହିବାକୁ ଯେ ମୁଁ କେତେଗୁଡ଼ିଏ ପୁରୁଣା ଲେଖାର କଥାବସ୍ତୁ ବି' ଭୁଲି ଯାଇଥିଲି, କେତେଗୁଡ଼ିକୁ ପଢ଼ିଲି ପରେ ମୋର ବିଶ୍ୱାସ ହେଲା ନାହିଁ ଯେ ମୁଁ ଏତେ ସରଳିଆ ଥିଲି (ଅନେକ ହୁଏତ କହିବେ ଯେ ମୁଁ ଏତେ ସରଳ ସୁନ୍ଦର ଥିଲି ! ), ପୁଣି ଆଉ କେତେ-ଗୁଡ଼ିକୁ ପଢ଼ିଲି ପରେ ମୋର ନିଜ ଉପରେ ରାଗିବାକୁ ଇଚ୍ଛା ହେଲା ଯେ ମୁଁ କଥା ଚତୁରୀରେ ପାଠକକୁ ଭଣ୍ଡେଇଛି, ମୋର କ୍ଷମା ନାହିଁ, ଇତ୍ୟାଦି । ତେବେ ଅନେକ ପୁରୁଣା ଲେଖା ମୋତେ ମୋର ଅପରିବର୍ତ୍ତନୀୟ ନିଜସ୍ୱ ରସବୋଧ ତଥା ଅଭିମୁଖ୍ୟକୁ ଚିହ୍ନେଇ ଦେଇ ପ୍ରଭୁତ ବିସ୍ମୟ ଓ ସନ୍ତୋଷ ଆଣି ଦେଇଛି, ଏହାହିଁ ମୋର ପରମ ସୌଭାଗ୍ୟ । ଯାହା ହେଉ ମୋର ପ୍ରତିଟି ସନ୍ତାନକୁ ପୁଣି ଥରେ ଦେଖିଲି, ଛୁଇଁଲି, କୋଳକୁ ନେଲି, ଓ ତା' ବିଷୟରେ କିଛି କହିବାକୁ ଯାଇ ଜଣେଇଦେଲି ଯେ ମୁଁ ତୋତେ ଭୁଲି ନାହିଁ, ମୁଁ

ତୋତେ ଭଲ ପାଏ···ମୋର ଆଶା ଯେ ସୁଧୀ ଓ ସହୃଦୟ ପାଠକେ ଏହି ଅଭିନବ ପୁନର୍ମିଳନର ମୁହୂର୍ତ୍ତଟିକୁ ଉପଭୋଗ କରିବେ ।

ଏଇ ହେଲା ମୋର "ତିରିଶ ବର୍ଷର ଗଳ୍ପ ଓ ଆଳାପ"ର ସଫେଇ । ସଂକଳନଗୁଡ଼ିକର ପ୍ରକାଶନକାଳ ଓ ପ୍ରତ୍ୟେକ ସଂକଳନରେ ଥିବା ସୂଚୀପତ୍ରର କ୍ରମରେ ଗଳ୍ପଗୁଡ଼ିକୁ ସଜାଇ ଦେଇଛୁ, ଯଦିଓ ରଚନାର କ୍ରମ ଭିନ୍ନ ହୋଇପାରେ । ଏହା ଛଡ଼ା ଯେକୌଣସି କାରଣରୁ ସଙ୍କଳନ ବାଦ୍ ପଡ଼ିଥିବା ଅଳ୍ପ କେତେକ ଗଳ୍ପକୁ ମଧ୍ୟ ଉଦ୍ଧାର କରି ଆଣି ଉପଯୁକ୍ତ ସ୍ଥାନରେ ଖଞ୍ଜି ଦେବା ପାଇଁ ଚେଷ୍ଟା କରିଛୁ । ପାଠକମାନଙ୍କ ଅବଗତି ପାଇଁ ବିଭିନ୍ନ ଗଳ୍ପର ଅନୁବାଦ, ପ୍ରଚ୍ଛଦ, ଓ ପ୍ରସାର ସମ୍ପର୍କରେ ମଧ୍ୟ ଯଥାବିଧି ସୂଚନା ଦେଇଛୁ । ମହାଗ୍ରନ୍ଥଟିକୁ ଆପାତତଃ ତିନୋଟି ଭାଗରେ ବିଭକ୍ତ କରିବାର ପରିକଳ୍ପନା କରାଯାଇଛି; ଏଇଟି ପ୍ରଥମ ।

ଆପଣମାନେ ମୋର ଏଇ ସାନ୍ଧ୍ୟ ଉଦ୍ୟମଟିକୁ ସ୍ନେହ ଓ ସହାନୁଭୂତି ସହକାରେ ଗ୍ରହଣ କରିବେ ବୋଲି ଆଶା କରୁଛି । ମୋର ଆଳାପର ଅଙ୍ଗୀକାର ଏବା ପ୍ରତିଦାନ ପାଇଲେ ବିଶେଷ ଆନନ୍ଦିତ ହେବି ।



# ଲେଖକ ପରିଚୟ

**ନାମ :** ଶ୍ରୀ ଜଗଦୀଶ ଚରଣ ଦାସ ।

**ଜନ୍ମ :** କଟକ, ମାର୍ଚ୍ଚ ୧, ୧୯୨୪ । ଭୂତପୂର୍ବ ଜିଲ୍ଲା ଜଜ୍ ଶ୍ରୀଯୁକ୍ତ ବିପିଚରଣ ଦାସ ଓ ଶ୍ରୀମତୀ ସୀତାମଣି ଦେବୀଙ୍କର ଜ୍ୟେଷ୍ଠ ସନ୍ତାନ । ପିତାମାତା ଉଭୟ ଜୀବିତ ।

**ଶିକ୍ଷା :** ୧୯୩୯ ମସିହାରେ କେନ୍ଦ୍ରାପଡ଼ା ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ମାଟ୍ରିକୁଲେସନ୍ (ପ୍ରଥମ ଶ୍ରେଣୀ) । ୧୯୪୨ ମସିହାରେ କଟକର ରେଭେନ୍ସା କଲେଜରୁ ବି. ଏ. (ଇତିହାସ ଅନର୍ସ ପ୍ରଥମ ଶ୍ରେଣୀ, ଏବଂ ପାସ୍ କୋର୍ସର ଇଂରାଜୀ ଓ ସଂସ୍କୃତରେ ଡିଷ୍ଟିଂକ୍ସନ୍) । ୧୯୪୨ ରେଭେନ୍ସା କଲେଜର "ଉତ୍କୃଷ୍ଟ ଗ୍ରାଜୁଏଟ୍" । ୧୯୪୪ ରେ ପାଟଣାର ପାଟଣା କଲେଜରୁ ଏମ୍. ଏ. (ଇତିହାସ, ପ୍ରଥମ ଶ୍ରେଣୀ) । ୧୯୪୭ ରେ ରେଭେନ୍ସା କଲେଜରୁ ବି. ଏଲ୍. (ପ୍ରଥମ ଶ୍ରେଣୀ) ।

**ପରିବାର :** ୧୯୪୭ ରେ ସ୍ୱର୍ଗୀୟ କଂଗ୍ରେସ ନେତା ଓ ପାର୍ଲିଆମେଣ୍ଟ ସଦସ୍ୟ ଭୁବନାନନ୍ଦ ଦାସ ଏବଂ ସ୍ୱର୍ଗୀୟା ରୁକ୍ମଣୀ ଦେବୀଙ୍କର ତୃତୀୟ ସନ୍ତାନ କୁମାରୀ ଦେବୀଙ୍କ ସହିତ ବିବାହ । ତିନି ଝିଅ ଓ ଗୋଟିଏ ପୁଅ । ଏବଂ ଏ ଯାବତ୍ ସାତୋଟି ନାତିନାତୁଣୀ ।

**ବୃତ୍ତି :** ୧୯୪୭ ରେ ଓଡ଼ିଶା ଆଡ୍‌ମିନିଷ୍ଟ୍ରେଟିଭ୍ ସର୍ଭିସରେ ନିଯୁକ୍ତି । ୧୯୫୦ ରେ ସର୍ବଭାରତୀୟ ପ୍ରତିଯୋଗିତାମୂଳକ ପରୀକ୍ଷା ମାଧ୍ୟମରେ ଇଣ୍ଡିଆନ୍ ଅଡିଟ୍ ଏଣ୍ଡ୍ ଆକାଉଣ୍ଟସ୍ ସର୍ଭିସ୍‌ରେ ଯୋଗଦାନ । ତେଣୁ ସେହି ସମୟରୁ କାର୍ଯ୍ୟବଶତଃ ଓଡ଼ିଶାରୁ ଦୂରେଇ ଯାଇ ଭାରତର ବିଭିନ୍ନ ସହର, ବିଶେଷତଃ କଲିକତା ଓ ଦିଲ୍ଲୀ ଏବଂ ବିଦେଶରେ ଅବସ୍ଥାନ । ପଶ୍ଚିମବଙ୍ଗ, ରାଜସ୍ଥାନ ଏବଂ କେନ୍ଦ୍ର ସରକାରର ଆକାଉଣ୍ଟାଣ୍ଟ୍ ଜେନେରାଲ୍ ତଥା ସେହି ସ୍ତରରେ ଥିବା ଅନ୍ୟାନ୍ୟ ନିଯୁକ୍ତିର କାର୍ଯ୍ୟଭାର ଗ୍ରହଣ କରି ଉପରୁ ୧୯୮୨ ରେ ଆଡିସନାଲ୍ ଡେପୁଟି କମ୍‌ପଟ୍ରୋଲର୍ ଏଣ୍ଡ୍ ଅଡିଟର୍ ଜେନେରାଲ୍ ଅଫ୍ ଇଣ୍ଡିଆ ପଦରୁ ଅବସର ଗ୍ରହଣ । ଏହାପରେ ଦୁଇବର୍ଷରୁ ଅଧିକ ଆସାମର ରାଜ୍ୟ ବିଦ୍ୟୁତ ପରିଷଦର ବିତ୍ତ ସଦସ୍ୟ ଭାବରେ ଗୌହାଟୀରେ ଅବସ୍ଥାନ ।

୧୯୮୫ ଏପ୍ରିଲ୍‌ରୁ ସମସ୍ତ ଅର୍ଥକରୀ କାର୍ଯ୍ୟଭାରରୁ ବିମୁକ୍ତ । ବର୍ତ୍ତମାନ ଯୋଗାଯୋଗ ପାଇଁ ଠିକଣା : ଖଟ୍‌ବିନ୍ ସାହି, କଟକ-୭୫୩୦୦୮ । ଫୋନ୍ ନମ୍ବର—୨୧୦୭୦

**ସାହିତ୍ୟକୃତି :** ପିଲାଦିନୁ ଲେଖାଲେଖି କରି ଆସୁଛନ୍ତି । ପ୍ରଥମେ କବିତା, ତା'ପରେ ଗଳ୍ପ । କବିତାଗୁଡ଼ିକ ତତ୍‌କାଳୀନ 'ଧ୍ୱନିକାର', 'ଚତୁରଙ୍ଗ', 'ଶଙ୍ଖ' ଆଦି ପତ୍ରିକାରେ ପ୍ରକାଶିତ । ପ୍ରଥମ ଗଳ୍ପ 'ପରଦା ତଳେ' ବ୍ରହ୍ମପୁରରୁ 'ନବୀନ' ପତ୍ରିକାରେ ପ୍ରକାଶିତ । ପ୍ରକାଶକାଳ ସମ୍ଭବତଃ ୧୯୪୨-୪୩ । ଏହାପରେ ସେ ବିଶେଷଭାବରେ ଗଳ୍ପଲେଖାରେ ମନ ଦେଲେ । କିନ୍ତୁ ପ୍ରଥମ ଗଳ୍ପ ସଙ୍କଳନ 'ଭଙ୍ଗାଖେଳଣା' ବହୁବର୍ଷ ପରେ ୧୯୬ ରେ ଛପା ହେଲା । ପରିଣତ ବୟସରେ ଗଳ୍ପଲେଖା ତାଙ୍କର ମୁଖ୍ୟସ୍ୱର ହେଲେ ମଧ୍ୟ ବ୍ୟକ୍ତିଗତ ଆବେଗର ପୂର୍ତ୍ତି ପାଇଁ ମଝିରେ ମଝିରେ କବିତା ଲେଖି ଆସିଛନ୍ତି । ବେଳେ ବେଳେ ଇଂରାଜୀରେ ମଧ୍ୟ ଲେଖନ୍ତି । ଏକାଧିକ ଓଡ଼ିଆ ଗଳ୍ପ ଇଂରାଜୀ, ଫରାସୀ, ସ୍ପେନୀୟ ତଥା ପ୍ରାୟ ସମସ୍ତ ଭାରତୀୟ ଭାଷାରେ ଅନୂଦିତ ଓ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଇଂରାଜୀରେ ଅନୂଦିତ କେତେକ ଗଳ୍ପ ପେଙ୍ଗୁଇନ୍ ବୁକ୍‌ସ୍, ଲଣ୍ଡନ, ନ୍ୟାସନାଲ୍ ବୁକ ଟ୍ରଷ୍ଟ୍ ଅଫ୍ ଇଣ୍ଡିଆ, ଇଣ୍ଡିଆନ୍ କାଉନସିଲ୍ ଅଫ୍ କଲ୍‌ଚରାଲ୍ ରିଲେସନସ୍ ଓ ବିକାଶ ପବ୍ଲିସିଙ୍ଗ୍ ହାଉସ୍ ଦ୍ୱାରା ପ୍ରକାଶିତ ବିଭିନ୍ନ ଗଳ୍ପ ସଙ୍କଳନରେ ସ୍ଥାନ ପାଇଛି । ତାଙ୍କ ଇଂରାଜୀ କବିତା ମଧ୍ୟ ଭାରତ ଓ ବିଦେଶରୁ ପ୍ରକାଶିତ ସାତୋଟି ସଙ୍କଳନର ଅନ୍ତର୍ଭୁକ୍ତ । ଗଳ୍ପ ଓ କବିତା ଛଡ଼ା ଲେଖକ ବିଭିନ୍ନ ସମୟରେ ଓଡ଼ିଆ ଏବଂ ଇଂରାଜୀରେ ନିବନ୍ଧ-ରଚନା, ସର୍ବଭାରତୀୟ ଏବଂ ଆନ୍ତର୍ଜାତିକ ସ୍ତରରେ ଅନୁଷ୍ଠିତ ନାନାଦି ସଭାସମିତିରେ ପ୍ରବନ୍ଧପାଠ, ସମ୍ପାଦନା ଏବଂ ଅନୁବାଦ ଆଦି ସାହିତ୍ୟ ସମ୍ବନ୍ଧୀୟ କାର୍ଯ୍ୟକଳାପରେ ନିଜକୁ ନିୟୋଜିତ କରିଛନ୍ତି । ୧୯୮୦ ରେ ଅଷ୍ଟ୍ରେଲିଆର ଆଡିଲେଡ୍‌ଠାରେ ଅନୁଷ୍ଠିତ "ଆନ୍ତର୍ଜାତିକ ଲେଖକ ସପ୍ତାହ" ରେ ସେ ଭାରତର ପ୍ରତିନିଧିତ୍ୱ କରିଥିଲେ । ପ୍ରକାଶିତ ପୁସ୍ତକାବଳୀ ଏହିପ୍ରକାର :—

**ଓଡ଼ିଆ ଗଳ୍ପସଙ୍କଳନ :** ଭଙ୍ଗାଖେଳଣା, ଲକ୍ଷବିହଙ୍ଗ, ଘରଦାହୁଡ଼ା, ମଣିହିରା, ଠାକୁରଘର, ନାଲି ଗୁଲୁଗୁଲୁ ସାଧବ-ବୋହୂ, ଗମନ, ଖେଳର ନାଆଁ ରଙ୍ଗ, ଭିନ୍ନ ପାଉଁଶ, ଶୀତଳହବା, ନିର୍ବଂଶ ମୃତ୍ୟୁ । ଦ୍ୱାଦଶ ସଙ୍କଳନ ଯନ୍ତ୍ରସ୍ଥ ।

**କବିତାସଙ୍କଳନ :** ମିନ କାମନା ।

**ପ୍ରବନ୍ଧସଙ୍କଳନ** : ଲେଖକର ସଂସାର ।

**ଇଂରାଜି ଗଳ୍ପସଙ୍କଳନ** : Death of an Indian (କେତୋଟି ମୌଳିକ ତଥା ନିଜ ଲେଖାରୁ ଅନୂଦିତ ବାରଟି ଇଂରାଜି ଗଳ୍ପର ସମାହାର); Wild Peacock and other Stories (କମଳାକାନ୍ତ ମହାପାତ୍ର ଓ ଲୀଲାବତୀ ମହାପାତ୍ରଙ୍କ ଦ୍ୱାରା ଇଂରାଜିରେ ଅନୂଦିତ ଦଶଟି ଗଳ୍ପର ସମାହାର)

**କବିତାସଙ୍କଳନ** : Faces in the Dark.

**ସମ୍ପାଦନା** : ଇଣ୍ଡିଆନ୍ କାଉନ୍‌ସିଲ୍ ଅଫ୍ କଲ୍‌ଚରାଲ୍ ରିଲେସନ୍‌ଙ୍କ ତରଫରୁ ପ୍ରକାଶିତ "Modern Indian Short Stories—Vol IV" (ଲେଖକଙ୍କର ସୁଦୀର୍ଘ ମୁଖବନ୍ଧ ସହ ଆସାମ, ବଙ୍ଗ ଓ ଓଡ଼ିଶାର ଆଠଟି ଗଳ୍ପର ଇଂରାଜି ଅନୁବାଦ ଏଥିରେ ସ୍ଥାନ ପାଇଛି)

**ବିଶେଷ ଉଲ୍ଲେଖଯୋଗ୍ୟ**

**ସମ୍ମାନ ଓ ପୁରସ୍କାର** : (୧) ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବ ମିଳନ ରୌପ୍ୟଜୟନ୍ତୀ ଉପଲକ୍ଷ୍ୟରେ ସମ୍ମାନପତ୍ର—୧୯୭୨ ।

(୨) ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ "ମଣିହରା" ଗଳ୍ପ ସଙ୍କଳନ ପାଇଁ ପୁରସ୍କାର ଓ ସମ୍ମାନପତ୍ର—୧୯୭୬ ।

(୩) କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ "ଠାକୁରଘର" ଗଳ୍ପ ସଙ୍କଳନ ପାଇଁ ପୁରସ୍କାର ଓ ସମ୍ମାନପତ୍ର—୧୯୭୭ ।

(୪) "ଭଗ୍ନପାଦଶି" ଗଳ୍ପ ସଙ୍କଳନ ପାଇଁ ଶାରଳା ପୁରସ୍କାର ଓ ସମ୍ମାନପତ୍ର—୧୯୮୬ ।

କିଶୋରୀ ଚରଣ ଓଡ଼ିଆ କଥା ସାହିତ୍ୟରେ ସୂକ୍ଷ୍ମାତିସୂକ୍ଷ୍ମ ମନସ୍ତାତ୍ତ୍ୱିକ ବିଶ୍ଲେଷଣ ଓ ଚିନ୍ତାର ପଥପ୍ରଦର୍ଶକ, ଏବଂ କ୍ଲିଷ୍ଟ ମଧ୍ୟବିତ୍ତ ସମାଜ ତଥା ଉଚ୍ଚରମ୍ମୁଖୀ ନିଃସଙ୍ଗ ବ୍ୟକ୍ତିର ଏକ ବଶିଷ୍ଟ ବାର୍ତ୍ତାବହ ରୂପେ ପ୍ରତିଷ୍ଠିତ । ବିଭିନ୍ନ ପତ୍ରପତ୍ରିକାରେ

ପ୍ରକାଶିତ ସମୀକ୍ଷା ଛଡ଼ା ଲେଖକଙ୍କର ଆପଣା ବକ୍ତବ୍ୟ "ଗଳ୍ପ", "ଅଧୁନା", "ଉତ୍କଳ ସାହିତ୍ୟ ପତ୍ର" ଏବଂ "ଆମର ଗପ" ରେ ପ୍ରକାଶିତ ସାକ୍ଷାତ୍କାରରେ ପଢ଼ିବାକୁ ପାଇବେ । ଇଂରାଜୀରେ ଲିଖିତ ସମୀକ୍ଷା ପାଇଁ Indian Literature ଜାନୁଆରୀ-ଫେବୃଆରୀ ସଂଖ୍ୟା, ୧୯୭୮ରେ ପ୍ରକାଶିତ ନିବନ୍ଧ, ପ୍ରଫେସର ଯତୀନ୍ଦ୍ରମୋହନ ମହାନ୍ତିଙ୍କ ଦ୍ୱାରା ରଚିତ ପୁସ୍ତକ "There Where the Trees Flowe " ଏବଂ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ Encyclopaedia of Indian Literature—Vol I ରେ ଥିବା ସମ୍ପୃକ୍ତ ଅନୁଚ୍ଛେଦ ଦ୍ରଷ୍ଟବ୍ୟ ।



# ସୂଚୀପତ୍ର

# ଭଙ୍ଗା ଚନ୍ଦ୍ରକଳା

ବଗିଚ୍ଚାର ଫାଟକରେ ଖଗ । ଯେଉଁଠି ଧାଡ଼ିଏ ଗେଣ୍ଡୁ ଫୁଲ ଫୁଟିଛି ସେଇଠି ଖଗ ଛିଡ଼ାଇଛି । ଫୁଲ ଅଧେ ଖରାରେ, ଅଧେ ଛାଇରେ । ଅଧେ ଝରି ପୋଉଁଛି; ଆଉ ଅଧିକ ବଡ଼ରି ଶୀତରେ ଥରି ଯାଉଥିବ । ଏପାଖ ଫୁଲରେ ପ୍ରଜାପତି ବସିଛି— ଆରପାଖକୁ ଯିବନାହିଁ ? ହେଇ ଗଲା—ଗଲା । ଦୂର୍, ପୁଣି ଫେରି ଆସିଲା । ଦୁଷ୍ଟ ! ଏପାଖ ଫୁଲ ହସୁଛି । ଗୋଟି ଗୋଟି କରି ସବୁ ପାଖୁଡ଼ା ଦେଖାଇ ହସୁଛି । ଆର ପାଖ ଫୁଲ ହସୁ ନାହିଁ । ଶୀତରେ ମେଞ୍ଚ ହୋଇ ଅନେଇଛି ତଳକୁ । ହାତରେ ଧରିଲେ ହାତ ଥଣ୍ଡା ହୋଇଯିବ, ଫୁଲ ଉଷୁମ ହେବ ନାହିଁ ।

(ଗୋଡ଼ରେ ଚିନାବାଦାମ ଚୋପାଟା ମକଚି ହୋଇଗଲା । ଗୀତା ତାକୁ ପାଦରେ ଠେଲି ପକାଇଦେଲା ତଳକୁ, ଦରମଳା ସେବତୀ ଗଛ ମୂଳକୁ । ଦଶ ବର୍ଷର ଝିଅ । ବଡ଼ଦିନ ଛୁଟିର ଗୋଟିଏ ଦ୍ୱିପହରରେ ବାଡ଼ି ପାହାଚରେ ବସି ଅନେଇଛି ଖଗକୁ । ଭାବନାର ଛବି ଦଉଡ଼ୁଛି ମନ ଭିତରେ) ।

ଆମ ସ୍କୁଲରେ ବଡ଼ ଫୁଲ ଅଛି, ଗୋଲ ହୋଇ ହଳଦିଆ ପାଖୁଡ଼ା । ସନ୍ ଫ୍ଲାଓ୍ୱାର୍ । କୁଳଥା କହେ ସୂର୍ଯ୍ୟମୁଖୀ, କୁଆଡ଼େ ଖାଲି ସୂର୍ଯ୍ୟକୁ ଅନେଇ ରହିଥାଏ । କୁଳଥାଟା ମିଛୁଆ ।

ସନ୍ ଫ୍ଲାଓ୍ୱାର୍ ସୁନ୍ଦର ନୁହେଁ । ଖାଲି ବଡ଼ ମୁହଁ । ମିସେସ୍ ଘୋଷାଲଙ୍କ ପରି । ହୋ ହୋ ହୋଇ ହସନ୍ତି । ଦାନ୍ତଗୁଡ଼ା ବଡ଼ ବଡ଼ ଦେଖାଯାଏ । ଲମ୍ବା କୋଟ୍‌ରେ ବୋତାମଗୁଡ଼ା ଏତେ ବଡ଼ ବଡ଼ । ମୋଟା ଗୋରା ଗୋରା ହାତ ପାପୁଲିରେ ଟେବୁଲ ବାଡ଼ାନ୍ତି । ଷ୍ଟପ୍ ଟକିଙ୍ଗ୍ !

ମାଷ୍ଟ୍ର ଆସି ନାହାନ୍ତି । ବୋଉ ଶୋଇଛି । ବୋଉ ମୁହଁ ସୁନ୍ଦର । ହେଲେ ବୋଉ ଖାଲି ରାଗୁଛି ଆଜିକାଲି । ହସିଲେ ତା ମୁହଁ ସୁନ୍ଦର ଦେଖାଯାଏ, ରାଗିଲେ ଅହନା ଦେଖାଯାଏ । ମିଛୁଟାରେ ରାଗୁଛି ମୋ ଉପରେ । କାଲି ରାଜୁ ମୋ ଛବିବହି ଚିରିଦେଲା । ମୋ ରଙ୍ଗ ପେନ୍‌ସିଲ ଭାଙ୍ଗିଦେଲା । ଆଉ ମୁଁ ମାରିଲେ ଦୋଷ ହେଲା ମୋର । ବୋଉ ମୋତେ ମାରିଲା, ରାଜୁକୁ ବି ମାରିଲା । ଖାଲି ପାଟିକଲା, "ତମେ ଗୁଡ଼ାକ ମତେ ଯାଆନ୍ତ କି କୁଳାଙ୍ଗାର ଛୁଆ···" ବୋଉ ଖାଲି ରାଗୁଛି, ମିଛୁଟାରେ ରାଗୁଛି ।

ବୋଉ ଚୁଲିଆ ଉପରେ ବ' ସିଗୁଛି । ପ୍ରତିକର ସେଦିନ ଦୁଧ ଗିଲାସଟା ଫେଲିଦେଲା ଯେ ଗିଲାସ ଭାଙ୍ଗିଗଲା । ଆଉ ଆମେ ଭାଙ୍ଗିଥିଲେ···!

ଖସି ଗଲଣି ସେ କାନା ଗଛଯାଏ । ଖାଲି ଲମ୍ବା ଲମ୍ବା ବଡ଼ ବଡ଼ ପତର । ଫୁଲ ବୋଲି କିଛି ନାହିଁ । ଆମ ସ୍କୁଲରେ କେତେ ଫୁଲ ଫୁଟିଛି, ନାଲିଆ, ହଳଦିଆରେ ନାଲିଛିଟା । ଶୋଭା ସେଦିନ ଗାଳି ଖାଇଲା ଫୁଲ ଛିଣ୍ଡାଇଲା ବୋଲି । ବୋଉ ଆମ ବଗିଚାକୁ ମୋଟେ ଦେଖୁନାହିଁ, ଖାଲି ମାଳି ଉପରେ ସିଗୁଛି ।

ଶୀତ କଲଣି । ପପି କୁକୁରଟା ବୋକା, ଘାସରେ ଗଡ଼ୁଛି । ଶୀତ କରୁନାହିଁ ତାକୁ ? ତାଙ୍କ ଘରର ସେ ଅ...ରଛନିଆ କାଳିଆ କୁକୁରଟା ଆସିଲେ ଭୂସ୍କିନା ଦଉଡ଼ି ପଳାଇବ । ବଦମାସ ।

ହେଇଟରେ ଗୋଟିଏ ପ୍ରଜାପତି ! କେଡ଼େ ସୁନ୍ଦର ଚିତ୍ରିଆ ପ୍ରଜାପତି, ହଳଦିଆ ଦେହରେ କଳାଗାର । ଚିତ୍ରିଆ ପାତଲା କଦଳୀ । ଚିତ୍ରିଆ କାନାଫୁଲ । ଯାଉଛି ଧରିବି । ଗଲା—ଗଲା,—ଉଡ଼ିଗଲା । ଗଲା ତାଙ୍କ ଘରକୁ । ଡେଣାକୁ ଖାଲି ଉଠଉଛି, ପକଉଛି । ପପି ତା' ଲାଙ୍ଗୁଡ଼ ହଲଉଛି ସେମିତି । ଏକ-ଦୁଇ-ତିନ-ଚାରି··· ।

ତାଙ୍କ ଘର ଆଡ଼କୁ ଗଲା—କୁଆଡ଼େ ଗଲା ? ହେଇ ତାଙ୍କ ଘର ବାପା ଆସିଗଲେଣି ତାଙ୍କ ସାନପୁଅକୁ କୋଳରେ ଧରି । ଏତେ ଜଲଦି ଅଫିସରୁ ଆସି-ଗଲେଣି । ଆଉ ଆମ ବାପା ଆସିବେ ରାତି ପହରକରେ— ।

ତାଙ୍କ ପୁଅକୁ ଧରି ଗେହ୍ଲା କରୁଛନ୍ତି, ଭଡ଼େଇ ଦେଖଉଛନ୍ତି । ତା' ନାଁ ଭଣତ,—ଟିନୁ ? ଆମର ସେମିତି ଗୋଟିଏ ଗ୍ରେଟ ପିଲା ଥାଆନ୍ତା କି ! ରାଜୁ ବାଜୁଙ୍କର ମଜା ବାହାରିଯାଆନ୍ତା । ବୋଉ ତାକୁ ଗେହ୍ଲା କରନ୍ତା । ରାଗନ୍ତା ନାହିଁ ।

ଆମ ବାପା ଆମକୁ ଗେହ୍ଲା କରନ୍ତି ଯେ । ରାଜୁ ବାଜୁଙ୍କୁ ବେଶି ଗେହ୍ଲା କରନ୍ତି । ମୁଁ ବଡ଼ ହୋଇ ଗଲିଣି ପରା । ବାହନ୍ତୀ କହେ ତା' ବାପା କୁଆଡ଼େ ତାକୁ ଯାହା ଆସୁଛି ଗେହ୍ଲା କରନ୍ତି । ସକାଳୁ ଥରେ, ସଞ୍ଜରେ ଥରେ, ଆଉ ମଝିରେ ଯେତେବେ ଇଚ୍ଛା ସେତେ—ଫୁଲେଇଟା !

କିନ୍ତୁ ବାପା ଆଜିକାଲି ତ କାହାରିକୁ ଗେହ୍ଲା କରୁନାହାନ୍ତି । ଫେରିବେ ରାତି ହେଲାରୁ । ଚୁପ କରି ବସିଯିବେ ଚଟି ଉପରେ । କିଛି ଟିକିଏ କହିଲା ହେଲାକୁ—'ଓଃ, ବିରକ୍ତ କରନାହିଁ ମଣିଷକୁ । ଯାଉନା ବାହାରେ ଖେଳିବ ।' ବୋଉ ପଚାରିବ, 'ଖାଇବାକୁ ଆଣିବ ?' 'କିଛି ଦରକାର ନାହିଁ'—ଆସ୍ତେ କରି କହିବେ । ହସିବେ ନାହିଁ ।

କଣ ହୋଇଛି ବାପାଙ୍କର ? ଆଗେ ତ ଏମିତି ନ ଥିଲେ । ଆମେ ଯେତେବେଳେ ପୁରୀରେ ଥିଲେ, କେତେ ଧନ ହୋଇଗଲଣି—ବାପା ଧନ ଆଉଣୁ ଅଫିସରୁ ଫେରିବେ । ବୋଉ ନଳେ ବ୍ରେଷେଇ ଘରେ ପଶି ପୂର, ଆଳୁଭଜା ତିଆରି କରୁଥିବ । ଧୂଆଁ ଆଖି କାନ୍ଦରେ ପଶି ଯାଉଥିବ । ବାପା ସିଧା ଆସି ମୋତେ କୋଳକୁ ଟାଣି-ନେଇ ଗେହ୍ଲା କରିବେ । ତା'ପରେ ବୋଉକୁ ଗେହ୍ଲା କରିବେ । ବୋଉ ଚଡ଼ୁଥିବ । ବାପା ଖାଲି ହସିବେ ।

ବାପା କଣ ବୁଢ଼ା ହୋଇଗଲେଣି ? କାହିଁ ଦାନ୍ତ ପଡ଼ିନାହିଁ ତ, ବାଳ ବି ପାଚିନାହିଁ । ରମା ଅପାର ଜେଜେ କେତେ ବୁଢ଼ା, ବାଳ ସବୁ ଧଳା ହୋଇଗଲଣି । କେତେ ହସନ୍ତି ସେ । ଆମକୁ ସବୁ ପାଖକୁ ଟାଣି ଲଜେନ୍ସ ଦିଅନ୍ତି—ଗୀତ ଶିଖାନ୍ତି— ।

ବାପା କେତେ ଗୀତ ଶିଖାଉଥିଲେ ଆଗେ । ଭଜନ, ସିନେମା ଗୀତ, ହିନ୍ଦି, ଓଡ଼ିଆ— । ରଘୁପତି ରାଘବ ରାଜାରାମ···ବନ୍ଦେ ମା ତୁମେ ଆଜାଦୀ ବନ··· ।

(ଗୀତା ଗୁଣୁ ଗୁଣୁ ହୋଇ ଗୀତ ଆରମ୍ଭ କରିଦେଲା । ଗୋଡ଼ ଉପରକୁ ତଳକୁ ପକାଇଲା । ତା'ପରେ ହଠାତ୍ ବନ୍ଦ ହୋଇଗଲା । ତାର ଛୋଟିଆ ମୁହଁ ଗମ୍ଭୀର ହୋଇ ନଯାଇ, କାନ୍ଦୁରା ହୋଇଆସିଲା । ଠିକରେ କାନ୍ଦକୋଉଛି ଯେମିତି) ।

ବାପା କାନ୍ଦୁଥିଲେ । ବାପା ଆଉ ଗୀତ ଗାଇବେ ନାହିଁ । ବାପା ବୁଢ଼ା ହୋଇଗଲେଣି ।

ସେଦିନ ଅଧରାତି । କଣ ଡର ସପନ ଦେଖି ନିଦ ଭାଙ୍ଗିଲାବେଳକୁ ଦେଖେ ଆଲୁଅ ଜଳୁଛି, ବାପା ଅନେଇଛନ୍ତି ଉପରକୁ । ଆଉ କାହା ଭଳିଆ । ଆମ ବାପା ପରି ନୁହଁ । କାନ୍ଦୁ ନ ଥିଲେ ଯେ ମୁଁ ଭାବିଲି କାନ୍ଦିବେ । ଡର ମାଡ଼ିଲା । 'ବାପା' ବୋଲି ପାଟି କଲାରୁ ଚମକିପଡ଼ି ମୋ ଆଡ଼କୁ ଅନେଇ କହିଲେ 'ଶୋଇପଡ଼, କାହିଁକି ପାଟି କରୁଛୁ ?' ସେ ବାପା ଆମ ବାପା ନୁହେଁ । ବାପାଙ୍କର କଣ ହୋଇଛି ।

ଟିଂ ଟିଂ ଟିଂ । ମାଷ୍ଟ୍ରେ ଆସିଲେଣି ? ନାଇଁ-ରୁଟିବାଲା । ବୋଉ ଉଠିବ ।

ଭେଁ-ଁ-ଏଁ··· । ବଜୁ ନିଦରୁ ଉଠି କାନ୍ଦିଲଣି । ବୋଉ ଉଠିବ । ଚଢ଼ିବ ମୋ ଉପରେ ।

"ଗୀତା—ଏ ଗୀତା, କୁଆଡ଼େ ଗଲ ସେ ? ପଢ଼ା ନାହିଁ, ପଢ଼ି ନାହିଁ, ସାତ ମାଇକନିଆଙ୍କ ପର ବସିଥିବ ଯାଇ କେଉଁଠି ।"

"ଯାଉଛି—ବୋଉ"

( ୬ )

"ଚକା ଚକା ଭଉଁରୀ
ମାମୁଁ ଘର ଚଉଁରୀ
ମାମୁଁ ମୋତେ ମାଇଲେ—"

ହେଇ ରଜୁ—ହାତ ଛାଡ଼ ନା—ଜଲଦି ଗୋଡ଼ ପକା ।
ପୁନ, ତୁ ମୋ ହାତ ଧର ।
ଆଚ୍ଛା ଚାଲ, ସ୍କୁଲ୍ ଖେଲ ଖେଳିବା, କୁହ—

'ଲଣ୍ଡା ଲଣ୍ଡା ରୋଜେସ୍
ପକେଟ୍ ଫୁଲ୍ ଅଫ୍ ପୋଜେସ୍'

(ଗୀତାକୁ ନେଇ ରଜୁ, ବଜୁ ଓ ପଡ଼ଶା ଘର ପୁନ ନୂଆ ଗୀତ ଆରମ୍ଭ କରିଦେଲେ । ସମସ୍ତଙ୍କ ଆଗର ସବା ସାନ ବଜୁ ବୋଲୁଥାଏ "ଲଙ୍ଗା ଲଙ୍ଗା ଲେଜେସ୍— ।" ସକାଳର ହେମାଳ ଛାଡ଼ି ନଥାଏ । ଅଦାଳିଆ, ଅଦାରଙ୍କା ମେଘକୁ କାଟି ଖରା ଆସୁଛି ଏତେବେଳକେ) ।

"ଅଲ୍ ଫେଲ୍ ଡାଉନ୍"

(ଲଥ୍ କରି ବସି ପଡ଼ିଲେ ସମସ୍ତେ । କିଛି ସମୟ ବିଶ୍ରାମ । ଗୀତା ଅନେଇଲା ସାମନାକୁ । ଡାହାଣ କଡ଼ରେ ପଧାନ ଘର ବାଉକୁ ଲଗି ପାଣି ନାଳ । ଆଗରେ ଘାସ ପଡ଼ିଆ ଓ ଅାନ ଆନରେ ପଥର ଓ ବୁଦବୁଦିକିଆ ଗଛ । ତା ସେ ପାଖକୁ ଉଇହୁଙ୍କା ଓ ବାହିଁ ଦୂରରେ ବାପାଙ୍କର କଚେରୀ, ନାଲିଆ କୋଠା । ନୂଆ ଖରା ଆସି କାହାକୁ କେଉଁଠି ଛୁଇଁ ଦେଉଛି) ।

ନାଳ ମାଝରେ ସେଗୁଡ଼ା ପଥର ନୁହେଁ, ଖଣ୍ଡ ଖଣ୍ଡ ଖରା । ସେ ସବୁକୁ ନେଇ ଆସି ଗୋଲ ଗୋଲ କରି କାଟିଦେଲେ କେଡ଼େ ବଡ଼ ହାର ହୋଇଯିବ ।

ମାଷ୍ଟ୍ରେ କହନ୍ତି ସୀଗ ସବୁଠୁ ଦାମିକା । ସବୁଠୁ ଚକ୍ ଚକ୍ , ଅନ୍ଧାରରେ ଆଲୁଅ କରି ଦେବ । ବୋଉ ଖୁସି ହେବ । କହିବ ଦେଖିଲଣି, ଗୀତା ମୋତେ ପ୍ରେଜେଣ୍ଟ୍ ଦେଇଛୁ ।

କିଏ ଆସୁଛୁ ପଧାନ ଘର ବାଟେ । ବାବୁଆ ଓ ତା ବାପା । ବାବୁଆ ଶାଗୁଆ ସ୍ୱେଟର ପିନ୍ଧିଛୁ । ହାତରେ ଖଣ୍ଡେ ବାଡ଼ି । ମୋଟା ଟୋକା । ଗେହ୍ଲା ଟୋକା । ସବୁ ଖର୍ଗି ଭୁର୍ଗି ଦେବ ଏହିକ୍ଷଣି । କହିବ ଖେଳିବା "ଆଖି ନାହିଁ, କାନ ନାହିଁ, ବାଜିଗଲେ ଦୋଷ ନାହିଁ ।" ସମସ୍ତଙ୍କୁ ପିଟିବ । କିଏ କାନ୍ଦିଲେ ବାପ ପାଖରେ ଗେହ୍ଲେଇ ହେବ । ମାଇଚିଆ ଟୋକା, ସବୁବେଳେ ବାପ କାନଧରି ବୁଲୁଥିବ । କ୍ଲାସରେ ତ ଫେଲ୍ ହେଉଛୁ, ଖାଲି ଫୁଟାଣି କାହିଁରେ କଣ ।

ତା' ପାଖରେ ତା' ବାପା । ଗୋରା ହୋଇ, ପତଳା ହୋଇ, କେଡ଼େ ସୁନ୍ଦର । ସବୁବେଳେ ମୁରୁକ ମୁରୁକ ହସୁଥାନ୍ତି । 'ନୂଆବୋଉ, ଭୋକ କଲଣି, କଣ ଖାଇବାକୁ ଅଛୁ ?' କହି ଭିତରକୁ ପଶିଯିବେ । ବୋଉ ହସେ । ଆଳୁ ମାଣ୍ଡିଆ କଣ ଆଣିଦିଏ, ନ ହେଲେ ବେଗେଇ ଘରକୁ ପଶିଯାଏ କିଛୁ ତିଆରି କରି ଦେବାକୁ ।

ବନୁଦାଦା ଗୋରା, ସୁନ୍ଦର । ବାବୁଆଠୁ ମୋଟା, ଅସନା । ତା ବୋଉ ବି ସେମିତିକା, କିନ୍ତୁ ମୋଟା ନୁହେଁ । 'ଖୁଡ଼ୀ' କହିଲେ ମନା କରନ୍ତି, କହନ୍ତି କହିବ ମଉସୀ । କୁଆଡ଼େ ଯାଆନ୍ତି ନାହିଁ । ଖାଲି ଦର୍ପଣ ପାଖରେ ବସି ମୁଣ୍ଡ କୁଣ୍ଡାନ୍ତି । ଆଉ କୁଆଡ଼େ ଚନ୍ଦନରେ ଗାଧୁଅନ୍ତି ।

'ହଇଲେ ଗୀତା, ବୋଉ ଅଛୁ ?'

ବାଡ଼ିରେ ଠକ୍ । 'ଆଟେନ୍‌ସନ'—ବାବୁଆ ଗର୍ଜୁଛୁ ।

ହଁ, ଯାଉଛୁ । ବାବୁଆର କଣ ସ୍କୁଲ ନାହିଁ ବନୁଦାଦା ?

'ନୋ, ନୋ, ନୋ—ବାପା ସ୍କୁଲ୍ ବନ୍ଦ କରି ଦେଇଛନ୍ତି । ବାପା ଦେଖିଲ, ଗୀତା ମୋତେ ଚଢ଼ଉଛୁ ।'

(ମୁରୁକ ହସା ଦେଇ, ବହିଙ୍କି ଟିକିଏ ଥାପୁଡ଼େଇ ଦେଇ ବନୁଦାଦା ଭିତରକୁ ପଶିଲେ । ଏଣେ ବାବୁଆର ନେତୃତ୍ୱରେ ଖେଳ ଗ୍ଜଳିଲା । ଖେଳ ନୁହେଁ, ଦଉଡ଼ା ଦଉଡ଼ି ଗୋଡ଼ାଗୋଡ଼ି । ଗୀତା ଏକୁଟିଆ ପଡ଼ିଗଲା । ନିଜକୁ ଏକୁଟିଆ କରିଦେଲା କହିଲେ ଭୁଲ୍ ହେବନାହିଁ । )

ବୋଉ ଓ ବନୁଦଦା ବାରିପଟକୁ ଗଲେଣି । ବନୁଦାଦାଙ୍କ ହସ ଶୁଭୁଛୁ । କେତେ ହସ ହସନ୍ତି ସେ । ବାରିରେ ଫୁଲ ଫୁଟିଛୁ, ଟମାଟୋ ହୋଇଛି, ବାଇଗଣ

ହୋଇଛି । ଚକ୍‌ଜଣ କଳା ବାଇଗଣ, ବାପା ଭଲପାଆନ୍ତି । କିନ୍ତୁ ସେଦିନ ତରକାରୀ ଖରାପ ହୋଇଥିଲା, ବୋଉ ବାଇଗଣ ଭଜାବାକୁ କହିଲାରୁ କହିଲେ "ନାଇଁ ଥାଉ— ଦରକାର ନାହିଁ ।" ଟିକିକର କହିଲେ ନାହିଁ, ରାଗି ସେମିତି କହିଲେ । ବୋଉ ଚୁପ୍ ହୋଇଗଲା ।

ବାପା କାହାନ୍ତି ? ସକାଳୁ କୁଆଡ଼େ ଗଲେଣି । ଅଫିସ କାମ ? ଛୁଟିରେ କିଏ ଏତେ କାମ ମ !

ବାପା ନାହାନ୍ତି, ଭଲ ହୋଇଛି । ବାପା ଥିଲେ ସେ ଓ ବିନୁଦାଦା ଦାଣ୍ଡ-ଘରେ ବସି କିଏ ଏଣୁ ତେଣୁ ଗପିବେ । କିଣ ସବୁ ଅଫିସ କଥା, ଖବର କାଗଜ କଥା; ହସ ନାହିଁ, କିଛି ନାହିଁ । ମୁହଁକୁ ଏତେ କରି ପଦେ କଥା;— ସେ କି ଗପ ? ଆମ ହେଡ୍‌ମାଷ୍ଟରଙ୍କ ଘରେ ମିଟିଂ ହେଲାପରେ । ମୁଁ ଦେଖିଛି ସେଦିନ ଘଣ୍ଟା ଘଣ୍ଟା କାଗଜ ଖଣ୍ଡେ ଧରି ବସିଥାନ୍ତି ସମସ୍ତେ । ପିଲାମାନଙ୍କୁ ମନାହୁଏ ସେ ବାଟ ଦେଇ ଯିବାକୁ, ପାଟି କରିବାକୁ । କ'ଣ ନା ମିଟିଂ ହେଉଛି ।

ବାପା ଥିଲେ ବୋଉ ଖାଲି ଗୁ' ଜଲଖିଆ ଦେଇ ଚାଲିଯାଏ । ବାପା ହସନ୍ତି ନାହିଁ, ବିନୁଦାଦା ହସନ୍ତି ନାହିଁ, ବୋଉ ହସେ ନାହିଁ । ବାପା ବେଳେ ବେଳେ ବୋଉକୁ କହନ୍ତି,—ବସୁନା ଏଇଠି । 'ନାଇଁ ମୋର କେତେ କାମ ପଡ଼ିଛି' କହି ବୋଉ ଚାଲିଯାଏ ।

ଦିନୁଟାଏ । ସେଦିନ ବିନୁଦାଦା କିଣ ଚୋଟାଏ କହି ନିଜକୁ ନିଜେ ହସିଲେ । ବୋଉ ବି' ହସିଲା ତାଙ୍କ ସାଙ୍ଗରେ । ବାପା ଦୁ' ଜଣଙ୍କ ମୁହଁକୁ ଅନାଇଲେ ଓ କୁନ୍ଥେଇଲାପରି ହସିଦେଲେ ଟିକିଏ । ବାପାଙ୍କର କ'ଣ ହୋଇଛି କେଜାଣି ।

ବାପା ନାହାନ୍ତି ଭଲ ହୋଇଛି । ଦାଣ୍ଡଘର ଅନ୍ଧାରରେ ମିଟିଂ ହେଉନାହିଁ, ବାରରେ ଖରାରେ ଗପ ହେଉଛି । ବିନୁଦାଦା ହସୁଛନ୍ତି, ବୋଉ ହସୁଛି ।

ବୋଉ ଆଜି ଖୁସି ହେବ । ବେଣୀ ବାନ୍ଧିବ ନାହିଁ । ମୁଣ୍ଡ କୁଣ୍ଡେଇ ଭଲକରି ଖୋଜନ୍ ବାନ୍ଧିଦେବ । ମଝିରେ ମଝିରେ ହାତ ବନ୍ଦ କରି କୁଆଡ଼େ ଅନାଇ ରହିବ । ଘଣ୍ଟାଏ ଲାଗିବ ମୁଣ୍ଡବନ୍ଧା ସନ୍ଧ୍ୟାବେଳକୁ । ବୋଉ ଅନେକ ସେମିତି ହୋଇଯିବ ।

ବୋଉ ସକାଳେ ଟିକିକରି କହିଥିଲା ଯେ ଆଜି ଚୂଡ଼ାଭଜା କଦଳୀ ଖାଇବାକୁ ହେବ । ଏତେ ଭଲ ମନ୍ଦ ଖାଇବାକୁ ପଇସା ଅଛି କେଉଁଠି ? କିନ୍ତୁ ଆଜି ବୋଧହୁଏ ଅନ୍ୟ ଜଲଖିଆ ମିଳିବ, ମହାନଭୋଗ ନ ହେଲେ ଆଳୁ ପକୋଡ଼ା । ବିନୁଦାଦା ଆସିଛନ୍ତି ।

(ଗାଡ଼ି ଦାଣ୍ଡପିଣ୍ଡାର ଗୋଟିଏ କୋଣକୁ ଲାଗି ଆସିଲା, ସେଠି ବାଉର ଫାଳେ ଦେଖାଯାଏ ।)

ବୋଉ ଲଣ୍ଠନଟା ଦେଖାଉଛି । ବନୁଦାଦା ଛିଡ଼ା ହୋଇଛନ୍ତି ସେଠି । ହସୁଛନ୍ତି । ବୋଉ ମୁହଁ ଟେକି କଣ କହିଲା । ବନୁଦାଦା ଆହୁରି ହସୁଛନ୍ତି । ବୋଉ ହସି ହସି ଘରକୁ ଚାଲିଗଲା ।

···ପରଆଡ଼ୁ କାହାଘରୁ ବାଛୁରୀ ଦଉଡ଼ା କାଁ କାଁ କରି ଧାଇଁ ଧାଇଁ ଆସୁଛନ୍ତି । ତାଙ୍କ ଅଣ୍ଟା ହଲଉଥା, ଗୋଡ଼ ଝୁଲଉଥା । ଅଙ୍ଗୁଠିରେ ଜାଲ ବନ୍ଧା ହୋଇଛି । ପଛରେ ଗୋଟିଏ ବୁଢ଼ୀ ଦୌଡ଼ୁଛି ।

ଯୋଡ଼ାଏ ବତକ । ଏକାଠି ପଳାଇ ଆସୁଛନ୍ତି । ଏକାଠି କାଁ କାଁ କରୁଛନ୍ତି । ଭାଇ-ଭଉଣୀ । ନାଇଁ, ବାପା ବୋଉ । ବାପା—ବୋଉ । ଉହୁଁଃ । ନ ହେଲେ— ବନୁଦାଦା ବୋଉ ? ନାଇଁ ଛିଃ ।

ବୋଉ ମୁହଁରେ ଖରା ପଡ଼ୁଛି । କାନଫୁଲ ଚମକୁଛି । ମୁଣ୍ଡରେ ସିନ୍ଦୁର ଚମକୁଛି । ବୋଉ ହସୁଛି । ଆଉ ବାପା ଏଠିକ୍ଷଣି ପାଖରେ ଥିଲେ—

ବାଉରେ ବାଇଗଣ ହୋଇଛି । କଳା ମୁଚୁମୁଚୁ ବାଇଗଣ । ଭଜାକଲେ କେଡ଼େ ବଢ଼ିଆ ଲାଗେ । ବୋଉ ପରୁଦିନରୁ ବାପା ସେଦିନ ମନାକଲେ । କିନ୍ତୁ ବନୁଦାଦାଙ୍କୁ ଭଜାକରି ଦେଲେ ବନୁଦାଦା ଖୁସି ହେବେ । ବୋଉ ଖୁସି ହେବ । ବୋଉ ତାଙ୍କୁ କଅଣ ଖାଇବାକୁ ଦେବ ଆଜି ?

ବନୁଦାଦା କଣ କହୁଛନ୍ତି । "ମୁଁ ନିଶ୍ଚୟ ଆସିବ । ତମ ଜନ୍ମଦିନରେ ଆସିବ ନାହିଁ, ଏକଥା ହୋଇପାରେ ?"

ବୋଉ ହସୁଛି, ମୁଣ୍ଡକୁ ହଲଉଛି । "ଆ-ହା ସତେ ଯେମିତି ମୁଁ ଡାକିଲେ ଦୌଡ଼ି ପଳାଇ ଅସ ସବୁଦିନେ ?"

"ନୁହେଁ ?" କହି ବନୁଦାଦା ଅନଉଛନ୍ତି ବୋଉ ଅଡ଼କୁ । ବୋଉ ହସୁଛି ।

ବାପା ଏମିତି କହିପାରନ୍ତି ନାହିଁ । ବାପାଙ୍କର କଣ ହୋଇଛି । ବାପାଙ୍କର ଦେହ ଖରାପ । ଔଷଧ ଖାଇ ଠିକ୍ କରି ଦେଉ ନାହାନ୍ତି ?

···କୁହୁଡ଼ି ଭିତରେ କାର୍ ଯାଉଛି । ଟେଲିଗ୍ରାଫ୍ ତାର ଉପରେ କାଉ ବସିଛନ୍ତି । ଟିକି ଟିକି ବଜୁ ଘୋଡ଼େଇ ଘୋଡ଼େଇ ହୋଇ ଶୋଇଛି ବୋଉ

କୋଡ଼ରେ । ବୋଉ ଝସାଲଡ଼ୁ ଗୋଟାଏ ବାପାଙ୍କ ମୁହଁରେ ପୁରାଇ ଦେଲା । ବାପା ନାହିଁ ନାହିଁ କରି ଅଧେ ଖାଇଲେ ଓ ଆଉ ଅଧକ ବୋଉ ମୁହଁରେ ଗୁଞ୍ଜିଦେଲେ । ଦୁହେଁ ହସୁଥାନ୍ତି । ଝସାଲଡ଼ୁ ଫୁରୁଟ୍ ହୋଇ ଚଲେ ବଞ୍ଚି ହୋଇଗଲଣି । ବୋଉ ବିରକ୍ତ ହେଲପରି କହୁଥାଏ,—ଡ୍ରାଇଭର୍ ସାମନାରେ ଆଉନା ଅଛୁ ଜାଣିଛ ? ଏଇ ଏବେକା କଥା । ଆମେ ଯାଉଥିଲୁ ଷ୍ଟେସନକୁ ବନୁଦାଦାଙ୍କୁ ଆଣିବାକୁ । ବନୁଦାଦା ନୂଆକରି ଏଠିକୁ ଆସୁଥାନ୍ତି ସେଦିନ ।

ଯଦି ବନୁଦାଦା ନ ଆସିଥାଆନ୍ତେ···

ବବୁଆ ପାଟି କଲଣି । ରଜୁ ଭେଁ ଭେଁ ହେଉଛୁ । ବୋଉ ଏଇକ୍ଷଣି ଗୁଲୁଆସିବ । ବନୁଦାଦା ପଳେଇ ଆସିବେ । ବୋଉ ରାଗିବ ।

(ଗୀତା ଦୌଡ଼ିଗଲା ଅନ୍ୟ ପିଲାଙ୍କ ପାଖକୁ । 'ବାବୁଆ ପାଟି କର୍ନା', 'ରଜୁ କାନ୍ଦ୍ ନା' କହିଲାବେଳକୁ ବାବୁଆ ଗୀତା ଉପରେ ମୁଷ୍ଟି ପ୍ରହାର ଆରମ୍ଭ କରିଦେଲା । ଗୀତା ତା' ଦି' ହାତ ଧରି ପିଟିଲାବେଳକୁ ବୋଉ ଓ ବନୁଦାଦା ଆସିଗଲେଣି । ବୋଉ ଅନେଇଛି ତାଆଡ଼କୁ କଟମଟ କରି । ବନୁଦାଦା ହସୁଛନ୍ତି ।)

'ତୁ କାହିଁକି ମାରିଲୁ ତାକୁ ?'

'ବୋଉ, ମୁଁ ମାରିନାହିଁ । ସେ ରଜୁକୁ ମାରିଲା । ମୁଁ ଛଡ଼େଇ ଦେଲି' ।

'ସେ ମିଛ କହୁଛି ବାପା, ସେ ମୋତେ ମାରିଲା । ରଜୁକୁ ପଚାର' ।

( ରଜୁ ମୁଣ୍ଡ ଟୁଙ୍ଗାଇଲେ । ବୋଉ ଗୀତାର କାନ ଧରିଲା । )

'ବୋଉ, ମୁଁ କିଛି କରିନାହିଁ । ସେମାନେ ପାଟି କରୁଥିଲେ, ମୁଁ ଛଡ଼େଇ-ଦେଲି ତୁ ରାଗିବୁ ବୋଲି' ।

'ଚୁପ୍, ଘର ବୋଉକୁ ଦେଖିପାରେ । ଦି' ମିନଟ୍ ମଣିଷକୁ ଶାନ୍ତିରେ ରଖେଇ ଦେବେ ନାହିଁ । ଏଇ ଗୀତା ହେଉଛି ସବୁ ନାଟର ଗୋବର୍ଦ୍ଧନ' ।

( ଗୀତା ପାଟି ନ କରି କାନ୍ଦୁଛି । ଲୁହ ଝରଝର ହୋଇ ବହିଯାଉଛି । ତା'ର ଭିତରେ ଅନେଇଛି ବୋଉକୁ ଓ ବନୁଦାଦାକୁ )

ମୁଁ କିଛି କରିନାହିଁ । ବୋଉ ନ ରାଗୁ ବୋଲି ମୁଁ କଜିଆ ଭାଙ୍ଗିବାକୁ ଯାଇଥିଲି । କାଳେ ବୋଉ ପଳେଇ ଆସିବ, ରାଗିବ, ତା' ଖୁସି ଭାଙ୍ଗିଯିବ ବୋଲି ।

ବୋଉ ବୁଝୁନାହିଁ ମୋତେ । ବନୁଦାଦା ହସୁଛନ୍ତି । ତାଙ୍କ ହସ ଦେଖି ରାଗ ଆସୁଛି ।

ଟ୍ରେନ୍ ଚାଲିଯାଉଛି । ମୋଟା ମୋଟା ଚକ । କଳା କଳା ଧୂଆଁ । ତା'ର ତଳେ ବନୁଦାଦା ଶୋଇଯାଇଛନ୍ତି । ଆଉ ହସିବେ କେତେବେଳେ ?

( ୩ )

( ବେଲ ରଡରଡ ହେଉଛି । ଗୀତା ସ୍କୁଲରୁ ଚାଲି ଚାଲି ମଝିରେ ମଝିରେ ଦୁ' ପାହୁଣ୍ଡ ଦୌଡ଼ି ଯାଉଛି । ସ୍କୁଲର ଟୋକା କୁଲିଆ ପଛେ ପଛେ ଆସୁଛନ୍ତି ବହି ବସ୍ତାନି ଧରି )

ଆଜି ମାଷ୍ଟରବାବୁ କହିଲେ—'ଗୀତା ଇଜ୍ ଏ ଗୁଡ଼୍ ଗାର୍ଲ୍' । ଗୀତା ଇଜ୍ ଏ ଗୁଡ଼୍ ଗାର୍ଲ୍ । ଅଙ୍କରେ ଦଶରୁ ଦଶ, ଇଂରେଜୀରେ ଦଶରୁ ଆଠ ଓ ଡ୍ରଇଂରେ ଫାଷ୍ଟ୍ । ମାଷ୍ଟରବାବୁ କହିଲେ 'ଏମିତିକା ଭଲ କଲେ ତୁ ତ କ୍ଲାସରେ ଫାଷ୍ଟ ହୋଇଯିବୁ ! ସୁମିତା ମୋ ଆଡ଼କୁ କଟମଟ କରି ଚାହିଁଥାଏ । ଡରୁଥାଏ ବୋଧହୁଏ ମୁଁ ଫାଷ୍ଟ ପ୍ରାଇଜ୍ ନେଇଯିବି ବୋଲି ।

ବୋଉ ଆଜି କେତେ ଖୁସି ହେବ । ଗେହ୍ଲା କରିବ । ଆଜି ତା' ଜନ୍ମଦିନ । ଖୁସି ହୋଇ ନିଶ୍ଚୟ ପୁରସ୍କାର ଦେବ । ରିବନ୍, କେକ୍, ନ ହେଲେ ଗୋଟିଏ ପେନ୍‌ସିଲ ।

ଆଜି ବୋଉପାଇଁ ପ୍ରେଜେଣ୍ଟ୍ କିଣିଛି । ଟଙ୍କାକର ପ୍ରେଜେଣ୍ଟ୍ । କେତେଦିନୁ ସାଇତି ସାଇତି ଟଙ୍କାଏ କରିଛି । ଏମିତିକା ପ୍ରେଜେଣ୍ଟ୍ କେହି ଆଣି ନ ଥିବେ । ରାଜୁଟା କଣ ଦେବ ? ରବର ଖଣ୍ଡେ ନ ହେଲେ ଜରି ଟିକେ ଦେଇ କହିବ, 'ହେଇ ମୋ ପ୍ରେଜେଣ୍ଟ— ! ଦିନକପରେ ପୁଣି ମାଗିନେବ, ନ ହେଲେ କାନ୍ଦି ଗଡ଼ିଯିବ । ରାଜୁର ବୁଦ୍ଧି ହୋଇନାହିଁ ।

ମୋଠୁ ଭଲ ପ୍ରେଜେଣ୍ଟ୍ କଣ କେହି ଆଣିବେ ? ବାପା କଅଣ ଆଣିଥିବେ ? ନିଶ୍ଚୟ କିଛି ଭଲ ଜିନଷ ହୋଇଥିବ । ବୋଉ ଦି'ଜଣଙ୍କର ଜିନିଷ ଆଗରେ ଥୋଇ ସମସ୍ତଙ୍କୁ କହିବ, 'ହେଇ ଦେଖ ବାପ ଝିଅଙ୍କର ପ୍ରେଜେଣ୍ଟ୍' ।

ଆଉ ବନୁଦାଦା ? ସେ ବି କଣ ଆଣିବେ ? ସେ କାହିଁକି କଣ ଆଣିବେ ? ସେ ବୋଉର କଣ କି ?—

ନାଇଁ, ଆଣନ୍ତୁ । କଣ ହେଲା ସେଥିରେ ? ବୋଉ ଖୁସି ହେବ ।

ବୋଉ କଣ ତାଙ୍କ ଜନ୍ମଦିନ ପାଇ ବେଶି ଖୁସି ହେବ ?

...ଡେଙ୍ଗା ଡେଙ୍ଗା ତାଳଗଛ । ମୁଣ୍ଡରେ ମେଞ୍ଚାଏ ଠିଆ ଠିଆ ବାଳ । ଦେହଟା ହାଡ଼ପର, ସବୁ ଚଞ୍ଚା ସରିଲାଣି । ଖାଲି ମୁଣ୍ଡଟି ବାକି ଅଛି । ଇଏ କଣ, —ମୁଣ୍ଡ ଭିତରୁ ନାଲିଆ ଜିଭ ମାରୁଛି ! ସିନ୍ଦୂର ଲଗେଇଛି ? ଉହୁଁ ମୁଣ୍ଡଫାଟି ରକ୍ତ ବହୁଛି । ନା—ନା—ମୁଣ୍ଡରେ କିଏ ମେଞ୍ଚାଏ ଅବିର ଲଗେଇ ଦେଇଛି । ହୋରି ଖେଳୁଥିଲା ସେ ।

ଏସ୍. ଡ଼ି. ଓ.ଙ୍କ ବଙ୍ଗଲା ଆସିଲାଣି, ଆଉ ଟିକିଏ ଗଲେ । ଆମ ଘର ।

...ମିନାଟା ହଂସକୁଟୀ । ହଂସାଭେ ଜଳଯାଉଛି । ଅମଙ୍ଗୁଳି । କାହିଁକି ଦୋଷୋହେଲା ତା ସାଙ୍ଗରେ ? କାହିଁକି ତାକୁ କହିଲି ପ୍ରେଜେଣ୍ଟ କଥା ? ମୋତେ ଦେଖାଇବାକୁ କହିଲା । ମୁଁ ମନା କଲାରୁ କହୁଛି କଣ ନା ଆମର ଏସବୁ ଚଳେନାହିଁ, ବାପା ଚଢ଼ନ୍ତି, କହନ୍ତି ଫୁଲେଇ ତିଙ୍ଗ । ହୁଁ ଅମଙ୍ଗୁଳିଆ, ମଫସଲିଆ । ନଚେ ଯେଉଁ ପିଲାଟା ତ ! ସୂର୍ଯ୍ୟମଣି ତ କ୍ଲାସରେ ପଢ଼େ । କହୁଥିଲା ଯେ ସେ ମାଡ଼ଖାଏ ଓ ମାଡ଼ ଖାଇଲେ ଭେ ଭେ ହୋଇ କାନ୍ଦେ ଭେରଣ୍ଡାଙ୍କ ପରି । ଘରେ ବି' ମାଡ଼ ଖାଉଥିବ । ତା ବୋଉ କଣ ତାକୁ ମାରୁ ନ ଥିବ ?

ମୋ ବୋଉ କଣ ବେଶି ମାରେ ? ନାଁ—ଏବେ ସିନା ଏମିତି ମାରୁଛି । ହେଲେ ମୋଠୁ ରାଜୁ ବେଶି ମାଡ଼ଖାଏ ।

ଆଜି ବୋଉର ଜନ୍ମଦିନ । ଆଜି ସେ ଖୁସିଥିବ । ମୋ ପ୍ରେଜେଣ୍ଟ ପାଇ ଆହୁରି ଖୁସି ହେବ । ଜନ୍ମଦିନରେ ଖୁସିଥିଲେ ପରା ବର୍ଷଯାକ ଖୁସି ହୁଅନ୍ତି ! ତାହା-ହେଲେ ବୋଉ ଆଉ ରାଗିବ ନାହିଁ ଆଜିଠୁଁ...

ହେଇ—ଆମ ଘର ଆସିଗଲା । ଏଇ ମାଇଲ୍ ଖୁଣ୍ଟ । ତା'ପରେ ଉଇହୁଙ୍କା, ରାଣୀ ଉଇ ଘର କରିଛି । ତା'ପରେ ଫୁଟ୍‌ବଲ ପଡ଼ିଆର କାନ୍ଥ । ଛବି ମରା ହୋଇଛି । ନର୍ଗିସ୍ ନାକରେ ନୋଲକ ନାଇଛି । ବୋଉ କହୁଥିଲା ବୁଢ଼ୀମାର ସେମିତି ନୋଲକ ଥିଲା । ତା'ପରେ—ତା'ପରେ ଅମ ଘ—ର ।

ଘରେ ଆଲୁଅ ଲଗିଲାଣି । ଦାଣ୍ଡରେ କେହି ନାହାନ୍ତି । ବୋଉ କୋଉଠି ଏ ଘରେ ଅଛି । ବାପା ଅଫିସରୁ ଫେରି ନ ଥିବେ । ରାଜୁ ବଜୁ କଣ କରୁଥିବେ,—ବୁଲି ଯାଇଛନ୍ତି ? ତାଙ୍କର ମଜା । ଆରବର୍ଷ ସ୍କୁଲକୁ ଗଲେ ରାଜୁର ମଜା ଗୁଲିଯିବ ଯେ ।

ଅନ୍ଧାର ଆସିଲାଣି । ସିନେମା ଛବି ବାରି ହେଉନାହିଁ । ପଡ଼ିଆ କାନ୍ଥ ପାଖକୁ ଛୋଟିଆ ପାଣି ଗାତଟିଏ । କାଳା କାଳା ଦିଶୁଛି । ପାଖକୁ ଯିବି ? ନାଁ—ତା' ଭିତରେ

ସେଦିନ ଥିଲା ଗୋଟାଏ କଳା ପୋକ । ପୋକ ଥିବ କେଉଁଯଣି,—ଅନ୍ଧାର ଭିତରେ ବସିଥିବ ଚୁପ୍ ଚାପ୍ ହୋଇ ଘାସ ଫୁଲଙ୍କ ମଝିରେ । ବୁଢ଼ୀ ଅସୁରଣୀ । ଅନ୍ଧାର ଜଙ୍ଗଲ ଭିତରେ ବସିଛି ଏକୁଟିଆ, ପାଖକୁ ଆସିଲେ ତାକୁନକ ଗିଳିଦେବ ।

ଶୀତ ଲାଗୁଛି । ହାତରେ କଣ ଟିକିଏ ଟିକିଏ ଫୁଲି ଉଠୁଛି । ରୋମ ଟାଙ୍କୁର ଉଠୁଛି ? ଡର ଲାଗିଲେ ପରା ରୋମ ଟାଙ୍କୁର ଉଠେ ?

ପ୍ରେଜେଣ୍ଟ କାହିଁ ? ପ୍ରେଜେଣ୍ଟ ହାତରେ ଅଛି ନା ? (ଗୀତା ମୁଠେଇ ଧରିଲା ହାତରେ ଥିବା କାଗଜ ପୁଡ଼ିଆଟିକୁ । ତାର ଗୋଡ଼ ଧୀର ହୋଇ ଆସିଲା ଘର ଫାଟକ ପାଖରେ ପହଞ୍ଚିଲା ବେଳକୁ) ।

ଘରେ ଆଲୁଅ ଜଳୁଛି । ବାହାର ଅନ୍ଧାର । କେହି ନାହାନ୍ତି । ଫୁଲ ସବୁ ଶୋଇ ପଡ଼ିଲେଣି ।

ପୂର୍ଣ୍ଣୀ କବାଟ ଖୋଲି ଦେଲାଣି । ବୋଉ କାହିଁ ? 'ମାଆ ଯାଇଛନ୍ତି ମିଶ୍ର ବାବୁଙ୍କ ଘରକୁ । ପିଲାଏ ଖେଳିବାକୁ ଯାଇଛନ୍ତି । ବାବୁ କଚେରୀରୁ ଫେରି ନାହାନ୍ତି ।'

ବୋଉ ନାହିଁ । କେହି ନାହାନ୍ତି । ବୋଉର କଣ ମନେ ନାହିଁ ଆଜି ତାର ଜନ୍ମଦିନ ବୋଲି ?

ନାଇଁ,—ବୋଉ ଏଇକ୍ଷଣି ଫେରି ଆସିବ । ମୁଁ ତାକୁ କହିବି ମୁଁ କ୍ଲାସରେ ଫାଷ୍ଟ ହୋଇଛି ବୋଲି । ସେ ଆସିବା ଆଗରୁ ମୁଁ ମୋ ପ୍ରେଜେଣ୍ଟ ସଜାଡ଼ି ରଖିବି ମଝି ଘରେ, ଆଲୁଅ ତଳେ । ବୋଉ ଖୁସି ହେବ । କେହି ନାହାନ୍ତି, ଭଲ ହୋଇଛି ।

ଯାଉଛି, ଆଗେ ତାକୁ ଦାଣ୍ଡଘରକୁ ନେଇଯାଏ । ସେଇଠି ଖୋଲି ଠିକଠାକ କରି ମଝି ଘରକୁ ନେଇଯିବି ।

(ଦାଣ୍ଡଘରକୁ ଯିବା ବାଟରେ ଗୀତା ଠିଆ ହୋଇଗଲା ବାହାପଟ କବାଟ ପାଖରେ । କବାଟ ମେଲା ହୋଇଛି ।)

ଗୃହଆଡ଼ ଅନ୍ଧାର । ଗଛ ପାଖରେ ବେଶି ଅନ୍ଧାର । ଅନ୍ଧାରରେ କଥା ଶୁଭୁଛି । କଥା ନୁହେଁ,—ପବନ । ପବନରେ ଗଛ କଥା କହୁଛି । କେତେ ଦୂରରେ କାହା ଘରେ ଆଲୁଅ ଜଳୁଛି । ଚୌଧୁରୀଙ୍କର ଦୁଇମହଲା କୋଠାଘର ଉପର ମହଲାରେ ଆଲୁଅ ଜଳୁଛି । ଆଲୁଅ ପବନରେ ଥରୁନାହିଁ କାହିଁକି ?

ଦାଣ୍ଡ ଘରେ ଆଲୁଅ ଜଳୁଛି । କାନ୍ଥରେ ଫଟୋ ଟଙ୍ଗା ହୋଇଛି—ବୋଉ ମୋତେ କୋଳରେ ଧରି ଛିଡ଼ା ହୋଇଛି । ବୋଉ ହସୁନାହିଁ ।

ପବନରେ ଅନ୍ଧାର ଅରୁଛୁ, କଥା କହୁଛୁ । କିନ୍ତୁ ଆଲୁଅରେ କିଛି ହେଉ ନାହିଁ । ବୋଉ ଆଲୁଅରେ ରହୁଛି ଏକୁଟିଆ, ଖୁଣ୍ଟପର । ସେଠିକି ପବନ ଯାଉନାହିଁ । ପବନ ସେଠିକି ଆସନ୍ତା । ମୁଣ୍ଡବାଳ ଫୁରୁଫୁରୁ ହୋଇ ଉଡ଼ି ଉଠନ୍ତା । ବୋଉର ଓଠ ଥରି ଉଠନ୍ତା । ବୋଉ ହସନ୍ତା, କଥା କହନ୍ତା, ଗପନ୍ତା—

ବୋଉ ଯଦି ସତରେ ଏଇ ଫଟୋ ଭଳିଆ ହେଇଯାଏ, ଗପିବା ବି ବନ୍ଦ କରିଦିଏ— !

ହେଇ,—ସେ କଣରେ ପୋଲିସ ଲାଇନ ପଡ଼ିଆ ଉପରେ ଜହ୍ନ । ଫାଳେ କଟିଯାଇଛି । ଛୁରୀରେ କଟା ହେଲପରି ନୁହେଁ, କିଏ ଛିଣ୍ଡେଇ ନେଲାପର । ତା' ଚାରିପାଖ ଯାକ ଗୋଲ ହୋଇ ପାଉଁଶିଆ ଆଲୁଅ,—କୁହୁଡ଼ି ।

ଜହ୍ନମାମୁଁ । ତାକୁ ମାମୁଁ କାହିଁକି କହନ୍ତି ? ବୋଉର ଭାଇ ? ବୋଉର ଚାରି ଭାଇ, ଇଏସୁ ପାଞ୍ଚ । ସତରେ ମାମୁଁ ? ମାମୁଁ ମୁହଁ ଗୋଲ, ମାମୁଁ ମୁହଁ ଗୋରା । ବୋଉ ମୁହଁ ଗୋଲ । ଗୋରା ମାମୁଁ ହସୁଛି,—ନାଇଁତ । ଏକୁଟିଆ ମୁହଁକୁ ଶୁଖେଇ ବସିଛି । ପାଖରେ ତାରାଟିଏ ନାହିଁ, କେହି ନାହିଁ । ଏକୁଟିଆ । ବୋଉ ଭଳିଆ ।

(କିଛି ସମୟ ପରେ । ଗୀତା ଦାଣ୍ଡଘରେ । ତାର ଆଲମାରୀକା ଖେଲଣା ସଜାଡୁଛି)

ବରକନ୍ୟା ମଝିରେ ଦ'ପାଖରେ ବାଜାବାଲା, କନ୍ୟା ସାଙ୍ଗରେ ଯାଉଛି ଖଟ, ଆଲମାରି, ଟେବୁଲ, ସୋଫା ସେଟ । ଆଉ ସିଲେଇ ମେସିନ, ରେଡ଼ିଓ ? ଏଥରକ ବଜାରକୁ ଗଲେ କହିବ ବୋଉକୁ କିଣିଦେବ ।

ଥାକ ଉପରୁ ମହାଦେବ ଅନେଇଛନ୍ତି । ଗୋଟାଏ ଗୋଡ଼ ଉଠିଛି ବଙ୍କା ହୋଇ । ହାତରେ ଡମରୁ । "ବମ୍ ବମ୍ ବାଜେ ଡମରୁ···ବାଜେ ଡମରୁ ।"

ବୋଉର ଏଇ ପ୍ରେଜେଣ୍ଟ,— ସେ କୋଉଠି ରଖିବ ? ଦାଣ୍ଡଘର ଟେଲଣା ଥାକରେ, ମଝିଘର ଥାକରେ, ନା ଶୋଇବା ଘର ଆଇନା ଟେବୁଲ ଉପରେ ? ବୋଉ ପୁଣି ମତେ କଣ ଫେରାଇ ଦେବ ? ମୋ ବରକନ୍ୟା ତାକୁ ପାଇ ଭାରି ଖୁସି ହୁଅନ୍ତେ, ନାଇଁ ଆଉ । ସେ ବୋଉର, ବୋ'ଉ ତାକୁ ନେଇ ଯାହା କରିବ ।

ଯାଉଛି ଖୋଲିବି ତାକୁ । ଏକ, ଦୁଇ, ତିନି··· । କାଗଜରେ ବନ୍ଧା ହୋଇ ଅସନା ଦେଖାଯାଉଛି । ମୁଁ ଗୋଟାଏ ସୁନ୍ଦରିଆ ଖୋଲ ମାଗିଲି ଯେ ଦେଲ ନାହିଁ ।

ପ୍ରେଜେଣ୍ଟ । ପଦ୍ମ ଫୁଲ । ଚକ୍ ଚକ୍ ଧଳା ଶାମୁକା ଖଞ୍ଜା ହୋଇଛି ଗୋଟିକି ଗୋଟି । ଫୁଲର ପାଖୁଡ଼ା । ପାଖୁଡ଼ା ଅନ୍ତରେ ସବୁ ସୁନେଲି ଗାର । ଫୁଲ ମଝିରେ କଣ ରୁଆ ରୁଆ ହୋଇ ଗୁନ୍ଥା ହୋଇଛି ହଳଦିଆ ହୋଇ । ଫୁଲର କେଶର ।

ଦୋକାନବାଲା କହୁଥିଲା ବେଶୀ ଟଙ୍କା ଥିଲେ ଆହୁରି ସୁନ୍ଦର ଫୁଲ ମିଳିଥାନ୍ତା ସୁନାରୁପା ଲଗା ହୋଇ । ହଉ, ଏଇ କଣ ସୁନ୍ଦର ହେଇନାହିଁ ?

ସ୍ୱାକୁ ନେଇଯାଉଛୁ ଆକ ଉପରକୁ । ମହାଦେବଙ୍କ ପାଖକୁ । ସବୁ ଆଲୁଅ ଲିଭେଇ ଦେବ । ଖାଲି କାନ୍ଥର ସେ ଧଳା ଆଲୁଅଟି ଜଳୁଥିବ,—ଠିକ୍ ମହାଦେବଙ୍କ ଦେହରେ ଓ ମୋର ପଦ୍ମଫୁଲ ଉପରେ ।......

...ଭଲ ହେଇନ ? ନିଶ୍ଚୟ ଭଲ ହୋଇଛୁ, ବଢ଼ିଆ ହେଇଛୁ । କଣ କହୁଛ, ମହାଦେବ ? ବୋଉ ନିଶ୍ଚୟ ଖୁସିହେବ,— ନୁହେଁ ?

ଯାଉଛୁ ସ୍ୱାକୁ ମନ୍ଦିରକୁ ନେଇଯାଏ । ବୋଉ ସେଇଠିକୁ ଆସିବ ଆଗେ । ତା ଆଖିରେ ପଡ଼ିବ ।

('ପ୍ରେଜେଣ୍ଟ'କୁ ହାତରେ ଧରି ଗୀତା ଧୀର ପାଦରେ ମନ୍ଦିରର ଆଡ଼କୁ ମୁହାଁଇଲା । ଘର ଦୁଆର ବନ୍ଦରେ ପଡୁଥିବା ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଆଲୁଅ ସୁଇଚ ଟିପିଦେଲା) ।

ଘରସାରା ଆଲୁଅ । ବିଛଣା ହୋଇ ନାହିଁ । ପିଲାଙ୍କ ଧୂଆ ଜାମାପଟା ଗଦା ହୋଇ ପଡ଼ିଛି ସେମିତି । ବୋଉ ଆସିଲେ ଚଢ଼ିବ କୁଳିଆ ଉପରେ ।

ଏ —ଇଏଟା କଣ ? କାନ୍ଥ କଡ଼ର ତିନକୋଣିଆ କାଠପଟା ଉପରେ ନୂଆ ଜିନିଷଟିଏ ଥୁଆ ହୋଇଛି । ଚକ୍ ଚକ୍ ଧଳା । ପଥର ନା ରୁପା ? ସବୁଯାକ ଆଲୁଅ ପଡ଼ୁଛି ତା ଉପରେ । କେତେ ବଡ଼ ! କେଡ଼େ ସୁନ୍ଦର ! କିଏ ଆଣିଲା ସ୍ୱାକୁ ?

ହାତ ପାଇବ ନାହିଁ । ଖଟ ବାଡ଼ରେ ଚଢ଼ି ଦେଖିବ । (ତା' ପ୍ରେଜେଣ୍ଟକୁ ଝରକା ଉପରେ ଥୋଇ ଗୀତା ଖଟବାଡ଼ ଉପରେ ଚଢ଼ିଲା ନୂଆ ଜିନିଷଟିକୁ ଦେଖିବା ପାଇଁ) ।

—ପାଖରେ ଆହୁରି ସୁନ୍ଦର ଲାଗୁଛି । ଆହୁରି ବଡ଼, ଧଳା । କଣ ଇଏଟା ? କୋଉଠି ନା ଦେଖିଛି ? ନା—ନା'—ଇଏଟା ହେଉଛି ତାଜମହଲ । ଆମ ଇତିହାସ ବହିରେ ଛବି ଅଛି । ଧଳା ମାର୍ବଲ ପଥରରେ ତିଆରି । ଆଗ୍ରାରେ ଅଛି । କିଏ ତିଆରି କରିଥିଲେଟି— ।

ଏଟା ବି' କଣ ମାର୍ବଲ ପଥର ? ହଁ ତ ହାତକୁ—ଚିକ୍କଣ ଲାଗୁଛି । ଥଣ୍ଡା ଲାଗୁଛି । କେତେ ଟଙ୍କା ହୋଇଥିବ— ।

ତା' ତଳେ ଖଣ୍ଡେ କାଗଜ ରଖା ହୋଇଛି । କଣ ଲେଖା ହୋଇଛି ଶାଗୁଆ କାଳିରେ ।

'ନୂଆବୋଉଙ୍କ ଜନ୍ମଦିନରେ—ବନୁ' । ବନୁଦାଦା ଦେଇଛନ୍ତି ? ବୋଉ ପାଇଁ ପ୍ରେଜେଣ୍ଟ ?

ପଛଅଡ଼େ କୁଲିଆ ଆସିଲାଣି । 'ଗୀତାଦେଈ ସେଥିରେ ଲଗନାହିଁ । ଏଇ ଟିକକ ଆଗରୁ ବନୁଦାଦା ଆସିଥିଲେ, ରଖିଦେଇ ଯାଇଛନ୍ତି । ମାଆ ଦେଖି ନାହାନ୍ତି ।'

'ହେଉ ହେଲା ଯା, ମୁଁ ଜାଣେ । ତୁ ଗଲୁ ଏଠୁ ।'

ବନୁଦାଦା ପ୍ରେଜେଣ୍ଟ ଦେଇଛନ୍ତି । ବଢ଼ିଆ ଜିନିଷ । ଦାମିକା ଜିନିଷ । ବୋଉ ଖୁସି ହେବ । ଭଲ ଜିନିଷ ବୋଲି, ଆଉ ବନୁଦାଦା ଦେଇଛନ୍ତି ବୋଲି ।

ମୋ ଜିନିଷ ଥୁଆ ହୋଇଛି ଝରକା ଉପରେ । ଝରକାର ଅନ୍ଧାରିଆ କଣରେ । ଧଳା ଦିଶୁନାହିଁ, ଚକ୍ ଚକ୍ ଦିଶୁନାହିଁ । ଅପରିଷ୍କାରିଆ ଦିଶୁଛି ।

ବୋଉକୁ ଦେବନାହିଁ ମୋ ପ୍ରେଜେଣ୍ଟ ? ଦେଲେ ଲଭ କଅଣ ? କାହିଁ ତାଜମହଲ, ଆଉ କାହିଁ ମୋ ଶାମୁକା ! ବୋଉ ରଖିଦେବ କୋଉ କଣରେ, ଧ୍ୟାନ ଦବ ନାହିଁ । କେହି ପଚାରିବେ ନାହିଁ । ବନୁଦାଦାଙ୍କ ଜିନିଷକୁ ସାଇତି ଦେଲେ, ଫୋପାଡ଼ି ଦେଲେ— ?

ନାଇଁ—ନାଇଁ, ମୋ ପ୍ରେଜେଣ୍ଟ ଭଲ, ସୁନ୍ଦର । ଏ ହେଉଛି ବଡ଼ମାନଙ୍କର ପ୍ରେଜେଣ୍ଟ, ମୋର ହେଉଛି ପିଲାଙ୍କର ପ୍ରେଜେଣ୍ଟ । ବୋଉ ବନୁଦାଦାଙ୍କର ଜିନିଷ ପାଇ ଖୁସି ହେବ, ମୋର ପାଇ ବି' ଖୁସି ହେବ ।

ଏ ଜିନିଷ କଣ ଏଇଠି ଥିବ ? ନା ଡାଇଂରୁମକୁ ନେଇଯିବ ? ଚୌଧୁରୀଙ୍କ ଘର ମହାଶୟ ଯାଇଥିଲେ । ତାଙ୍କ ଆଣିଥିବା ଜିନିଷ ଡାଇଂରୁମରେ ଅଛି । ନନ୍ଦବାବୁ ବମ୍ବେରୁ କେତେ ଜିନିଷ ଆଣିଥିଲେ, ସେ ବି ସେଇଠି ଅଛି । ବନୁଦାଦାଙ୍କ ଜିନିଷ ସେଇଠି ରହିବ, ଭଲ ହେବ ।

ଏଠି ରହିଥିବ ମୋ ଜିନିଷ । ବୋଉ ଆଖି ଆଗ ପଡ଼ିବ ଏଠି ।

(ଗୀତା ତାଜମହଲର ମୂର୍ତ୍ତିଟିକୁ ଆସ୍ତେ ଉଠାଇ ଗୋଟାଏ ହାତରେ କୁଣ୍ଢାଇ ଧରି ଓହ୍ଲେଇବାକୁ ଚେଷ୍ଟା କଲା) ।

ଆରେ ନାଇଁ—ନାଇଁ···ଓଃ···'ଧଡ଼ାସ୍'···(ଚାଳମଣ୍ଡଳ ତଳେ ପଙ୍ଖ ତଳା ହୋଇଯାଇଛି । ଗୀତା ପାଖରେ ଛିଡ଼ା ହୋଇ ଅନେଇ ରହିଛି ତାକୁ । ଆଖିରେ ଡର, ସବୁ ସରଗଲାର ଭାବ) ।

ଇଟସ୍ କଣ ହେଲା ? କାହିଁକି ହେଲା ?

ବୋଉର ଜନ୍ମଦିନର ପ୍ରେଜେଣ୍ଟ୍ ଭାଙ୍ଗିଯାଇଛି । ବନୁଦାଦାଙ୍କର ଦିଆ ପ୍ରେଜେଣ୍ଟ୍ ଭାଙ୍ଗିଯାଇଛି । ବୋଉର ସବୁ ଶରଧା ଭାଙ୍ଗିଯିବ ।

ବୋଉ ରାଗିବ । ବୋଉର ହବୁଦିନେ ରାଗେ କିନ୍ତୁ ଆଜି ଆହୁରି ରାଗିବ । ବନୁଦାଦାଙ୍କର ଜିନିଷ ଭାଙ୍ଗିଯାଇଛି । ସବୁ ଜନ୍ମଦିନର ମଉଜ୍ ଗୁଳିଯିବ ।

ଆଉ ମୁଁ ବୋଉ ପାଇଁ ପ୍ରେଜେଣ୍ଟ୍ ଆଣିଥିଲି । ସେ ହେଇଟି ପଡ଼ିରହିଛି ଝରକା ଉପରେ । ତାକୁ ବି ଭାଙ୍ଗିଦେବା ଯାଉଛି ।

ନାଇଁ—ନାଇଁ ମୁଁ ତାକୁ ଭାଙ୍ଗିନାହିଁ । ମୁଁ ଜାଣି ଶୁଣି ଭାଙ୍ଗି ନାହିଁ । ମୁଁ ଭାବୁଥିଲି ବନୁଦାଦାଙ୍କର ଜିନିଷ ପାଇଲେ ବୋଉ ବେଶି ଖୁସି ହେବ । ମୁଁ ତାକୁ ଦାଣ୍ଡଘରେ ରଖିବାକୁ ଯାଉଥିଲି ।

ବୋଉ କଣ ବୁଝିବ ? ଦାଣ୍ଡଘରକୁ ନେଇଯାଉଥିଲି କାହିଁକି ? ମୋ ଜିନିଷକୁ ଏଠି ରଖୁଥିଲି କାହିଁକି ?

ନାଇଁ—ମୁଁ ଜାଣିଶୁଣି କିଛି କରିନାହିଁ । ମୁଁ ବନୁଦାଦାଙ୍କ ଜିନିଷ ଭାଙ୍ଗିନାହିଁ ! ବୋଉ ମତେ ଭଲପାଏ । ବୋଉ ବୁଝିବ ।

କିନ୍ତୁ ବନୁଦାଦାଙ୍କ ଜିନିଷ ଭାଙ୍ଗିଯାଇଛି । ଘର ଜିନିଷ ନୁହେଁ । ବାପାଙ୍କ ଜିନିଷ ନୁହେଁ । ବୋଉ ଟିକେ ରାଗିବ ନାହିଁ । ବୋଉ ବ୍ୟସ୍ତ ହେବ ।

ମୁଁ କାହିଁକି ଏଠୁ ନେଇ ଯାଉଥିଲି ତାକୁ ? ବୋଉ ମୋ ଜିନିଷ ଆଗେ ଦେଖିବ ବୋଲି ? କାହିଁକି ଏମିତି କଲି ? ବନୁଦାଦାଙ୍କର ଜିନିଷ ମୋଠାରୁ ଭଲ, ସୁନ୍ଦର । ବୋଉ ପାଇଁ ବନୁଦାଦାଙ୍କର ଜିନିଷ ମୋଠାରୁ ଭଲ, ସୁନ୍ଦର ।

ଏକ୍ଷଣି ସେମାନେ ଆସିବେ । ବୋଉ ଫେରିବେ । ବନୁଦାଦା ଆସିବେ । ମୁହଁରେ ମୂରୁକି ମୂରୁକି ହସ । ବାପା ଆସିବେ । କିନ୍ତୁ ତାଙ୍କ ଆସିବାରେ କଅଣ ଅଛି ?

ମୁଁ କାହିଁକି ଏମିତି କଲି ?···

(ମୁହଁରେ ହାତଦେଇ ଗୀତା ଖଟ ଉପରେ ବସିପଡ଼ିଲା । ଅନର୍ଗଳ ହାତପାପୁଲି ଭିଜାଇ ଦେଲା । କିଛି ସମୟ ପରେ···)

ଜୋତା ମଚମଚ ଶୁଭୁଛି । କିଏ ଆସିଲା ? ବଳୁଦାଦା ନୁହେଁ । ବାପାଙ୍କ ଗୁଲ ।

(ଗୀତାର ବାପା ଘର ଭିତରକୁ ପଶିଯାଇ ଦେଖିଲେ ଏ ଦୃଶ୍ୟ । ମୁହଁରେ କ୍ଳାନ୍ତ ଓ ବ୍ୟସ୍ତତା ସବୁଦିନପରି)

'ଇସ୍ଲେ କଣ ପଢ଼ୁଛୁ ?'

(ଉତ୍ତର ନାହିଁ)

'ଇସ୍ଲେ କଣ ଭଙ୍ଗିଯାଇଛୁ, ପଗୁରୁଛୁ ପରା ?'

'ପ୍ରେଜେଣ୍ଟ୍ ,—ବଳୁଦାଦା ଆଣିଥିଲେ ବୋଉପାଇଁ' । ବାପା ଚୁପ୍ ହୋଇଗଲେ । କଣ ଭାବୁଛନ୍ତି । ବାପା ଫେରଯାଉଛନ୍ତି । କିଛି କହୁ ନାହାନ୍ତି କାହିଁକି ?

(କାନ୍ଦ ଭିତରେ ବି ଗୀତାର ମୁହଁ ଟିକିଏ ଉଜ୍ଜ୍ୱଳ ହୋଇଆସିଲା । କଣ ଗୋଟିଏ ନୂଆ ଆଶା ପାଇଲାପରି) ।

ବାପା ଫେରଯାଉଛନ୍ତି । ପଗୁରିବ ? ପଗୁରିବ ?···

'ବାପା, ବାପା—'

'କଅଣ ?'

( ଗୀତା ଦୌଡ଼ିଲା ତା ବାପାଙ୍କ ପାଖକୁ )

'ବାପା,—ବୋଉ ପାଇଁ ପ୍ରେଜେଣ୍ଟ୍ ଆଣିଛ ?'



# ଭଙ୍ଗା ଖେଳନା

ମୋର ପୁରୁଣା ଗଳ୍ପଗୁଡ଼ିକ ମଧ୍ୟରେ ଏହି ପ୍ରଥମ ଗଳ୍ପ ଯାହା ମୋତେ ଅପ୍ରତ୍ୟାଶିତ ପ୍ରଶଂସା ଆଣି ଦେଇଛି । ନୂଆ ଲେଖକଟିର ନୂତନତ୍ୱ ପ୍ରତି ଅଯାଚିତ ଶ୍ରଦ୍ଧା ଛାଳି ହୋଇ ଯାଇଛି । ଏବେ ମଧ୍ୟ ମୋ ବିଷୟରେ ଲେଖିବାକୁ କହିବାକୁ ଯାଇ ଅନେକ 'ଭଙ୍ଗା ଖେଳଣା'ର ଲେଖକଙ୍କୁ ସ୍ମରଣ କରନ୍ତି ଏବଂ କୁହନ୍ତି ଯେ ଓଡ଼ିଆ ଗଳ୍ପ ସାହିତ୍ୟରେ ଏହା ଅନାବିଳ ଉଜ୍ଜ୍ୱଳ ମୁକ୍ତାଟିଏ । ଏପରିକି ମୋର ଜଣେ ଲେଖକ ବନ୍ଧୁ କହିଲେ ଯେ ପର ଜୀବନରେ ମୁଁ ଯେତେ ଯାହା ଲେଖିଲେ ବି, ଯେତେ ଦ୍ୱନ୍ଦ୍ୱ, ଜଟିଳତା, କୁଟିଳତା ତଥା ଝଲକର କାରସାଦି ଦେଖାଇଲେ ବି, ଏହି ଗଳ୍ପର ମାଧୁର୍ଯ୍ୟ ଆଉ କେଉଁଥିରେ ଆଣି ପାରିନାହିଁ । ହୋଇଥିବ । ମୋର ମନେହୁଏ ଯେ ଶ୍ରେଷ୍ଟିଆ ମୁକ୍ତାଟିର ଏତେ ଆଦର କାହିଁକି ନା ତାହା ତୁମ ଆମ ବଡ଼ ମଣିଷଙ୍କ ଅଲୋଡ଼ା । କଣୋଗ୍ରୀ ଶୀତାର ଟୋପାଏ ଲୁହ ଛଡ଼ା ଆଉ କିଛି ନୁହେଁ, ଯାହା ଗ୍ରହୁଁ ଗ୍ରହୁଁ ଶୁଖିଯିବ, ବୋଉ ବାପାଙ୍କ ଟିକିଏ ହସ ଟିକିଏ ଗେହ୍ଲାରେ ନଷ୍ଟ ହୋଇଯିବ । ହୁଏତ ତା' ବୋଉ ବନୁଦାଦାଙ୍କ ସାଙ୍ଗରେ ବେଶି ହସଖୁସି ହୁଏ, ଏଥିରେ ଆବିଳତା କିଛି ନାହିଁ, ହୁଏତ ତା' ବାପାଙ୍କର ବଢ଼ି ଉଠୁଥିବା ଗମ୍ଭୀରପଣ ଏକୁଟିଆ କାହୁଗ୍ରପଣରେ ଅନେକ ଗଣ୍ଡଗୋଳିଆ କଥା ଅଛି, ଯାହା ପିଲାଟା ବୁଝିପାରିବ ନାହିଁ । ଲେଖକ ତା'କୁ ଏ ବିଷୟରେ ମୋଟେ ସାହାଯ୍ୟ କରି ନାହାନ୍ତି । ଚରିତ୍ର ବିଶ୍ଳେଷଣରେ ନାଆଁ ଗନ୍ଧ ନାହିଁ । କଣୋଗ୍ରୀ କନ୍ୟାର କଅଁଳ ମନରେ ଖସଗ୍ରୁଇର ଖେଳ, ଉତ୍ପାତ ଏବଂ ଶେଷକୁ ଟୋପାଏ ଲୁହ—ଏହାଛଡ଼ା ଏ ଗପରେ ଆଉ କଣ ଅଛି ? କାହିଁ ଗଭୀରତା ? ଦର୍ଶନ ଚିନ୍ତନ ? ବାସ୍ତବ ଶୋକଦୁଃଖର କୋହ ? ସେଥିପାଇଁ କଣ ଗପଟି ଏତେ ସୁନ୍ଦର ହୋଇ ପାରିଛି ? ତାହାହେଲେ କଣ ଶିଶିରକଣାର ସ୍ୱଚ୍ଛରଙ୍ଗ ହିଁ ପ୍ରତ୍ୟେକ ଗଳ୍ପର କାମ୍ୟ ? ବିଚାର ଆପଣମାନଙ୍କ ଉପରେ । ତେବେ ସତ କଥା ଯେ ମୁଁ ଏହିଭଳି ଗଳ୍ପ ଆଉ ଲେଖି ପାରି ନାହିଁ । ତା'ର କାରଣ ଶୀତା ବଡ଼ ହୋଇ ଯାଇଛି । ଅଳ୍ପ

ବହୁତ ବଡ଼ ହେଲା ପରେ ତାକୁ ପୁଣି ଦେଖିବାକୁ ପାଇବେ ମୋର "କାହ୍ନୁଣୀ" ଏବଂ "ନାଲି ଗୁଲୁ ଗୁଲୁ ସାଧବ ବୋହୂ"ରେ । କିନ୍ତୁ ତା ଉତ୍ତାରୁ ତ ଗୀତା ଘରସଂସାର କରି ରହିଥିବ, ଅନ୍ୟତମ ନାରୀଚରିତ୍ରର ହୃଦୟ ଦେଖାଉଥିବ—ତେଣୁ ମୁଁ ତାକୁ ଆଉ ସେଇ ନାଆଁରେ ଡାକିବି କେମିତି ?

ଗଳ୍ପଟି ଥରେ "ଜୀବନରଙ୍ଗ"ର 'ଅବିସ୍ମରଣୀୟ ସ୍ମରଣିକା' ବିଭାଗରେ ପୁନଃପ୍ରକାଶିତ ହୋଇଥିଲା । ବିଭିନ୍ନ ଓଡ଼ିଆ ଗଳ୍ପ ସଂକଳନରେ ମଧ୍ୟ ସ୍ଥାନ ପାଇଛି । ଏହାଛଡ଼ା ଗଳ୍ପଟି ଭାରତୀୟ ନ୍ୟାସନାଲ୍ ବୁକ୍‌ଟ୍ରଷ୍ଟ୍‌ଙ୍କ ଦ୍ୱାରା ଭାରତର ସମସ୍ତ ଭାଷାରେ ଅନୁବାଦ ଏବଂ ପ୍ରକାଶନ ପାଇଁ ଗୃହୀତ ହୋଇଛି । ମୋ ଜାଣିବାରେ ଏହା ବଙ୍ଗଳା, ଆସାମୀ, ହିନ୍ଦୀ, ଉର୍ଦ୍ଦୁ ଏବଂ ଗୁଜୁରାଟି ଭାଷାରେ ଅନୁଦିତ ହୋଇ "ଓଡ଼ିଆ ଗଳ୍ପମାଳା" ସିରିଜ୍‌ରେ ପ୍ରକାଶିତ ହୋଇସାରିଛି । ହୁଏତ ଏଥିମଧ୍ୟରେ ଅନ୍ୟାନ୍ୟ ଭାଷାରେ ପ୍ରକାଶିତ ହୋଇଥିବ । ଶ୍ରୀଯୁକ୍ତ କମଳାକାନ୍ତ ମହାପାତ୍ର ଓ ଶ୍ରୀମତୀ ଲୀଳାବତୀ ମହାପାତ୍ର ଏହାକୁ ଇଂରାଜୀରେ ଅନୁବାଦ କରି "The Broken Toy" ନାମକରଣ ଦେଇ ମୋର ଇଂରାଜୀ ଗଳ୍ପ ସଙ୍କଳନ Wild Peacock and other Stories ( 985) ରେ ପ୍ରକାଶିତ କରିଛନ୍ତି । ଏହି ଇଂରାଜୀ ଅନୁବାଦଟି କେନ୍ଦ୍ର ସାହିତ୍ୟ ଏକାଡ଼େମୀଙ୍କ ମୁଖପତ୍ର 'Indian Literature" (March-April 1985) ରେ "A present for Mummy" ଶୀର୍ଷନାମାରେ ମଧ୍ୟ ପ୍ରକାଶ ପାଇଛି ।

କଟକ

୬ ଜୁଲାଇ, ୧୯୮୬



# ଆଇସ୍‌କ୍ରିମ୍

ଘାସରେ ପାଣି ପଡ଼ୁଛି । ଥରେ ନୁହେଁ, ଦୁଇଥର ନୁହେଁ, ପାଞ୍ଚଥର । ସାହେବ ଥରେ କହି ଯାଇଥିଲେ ଅଫିସ ଯିବା ଆଗରୁ । ତାପରେ ମେମ୍ ସାହେବ କହିଲେ ଦୁଇଥର, ସକାଳେ ଗାଧୋଇ ଯିବା ଆଗରୁ ଓ ଅପରବେଳା ପୋଷାକ ଗାଧୁଆର ପରେ । ଅଫିସରୁ ସହଳ ଫେରି ସାହେବ କହିଲେ ପୁଣି ଥରେ ଓ ଘନଶ୍ୟାମ ସ୍ୱଗିଲ ଭଳି ମନକୁ ପାଣିଗୁଡ଼ାଏ ଢାଳିଦେଲା ଶେଷଥର ।

ମିଷ୍ଟର ଶର୍ମା ପାର୍ଟି ଦେଉଛନ୍ତି । ପାର୍ଟି ଦେବା ତାଙ୍କ ପକ୍ଷରେ କିଛି ନୂଆ ନୁହେଁ । କିନ୍ତୁ ଆଜି ସେଥିରେ ଯେମିତି ମନପ୍ରାଣ ଢାଳି ଦେଇଛନ୍ତି । ଏପାଖ ସେପାଖ ବୁଲି ଚାକରଙ୍କ ଉପରେ ପାଟି କରି ମନବୋଧ ହେଉନାହିଁ, ନିଜେ ଯାଇ ଚଉକି ଝାଡ଼ି ଦେଉଛନ୍ତି, ଟେବୁଲ କ୍ଲଥରେ ଅଙ୍କା ହୋଇଥିବା ଫୁଲଟାକୁ ଟାଣୁଛନ୍ତି ଏ କଣରୁ ସେ କଣକୁ ।

ଗହଳିଆ ଶାଗୁଆ ଘାସର ଗୁଛ ଉପରେ ଟେବୁଲ ପଡ଼ିଛି ଧାଡ଼ି ଧାଡ଼ି ହୋଇ । ଆଉ ଚଉକି ସବୁ ଅଛି ଟିକିଏ ଘୁଞ୍ଚି,—ତଥାକଥିତ ଫୁଲ ବଗିଚାକୁ ଲାଗି । ଫୁଲ ବଗିଚାରେ ଫୁଲ ନାହିଁ ସତ, କିନ୍ତୁ ଅଛି ତା'ର ଉଦ୍ଦେଶ୍ୟ ଓ ପରିଣତି ନିରେଖି ଦେଖିଲେ ଜଣାଯିବ ଯେ ଫୁଲ ଫୁଟିଥିଲା ସେଠି ଓ ହୁଏତ ଫୁଟି ପାରିବ । ଆଉ ବୁଝି ନ ପାରିବା ଲୋକଙ୍କ ପାଇଁ ଖଣ୍ଡେ ଖଣ୍ଡେ ଟିଣ ପଟାରେ ଲେଖା ହୋଇଛି । ଫୁଲର ନାଆଁ—ଠାଆକୁ ଠାଆ । ଲାଟିନ୍ ନାଆଁ, ତର୍ଜମା ହୋଇଛି ଇଂରାଜୀରେ ।

ଶର୍ମା ସାହେବ ଘଣ୍ଟାକୁ ଅନାଇଲେ । ଆହୁରି ଅଧଘଣ୍ଟାଏ ବାକି ଅଛି । ଚଉକି ଓ ଟେବୁଲ ଆଡ଼କୁ ଅନେଇଲେ । ବେଶ୍—ପ୍ରାୟ୍ ସବୁ ରହିଯାଇଛି ଠିକ୍ ହୋଇ । ଏହିକ୍ଷଣି ଖାଲି ଖାଦ୍ୟ ସରଞ୍ଜାମ ଆସିବ । ରୋଷେଇ ଘରୁ କେତେ ରକମର ବାସ୍ନା ଆସୁଛି—ମିଠାଳିଆ, ନରମ—ତାଜା ବଟର୍, ଗରମ ମସଲା, ଉପରେ ଢଳା ହୋଇଥିବା ଘିଅର ବାସ୍ନା । ପାଟିକୁ ମିଠା ଲାଗିବ ଓ ଦେହରେ ଲାଗିବ ଚର୍ବି । ଶ୍ରୀମତୀ ଓ ମେମ୍ ସାହେବମାନେ 'ଡାଏଟ୍' ଭୁଲିଯିବେ କିଛି ସମୟ ପାଇଁ ଓ ନିଜର ଅଭିଜାତ ସୌଷ୍ଠବକୁ ଉନ୍ନତର ପଥରେ ଆଗେଇ ନେବେ ।

ଡ୍ରଇଂରୁମ୍‌ର ପତଳା ପର୍ଦ୍ଦା ଆଡ଼େଇ ଦେଇ ବାହାରି ଆସିଲେ ମିସେସ୍ ଶର୍ମା । ମିସେସ୍ ଶର୍ମା ଯୁବତୀ ନୁହନ୍ତି । ଦେହର ବିଭିନ୍ନ ଅଂଶରେ ବୟସର ଛାପ

ବନ୍ଧନ କରିବାକୁ ପଡ଼ିଛି । କିନ୍ତୁ ମେଥରେ ଯାଏ ଆସେ କଣ ? ସେ ଯେତେବେଳେ ମିସେସ୍ ଶର୍ମା ଓ ବର୍ତ୍ତମାନ ପାର୍ଟିର 'ହୋଷ୍ଟେସ୍'—ଅତଥି ସତ୍କାରିଣୀ । ସେଥିଲାଗି ଦେହରେ ଲାଗିଛି ପୁଟ—ସ୍ନୋ ଓ ପାଉଡ଼ର,—ଓଠରେ ଗାଢ଼ ନାଲିରଙ୍ଗ, ଓ 'ଗ୍ରେଲ' ତଳକୁ ମାଂସଳ ମଧ୍ୟଦେଶର ପ୍ରକାଶ । ମିସେସ୍ ଶର୍ମା ପାର୍ଟି ପାଇଁ ପ୍ରସ୍ତୁତ । ମ୍ନିଙ୍ଗ ଧୂଆ ହୋଇସାରିଛି । ଠିକ୍ ସମୟରେ କଳ ତା'ର କାମ କରିଯିବ । ହାତ ଦୁଇଟା ଯୋଡ଼ି ହୋଇଯିବ ଆପେ ଆପେ ଓ ଓଠରୁ ଝରିବ ଅନବରତ ହସ ।

ମିଷ୍ଟର ଶର୍ମା ମଞ୍ଚ ଉପରୁ ଓହ୍ଲାଇ ଆସିଲେ ତାଙ୍କ ସ୍ତ୍ରୀଙ୍କୁ ଛାଡ଼ିଦେଇ । ସେ ସବୁ ବୁଝିନେବ ଏଥର—ସବୁ ସଜାଡ଼ି ନେବ । ଏପରି ଗୋଟିଏ ସ୍ତ୍ରୀ ନଥିଲେ ଶର୍ମା ସାହେବ ଏତେ ଆଗେଇ ପାରି ନଥାନ୍ତେ, ଉନ୍ନତିର ପାହାଚରେ । ବଜାରକୁ ଯିବାକୁ ପଡ଼ୁଥାନ୍ତା, ପିଲାଙ୍କୁ ଖେଳାଇବାକୁ ପଡ଼ୁଥାନ୍ତା,—ଓ ସେଇ ସମୟରେ ବୋଧେ ବଡ଼ ସାହେବଙ୍କ ଘରେ ଆସନ ପକାଇ ଶୁଣୁଥାନ୍ତା ତାଙ୍କର ଅସଂଖ୍ୟ କୀର୍ତ୍ତି ଓ ଶୁଣାଉଥାନ୍ତା ନିଜ ବିଷୟରେ କିଛି କିଛି । 'ଡ୍ୟାମ୍'—ଶର୍ମା ସାହେବ ସେଇ ସମ୍ଭାବ୍ୟ ପରିସ୍ଥିତିର କଳ୍ପନାରେ ବିରକ୍ତ ହୋଇ ଉଠିଲେ ଓ ମନେ ମନେ ସାବାସ୍ ଦେଲେ ତାଙ୍କ ସ୍ତ୍ରୀଙ୍କୁ । ଦୀର୍ଘଜୀବୀ ହେଉ ସେ ।

ତା'ପରେ ବାରଣ୍ଡାରେ ଗୋଟିଏ ଖୁଣ୍ଟକୁ ଆଉଜି ଶର୍ମା ସାହେବ ଅନେଇଲେ ଆକାଶକୁ । ହଠାତ୍ ଯେମିତି ଝଲକାଏ ଥଣ୍ଡା ପବନ ଆକାଶରୁ ସିଧା ଆସି ଲାଗିଲା ତାଙ୍କ ମୁହଁରେ । ଅଜାଣତରେ ତାଙ୍କର ଚଯାଓଠ ହୁଗୁଳିଗଲା ଟିକିଏ, ହାତଟା ବୁଲି ଆସିଲା ମୁଣ୍ଡ ଉପରୁ, ଫିରେଙ୍ଗର ଭଙ୍ଗୀକୁ ଭୁଲିଯାଇ । ପାଟିରୁ ବାହାରି ଆସିଲା ଗୋଟିଏ ଲମ୍ବିଆ 'ଆଃ',—ଅବସାଦର ଆରାମ, ଉଦ୍‌ବେଗର କୋଳରେ ପହଞ୍ଚିଯାଇ ଯେତେବେଳେ ମଣିଷ କହେ, 'ଯା,—ଆଉ ଭାବିବା ନାହିଁ, ସବୁ ଠିକ୍ ହୋଇଯିବ ଆପେ ଆପେ ।'

ଆକାଶ ନେଳିଆ । ଠିଆ ଠିଆ ଲମ୍ବା କୋଠାଗୁଡ଼ା ଚକ୍ ଚକ୍ କରୁଛି ଶେଷ ଆଲୁଅରେ, ସୁନାପାଣି ଢଳା ହେଲାପରି । ଘାସରେ ଶାଗୁଆ ରଙ୍ଗ ବୋଳା ହୋଇଛି ସେ'ପରି । ରଙ୍ଗ ଚହଟୁଛି ସବୁଠି,—ସୁନେଲି ଆଲୁଅରୁ ଶ୍ରୀମତୀଙ୍କର ନାଲିଆ ଲିପଷ୍ଟିକ ପର୍ଯ୍ୟନ୍ତ । ଶର୍ମା ସାହେବ ଆଖି ବୁଜି ଆଣିଲେ,—ଏ ରଙ୍ଗ ଯେମିତି ବାଧୁଛି ଆଖିକୁ । ଆସନ୍ନ ଉଜ୍ଜ୍ୱଳତାରେ ଟିକିଏ ଶଙ୍କି ଯାଉଛି ପୁରୁଣା ସୁବିଧାବାଦୀ ମନ,— 'ଆଉ ଏତେ କ'ଣ ପାରିହେବ ?'

କିନ୍ତୁ ଆଖି ବୁଜିଲେ ଅନ୍ଧାର । କଠୋର ଉଜ୍ଜ୍ୱଳତାକୁ ଆଦର ନ ନେଲେ ଅନ୍ଧାର । ବୋଷ୍, ଦାସ, କ୍ରିଷ୍ଟିନ୍ ସମସ୍ତେ ଆଗେଇ ଚାଲିଯିବେ ମଚ୍ ମଚ୍ ହୋଇ

ଶାଗୁଆ ଘାସ ଉପରେ, ନାଲି ଆଲୁଅର ମୁକୁଟ ପିନ୍ଧି । ଆଉ ସେ ପଡ଼ି ରହିଥିବେ ପଛରେ, ଅନ୍ଧାର କୋଣରେ, ମାଆର ପଣତ ଧରି ।

ଶର୍ମା ସାହେବ ନିଜର କ୍ଷଣିକ ଅବସାଦରେ ବିରକ୍ତ ହୋଇ ଆଖିପତା ମେଲାଇ ଆଣିଲେ । ନା,—ନିରାଶାର କୌଣସି କାରଣ ନାହିଁ । ଅନ୍ଧାର ଆସିବ ନାହିଁ । ଅନ୍ଧାରକୁ ଆସିବାକୁ ଦିଆ ହେବ ନାହିଁ । ଏଇ ଆଲୁଅ ଭଲ,—ଆଖିକୁ କାଟୁ ପଛକେ । ଏଇ ଆଲୁଅରେ ଗାଧୋଇବାକୁ ହେବ, ରାସ୍ତାରେ, ବଡ଼ ଛକରେ । ସମସ୍ତେ ଅନାଇଥିବେ, ବାଃ ବାଃ କରୁଥିବେ । ଏତେ ଦୂର ଆସି ଫେରିବା ଅସମ୍ଭବ ।

ଶର୍ମା ସାହେବ ଭାବି ବସିଲେ ନିମନ୍ତ୍ରିତମାନଙ୍କ କଥା । ଆଶ୍ଚର୍ଯ୍ୟର ବିଷୟ ସମସ୍ତେ ଉଣା ଅଧିକରେ ଆଗ୍ରହର ସହ ବ୍ୟଗ୍ର ହୋଇ ଯାଇଛନ୍ତି ଆସିବାକୁ । ଯେଉଁମାନଙ୍କର ନିହାତି ଆସିବା ଦରକାର ସେମାନେ ଓ ଅନ୍ୟମାନେ, ଯେଉଁମାନଙ୍କୁ ଖାଲି ଗହଳି ସୃଷ୍ଟି କରିବା ପାଇଁ ଡାକିବା କଥା ।

ସେ ପ୍ରଥମେ ପହଞ୍ଚିଲେ ମୁଖ୍ୟ ଅତିଥି ବଡ଼ ସାହେବଙ୍କ ପାଖରେ । ବଡ଼ ସାହେବଙ୍କ କୋଠିକୁ ଯିବାରେ ତାଙ୍କର ବିଶେଷ ବାଧା ନଥାଏ । ତଥାପି ସେ କେବେ ତାହାର ସୁବିଧା ନେଇ ନାହାନ୍ତି । ଅନ୍ୟସବୁ ଦର୍ଶନପ୍ରାର୍ଥୀଙ୍କ ପରି କାର୍ଡ଼ ପଠେଇ ଯାଆନ୍ତି ଭିତରକୁ । ସେଦିନ କିନ୍ତୁ କାର୍ଡ଼ ପଠାଇବାର ଆବଶ୍ୟକତା ନଥିଲା । ବଡ଼ ସାହେବ ଓରଫ୍ ମିଃ ଦତ୍ତ ଡ୍ରଇଂରୁମ୍‌ରୁ ବାହାରି ଆସିଲାବେଳକୁ ଦେଖିଲେ ତାଙ୍କୁ ଓ ଲମ୍ବା ହସ ହସି ହାତ ବଢ଼େଇ ଦେଲେ,—'ହ୍ୟାଲୋ, ହ୍ୟାଲୋ ଶର୍ମା-ଦକାଳୁ ସକାଳୁ କୁଆଡ଼େ । ଆସ ଆସ, ଭିତରକୁ ଆସ ।'

ବଡ଼ ସାହେବ ଖୁସି ଥିଲେ । ବୋଧହୁଏ କାଲି କୌଣସି ମନ୍ତ୍ରୀଙ୍କ ସାଙ୍ଗରେ ଦେଖା ହୋଇଛି ଓ ପାଇଛନ୍ତି ପ୍ରଶଂସା କିମ୍ବା କୌଣସି ସମପଦସ୍ଥ ଅଫିସର୍‌ଙ୍କ ସହିତ ଜିତିଛନ୍ତି ଫାଇଲ୍ ଯୁଦ୍ଧରେ । କିନ୍ତୁ ଶର୍ମା ସାହେବ ଭାବି ପାରିଲେ ନାହିଁ ଯେ ଖୁସିର କାରଣ ଆଉ କିଛି ବି ହୋଇପାରେ । ଯେ ସେହି ହାଡ଼ୁଆ ମୁହଁ, ଶିଆଳ ଆଖି, ଚନ୍ଦା ମୁଣ୍ଡର ସେହି ଗୋଟି ଗୋଟିକିଆ ଧଳା ବାଳ ଭିତରେ ବି' ବସନ୍ତ ଆସିପାରେ, ସ୍ମୃତିର ଶିହରଣ ଖେଳିପାରେ,—ଅଜଣାଆ ହେଉ ପଛେ ମିଃ ଦତ୍ତଙ୍କର ଗୋଟିଏ ରଙ୍ଗିନ୍ ଅତୀତ ଥିଲା, ସେକଥା ସମସ୍ତେ ଜାଣନ୍ତି । କିନ୍ତୁ ବର୍ତ୍ତମାନର ମିଃ ଦତ୍ତଙ୍କୁ ଦେଖିଲେ କେହି ଭରସି ଭାବିପାରନ୍ତି ନାହିଁ ଯେ ତାଙ୍କ ପାଇଁ ଅଫିସ୍ ଛଡ଼ା ଆଉ କିଛି ଆକର୍ଷଣ ଅଛି । ତା' ହୋଇଥିଲେ ସେ ତାଙ୍କର ଡ଼ିପାର୍ଟମେଣ୍ଟକୁ ଏତେ ଭଲ ପାଇ ପାରି ନ ଥାନ୍ତେ, ତା' ପାଇଁ ଏତେ ଲଢ଼ିପାରୁ ନ ଥାନ୍ତେ, ବିଭାଗର ମୁଖ୍ୟକର୍ତ୍ତା ହିସାବରେ ନିଜକୁ ହଜାଇ ଦେଇ ସରକାରଙ୍କର ପରମ ବିଶ୍ୱାସଭାଜନ ହୋଇପାରି

ନ ଥାନ୍ତେ । ସ୍ୱାସ୍ଥ୍ୟରେ ଫାଇଲ-ଖିଆ ମନ ! ସେ ଭାବିପାରେ ନାହିଁ ଯେ ଆକର୍ଷଣ ଖାଲି ବଞ୍ଚିବାର ସୁଖ ସ୍ୱାଚ୍ଛନ୍ଦ୍ୟ, ସମ୍ମାନ ମର୍ଯ୍ୟାଦା ପାଇଁ ଆସେ ନା ସେ ମଧ୍ୟ ଆସେ ବିନା କାରଣରେ, ମଣିଷକୁ ରକ୍ତ ମାଂସର ଜୀଅନ୍ତା ପ୍ରାଣୀ ବୋଲି ଚେତାଇ ଦେବାକୁ ।

ମିଃ ଦତ୍ତ ଅନାଇ ରହିଲେ ଶର୍ମାଙ୍କୁ । ବହୁଦିନର ଅଭିଜ୍ଞତାରୁ ସେ ଜାଣି-ପାରିଛନ୍ତି ତଳ ଅଫିସର୍‌ମାନେ କେତେବେଳେ କାହିଁକି ଆସନ୍ତି ତାଙ୍କ ପାଖକୁ । ସେ ଜାଣନ୍ତି ଯେ ଶର୍ମାଙ୍କର ପ୍ରଥମ ଗ୍ରେଡ୍‌କୁ ଯିବାର ସମୟ ହୋଇ ଆସିଲାଣି ଓ ସେଥିରେ ଅନେକ ପଦ ଖାଲି ଅଛି,—ଓ୍ୱାସିଂଟନଠାରୁ ଆରମ୍ଭ କରି ସିଲଂ ପର୍ଯ୍ୟନ୍ତ । କ'ଣ ଚାହେଁ ସେ ? ତାଙ୍କୁ କିଏ କହୁଥିଲା ଯେ ତା'ର ଇଚ୍ଛା ବିଦେଶ ଯିବ । ଚତୁର, ସ୍ମାର୍ଟଲୋକ—ସେ ତା'ର ଇଚ୍ଛା ନିଶ୍ଚୟ ପୂରଣ କରିନେବ । ତଥାପି ସହଜରେ କୌଣସି ଜିନିଷ ହେବାକୁ ଦେବା ଉଚିତ୍ ନୁହେଁ । ତାହା ବିଭାଗୀୟ ସଂସ୍କାର ବାହାରେ ।

କିନ୍ତୁ କୌତୂହଳ ଖେଳିଲା ତାଙ୍କର ହୃଦୟରେ ଓ ଆଖିରେ । ସେ ଶର୍ମାଙ୍କୁ ଅନେଇ ରହିଲେ କିଛି ଶୁଣିବେ ବୋଲି ।

ଶର୍ମା ତା'ପରେ ଆରମ୍ଭ କଲେ,—'ସାର୍—ମୁଁ ଆସିଥିଲି ଏଇଥିପାଇଁ ଯେ ପଅରଦିନ ସନ୍ଧ୍ୟାବେଳେ ଯଦି ଆପଣଙ୍କର କୌଣସି ବିଶେଷ କାମ ନଥାଏ, ତାହାହେଲେ ଦୟାକରି ମିସେସ୍ ଦତ୍ତଙ୍କ ସହିତ ମୋ' ଘରକୁ ଆସିଲେ—'

ଘୋଷିଲାପରି କଥାଗୁଡ଼ାକ ସମାନ ଭାବରେ ଭାସି ଆସୁଥାଏ । ମିଃ ଦତ୍ତ ଅଟକାଇ ଦେଲେ ସରିବା ଆଗରୁ । ବଦାନ୍ୟତାର ଭଙ୍ଗିରେ କହି ଉଠିଲେ, 'ବେଶ୍, —ବେଶ୍—ଅନେକ ଧନ୍ୟବାଦ । କିନ୍ତୁ—ମୋର ସ୍ତ୍ରୀ ନାହିଁ ଏଠି,—ସିମଲା ଯାଇଛି । ତା' ଛଡ଼ା ମୋର ସେଦିନ ସନ୍ଧ୍ୟାବେଳେ ଗୋଟିଏ ଜାଗାକୁ ଯିବାର ଅଛି—'

ଶର୍ମାଙ୍କର ମୁହଁ ଶୁଖି ଆସିଲା । ମିଃ ଦତ୍ତ ଲକ୍ଷ୍ୟ କରିପାରିଲେ । ତା'ପରେ ପଚାରିଲେ,—'ଆଚ୍ଛା ଆଉ କୌଣସି ସିନିୟର୍ ଅଫିସରଙ୍କୁ ଡାକୁଛ ?'

'ହଁ ସାର୍, ମିଷ୍ଟର ଓ ମିସେସ୍ ଚୌଧୁରୀ, ମିଷ୍ଟର ଓ ମିସେସ୍ ଲାଲ୍, ମିଷ୍ଟର ଓ ମିସେସ୍ ନରସିମ୍ହନ୍ ଓ ତା'ଛଡ଼ା ଅନ୍ୟମାନେ, ଅହମଦ, ଦାସ, ବୋଷ—' କହି ଚାଲିଥାନ୍ତି ଶର୍ମା ଆଗ୍ରହରେ ।

ମିଃ ଦତ୍ତ କିନ୍ତୁ ଶେଷଯାଏଁ ଶୁଣିପାରି ନାହାନ୍ତି । ବର୍ଣ୍ଣନାର ଅଧାରେ ରହି-ଯାଇଛନ୍ତି । ମିଷ୍ଟର ଓ ମିସେସ୍ ଲାଲ୍ । ମିସେସ୍ ଲାଲ୍ । ବହୁତ ଦିନଯାଏ ଦେଖା ହୋଇନାହିଁ ।

ସେହି ଅବାଗିଆ ପିଲକିଆ ପାଗଳୀ ଝିଅ । ଏଇକ୍ଷଣି ବି' ସେମିତି ଅଛି । ଛୋଟ ଛୋଟ ଲମ୍ବା ଦାନ୍ତ ଧ'ଧାଡ଼ି, କୁଞ୍ଚକୁଞ୍ଚିଆ କହରା ବାଳ । କଣ କହିଥିଲା ତା ସେଦିନ ? ଝାଙ୍କୁଆ, ସନ୍ତସନ୍ତିଆ ଖରା ବର୍ଷାର ଗୋଟିଏ ଉପରବେଳାରେ କଲିକତା ଏସ୍‌ପ୍ଲାନେଡ଼୍‌ର ଛକରେ, ଟ୍ରାମର ଘର୍ଘର, ଫଳ ବିକାଳିର ଚିତ୍କାର, ଲୋକଙ୍କ କୋଳାହଳ ଭିତରେ ସେଇ ଛୋଟ, ସୂକ୍ଷ୍ମ କଥାଟିଏ । ଆପଣ ବଡ଼ଲୋକ ହେବେ ଅଜୟବାବୁ, କିନ୍ତୁ ସବୁଥିରେ ନୁହେଁ । ଭାବନ୍ତୁ ନାହିଁ ଯେ ଖାଲି ଟଙ୍କା ଗଢିବା ପାଇଁ ଆପଣ ଜନ୍ମ ହୋଇଛନ୍ତି—'

ତା'ପରେ ସେ ଚାଲି ଯାଇଥିଲା । ବାହା ହେବା ପୂର୍ବରୁ ଆଉ ତା' ସାଙ୍ଗରେ ଦେଖା ହୋଇ ନାହିଁ । କେତେକାଳ ହୋଇଗଲା ମିସେସ୍ ଲାଲ୍ । ବହୁ ବର୍ଷପରେ ଦିଲ୍ଲୀ ଆସିବା ପରେ ମିଷ୍ଟର ଲାଲ୍‌ଙ୍କ ସାଙ୍ଗରେ ଦେଖାହୁଏ ଛେଡେଥର ପାର୍ଟି ଇତ୍ୟାଦିରେ । ମିଷ୍ଟର ଲାଲ୍ ଜାଣନ୍ତି ଯେ ମିଷ୍ଟର ଦତ୍ତ ତାଙ୍କ ସ୍ତ୍ରୀଙ୍କ ପରିବାରର ଜଣେ ପୁରୁଣା ବନ୍ଧୁ । କିନ୍ତୁ ସେମିତିକା ବନ୍ଧୁ ଅନେକ । ସେ ସେଥିରେ ମୁଣ୍ଡ ଘୂରାଇ ନାହାନ୍ତି । ଆଉ ମିଷ୍ଟର ଦତ୍ତ ବି ସେଇ ପଗଲ୍‌ଟା ଶ୍ୟାମଳୀ, କେଟି' ସାଙ୍ଗରେ (ରବୀନ୍ଦ୍ର ନାଥଙ୍କର 'ଶେଷରେ କବିତା' ଛଳରେ ସେ ତାକୁ 'କେଟି' ଡାକୁଥିଲେ) ଖୋଲାଖୋଲି ଦି'ପଦ କଥା କହିପାରି ନାହାନ୍ତି । କିନ୍ତୁ ସେଇ ଅପ୍ରାପ୍ତ ବୟସ୍କା ବାଳିକାର ଈର୍ଷାବୋଳା କଥା ପଦକ ତାଙ୍କ ମନରୁ ଏକାବେଳକେ ପୋଛି ହୋଇ ଯାଇନାହିଁ । ବେଳେ ବେଳେ ମନେପଡ଼େ, କିନ୍ତୁ ସେ ହସି ଉଡ଼ାଇ ଦିଅନ୍ତି । ସୁଦୂର ଅତୀତର ସେଇ ପିଲକିଆ କଥାର କଣ ମୂଲ୍ୟ ଅଛି ଏଇକ୍ଷଣି ?

ଆଜି ମିସେସ୍ ଲାଲ୍‌ଙ୍କର ନାଁ ଶୁଣି କିନ୍ତୁ ସେହି ପୁରୁଣା କଥାଟି ଚେଇଁ ଉଠିଲା ଓ ଗୋଟାଏ ଯୋଜନା ହଠାତ୍ ତାଙ୍କ ମନକୁ ଛୁଇଁଲା । ସେ ତା'ର ବିସ୍ତୃତ ଭାବନାର ଲୋଭକୁ ସମ୍ଭାଳି ନେଲେ,—ନରୋଲାରେ ବସି ପାକଲେଇ ନେବେ ପାଟିକୁ ଯିବା ଆଗରୁ । ସେ ଶର୍ମା ସାହେବଙ୍କୁ ଆଉ ଥରେ ଧନ୍ୟବାଦ ଦେଲେ ମନେ ମନେ ଓ କହିଲେ, 'ଅଚ୍ଛା ହେଉ, ମୁଁ ଯିବି ।'

ତା'ପରେ ମିଷ୍ଟର ଚୌଧୁରୀ, ପୃଥୁଳ ଶରୀର ପ୍ରକାଣ୍ଡ ମୁଣ୍ଡ, ଛୋଟ ଛୋଟ ଆଖି, ହସିଲା ବେଳେ ସେ ଆଖି ଆହୁରି ଛୋଟ ଦେଖାଯାଏ । କିନ୍ତୁ ସେ ହସନ୍ତି ପ୍ରଚୁର । ସାଧାରଣ କୁଶଳ ସମ୍ଭାଷଣରେ ହସ, ରାଜନୀତି ଆଲୋଚନାରେ ହସ, ଆଜି ବର୍ଷା ହେବ କି କାଲି ବର୍ଷା ହେବ ପଚାରିଲାବେଳେ ହସ । ଏପରିକି ଲୋକେ କହନ୍ତି ଯେ କାହାକୁ ଚାକିରୀରୁ ବରଖାସ୍ତ କଲାବେଳେ ବି ସେ କାଗଜ ହାତକୁ ବଢ଼େଇ ଦେଇ କହନ୍ତି, ହେଁ—ହେଁ—ହେଁ,—ତୁମେ ଆଜି ଡିସ୍‌ମିସ,—ହେଁ, ହେଁ— ଏଥର ନିଜର ରାସ୍ତା ଦେଖ—ହେଁ, ହେଁ । ହସର ଏଇ ନିପୁଣ ପେଶୁଆ ଜୁଆର

ଭିତରେ ସବୁ ଲୁଚି ରହିଯାଏ,—ତାଙ୍କର ଦକ୍ଷତା, ତାଙ୍କର ବ୍ୟବହାରିଗତ ବୁଦ୍ଧି, ତାଙ୍କର ଅଭିଳାଷ ଓ ପରାଜୟ । ପାହାଚ ଚଢ଼ି ଚଢ଼ି ଉପରକୁ ଉଠିଛନ୍ତି, ମଝିରେ କେତୋଟା ପାହାଚ ଛାଡ଼ିଦେଇ । ବ୍ୟାଙ୍କରେ ଟଙ୍କା ମନ୍ଦ ରହିନାହିଁ । ଯୋଡ଼ାଏ କୋଠା ଭଡ଼ା ଲାଗୁଛି । ଖାଲି ଝିଅ ଦୁଇଟା ଭଲରେ ବାହା ହୋଇଗଲେ ସେ ହସି ହସି ବିଦାୟ ନେବେ,—ଅବଶ୍ୟ ଯମଦୂତ ତାଙ୍କ ହୃଦୟରେ ଯଦି ବାଟବଣା ନ ହୁଏ ।

ଦେହରେ ଥିବା ଧୋବ ଫରଫର ଖଦଡ଼ର ପୋଷାକ ଆଉଁଷି ଆଉଁଷି ସେ କହିଲେ,—ଆଚ୍ଛା, ଆଚ୍ଛା ଯିବା···ନିଶ୍ଚୟ ଯିବା···ହେଁ, ହେଁ—ଆଉ ମିସେସ୍ ଶର୍ମା ଭଲ ଅଛନ୍ତି ନା ?—ହେଁ, ହେଁ—ତାଙ୍କ ସାଙ୍ଗରେ ବହୁତ ଦିନ ହେଲା ଦେଖା ହୋଇନାହିଁ—'

ଶର୍ମା ଫେରି ଆସିଲାବେଳକୁ ତାଙ୍କର ହସ ଥମି ଯାଇଥାଏ ଓ ସେ ଭାବି ଚାଲିଥାନ୍ତି ପ୍ରଖର ଗତିରେ । ପୋଟବେସନର୍ ରାଓ,—ସେ ବି ନିମନ୍ତ୍ରିତମାନଙ୍କ ମଧ୍ୟରୁ ଜଣେ । ତାକୁ ଜୋର୍ କରିବା ପାଇଁ ଯଥେଷ୍ଟ ଚେଷ୍ଟା ହୋଇଛି । ପିଲାଟା ରାଜି ହେଲା ପରି ଜଣାଯାଏ, କିନ୍ତୁ ଘରେ ଆପତ୍ତି । ମିଷ୍ଟର ଦତ୍ତ ସେଇ ବିଭାଗର କର୍ତ୍ତା । ତାହା ପରିଚୟ ଅଳପ ବହୁତ ଅଛି । ତାଙ୍କୁ କୌଣସି ମତେ କହି, କୌଣସି ବଡ଼ ପଦର ଲାଳସା ପିଲାକୁ ଦେଖାଇ ପାରିଲେ, ହୁଏତ ସବୁ ସୁବିଧା ହୋଇଯିବ । ପାର୍ଟିରେ ଦୁଇ ପେଗ୍ ପରେ, ଯେତେବେଳେ ମିଷ୍ଟର ଦତ୍ତଙ୍କର ବଡ଼ସାହେବୀ ମନ ଟିକିଏ ନରମ ପଡ଼ିଯାଇଥିବ, ସେତିକିବେଳେ କଥାଟା ଉଠାଇବାକୁ ହେବ । କାହିଁକି ହେବନି ? ନିଶ୍ଚୟ ହେବ । ଯେତେହେଲେ ସ୍ୱଜାତି ତ' । ମିଷ୍ଟର ଚୌଧୁରୀ ପୁଣି ହସିଲେ,—ଏଥର ଅବଶ୍ୟ ମନେ ମନେ ।

ମିଷ୍ଟର ଲାଲ୍‌ଙ୍କର ଛାଉଆ ରଙ୍ଗର ଗ୍ରେଟିଆ କୋଠି,—ଚାରିଆଡ଼େ ପୋଷାକୀ ଲତା ଗୁଳ୍ମର ବିକାଶ । ଫୁଲ ନାହିଁ,—ଖାଲି ଠିଆ ପଥର ଓ ଲେଟେଇ ଯାଉଥିବା ଦୋହଲି ଉଠୁଥିବା ଲତା ପତରର ଶ୍ରେଣି । ଦେଖିଲେ ମନେହୁଏ ଘରଟି ଭିତରେ ଥିବା ଦୁଇ ପ୍ରାଣୀଙ୍କର ପ୍ରତୀକ । ମିଷ୍ଟର ଲାଲ୍ ସିଧା ସଳଖ ଦେହ । ବେଶଭୂଷାରେ ଦରଜୀର ସ୍ୱପ୍ନ । ଚାଲନ୍ତି ଜୋର୍‌ରେ । ଲେଖନ୍ତି ତରତର ହୋଇ । କିନ୍ତୁ ହସନ୍ତି କମ୍ ଓ କଥା କହନ୍ତି ଅଳପ । ଓଠ ଦୁଇଟା କିଏ ଯେମିତି ଅଠା ଦେଇ ଯୋଡ଼ି ଦେଇଛି । ଆଖି ଦୁଇଟି ନିବିଷ୍ଟ । କପାଳରେ ଚିରନ୍ତନ କୁଞ୍ଚନର ଆଭାସ । ସତେ ଯେପରି ଭାରତ ସରକାରର ସମସ୍ତ ଦାୟିତ୍ୱ ତାଙ୍କ ମୁଣ୍ଡ ଉପରେ, ମୁହୂର୍ତ୍ତେ ଓହ୍ଲାଇବାକୁ ଚାହେଁନା । ଆଉ ମିସେସ୍ ଲାଲ୍ । ସବୁବେଳେ ସେଇ ତରଳ, ଈଷତ୍-ମସୃଣ, ଈଷତ୍-ଉଷ୍ଣ ଚାହାଣୀ, ଉଦ୍ୟତ ହସ । ପ୍ରତି ମୁହୂର୍ତ୍ତରେ କିଏ ଯେମିତି ତାଙ୍କୁ

କୁଉକୁଉ କରିବାକୁ ଯାଉଛି । ମୁଣ୍ଡରେ ଗୋଟିଏ କହିଗ କୁଞ୍ଚକୁଞ୍ଚିଆ ବାଳ,—ସବୁବେଳେ ଉଡ଼ୁଥାଏ ଫୁରୁଫୁରୁ ହୋଇ, ଦେହରେ ଅଯତ୍ନରେ ବେଢ଼ା ହୋଇଥିବା ପତଳା ଶାଢ଼ୀର ପଣତ ପରି । କଥାରେ, ହସରେ, ଦେହ ହାତର ଭଙ୍ଗୀରେ ଉଡ଼ିଗଲା ପରି, ଖେଳାଇ ହେଲା ପରି ଭାବ, ମିଷ୍ଟର ଲାଲ୍‌ଙ୍କର ସୁଦୃଢ଼ ସ୍ଥିରତାକୁ ଗୋଳେଇ, ତରଳେଇ ଦେବ ପରି ! କିନ୍ତୁ ମିଷ୍ଟର ଲାଲ୍ ରହନ୍ତି ଧୈର୍ଯ୍ୟ ଓ ମିସେସ୍ ଲାଲ୍ ବଦଳନ୍ତି ନାହିଁ । ଜୁନ୍‌ହର ଅଫିସର ମହଲରେ ସେଇ ସବୁଦିନିଆ ଚର୍ଚ୍ଚା,—ଏ ଲଭ୍-ମ୍ୟାରେଜ୍ ସମ୍ଭବ ହେଲା କିପରି ? କିଏ ଆକର୍ଷଣ କଲା କାହାକୁ ?

ଶର୍ମା ସାହେବ ଆଶା କରି ନ ଥିଲେ ମିଷ୍ଟର୍ ଲାଲ୍ ତାଙ୍କର ନିମନ୍ତ୍ରଣ ରକ୍ଷା କରିବେ ବୋଲି । କାରଣ ସେ ପ୍ରାୟ କୌଣସି ପାର୍ଟିକୁ ଯାଆନ୍ତି ନାହିଁ ବିଶେଷ, ମିସେସ୍ ଲାଲ୍‌ଙ୍କୁ ପ୍ରତିନିଧି ଭାବେ ପଠାଇ ଦିଅନ୍ତି । କିନ୍ତୁ ସେ ରାଜି ହୋଇଗଲେ । ତା'ର କାରଣ ଶର୍ମା ସାହେବ ଚେଷ୍ଟା କଲେ ବି ଜାଣିପାରି ନ ଥାଆନ୍ତେ । କାରଣ ହେଉଛି ଏଇ ଯେ ସରକାରୀ କଣ୍ଟ୍ରାକ୍ଟର କୌଣସି ଉଦ୍ୟମରେ ସେ ଗୋଟାଏ ବଡ଼ ଭୁଲ୍ କରି ପକାଇଛନ୍ତି ଯାହା ଜଣାପଡ଼ିଛି ଏବେ ଓ ଯାହା ଫଳରେ ସରକାରଙ୍କୁ ବହୁ ଲକ୍ଷ ଟଙ୍କାର କ୍ଷତି ସହିବାକୁ ପଡ଼ିବ । ତାଙ୍କର ନିଜର ଅସାଧୁତା ନ ଥାଇପାରେ କିଛି, ତଥାପି ସେ ଭୁଲ୍‌ରୁ ଯେ କେହି ସେଇ ସିଦ୍ଧାନ୍ତରେ ଉପନୀତ ହେବ । ଏହାର ପ୍ରତିକାର ଅର୍ଥ ବିଭାଗର ବଡ଼କର୍ତ୍ତା ମିଷ୍ଟର ଦତ୍ତଙ୍କ ହାତରେ । ସେଇ ଚେଷ୍ଟା କଲେ ଭୁଲ୍‌କୁ ଘୋଡ଼ାଇ ଦେଇ ପାରନ୍ତି କିମ୍ବା ତା'ର ଗୁରୁତ୍ୱ କମେଇ ଦେଇ ପାରନ୍ତି । ତା' ନ ହେଲେ ଘଟଣାଟି ପ୍ରକାଶ ହୋଇଯିବ, ଅଡ଼ିଟ୍ ରିପୋର୍ଟରେ ବାହାରିବ, ପାର୍ଲିଆମେଣ୍ଟ କିମିଟି ଜାଣିବାକୁ ପାଇବ । ତାପରେ ଖବର କାଗଜରେ ଆଲୋଚନା, ମିଷ୍ଟର ଲାଲ୍‌ଙ୍କର ଯତ୍ନ ଅର୍ଜିତ ସୁନାମରେ କଳଙ୍କ—ଉଃ ! ନା—ନା—ତାହା ହୋଇ ପାରିବ ନାହିଁ । ସେ ନିଜେ ଗୃହସ୍ଥ ନ ଥିଲେ ଦତ୍ତଙ୍କର ସାହାଯ୍ୟ-ପ୍ରାର୍ଥୀ ହେବେ,—ଲୋକଟା ନିଜକୁ ଖୁବ୍ ବଡ଼ ମନେ କରେ । କିନ୍ତୁ କେତକୀର ପରିବାର ବନ୍ଧୁ ହିସାବରେ, କେତେକଙ୍କର ପିଲାଳିଆ କଥାର ପ୍ରଭାବରେ ଯଦି କିଛି ହୋଇପାରିଲା । ଭାବିଲାବେଳକୁ ମିଷ୍ଟର ଲାଲ୍‌ଙ୍କର ଆଙ୍ଗୁଳିମାନରେ ବାଧା ପଡ଼ିଲା । ସେ ହାତ ବାଡ଼େଇବାକୁ ଲାଗିଲେ ଟେବୁଲ୍ ଉପରେ । କିନ୍ତୁ ଉପାୟ ନାହିଁ । ତାଛଡ଼ା ଆଉ ଉପାୟ୍ ନାହିଁ । ସେ ଯିବେ ଶର୍ମାଙ୍କ ପାର୍ଟିକୁ କେତକୀକୁ ନେଇ ।

ତା'ପରେ ମିଷ୍ଟର୍ ନରସିଂହନ୍ । କଳା ମସିହା ଦେହ, ଛୋଟ ଛୋଟ ବାଳ ଲମ୍ବା ଶୁଆଥଣ୍ଟିଆ ନାକ ଓ ନାଲିଚିଆ ଆଖି । ରେଳବାଇ ବିଭାଗର ଜଣେ ମଝିମଝିଆ ବଡ଼ ସାହେବ । ସବୁବେଳେ କହନ୍ତି ଯେ ସେ ବେଶୀ ଉପରକୁ ଉଠିପାରି ଥାଆନ୍ତେ, ଯଦି ଅମୁକ ଖୋସାମତ କରି ଯଦଲେହନ କରି ତାଙ୍କର ନାଯ୍ୟ ଦାବିରେ

ବାଧା ଦେଇ ନ ଥାନ୍ତି । ତାଙ୍କର ବୁଦ୍ଧିମତ୍ତାର ପରିଚୟ ସେ ଦିଅନ୍ତି ବ୍ୟଙ୍ଗ କଟୁ କ୍ତିରେ । ଶାସନ ଧରିତଳକୁ ଯାଉଛି,—ଖାଲି ନାଲଫିତା ଖାଲି ଫାଇଲ ଗୃହ, ଅମୁକର ଏଇ ନବୋଧତା, ଅମୁକର ଏଇ କୀର୍ତ୍ତିରେ ସ୍ୱାର୍ଥର ଦସ୍ତି ଅଛି ଇତ୍ୟାଦି ଇତ୍ୟାଦିର । ଲମ୍ବା ଚରୁଟ୍‌ରେ ନିଆଁ ଲଗାଇ, ସେ ଶର୍ମାଙ୍କୁ ମଧ୍ୟ ବଖାଣି ବସିଲେ ନୂଆ ନୂଆ ରଯାଳିଆ ଗପ । ଶର୍ମାଙ୍କର ନ ଶୁଣି ଗୃତ୍ୟ ନ ଥିଲା । ଯାହାହେଉ ଶେଷରେ ସେ ଗୁରୁଗମ୍ଭୀର ଭାବରେ କହିଲେ, 'ଅଚ୍ଛା ହେଉ, ଯିବା ।' ସେତେବେଳେ ଗୋଟାଏ କଥା ତାଙ୍କ ମନକୁ ଧରି ନେଇଥାଏ ଯେ ତାଙ୍କର ଅପାଠୁଆ ପୁଅ ରାଘବନ ଯେଉଁ କାଗଜ ମିଲରେ ଦରଖାସ୍ତ ଦେଇଛି ସେଇ କମ୍ପାନୀ ଉପରେ ମିଷ୍ଟର ଲାଲ୍‌ଙ୍କର ଯଥେଷ୍ଟ ହାତଅଛି । କଥା ପ୍ରସଙ୍ଗରେ ଯଦି କିଛି ହୋଇ ପାରିଲା—

ଅନ୍ୟମାନେ ସହଜରେ ଆସିଗଲେ ଜାଲକୁ । ଶ୍ରେଷ୍ଠ ଶ୍ରେଷ୍ଠ ମାଛ । ଅହମଦ୍ , ଦାସ, ବୋଷ୍ , କିଷ୍ଟେନ୍ ଓ ପ୍ରୋଫେସରମାନେ । ବୁଦ୍ଧିଷ୍ଠ ଦଳ,—ବଡ଼ଲୋକ, ବଡ଼ ସାହେବମାନଙ୍କ ସହଣରେ ଗୋଟିଏ ସନ୍ଧ୍ୟାରେ ଲୋଭ ଏଡ଼ାଇବା କଷ୍ଟ ତାଙ୍କପାଇଁ । ନରମ ଗ୍ଲାଇଲେ, କାଚପିଆଲାର ସ୍ୱାଭାବିକ ଓ ନାସିକଣ୍ଠର ସଚେଷ୍ଟ ରୁଣୁଝୁଣୁ ଭିତରେ କେତେ ଗଣ୍ଠି ଫିଟିଯାଏ, କେତେ ମୋଡ଼ ସିଧା ହୋଇଯାଏ,—କିଏ କହିପାରିବ । କିଛି ନ ହେଲେ ପରିଚୟ, ପରିଚୟରୁ ଆଳାପ, ତା'ପରେ କେତେ ଦୂରକୁ କଳ୍ପନା ହେବନାହିଁ, ଖାଲି ବୁକୁରେ ସାହସ ଓ ମନରେ ଧୈର୍ଯ୍ୟ ଥିଲେ ହେଲା ।

ଆଉ ଜଣଙ୍କୁ ଡାକିଥିଲେ ଶର୍ମାହେବ, ଖାଲି ପ୍ରତିବେଶୀର ଖାତିର୍‌ରେ ଓ ସେ ଏଇ ପାର୍ଟିପାଇଁ ଯଥେଷ୍ଟ କାମ କରିଥିଲେ ବୋଲି । ସେ ହେଉଛନ୍ତି ରାଜେନ୍ ବାବୁ । କାମରେ କିରାଣୀ,—ଟୋକା, ଅଲ୍ପଦିନ ହେଲା ମଫସଲରୁ ଆଣିଛନ୍ତି ସ୍ତ୍ରୀଙ୍କୁ । ୪।୫ ବର୍ଷର ଗୋଟିଏ ପୁଅ । ମନରେ ଅସଂଖ୍ୟ ଆଶା, କଳ୍ପନା । ବଡ଼ଲୋକମାନଙ୍କ ସାଙ୍ଗରେ ମିଶିବାର କଳାକୁ ଅତି ଯତ୍ନରେ ଶିକ୍ଷା କରୁଛନ୍ତି ଏବେ ।

× × × ×

ପାର୍ଟିଜମି ଆସିଲାଣି । ସମସ୍ତେ ପ୍ରାୟ ଆଗରୁ ଆସି ସାରିଥିଲେ,—ମିଷ୍ଟର ଦତ୍ତଙ୍କ ଛଡ଼ା । ସେ ପ୍ରାୟ ପାଞ୍ଚମିନିଟ୍ ହେବ ଓହ୍ଲାଇଛନ୍ତି କାର୍‌ରୁ । ବେଳକଟଧା ଧଳା ସାର୍କସ୍କିନ୍‌ର କୋଟ୍ , ବୋତାମ ଘରେ ଶ୍ରେଷ୍ଠ ଗୋଲାପ କଢ଼ିଟିଏ ଖୋସା ହୋଇଛି । ମୁହଁରୁ ହସ ଉତୁରି ପଡ଼ୁଛି । ନମସ୍ତେ ଓ କରମର୍ଦ୍ଦନ ଅଜସ୍ର ବାଣ୍ଟି ହୋଇ ଯାଉଛି,—କିଏ ହୁଏତ ଏପାଖ ସେପାଖ ହୋଇ ପାଇଯାଉଛି ଢ଼'ଢ଼ଟା । ମିଷ୍ଟର୍ ଦତ୍ତ ଖୁସି ଅଛନ୍ତି । ମିଷ୍ଟର୍ ଦତ୍ତ ପାର୍ଟିକୁ ଉପଭୋଗ କରିବାକୁ ଆସିଛନ୍ତି ।

ସ୍ମୃତିରୁ ଆବେଗ, ଆବେଗରୁ ଉଦ୍ଧାରଣା । ତା'ପରେ,—ଅଦ୍ଭୁତ କଅଣ ? ମୋଗଲ ବାଦ୍‌ସାର ଝଙ୍କାର ଏବେ ବି, କାହିଁ ରହିଛି ଏଇ ରାଜଧାନୀରେ ।

ସେମାନେ ଚଞ୍ଚଳ ହୋଇ ଉଠିଲେ । ଗୋଡ଼ ଢ଼'ଟା ଗ୍ରୁଏଁ ଗ୍ରୁଏଁ ଟାଣି ହୋଇ ଆସୁଛି ମିଷ୍ଟର୍ ଦତ୍ତଙ୍କ ପାଖକୁ । ବେଳେ ବେଳେ ବାଧା ପାଇ ଫେରି ଆସୁଛି, ମାଡ଼ି ଯାଉଥିବା ସୁଅ କୁଟା ପଥରରେ ଲାଗି ଫେରି ଆସିଲାପରି । ତା'ପରେ ଚକା ଚକା ଭଉଁରୀ କିଛି ସମୟ ପାଇଁ ଓ ପୁଣି ସେଇ ମୁହାଣ ଆଡ଼କୁ—ମିଷ୍ଟର୍ ଦତ୍ତଙ୍କର ସେଇ ନାଲିଆ ଗୋଲାପଫୁଲ ପାଖକୁ । ଥୋକେ ମୁହାଁଇ ଥିଲେ ମିଷ୍ଟର୍ ଲାଲ୍‌ଙ୍କ ଆଡ଼େ । କିନ୍ତୁ ତାଙ୍କର ଚପା ଓଠ କୋହଳ ପଡ଼ି ନ ଥିଲା ଓ ତାଙ୍କର ତୀକ୍ଷ୍ଣ ଦୃଷ୍ଟି ସେଇ ମିଷ୍ଟର୍ ଦତ୍ତଙ୍କୁ ନେଇ ଘୂରି ବୁଲୁଥିଲା । ତେଣୁ ବାଧ୍ୟ ହୋଇ ସେମାନେ ବି ଟାଣି ହୋଇ ଆସିଲେ ସେଇ ପ୍ରାଥମିକ ବନ୍ଧୁ ଆଡ଼କୁ, ମିଷ୍ଟର୍ ଦତ୍ତଙ୍କର ସାନ୍ନିଧ୍ୟକୁ ।

ନେଳିଆ ଆକାଶର ଫାଳକରେ ମେଘ ନଇଁ ଆସୁଛି । କିନ୍ତୁ କାହାର ଲକ୍ଷ୍ୟ ନାହିଁ ସେଆଡ଼େ । ଆକାଶ ପୃଥିବୀର ଘୋଷଣା ଶୁଣିବାକୁ ତର କାହିଁ ଏଇକ୍ଷଣି ? ଏଇ ମୁହୂର୍ତ୍ତରେ ସତ ଖାଲି ମଣିଷର କଥା, ମଣିଷର ହସ, ତାର ଭ୍ରୂକୁଞ୍ଚନ ଗ୍ରୀବାଦୋଳନ, ଅବାନ୍ତରର ଭଙ୍ଗୀ । ବସୁଧା କମ୍ପିବ, ଆକାଶ ଫାଟିବ, ସେଇଥିରେ ଟିକିଏ ଏପାଖ ସେପାଖ ହେଲେ ।

ମିଷ୍ଟର୍ ଲାଲ୍‌ଙ୍କର ମୁନିଆ ଗୃହିଣୀ ସ୍ୱୀକାରୁ ମିଷ୍ଟର୍ ଦତ୍ତଙ୍କ ଯାଏଁ । କେତେକ କଣ କରି ପାରିବ ? ତା'କୁ ଭଲଭାବରେ ବୁଝାଇ ହୋଇ ପାରିନାହିଁ,— ହୁଏତ ବିବେକକୁ ଉପୁଜିଆ ସମ୍ମାନ ଦେଖାଇ । ଖାଲି ଏତିକି କୁହାହୋଇଛି ଯେ ମିଷ୍ଟର୍ ଦତ୍ତ ପାର୍ଟିରେ ଥିବେ ତାଙ୍କ ସାଙ୍ଗେ ତା'ର ମିଶିବା ଦରକାର,—ଯେହେତୁ ସେ ହେଲେ ପରିବାରର ଜଣେ ବିଶେଷ ବନ୍ଧୁ । ଆଉ ତାଙ୍କ ନିଜ କଥା ପଡ଼ିଲେ କହିଲେ କିଛି କ୍ଷତିନାହିଁ ଯେ ତାଙ୍କର ମନ ଭଲ ନାହିଁ, ଅମୁକ କେସ୍‌ରେ ଯେଉଁଥିପାଇଁ ସେ ମୋଟେ ଦାୟୀ ନୁହଁନ୍ତି । କିନ୍ତୁ କେତକୀ କ'ଣ ଜାଣିଲା ? ସେ କଣ ଜାଣିଲା କଥାର ମୂଳ କେଉଁଠି ଓ ତା'ର କ'ଣ କରିବା ଦରକାର ? ପ୍ରସ୍ତାବଟି ଦେଲାବେଳେ ତା'ର ଓଠରେ ଥିଲା ଗୋଟିଏ ନିଷ୍ପାପ ହସ,—ସେଥିରେ ଥିଲା କଣ ? —ତାଚ୍ଛଲ୍ୟ ନା କୌଶଳର ଦୃଢ଼ପଣ ? ମିଷ୍ଟର୍ ଲାଲ୍ ବିଚଳିତ ହୋଇ ଉଠିଲେ ।

ମିଷ୍ଟର ଚୌଧୁରୀ ବେଶି ହସି ପାରୁନାହାନ୍ତି । ସେ କେତେଥର ଚେଷ୍ଟା କଲେଣି ମିଷ୍ଟର୍ ଦତ୍ତଙ୍କୁ କହିବେ ତାଙ୍କ ଡ଼ିପାର୍ଟମେଣ୍ଟ କଥା । ତା'ର ଟିକିଏ ପ୍ରଶଂସା କରିବେ ଓ କହିବେ ଯେ ନୂଆ ଯୁବକ ଅଫିସରମାନଙ୍କୁ ଅଧିକ ଦାୟିତ୍ୱ ଦେବା ଉଚିତ, ଯେପରିକି ସେମାନେ ଶୀଘ୍ର ପ୍ରକାରର ଉତ୍ତରଦାୟିକାରୀ ହୋଇ ପାରିବେ । କିନ୍ତୁ କଥା

,ଶେଷ ନ ହେଉଣୁ, ହସ ନ ସରୁଣୁ ମିଷ୍ଟର୍ ଦତ୍ତ ଅଲଗା ହୋଇ ଯାଉଛନ୍ତି ଅନ୍ୟମନସ୍କ ହୋଇ,—ତାଙ୍କର ମନ ଆଉ କୁଆଡ଼େ । କ'ଣ କରାଯିବ ତା' ହେଲେ ? ମଙ୍ଗଳାଚରଣ ସରିଲେ ସିନା କଥାଟା ପଡ଼ନ୍ତା । ମିଷ୍ଟର୍ ଚୌଧୁରୀ ବିବ୍ରତ ହେଲେ ।

ମିଷ୍ଟର୍ ନରସିମ୍ହନ ଚୁରୁଟ ପରେ ଚୁରୁଟ ଧ୍ୱଂସ କରି ଚାଲିଛନ୍ତି । ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ଶିଳ୍ପର ସ୍ଥାନ, ତା'ପରେ କେତୋଟି ପ୍ରଧାନ ଶିଳ୍ପର ନାମକରଣ, ତା'ପରେ କାଗଜ ଶିଳ୍ପ ବିଷୟ,—ତାପରେ ସ୍ଥବିତ । କିନ୍ତୁ କଥା ଜମୁ ନାହିଁ । ମିଷ୍ଟର୍ ଲାଲ୍ ଶୁଣୁ ନାହାନ୍ତି ଓ ବେଳେ ବେଳେ ଏମିତି ଅନେଇ ରହୁଛନ୍ତି ତାଙ୍କୁ, ଯେମିତି କିଏ ଦେଖୁଛନ୍ତି ମାଇଲିଏ ଦୂରରେ ତାଙ୍କର ଦେହ ଭିତର ଦେଇ । ଉତ୍ତର ବଢ଼ଉଛନ୍ତି,—'ସୋ'—'ଷ୍ଟାଇଲ୍' । ମିଷ୍ଟର ନରସିମ୍ହନ୍ ବିରକ୍ତ ହେଲେ ।

ଆଉ ମିଷ୍ଟର ଶର୍ମା ଖାଲି ଏ ପାଖରୁ ସେପାଖ ହେଉଛନ୍ତି । 'ବେଅରର୍' ହାତରୁ ଛଡ଼ାଇ ସିଗାରେଟ୍ ଯାଚୁଛନ୍ତି, ଗ୍ଲାସ ବଢ଼ାଉଛନ୍ତି ଏ ହାତରୁ ସେ ହାତକୁ । ମିସେସ୍‌ମାନଙ୍କ ପାଖକୁ ଯାଇ ଦୋହରାଇ ଦେଉଛନ୍ତି ପାଣିପାଗ କଥା, ବଢ଼ି ଯାଉଥିବା ଦରଦାମ କଥା ଓ ସେଇ ପୁରୁଣା ପଦ୍ଧତିରେ ଆମୋଦର ସଙ୍ଗୀତ କରିବାକୁ ଯାଉଛନ୍ତି —ସ୍ୱାମୀମାନଙ୍କ ବିଷୟରେ ରୁଚିସଙ୍ଗତ ଥଟ୍ଟା କରି । କିନ୍ତୁ କେଉଁଠି ଯେମିତି କିଛି ରହିଯାଇଛି । ଚମକପ୍ରଦ ଚତୁର କଥା, ବିଜୁଳିପରି, ତାଙ୍କ ପାଟିକୁ କିମ୍ବା କାହାରି ପାଟିକୁ ଆସୁନାହିଁ । ହସଗୁଡ଼ା ଯେମିତି ଫିକା ଫିକା, ସାଦା, ଡେଉ ନ ଉଠାଇ ମାଟିରେ ମିଶି ଯାଉଛି । କାରଣ କ'ଅଣ ? କଣ ଅଭାବ ରହିଗଲା ? ସ୍ତ୍ରୀଙ୍କ ଆଡ଼କୁ ଅନାଇଲେ । ସେ ତ ତାଙ୍କ କର୍ତ୍ତବ୍ୟରେ ତ୍ରୁଟି କରି ନାହାନ୍ତି । ତେବେ ଅସମାପିକା ରହିଲା କେଉଁଠି ? ମିଷ୍ଟର ଦତ୍ତ ? ଶର୍ମା ଯାହେବ ପ୍ରମାଦ ଗଣିଲେ । ପାର୍ଟିଟା କ'ଅଣ ତାହେଲେ ଫସର ଫାଟିଗଲା ? କିଛି ମୂଲ୍ୟ ରହିଲା ନାହିଁ ? ରାଜେନ୍‌ବାବୁଙ୍କୁ ଅନାଇଲେ, ଲହରପହର ହେଉଛି ଖାଲି,—ପିଲାଟା ଧାଇଁଛି ପଛରେ । ମନେ ହେଲା ସେଇ ହେଉଛି ଧୂମକେତୁ, ଅମଙ୍ଗଳର ଦୂତ; ଏଇ ପାର୍ଟିର ତାଙ୍କୁ ମଳିନ କରି ଦେଇଛି । ଇଚ୍ଛା ହେଲା ଧକ୍କା ମାରି ନିକାଲି ଦିଅନ୍ତେ ତା'କୁ । ସବୁ ବିରକ୍ତର ପ୍ରତିକ୍ରିୟା ମେଣ୍ଟାଇ ଦିଅନ୍ତେ ତା' ଉପରେ ।

ଆଉ ସେମାନେ,—ଉପଗ୍ରହ ଦଳ,—ଦାସ, ବୋଷ ଇତ୍ୟାଦି ଖାଲି ଛୁଆଡ଼ ହୋଇ ଆସୁଥିଲେ ଥରକୁ ଥର ମିଷ୍ଟର ଦତ୍ତଙ୍କ ପାଖରୁ ପରିଧି ଆଡ଼କୁ ଓ ଶେଷକୁ ନିରୁପାୟ ହୋଇ ଶେଷ କରି ଚାଲିଥିଲେ ଗିଲାସ ପରେ ଗିଲାସ ।

ମିଷ୍ଟର ଦତ୍ତ । କଣ ହେଲା ତାଙ୍କର ? ପହଞ୍ଚିଲାବେଳର ସେଇ ସବୁ ହସ କିଏ ନେଲା କେମିତି ?

ମିଷ୍ଟର୍ ଦତ୍ତ କିନ୍ତୁ ବୁଝିପାରି ନାହାନ୍ତି ତାଙ୍କର କିଛୁ ହୋଇଛି ବୋଲି । ସେ ବୁଝିପାରି ନାହାନ୍ତି ତାଙ୍କ ଯୋଗୁ ପାର୍ଟିର ଢଙ୍ଗ ଉବୁଟୁବୁ ହୋଇ ଉଠିଲାଣି । ଆସିଲା-ବେଳଠୁ ତାଙ୍କର ଆଖି ସେଇ କେତକୀ ଉପରେ । ମନ ଭିତରେ ଥିବା ଯୋଜନାଟିକୁ ଏପାଖ ସେପାଖ କରି କେତେଥର ଦେଖି ସାରିଥିଲେ ଆସିଲା ଆଗରୁ । କିନ୍ତୁ ପହଞ୍ଚିସାରି କେମିତି ତାକୁ ଖଟାଇବେ ଭାବିପାରୁ ନାହାନ୍ତି । କେଟି ପ୍ରାୟ ଅଛି ହାତ ପାହାନ୍ତାରେ । ହସୁ ଛି ସେମିତି, ହାତ ହଲାଉଛି, ମୁଣ୍ଡବାଳ ଥରକୁ ଥର ଉଠାଇ ଦେଇ ପୁଣି ଗ୍ରହି ଦେଉଛି ଉଡ଼ିବାକୁ ଫୁରୁ ଫୁରୁ ହୋଇ । କିନ୍ତୁ ସେ ଯେମିତି ଧରା ଦେବାକୁ ଚାହେଁନା । ତା'ର ଆଖିରେ ଭଙ୍ଗୀରେ ଗୋଟିଏ ଅନିର୍ଦ୍ଦିଷ୍ଟ ଚଞ୍ଚଳତା, ଯାହାକୁ ବାନ୍ଧି ହେବ ନାହିଁ ଓଜନିଆ, ଭାବପ୍ରବଣ କଥାରେ । ମିଷ୍ଟର ଦତ୍ତ କେତେଥର ଚେଷ୍ଟା କଲେଣି ଅଲଗା ହୋଇଯିବେ ଅନ୍ୟମାନଙ୍କଠାରୁ । ଦୁଇମିନିଟ ପାଇଁ ପାଖରେ ପାଇବେ କେଟିକୁ ଓ ତା'ପରେ ପଚାରିବେ ଉତ୍ତର,—ସେଇ ଗୁମ୍ ସୁମ୍ ବାଷ୍ପିଲ ଅପରାହ୍ଣର ଉତ୍ତର । ମୁହୂର୍ତ୍ତିକ ପାଇଁ ହାତଟା ଧରି ପଚାରିବେ,—'ମନେ ପଡ଼େ ସେଇ ଉପରବେଳାର କଥା । ତୁମେ ହିଁ କହିଥିଲ ଫ୍ଲୁଟରେ, ଆଉ ହାରିଛି ମୁଁ ।' ତାପରେ ସେଦିନ ବହୁଦିନର ଜମିଲା ପାଣି ଝରି ଆସିବ ଓ ଅନ୍ତରର ସେଇ ଅପରାହ୍ଣଟି ଓଦା ଓ ଶାନ୍ତ ହୋଇଯିବ ସବୁଦିନ ପାଇଁ । କେଟି ଛଳ ଛଳ ହୋଇ ଉଠିବ, କିମ୍ବା ଗଦ୍‌ଗଦ ହୋଇଯିବ । ଗ୍ରହଣୀରେ ଥିବ କ୍ଷମା ଓ କଣ୍ଠରେ ଯାଚନା । କେଟି ଶ୍ରେଷ୍ଠ ହୋଇ-ଯିବ ଓ ଅଜୟବାବୁ ବଡ଼ ହୋଇଯିବେ । ମିଷ୍ଟର ଦତ୍ତଙ୍କ ବ୍ୟକ୍ତିତ୍ୱ ଉଦାର ଓ ବରିଷ୍ଠ ହୋଇଯିବ ଏଇ ଝିଅଟି ଆଗରେ । ସ୍ନିଗ୍ଧତର ହେଇ ଅପରାହ୍ଣଟିକି ପୂରିଯିବ ସବୁଦିନ ପାଇଁ ।

କିନ୍ତୁ କାହିଁ ?—ଏଇ ଚପଳ, ମୁଖର କେଟିକୁ ଛୁଇଁବେ କେମିତି ? ଏକୁଟିଆ ପାଇ ସନ୍ଧ୍ୟା ଓ ଆକାଶ ବିଷୟରେ ଦି'ପଦ କଥା ଆରମ୍ଭ କଲାବେଳକୁ କେଟି ମୁହଁକୁ ଈଷତ୍ ଉଠାଇ ଝିଇଗଲା ଭଳିଆ ଅନାଉଛି କିଛି ସମୟ ଓ ତା'ପରେ ପଚାରୁଛି ଗୋଟାଏ ଇତର ଘରୋଇ ପ୍ରଶ୍ନ—'ମିସେସ୍ ଦତ୍ତ ଫେରିବେ କେବେ ?' କିମ୍ବା 'ବଡ଼ଝିଅ ବର୍ତ୍ତମାନ କେଉଁଠି ଅଛି, ତା'ର ପିଲାପିଲି କେତୋଟି ?' ଇତ୍ୟାଦି ।

ଥରକୁ ଥର ସେଇ କଥା । ମିଷ୍ଟର ଦତ୍ତଙ୍କର ଧୈର୍ଯ୍ୟ ତୁଟିବା ଉପରେ । ଗାଲ ଦି'ଟା ଟାଙ୍କି ହୋଇ ଆସିଲାଣି । ଚବୁକ ଓଠକୁ ଟାଣି ଧରିଲାଣି ଜୋର୍‌ରେ । ନାକପୁଡ଼ା ଫୁଲି ଉଠିଲାଣି । ଖାଲି ଆଖି ଦୁଇଟା ଜଳିଉଠିବାକୁ ଟିକିଏ ବାକୀ ।

ମିଷ୍ଟର୍ ଦତ୍ତ ଅନାଇଲେ କେଟି ଆଡ଼କୁ । ଇଚ୍ଛା ହେଲା କିଛି ଗୋଟାଏ କହି ତା'ର ସେଇ ଚପଳ ପକ୍ଷୀ-ଭାବଟିକୁ ଶୁଖାଇ ହେମାଳ କରିଦେବେ ।

କିଛୁ ଗୋଟାଏ କିହ । ହଠାତ୍ ମିଷ୍ଟର ଦତ୍ତଙ୍କ ମନକୁ ଛୁଇଁଲା ଗୋଟିଏ ଉପାୟ । କିଛୁ ଉପକ୍ରମଣିକା ଦରକାର ନାହିଁ । ଖାଲି କେଟି ପାଖରେ ପହଞ୍ଚି ଚଟ୍‌କିନି ଡାକିବେ ଆସ୍ତେ କରି—କେଟି । ତା'ପରେ—। ତା'ପରେ ନିଶ୍ଚୟ ହେଇ ତାକରେ ଦେହଭ୍ରଣ୍ଟା ଅଗୀତ ଫେଇଁ ଉଠିବ । କେଟିର ଫୁଲଫାଙ୍କିଆ ଚପଳତା ଥମକି ରହିଯିବ ମୁହୂର୍ତ୍ତେ ଓ ହେଇ ଅବାଧରେ—

ମିଷ୍ଟର୍ ଦତ୍ତଙ୍କର ଭାବନା କ୍ଷିପ୍ର ହୋଇ ଉଠିଲା । ଆଉ ଦ୍ୱିଧା ନାହିଁ, ବାଛ ବିଚାରର ବେଳ ନାହିଁ । ଶିକାରର ଶେଷ ମୁହୂର୍ତ୍ତ । ଘଡ଼ିସନ୍ଧି ବେଳ । ଏପାଖ ନ ହେଲେ ସେପାଖ । 'କାର୍ଯ୍ୟଂ ବା ସାଧୟେତ୍—।' ମିଷ୍ଟର୍ ଦତ୍ତଙ୍କର ସୁପ୍ତ ଯୌବନ ଉସ୍‌କେଇଲା ଆଗେଇବାକୁ, କିଛୁ ଗୋଟାଏ କରିବାକୁ । ପ୍ରବାଶର ଦୁଃଖାବ ଖାତା ପନ୍ତରେ ପନ୍ଥ ରହିଲା । ମିଷ୍ଟର ଦତ୍ତ ଆଗେଇଲେ । ଆକାଶର ସୁଦୂର ଗର୍ଜ୍ଜନ ଶଙ୍ଖ ବଜାଇଲା ।

ମିଷ୍ଟର୍ ଦତ୍ତ ଆଗେଇଲେ । କିନ୍ତୁ ଏ କ'ଣ ? କେଟି ଏମିତ ଅନାଇଛି କାହିଁକି ? ମନେ ହେଲା ଯେ ସେମିତ ତାଙ୍କ ଦୃଷ୍ଟି ଦେଖିପାରୁଛି ଓ ପ୍ରସ୍ତୁତ କରି ନେଉଛି ନିଜକୁ । ତାର ସହଜ ସରଳତା ରହିଯାଉଛି ଅପ୍ କରି । କିନ୍ତୁ ତା' ବଦଳରେ ଆସି-ନାହିଁ ନରମ ପ୍ରବଣତା । ସେ ଗୃହିଣୀ ଯେମିତ ଶୁଖିଲା, ଶାଣଦିଆ, ପ୍ରତିବାଦ, ପ୍ରତି-ଶୋଧର ଗୃହିଣୀ । ଅପେକ୍ଷା କରି ରହିଛି ଅଘାତ ଦେବ ବୋଲି, କ୍ଷଣକରେ ଭାଙ୍ଗି ଫୋପାଡ଼ିଦେବ ତାଙ୍କର ଭୀରୁ ଅବଦାନ ।

ମିଷ୍ଟର୍ ଦତ୍ତ ଶଙ୍କିତ ହେଲେ ଓ ମିସେସ୍ ଲାଲ୍ ଗୃହିଁ ରହିଲେ ସେମିତ, ତପସ୍ୟା-ଭଙ୍ଗର ଫଟୋ ଗୃହିଣୀରେ ।

ସେତେବେଳକୁ ମେଘ ପାଖେଇ ଆସିଲାଣି । ସନ୍ଧ୍ୟାର ଛାଇକୁ କରିଦେଲାଣି କଳା ଓ ଗହଳିଆ ।

ମିଷ୍ଟର୍ ଲାଲ୍ ପ୍ରମୁଖ ଦେଖିଛନ୍ତି ସେଇ ଦୁଇଜଣଙ୍କର ଗୃହିଣୀ । ଉଦ୍ଦେଶ୍ୟ ବୁଝି ପାରିନାହାନ୍ତି,—ଖାଲି କ୍ଷୁବ୍ଧ, ସ୍ତମ୍ଭିତ ହୋଇ ରହିଛନ୍ତି । କିଛୁ ହୋଇ ପାରିଲା ନାହିଁ । ଆଉ କିଛୁ ହେବ ନାହିଁ । ଏହି ନାଶର ଶେଷ ।······

—···ସେତିକିବେଳେ । ଘଟଣାଟି ନିଜକୁ ଜଣେଇ ନଥିଲା ଆଗରୁ । କିନ୍ତୁ ଘଟିଲା,—ସେଇ ଅଘନିଆ ମେଘର ବିଜୁଳି ପରି ।

କେହି ଅନେଇ ନ ଥିଲେ ସେ ଆଡ଼କୁ । ଅନେଇଲେ ସେତେବେଳେ ମିସେସ୍ ଶର୍ମା ଚିତ୍କାର କରି ଉଠିଲେ ଶରବିଦ୍ଧା ପ୍ରାଣୀପରି ।

କି ଅସମ୍ଭବ ଦୃଶ୍ୟ ସେ ! ଚାରି ପାଞ୍ଚ ବର୍ଷର ପିଲାଟାଏ । ହାତଯାକ ମୁହଁଯାକ ସାଲୁବାଲୁ ଧଳା ଧଳା ମେଞ୍ଚା ମେଞ୍ଚା ଆଇସ୍‌କ୍ରିମ୍ !

ସେ ପୁଣି ହସୁଛି । ମେଲାଇ ଦେଇଛି ଦି'ପାଟି ଦାନ୍ତ । ଉପର ପାଟିର ବଡ଼ ଦାନ୍ତ ଦି'ଟା,—ଆଉ ଧାଡ଼ିଏ ଛୋଟ ଛୋଟ । ସବୁଗୁଡ଼ା ହସୁଛି, କଥା କହୁଛି । ଆଇସ୍-କ୍ରିମ୍ ।

ସେଇ ମୁହୂର୍ତ୍ତରେ କେତେ ପ୍ରକାର ଚଳନ୍ତବ ଖେଳିଗଲା, ବିରକ୍ତି, ବିସ୍ମୟ, କୁତୂହଳ, ଆମୋଦ ଓ ତା'ପରେ ହସ ।

ସେମାନେ ହସିଲେ । ମିଷ୍ଟର ଚୌଧୁରୀ ହସି ହସି ଢଳିବାକୁ ଲାଗିଲେ । କିନ୍ତୁ ଅନ୍ୟମାନେ ହସିଲେ ଆଭିଜାତ ଆମୋଦର ଭଙ୍ଗୀରେ । ମିଷ୍ଟର ଦତ୍ତ ଈଷତ୍ ଭ୍ରୂକୁ କୁଞ୍ଚେଇ, ଓଠକୁ ଲମ୍ବେଇ ଦେଲେ ଟିକିଏ । ମିଷ୍ଟର ନରସିମ୍ହନ ଗ୍ରେହିଆ 'ହା-ହା' ଟିଏ କହି ଚୁରୁଟ୍ ଟାଣିବାକୁ ଲାଗିଲେ ଜୋର୍‌ରେ । ମିସେସ୍ ଲାଲ୍ 'ମାଇଁ (My)' କହି ମୁହଁକୁ ଅଧା ମେଲା କରି ରହିଗଲେ ଟିକିଏ,—ଓଠ ମଝିରେ ହସ ବସିଗଲା ପରି ! ଖାଲି ହସିବାକୁ ଚେଷ୍ଟା କଲେ ନାହିଁ ମିଷ୍ଟର ଲାଲ୍ । ତଥାପି ତାଙ୍କୁ ଲକ୍ଷ୍ୟ କଲେ ଦେଖି ହୋଇଥାନ୍ତା ଚହଲି ହସର ଗ୍ରୁଇ, ଆଖିରେ ଓ ଓଠରେ ।

ହସ ଥମିଗଲା । କିନ୍ତୁ ସେଇ ମୁହୂର୍ତ୍ତରେ, ଶିଶୁର ସେଇ ନିର୍ବାହ, ସରଳ ନିର୍ବୋଧତାରେ ବୋଧହୁଏ କେଉଁଠି କିଛି ଖୋଲି ହୋଇଗଲା । ସଭ୍ୟତାର ଚପା ପୋଷାକ ହୁଗୁଳିଗଲା ଟିକିଏ । ସହଜ ସାଧାରଣ ଦୁନିଆର ଖୋଲା ପବନ ଝଲକାଏ ବାଜିଗଲା ସଭିଙ୍କ ଦେହରେ । ଉଦ୍ଦେଶ୍ୟ ଉତ୍କଟ ହେଲା ବାହାରି ଆସିବ ଫମ୍ପାରର ଖୋଳରୁ ।

ତା' ପରେ,—ମିଷ୍ଟର ଦତ୍ତ ଅନାଇଲେ କେଟି ଆଡ଼କୁ, ସେ ହସୁଛି । ତାଙ୍କର ପାଟିରୁ ଅଜାଣତରେ ବାହାରି ଆସିଲା—'କେଟି !' ହାତ ଛୁଇଁଦେଲା ହାତକୁ ।

କେହି ଦେଖି ପାରିଲେ ନାହିଁ ସେଇ ଦୃଶ୍ୟ । କିନ୍ତୁ ସମସ୍ତେ ଦେଖିଲେ ତା'ପରେ ମିଷ୍ଟର ଦତ୍ତଙ୍କର ମୁହଁରେ ଥିବା ସ୍ନିଗ୍ଧ ଶୀତଳ ହସ । ସେମାନେ ଖୁସି ହେଲେ,—ମିଷ୍ଟର ଲାଲ , ମିଷ୍ଟର ନରସିମ୍ହନ, ମିଷ୍ଟର ଚୌଧୁରୀ ଓ ଅନ୍ୟମାନେ କେଉଁଥିପାଇଁ ବୁଝିପାରିଲେ ନାହିଁ । ଖାଲି ଗୋଟାଏ ଅହେତୁକ ଭାବନା,—ସବୁ ଠିକ୍ ହୋଇଯିବ ।

ରାଜେନ୍ ବାବୁର ସ୍ତ୍ରୀ ସେତେବେଳେ ପିଲାଟାକୁ ଟାଣି ଟାଣି ନେଇଯାଉଥାଏ ଘର ଭିତରକୁ ଓ ସେ କାନ୍ଦୁଥାଏ ଭେଁ ଭେଁ ହୋଇ । ରାଜେନ୍ ବାବୁ ପାଖରେ ରହି

ପାଟି କରୁଥାଏ,—'ଏମିତିକା ଅଭଦ୍ର, ଅଶିକ୍ଷିତ ପିଲା,—ମୁଁ ହେଇଲାଗି ମନା କରୁଥିଲି—'

କିନ୍ତୁ ସେଆଡ଼େ କାହାରି ନଜର ନଥିଲା । ଖାଲି ଶର୍ମା ସାହେବଙ୍କ ଆଖି ପଡ଼ିଥିଲା ତେଣେ,—କିନ୍ତୁ ସେ ସ୍ୱପ୍ନ ଦେଖୁଥିଲେ ଲଣ୍ଡନର କୁହୁଡ଼ି ଘେରା ରାସ୍ତା···
···ମଧ୍ୟୋପସାଗରର ନେଳିଆ ପାଣିର ଚକ୍ ଚକ୍······ଓ ନ୍ୟୁୟର୍କର ଭିଡ଼,—
ନାଲି ନେଳି ଆଲୁଅରେ ଝଲମଲ······।



# ଆଇସ୍-କ୍ରିମ୍

ପାଶ୍ଚାତ୍ୟ ସଭ୍ୟତାରୁ ଆମଦାନି କରାଯାଇଥିବା 'ପାର୍ଟି' ନାମକ ଅନୁଷ୍ଠାନକୁ ମୋର ମହା ଭୟ । ସେଥିରେ ଯୋଗ ଦେବାକୁ ହେଲେ ଯେଉଁଠି ପାରେ ସେଠି ବସି ଯାଇ ହେବ ନାହିଁ, ଲମ୍ବି ଯାଇ ହେବ ନାହିଁ, ହାଇ ମାରି ହେବ ନାହିଁ ଚର୍ବ୍ୟକୁ ସଶବ୍ଦରେ ଗ୍ରେବେଇ ହେବ ନାହିଁ, ଲେହ୍ୟକୁ ଗ୍ରୁଟି ହେବ ନାହିଁ, ପେୟକୁ ସୁଡ଼୍ ସୁଡ଼୍ କରି ପିଇ ହେବ ନାହିଁ, ଇତ୍ୟାଦି କଟକଣାକୁ ଛାଡ଼ିଦିଅ । ମୁଁ ସେସବୁକୁ ଅନେକଦିନରୁ ଆୟତ୍ତ କରି ସାରିଲିଣି । କିନ୍ତୁ ଦୁଃଖର ବିଷୟ ଯେ ପାର୍ଟିରେ ବେଶି ସମୟ ଚୁପ୍ ହୋଇ ରହି ହେବ ନାହିଁ । ହସିବାକୁ, କଥା କହିବାକୁ ,ଅଙ୍ଗଚାଳନା କରିବାକୁ ଅର୍ଥାତ୍ ମିଶିବାକୁ ପଡ଼ିବ । ଏଇଠି ବିପଦ । କାରଣ ସଦାସର୍ବଦା ମନେ ରଖିବାକୁ ହେବ ପାର୍ଟିଆଳାପର ଶବ୍ଦ କେବଳ ଶବ୍ଦ । ସଙ୍ଗୀତ ପରି ମନେ ହେଉଥିଲେ ଅଧିକ ଭଲ, କିନ୍ତୁ ସେଥିର ଅର୍ଥ ନାହିଁ । ପାର୍ଟି ଆଚରଣରେ ଅର୍ଥ ଥିଲେ କଣ ହେବ, ଉଦ୍ଦେଶ୍ୟ ନାହିଁ । ଯେଉଁ ଭଦ୍ରଲୋକ ଆଜିଠାରୁ ତୁମର ବିଶେଷ ବନ୍ଧୁ ହୋଇଗଲେ ବୋଲି ମନେ ହେଉଛି, ଯେହେତୁ ତାଙ୍କର ରୁଚି ତୁମର କଳାତ୍ମକ (ଯଥା ମୋଗଲ ପେଣ୍ଟିଙ୍ଗଠାରୁ ରାଜପୁତ ପେଣ୍ଟିଙ୍ଗ ଭଲ) ଅବା କାବ୍ୟିକ (କୀଟ୍ସଙ୍କଠାରୁ ଶେଲି ଭଲ) ରୁଚି ସାଙ୍ଗରେ ଖାପ୍ ଖାଇ ଯାଉଛି, ସେ ପରକ୍ଷଣରେ ଆଉ କାହା ସାଙ୍ଗରେ କ୍ରିକେଟ ଅବା କୋଣାର୍କ ନେଇ ତଦ୍ରୂପ ଅନବଦ୍ୟ ଚତୁରତାର ଚମକ ଦେଖାଇ ପାରନ୍ତି । ତାଙ୍କ ପାଇଁ ମଣିଷ ହେଉ ବା ବିଦ୍ୟା ହେଉ କେବଳ ପରିଚୟ ଲୋଡ଼ା, ସମାଜରେ 'ମିଶିବା' ପାଇଁ । ଘନିଷ୍ଠତା ଆଉ କାହା ଘରେ, ପ୍ରୟୋଜନ ମୁତାବକ । ଯେଉଁ ଭଦ୍ରମହିଳାଙ୍କ ପ୍ରାଣପ୍ରାଚୁର୍ଯ୍ୟ ନେଇ ପାପ ଚିନ୍ତା ମନରେ ଆସୁଛି, ସେ ସମ୍ଭବତଃ ତୁମ ଚିନ୍ତାକୁ ଜଳଜଳ ହୋଇ ଦେଖି ପାରୁଛନ୍ତି; ତାହାହିଁ ତାଙ୍କର ଆନନ୍ଦ, କୋଟିଏରୁ ଗୋଟିଏ ସଫଳତା । ପାର୍ଟି ସରିଗଲା ପରେ ତାଙ୍କ ପ୍ରାଣର ଟେହେଳ କେମିତିକା, ତାଙ୍କ ସ୍ୱାମୀ ବୁଝିବେ କିମ୍ବା ତାଙ୍କ ଗୃହର ପୃଷ୍ଠାଶ୍ରୀ । ଏବଂ ପାର୍ଟିରେ ଦାଆନଆରେ ସବୁଠାରୁ ଗର୍ହିତ ଅକ୍ଷମଣୀୟ ଦୋଷ ହେଲା ସିରିଅସ୍ ହେବା,

ଆଳାପକୁ ଆଲୋଚନା ବୋଲି ମନେ କରିବା, ରାଜନୀତି ହେଉ ବା ଦର୍ଶନ ହେଉ ଯେକୌଣସି ବିଷୟବସ୍ତୁକୁ ନେଇ ତର୍କ କରିବା । ମୋତେ ବାରମ୍ବାର ଚେତାଇ ଦିଆ ହୋଇଛି ଯେ ସଭ୍ୟମାନବ ପାର୍ଟି ନାମକ ଅନୁଷ୍ଠାନକୁ ଗଢ଼ିଛି କେବଳ ନିଜକୁ ହୁଗୁଳେଇବା ପାଇଁ, ଅସରନ୍ତି ସମୟରୁ ଯତ୍‌କିଞ୍ଚିତ୍ ହତ୍ୟା କରି ଖୁସି ହେବା ପାଇଁ । ହାୟ ! ପାର୍ଟିର୍ ଏଇ ମୂଳନୀତି କେତୋଟି ମୁଁ ଆଜିଯାଏଁ ହାସଲ କରିପାରିଲି ନାହିଁ ।

କିନ୍ତୁ ମୁଁ ମାନି ନେଇପାରି ନାହିଁ ଯେ ସଭ୍ୟଜଗତର ଏଭଳି ଏକ ବିରାଟ ବ୍ୟାପକ ଅନୁଷ୍ଠାନ ଆମର ମୂଲ୍ୟବାନ ସମୟର ଜାଲି ଭିତରେ ଗୋଟାଏ ଅର୍ଥହୀନ ଉଦ୍ଦେଶ୍ୟହୀନ ଫାଙ୍କ ହୋଇ ରହିପାରେ । ତା' କେମିତି ହେବ ? ନା, ଅର୍ଥ ଅଛି, ଉଦ୍ଦେଶ୍ୟ ଅଛି, ହୁଏତ ଗହନରେ । ସେହେତୁ ସଭ୍ୟସମାଜର ଅପରିହାର୍ଯ୍ୟ ଯାତନା 'ଉଦ୍‌ବେଗ' (angst) ମଧ୍ୟ ଅଛି । ତେଣୁ ପାର୍ଟିରେ ହାଲିଆ ହେବାକୁ ହେବ ନାହିଁ । ତାହାହିଁ ବୁଦ୍ଧିମାନର ଲକ୍ଷଣ । 'ଆଇସ୍-କ୍ରିମ୍'ର ନାୟକ ନାୟିକାଙ୍କ ଜରିଆରେ ମୁଁ ଏହି ଅନୁଭୂତ ସତ୍ୟର ଘୋଷଣା କରିବାକୁ ଯାଇଛି । କହିପାରନ୍ତି ଯେ ଏଥିରେ ମୋର ବିଫଳ ପାର୍ଟିମାନଙ୍କର ଅସୂୟା ଫୁଟି ଉଠିଛି, ସେକଥା ଭିନ୍ନ ।

ଏହା ମଧ୍ୟ ପଚାରି ପାରନ୍ତି ଯେ ସବୁ ପାର୍ଟିରେ ଏଭଳି ଗୋଟାଏ ଅସଭ୍ୟ ଅଶିକ୍ଷିତ ଆଇସ୍‌କ୍ରିମ୍-ଖିଆ ପିଲା ନ ଥିଲେ ଚଳିବ ନାହିଁ ? ନ ହେଲେ କଣ ଉଦ୍ଦେଶ୍ୟ ମାଡ଼ ଖାଇଯିବ ? ମୁଁ ତାର ଉତ୍ତର ଦେବାକୁ ଅକ୍ଷମ ।

ବହୁବର୍ଷ ପୂର୍ବର ଏହି ଗଳ୍ପଟିକୁ ପଢ଼ିଲା ପରେ ଜଣେ ସମାଲୋଚକ ବନ୍ଧୁ "ଭୁବନେଶ୍ୱର ରିଭିଉ"ରେ ଉଦୀୟମାନ ଲେଖକଙ୍କୁ ପ୍ରଶଂସା କରିବାକୁ ଯାଇ କହିଥିଲେ ଯେ ସେ ଉଚ୍ଚାଙ୍ଗ ସମାଜ (high soc ety)ର କାରବାରକୁ ଦର୍ଶାଇବାରେ ସିଦ୍ଧହସ୍ତ । ଦୁର୍ଭାଗ୍ୟ ଯେ ମୁଁ ଆଜିଯାଏଁ ଏହି ବଦନାମରୁ ରକ୍ଷା ପାଇପାରି ନାହିଁ ।

●

କଟକ
୭ ଜୁଲାଇ ୮୭

# ଦ୍ୱିତୀୟ

ଲାଲ୍ ସୂର୍ଯ୍ୟ ଉଇଁ ଆସୁଛି । ରାଜେନ୍ଦ୍ରର ମନେହେଲା ଯେ ସେ ହେଉଛି ଅନୁପମା ମଥାର ସିନ୍ଦୁର, ଦପ୍ ଦପ୍ ହୋଇ ଜଳୁଉଠୁଛି ସତୀତ୍ୱର ଗୌରବ ଦେଖାଇ ।

ଅନୁପମା । ଗଛ ପତର, ପାଣି ପବନ ସବୁଥିରେ ଭରି ରହିଛି ସେ । ଏଇ ସେ କାନ୍ଦୁଛି । ଏଇ ଯେ ରାତିର ହାଇତା ପାଣି ଗଛ ପତର ସନ୍ଧିରୁ ଝରିପଡ଼ୁଛି, ସେ ହେଉଛି ତା'ର କାନ୍ଦଣା ।

ସେ କହୁଛି—'ତୁମେଇ ନା କହିଥିଲ ମୋତେ ଛାଡ଼ି ରହିପାରିବ ନାହିଁ ବୋଲି ? ମୁଁ ମରିଗଲେ ତୁମର ଜୀବନ ଶୂନ୍ୟ ହୋଇ ରହିବ, ଚିରଦିନ ପାଇଁ ?'

ରାଜେନ୍ଦ୍ର ନିଜକୁ ଦେଖିଲା ଦର୍ପଣରେ । ରାତିରେ ନିଦ ହୋଇ ନାହିଁ । ଆଖି-ଗୁଡ଼ାକ ରଙ୍ଗା ଦେଖାଯାଉଛି । ଏଇ ଆଖିକୁ ଅନୁପମା ପ୍ରଶଂସା କରି କହିଥିଲା, 'ସତରେ—ତୁମର ଏଇ କବି ଆଖି ଦି'ଟା ମୋତେ ଭାରି ଭଲ ଲାଗେ ।'

ଅନୁପମା ଥାଆନ୍ତା କି ଆଜି ! ସେ ତା'କୁ ସବୁ କଥା କହିଦିଅନ୍ତା । ତା'ଠୁ କ୍ଷମା ମାଗି ନିଅନ୍ତା । ଅନୁପମାର ସରଳ ହୃଦୟ ନିଶ୍ଚୟ କ୍ଷମା ଦେଇ ପାରନ୍ତା ।

କିନ୍ତୁ ଅନୁପମା ନାହିଁ, ସେଇଲାଗି ତାର ସ୍ମୃତି ପ୍ରତ୍ୟେକ ବସ୍ତୁରେ ଲାଖିରହି ତା'କୁ ଉପହାସ କରୁଛି ।

ଏଇ ଘରେ ସେଇ ପୁରୁଣା କାଲେଣ୍ଡର ଥୁଆ ହୋଇଛି, ଯେଉଁଥିରେ ପ୍ରତ୍ୟେକ ଦିନ ତାରିଖ ବଦଳାଇବାକୁ ହୁଏ । ପ୍ରତ୍ୟେକ ଦିନ ସକାଳୁ ଉଠି ତାରିଖ ବଦଳାଇ ଅନୁପମା ତା'କୁ ଉଠାଏ ଓ ଥଟ୍ଟା କରେ ଯେ ସେ ଆଗ ଯେଇ କାମଟା ସାରିଛି ବୋଲି । ରାଜେନ୍ଦ୍ର ସବୁଦିନେ ଚେଷ୍ଟା କରେ ଆଗରୁ ଉଠିବାକୁ, କିନ୍ତୁ ପାରେନା । ଅନୁପମା ତା'କୁ ଜିତେ ସବୁଦିନେ ।

ଆଜି ବି' ସେ ଜିତିଛି । ଆଗରୁ ଚାଲିଯାଇ, ତା'ର ଦୁଃଖ ଦେଖି ସେ ଥଟ୍ଟା କରୁଛି, କହୁଛି—'ଏଇ ଦେଖ, ମୁଁ ତୁମକୁ ଜିତି ଯାଇଛି । ତୁମେ ତୁମର କଥା ରଖିପାରିନ—ଛିଃ···ଛି ।'

ରାଜେନ୍ଦ୍ରର ରାଗ ହେଲା ଅନୁପମା ଉପରେ । କେଉଁ ସ୍ୱଭାବରେ ଅନୁପମା ତାଠାରୁ ବେଶୀ ଉନ୍ନତ ? କିଏ କହେ ଯେ ଅନୁପମାର ଭଲ ପାଇବା ତା'ର ଭଲ

ପାଇବାଠାରୁ ବେଶୀ ନିବଡ଼, ବେଶି ଗମ୍ଭୀର ? ବଞ୍ଚିଥିଲାବେଳେ ତା' ହସରେ ଅନୁପମା ହସିଛି, ଶୃଙ୍ଖଳାରେ ସହିତ ଚଳାଇଛି ପରିବାରକୁ, ତାକୁ ଖୁସି କରି ପାରିଛି । କିନ୍ତୁ ଅନୁ ଚାଲିଗଲା ପରେ ତା'ର ଅପରିମିତ ଲୁହ ଓ ହା'ହୁତାଶରେ କ'ଣ କିଛି ମୂଲ୍ୟ ନାହିଁ ?

ଅନୁ ଯେ ତା'ର ଥିଲା ! ସେ କ'ଣ ସତରେ ତା'କୁ ଆଉ ଅଟକା କରିପାରିବ । ଜୀବନର ସେପାଖରେ ଥାଇ ?

କିନ୍ତୁ—କିନ୍ତୁ—ଜୀବନରେ ଏଇ ଅସମ୍ଭବ ସମ୍ଭବ ହୁଏ କିପରି ? ଅଘଟଣ ଘଟେ କେମିତି ?

କାଲି ରାତିର କଥା—କେମିତି ସେ ଭୁଲିବ ? କେମିତି ଭୁଲି ପାରିବ ?

…କାଲି ରାତିଟା ଯେମିତି ସବୁ ରାତିଠାରୁ ବେଶୀ କଳା ହୋଇଥିଲା । ଆଉ ତା' ଦେହଟା ହୋଇଥିଲା ପାଣିରେ ଜୁଡ୍‌ବୁଡ୍‌ ।

ଏକୁଟିଆ ଘରର ବାରଣ୍ଡାରେ ସେ ବୁଲୁଥାଏ । ବରଷାର ପାଣିଛିଟିକା ଦେହରେ ପଡ଼ୁଥାଏ । ପବନ ଦେହସାରା ଗୁଡ଼େଇ ହୋଇ ଯାଉଥାଏ । ଆକାଶରେ ବିଜୁଳି ଚମକି ଉଠି ସୂଚନା ଦେଉଥାଏ ଯେ ଏଇ ଝଡ଼ ଅନ୍ଧାର ଭିତରେ ମଣିଷର ସଂହାର ଶକ୍ତି ରହିଛି, ସଜାଗ ଓ ଉଦ୍ୟତ ।

ରାଜେନ୍ଦ୍ରର ଦେହ ଶୀତେଇ ଉଠୁଥାଏ । ଦେହ ଯେମିତି ଶିହରୁଥାଏ ସେ ସେଇ ଅନ୍ଧାର ରାତିର ନୃତ୍ୟରେ ଯୋଗଦେବ । ଭାବନା ଘୋଡ଼େଇ ହୋଇ ଯାଇଥାଏ, ଶୋଇପଡ଼ୁଥାଏ ସ୍ଥୂଳ ପ୍ରକୃତିର ତାଡ଼ନାରେ ।

ବାରଣ୍ଡା ତଳକୁ କାହାର ପାଦ ଖସ୍ ଖସ୍ ଶୁଭିଲା । ରାଜେନ୍ଦ୍ର ପାଟିକଲା—'କିଏ ?'

'ମୁଁ'—

ରାଜେନ୍ଦ୍ର ଉହୁଙ୍କି ଦେଖିଲା, ସେ ହେଉଛି ରାଧୀ । ଜାତି ଗୋତ୍ର କ'ଣ ଜଣା ନାହିଁ । ସେ ସାହିରେ ବାସନ ମାଜେ ଆଉ କଣ କାମଧନ୍ଦା କରେ । କେତେଥର ସେ ତା' ପାଖକୁ ଆସିଛି ତା' ଘରେ ଖାଇ ପିଇ ଆଶ୍ରୟ ନେଇ ଗୃହକର୍ମ କରିବ ବୋଲି । କିନ୍ତୁ ରାଜେନ୍ଦ୍ର ଫେରାଇ ଦେଇଛି ଲୋକନିନ୍ଦା ଭୟରେ । ତା'ଛଡ଼ା ସେହି ଝିଅଟାର ହାବଭାବ ଇଙ୍ଗିତରୁ ରାଜେନ୍ଦ୍ର କଣ ବୁଝିଛି କେଜାଣି ଘୃଣାରେ ତା' ଦେହ ଭରି-ଯାଇଛି । ସେ ତା'କୁ ଫେରାଇ ନ ଦେଇ ରହିପାରି ନାହିଁ ।

ଆଜି ଏଇ ବର୍ଷା ରାତିରେ ସେ ଆସିଛି କାହିଁକି ? ରାଜେନ୍ଦ୍ରର ରାଗ ହେଲା । ସେ ତାକୁ ଫେରାଇ ଦେବ । ଏଇଟା କଣ ଗୃହକର୍ମ ଖୋଜି ଆସିବାର ସମୟ ?

କିନ୍ତୁ ସେ କିଛି କହିଲା ନାହିଁ । ଆଗରେ ତା'ର ଛିଡ଼ା ହୋଇଛି ଗୋଟିଏ ନାରୀ । କଳା ଅନ୍ଧାରରେ ତା'ର କୁତ୍ସିତତା ବାରି ହେଉନାହିଁ । ଖାଲି ଦିଶୁଛି ରକ୍ତ-ମାଂସରେ ଗଢ଼ା ଗୋଟିଏ ଯୌବନର ପିଣ୍ଡୁଳା ।

ପାଣିଛିଟିକା ରାଜେନ୍ଦ୍ରର ମୁହଁରେ ଲାଗୁଥାଏ । ସେ ତା'କୁ ପୋଛିଦେଲା କିନ୍ତୁ ମସ୍ତିଷ୍କର ଉତ୍ତାପ କମିଲା ନାହିଁ । ତା'ର ଦେହ ଯେମିତି ଗୋଟାଏ ଭୟଙ୍କର ରାକ୍ଷସ ପରି ତାର ସବୁ ଭାବନାକୁ ଗିଳିଦେବାକୁ ବସିଥାଏ । ରାଜେନ୍ଦ୍ର କିଛି ଭାବିପାରିଲା ନାହିଁ । ସେଇ ଅନ୍ଧାର ପରଦା ଭିତରେ ଅନୁପମାର ମୁହଁ ସ୍ପଷ୍ଟ ହୋଇ ଦିଶିଲା ନାହିଁ । ସେଇ ମୁହୂର୍ତ୍ତରେ କେବଳ ଯୋଡ଼ିଏ ଜିନିଷ ତା'କୁ ଆବୋରି ବସିଥାଏ । ଏ ରାତି ଓ ମଣିଷର ଦେହ ।

ରାଜେନ୍ଦ୍ରର ଗଳାରୁ ଏଇ ପଦକ ବାହାରି ଆସିଲା—

'ଉପରକୁ ଉଠି ଆ'···

···ଓଃ ! କି ଭୀଷଣ ସେ ଅନୁଭୂତି ।

ତା ଦେହରୁ ବୋଧହୁଏ ଲାଗିଯାଇଛି ସେଇ କୁତ୍ସିତ ଦେହର ରଙ୍ଗ । ତା' ନିଃଶ୍ୱାସରେ ବୋଧହୁଏ ମିଶିଛି ସେଇ ଶସ୍ତା ବାସନା ତେଲର ଗନ୍ଧ । ତା' ମନ ଭିତରେ ଗହୀରିଆ ଦାଗ ରଖିଦେଇଯାଇଛି ସେ । କେମିତି ତା'କୁ ପୋଛି ଦେବ, କେହି ଦେଖିବା ଆଗରୁ, କେହି ଜାଣିବା ଆଗରୁ ।

ନିଶ୍ଚୟ କେହି ଜାଣିବ, ନିଶ୍ଚୟ କେହି ବୁଝିବାକୁ ପାଇବ । କିନ୍ତୁ କେହି ଜାଣୁ ନ ଜାଣୁ ଅନୁପମା ତ ଜାଣିବ । ତା'ର ସ୍ମିତର ଉପହାସ ଯେ ସବୁଠୁ ତୀବ୍ର !

ରାଜେନ୍ଦ୍ର ଭାଙ୍ଗିପଡ଼ିଲା । ଅପମାନ ଓ ଦୁଃଖର ଲୁହ ଝରିବାକୁ ଲାଗିଲା ଆଖିରୁ ।

ଝରି ପଳାଇ ଆସୁଥାଏ ତରତର ହୋଇ । ରାତିର ସବୁ ଅନ୍ଧାରିଆ ଭୂତକୁ ଯେମିତି ତଡ଼ି ଦେବାକୁ ପ୍ରବଳ ଚେଷ୍ଟା କରୁଥାଏ । ରାଜେନ୍ଦ୍ର କରୁଣ ଆଖିରେ ଅନାଇଲା ସକାଳର ଏଇ ନୂଆ ପୃଥିବୀକୁ ।

···ଏଇ—ସେଇ ରାସ୍ତା ମୋଡ଼ରେ ଯେଉଁ ସ୍କୁଲଘର ଦିଶୁଛି, ତା'ର ସେ ପାଖକୁ ଚୈତିଆ ଧଳା କୋଠାଟିଏ—ରମେଶର ଘର । ଆଗରେ ବଲଡଫୁଲର ବଗିଚା । ସକାଳର ଆଲୁଅରେ ଅଦ୍ଭୁତ ରଙ୍ଗୀନ୍ ଦିଶୁଛି । ସେଇ ଘରେ ଥାଏ

ରମେଶ, ତା'ର ଦ୍ୱିତୀୟା ସ୍ତ୍ରୀକୁ ନେଇ । ତା'ର ନୂଆ ଜୀବନଟା ଯେଉଁ ଫୁଲପରି ହୋଇଥିବ ସତେଜ ଓ ସୁନ୍ଦର ।

ସକାଳୁ ଉଠି ସେ ତା'ର ସ୍ତ୍ରୀ କାନ୍ତାର ହାତ ଧରି ବଗିଚାକୁ ବୁଲି ଆସୁଥିବ । ଫୁଲଟିଏ ତୋଳି ତା' ହାତକୁ ଦେଉଥିବ । ଦୁହେଁ ପରସ୍ପରର ମୁହଁକୁ ଚାହିଁ ହସି ଦେଉଥିବେ ।

ଘର ଭିତର ରୋଷେଇ ଘରୁ ଧୂଆଁ ଉଠୁଥିବ । ଦୁହିଁଙ୍କର ଆଘ୍ରାଣରେ ବାଜୁଥିବ ଖାଦ୍ୟର ରୁଚି ଓ ପ୍ରୀତି ।

ପୋଷା ପାରାଗୁଡ଼ିକ ଉଡ଼ି ଯାଉଥିବେ କୋଠା ଉପରକୁ । ଦୁଇଟି ପାରା । ରମେଶ ହାତ ବଢ଼ାଇ କହୁଥିବ କାନ୍ତାକୁ, 'ଏଇ ଦେଖିଲ, ତାଙ୍କ ଜୀବନ କ'ଣ ଆମଠୁ ବେଶୀ ସୁନ୍ଦର ?'

ରାଜେନ୍ଦ୍ରର ଛାତିରୁ ଦୀର୍ଘନିଃଶ୍ୱାସ ବାହାରି ଆସିଲା । ପ୍ରକୃତରେ ସେହି ଜୀବନ ସୁନ୍ଦର । ସେଥିରେ ଆବିଳତା ନାହିଁ, କଳଙ୍କ ନାହିଁ ।

ରାଜେନ୍ଦ୍ରର ଆଖି ଦୁଇଟି ପୁଣି ଲୁହରେ ଭରିଗଲା । କିନ୍ତୁ ବର୍ତ୍ତମାନ୍ ସେ ଲୁହରେ ଥିଲା ଈର୍ଷା ଓ ଆକ୍ରୋଶ ।

ଏଇ ରମେଶ । ସ୍ତ୍ରୀ ମରିବାର ଦୁଇବର୍ଷ ହୋଇନି । ଅଳୁ ମରିବାର ମାସକପରେ ସେ ମରିଥିଲା । ରମେଶ ତାକୁ ଖୁବ୍ ଭଲ ପାଉଥିଲା ।

କିନ୍ତୁ ଆଜି ସେ ସ୍ମୃତିର ମୂଲ୍ୟ କାହିଁ ? କେଉଁ ହିସାବରେ ରମେଶ କହିପାରିବ ଯେ ରମାକୁ ସେ ପ୍ରକୃତରେ ଭଲ ପାଉଥିଲା ? ଆଜି କ'ଣ ସେ ତା'ର ଦେହ, ମନ, ପ୍ରାଣ ସବୁ ସମର୍ପି ଦେଇନାହିଁ କାନ୍ତାକୁ ? ହୁଏତ କେଉଁ ମୁକ୍ତ ସକାଳର ଅଜଣା ମୁହୂର୍ତ୍ତରେ ରମାର ସ୍ମୃତି ଅତର୍କିତରେ ଚେଇଁ ଉଠିବ । ସେ ଟିକିଏ ବିବ୍ରତ ହୋଇଯିବ । କିନ୍ତୁ ଦୀର୍ଘନିଃଶ୍ୱାସଟିଏ ପବନରେ ମିଳାଇ ନ ଯାଉଣୁ କାନ୍ତା ଆସି ଆଗରେ ଠିଆ ହେବ । ସେ ଭାବିବ, ଭଗବାନଙ୍କର ଦୟା, କାନ୍ତାଠାରେ ମୁଁ ରମାକୁ ଫେରିପାଇଛି । ସେଇଠି ହେବ ସ୍ମୃତିର ସମାଧି ।

ରମେଶ ତା'ର ଦେହ, ମନ, ପ୍ରାଣ ସବୁ ଦେଇଛି କାନ୍ତାକୁ । କିନ୍ତୁ ସେଥିରେ ଗୌରବ ଅଛି, ସମ୍ମାନ ଅଛି । କାରଣ ସେ ବାଜା ବଜେଇ, ପୁରୋହିତ ଡାକି ଲୋକ ସମ୍ମୁଖରେ ପରିଚୟ ଦେଇଛି ଯେ ସେ ତା'ର ନୂଆ ଜୀବନ ଆରମ୍ଭ କରିଛି ଆଉ ଗୋଟିଏ ସ୍ତ୍ରୀକୁ ନେଇ । ସେଥିରେ ରମାର ସ୍ଥାନନାହିଁ । ଖାଲି ଅଛି ଗୋଟାଏ ସ୍ମୃତି, ଗୋଟାଏ ସ୍ୱପ୍ନର ଛାଇ—

କିନ୍ତୁ ସେ କେବେହେଲେ ଏତେ ନିଷ୍ଠୁର ଭାବରେ ଜାଣି ଶୁଣି ତା'ର ପୁରୁଣା ସଂସାରର ସମାଧି ଦେଇପାରିବ ନାହିଁ । ତା'ପାଇଁ ଅତୁର ସ୍ମୃତି ଜୀବନ୍ତ । ତା'ର ଜୀବନ ସାଙ୍ଗରେ ନିବିଡ଼ ଭାବରେ ଗୁନ୍ଥା ହୋଇ ରହିଛି ।

କିନ୍ତୁ କାଲି ରାତିର ଅନୁଭୂତି । ତା'ର ଉତ୍ତର ?

ରାଜେନ୍ଦ୍ର ପୁଣି ତା'ର ଯୁକ୍ତି ସଜାଡ଼ି ବସିଲା । ହଁ,—ସେଥିରେ ଲଜ୍ଜିତ ହେବାର ଅଛି କଅଣ ?

ଜଣେ ଅକୁଣ୍ଠିତ, ନିର୍ଲଜ୍ଜ, ନିଷ୍ଠୁର ଭାବରେ ତା'ର ସବୁ କିଛି ଦାନ କରୁଛି, ଦ୍ୱିତୀୟା ସ୍ତ୍ରୀକୁ । ଆଉ ଜଣେ ପରଲୋକଗତାର ସ୍ମୃତିକୁ ଜୀବନ୍ତ କରି ରଖିଛି, ତା'ପାଇଁ ବଞ୍ଚିଛି । କିନ୍ତୁ ଦେହକୁ ତା'ର ସାମୟିକ ଖୋରାକ ଯୋଗାଇଛି, କାରଣ ତା'ର ସ୍ଥୂଳ ଦେହ ଉପରେ ତା'ର ଯଥେଷ୍ଟ ପ୍ରଭାବ ନାହିଁ । କିଏ ବେଶୀ ଘୃଣ୍ୟ ? କେଉଁଥିରେ ବେଶୀ ଅପମାନ ପାଏ ପରଲୋକଗତାର ସ୍ମୃତି ? ଆଉ ଜଣକୁ ଦେହ ଦେଲେ ନା ଭଲ ପାଇଲେ ?

ଅଭିଯୋଗର ଅଶ୍ରୁ ଦେଇ ରାଜେନ୍ଦ୍ର ଭାବି ଚାଲିଥାଏ । ଏଇ ସମାଜର ନିୟମ ଯେ ଦେହ ଦେବା ଓ ସଂସାର କରିବା ଦୁଇଟା ଏକାଠି ହେବା ଉଚିତ । ସେଇଥିପାଇଁ ତା'ର ରାତିର କାହାଣୀ ହେଉଛି କଳଙ୍କ ଓ ରମେଶର ଦିନର ବିଳାସ ହେଉଛି ଗୌରବ !

ନା—ନା—ସେ ତା' ପାରିବ ନାହିଁ । ରମେଶ ଯାହା କରିଛି, ସେ ତାହା କରିପାରିବ ନାହିଁ । କିନ୍ତୁ ସେଥିରେ ସେ ଦୁଃଖିତ ନୁହେଁ । ନୁହେଁ ? ?

ହଠାତ୍ ତା'ର ଖିଆଲ୍ ହେଲା ଯେ ସେ ରମେଶ ପାଖକୁ ଯିବ । ତା'କୁ ସବୁ କଥା କହିଦେବ । ତାକୁ ଜଣେଇଦେବ ଯେ ସେ ଏମିତି କିଛି ପାପ କରିନାହିଁ, ଅନ୍ୟାୟ କରିନାହିଁ ।

ଭାବନାର ସୁଅରେ ତା'କୁ ଜଣାନାହିଁ ସେ କେତେବେଳେ ଯାଇ ପହଞ୍ଚିଲା ରମେଶର ଘର ଆଗର ସେଇ ଧଳା ଫାଟକ ପାଖରେ । ସତକୁ ସତ ରମେଶ ଥିଲା ତା'ର ସ୍ତ୍ରୀ ସାଙ୍ଗରେ । କାନ୍ତା ତା'କୁ ଦେଖି ଘର ଭିତରକୁ ଚାଲିଗଲା । ରମେଶ ରାଜେନ୍ଦ୍ରକୁ ପାଛୋଟି ନେବାକୁ ଆସିଲା ।

କିନ୍ତୁ ଏ' କିଏ ? ରମେଶ ଆଶ୍ଚର୍ଯ୍ୟ ହେଲା । ଅଲରା ବାଳ, ରଙ୍ଗା ଆଖି, ଶୁଖିଲା ମୁହଁ, ଅଯତ୍ନ ବେଶ । ରମେଶର ଆତ୍ମଭରା ଡାକ ଅଧାରୁ ରହିଗଲା । ତା' ମନରେ ହଠାତ୍ ଗୋଟାଏ ଧାରଣା ଧକ୍କା ଦେଇଗଲା । ରାଜେନ୍ଦ୍ର ତାହାହେଲେ

ଏପର୍ଯ୍ୟନ୍ତ ଭୁଲିନାହିଁ ଅନୁକୁ ! ତା'ର ସ୍ମୃତି ତା'କୁ ଏମିତି ରୁକ୍ଷ, ମଳିନ କରି ରଖିଛି ! ସୁକେନ୍ଦ୍ରର ନିଷ୍ଠାରେ ରମେଶ ସଂକୁଚିତ ହେଲା । ଭାବର ଆବେଶରେ ସୁକେନ୍ଦ୍ରର ଦୁଇ ହାତକୁ ଧରିପକାଇ କହିଲା···'ସୁକୁ—ଏ' କଣ ଦଣ୍ଡ ଦେଉଛୁ ତୁ ?'

ସୁକେନ୍ଦ୍ରର ମୁହଁ ଲାଲ୍ ହୋଇଗଲା । ସେ ସବୁକଥା କହିଦେବା ପାଇଁ ପ୍ରସ୍ତୁତ ହୋଇଗଲା ।

କିନ୍ତୁ ସେ କହିବା ଆଗରୁ ରମେଶ କହିଉଠିଲା—'ଜାଣେ,—ତୋ'ର କିଛି କହିବା ଦରକାର ନାହିଁ । ତୁ ଜିତିଯାଇଛୁ ମୋତେ । ମୁଁ ସୁଖପାଇଁ ଆଉ ଗୋଟିଏ ସଂସାର କଲି । ତୁ କିନ୍ତୁ ତୋ'ର ପୁରୁଣା ସଂସାରକୁ ହିଁ ଜାକର କରି ରଖି ପାରିଲୁ ସବୁଦିନେ । ତୁ ପ୍ରକୃତରେ—।'

ସୁକେନ୍ଦ୍ର କିଛି କହିପାରିଲା ନାହିଁ । ଖାଲି ଚାହିଁ ରହିଲା ରମେଶ ଆଡ଼େ । ତା' ଆଖିରେ ଲୁହ ଭରି ଆସିଲା ଆଉଥରେ ।



## ଦ୍ୱିତୀୟ

ଆଜି ଏହି ଗଳ୍ପଟିକୁ ପଢ଼ିଲାପରେ ଲାଜ ଲାଗେ । ତା'ର ଅର୍ଥ ନୁହେଁ, ଯେ ଗଳ୍ପରେ ସାରବସ୍ତୁ ନାହିଁ । ଅନୁଭୂତି ମିଛ ଅବା କୃତ୍ରିମ, ବାହ୍ୟପଟା ତେଣୁ ଲୋକ ଦେଖାଣିଆ ଭାବରେ ଦୂଷିତ, ଇତ୍ୟାଦି । ନା ସେତେବେଳେ ମୋ ପାଇଁ ପ୍ରକୃତରେ ସତ ଥିଲା ଏଇ ଭାବାନୁଭୂତିର ଦ୍ୱନ୍ଦ୍ୱ— "କେଉଁଥିରେ ବେଶି ଅପମାନ ପାଏ ପତ୍ନୀଟାର ସ୍ମୃତି ? ଆଉ ଜଣକୁ ଦେହ ଦେଲେ ନା ଭଲ ପାଇଲେ ? "କାହିଁକି ନା ଅଭିଜ୍ଞତା ଦୃଷ୍ଟିରୁ ମୋର ବୟସ ବିଶେଷ ବଢ଼ି ନ ଥିଲା, ବୌଦ୍ଧିକତା ଚେତନାକୁ ବେଶିଭାଗ ଘାରିବାର ସୁଯୋଗ ପାଇ ନଥିଲା, ଯେତେ ବସ୍ତୁବତାର ଦ୍ୱାହି ଦେଲେ କଣ ହେବ, ମନ ତଥାପି କେତୋଟି ତଥାକଥିତ ମୌଳିକ ବସ୍ତୁରକୁ ମୁଠେଇ ଧରିଥିଲା—ଯଥା 'ଭଲ ପାଇବା' ବୋଲି ଗୋଟିଏ ସ୍ୱୟଂସିଦ୍ଧ ଭଲପଣ ଅଛି, ଯାହାର ବିଶ୍ଳେଷଣ ଅନାବଶ୍ୟକ । ଅନ୍ୟ ଅର୍ଥରେ ମୁଁ ଥିଲି ରୋମାଣ୍ଟିକ୍ ।

ମୋର ପ୍ରବୀଣ ଜୀବନର ଚରିତ୍ରମାନେ ଏଭଳି ତରଳ ଦ୍ୱନ୍ଦ୍ୱକୁ ହସି ଉଡ଼େଇ ଦିଅନ୍ତେ । ପଚାରନ୍ତେ—କିଓ, ସ୍ମୃତି କଅଣ ଗୋଟାଏ ରକ୍ତମାଂସର ପ୍ରାଣୀ ହୋଇଛି ଯେ ତା'ର ଅପମାନ ହେବ ? ଦ୍ୱିତୀୟରେ ବିପତ୍ନୀକର ଦେହ ଦେବା ବନାମ ଭଲପାଇବା, ଇଏ କେମିତିକା ଦ୍ୱନ୍ଦ୍ୱ ? ପ୍ରେମ ଓ ଯୌନତାର ଦ୍ୱନ୍ଦ୍ୱ ଦେଖାଇବାକୁ ହେଲେ ବାସ୍ତବ ସତ୍ୟର ପାଠ ପଢ଼େଇ ପାରନ୍ତି ଥାଆନ୍ତି, ଯେ କେମିତି ପତ୍ନୀ ଥାଉଁ ଥାଉଁ ଏବଂ ପତ୍ନୀକୁ ଭଲ ପାଇଲେ ମଧ୍ୟ ଆଉ ଜଣକୁ ଦେହ ଦେଇ ହୁଏ । ତା'ର ଛଟପଟ ଓ ଛଟପଟକୁ ଜିଣିବାର 'ବୀରତ୍ୱ' ଦେଖାଇ ପାରିଥାଆନ୍ତି । ତା'ଛଡ଼ା ତୁମର ଏଇ ଭଲପାଇବା ଜିନିଷଟି କଅଣ କହିଲ ଦେଖି ? ଅଚ୍ଛେଦ୍ୟ ଅଭେଦ୍ୟ ବର୍ତ୍ତୁଳ ଭଳିଆ ଭଗବାନଙ୍କ ପରି, ଯାହାର ଯୋଡ଼ି ନାହିଁ ? ଯାହାର ରଙ୍ଗରେଖକୁ ନେଇ ନେଇ ଠେଲି ଥୋଇବା ଦୂରରେ କଥା, ତା'କୁ ନିରେଖି ଦେଖି ହେବ ନାହିଁ, କଟମଟ କରି ଗୁହିଁ ହେବ ନାହିଁ ? ନିରେଖିଲେ ଗୁହିଁଲେ ସିନା ଜାଣନ୍ତ ଯେ ଜଣକୁ ଗୋଟାଏ ହିସାବରେ ଭଲପାଇ ଆଉ ଜଣକୁ

ଅନ୍ୟ ହିସାବରେ ଭଲପାଇବା ଅଶୋଭନୀୟ ହେଉ ପଛେ, ଅସମ୍ଭବ ନୁହେଁ ? ଆଃ, ସେହି ଜଟିଳ ଦ୍ୱନ୍ଦ୍ୱର ଚମତ୍କାରିତାହିଁ ତୁମ ଠାରୁ ଆଶା କରାଯାଉଥିଲା, କାହିଁକନା ତୁମେ ସଚେତନ ବୁଦ୍ଧି ଗ୍ରସ୍ତ ମଣିଷ···

ଲାଜ ଲାଗେ ସତ, ତଥାପି ମୁଁ ଏକ ପ୍ରକାର ଗର୍ବ ଅନୁଭବ କରେ ଯେ ମୁଁ ଦିନେ ରୋମାଣ୍ଟିକ୍ ଥିଲି । ତେଣୁ ଭବିଷ୍ୟତରେ ମଧ୍ୟ ରୋମାଣ୍ଟିକ୍ ହୋଇ ପାରିବି । ହିସାବୁ ନାହିଁ ଯେ ସେଥିପାଇଁ ମୋର ବଳବୟସ ଗୃଲିଗଲାଣି । କାରଣ ଆଧ୍ୟାତ୍ମିକ ଚେତନାହିଁ ସବୁଠାରୁ ବଡ଼ ରୋମାନ୍ସ । ଯଦି ଦିନେ କେବେ ପ୍ରେମ ଓ ଭଗବାନଙ୍କୁ ଏକାରୂପରେ ଏକାଭାବରେ ଦେଖିବାର ଭ୍ରମ କରି ପାରୁଥିଲି, ଆଜି ସେହି ଦୁଃସାହସକୁ, ହୁଏତ ଭିନ୍ନ ଭ୍ରମରେ, କଣ ଫେରାଇ ଆଣି ହେବ ନାହିଁ ? ବସ୍ତୁତାରେ ହାଲିଆ ହେଲି ବେଳକୁ ସେଇ ତ ଗୋଟିଏ ଆସ୍ଥା, ଜଗନ୍ନିଥ୍ୟାର ଇତିକଥା ।



କଟକ

୯ ଜୁଲାଇ ୧୯୮୫

# ବଡଲୋକ

ଅଫିସ ଛୁଟିବେଳ ।

ବେହେରା ବାବୁ ହଠାତ୍ ରୁମ୍‌ର ଦୁଆରବନ୍ଧରେ ଛିଡ଼ାହେଲେ । ପୁଣି କାମଥିବ ଭାବି ମୁଁ ମନେ ମନେ ଟିକିଏ ବିରକ୍ତ ହେଲି । ପଚାରିଲି କ'ଣ କି ? ଆଉ କିଛି କାମ ଅଛି ?

ନାହିଁ ଆଜ୍ଞା—

ପାନବୋଲା ଓଠକୁ ବିସ୍ତାରିତ କରି ବେହେରା ବାବୁ ଅଳ୍ପ ହସି କହିଲେ, "ମୁଁ କ'ଣ ପଚାରୁଥିଲି କି—ଆଜି ଆପଣ ଘରେ ଥିବେ ସନ୍ଧ୍ୟାବେଳେ ?"

କିଛି ନ ଭାବି ମୁଁ ହଠାତ୍ ହଁ କରିଦେଲି । ତାପରେ ବେହେରା ବାବୁ ଉଦ୍ବେଳିତ ହୋଇ କହିଲେ, 'ମୋ ସ୍ତ୍ରୀ କହୁଥିଲା ଆପଣଙ୍କ ଘରକୁ ଯିବ ବୋଲି,— ଅପଣଙ୍କ କାମଥିଲେ ଅବଶ୍ୟ'—

ନା ନା ଆମେ ହହେଁ ଘରେ ଥିବୁ । ତାଙ୍କୁ କହିବେ ଆସିବେ । ଏଥିରେ ପଚାରିବାର କଅଣ ଅଛି ?

ବେହେରା ବାବୁ ନମସ୍କାର କରି ପଛେଇଗଲେ । ମୁଁ ଉଦାରତାର ଭଙ୍ଗୀଟିକୁ ଆଉ ଟିକିଏ ହଠେଇ କହିଲି 'ନିଶ୍ଚୟ ଆସିବେ, ମୁଁ ଅପେକ୍ଷା କରିଥିବି ।'

ମନେ ମନେ ଭାବିଲି—ଯଦି ସେ ମୋ ଚଉକିରେ ବସିଥାଆନ୍ତେ ଓ ମୁଁ ତାଙ୍କ ଜାଗାରେ ଥାଆନ୍ତି, ତାହାହେଲେ ଦୃଶ୍ୟଟା କଅଣ ଅନ୍ୟ ରକମର ହୋଇ ଥାଆନ୍ତା ?

...ସନ୍ଧ୍ୟାବେଳେ ବେହେରା ବାବୁ ଓ ତାଙ୍କ ସ୍ତ୍ରୀ ଆସିଲେ । ମୋର ଭଉଣୀ ଶୋଭା ତାଙ୍କ ସ୍ତ୍ରୀଙ୍କୁ ଘର ଭିତରକୁ ନେଇଗଲା । ମୁଁ ହୁଣ୍ଡିକର ଝଲକରେ ଦେଖିଲି ଯେ ସେ ଗୋଟିଏ ଚକଚକିଆ ସିଲ୍କ ଶାଢ଼ୀ ପିନ୍ଧିଛନ୍ତି ଓ ଦେହ ସାରା ସୁନାର ଝଲମଲ । ଆଶ୍ଚର୍ଯ୍ୟ ହେଲି । ଶୁଣିଥିଲି ସେ ବଡ଼ଘରେ ବାହା ହୋଇଛନ୍ତି । କିନ୍ତୁ ତା' ବୋଲି ଏ ଚାଲିନ୍ତା ପ୍ରମାଣ କାହିଁକି ?

ବେହେରା ବାବୁ ଧୋତି ପଞ୍ଜାବି ପିନ୍ଧି ଆସିଥିଲେ । ମାର୍ଜିତ ଓ ପରିଷ୍କାର ଚା' କପ୍‌ରେ ସରୁ ଚୁମୁକ ଦେଇ ବେଶ ଭଦ୍ରୋଚିତ କଥାବାର୍ତ୍ତା କରିବାକୁ ଚେଷ୍ଟା

କରୁଥାନ୍ତି,—ବିଜ୍ଞାନ, ପାଣିପାଗ ଇତ୍ୟାଦି ଇତ୍ୟାଦି । ଖୁସି ହେଲି, ଯେ ଯାହାହେଉ ବେହେରା ବାବୁ ପ୍ରକୃତରେ ସାମାଜିକ ସମତା ରକ୍ଷା କରି ପାରିଛନ୍ତି ଏଇ ଘରୋଇ ସାକ୍ଷାତରେ ।

ହାତବନ୍ଧା ଘଡ଼ିକୁ ଦେଖି ବେହେରା ବାବୁ ହଠାତ୍ କହିଉଠିଲେ—'ଯିବାବେଳ ହୋଇଗଲାଣି ।'

ଲୋକ ଗଲା ତାଙ୍କ ସ୍ତ୍ରୀଙ୍କୁ ଡାକି ଆଣିବାକୁ । କିନ୍ତୁ ଟିକିଏ ଡେରି ହେଲାରୁ ବେହେରା ବାବୁ ହସି କହିଲେ—'ମାଇପେ ପାଞ୍ଚ ମିନିଟରେ ସାଙ୍ଗ ହୋଇଯାଆନ୍ତି,—ନୁହେଁ ଆଜ୍ଞା ?'

ମୁଁ ବି ହସିଲି । କିନ୍ତୁ ବେଶୀ ହସିଲି ମନେ ମନେ,—ଟିପ୍‌ପଣୀଟିରେ କେତେଟା ମନର କଥା ଓ କେତେଟା ବଡ଼ଲୋକି ବନ୍ଧୁତାର ବାହାଦୁରି ?

ସେମାନେ ଚାଲିଗଲେ । କୃଷ୍ଣା ଓ ଶୋଭା ଦିହେଁଯାକ ହସି ହସି ଚଞ୍ଚଳଗତିରେ ଚାଲିଆସିଲେ ମୋ ପାଖକୁ । କ'ଣ ଯେମିତି କହିବେ ବୋଲି ତର ସହୁ ନାହିଁ । ମୋତେ ଠିକ୍ କରିବାକୁ ସମୟ ଲାଗିଲା—ଏ ଦିହିଁଙ୍କ ଭିତରେ କିଏ ବେଶି ପିଲାଳିଆ ।

କୃଷ୍ଣା କହି ଉଠିଲା—'ତୁମ ମିସେସ୍ ବେହେରା ବାସ୍ତବିକ ବଡ଼ ଲୋକ ।' ଶୋଭା ହସିକରି କହିଲା,—'ନା—ଭୁଲ୍ କହିଲ ଭାଉଜ ବୋଉ । ସେ ବଡ଼ ଲୋକ ନୁହନ୍ତି । ତାଙ୍କର ବଡ଼ଲୋକୀ ଅଛି ।' "ମାନେ ?" ମୁଁ କୃଷ୍ଣାକୁ ପଚାରିଲି ।

'ମାନେ ?—ମାନେ ଖୁବ୍ ସରଳ । ତୁମ ବନ୍ଧୁପତ୍ନୀ ସିଲ୍‌କ ଶାଢ଼ୀ ପିନ୍ଧନ୍ତି, କିଛି ନୂଆ କଥା ନୁହେଁ । କିନ୍ତୁ ସେ ସମସ୍ତଙ୍କୁ ଜଣାଇବାକୁ ଚାହାନ୍ତି ଯେ ଏ ସବୁଠୁ ଭଲ ସିଲ୍‌କ—ତାଙ୍କ ବାପା କେଉଁ ଦୂର ବିଦେଶରୁ ଯୋଗାଡ଼ କରି ଆଣିଥିଲେ । ଆଉ ବାହାଘରବେଳେ ସମସ୍ତେ କେମିତି ତା'କୁ ଦେଖି ତାଟକା ହୋଇ ଯାଇଥିଲେ—'

ଶୋଭା ଯୋଗଦେଲା—'ତା'ଛଡ଼ା ତାଙ୍କ ହାତର ମୁଦିରେ ଯେଉଁ ପଥରଟା ବସିଛି, ସେ କୁଆଡ଼େ ଖୁବ୍ ଦାମିକା, ହୀରାଠୁ ବଳି—'

ଦୁହେଁଯାକ ଠୋ ଠୋ ହୋଇ ହସି ଉଠିଲେ ।

ମୁଁ ବି ହସିଦେଲି । କାରଣ ମନେହେଲା ଯେମିତି ମୁଁ ନ ହସିଲେ ସେମାନେ ଝାଉଁଳି ଯିବେ ।

ଶୋଭା କହୁ ଗୃଲଥାଏ—'ପୁଣି ଜୁଆଡ଼େ ବେହେରା ବାବୁ ଏମିତ ସୁକୁମାରଆ ଯେ ସବୁଦ୍ଦନେ ମାଛ ମାଂସ ନ ହେଲେ ହେବ ନାହିଁ ଓ ତାଙ୍କର ନଜର ବି' ସବୁଦନେ କଚ୍ଛି ମିଠା ଦରକାର—ରସଗୋଲା, ସନ୍ଦେଶ ଇତ୍ୟାଦ୍ଦ ।

'ମୋର ଖାଲି ପଗ୍ଭରବାକୁ ମନ ହେଉଥିଲା—ଏତେ କଥାପାଇଁ ଟଙ୍କା ଆସେ କେଉଁଠୁ ?'—ଚତୁରତାର ଭଙ୍ଗୀରେ କୃଷ୍ଣା କହିଲା ।

ଟିକିଏ ଅସ୍ୱସ୍ତି ବୋଧ କଲି । କିନ୍ତୁ ମିସେସ୍ ବେହେରାଙ୍କ ସମ୍ମାନ ରକ୍ଷା କରିବାକୁ ଯାଇ ଉପସ୍ଥିତ ବର୍ତ୍ତମାନକୁ ଅସୁଖୀ କରିବାର ସାହସ ନଥିଲା । ଖାଲି ପଗ୍ଭରିଲି—'ଆଚ୍ଛା ତାହାହେଲେ ମୋଟ ଉପରେ ତାଙ୍କ ବିଷୟରେ ତୁମର ଧାରଣା କଅଣ ?'

ଗୋଟିଏ ଶବ୍ଦରେ "ଫୁଟଲେଇ" । ଏତିକି କହି କୃଷ୍ଣା ମୋ ଆଡ଼କୁ ଅନାଇଲା ଅନୁମୋଦନ ପାଇଁ । 'ତା ମାନେ' ମୁଁ କହିଲି 'ସେ ନିଜର ବଡ଼ଲୋକୀଟିକୁ ଭଲ ଭାବରେ ଦେଖାଇ ଜାଣନ୍ତି ନାହିଁ । ତେଣୁ ଦେଖାଇ ହେଲାପରି ଜଣାଯାଏ— ନୁହେଁ ?'

ଯାହା ତୁମେ ଅର୍ଥ କରିପାର—କିନ୍ତୁ ମୋତେ ଯେମିତ ଲାଗିଲା କହିଲି— ଏତିକି କହି କୃଷ୍ଣା ଆଲୋଚନାରେ ପୂର୍ଣ୍ଣଚ୍ଛେଦ ପକାଇ ଦେଲା ।

ମୁଁ ବି ଖୁସି ହେଲି ଯେ କଥାର ଗତି ବଦଳି ଯାଇଛି ।

× × × ×

ସେଇଦନ ରାତରେ ପ୍ରାୟ ୯ଟା ବେଳକୁ—ନଭେଲ୍ ଖଣ୍ଡିକ ପ୍ରାୟ ସାରିବାକୁ ବସିଛି, ଏଇ ସମୟରେ ଦାଣ୍ଡରେ ଗୋଟିଏ ମଟର ହାଜର ।

'ସାହେବ ଘରେ ଅଛନ୍ତି' ମିଃ ରାୟଙ୍କ କଣ୍ଠ; ବନ୍ଧୁତାର ଆକ୍ରମଣରୁ ରକ୍ଷା ପାଇବା ପାଇଁ ନିଜକୁ ପ୍ରସ୍ତୁତ କରି ରଖିଲି ।

କିନ୍ତୁ ପାରିଲି ନାହିଁ । ନିଜର ଦୁର୍ବଳତାକୁ ପ୍ରଶ୍ରୟ ଦେଲାପରି ସହଜ ସୁନ୍ଦର କିନିଷ ବୋଧହୁଏ ନାହିଁ ଆଉ କଚ୍ଛି । ପାଞ୍ଚ ମିନିଟ୍ର କଥାବାର୍ତ୍ତା ପରେ ମିଃ ରାୟ ମୋତେ ରାଜି କରାଇ ପାରିଲେ ଯେ ତାଙ୍କ ହାଉରେ ମୋତେ ଗୋଟିଏ ଇଂରାଜି ପିକ୍ଚର୍ ଦେଖିବାକୁ ଯିବାକୁ ପଡ଼ିବ । ସାଙ୍ଗରେ ଥିବେ ମିସେସ୍ ରାୟ, ତାଙ୍କ ଭଉଣୀ ଓ ଅଧ୍ୟାପିକା ମିସ୍ ପଟ୍ଟନାୟକ । ତା'ପରେ କୃଷ୍ଣାକୁ ରାଜି କରାଇବାର ଭାର ରହିଲା ମୋ ଉପରେ ।

କୃଷ୍ଣା ବୋଧହୁଏ ଆମର ସବୁ କଥାବାର୍ତ୍ତା ଶୁଣୁଥିଲା । କାରଣ ମୁଁ ନ ପଚାରୁଣୁ ସେ କହିଲା—'ମିଃ ରାୟଙ୍କୁ କହିଦିଅ—ମୁଁ ଯାଇପାରିବ ନାହିଁ ।'

'କାହିଁକି ?'

'କାହିଁକି—ଏକଥା ସେ ପଚାରି ପାରନ୍ତି । ତୁମେ ପଚାରି କିଛି ଲାଭ ନାହିଁ । ମୋର ଇଚ୍ଛା ନାହିଁ ମୋଟେ ଉପରେ ।'

'କିନ୍ତୁ ତୁମେ କାଲି କହୁଥିଲ ଇଂଲିଶ୍ ପିକ୍‌ଚର୍ ବହୁତଦିନୁ ଦେଖି-ନାହିଁ—'

'ନିଜର ଇଚ୍ଛା ବଦଳାଇବାର ଅଧିକାର କଅଣ ମୋର ନାହିଁ ?' କୃଷ୍ଣାର ଯୁକ୍ତି ଶୁଣିବା ଧୈର୍ଯ୍ୟ ନଥିଲା । ତା'ଛଡ଼ା ସେଥିପାଇଁ ସମୟ ଓ ସ୍ଥାନ ଉପଯୋଗୀ ନଥିଲା ।

ତେଣୁ ପଚାରିଲି—

'ପ୍ରକୃତ କାରଣଟା କ'ଣ ଜାଣିପାରେ କି ?'

କୃଷ୍ଣା ଦୃଢ଼ ହେବାକୁ ବୋଧହୁଏ ପ୍ରତିଜ୍ଞା କରିଥିଲା । ମୋ ଆଡ଼କୁ ଘୂରିଆସି କହିଲା—'ଆଚ୍ଛା ତା' ହେଲେ ଶୁଣ । ତୁମ ସାଙ୍ଗରେ ଥିବେ ମିସେସ୍ ରାୟ୍ ଓ ମିସ୍ ପଟ୍ଟନାୟକ । ସେମାନଙ୍କ ସାଙ୍ଗରେ ପଅରଦିନ ନାରୀସମିତି ମିଟିଂକୁ ଯାଇଥିଲି ଓ କିଛିଦିନ ଆଗେ ଏକ୍‌ଜିବିସନ୍‌ରେ ତାଙ୍କର ସାଙ୍ଗରେ ଦେଖା ହୋଇଥିଲା—'

'ହେଉ—ସେଥିରେ କ୍ଷତି କଅଣ ?'

'କ୍ଷତି ତୁମେ ବୁଝିପାରିବ ନାହିଁ । ସମାଜରେ ଚଳିବାକୁ ହେଲେ ନିଜର ସମ୍ମାନ ରଖି ଚଳିବାକୁ ପଡ଼େ । ବର୍ତ୍ତମାନ ଯେଉଁ ଦୁଇ ତିନୋଟି ସିଲ୍‌କ ଓ ଜର୍ଜେଟ୍ ଶାଢ଼ୀ ପିନ୍ଧୁଛି, ସେସବୁ ତାଙ୍କର ଆଗରେ ପିନ୍ଧିଥିଲି । ବର୍ତ୍ତମାନ ଆଉ ଆଜକାଲିକାର ଭଲ ଶାଢ଼ୀ ପାଖରେ ନାହିଁ । ସେହିବୁ ଅଛି······ ।

ତା'ପରେ ସେ କହିବାକୁ ଲାଗିଲା କେଉଁ ଘରେ, କେଉଁ ଟ୍ରଙ୍କରେ ସେ ସବୁ ଅଛି, ଯାହାକୁ ବର୍ତ୍ତମାନ ଆଣିବା ସୁବିଧାଜନକ ହେବ ନାହିଁ,—ଇତ୍ୟାଦି ଇତ୍ୟାଦି ।

'ଆଚ୍ଛା—ପାଖରେ ଥିବା ଭିତରୁ ଗୋଟେ ପିନ୍ଧିଗଲେ କ୍ଷତି କଅଣ ?'

କୃଷ୍ଣା ବର୍ତ୍ତମାନ ବାସ୍ତବିକ୍ ବିରକ୍ତ ହେଲାପରି ଜଣାଗଲା । କହିଲା—'ନା— କ୍ଷତି କଅଣ ଅଛି ? ତୁମର କଣ ଯାଏ ଆସେ, ବାହାରେ ତୁମ ସ୍ତ୍ରୀର ମାନ ରହିଛି କି

ନାହିଁ । ବୃନ୍ଦାଆପାକର ଲୋକ ସବୁଦିନେ ନୂଆ ନୂଆ ଫେସନର ଶାଢ଼ୀ ପିନ୍ଧି ଆସିବେ । ଆଜି ମୁଁ ଯିବ ସେଇସ୍ଥାକୁ ପିନ୍ଧି, ସାଇତା ପେଡ଼ି ଲୁଗାପର ।'

'ହଁ ତୁମେ କହିପାର,—ମୁଁ ବେଶଭୂଷାରେ ମନ ଦେଉଛି କାହିଁକି । ତା'ର ଉତ୍ତରରେ ମୁଁ କହିବ ଯେ ଏ'ଟା ମୋର ଦୋଷ ନୁହେଁ । ତୁମେ ଯେଉଁ ସମାଜରେ ବଡ଼ ଅଫିସର ବୋଲି ଖାତିର ପାଅ, ତାହାର,—ଯେ ମୋତେ ପ୍ରତି ମୁହୂର୍ତ୍ତିରେ ମନେ ପକାଇଦିଏ ଯେ ମୁଁ ବଡ଼ ଲୋକର ସ୍ତ୍ରୀ ।'

ଏ ଯୁକ୍ତି ଏମିତି ଚାଲିଥାଆନ୍ତା କେତେବେଳଯାଏ । କିନ୍ତୁ ସିନେମା ବେଳ ହୋଇଯାଇଛି ବୋଲି ମୁଁ ତରତରରେ ଚାଲିଆସିଲି । ମିଃ ରାୟଙ୍କୁ କୈଫିୟତ୍ ଯାହା କିଛି ଦେବାକୁ ପଡ଼ିଲା ।

ବହୁତ ସମୟଯାଏ କୃଷ୍ଣାର ସେଇ ଶେଷ ପଦଟା ମୋ କାନରେ ବାଜୁଥାଏ । ମୁଁ ବଡ଼ ଲୋକର ସ୍ତ୍ରୀ ।

ଦୟାହେଲା ତା' ଉପରେ । ମିସେସ୍ ବେହେରା ବଗୁଆ ଦେଖାଇବାକୁ ଚାହେଁ ଯେ ସେ ବଡ଼ଲୋକ, କରୁଣ ପିଲାଳିଆ ଉତ୍ସାହ ନେଇ ସେ ଜଣାଇବାକୁ ଚାହେଁ ନିଜର ଐଶ୍ୱର୍ଯ୍ୟ । ଏଥିରେ ହୁଏତ ସେ ଆନନ୍ଦ ପାଏ । କିନ୍ତୁ କୃଷ୍ଣା ଶିକ୍ଷିତା ଓ ବଡ଼ଲୋକ କ'ଣ ସେ ଜାଣେ । ସେଇଥିପାଇଁ ସେ ଚାହେଁ ସେଇ ବଡ଼ଲୋକ ତା'ର ସ୍ୱାଭାବିକ ଅଂଶ ହୋଇ ରହୁ । ସେଥିରେ ଅଭିନୟ ନ ଥିବ, ଥିବ ସ୍ୱାଭାବିକ ସହଜ ଭଙ୍ଗୀ, ଅଭିନୟର ଉତ୍କର୍ଷ । କିନ୍ତୁ ଏଇ ମୁଦ୍ରାଟିକୁ ଧରରଖିବା ଟିକିଏ କଷ୍ଟକର । ତେଣୁ ଅଳ୍ପ ବହୁତ ଅସୁବିଧାରେ କୃଷ୍ଣା ଭାଙ୍ଗି ପଡ଼େ, ସଚେତ ହୋଇଯାଏ ଯେ ସେ ଅଭିନୟ କରୁଛି । ସେତେବେଳେ ସେ ଦୋଷଦିଏ ସମାଜକୁ ଓ ତାର ସ୍ୱାମୀକୁ ଯେ ସେମାନେ ତା'ର ଏଇ ଅବସ୍ଥାପାଇଁ ଦାୟୀ ।

ମିସେସ୍ ବେହେରାଙ୍କ ନିର୍ବୋଧ ଉତ୍ସାହରେ ହସ ଲାଗିଥିଲା । କିନ୍ତୁ କୃଷ୍ଣାର ଏଇ ସାଧନାର କ୍ଳିଷ୍ଟତାରେ ଦୁଃଖ ଲାଗିଲା । କାହିଁକି, କାହିଁକି ସେ ଜାଣି ଶୁଣି କଷ୍ଟ ଦେଉଛି ନିଜକୁ ଗୋଟାଏ ଅବାସ୍ତବ ମୋହପାଇଁ ? × ×

× × ସେଇଦିନ ରାତି । ସିନେମା ଦେଖି ବାଲିକାନ୍ଦର ତଳକୁ ଖସୁଛି । ମୁହଁରେ ଥାଏ ଗୋଟିଏ ଇଂରେଜ ସୁର୍‌ର ଆଳାପ ।

ପାହାଚର ତଳେ ଠିକ୍ ପହଞ୍ଚିଛି ଏଇ ସମୟରେ ଶୁଣିଲି—

'କିରେ ବିନୋଦ !'

ଅନାଇ ଦେଖିଲି,—ବେକଯାଏ ବୋତାମ ଦିଆ କାମିଜ ପିନ୍ଧି ଗ୍ରେଷ୍ଟ ବାଳ ଓ ମୋଟା ଚଷମା ବସିଥିବା ଗୋଟାଏ ଲୋକ ମୋ'ଆଡ଼କୁ ଅନାଇ ହସୁଛି ।

ମିନିଟିଏ ଡେରି ଲଗିଲା ଚହ୍ନିବାକୁ । ତା'ପରେ ମନେପଡ଼ିଲା ସେ କିଏ—ସେ ହେଉଛି ଜଗନ୍ନାଥ ଓରଫ ଜଗା, ମୋର ସ୍କୁଲ ବେଳର ସାଙ୍ଗ । ଦି' ବର୍ଷତଳେ ଦେଖାହୋଇଥିଲା ଥରେ ।

ପାଖେଇ ଆସି ତା' ହାତକୁ ଧରିପକାଇ ପଚାରିଲି—

'କିରେ—ତୁ କୁଆଡ଼େ ?'

'ଏଇ ଆସିଥିଲି—ପୋଷ୍ଟର୍ ଦେଖିବାକୁ'

'ଛବି ଦେଖିବାକୁ ନୁହେଁ ?' କୌତୁହଳ ସହ ପଚାରିଲି ।

ଉହୁଁ—ପଇସା ନାହିଁ ।

ଶେଷ ପଦଟା ସେ କହିଲା ନିହାତି ସହଜ ଓ ସାଧାରଣ ଭାବରେ । କିନ୍ତୁ ସେଥିରେ ଥିଲା ସତ କଥାର ତୀକ୍ଷ୍ଣତା ।

ମୁଁ ପଚାରିଲି 'ଏବେ କେଉଁଠି ?'

'ସେଇ ଅଫିସରେ । ଦି' ବର୍ଷରେ ପାଞ୍ଚଟଙ୍କା ବଢ଼ିଛି' । ମତେ ତରତର ହେବାକୁ ପଡ଼ିଲା । ସ୍ୱପ୍ନ ପ୍ରଭୃତି ମଟର ପାଖରେ ଅପେକ୍ଷା କରି ରହିଥିଲେ । ତେଣୁ ଜଗାକୁ କହିଲି—'ଆଚ୍ଛା । ମୁଁ ଯାଉଛି । ଶୁଣ୍,—ତୁ ସେଇ ମଙ୍ଗଳାବାଗରେ ଅଛୁନା ? ମୁଁ ଯାଇ ହେବ, ଏଇ ରବିବାରକୁ ଯିବି ।'

ସେ ଆସ୍ତେ ଆସ୍ତେ କହିଲା ଆବେଗଶୂନ୍ୟ କଣ୍ଠରେ—ହଁ, ମୁଁ ସେଇଠି ଅଛି । କେତେବେଳେ ଆସିବୁ ?

'ଏଇ ପାଞ୍ଚଟା ଛଅଟା ବେଳେ । ଆଚ୍ଛା'—

ମୁହଁ ଫେରାଇ ଚାଲିଲି ଆଗକୁ । ମୋତେ ଲଗିଲା ଜଗା ମୋତେ ଅନେଇ ରହିଛି ପଛରୁ ।

ବାଟରେ ଭାବୁଥାଏ କାହିଁକି ଜଗାକୁ କଥା ଦେଲି ତା' ଘରକୁ ଯିବି ବୋଲି । ରବିବାର ଦିନ ବରଂ କୌଣସି ଫୁର୍ତ୍ତିର ଆୟୋଜନ କରିଥିଲେ ଭଲ ହୋଇଥାନ୍ତା । ସାତ ଦିନରେ ଗୋଟିଏ ଛୁଟି, ତାକୁ ଏମିତି ମାଟି କରିଦେବା ଉଚିତ ହୋଇ ନାହିଁ । ତା'ପରେ ନିଜକୁ ଆପୁଡ଼େଇ ଭାବିଲି,—ନା—ନା—ଠିକ୍ ହୋଇଛି—ନହେଲେ ଜଗା ଭାବିବ ଯେ ମୁଁ ବଡ଼ଲୋକ ହୋଇଗଲିଣି ଓ ଭୁଲିଯାଇଛି ତା'କୁ—

× × × ×

ରବିବାର ସନ୍ଧ୍ୟା । ସାଦା ପଞ୍ଜାବୀ ଓ ଧୋତି ପିନ୍ଧି ମୁଁ ବାହାରିପଡ଼ିଲି ମଙ୍ଗଳାବାଗ—ଜଗା ଘରକୁ ।

ତା ଘରର ଠିକଣା ଜାଣିଥିଲେ ବି' ପାଇବାକୁ ଟିକିଏ ଡେରି ଲଗିଲା । ଗଳିଗୁଡ଼ାକ ସବୁ ଲଗିଲା ଏକାଭଳିଆ ଓ ତା' ଭିତରେ ଥିବା ଘର ସବୁ । ବୁଲି ବୁଲି ପହଞ୍ଚିଲି ଗୋଟାଏ ଗଳିର ଶେଷ ମୁଣ୍ଡରେ । ଆଗରେ ଗୋଟାଏ ପୋଖରୀ,—ଉପରେ କଳାଚିଆ ଦଳର ଆସ୍ତରଣ, ଚାରିପାଖରେ ବାଉଁଶବଣ, ସିଜୁ ବୁଦା । ଗଳିର ଗୋଟାଏ ପାଖରେ ପୋଖରୀ ହୁଡ଼ା ଉପରକୁ ଗୋଟିଏ ଗୁଳିଆ । ଶୁଖିଲା ଡାଳ ବାହୁଙ୍ଗା ଖୋଲା ହୋଇ ପଡ଼ିଛି । ଟୋକେଇ ସବୁ ଘୋଡ଼ା ହୋଇ ରଖାଯାଇଛି । ବୁଝିବାକୁ ଡେରି ଲଗିଲା ନାହିଁ ଯେ ତା' ଭିତରେ ଅଛନ୍ତି କୁକୁଡ଼ା । ଘଷି ଗୋବର ଥାକମରି ହୋଇ ଥୁଆ ହୋଇଛି ଓ ତା' ପାଖରେ ଗୋଟିଏ ବୁଢ଼ୀ । ବୁଢ଼ୀ ବଲବଲ ହୋଇ ଅନେଇ ରହିଛି ନିଜ ଆଗକୁ ଓ ମୁଣ୍ଡର ବାଳକୁ ଖେଳାଇ ଦୁଇ ହାତକୁ ଟାଣୁଛି । ମନେ ହେଲା ସେ ଯେମିତି ନିଜ ଉପରେ ଖୁବ ଖୁସି,—ନିଜର ବାର୍ଦ୍ଧକ୍ୟ ଓ କୁତ୍ସିତତା ଉପରେ । ମୁହଁ ଫେରାଇ ଆଣିଲି—ବୋଧହୁଏ ତା'ର ସ୍ଥିର ଦୃଷ୍ଟିରେ ମୁଁ ବି' ବଦଳିଯିବି । ସେଇ ଗୁଳିଆର ସାମନାରେ ଗୋଟାଏ ଘର । ମାଟି ଘର । କେଉଁଦିନୁ ଲିପାପୋଛା ହୋଇନାହିଁ, ପିଣ୍ଡାରେ କେତୋଟା ଲଙ୍ଗଳା ପିଲା ମହା ଆନନ୍ଦରେ ବୁଲୁଛନ୍ତି ।

କୁଆଡ଼େ ଯିବି ଭାବୁଛି କିଛି ସମୟ । ନାକରେ ବାଜୁଛି ଘଷି ଗୋବର ନର୍ଦ୍ଦମା ଓ କୁକୁଡ଼ା ଘୁଅର ମିଶାମିଶି ଗୋଟିଏ ବିଚିତ୍ର ଗନ୍ଧ । ଝିଣ୍ଟୁଆ ପବନ ସେଇ ଗନ୍ଧକୁ ତୀବ୍ର କରିଦେଉଛି । ଏଇ ସମୟରେ ହଠାତ୍ ଆଖି ପଡ଼ିଲା ଘରର କାନ୍ଥରେ ଅଙ୍ଗାରରେ କଅଣ ଲେଖାହୋଇଛି ଇଂରାଜୀରେ । ତେବେ ଏଠି କଣ କେହି ଇଂରାଜୀ ପଢ଼ୁଆ— ?

ଭାବିବାକୁ ସମୟ ପାଇଲି ନାହିଁ । ଘର ଭିତରୁ ବାହାରି ଆସିଲା ଜଗା । ଲୁଗା ଖଣ୍ଡେ ପିନ୍ଧିଛି, ଅଣ୍ଟା ପାଖରେ ଗଣ୍ଠି କରି । ଦାଢ଼ୀ ଦେଖିକଟା ଖାଲି । ବେକରେ ଯାହା ଗୋଟାଏ ମଇଳା ମାଳି । ମୋତେ ଦେଖି କହି ଉଠିଲା—'କରେ ତୁ ଆସିଛୁ ତାହାହେଲେ । ମୁଁ ଭାବି ନଥିଲି ତୁ ଆସିବୁ ବୋଲି ।'

'କାହିଁକି ?'

ମୋ ମୁହଁକୁ କିଛି ସମୟ ଅନାଇ ରହି କହିଲା—'କାରଣ—ତୁ ବୋଧହୁଏ ଆସିବାକୁ ଚାହିଁବୁ ନାହିଁ ।'

ସେଇ ଜଗା । ଆଖିରେ ତାର ନିଆଁ ଲଗା ଚାହାଣୀ । ସବୁ ଯେମିତି ଧ୍ୱଂସ କରିଦେବ,—ତୁମର ସୃଷ୍ଟି, ତୁମ ଭାବନା, ତୁମର ରୁଚି, ଭଦ୍ରତା ଓ ନମ୍ରତା । ମନେ

ପଢ଼ାଳି ସ୍କୁଲର ଗୋଟିଏ ଡିବେଟିଂ ପ୍ରତିଯୋଗୀତା କଥା । ଆମେ ସମସ୍ତେ ମୁଖସ୍ଥ କରି ଆସିଥିଲୁ କଅଣ କହିବାକୁ ହେବ । କିନ୍ତୁ ଜଗା ନିଜ ମନରୁ ଯାହା ଆସିଲି କହିଗଲା,—ସେଥିରେ ହଜାରେ ଭୁଲ ଥିବା ସତ୍ତ୍ୱେ ଥିଲି ଯେମିତି ବିଶ୍ୱାସର ଦୃଢ଼ତା ଓ ଉତ୍ତାପ । ସେ ପ୍ରାଇଜ୍ ପାଇଲା ନାହିଁ । କିନ୍ତୁ ପାଇଲା ସମସ୍ତଙ୍କର ବିସ୍ମୟ ଓ ପ୍ରଶଂସା । ସହଜ ସାମାଜିକ ସତ୍ୟଗୁଡ଼ିକ ସେ ଟିକିନିଖି କରି ଚିରି ଦେଖାଇଦେଲା ଯେ ସେଥିରେ ଅଛି କୃତ୍ରିମତା, ଭ୍ରମ ଓ ଶଠତା । ସେଥିରେ ଯୁକ୍ତିର ଭୁଲ ଥିଲା ଯଥେଷ୍ଟ । କିନ୍ତୁ ତା' କହିବା ଭଙ୍ଗୀରୁ ମନେ ହେଉଥିଲା ଯେ ସେ ସତ ହୋଇଥିବ ।

ଅନେକେ ତାକୁ ଆଡ଼ପାଗଳା ବୋଲି କହନ୍ତି । କେହି କହନ୍ତି ତାର ଦାରିଦ୍ର୍ୟ ତାକୁ ଏପରି କରିଦେଇଛି । କେହି କହନ୍ତି ପିଲାଦିନୁ ତା'ର ବାପ ମା ନାହାନ୍ତି,—ସେଇଲାଗି । ସେ ଯାହାହେଉ—ତା'ର ଏଇ ଅସ୍ୱାଭାବିକ ମନୋଭାବ ମୋ ପାଖରେ ହୋଇଥାଏ ଗୋଟିଏ ମୂଲ୍ୟବାନ ଜିନିଷ । ତା' ସାଙ୍ଗରେ ବନ୍ଧୁତା ମୁଁ ଜାଣିଶୁଣି କରିଥିଲି, ସଂଗ୍ରାହକର ଉତ୍ସୁକତା ନେଇ । ପାଖରେ ପାଇବାକୁ ଡର ଲାଗୁଥିଲା—କିନ୍ତୁ ଦୂରରେ ରଖି ନିଜର ବୋଲି କହିବାକୁ ଭଲ ଲାଗୁଥିଲା । ଏଇ ଦେଖ,—ସେ ମୋର ଜଣେ ସାଙ୍ଗ—ଅସାଧାରଣ, ଆଦରର ବସ୍ତୁଟିଏ—

ଜଗା ମୋତେ ଭିତରକୁ ଡାକିଲା । ଘର ଭିତରକୁ ପଶିଲାବେଳେ ମୁଣ୍ଡ ନୁଆଁଇ ଯିବାକୁ ପଡ଼ିବ ଜାଣି ନଥିଲି । ମୁଣ୍ଡ ବାଜିଲା କବାଟର ଚଉକାଠରେ । ଆଉଁଷୁଛି, ଏଇ ସମୟରେ ଜଗା ପଚାରିଲା—'ବେଶି କାଟି ନାହିଁ ତ ?—ଆମର ସିନା ଅଭ୍ୟାସ ହୋଇଗଲାଣି । ତୋର ତ—'

ସାଙ୍ଗେ ସାଙ୍ଗେ ତାକୁ କହିଲି—'ନାହିଁ—ସେଥିରେ କଅଣ ଅଛି ? ଆମ ଗାଆଁରେ ତ ଏମିତି କବାଟ ଥାଏ । ମୁଁ କଅଣ ଗାଆଁରେ ଚାଲିନାହିଁ ? ଏହିକ୍ଷଣି ଟିକେ ଅସାବଧାନରେ—'

ଜଗା ଟିକେ ହସିଲା ପରି ଜଣାଗଲା । ଘର ଭିତରେ କେଉଁଠି ବସିବି ଠିକ୍ କରିବାକୁ ଡେରି ଲାଗିଲା । ଗୋଟିଏ ଚଉକି ଓ ଗୋଟିଏ ଖଟ ଘରର ଉପକରଣ । କାହାର କାହା ସାଙ୍ଗରେ ସମ୍ବନ୍ଧ ନାହିଁ ଯେମିତି । ଚଉକି ଉପରେ ଥୁଆ ହୋଇଛି ମଇଳା ଲୁଗା କେତେଖଣ୍ଡ ଓ ସେ ରହିଛି ଗୋଟାଏ କୋଣକୁ ।

ଜଗା ଶୀଘ୍ର ଚଉକିଟା ସଫା କରି ମଝିକୁ ଟାଣି ଆଣିଲା ତଥାପି ସନ୍ଦେହ ହେଉଥାଏ, ଯେ ସେ ଜମି ରହିଥିବା ଧୂଳି ଏତେ ସହଜରେ ସଫା ହୋଇ ପାରିବ ନାହିଁ ।

ବସିପଡ଼ିଲି ଚଉକିରେ । ଜଗା ଖଟ ଉପରେ ବସି ମୋତେ ଚାହିଁ ରହିଲା—ପଚାରିଲି 'କେମିତି ଲାଗୁଛି ଘରଟା ?'

କଅଣ ଉତ୍ତର ଦେବ କିଛି ଭାବିପାରିଲି ନାହିଁ । ଘର ଭିତରର ଅଳନ୍ଧୁ, ଧୂଳି, ଚୂନ ଗୁଣ୍ଡ ଆସିଥିବା କାନ୍ଥ, କୋଣକୁ ଡେଉଁ ହୋଇଥିବା ହେଁସ, ଟିଣକାର ଠଣା ଉପରେ ଥୁଆ ହୋଇଥିବା ଫଟା ଫୁଲପକା କାଚଗିଲାସ ସବୁ ଆଖିରେ ପଡ଼ିଲା । ଟିପ୍ପଣୀ ଦେବ କାହା ଉପରେ ? କ'ଣ ବା ଦେବ ? ସେଇ ଘରେ ଥିବା କେବଳ ଯୋଡ଼ିଏ ଜିନିଷକୁ ମୁଁ ପ୍ରଶଂସା କରି ପାରିଥାନ୍ତି । ଗୋଟିଏ ହେଉଛି ଜଗା ନିଜେ ଓ ଅନ୍ୟଟି ହେଉଛି ବିବେକାନନ୍ଦଙ୍କର ଗୋଟିଏ ଫଟୋ, କାନ୍ଥରେ ଟଙ୍ଗା ହୋଇଛି । କିନ୍ତୁ ଦୁହିଁଙ୍କି ବି' ଯେମିତି ନିଜକୁ ଲୁଚାଇବାକୁ ଚାହୁଁଥିଲେ ସେଇ ଅନ୍ଧାର ଧୂଳି ଭିତରେ ।

ପ୍ରକାଶ୍ୟରେ କହିଲି—'କଟକରେ ଭଡ଼ାଘର ଆଉ ଭଲ ମିଳିବ କେଉଁଠି ? ଏ' ତ ମନ୍ଦ ନୁହେଁ । ବାରଣ୍ଡା ଅଛି—ଅଗଣା ଅଛି । ମୁଁ ଯେତେବେଳେ ଟୁର୍‌ରେ ଯାଏ ମଫସଲକୁ, ସେତେବେଳେ ଯେଉଁ ଘରେ ରହେ ତୁ ଦେଖିଲେ ଆଶ୍ଚର୍ଯ୍ୟ ହୋଇଯିବୁ । ଗୁହାଳଠାରୁ ବି—'

ଜଗା କିଛି କହିଲା ନାହିଁ, ଟିକିଏ ହସିଲା ଖାଲି । କିଛି ସମୟ ପରେ ଜଗା ଭିତର ଘରକୁ ଯାଇ ପୁଣି ଫେରି ଆସିଲା ଟିକିଏ ପରେ । କହିଲା—'ଶ୍ରୀମତୀ ଆସିବାକୁ ଲାଜ କରୁଛନ୍ତି । ମଫସଲର ଝିଅ ଯେତେହେଲେ—'

ମୁଁ ଅପ୍ରତିଭ ହେଲି । କହିଲି, ଆମ ଘରେ ଏବେ କେଉଁ ଅଧୁନିକା ଅଛନ୍ତି ? ଅଗତ୍ୟା କେତେବେଳେ ବାହାରକୁ ଆସିବାକୁ ପଡ଼େ—ତା' ନ ହେଲେ—'

ଗ୍ରେଟିଆ ଟୋକାଟିଏ ହାତ ନଥିବା କପରେ ଚା' ଆଣି ଥୋଇଦେଲା । ଖାଲି ଦେହରେ ଖଣ୍ଡେ ମଇଳା ପ୍ୟାଣ୍ଟ ପିନ୍ଧିଥାଏ । ପଚାରିଲି—'ଏ କିଏ ?'

'ଏ ମୋର ଭାଇ, ମାଇନର ସ୍କୁଲରେ ପଢ଼େ । କିନ୍ତୁ ପଢ଼ିବାକୁ ସମୟ ପାଏନା—କାରଣ ଅଧିକାଂଶ ସମୟ ଘର କାମ କରିବାକୁ ପଡ଼େ, ବଜାରକୁ ଯିବାକୁ ପଡ଼େ—' ପିଲାଟିର ମୁହଁରେ ବୋମହୁଏ ଥିଲା ଉତ୍ସୁକ ଭାବର ଦୀପ୍ତି । କହିଲି—'ବେଶ୍ ବୁଦ୍ଧିଆ ଜଣାପଡ଼ୁଛି । ତୋର ଭଲଆ ହେବ ।'

ଜଗା ଉତ୍ତର ଦେଲା—'ତୋର ଆଶୀର୍ବାଦ !' ଚା' ନାମକ ଉଷ୍ଣ ପାଣିକୁ ଢକ୍ ଢକ୍ କରି ପିଇଦେଲି । ଜଗା ତାର ଗିଲାସରେ ଥିବା ଚାଆରେ ମୁହଁ ଦେଇ କହିଲା—'କିରେ ତୁ ପିଇଦେଲୁ ଯେ ! ଚିନି କମ୍ ଲାଗିଲା ନାହିଁ ?'

'କାହିଁ ନା ତ ? ତା'ଛଡ଼ା ମୁଁ ଅଳ୍ପ ଚନ୍ଦ ଖାଏ—'

ତା'ପରେ କିଛି ସମୟ ଲଣ୍ଡନ ଆଲୁଅର ଜ୍ୟୋତିରେ ମୁଁ ଜଗା ସାଙ୍ଗରେ କଥାବାର୍ତ୍ତା କରିବାକୁ ଲାଗିଲି । ତା' ମୁହଁକୁ ଦେଖିପାରିଲି ନାହିଁ । ତା' ଉପରେ ପଡ଼ିଥିଲା ଲଣ୍ଡନର ଛାଇ ।

କଥା କହୁଥିଲି ମୁଁ,—ଜଗା ଶୁଣୁଥିଲା । ତା'ପରେ ମୁଁ କହିଲି, ଚାକିରି କଥା, ଘରକରଣା କଥା, ସେ ଯେଉଁ ଅଫିସରେ ଅଛି ସେଥିରେ ଶୀଘ୍ର ପ୍ରମୋସନ ହୋଇ-ଯାଏ । ମିଃ ଦତ୍ତ କେମିତି ସେଇ ଅଫିସର କିରାଣୀ ପଦରୁ ଉଠି ଉଠି କଲେକ୍ଟର ହୋଇଥିଲେ । କିନ୍ତୁ ମୋ ଚାକିରିରେ ନାଁଟା ସିନା ବଡ଼—ଆଉ କିଛି ନାହିଁ । ପଇସା ବେଶୀ ଖର୍ଚ୍ଚ ହୁଏ । ସବୁବେଳେ ଚନ୍ଦା ଦିଅ । ଉପର ହାକିମର ଖୋସାମତ । ମୁଁ କେମିତି ଚାହିଁଥିଲି ମାଷ୍ଟର ହେବାକୁ, କିନ୍ତୁ ବାପା ରାଜି ହେଲେ ନାହିଁ । ମୋଟ ଉପରେ ସବୁ ଚାକିରି ସମାନ । ସ୍ୱାଧୀନତା ନାହିଁ । କଳରେ ବନ୍ଧା, ଇତ୍ୟାଦି ଇତ୍ୟାଦି ।

କେତେବେଳ ଯାଏଁ ଏମିତି କହି ଚାଲିଥିଲି । ହଠାତ୍ ଜଗା ମୋତେ ଚେତାଇ ଦେଲା ଯେ ଆଠଟା ବାଜିଗଲାଣି । ମୁଁ ଉଠିପଡ଼ିଲି—କହିଲି—'ଯାଉଛି ଜଗା, ବହୁତ ବେଳ ହୋଇଗଲାଣି ।'

ସେ ଆପତ୍ତି କଲା ନାହିଁ । ମୋତେ ଛାଡ଼ିବାକୁ ଆସିଲା ବାହାରକୁ । ଅନ୍ୟ-ମନସ୍କ ହୋଇ ମୋ ସାଙ୍ଗରେ ଚାଲିବାକୁ ଲାଗିଲା,—ଗଳିମୁଣ୍ଡ ପର୍ଯ୍ୟନ୍ତ ପାଛୋଟି ଦେବାକୁ ।

ବଡ଼ ରାସ୍ତା ଉପରକୁ ଆସିଲୁ । ଇଲେକଟ୍ରିକ୍ ବତୀ ଖୁଣ୍ଟ ତଳେ ମୁଁ ଜଗାର ହାତ ମିଳାଇ ବିଦାୟ ନେବାକୁ ଚାହିଁଲି । ପଚାରିଲି—'ତୁ କେବେ ଆସିବୁ ମୋ ଘରକୁ ?'

ଜଗା ମୋ ମୁହଁକୁ ଚାହିଁଲା । ହାତର ବନ୍ଧନଟା କୋହଳ ହୋଇ ଯାଇଥିଲା । ସେ ତା'କୁ ମୁଠେଇ ଧରି କହିଲା—'ଭାଇ ବିନୋଦ—ଯଦି କହେ ମୁଁ ଯିବିନି, ତୁ ଦୁଃଖ କରିବୁ ନାହିଁ ତ ?'

'ମାନେ ?'—ଆଶ୍ଚର୍ଯ୍ୟ ହୋଇ ପଚାରିଲି । କିଛି ସମୟ ରହିଯାଇ ଧୀର ଶାନ୍ତ ଗଳାରେ ଜଗା କହିଲା—'ମାନେ ତୁ ବଡ଼ଲୋକ । କିନ୍ତୁ ମୁଁ ତୋ ପାଖକୁ ଗଲେ ତୁ ଦେଖାଇବାକୁ ଚାହିଁବୁ ଯେ ତୋ'ର ବଡ଼ଲୋକି ନାହିଁ । ତୁ ମୋ'ପରି ଜଣେ, ପାର୍ଥକ୍ୟ ଅଳ୍ପ କିଛି । ମୁଁ ପ୍ରତି ମୁହୂର୍ତ୍ତରେ ଭାବିବି ଯେ ତୁ ମୋ' ଲାଗି ମଞ୍ଚ ଉପରୁ ଖସି ଆସୁଛୁ ମୋ ସାଙ୍ଗରେ ହାତ ମିଳେଇବା ପାଇଁ ଓ ତୁ ସବୁବେଳେ ଭାବିବୁ ଯେ ଜଗା କିଛି

ମନେ କରୁନାହିଁ ତ ! ସେଇ କ୍ଷଣିକର ଅସ୍ୱସ୍ତି ତୋତେ ଦେବ କାହିଁକି ? ତା'ଛଡ଼ା ମୋର ସେଥିରେ ସମ୍ମାନ ହେବ ନାହିଁ,—ହେବ ଅପମାନ ।

'କ'ଣ କହୁଛୁ ଜଗା ? ମୁଣ୍ଡ ଖରାପ ହୋଇଗଲାଣି ତୋର ?' ଜଗା ଶ୍ଳେଷ ମିଶା ହସରେ କହିଲା—'ନାଇଁ ଭାଇ—ମୋ' ମୁଣ୍ଡ ଠିକ୍ ଅଛି, କିନ୍ତୁ ଭାଷା ବୋଧହୁଏ ଠିକ୍ ନାହିଁ । ସେଥିପାଇଁ ମୁଁ କ୍ଷମା ମାଗି ନେଉଛି ।'

'ଆଚ୍ଛା ହେଉ,—କ'ଣ କହିବାର ଅଛି କହ'—ମୁଁ ଟିକେ ବିରକ୍ତ ହୋଇ କହିଲି ।

'ନା କହିଥାନ୍ତି ବହୁତ—କିନ୍ତୁ କହିବି ନାହିଁ । କହି ଲାଭ ନାହିଁ । ଖାଲି ଏତିକି କହିରଖେ ଯେ ଆମକୁ ସବୁଠୁ କ'ଣ ବାଧେ ଜାଣୁ ? ଯେତେବେଳେ ତୁମେମାନେ ବଙ୍ଗଳାଘର କୋଠରୀରେ ରହି ଆମ ସଙ୍ଗରେ ମିଶିବାକୁ ଚେଷ୍ଟା କର, ଆମର ଦାରିଦ୍ର୍ୟକୁ ରୋମାଣ୍ଟିକ୍ ରୂପ ଦେବାକୁ ଚେଷ୍ଟା କର,—କୋଠାଘରେ ରହି କୁହ ଯେ ଗଛ ତଳର ଛାଇ କି ସୁନ୍ଦର ! ଆମକୁ ଘୃଣା କରନ୍ତୁ—ଦୂରରେ ରଖନ୍ତୁ—ଆମେ ଜାଣନ୍ତୁ ଯେ ତୁମେ ଓ ଆମେ ଅଲଗା । କିନ୍ତୁ ସେଥିରେ ଥାନ୍ତା ସରଳ ସତ୍ୟତା । କିନ୍ତୁ ଯେତେବେଳେ ତୁମେମାନେ ସହାନୁଭୂତିର ଦୁହାଇ ଦେଇ ଆମର ମଇଳା, ନଙ୍ଗୁଳିଆ ସଂସାରକୁ ଭଲ ବୋଲି କୁହ ଓ ଦେଖାଇହୁଅ ଯେ ତୁମେ ତା' ଭିତରୁ ଜଣେ—ସେଇ ଛଳନାଟି ସବୁଠୁ କଷ୍ଟ ଦିଏ ।

ଏତେଗୁଡ଼ା କଥା କହିସାରି ସେ ମୋ ପିଠିରେ ଥାପୁଡ଼ାଇ କହିଲା—ଭାବବୁନି କିଛି ବିନୋଦ—କଅଣ ବୋଲି କଅଣ କହିଦେଲି—ଜାଣୁ ତ ମୁଁ ଏମିତି କହିଥାଏ ସବୁଦିନ ।

......କେତେ ଶୀଘ୍ର ତା'ଠାରୁ ବିଦାୟ ନେଇ ଅସିଲି ଜାଣେନା । କିନ୍ତୁ ବାଟସାରା ଖାଲି ଭାବୁଥିଲି—'ସତକଥା, ମୁଁ ବଡ଼ଲୋକ—ମୋର ବଡ଼ଲୋକ ରହିବା ଉଚିତ । ସେତିକି ଘୋଡ଼ାଇ ଉଦାରତା ଦେଖାଇ ଲାଭ କଅଣ ? ମନେପଡ଼ିଲା କୃଷ୍ଣା ଓ ମିସେସ୍ ବେହେରାଙ୍କ କଥା । ଭାବିଲି—ସେମାନେ ବୋଧହୁଏ ମୋ'ଠାରୁ କମ୍ ନିର୍ବୋଧ !'



# ବଡ଼ଲୋକି

ଏହି ଗଳ୍ପର ସରଳ ସାମାଜିକ ସତ୍ୟଟି ଆଜିଯାଏଁ ମୋ ଚିତ୍ତରରେ ଅତୁଟ ଅମଳିନ ହୋଇ ରହିଛି । ଯଦିଓ ଏଥିମଧ୍ୟରେ ମୁଁ ଧନ, ମାନ ଓ ମର୍ଯ୍ୟାଦାରେ ଆହୁରି ଅନେକ ଉପରକୁ ଉଠି ଆସିଲଣି ଏବଂ ମଧ୍ୟବିତ୍ତର ଇଲାକାରେ ମୋତେ "ବଡ଼ଲୋକ" ବୋଲି କହିବା ଅକାରଣ ନୁହେଁ । ଯେହେତୁ ଅନେକଥର ମୋ ମନକୁ ଆସିଛି—ଧାତ୍, ମୁଁ ଏମିତି କୋଉ ବଡ଼ଲୋକ ମ ? ପ୍ରକୃତ ବଡ଼ଲୋକ ହୋଇଥିଲେ ମୁଁ ଅମୁକଙ୍କ ଚେମ୍ବର୍‌ରେ ଅମୁକଙ୍କ ପାର୍ଟିରେ ବେଶି କଥା କହୁଥିଲି କାହିଁକି ? ଅଯଥାରେ ହସୁଥିଲି କାହିଁକି ? କାଳେ ତାଙ୍କ ପାଖରେ ମୋର ନ୍ୟୂନତା ଧରା ପଡ଼ିଯିବ, ସେଇଥିପାଇଁ ? ତାହାହେଲେ କଣ ମୋର ଏବଂ ବେହେରା ଦମ୍ପତିଙ୍କ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନାହିଁ ? ହେ ଭଗବାନ ! ଅଥଚ ବହୁବାର ମୁଁ ନିଜକୁ ସାବାସ୍ ଦେଇଛି ଯେ ମୋର ବଡ଼ଲୋକି ନାହିଁ । ମୁଁ ସହକର୍ମୀ ଅମୁକ ବାବୁ ପରି ଦେଖେଇ ହୁଏ ନାହିଁ ଯେ ମୋର ହାତୀଘୋଡ଼ା ଅଛି, ମୁଁ ଏତେ ବିଦ୍ୟା ଜାଣିଛି, ମୁଁ ଏତେ ଗଡ଼ ଜିଣିଛି, ଇତ୍ୟାଦି । ମୋ ବିଷୟରେ ସେମାନେ ଯାହା କହିବାର ଶୁଣିଛି, ପଢ଼ିଛି ମଧ୍ୟ, ସେଥିରୁ ସ୍ପଷ୍ଟ ବୁଝାପଡ଼ିବ ଯେ ମୁଁ ନିରହଂକାର । ତଥାପି ବେଳେ ବେଳେ ଭୟ ହୁଏ ଯେ ଜଗା ହସୁଛି । ମୋର ଅଣ-ବଡ଼-ଲୋକିରେ ସ୍ୱକୃତ ସଚେତନ ଉଦାରତା (condescension) ବାରି ହୋଇ ଯାଉଛି ବୋଲି ଚିଡ଼ଉଛି ମୋତେ । ତାହାହେଲେ ମୁଁ ଯିବ କୁଆଡ଼େ ? ଉପାୟ କଅଣ ?

ଉପାୟ ନାହିଁ । ପ୍ରତି ମଣିଷର ସହଜାତ ପ୍ରବୃତ୍ତି ହେଲା ନିଜକୁ ପ୍ରାଧାନ୍ୟ ଦେବା । ଅର୍ଥାତ୍ ଅନ୍ୟମାନଙ୍କ ଆଖିରେ ନିଜକୁ ବଡ଼ ବୋଲି ଦେଖେଇବା । ଟଙ୍କା ପଇସା କୋଠାବାଡ଼ିର ବଡ଼ଲୋକ ଅବଶ୍ୟ ସବୁଠାରୁ ନିକୃଷ୍ଟ ଧରଣର । କିନ୍ତୁ ବିଦ୍ୟାର କୃତିତ୍ୱର ବଡ଼ପଣକୁ ବଡ଼ଲୋକି ନୁହେଁ ବୋଲି କହି ହେବ ନାହିଁ । ଏଣେ 'ଦେଖେଇ ହେବା' ଅନୁଚିତ, ଏଥିରେ ସନ୍ଦେହ ନାହିଁ । ବିନୟ କେବଳ ବହିପଢ଼ା ନୀତିବାକ୍ୟ ନୁହେଁ । ବିନୟୀ ନ ହୋଇ ପାରିଲେ ତୁମେ ସେମାନଙ୍କର ଚକ୍ଷୁଶୂଳ ହେବ । ତୁମର ବାନା ଫର ଫର ହୋଇ ଉଡ଼ିଲେ ତାଙ୍କ ବାନାର ମର୍ଯ୍ୟାଦା ରହିବ ନାହିଁ, ତେଣୁ ଆଉ ଯାହା କରନ୍ତୁ ବା ନ କରନ୍ତୁ ସେମାନେ ତୁମକୁ ଭଲ ପାଇବେ ନାହିଁ । ଭଲ ପାଇବା ହରାଇଲେ ଆଉ ରହିଲା କଅଣ ? ··କିନ୍ତୁ ବିନୟର ସୀମା କେଉଁଯାଏଁ ? ନିଜର ଢୋଲ ମୋଟେ ନ ପିଟିଲେ ଚଳିବ ନାହିଁ, କିନ୍ତୁ କେତେ ଆସ୍ତେ ପିଟିଲେ ଯାଇଁ ପୁଅ ଚମକିବ ନାହିଁ ?

ଉପାୟ ଅଛି । ଯେଉଁ ଦୁର୍ଲଭ ଦୁର୍ଭର୍ଗା ଆତ୍ମସମ୍ମାନ କଣ ବୋଲି ଜାଣେ ନାହିଁ କିମ୍ବା ଭୁଲିଯାଇଛି, ତା' ପାଇଁ ଏଭଳି ଦ୍ୱନ୍ଦ ଏବଂ ଦ୍ୱନ୍ଦଜନିତ ଦୁଃଖର ପ୍ରଶ୍ନ ଉଠୁ ନାହିଁ । ଅବା ଯେଉଁ ନିମଧ୍ୟ ବ୍ରାହ୍ମଣ ଅଷ୍ଟାବକ୍ର ଗୀତାର ମହତ୍ତ୍ୱର "ଅହଂ"କୁ ଉପଲବ୍ଧି କରିପାରିଛି, "ଆହୋ ଅହଂ ନମୋ ମହ୍ୟଂ ଯସ୍ୟ ମେ ନାସ୍ତି କିଂଚନ", ମୋର କିଛି ବୋଲି କିଛି ନାହିଁ, ସେଇଥିପାଇଁ ମୁଁ କେଡ଼େ ବରିଷ୍ଠ ବୋଲି ନିଜକୁ କହି ପାରୁଛି, ତା' ପାଇଁ ଏ ଦ୍ୱନ୍ଦର ଅବକାଶ ନାହିଁ ।

କହିବାକୁ ଗଲେ ଗଳ୍ପଟି ଗଳ୍ପ ପଦବାଚ୍ୟ ନୁହେଁ । କାରଣ ଏଥିରେ ଧାତ୍ପ୍ରବାହ ନାହିଁ । କେତୋଟି ସାନ ସାନ ବିଚ୍ଛିନ୍ନ ଘଟଣାକୁ ନେଇ ସାମାଜିକ ଜୀବନର ଗୋଟିଏ ଦିଗ ଉପରେ ମୋର ଟିପ୍ପଣୀ ବୋଲି କହିଲେ ଭୁଲ୍ ହେବ ନାହିଁ । କିନ୍ତୁ ଶତାବ୍ଦୀର ମଧ୍ୟ ପଞ୍ଚଦଶକରେ ପ୍ରତିଷ୍ଠିତ ପତ୍ରିକା 'ଝଙ୍କାର'ରେ ପ୍ରକାଶିତ ମୋର ଏହି ପ୍ରଥମ ଗଳ୍ପଟି ମୋତେ

ପାଠକ ସମାଜରେ ବିଶେଷ ଭାବରେ ପରିଚିତ କରାଇ ପାରିଛି ବୋଲି ମୋର ବିଶ୍ୱାସ । ସେଇଥିପାଇଁ ମୁଁ ଗଳ୍ପଟିକୁ ଉଚିତରୁ ଅଧିକ ଭଲ ପାଏ ।



କଟକ

୧୧ ଜୁଲାଇ, ୧୯୮୬

# ସାବିତ୍ରୀର ସୁଦିନ

ଓଦା ପିଚ୍ ଉପରେ ଆଲୁଅ ଚମକୁଛି । ବତୀଖୁଣ୍ଟର ଜୁଳୁଜୁଳୁ ଆଲୁଅ ଅଶ୍ଳୀଳ ଗର୍ଜନ କରି ମାଡ଼ି ଆସୁଥିବା ଦିଲ୍ଲୀ ଟ୍ରାନ୍ସପୋର୍ଟ ବସ୍‌ର ଉଜ୍ଜ୍ୱଳ ଆଲୁଅ ଭିତରେ ଥିବା ଉତ୍ତାପ ଓ ବିଳାସର ନିମନ୍ତ୍ରଣ ଦେଇ ରେସ୍ତୋରାଁ ଆଲୁଅର ଆଖିମିଟିକା ।

ମିସ୍ ସାବିତ୍ରୀ ବାଟ ଚାଲୁଛି । ଶାଢ଼ୀରୁ ଫାଳେ ଓଦା ହୋଇଗଲାଣି । କାଦୁଅ ଛିଟିକା ଲାଗିବଣି କେତେ । ଆଗରେ ବସ୍ ନ ମିଳିଲେ ହଇରାଣ ।

ସାବିତ୍ରୀ ଚଞ୍ଚଳ ଚାଲିପାରେ । ସେଇଟା ତାର ଆତ୍ମରକ୍ଷାର ବଡ଼ ଅସ୍ତ୍ର ବୋଲି ସେ ଜାଣିଛି । ମନେ ଅଛି, କଲେଜ୍‌ରେ ପଢ଼ିଲାବେଳେ ନୂତନ ବିଦ୍ୟାର୍ଥୀ ଜଣେ ତା' ସାଙ୍ଗରେ କଥା କହିବାର ବାହାଦୂରି ନେବାକୁ ଚାହିଁଥିଲା ଓ ଟିକିଏ ସୁବିଧା ଦେଖି ସେ ଆଗଭର ହୋଇଥିଲା ତା' ପାଖକୁ ଲାଗି ଆସିବାକୁ । କିନ୍ତୁ ସେ ପାରିନାହିଁ । ବିଜୁଳି ପରି ଛୁଟି ପଳାଇଛି ସାବିତ୍ରୀ, କ୍ଲାସରୁମ୍‌କୁ ନ ହେଲେ ଝିଅମାନଙ୍କର କମନ୍‌ରୁମକୁ ।

ଆଜି ସେହି ଚାଲିଟିକ ରହିଯାଇଛି । ରାସ୍ତାରେ ଛନକା ପଶୁ ନାହିଁ, ଇତର ତାରୁଣ୍ୟର ଲୋଭରୁ ନିଜକୁ ବଞ୍ଚାଇବାକୁ ପଡ଼ୁନାହିଁ, କିନ୍ତୁ ସେଇ ତରତର ଚାଲିଟି ବଞ୍ଚିରହିଛି ସ୍ୱଗୁଣରେ । ଆଜି ସେମିତି ଚାଲିଲାବେଳେ ସାବିତ୍ରୀର ମନେହୁଏ ଯେ ସେ କର୍ମକୁଶଳା, ତତ୍ପର, ସଂସାରକୁ ଆସିଛି କାମ କରିବାପାଇଁ । ସେ ଏଇ ଦେହରେ ଗୋଲେଇକୁ ଲହଡ଼ାଇ ଧାଉଁଥିବା ମନ୍ଥରଗତି ସ୍ତ୍ରୀମାନଙ୍କ ମଧ୍ୟରୁ ଜଣେ ନୁହେଁ ।

ପିଚ୍ ଉପରେ ଜୋତାର ହିଲ୍ ଠକ୍ ଠକ୍ ଠକ୍ । ଅନଳସ, ଅବିରାମ ଠିକ ଟାଇପ୍ ରାଇଟର୍‌ରେ ହାତ ଚାଲିଲା ପରି । ସାବିତ୍ରୀ କାମ କରୁଛି ।

କନଟ୍‌ପ୍ଲେସ୍‌ର ପରିଧି ପାଖେଇ ଆସିଲାଣି । ଆଗରେ 'କ୍ୱାଲିଟୀ' ରେସ୍ତୋରାଁ । ସେଇଠି ହୁଏତ ବସ୍ ମିଳିପାରେ । ସାବିତ୍ରୀ ଅଟକିଗଲା, ମୁହାଁଇଲା ବସ୍‌ଷ୍ଟାଣ୍ଡ ଆଡ଼କୁ ।

କିନ୍ତୁ ଧାଡ଼ି ଲମ୍ବି ଚାଲିଛି । ଦୁଇ ଦୁଇଟା ବସ୍ ଆସି ନ ରହି ଚାଲିଗଲା, ଜାଗା ନାହିଁ ବୋଲି ।

ସାବଜୀ ବ୍ୟସ୍ତ ହୋଇ ପଡ଼ିଲା । ଘୋଡ଼େଇ ରଖିଥିବା ଭାବନା ଉଙ୍କି ମାରିଲାଣି ପଦାକୁ ଆସିବ ବୋଲି । ସାବଜୀ ଜୋର୍‌କରି ଆଡ଼େଇ ଦେଲା ତାକୁ । ସେ ଭାବନା ଏଇକ୍ଷଣି ନୁହେଁ । ରାତିରେ ଏକୁଟିଆ ଶେଯର ନିରୋଳାରେ ତାର ସ୍ଥାନ । ସେଇଠି ତାକୁ ନିରେଖି ଦେଖି ହେବ, ବିଚାର କରି ହେବ ।

ସାବଜୀ ପାଖକୁ , ପଛକୁ , ମୁହଁ ବୁଲାଇଲା, ମନକୁ ଚହଲାଇ ଏଣୁ ତେଣୁ ଭାବନା ଆଣିବ ବୋଲି । ଆଖିରେ ପଡ଼ିଲା ନେଳିଆ 'ନିଅନ୍' ଆଲୁଅରେ ଲେଖା ହୋଇଥିବା ରେସ୍ତୋରାଁର ନାମ 'କ୍ୱାଲଟୀ' । ଜାଣିଶୁଣି ଶବ୍ଦର ଅଶୁଦ୍ଧ ବନାନ କରା ହୋଇଛି ଓ ଅକ୍ଷରକୁ ଗୁଡ଼େଇ ଉଡ଼େଇ ଲେଖାହୋଇଛି । ସେହି ହେଉଛି ଆର୍ଟ ! ଦେଖଣାହାରୀ କହନ୍ତି ନାହିଁ ଭୁଲ୍ ଲେଖା ହୋଇଛି ବୋଲି । କହନ୍ତି 'ଷ୍ଟାଇଲ୍' । ହୁଁ !

ଦୂରରୁ ଆସୁଥିବା ମୋଟର-ଗାଡ଼ିର ତୀବ୍ର ଆଲୁଅ ପଡ଼ିଲା ସାବଜୀ ଉପରେ । ପଚିଶ ବର୍ଷର ତାର ସେଇ ଦେହକୁ ଦେଖିଲେ କେହି କହିବ ନାହିଁ ଯେ ସେ ସେଥିରେ ଆର୍ଟ ଆଣିବାକୁ ଚେଷ୍ଟା କରିଛି । ପତଳା, ସାବନା ଦେହ । ଶାଢ଼ୀର ପଣତ ଅଣ୍ଟାରେ ଗୁଡ଼ା ହୋଇଛି । ଶ୍ରେଷ୍ଠ କପାଳ ଉପରେ ଥିବା ଗହଳିଆ ବାଳକୁ ଓଟାରି ଖୋସା କରି ରଖା ହୋଇଛି ଯଥା ସ୍ଥାନରେ । ଚାପି ହୋଇଥିବା ପତଳା ଓଠରେ ରଙ୍ଗ ଦିଆ ହୋଇନାହିଁ । ଶ୍ରେଷ୍ଠ ଉଜ୍ଜ୍ୱଳ ଆଖିର ଡୋଳା ଦୁଇଟି ଗାଢ଼ କଳା; କିନ୍ତୁ ତା ଉପରେ ଥିବା ପାତଳା ଅଧା ଭ୍ରୂ ରହିଛି ଯେମିତି, ଫିକା ହୋଇ । ମୋଟ ଉପରେ ସୁନ୍ଦର ବୋଲି କେହି ତାକୁ କହିନାହିଁ ଆଜଯାଏଁ । କିନ୍ତୁ ତାର ଜିଜ୍ଞାସୁ ଚାହାଣି ଓ ଦବଲା ଓଠ ଜଣାଇଦିଏ ଯେ ସେ ନିର୍ବୋଧ ନୁହେଁ । ଯେତିକି ସେ ଜାଣିଛି, ଶୁଣିଛି; ଆଉ କିଛିର ଅଭାବ ମନକୁ ଆଣି-ନାହିଁ ।

ଏଇ ଆସିଲା ବସ୍ । ଜାଗା ଖାଲି ଅଛି । ଧାଡ଼ି ଭାଙ୍ଗିଗଲା । ଭିଡ଼ ଭିତରେ ଠେଲି ପେଲି ହୋଇ ବସିଲା ସାବଜୀ, ବେକରେ ଝୁଲୁଥିବା ବ୍ୟାଗଟିକୁ ଦୃଢ଼ି ଧରି ।

···ଘରକୁ ଆସି ସାବଜୀ ଲଥ୍ କରି ବସିପଡ଼ିଲା ବିଛଣା ଉପରେ । ଯେତେ ଯେପରି ଆଉ ମୁହୂର୍ତ୍ତେ ଅପେକ୍ଷା କରି ପାରି ନ ଥାଆନ୍ତା ।

ଗାଧୁଆ ଘରକୁ ଛାଡ଼ି ଦେଇ ଗୋଟାଏ କୋଠରୀ ତାର ଆଶ୍ରୟ । ବହୁ–ଦୂରାନ୍ତ ଜଣେ ଗୃହକର୍ତ୍ତା ଭଦ୍ରଲୋକଙ୍କର ବଜେଟକୁ ସାହାଯ୍ୟ କରିବା ଦୃଷ୍ଟିରେ ଦେଇଛନ୍ତି ମିଳିଛି ତାକୁ । ଘର ସଫାସୁତୁରା, ଉପକରଣ ସାଦାସିଧା । ଘରେ ରଙ୍ଗରେ ଘରଚିତ୍ର ଧଏ ଖଟ ଉପରେ ପଡ଼ିଥିବା ତନ୍ତବୁଣା ଗୃହଦରର ନାଲି ନେଳି ଇଜାର ବିଛଣା ଓ ବାସ୍ନା ଆଣିଦଏ ଟେବୁଲରେ ପଡ଼ିଥିବା ଶୁଖିଲା ମଲ୍ଲୀଫୁଲ କେଉଟି ।

ସବୁଦିନ ସନ୍ଧ୍ୟାରେ ଶୁଖିଲା ଫୁଲ ଫିଙ୍ଗି ଦେଇ ନୂଆ ଫୁଲ ରଖିଦେବାର କଥା । କିନ୍ତୁ ଆଜି ତାର ନଜର ସେଆଡ଼େ ନାହିଁ ।

କାହିଁକି ? କଣ ଭାବିବ ବୋଲି ସେ ଧାଇଁ ଆସିଛି ଉତ୍କଣ୍ଠ ହୋଇ । ସେ କଣ ପ୍ରକୃତରେ ଭାବିବା ବିଷୟ ? ଏତେ ଗୁରୁତ୍ୱ ଅଛି ସେଥିରେ ?

ସାବିତ୍ରୀ ହସିଲା ମନେ ମନେ । ତାର ଏଇ ମନର ଅବସ୍ଥା ଜାଣିଥିଲେ ଅନ୍ୟ ଜଣେ ଆଉ କଅଣ ଭାବିଥାଆନ୍ତା । ସହଜ ଫଳାଟିଏ ପାଟିକୁ ଆସିଥାଆନ୍ତା,— 'ରୋମାଣ୍ଟିକ୍' ।

ଧ୍ୟାନ୍ତ୍ କେତେ ଶସ୍ତା ଓ ସହଜ ଏଇ ଭାବର ନାମକରଣ । ରେଡ଼ିମେଡ଼ ଛାପାଟିଏ ମାରିଦିଅ, ବେଶ୍ କାମ ସରିଲା । ଆଉ ଭାବିବାକୁ ପଡ଼ିବ ନାହିଁ ତା ଭିତରେ କଣ ଅଛି, ତାର ଉପାଦାନ କଅଣ ଓ ତାର ଭାଗମାପ କେତେ ।

ହଁ ସେ ଭାବିବାକୁ ଚାହୁଁଛି ତାର ନୂଆ ଅଫିସର୍ ମିଷ୍ଟର୍ ଚୃନ୍ଦ୍ରଙ୍କ କଥା । ସେ ଯୁବକ ହୁଏତ ତାଙ୍କ ହାବଭାବରେ ଆକର୍ଷଣ ଅଛି । କିନ୍ତୁ ତାହା ଅନ୍ୟମାନଙ୍କ ପାଇଁ । ସାବିତ୍ରୀ ପାଇଁ ନୁହେଁ । ସେ ତାଙ୍କ କଥା ଭାବୁଛି, କାରଣ ସେ ତାକୁ ଲାଗିଛନ୍ତି ଅସାଧାରଣ, ଅନ୍ୟ ଅଫିସର୍‌ମାନଙ୍କଠାରୁ ଅଲଗା ବୋଲି ।

ସାବିତ୍ରୀ ମନେ ପକାଇଲା ଆଜିକା କଥା । ଅଫିସ୍ ଛୁଟି ହେବାକୁ ପ୍ରାୟ ଅଧଘଣ୍ଟା ଅଛି, ମିଷ୍ଟର୍ ଚୃନ୍ଦ୍ ଡକାଇ ପଠାଇଲେ ତାକୁ । କେତେ ଖଣ୍ଡ ଚିଠିର ଡିକ୍ଟେସନ୍ ଦେଲେ । କିନ୍ତୁ ସେ ସର୍ଟହାଣ୍ଡ୍ ବହି ବନ୍ଦକରି ଉଠିବା ପୂର୍ବରୁ ହଠାତ୍ କହି ଉଠିଲେ, "ମିସ୍ ରାଓ, ସାହିତ୍ୟରେ ତୁମର ସ୍ପୃହା ଅଛି ?"

ସେ କଣ କହିବ ଭାବି ପାରିଲା ନାହିଁ । ତା'ପରେ ଅଳ୍ପ ହସି ବିନୟର ଭଙ୍ଗୀରେ କହିଲା, "ହଁ ସାର୍, ମୁଁ ଡିଗ୍ରୀ ପାଇଛି ଇଂରେଜୀରେ, କିନ୍ତୁ ସାହିତ୍ୟ ଆଡ଼କୁ ଟାଣିଛି ପିଲାଦିନୁ ।"

ମିଷ୍ଟର୍ ଚୃନ୍ଦ୍ ଆଗ୍ରହର ହାଲୁକା ହସି କହିଲେ, ବେଶ୍ ଭଲ । ମୋର କାହିଁକି କେଜାଣି ସେଇୟା ଧାରଣା ଥିଲା ।"

ଖାଲି ଗୃହ କଥା ? ନା, ବୋଧହୁଏ ନୁହେଁ । କାରଣ ତା'ପରେ ସେ ଟିକିଏ ଅନ୍ୟମନସ୍କ ହୋଇ ଝରକା ଦେଇ ଆକାଶ ଆଡ଼କୁ ଅନେଇ କହିଲେ, "ଅଫିସ୍ କାମ ମଣିଷର କର୍ତ୍ତବ୍ୟ, ଆଉ ଯେ କୌଣସି ସାଂସାରିକ କାମପରି । କିନ୍ତୁ ଜୀବନରେ ଏପରି ମୁହୂର୍ତ୍ତ ଥିବା ଦରକାର ଯେତେବେଳେ ମଣିଷ ଭଲ ଭାବରେ ଦେଖିପାରିବ ଏଇ ଆକାଶ, ପାଣି, ପବନ । ସେଥିପାଇଁ ମୁଣ୍ଡରେ ହଜାର ଭାବନା ପୂରାଇ ଖାଲି ଅନେଇ ରହିଲେ ହୁଏନା, ପ୍ରକୃତିର ବସ୍ତୁରେ ନିଜକୁ ମିଶାଇ ଦେବାକୁ ହୁଏ । ପବନରେ ହଲୁଥିବା ଗୋଟିଏ ଘାସଟିରେ ପ୍ରାଣର ସ୍ପନ୍ଦନ ପାଇବାକୁ ହୁଏ । ସେତିକିବେଳେ ମଣିଷ ଅନୁଭବ କରେ ଯେ ସେ ଏକୁଟିଆ ନୁହେଁ, ତାର ଜୀବନ ଏବେକାର ନୁହେଁ, ଏଇଠି ସରିଯିବ ନାହିଁ । ସେ ସବୁଦିନୁ ଅଛି, ଥିବ, ଚିରନ୍ତନ ବିଶ୍ୱର ଆନନ୍ଦ ନେଇ..."

ସାବିତ୍ରୀ ଶୁଣି ଯାଉଥିଲା । ପ୍ରଥମେ ଅବିଶ୍ୱାସ, ତା'ପରେ ଆଶ୍ଚର୍ଯ୍ୟ ଓ ଉତ୍ସାହ । ଏପରି ଅଫିସର୍ ବି' ଅଛନ୍ତି ?

ମିଷ୍ଟର୍ ଗୃନ୍ଦ୍ ହଠାତ୍ ରହିଯାଇ କହିଲେ, "କ୍ଷମା କରିବ, ତୁମକୁ ହୁଏତ ବିରକ୍ତ ଲାଗିବ । ଭାବିବ କଣ ଏଣ୍ଡୁ ଡେଣ୍ଡୁ ବକୁଛି ବୋଲି । କିନ୍ତୁ ଆଜିକାର ସନ୍ଧ୍ୟାରେ ବୋଧହୁଏ କିଛି ଥିଲା ଯେଉଁଥିରେ ମୁଁ ସେମିତି ଗୋଟିଏ ମୁହୂର୍ତ୍ତର ଆଭାସ ପାଇଥିଲି ।" ତାପରେ ଅଳ୍ପ ହସି ଚପଳତା ଦେଖାଇ କହିଲେ "ତା'ଛଡ଼ା ତୁମର ବି' ଦୋଷ ଅଛି । ନ ହେଲେ ତୁମ ଆଗରେ କାହିଁକି ଏମିତି ଗୁଡ଼ାଏ ଗପି ଥାଆନ୍ତି ?"

ସେ ଭଙ୍ଗୀରେ ଅଶ୍ଳୀଳତା ନ ଥିଲା । ଆକର୍ଷଣ କରିବାର ବାହାଦୁରୀ ନ ଥିଲା । ସେ ବୋଧହୁଏ ସାବିତ୍ରୀଠାରେ ପାଇଲେ ଅନୁଭୂତିର ଆତ୍ମୀୟତା । କାହିଁକି ତାହା ବୁଝାଇ ହେବ ନାହିଁ । ଦରକାର କଅଣ ? ଅକାରଣରେ ଜଣକର ଯୋଡ଼ାଏ ଆଖି, ଗୋଛାଏ ବାଳ, ହସିବାର ଗୋଟାଏ ଠାଣି ସବୁ ଆଉ ଜଣକୁ ପାଗଳ କରିପାରେ, ଖାଲି ଦେହର ଆକର୍ଷଣରେ ସବୁ କାରଣ ଖୋଜା ହୁଏନାହିଁ ଭଲ ପାଇବାର ଦୋହାଇ ଦେଇ, ତାହାହେଲେ ଏମିତିକା ସୂକ୍ଷ୍ମ ମନର ଆକର୍ଷଣରେ କାହିଁକି ପଚାରିବ 'କାହିଁକି' ବୋଲି ? ମିଷ୍ଟର୍ ଗୃନ୍ଦ୍ ଅଫିସର୍, ସାବିତ୍ରୀ ଷ୍ଟେନୋଗ୍ରାଫର୍ । ଗୃନ୍ଦ୍ ସଂସାର ସମ୍ପତ୍ତିର ଅଧିକାରୀ; ଧନ ଜନ ଗୋପ ଲକ୍ଷ୍ମୀ ସବୁ ପାଇଛନ୍ତି, ବାଞ୍ଛନ୍ତି । ସାବିତ୍ରୀ ଏକୁଟିଆ; କାମ କରେ; ପେଟ ପୋଷେ । ନିଜ ଭିତରେ ନିଜର ସମ୍ପତ୍ତିକୁ ବଢ଼ାଏ, କମାଏ । ତଥାପି ମିଷ୍ଟର୍ ଗୃନ୍ଦଙ୍କ ମନର ଗୋଟାଏ ପାଖ, ଯାହା ବେଳେ ବେଳେ ମୁହୂର୍ତ୍ତିକ ପାଇଁ ଚେଇଁ ଉଠେ, ସେଥିରେ ସାବିତ୍ରୀର ପ୍ରତିବିମ୍ବ ପଡ଼ିଯାଇଛି । କାହିଁକି କିଏ କହିବ ?

ଭାବୁ ଭାବୁ ନିଦ ଲାଗିଆସିଲା ସାବିତ୍ରୀକୁ । ମେସ୍‌ର ଗୃହକର ଦୁଧ ଗିଲାସେ ଆଣି ଥୋଇଯାଇଛି ସେତେବେଳେ ତାର ଖିଆଲ୍ ନାହିଁ । ହଠାତ୍ ମେଳ

ହୋଇଛି । ହଠାତ୍ ପବନର ସୁ ସୁ'ରେ ନିଦ୍ରା ଭାଙ୍ଗିଗଲା । ଅଧା-ଚେତାରେ ଆଖି ପଡ଼ିଲା କବାଟ ପାଖରେ ଥିବା ଧଳା ବଟଲେଇଟା ଉପରେ । ଜଳଜଳ ଯୋଡ଼ାଏ ଆଖି । ତାକୁ ଫୋଡ଼ଦେବାକୁ ବସିଛି, ଗିଳିଦେବାକୁ ବସିଛି । କିଏ ? ମିଷ୍ଟର ବୃନ୍ଦ୍ ? ନିଦ ଭଲ କରି ଭାଙ୍ଗିଗଲା । ବାଟଲେଇଟାଏ ! ହସି ପକାଇଲା ସେ । ତା'ପରେ ଉଠି କବାଟ ବନ୍ଦ କରି ଶୋଇବା ପୂର୍ବରୁ ସେ ତାର ଅବଚେତନକୁ ଜେରା କରି ବସିଲା । କାହିଁକି ତାର ଭୁଲ୍ ହେଲା ଏମିତି ? ସେ କଣ ମିଷ୍ଟର୍ ବୃନ୍ଦ୍‌ଙ୍କୁ ସ୍ୱପ୍ନ ଦେଖୁଥିଲା ? ମିଷ୍ଟର୍ ବୃନ୍ଦ୍ କଣ ଏମିତି ଚାହିଁଥିଲେ ତା'ଆଡ଼କୁ ? ଉତ୍ତର ନ ପାଇ ପ୍ରଶ୍ନକୁ ହସି ଉଡ଼ାଇ ଦେଲା ସେ । ବିଚରା ମିଷ୍ଟର୍ ବୃନ୍ଦ୍ !

...ତା' ପରଦିନ ସକାଳେ । ରବିବାର । ଆକାଶରୁ ମେଘ ଛାଡ଼ିଯାଇଛି, ପବନ ଥମି ଯାଇଛି, ରାତିର ବର୍ଷା ପବନ ସବୁ ଧୂଳି ମଇଳା ଧୋଇଧାଇ ସଫା କରି-ଦେଇଛି । କାଉର କା କା, ରାସ୍ତାରେ ଯାଉଥିବା ବସ୍, ଟ୍ରକ୍‌ର ଘର୍ଘର, ପାଖ ଘରେ ପିଲାଙ୍କ କୋଳାହଳ, ସକାଳୁଆ ଦୁଧବାଲାର ଚିତ୍କାର, ସବୁ ଲାଗୁଛି ଧାରୁଆ, ସ୍ପଷ୍ଟ । ସମସ୍ତେ ଯେମିତି ପାଟି କରିବାର, ଗୀତ ଗାଇବାର, କୁହାଟ ଛାଡ଼ିବାର ସ୍ୱାଧୀନତା ପାଇଛନ୍ତି ଆଜି । ସକାଳ ନୂଆ ହୋଇ ଆସିଛି । ନୂଆ ଗାଲିଚା ପାରିଦେଇଛି, ନୂଆ ଚାନ୍ଦୁଆ ଟାଣିଦେଇଛି, ସମସ୍ତେ ଖେଳିବେ ବୋଲି ।

କବାଟ ଖଟ୍ ଖଟ୍ କରି ଭିତରକୁ ପଶି ଆସିଲା ଶକୁନ୍ତଳା । ଏକା ଡିପାର୍ଟ-ମେଣ୍ଟ୍‌ରେ କାମକରେ । ସେଇ ହିସାବରେ ବନ୍ଧୁ ତା ।

"କିଲୋ, କଣ ଶୋଇଛୁ ଏତେବେଳଯାଏଁ ?" ଶକୁନ୍ତଳା ପଚାରିଲା । ତା'ପରେ ସାବିତ୍ରୀ ଆଡ଼କୁ କିଛି ସମୟ ଅନାଇ କହିଲା, "ଭାରି ଖୁସି ଥିଲାପରି ଜଣାପଡ଼ୁଛୁ ? ସତେ ଯେମିତି ସବୁ ଲକ୍ଷ୍ମଣୀ ଅଧେ ଖାଇସାରି ବାକୀ ଅଧିକ ଅପେକ୍ଷାରେ ଅଛୁ ।"

ସାବିତ୍ରୀ କିଛି କହିଲା ନାହିଁ, ମୁରକିହସା ହେଇ ଚାହିଁରହିଲା ଶକୁନ୍ତଳା ଆଡ଼କୁ । ତାର ଇଚ୍ଛାହେଲା ଶକୁନ୍ତଳାକୁ ଭୁଲାଇ ଦିଅନ୍ତା । ଭାବିବାକୁ ଛାଡ଼ିଦିଅନ୍ତା ଯେ ସାବିତ୍ରୀର କିଛି ଗୋଟାଏ ହୋଇଛି ଶକୁନ୍ତଳାର ଅନୁମାନରେ କେବଳ ଗୋଟାଏ କଥା ହୋଇପାରେ ଯେ, ସେ ପ୍ରେମରେ ପଡ଼ିଛି ।

ଅନୁମାନର ନିର୍ଘାଟ ଅଦୃଶତାରେ ସାବିତ୍ରୀ ହସି ଉଠିଲା, ଓ ବିଛଣାରୁ ଉଠି ଅଧା ନାଚିଲା ଭଳି ହୋଇ ଚା' ତିଆରି କରିବାକୁ ବାହାରିଗଲା ।

...ଚା'ଟିଆ ସରି ଆସିଲାଣି, ଏଇ ସମୟରେ କାର୍‌ଟିଏ ଆସି ରହିଲା ପଦାରେ ଓ ଭଦ୍ରଲୋକ ଜଣେ ବାହାରି ଆସି କାଚରେ ଏପାଖ ସେପାଖ ଅନାଇଲେ ଘର

ନମ୍ବର ଖୋଜିଲାପରେ ! ତା'ପରେ ଫାଟକ ପାରହୋଇ ପାଖେଇ ଆସିଲାବେଳକୁ ସାବିତ୍ରୀ ଦେଖିଲା ଓ ଚମକିପଡ଼ି କହିଲା, "ଏଁ, ମିଷ୍ଟର୍ ଗୁନ୍ଦ୍ !"

ଶିକୁଳିଟାକୁ ପଛରେ ପକାଇ ବାହାରିଗଲା ସେ । ମିଷ୍ଟର୍ ଗୁନ୍ଦ୍ ଦେଖିପାରି ଆଶ୍ୱସ୍ତ ହେଲାପରି କହିଲେ, "ଓଃ ! ଯାହାହେଉ ପାଇଲି ଏତେବେଳେକେ ।" ତା'ପରେ ନମସ୍କାର ଓ ପ୍ରତିନମସ୍କାର ପରେ କହିଲେ, "ଆଜି ହେଡ୍‌କ୍ୱାର୍ଟରର ଫୋନ୍ ଆସିଲା । ଗୋଟାଏ ମିଟିଂ ପାଇଁ ନୋଟ୍ ତିଆରି କରିବାକୁ ହେବ । ତୁମର ଘର ନମ୍ବର ଜାଣିଥିଲି ବୋଲି—। ତୁମର କିଛି ଅସୁବିଧା ହେବ ଆସିବାକୁ ?"

"ନାଇଁ ସାର୍", ସାବିତ୍ରୀ ଆଗ୍ରହ ଓ ତତ୍ପରତାର ଭଙ୍ଗୀରେ କହିଲା; "ମୁଁ ଆସୁଛି ଏଇକ୍ଷଣି" ।

...ପାଞ୍ଚ ମିନଟ୍‌ରେ ଅଫିସରେ ପହଞ୍ଚିଲେ ସେମାନେ । ମିଷ୍ଟର୍ ଗୁନ୍ଦ୍ ଡାକିଗଲେ ନୋଟ୍ ଓ ସାବିତ୍ରୀ ଲେଖିଚାଲିଲା ତରତର ହୋଇ । ତାପରେ ଟାଇପ୍-ରାଇଟର୍‌ର ଠକ୍, ଠକ୍, ଠକ୍ । ଅଳ୍ପ ସମୟ ଭିତରେ ଚାରିପୃଷ୍ଠା କାଗଜର ତିନି କପି ପିନ୍ ମାରି ସେ ବଢ଼ାଇଦେଲା ମିଷ୍ଟର୍ ଗୁନ୍ଦ୍‌ଙ୍କ ହାତକୁ ଓ ନିଜକୁ ସାବାସ୍ ଦେଲା ଯେ ଅତିଶୀଘ୍ର କାମଟି କରିପାରିଛି ।

କାମ ସରିଗଲା । ମିଷ୍ଟର୍ ଗୁନ୍ଦ୍ ଅଳସ ଭଙ୍ଗି ପଚାରିଲେ ସାବିତ୍ରୀକୁ, "ଭୋକ କଲାଣି ?"

"ନାଇଁ ସାର୍, ଖାଇକରି ଆସିଛି", ଅଜାଣତରେ ମିଛ କଥାଟିଏ ପାଟିରୁ ବାହାରିପଡ଼ିଲା ତାର । ସତ କହିଥିଲେ ବୋଧହୁଏ ମିଷ୍ଟର୍ ଗୁନ୍ଦ୍ ସହାନୁଭୂତି ଦେଖାଇ କହିଥାନ୍ତେ, "ଯାଅ, ତାହାହେଲେ ଘରକୁ ଯାଅ" । କଅଣ କ୍ଷତି ହୋଇଥାଆନ୍ତା ସେଥିରେ ? ସାବିତ୍ରୀ ପଚାରିଲା ନିଜକୁ ।

ଦୁହେଁ ଚୁପ୍‌ଚାପ୍ । ମିଷ୍ଟର୍ ଗୁନ୍ଦ୍ କିଛି କହିବେ ବୋଧହୁଏ । ଗ୍ରୀଷ୍ମଋତୁର ଅଳସ ଖରାବେଳର ନୀରବତା କିଛି କହିବ ତାଙ୍କୁ ଓ ସେ ତାଙ୍କ ସୂକ୍ଷ୍ମ ତଥ୍ୟ କାଢ଼ି ବସିବେ ସାବିତ୍ରୀ ଆଗରେ । ସାବିତ୍ରୀ ଓଠରେ ପେନ୍‌ସିଲ୍‌ଟାକୁ କାମୁଡ଼ି ଘର କଣରେ ପଡ଼ିଥିବା ତା'ର ଟାଇପିଷ୍ଟ୍ ଟେବୁଲ ପାଖରେ ବସି ଅନାଇରହିଲା ମିଷ୍ଟର୍ ଗୁନ୍ଦ୍‌ଙ୍କ ଆଡ଼କୁ । କିଛି ଭାବୁଛନ୍ତି ସେ । କଳ୍ପନା ସଜାଡ଼ି ହେଉଛି ।

ହଠାତ୍ ଟେଲିଫୋନ୍ ବାଜିଉଠିଲା । ମିଷ୍ଟର ଗୁନ୍ଦ୍ ରିସିଭର୍ ଉଠାଇ 'ହ୍ୟାଲୋ' 'ହ୍ୟାଲୋ' କହି, ମାନିନେଲା ପରି କହିଲେ, "ହଁ, ହଁ, ଏଇ ପାଞ୍ଚମିନଟ୍" । ଓଠ ଲମ୍ବିଆସିଲା, ଗୃହିଣୀ ଚଞ୍ଚଳ ହୋଇ ଉଠିଲା । ତରତର ହୋଇ ଫାଇଲ୍

ପନ ରଖାରଖି କରଦେଇ ସେ କହିଲେ, "ମିସ୍ ରାଓ, ମୁଁ ଯାଉଛି ତାହେଲେ— ଏଁ ? ଘରୁ କାର୍ ଆସିଛି । ତୁମକୁ ଛାଡ଼ିଦେଇ ଆସିବ ?"

ଧୀର ଦୃଢ଼ ଗଳାରେ ସାବିତ୍ରୀ କହିଲା, "ନାଇଁ ସାର୍ । ଧନ୍ୟବାଦ । ମୁଁ ବସ୍‌ରେ ଯିବି" ।

ମିଷ୍ଟର୍ ଚନ୍ଦ୍ ଚାଲିଗଲେ । ସାବିତ୍ରୀ ବସିରହିଲା ସେଇଠି କେତେବେଳଯାଏଁ । ତା'ପରେ ଟାଇପ୍ କରାହୋଇଥିବା ନୋଟ୍‌ର ଅଧିକା କପିରେ ଆଖି ବୁଲାଇଲା ଅନ୍ୟମନସ୍କ ହୋଇ । ଏଁ, ଏତେ ଭୁଲ୍ ? ସେ କଣ ଟାଇପ୍ କରିବାକୁ ଆସିଥିଲା ନା ଆଉ କେଉଁଥିପାଇଁ ? କେଉଁ ଚିନ୍ତାରେ ଠେଲି ହୋଇଯାଇ ସେ ପାଞ୍ଚ ମିନିଟ୍‌ରେ ସାରଦେଲା ତା' କାମ, ଭୁଲ୍ ଠିକ୍ ନ ଦେଖି ?

ଚେନାଏ ଖରା ମେଘରୁ ଛୁଟିକି ପଡ଼ି ସେକ୍ରେଟେରିଏଟ୍ ରାସ୍ତା କଡ଼ରେ ଆଉଜା ଯାଇଥିବା ଗୋଟିଏ ଏକୁଟିଆ କଳା କାର୍ ଉପରେ ଚକ୍‌ଚକ୍ କରୁଥାଏ । ଚକ୍‌କଣ, ତେଲିଆ ବଦ୍‌ମାସଟାଏ । ତାକୁ ଆଖିମାରି ଥଟ୍ଟା କରୁଛି । ସାବିତ୍ରୀ ଆଖି ଫେରାଇ ଆଣିଲା । ନୋଟ୍‌ଟାକୁ ଛଣ୍ଡେଇ ଦେଇ ମୁଠେଇ ଧରିଲା ଅଳିଆ ଝୁଡ଼ିରେ ପକାଇବ ବୋଲି । ଆକାଶର ଆରପାଖକୁ ଅନାଇଲା । କଳା ଧୂଆଁର ମେଘ ଖଣ୍ଡେ ନଇଁ ଆସୁଛି । ତାର ସବୁ କଳା ଧୂଆଁର ପଣ ଯେମିତି ଅଜାଡ଼ି ଦେବ ସାବିତ୍ରୀ ଉପରେ, ମଜା ଦେଖିବ ବୋଲି ।

ଚଟ୍ କରି ବୁଲିପଡ଼ି ସେ ମୁହାଁଇଲା କବାଟ ଆଡ଼େ, ପଳାଇଯିବ ଏ ଘରୁ । ସେ ଏଠି ଖାଲି କାମ କରିବାକୁ ଆସିଛି । ତା' ସ୍ଥାନ ଏ ନୁହେଁ ।

...ସେଇଦିନୁ ସାବିତ୍ରୀ ସତର୍କ ହୋଇଗଲା । 'ୟେସ୍ ସାର୍' କହିସାରିଲା ପରେ ତା ଓଠ ଦୁଇଟା ଚପି ହୋଇଯାଏ, ଆଉ କୌଣସି କଥା କହିବାକୁ ପ୍ରସ୍ତୁତ ନୁହେଁ । ସେ ଷ୍ଟେନୋଗ୍ରାଫର୍ । ସର୍ଟହାଣ୍ଡ ନେବା, ଟାଇପ୍ କରିବା ତା' କାମ । ମୂଲ ଲାଗିବାକୁ ଆସିଛି, ମାଲିକ ସାଙ୍ଗରେ ତାର ସମ୍ପର୍କ କଅଣ ?

କିଛିଦିନ ପରେ କାମର ଅଧାରେ ମିଷ୍ଟର ଚନ୍ଦ୍ ହଠାତ୍ ପଚାରିଲେ, "ମିସ୍ ରାଓ, ତୁମର କଣ ହୋଇଛି ? ଦେହ ଭଲ ନାହିଁ ? କାରଣ ମୁଁ କେତେଦିନ ହେଲା ଲକ୍ଷ୍ୟ କରୁଛି—"

ସାବିତ୍ରୀ ଅପ୍ରତିଭ ହୋଇ କହିଲା, "ନାଇଁ ସାର୍, କିଛି ନୁହେଁ । ଏମିତି ଟିକିଏ, ନାନାଦି କାରଣରୁ—"

ମିଷ୍ଟର୍ ଚନ୍ଦ୍ ପୂରା ଉତ୍ତର ପାଇଁ ବଳାଇଲେ ନାହିଁ ଖାଲି କହିଲେ, "ବେଶ୍, ମୋ ଦ୍ୱାରା ଯଦି କିଛି ହୋଇପାରେ, କହିବ ।"

ଦେଖିବା ? ରାଗ ଆସିଲା ସାବିତ୍ରୀର । ଏ ହେଉଛି ବଡ଼ଲୋକର ବଦାନ୍ୟତା, ଦରକାର ନାହିଁ ତାର ।

କିନ୍ତୁ ସେଦିନ ପୁଣି ସେ ଭାବି ବସିଲା ମିଷ୍ଟର୍ ଗୃନ୍ଦ୍‌ଙ୍କ ସହିତ ତାର ସମ୍ପର୍କ ବିଷୟ, ଓ ଶେଷକୁ ଠିକ୍‌କଲା ଯେ ଭୁଲ୍ ତାର, ତାଙ୍କର ନୁହେଁ । ବୁଦ୍ଧିଗତ ଏ ସମ୍ପର୍କ, ସାହଚର୍ଯ୍ୟ । ଏଥିରେ ସାନ୍ନିଧ ଲୋଡ଼ା ନାହିଁ । ସାଧାରଣ ଅଭିମାନ, 'ମୋତେ ପଚ୍ଛରନ୍ତୁ'ର ଭାବ ଏଥିରେ ଆଦୌ ଶୋଭା ପାଏନାହିଁ । ନା, ସେ ନିଜକୁ ଠିକ୍ କରିନେବ, ତାର ଗତିବିଧି ସହଜ କରିଦେବ । ଅଫିସର୍ ମିଷ୍ଟର୍ ଗୃନ୍ଦ୍, ବଡ଼ଲୋକ ମିଷ୍ଟର୍ ଗୃନ୍ଦ୍, ପୁରୁଷ ମିଷ୍ଟର୍ ଗୃନ୍ଦ୍, ତାର କେହି ନୁହେଁ । କିନ୍ତୁ ସେହି ପ୍ରାଣୀଟିର ସୂକ୍ଷ୍ମ ଚିନ୍ତା, କଳ୍ପନା ତାର ସାହାଯ୍ୟ ମାଗିଲେ ସେ ମନା କରିବ ନାହିଁ, ଏଡ଼ାଇ ଦେବ ନାହିଁ । ସେହି ମୁହୂର୍ତ୍ତର ମିଷ୍ଟର୍ ଗୃନ୍ଦ୍ ଚାହେଁ ସାବିତ୍ରୀକୁ । ସେ ଚାହିଁବା ଅନାବିଲ, ସୁନ୍ଦର ।

ଦିନକୁ ଦିନ ସେ ଭାବି ଦେଖିଲା ଯେ ତାର ଏଇ ବିଚାର ଭୁଲ୍ ନୁହେଁ । ମିଷ୍ଟର ଗୃନ୍ଦ୍ ତାର ବନ୍ଧୁତାର ଅଭିଳାଷୀ । କେତେଥର, ସକାଳ ପହରରେ କଫି ସାଙ୍ଗରେ ଅଫିସ୍ ସରିଲାବେଳକୁ, କିମ୍ବା ଲମ୍ବା କାମର ବିରାମରେ ସେ କଥା ଆରମ୍ଭ କରିଦିଅନ୍ତି । ଦିନେ ପକାଇଲେ ଇଂରାଜ ରହସ୍ୟବାଦୀ 'ମିଷ୍ଟିକ୍' କବିମାନଙ୍କର କଥା । ତାଙ୍କ ମତରେ ସେମାନେ ସବୁଠାରୁ ଉତ୍କୃଷ୍ଟ କବି । ଅନେକ ଆଧୁନିକ କବି ସେମାନଙ୍କର ଅନୁକରଣ କରୁଛନ୍ତି, କିନ୍ତୁ ପାରୁନାହାନ୍ତି । ନିଜକୁ ଦେଖାଇ ହେବାର ବାହାଦୁରୀରେ କବିତାକୁ କ୍ଲିଷ୍ଟ କରିଦେଉଛନ୍ତି । ତେଣୁ ସେମାନଙ୍କର କବିତାରେ ସୂକ୍ଷ୍ମ ଚେତନାବୋଧ ଥିଲେ ମଧ୍ୟ ଉପଲବ୍ଧିର ଗଭୀରତା ମିଳେ ନାହିଁ । ସାବିତ୍ରୀ ବୁଝିଲା କିଛି, କିନ୍ତୁ ମୋଟ ଉପରେ ଭାବିନେଲା କଥାଟା ଠିକ୍ ବୋଲି । ଆଲୋଚନାରେ ଯୋଗଦେଲା । 'ବ୍ଲେକ୍'ଙ୍କ କବିତାରୁ ଉଦ୍ଧାର କରି କହିଲା ପଦେ ଅଧେ,—"ବାଲୁକଣାଟିରେ ମୁଁ ପାଏ ବିଶ୍ୱର ଆଭାସ······" ଇତ୍ୟାଦି । ଆଉ ଦିନେ ସେ ଫୁଲଦାନିର ଫୁଲଟିଏ ଟାଣି ଆଣି କହିଲେ, "ମିସ୍ ରାଓ, କହିଲ କଣ ଦେଖୁଛ ଏଥିରେ ?" ସାବିତ୍ରୀ ହସିଲା ଟିକିଏ, ମିଷ୍ଟର ଗୃନ୍ଦ୍ ଉତ୍ତର ଚାହୁଁ ନ ଥିଲେ ନିଶ୍ଚୟ । ତା'ପରେ ସେ କହିଚାଲିଲେ, "ତୁମେ ହୁଏତ ପାଉଛ ବାସ୍ନାର ଉପଭୋଗ । ଆଉ ଜଣେ ଖାଲି ଦେଖିବ କେତେଗୁଡ଼ିଏ ପାଖୁଡ଼ା, ବୃନ୍ତ ଓ ପତର । କିନ୍ତୁ କେହି କଣ ପାଉଛନ୍ତି ତାର ଜୀବନର ରହସ୍ୟ, ତାର ପ୍ରାଣର ଆନନ୍ଦ ? ରୋମାଣ୍ଟିସିଜିମ୍, ବସ୍ତୁବାଦ ଓ ତଥାକଥିତ ରହସ୍ୟବାଦ ଭିତରେ ଏଇ ହେଉଛି ପ୍ରଭେଦ ।" ତା'ପରେ କଥାର ଖିଅ ଧରି କହିଲେ, "ଧର, ତୁମ ଆଖିର ଚାହାଣୀ, କିମ୍ବା ତୁମ ଅବୟବର ଯେ କୌଣସି ଗୋଟିଏ ଭଙ୍ଗୀ । ହୁଏତ କାହାର ଆଖିରେ ପଡ଼ିବ ନାହିଁ । ହୁଏତ କିଏ ଉତ୍କୃଷ୍ଟ

ହୋଇ ପ୍ରକୃତିରୁ ଉପମା ଓଟାରିବ । କିନ୍ତୁ ମୁଁ, ମାନେ ଜଣେ ରହସ୍ୟବାଦୀ କବି ସେଥିରେ ପାଇବ ବା ପାଇବାକୁ ଚେଷ୍ଟା କରିବ ଆଉ କିଛି, ଯାହା ଚହ୍ଲାଇଦେବ ଯେ ଏ ମିସ୍ ସାବନ୍ତୀ, ବିଶ୍ୱଜୀବନର ଗୋଟିଏ ନିର୍ଦ୍ଦିଷ୍ଟ ଧାରା ।"

ଶକୁନ୍ତଳା ଥିଲେ କହୁଥାନ୍ତି, "ଏ ଖାଲି ଲେକ୍‌ଚର୍ ବାଜି । ଏ ବି ଗୋଟାଏ ବିଳାସ ବଡ଼ଲୋକର ।" କିନ୍ତୁ ସାବନ୍ତୀ ମାନିଲା ନାହିଁ । ନା, ଏଥିରେ ଅଛି ଆନ୍ତରିକତା, ଗଭୀର ଅନୁଭୂତି, ଯାହା ଆଜିକାଲିକାର ବେପାରି ସଭ୍ୟତାର ବହୁ ଦୂରରେ । ସେ ସାବାସ୍ ଦେଲା ନିଜକୁ ଯେ ତାଙ୍କ କହିବା ଅନୁସାରେ ସାବନ୍ତୀ ଛଡ଼ା ଖୁବ୍ କମ୍ ଲୋକଙ୍କ ଆଗରେ ସେ ଗପି ପାରନ୍ତି ଏମିତି । କଣ ଅଛି ତା'ଠାରେ ? ନିପୁଣ ଭାବଗ୍ରାହିତା, ଶୁଣିବା ଗୁଣ ନା ଆଉ କିଛି ?

କିଛି ଠିକ୍ କରିପାରିଲା ନାହିଁ ସେ । କିନ୍ତୁ ଖୁସି ହେଲା । ରହସ୍ୟବାଦ !! ସବୁ କଥା ବୁଝି ହୁଏ ନାହିଁ, ବୁଝିବା ଦରକାର ନାହିଁ । ଅନୁଭୂତିର ଆନନ୍ଦହିଁ ଯଥେଷ୍ଟ ।

...ଦିନେ କାମ ସରୁ ସରୁ ରାତି ହୋଇଗଲାଣି । ମିଷ୍ଟର୍ ଗ୍ରୀନ୍ କହିଲେ, "ମିସ୍ ରାଓ, ଏତେ ରାତି ହୋଇଗଲାଣି । ବସ୍ ପାଇବ ତ ? ନହେଲେ ଚାଲ ମୁଁ ଛାଡ଼ିଦେଇ ଆସିବି ଓ ବାଟରେ ଆମ ଘରେ ମୋର ସ୍ତ୍ରୀଙ୍କ ସାଙ୍ଗରେ ପରିଚୟ କରାଇଦେବି ।" ସାବନ୍ତୀ ଆପତ୍ତି କଲାନାହିଁ । ସେ ସାମାଜିକ ବନ୍ଧୁତାର ବିରୋଧୀ ନୁହେଁ ।

ସେଇଦିନ ସେ ପ୍ରଥମ ଦେଖିଲା ମିସେସ୍ ଗ୍ରୀନ୍‌ଙ୍କୁ ।

ବର୍ଷା ଶେଷର ଗୁଳୁଗୁଳିରୁ ରକ୍ଷାପାଇବା ଲାଗି ବାହାରେ ଚଉକୀ ପକାଇ ବସିଥାଆନ୍ତି ସେ ଓ ମିଷ୍ଟର୍ ଗ୍ରୀନ୍ । ମିସେସ୍ ଗ୍ରୀନ୍‌ଙ୍କର ଅପେକ୍ଷାରେ ଥାଆନ୍ତି । କଥାବାର୍ତ୍ତା ବନ୍ଦ ହୋଇଯାଇଥାଏ । ମିଷ୍ଟର ଗ୍ରୀନ୍ ଅନାଇ ରହିଥାଆନ୍ତି ଦାଣ୍ଡବାଟ ଆଡ଼େ ।

କିଛି ସମୟ ପରେ ଅପେକ୍ଷାର ଗୁରୁତ୍ୱ ରକ୍ଷାକରି, ଧୀର ପଦକ୍ଷେପରେ ଆସିଲେ ମିସେସ୍ ଗ୍ରୀନ୍ । ମିଷ୍ଟର୍ ଗ୍ରୀନ୍ ଠିଆ ହୋଇଗଲେ ଓ ଚହ୍ଲାଇଦେଲେ—"ମିସେସ୍ ଗ୍ରୀନ୍, ମିସ୍ ରାଓ," ଓ ତା'ପରେ ସ୍ତ୍ରୀଙ୍କ ଆଡ଼କୁ ଅନେଇ କହିଲେ "ଯାଙ୍କର କଥା କହୁଥିଲି । ମୋର ଯୁନିଭର୍ସିଟିରୁ ପାସ୍ କରିଛନ୍ତି । ଘର ଦକ୍ଷିଣରେ ।"

ମିସେସ୍ ଗ୍ରୀନ୍ ଅଳପ ହସିଲେ, ନମସ୍କାରର ଉତ୍ତର ଦେବାକୁ ଯାଇ । ସାବନ୍ତୀ ଭଦ୍ରୋଚିତ ହସର ଆଭାସ ଦେଇ ମୁହଁ ତଳକୁ କରିଦେଲା ଓ ଭାବିବାକୁ ଲାଗିଲା ମିଷ୍ଟର୍ ଗ୍ରୀନ୍ କଣ କହୁଥିଲେ ତା' ବିଷୟରେ ।

ମିସେସ୍ ଗ୍ରନ୍ଦ୍ । ସାବିତ୍ରୀର ଇଚ୍ଛାହେଲା ଭଲକରି ଦେଖିବ ତାଙ୍କୁ । ପୁରାପୁରି ଜାଣିନେବ ତାଙ୍କର ବ୍ୟକ୍ତିତ୍ୱ, ତାଙ୍କର ରୂପ ଓ ଗୁଣର ସମ୍ପଦ ।

ଜହ୍ନ ଆଲୁଅ ପଡ଼ିଥାଏ ମିସେସ୍ ଗ୍ରନ୍ଦ୍‌ଙ୍କ ଦେହରେ, ସାବିତ୍ରୀର ଦୃଷ୍ଟି ଅନ୍ୱେଷଣ କରି । ସାବିତ୍ରୀ ଦେଖିଲା । ଭାବିଲା ଜହ୍ନ ଆଲୁଅର କୁହୁଡ଼ି ଦେହର କ୍ଷତ, କାଳିମା ଘୋଡ଼େଇ ଦିଏ, ସୁନ୍ଦରତାର କଳ୍ପନା ଆଣେ । କିନ୍ତୁ ସେ ନ ମାନି ରହିପାରିଲା ନାହିଁ ଯେ ମିସେସ୍ ଗ୍ରନ୍ଦ୍ ସୁନ୍ଦର ।

ଗୋରା ତକ୍ ତକ୍ ଦେହ । ଗୋଡ଼ରୁ ମୁଣ୍ଡଯାଏଁ ନାରୀତ୍ୱ ଖଞ୍ଜି ଦିଆ-ହୋଇଛି । କେହି କହିବ ନାହିଁ ଅମୁକ ଅଂଶ ନାରୀ ସୁଲଭ ନୁହେଁ ବୋଲି । ଏବଂ ସେ ଗୋଲ୍‌ଗୋଲ୍ ମୁହଁଟିରେ ସମସ୍ତଙ୍କ ଦେଖିବା ପାଇଁ ରଖାହୋଇଛି ସମଗ୍ର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟର ନମୁନା ।

କଣ ଅଛି ସେ ମୁହଁରେ ? ଟିକିନିଖି କରି ଦେଖିଲା ସାବିତ୍ରୀ । ଆଖିର କଳା ଡୋଳା ଅଧେ ଭିତରେ, ଅଧେ ବାହାରେ । ଘୁମନ୍ତ ବୋଲି କହିହେବ ନାହିଁ । କାରଣ ସେଥିରେ ଜ୍ୟୋତି ଲୁଚିଯାଇ ନାହିଁ, ଖେଳାଇ ହୋଇ ଯାଇଛି ନରମ ଭାବ ଆଣିବା ପାଇଁ । ଓଠ ଦୁଇଟି ଗ୍ଲେଟିଆ, ଅଳ୍ପ ବନ୍ଦହେଲାଅ ଓ ଅଧା ମେଲା । ଅଳ୍ପ କାଳ ପରେ, ଗ୍ରହିବସିଲା ପରି । ମନହେବ ବନ୍ଦ କରିଦେବା ପାଇଁ ଲଜେନ୍‌ସଟିଏ ପାଟିରେ ପକାଇ କିମ୍ବା ଅଗଷ୍ଟିର ଚୁମାଟିଏ ଦେଇ ।

କଣ ଅଛି ସେ ମୁହଁରେ ? ସବୁ ଦେଖିସାରି ମଧ୍ୟ ସାବିତ୍ରୀ ଭାବିଲା ଆଉ କିଛି ରହିଗଲା ବୋଲି, ତାହା ତାର ଆଖିରେ ପଡ଼ୁନାହିଁ, ପଡ଼ିପାରିବ ନାହିଁ ।

ମିସେସ୍ ଗ୍ରନ୍ଦ୍ ପଚାରିଲେ ପଦେ ଅଧେ ଘର କଥା, ବାପା ମା, ଭାଇଭଉଣୀଙ୍କ କଥା । ମଝିରେ ମଝିରେ ସାବିତ୍ରୀର କଥା ନ ସରୁଣୁ ମିଷ୍ଟର୍ ଗ୍ରନ୍ଦ୍‌ଙ୍କ ଆଡ଼କୁ ଅନେଇ କହୁଥିଲେ ନିଜ ଅନୁଭୂତିରୁ କିଛି, ଯାହା ସାବିତ୍ରୀର ବୁଝିବାର ବାହାରେ । ଯଥା ମାନ୍ଦ୍ରାଜ କଥା ପଡ଼ିବାରୁ ସେ କହି ଉଠିଲେ, "ହେଇ, ସେଦିନ ଶୋଭା ଅପା ଆସି କହିଲେ ଯେ ଆମେ ମାନ୍ଦ୍ରାଜରେ ଯେଉଁ ଘରେ ନ ଥିଲେ, ସେ ଘରେ କୁଆଡ଼େ ଗୋଟାଏ ପାର୍ସି ରହିଲାଣି, ତା'ର ଆମ ବେବି ପରି ଗୋଟିଏ ଝିଅ ଓ ଗୋଟାଏ 'ଆଲ୍‌ସେସିଆନ୍' କୁକୁର, ଓଃ ମସ୍ତବଡ଼, ଆମ ଦାଦାଙ୍କର ଯେମିତି ଥିଲା..." ଇତ୍ୟାଦି ...ଇତ୍ୟାଦି । ମିଷ୍ଟର୍ ଗ୍ରନ୍ଦ୍ ବାଧା ଦିଅନ୍ତି ନାହିଁ ସେଇ କଥାରେ । ବରଂ ସେ ସୁଅରେ ଭସାଇ ନିଅନ୍ତି ନିଜକୁ । ଆଲ୍‌ସେସିଆନ୍‌ରୁ ପଡ଼େ ସ୍ପାନିଏଲ୍ କଥା, ମାନ୍ଦ୍ରାଜରୁ ବାଙ୍ଗାଲୋର୍ । କଥାର ଶାଖା ନଷ୍ଟ ହୋଇଯାଏ, ମୂଳଧାର ହଜିଯାଏ ବାଲିରେ । ସାବିତ୍ରୀ ଶୁଣୁ ଶୁଣୁ ଶୁଣିପାରେ ନାହିଁ ସେମାନେ କଣ କହୁଛନ୍ତି । ଖାଲି ଦେଖେ,

ଦୁଇଟି ଜୀବ ଜହ୍ନ ଆଲୁଅରେ ବାନ୍ଧି ହୋଇ କଥାର ଖେଳ ଖେଳୁଛନ୍ତି, ନିଜ ଭିତରେ ନିଜେ ।

ସାବିତ୍ରୀକୁ ଖରାପ ଲାଗିଲା ନାହିଁ । ମିଷ୍ଟର୍ ଗୃନ୍ଦ୍‌ଙ୍କୁ ସେ ଜାଣେ । ମିସେସ୍ ଗୃନ୍ଦ୍‌ଙ୍କ ପାଖରେ ସେ ଆଉ ଜଣେ ମଣିଷ, ଯେମିତି ହେବା ସ୍ୱାଭାବିକ ।

ଅଳ୍ପ କିଛି ପାନୀୟର ବ୍ୟବସ୍ଥା ପରେ ଡେରି ହୋଇଗଲାଣି କହି ସେ ଗୃହ-ଆସିଲା ସେଠୁ । ମିସେସ୍ ଗୃନ୍ଦ୍ ଦଲଖ ହୋଇ ଯାଚନାହ୍ୱାନ କଲୁରେ, "ଆସିବେ ମଝିରେ ମଝିରେ ।"

ଫାଟକ ଟପି ନ ଆସୁଣୁ ସାବିତ୍ରୀର ଇଚ୍ଛା ହେଲା ଭାବିବ ସେମାନେ କଣ ଗପୁଥିବେ ଏଇକ୍ଷଣି, କଣ କରୁଥିବେ । ଜହ୍ନ ଆଲୁଅରେ ମିଶିଲାଣି ଉଷ୍ମମୁଲୁଆ ପବନ ଟିକିଏ । ଥଣ୍ଡା ଚଖେଇ ଦେଉଛି ବେଳେ ବେଳେ, ପରେ ଅଧିକା ଆଣିବାର ଲୋଭ ଦେଖାଇ । ପବନ ବାଜୁଥିବ ମିସେସ୍ ଗୃନ୍ଦଙ୍କର ଖୋଲା ବାହୁରେ, ମିଷ୍ଟର ଗୃନ୍ଦଙ୍କର ପ୍ରଶସ୍ତ କପାଳରେ । କଥା ଥମିଯିବ ଟିକିଏ । ତା'ପରେ ?

ଭାବନାକୁ ଏତେଦୂରଯାଏଁ ଗୁଡ଼ାଇଦେଇ ବିରକ୍ତ ହେଲା ସେ । ସ୍ୱାମୀ ସ୍ତ୍ରୀର ସାଧାରଣ ସଂସାର, କଣ ନୂତନତ୍ୱ ଅଛି ସେଥିରେ, କଣ ଭାବିବାର ଅଛି ?

କିନ୍ତୁ ମିସେସ୍ ଗୃନ୍ଦ୍ ମନେ ପଡ଼ିଲେ ଥରକୁଥର । ମନେହେଲା ସେ ଆହ୍ୱାନ କରୁଛନ୍ତି ତାଙ୍କ ସାଙ୍ଗରେ ନିଜକୁ କଳିବାକୁ, ତୁଳନା କରିବାକୁ । ପଛେଇବାକୁ ଚାହିଁଲା ନାହିଁ ସାବିତ୍ରୀ । ହେଉ ତୁଳନା, କ୍ଷତି କଅଣ ?

ମିସେସ୍ ଗୃନ୍ଦ । ରୂପ ଯୌବନର କଣ୍ଢେଇଟାଏ । କେଉଁ ହିସାବରେ ମଣିଷର ଗୌରବ, ମର୍ଯ୍ୟାଦା ଦାବୀ କରି ବସିବେ ? 'ପାଇଛି'ର ଗର୍ବ ତାଙ୍କର୍ କଥାରେ, ଭଙ୍ଗୀରେ । କିନ୍ତୁ କଣ ପାଇଛନ୍ତି ସେ ? ଐଶ୍ୱର୍ଯ୍ୟର ବିଳାସରେ ବୁଡ଼ାଇ ରଖିଛନ୍ତି ନିଜକୁ । ଗୁଡ଼ାଇଡଲେ ରହି, ସଜାଉଛନ୍ତି ନିଜକୁ, ଦେହର ଉପଭୋଗ ବଢ଼ାଇବା ପାଇଁ । ସେଇ କଣ ମଣିଷପଣିଆ ? ମଲାଙ୍ଗଲତା ପରି ଅନ୍ୟର ଅର୍ଜ୍ଜନରେ ପୁଷ୍ଟ ହୋଇ ମୋର ଅଛି ବୋଲି କହିବାଟାରୁ ନିର୍ବୋଧତା ଆଉ କଣ ଥାଇପାରେ ? ସାବିତ୍ରୀ କାମ କରୁଛି, ନିଜର ଦେଉଛି କିଛି ସଂସାରକୁ ଓ ତାର ପରିଶ୍ରମର ମୂଲ୍ୟରେ ବଞ୍ଚାଇ ରଖୁଛି ନିଜକୁ । ସେଇ କଣ ସବୁଠାରୁ ବଡ଼ ଐଶ୍ୱର୍ଯ୍ୟ ନୁହେଁ ?

ଯୁକ୍ତିରେ ଯଥାର୍ଥତା ଅଛି । ତଥାପି ସେତେ ଭରିଲା ରାଗ ଆସିଲା ତାର । କେଉଁ ଅଧିକାରରେ ଏଇ ମିସେସ୍ ଗୃନ୍ଦ୍‌ଙ୍କର ଦଳ ଭଲ ଖାଇବେ, ପିନ୍ଧିବେ, ନିଜକୁ ଚହଟେଇବେ ଓ ସାବିତ୍ରୀ ପରି ଶ୍ରମଜୀବୀ, ବୁଦ୍ଧିଜୀବୀ ସ୍ତ୍ରୀମାନଙ୍କୁ ନାକ ଟେକିବେ

ତଳଆ ଶ୍ରେଣୀର ବୋଲି ? ନିଜର ବୁଦ୍ଧି ନାହିଁ, ବିଦ୍ୟା ନାହିଁ, ଯୋଗ୍ୟତା ନାହିଁ, ଦାନ ନାହିଁ, କିନ୍ତୁ ସେମାନେ ପାଇବେ ସବୁ ସୁଖ, ସ୍ୱାଚ୍ଛନ୍ଦ୍ୟ, ସମ୍ମାନ—କାରଣ ସେମାନେ ମିସେସ୍ ଅମୁକ । ତେବେ ଖାଲି ନିଜତ୍ୱର ପରାକାଷ୍ଠା ଦେଖାଇ ଆତ୍ମସନ୍ତୋଷର ଜୟଗାନ କରିବା ଲାଭ କଅଣ, ଯଦି ବାସ୍ତବରେ ଏଇ ଅଯୋଗ୍ୟ ମିସେସ୍ ଅମୁକମାନଙ୍କୁ ସମାଜ ଥୋଇଛି ବଡ଼ ଆସନରେ ଓ ଖୋଇ ଦେଇ ହଳାଇ ସାବିତ୍ରୀର ଦଳକୁ ଦମ୍ଭ ଦେଖାଇବାର ସୁବିଧା ଦେଇଛି । ଏଇ କଣ ସାମାଜିକ ନ୍ୟାୟ ?

ଅବଶ୍ୟ ତା ନିଜ କଥା ଅଲଗା । ସେ କେବେହେଲେ ଏଇ ଐଶ୍ୱର୍ଯ୍ୟକୁ ବଡ଼ ବୋଲି ଭାବି ନାହିଁ । ଜାଣି ଶୁଣି ସେ ବାଛି ନେଇଛି କାମ କରିବାର ଗୌରବ ସ୍ୱାଧୀନତା । ସେ ଆଉ କିଛି ଗୁହେଁ ନାହିଁ । ମିସେସ୍ ଗୃନ୍ଦନ୍ଙ୍କର ଦଳକୁ ସେ ଘୃଣା କରେ ।

ଶ୍ରେଣୀଗତ ବିଚାର ପୁଣି ଖସି ଆସିଲା ମିସେସ୍ ଚାନ୍ଦନ୍ଙ୍କର ବ୍ୟକ୍ତିତ୍ୱକୁ । ଲଢ଼ାଇର ପ୍ରଥମ ପର୍ଯ୍ୟାୟ କଟିଗଲା ପରେ ସାବିତ୍ରୀ ଗୁଡ଼ିଲା ଦ୍ୱିତୀୟ ପ୍ରଶ୍ନ । ବେଶ୍, ଏଇ ପରଶ୍ରୀ ବିଳାସକୁ ଗ୍ରହଣଦେଲେ ଆଉ କଣ ପାଇଛନ୍ତି ସେ ?

ତା' ଆଖିରେ ଦିଶିଗଲା ମିସେସ୍ ଗୃନ୍ଦନ୍ଙ୍କର ଦାରବୁଜା, ଡଳଡଳ ଗୃହାଣୀ, ଉସ୍ଫୁକ ଓଠ, ଅଳସ ହସ । ଭଲ ପାଇବା ? ଭଲ ପାଇବାର ସମ୍ପଦରେ ସେ କଣ ବଡ଼ ସାବିତ୍ରୀଠାରୁ ?

ଅସମ୍ଭବ ! ମିଷ୍ଟର୍ ଗୃନ୍ଦନ୍ଙ୍କୁ ସେ ବାନ୍ଧିପାରନ୍ତି ଦେହର ଆକର୍ଷଣରେ । କିନ୍ତୁ ସେ ଭଲ ପାଇବାର ଶେଷକଥା ନୁହେଁ । ଅନ୍ତତଃ ମିଷ୍ଟର୍ ଗୃନ୍ଦନ୍ଙ୍କର ବ୍ୟକ୍ତିତ୍ୱ କେବେହେଲେ ସୀମିତ ହୋଇପାରେ ନା, ଖାଲି ଦେହ, ଖାଲି ନାରୀତ୍ୱର ବନ୍ଧନରେ । ମିସେସ୍ ଗୃନ୍ଦନ୍ ତାଙ୍କର ସ୍ୱାମୀଙ୍କର ସବୁକିଛି ହୋଇପାରିବେ ନାହିଁ, ତାଙ୍କ ଜୀବନରେ ପୂର୍ଣ୍ଣତା ଆଣିଦେଇ ପାରିବେ ନାହିଁ ।

ଅତି ସାଧାରଣ, ଇତର ସେ ଭଲପାଇବା । ସେଇଟାକୁ ପାଇ ସେ କହିପାରିବେ ନାହିଁ ଯେ ସେ ସାବିତ୍ରୀଠୁ ବଡ଼ ।

ଅସମ୍ଭବ । କେତେଥର ସେ ପଇଁତାଇଲା ଶବ୍ଦଟିକୁ । ମନେହେଲା ସେଇ ମନ୍ତ୍ରର ଉଚ୍ଚାରଣରେ ମିସେସ୍ ଗୃନ୍ଦନ୍ ହାର ମାନି ଅପସରି ଯିବେ ଦୂରକୁ । ଆଉ ଆସିବେ ନାହିଁ ତାର ଭାବନାର ବାଟରେ ।

...ତା'ପରେ ସେ ଆଉ ଥରେ ଦୁଇଥର ଯାଇଛି ମିସେସ୍ ଗୃନ୍ଦନ୍ଙ୍କ ଘରକୁ । ନିଜ ମନକୁ ବୁଝାଇଛି ଯେ ସେ ତାଙ୍କୁ ଗୁରୁତ୍ୱ ଦେଉନାହିଁ କିମ୍ବା ତାଙ୍କଠାରେ

କୌଣସି ଦୋଷ ତ୍ରୁଟି, ଗୋପନ ଅଭାବର ସନ୍ଧା ଖୋଜିବାକୁ ଯାଉନାହିଁ । ସେ ଏତେ ନୀଚ ନୁହେଁ । ସେ ଯାଉଛି ଭଦ୍ରତାର ଅନୁରୋଧରେ, ମିଷ୍ଟର୍ ଗୁନ୍ଦ୍ଙ୍କର ଖାତିରରେ । ତା'ଛଡ଼ା କଣ ବା ଦେଖନ୍ତା ସେ ? ତାଙ୍କର ସେ ବଡ଼ଲୋକର ପରଦା ତଳେ ସବୁ ଛପି ରହିଛି । ସାବନ୍ତୀର ଗରଜ ପଡ଼ିଛି ତା' ଭିତରର ନାଁ ପାଉଁଶ ଖୋଜି ବସିବ !

ଏବେ ମିଷ୍ଟର୍ ଗୁନ୍ଦ୍ଙ୍କ ପାଖରେ ସେ ଆଜିକାଲି ବେଶ୍ ଖୋଲଖୋଲି ଭାବରେ ଆଲୋଚନା କରି ପାରୁଛି ହସିପାରୁଛି । ବେଳେବେଳେ ମନେହେଉଛି ସେ ବେଶି ଚପଳ ହୋଇଯାଉ ନାହିଁ ତ ! ଅଫିସ ସମ୍ପର୍କର ଅପବ୍ୟବହାର କରୁ ନାହିଁ ତ ! କିନ୍ତୁ ପରେ ଭାବିନେଉଛି ଯେ ସେ ଠିକ୍ ବାଟରେ ଚାଲିଛି । ଏ ବାଟ ଅମଡ଼ା ହେଲେ ବି ଅରମାକୁ ଟାଣି ନେବନାହିଁ, ନୂଆ ସୁନ୍ଦର ରାଇଜର ସନ୍ଧାନ ଦେବ ।

ପୁଣି ଆଜିକାଲି ସେ ବହିପଢ଼ାର ଅଭ୍ୟାସ କଲାଣି । ଅଫିସ ଲାଇବ୍ରେରୀରୁ ଗଦା ଗଦା ସାହିତ୍ୟ ଓ ଦର୍ଶନ ବହି ସବୁ ଆଣି ପଢ଼ୁଛି ରାତି ଅଧଯାଏଁ । ସବୁ ହୁଏତ ବୁଝିପାରୁ ନାହିଁ । କିନ୍ତୁ ଖୁସି ଲାଗୁଛି । ମନେହେଉଛି ପ୍ରତ୍ୟେକର ମୋଟା-ମୋଟି କଥା, ତାର ମୌଳିକ ରୂପକୁ ଛୁଇଁପାରୁଛି । ଆଃ, କି ଆନନ୍ଦ ସେଥିରେ ! କେମିତି ଏ ସବୁ ନ ପଢ଼ି ରହିଥିଲା ଆଜିଯାଏଁ !

···ହଠାତ୍ ସେ ଦିନେ ଶୁଣିଲା ମିଷ୍ଟର୍ ଗୁନ୍ଦ୍ଙ୍କଠାରୁ ଯେ ସେ ବଦଳି ହୋଇଯିବେ । ଆକସ୍ମିକ ଆଘାତ ପାଇଲାପରି ଚହଙ୍କି ଉଠି ସେ ପଚାରିଲା, "ସତେ ?" ଓଠ ମେଲା ହୋଇଗଲା । ଆଉ କିଛି କହିପାରିଲା ନାହିଁ ।

ଟିକିଏ ପରେ ସେ ସମ୍ଭାଳିନେଲା ନିଜକୁ । କିନ୍ତୁ ପେନ୍‌ସିଲ୍ ନୋଟ୍ ବହିରେ ଚଳାଇଲାବେଳକୁ ମନେ ହେଉଥାଏ ଆଉ କିଏ ଲେଖୁଛି । ଥରକୁ ଥର ସେଇ ଖବର ହାତୁଡ଼ିପରି ବାଜୁଥାଏ ଆସି,—ମିଷ୍ଟର୍ ଗୁନ୍ଦ୍ ବଦଳି ହୋଇଯିବେ । ମନ ପ୍ରତିବୋଧ ଗଢ଼ୁଥାଏ,—ଏ କିଛି ନୂଆ କଥା ନୁହେଁ, ବିଚିତ୍ର ନୁହେଁ, ଆଜି ନ ହେଲେ କାଲି ବଦଳି ହୋଇଥାନ୍ତେ । କିନ୍ତୁ ସେତିକିରେ ଆଘାତ ଲାଗିଯାଉଥାଏ ଗୁରୁତର । କାହାର ଚାଲିଯିବାର ସତକଥା ମାନି ନେଇହେବ । କିନ୍ତୁ କଷ୍ଟ ସହିବାର ସବୁ ସୁନ୍ଦରତା ଓ ବଡ଼ପଣ ଭାଙ୍ଗିଯାଏ ସେଇ କଥା ପଦକରେ, ଯେ ତାର ଚାଲିଯିବାର ଥିଲା, ସେ ସବୁଦିନେ ରହିନଥାନ୍ତା । ତା'ପରେ ସେଇ ଅଦରକାରୀ ଦୁଃଖରେ ବୋଝକୁ ସହି ହୁଏ ନାହିଁ ।

ସେଣ୍ଟିମେଣ୍ଟ୍ ? ସାବନ୍ତୀ ମାନିବାକୁ ଚାହିଁଲା ନାହିଁ ଯେ ସେ ଭାବପ୍ରବଣ । ନା, ସେ ଦୁଃଖିତ ହେଉନାହିଁ ମିଷ୍ଟର୍ ଗୁନ୍ଦ୍ ଚାଲିଯିବେ ବୋଲି । ମିଷ୍ଟର୍ ଗୁନ୍ଦ୍ ତାର

କେନ୍ଦ୍ର ନୁହେଁ । ତେବେ ତାକୁ ଖରାପ ଲାଗୁଛି ଯେ ତାର ଷ୍ଟେନୋଗ୍ରାଫି ଜୀବନ ପୁଣି ଗଡ଼ିଚାଲିବ ତାର ଧରାବନ୍ଧା ବାଟରେ । କେହି ତାକୁ କହିବ ନାହିଁ, ପ୍ରେରଣା ଦେବନାହିଁ ଅଭିନବ ଚିନ୍ତା, କଳ୍ପନାର ଛବି ଆଙ୍କିବା ପାଇଁ ।

ସେହି ସାହଚର୍ଯ୍ୟଟିକ । ନ ହେଲା ନାହିଁ । କଣ ଏମିତି ହଉଗଲା ତାର ?

ସେ କେତେଦୂର ସଜାଡ଼ି ନେଇଥିଲା ନିଜକୁ କହିହେବ ନାହିଁ । କିନ୍ତୁ ଦୁଇଦିନ ପରେ ଯେତେବେଳେ ମିଷ୍ଟର୍ ଗ୍ରିନ୍ ନିମନ୍ତ୍ରଣ ଦେଲେ ଆସନ୍ତା ରବିବାର ତାଙ୍କ ସାଙ୍ଗରେ ପିକ୍‌ନିକ୍‌ରେ ଯିବାପାଇଁ, ସେ କୃତଜ୍ଞତାରେ ଗଦ୍‌ଗଦ୍ ହୋଇଗଲା । ଅଫିସ ବାହାରେ ସେଇ ଗୋଟାଏ ଦିନ, ବୋଧହୁଏ ଶେଷଥର ପାଇଁ । ନିରୋଳାରେ, ଖୋଲା ପବନରେ ବନ୍ଧୁ ବିଦାୟର ପରିଚର୍ଯ୍ୟା କିଛି ହେବ; ମାମୁଲି ଲୁହ, ଦେହ ଆଉଁସାରେ ନୁହେଁ, ଉନ୍ନତ ଅନ୍ତରଙ୍ଗ ଭାବନା ଆଲୋଚନାର ଭୋଜିରେ । ସେଥିରେ ନଥିବ ସ୍ୱାର୍ଥର ବିକାର, ଆପଣା କଥାର ଗୌଣତା ।

...ରବିବାର ଆସିଗଲା । ସକାଳୁ ସକାଳୁ ସାବିତ୍ରୀ ବାହାରିଗଲା ମିଷ୍ଟର୍ ଗ୍ରିନ୍‌ଙ୍କ ଘରକୁ । ସେଇଠୁ ସେମାନେ କାର୍‌ରେ ଯିବେ କୁତବ୍‌ମିନାର ।

ମିସେସ୍ ଗ୍ରିନ୍ ବାହାରିଲେ ସାଙ୍ଗରେ । ସାବିତ୍ରୀକୁ ଲାଗିଲା ଯେପରି ସେ ତାଙ୍କର ଆସିବା ପାଇଁ ପ୍ରସ୍ତୁତ ନ ଥିଲା । ମନକୁ କହିଲା, ବେଶ୍, ଆସନ୍ତୁ ନା ସେ । କ୍ଷତି କଅଣ ? ସେ ଖାଲି ରହିବେ ଛବିର ଅଳଙ୍କାର ହୋଇ, ଛବିର କଥା, ତାର ଭାବକୁ ବିକୃତ କରିପାରିବେ ନାହିଁ ।

ମିସେସ୍ ଗ୍ରିନ୍ ସୁନ୍ଦର ଦେଖା ଯାଉଛନ୍ତି । ତାଙ୍କର ସ୍ୱାଭାବିକ ସୁନ୍ଦରତା ବହିର୍ମୁଖୀ ହେବାକୁ ଚାହୁଁଛି, ଛୁଟି ଦିନର ଆନନ୍ଦପିପାସୁ ପ୍ରାଣୀମାନଙ୍କୁ କୃତାର୍ଥ କରିବା ପାଇଁ ।

ପାତଳା ନେଳିଆ ଶାଢ଼ୀ ଖଣ୍ଡେ ପିନ୍ଧିଛନ୍ତି ସେ, ଓ ତାକୁ ଖେଳିବାକୁ ଛାଡ଼ିଦେଇଛନ୍ତି ପବନ ସାଙ୍ଗରେ । ଆଖିର ଚାହାଣୀ ବି ଖେଳିବାକୁ ଚାହୁଁଛି । ଆଖିପତା ପଡ଼ୁଛି ଥରକୁ ଥର, ପୃଥିବୀର ପ୍ରତ୍ୟେକ ଦୃଶ୍ୟ ଅନୁମୋଦନ କରି ଖୁସି ହେଲପରି । ଆଉ ସେ ହସ ଯେମିତି ଅସରନ୍ତ; ଓଜାଡ଼ି ହୋଇଯିବାକୁ ଚାହେଁ ନା, ସରିଯିବାର ଆଶଙ୍କା ନାହିଁ, ଖାଲି ଝର ଝର ହୋଇ ବହି ଆସୁଛି ପୃଥିବୀର ମନମୁତାବକ ।

ମିଷ୍ଟର୍ ଗ୍ରିନ୍‌ଙ୍କ ହାତରେ ହାତ ଗୁଡ଼ାଇ ସେ ଉଠିଲେ କାର୍ ଉପରକୁ । ସାବିତ୍ରୀ ହସିଲା । ଯାହାର ଦେହଲଗା ଆଉ କିଛି ଦେବାର ନାହିଁ, ସେ ଅନ୍ୟର ଦେହକୁହିଁ ଜାବୁଡ଼ି ଧରେ, ଆଉ କିଛି ପାଇବ ନାହିଁ ବୋଲି ।

ଛୁଟିଦିନର ଭିଡ଼ ସେଦିନ । ଅଫିସ୍‌-ଜୀବମାନେ ଦଳ ଦଳ ହୋଇ ଆସୁଛନ୍ତି ପିଲାପିଚିକା ଧରି, ଖୁସି ହେବାର ପ୍ରଗାଢ଼ ଉଦ୍ୟମ ଓ ଅଭିଳାଷ ନେଇ । ସାବିତ୍ରୀ ଭାବିଲା, ସମସ୍ତଙ୍କ ଆଖିରେ ସେମାନେ ମଧ୍ୟ ଗୋଟିଏ ଉପଭୋଗପିପାସୁ ଦମ୍ପତି । କିନ୍ତୁ ପ୍ରକୃତିରେ କେତେ ପ୍ରଭେଦ । କିଏ ଜାଣିବ ଯେ ମିଷ୍ଟର୍ ଗୃନ୍ଦ୍ ଓ ସାବିତ୍ରୀ ଆସିଛନ୍ତି ବିଦାୟ ନେବାକୁ, ଗୋଟିଏ ଗୌରବମୟ ସମ୍ବନ୍ଧର ଉଦ୍‌ଯାପନା କରିବା ପାଇଁ ।

ମିଷ୍ଟର୍ ଗୃନ୍ଦ୍ ଖୁସି ଅଛନ୍ତି । ତାଙ୍କ ସ୍ତ୍ରୀଙ୍କପରି ନୁହେଁ, ତାଙ୍କ ହୃଦରେ ଅଛି ଗାମ୍ଭୀର୍ଯ୍ୟ ଓ ଉଦାରତା । ସେଥିରେ ଅଛି ଭଲଲାଗିବାର ବହୁ୍ମୂର୍ତ୍ତି ଭାବ, ଭରା ପାଣିରେ ଚହଲି ଉଠୁଥିବା ତରଙ୍ଗ ପରି । ଅନ୍ୟକୁ ଦେଖାଇ ହେବାର ପ୍ରବୃତ୍ତି ନାହିଁ ।

ସେମାନେ ବସିଲେ ପାଖ ପାଖ ହୋଇ, କୁତବ୍‌ମିନାରର ପଛ ପଡ଼ିଆର ଗୋଟିଏ ନିର୍ଜନ ଜାଗାରେ । ମିଷ୍ଟର୍ ଗୃନ୍ଦ୍ ଟିକିଏ ଅନାଉଥାଆନ୍ତି ସାବିତ୍ରୀ ଆଡ଼େ, ଆଉ ଟିକିଏ ତାଙ୍କ ସ୍ତ୍ରୀଙ୍କ ଆଡ଼େ । ପଚାରୁଥାଆନ୍ତି ଥରକୁ ଥର, କିଛି ଅସୁବିଧା ହେଲା ନାହିଁ ତ ?

ଶୀତ ଅଛି କେତେ ଦୂରରେ । କିନ୍ତୁ ତାର ଇଙ୍ଗିତ ଆସିଲାଣି ଆକାଶ ପବନରେ । କଅଁଳ ଖରା ପାତଳା ସୁନେଲି ଚାଦରଟି ପରି ଘୋଡ଼େଇ ରଖିଛି ନେଳିଆ ଆକାଶ ଓ ଶାଗୁଆ ପୃଥିବୀକୁ, ଅନୁଭୂତିରେ ଲାଗୁଛି ସ୍ୱଚ୍ଛତାର ପରଶ ଓ ଶୀତଳତାର କଳ୍ପନା ।

ମିଷ୍ଟର୍ ଗୃନ୍ଦ୍ ଚାହିଁଛନ୍ତି କୁତବ୍‌ମିନାର ଆଡ଼କୁ । ଆଖିରେ ସେଇ ସୁଦୂର ଗଭୀର ଦୃଷ୍ଟି । ମିସେସ୍ ଗୃନ୍ଦ୍ ଜଳଖିଆ ବାସନ ଖୋଲି ସଜାଡ଼ୁଛନ୍ତି ।

ସାବିତ୍ରୀ ଉତ୍ସୁକ ହୋଇ ଉଠିଲା, ମିଷ୍ଟର୍ ଗୃନ୍ଦ୍‌ଙ୍କର ସେଇ ଅନୁଭୂତିରେ ମିଶାଇବ ନିଜକୁ । ଏଇତ ଶେଷଥର, ମନେ ରହିବ ଚିରଦିନ ପାଇଁ ।

କଥା ଆରମ୍ଭ କରିବା ପାଇଁ ସେ ପଚାରିଲେ, "ଆଚ୍ଛା, କୁତବ୍‌ମିନାର୍‌ର ଏଇ ଉଚ୍ଚତାକୁ ଦେଖିଲେ କଣ ମନେହୁଏ ଆପଣଙ୍କର ? ମୋର ମନେହୁଏ କେତେ ନିର୍ବୋଧ ଓ ସୀମାବଦ୍ଧ ଏଇ ମଣିଷର କଳ୍ପନା । ପିଲା ଯେମିତି ବଡ଼ ମଣିଷର କାନ୍ଧକୁ ଉଠିଯାଇ ଭାବେ ସେ ବଡ଼ ହୋଇଗଲା, ମଣିଷ ସେଇପରି ଭାବେ ନିଜଠାରୁ ଉଚ୍ଚ କିଛି ଗୋଟାଏ ତିଆରି କରି ନିଜର ମହତ୍ତ୍ୱର ପ୍ରମାଣ ଦେବାକୁ । ଆଉ ସବୁଠାରୁ ହାସ୍ୟାସ୍ପଦ ହେଉଛି ଯେତେବେଳେ ସେ ଭଗବାନଙ୍କ ବିଦ୍ୟମାନତ୍ୱ ଦେଖାଇବାକୁ ଯାଇ ତୋଳି ଦିଏ ବଡ଼ ମନ୍ଦିର, ବଡ଼ ମସ୍‌ଜିଦ୍ । ସତେ

ଯେପରି ଖାଲି ଧୈର୍ଯ୍ୟ, ସ୍ପଷ୍ଟ ହେଉଛି ଉତ୍କର୍ଷର ସୂଚନା । ଆପଣ ପୁରୀ ମନ୍ଦିର ଦେଖିଛନ୍ତି ?”

ମିଷ୍ଟର୍ ଗ୍ରିନ୍ ଅନାଇଲେ ସାବିତ୍ରୀ ଆଡ଼କୁ । ଓଠ ଖୋଲିହୋଇ ଆସିଲା । କିଛି କହିବେ ପରା । କିନ୍ତୁ ହଠାତ୍ ମିସେସ୍ ଗ୍ରିନ୍ କହିଉଠିଲେ, “କାହିଁକି ଏଟାକୁ ଏତେ ଉଚ୍ଚ କରିଛନ୍ତି କେଜାଣି ।” ତା’ପରେ ଗୋଟାଏ ନୂଆ କଥା ମନେପଡ଼ିଲା ପରି ଆଗ୍ରହର ଆତିଶଯ୍ୟ ଦେଖାଇ କହିଲେ, “ମୋର ମନେ ଅଛି ମୁଁ ଯେବେ ପ୍ରଥମେ ଚଢ଼ିଲି ତା’ ଉପରକୁ, ମୋ ଆଗରେ ଥାଏ ଗୋଟିଏ ମୋଟୀ ଗୁଜରାଟୀ ସ୍ତ୍ରୀଲୋକ । ମୁଁ ମଝିରେ ମଝିରେ ଥକିଗଲାରୁ କହୁଥାଏ,—ଏଁ, ଏତିକିରେ ରହିଗଲ ?” ତା’ପରେ ଉଦ୍‌ଗତ ହସକୁ ରୋକିଲା ପରି କହିଲେ, “କିନ୍ତୁ ବିଚରା ଶେଷ ମୁଣ୍ଡକୁ ଆସିଲାବେଳକୁ ଏମିତି କଚଡ଼ାଟିଏ ଖାଇଲା । ମୁଁ ଉଠାଇ ଦେଲି ବେଳକୁ କହିଲା ‘ସରି’ (sorry)” । ତା’ପରେ ନବୀଆରେ ହସକୁ ଛାଡ଼ିଦେଲେ ସେ, ମୁଣ୍ଡକୁ ଝୁଙ୍କାଇ, ହଲି ହଲି । ସାବିତ୍ରୀ ମୁରୁକେଇ ହସିଲା ଭଦ୍ରତାରେ । ମିଷ୍ଟର୍ ଗ୍ରିନ୍ ହସିଲେ ହୋ ହୋ ହୋଇ !

ମିଷ୍ଟର୍ ଗ୍ରିନ୍ ବି ହସନ୍ତି ଏମିତିକା କଥାରେ ! ସାବିତ୍ରୀ କ୍ଷୁବ୍ଧ ହେଲା । କିନ୍ତୁ ପରେ ଭାବିଲା ସେ ଏପରି ଲଘୁ କଥାରେ ପ୍ରତିକ୍ରିୟା ଆସେ ସହଜରେ । ଉନ୍ନତ ଚିନ୍ତାର ପ୍ରକାଶ ପାଇଁ ଦରକାର ଲୋଡ଼ା ଓ ଉପଯୁକ୍ତ ବାତାବରଣ, ଯାହା ମିସେସ୍ ଗ୍ରିନ୍‌ଙ୍କର ସାନ୍ନିଧ ଦେଇପାରିବ ନାହିଁ ।

ସାବିତ୍ରୀ ନିରାଶ ହେଲା । କିନ୍ତୁ ବ୍ୟସ୍ତ ହେଲାନାହିଁ । ହେଉ, ଆଜି ଦିନଟା କଟିଯାଉ ଏମିତି । ଭାଷାର ଦାୟିତ୍ୱ ନ ନେଇ ଭାବର ଧାରା ଗଡ଼ିଯାଉ ସ୍ୱଚ୍ଛନ୍ଦରେ । ଅନ୍ତତଃ ଅଫିସ-ପାଚେରୀର ବାହାରେ ମିଷ୍ଟର୍ ଗ୍ରିନ୍‌ଙ୍କୁ ଦେଖିବାକୁ ପାଉଛି ସେ, ନିକଟରେ, ଶେଷଥର ପାଇଁ । ସେଇ କଣ ଯଥେଷ୍ଟ ନୁହେଁ ? ଏଇ ମିଷ୍ଟର୍ ଗ୍ରିନ୍‌ଙ୍କୁ କେନ୍ଦ୍ରକରି ସେ ମନରେ ଲେଉଟାଇ ଆଣିବ ଗତ କେତେ ମାସର କଥା, ଯାହା ତା’ ଜୀବନରେ ନୂଆ ଅନୁଭୂତି ଆଣିଦେଇଛି । ଅଫିସର୍ ମିଷ୍ଟର୍ ଗ୍ରିନ୍ ବୋଧହୁଏ ସେ ସୁଯୋଗ ଦେଇ ପାରିବେ ନାହିଁ, କାର୍ଯ୍ୟବହୁଳ ଶେଷ ଦିନଗୁଡ଼ିକରେ ।

ମିଷ୍ଟର୍ ଗ୍ରିନ୍ ଅନାଶୁଆ ହୋଇ ଅନେଇଛନ୍ତି ଆକାଶକୁ । ଗ୍ରହଣୀରେ ଭାବନାର ପ୍ରାଚୁର୍ଯ୍ୟ । ଠିକ୍ ଯେମିତି ସାବିତ୍ରୀ ଦେଖିଥିଲା ସେଇ ପ୍ରଥମ ଦିନର ଆଳାପର ପୂର୍ବରୁ ଓ ମୁଗ୍‌ଧ ହୋଇଥିଲା ।

ନରମ ଝର୍କାରେ ଝଳ ଦିଶୁଛି ତାଙ୍କର ମୁହଁ । ପ୍ରଶସ୍ତ ଲଲାଟରେ ଲାଗିଥିବା ଝାଳବୁନ୍ଦା ଦୁଇଟି ଚକ୍ ଚକ୍ କରୁଛି । ଓଠ ଦୁଇଟି ସାମାନ୍ୟ କୁଞ୍ଚିତ ହୋଇ ଯାଉଛି ଭାବନାର ଗ୍ରାସରେ ।

ସାବିତ୍ରୀ ଅନେଇ ରହିଥିଲା ତାଙ୍କ ଆଡ଼େ । ତାର ଇଚ୍ଛାହେଲା ସେ ତାଙ୍କର ସୁନ୍ଦର ବ୍ୟକ୍ତିତ୍ୱଟିକୁ ଆହୁରି ଭଲଭାବରେ ଜାଣନ୍ତା । ସ୍ପର୍ଶ ଆସନ୍ତା ତାଙ୍କ ପାଖକୁ ହାତ ବୁଲାନ୍ତା ତାଙ୍କ କପାଳରେ । ତାଙ୍କ ଶ୍ୱାସରେ ମିଶାଇ ଦିଅନ୍ତା ନିଜର ଶ୍ୱାସ । ତାଙ୍କ ଓଠର ପ୍ରତ୍ୟେକ ସ୍ପନ୍ଦନରେ ପଢ଼ନ୍ତା ତାଙ୍କ ଉଦ୍‌ବେଳ କଳ୍ପନାର ଭାଷା ।

ଆହୁରି ନିକଟ ହୋଇଯାଆନ୍ତା । ସେଥିରେ ଆବିଳତା ନାହିଁ, ଲଜ୍ଜାର କାରଣ ନାହିଁ । କିନ୍ତୁ ତଥାପି ତାହା ହୋଇପାରିବ ନାହିଁ, ସାମାଜିକ ନିୟମ ଅନୁଯାୟୀ । ସାବିତ୍ରୀକୁ ଛଟପଟ ଲାଗିଲା । ନିବିଡ଼ ଇଚ୍ଛାର ଭାରରେ ତାର ଗୁଡ଼ାଏ ଭିତରଟା ରୁନ୍ଧିହେଲା ପରି ମନେହେଲା । ହଠାତ୍ ଛୋଟା ହୋଇପଡ଼ିଲା ସେ, ନିଜକୁ ଝାଡ଼ିଝୁଡ଼ି ହାଲୁକା କରିବା ପାଇଁ ।

ସେତିକିବେଳେ ସେ ଦେଖିଲା, ମିସେସ୍ ଗ୍ରିନ୍ ଅନେଇ ରହିଛନ୍ତି ତା' ଆଡ଼କୁ । ଶାଣଦିଆ ସେ ଚାହାଣୀ, ସ୍ୱାଭାବିକ ତରଳତା ନାହିଁ ସେଥିରେ । କାହିଁକି ? ଆଶ୍ଚର୍ଯ୍ୟ ହେଲା ସେ ।

"ଆଉ କପେ ଟି' ଦରକାର, କଣ କହୁଛ ?" ମିଷ୍ଟର୍ ଗ୍ରିନ୍ କହିଉଠିଲେ, ଅଳସ ଭଙ୍ଗି । ମିସେସ୍ ଗ୍ରିନ୍ କିଛି କହିବା ଆଗରୁ ସାବିତ୍ରୀ ତତ୍ପରତା ଦେଖାଇ କହିଲା, "ମୁଁ ଯାଉଛି ଏଇକ୍ଷଣି ନେଇ ଆସିବି", ଓ ମୁହାଁଇଲା ଖଣ୍ଡେ ଦୂରରେ ଥିବା ଜଳଖିଆ ଦୋକାନ ଆଡ଼କୁ । ତାର ମନେହେଲା ସେ ଯେମିତି ଖୋଜୁଥିଲା ଏସି ପଳାଇଯିବ କିଛି ସମୟ ପାଇଁ ।

ପାଞ୍ଚ ଛଅ ମିନିଟ୍ ପରେ ସେ ଫେରିଲା ଟି' ଟ୍ରେ ଧରି । କିଛିବାଟ ଯାଇ ଆଖି ଉପରକୁ ଉଠାଇଲା ସେମାନଙ୍କର ବସିଥିବା ଜାଗା ଆଡ଼କୁ ।

ତା'ପରେ ମୁହୂର୍ତ୍ତିକ ପାଇଁ ସେ ରହିଗଲା ସେଇଠି । ଦେଖିଲା ମିସେସ୍ ଗ୍ରିନ୍‌ଙ୍କର ବାହୁ ଗୁଡ଼େଇ ହୋଇ ଆସିଛି ମିଷ୍ଟର୍ ଗ୍ରିନ୍‌ଙ୍କର ବେକରେ ଓ ମୁହଁ ନଇ ଆସିଛି ତାଙ୍କର ମୁହଁ ଉପରକୁ । ତାକୁ ଦେଖି ଛଡ଼ାଛଡ଼ି ହୋଇଗଲେ ଦୁହେଁଜଣ । ମିଷ୍ଟର୍ ଗ୍ରିନ୍ ମୁହଁ ଆଡ଼େଇ ଦେଲେ । କିନ୍ତୁ ସାବିତ୍ରୀ ଦେଖିପାରିଲା ତାଙ୍କ ମୁହଁରେ ଥିବା ନିବିଡ଼ ତୃପ୍ତିର ଗ୍ଲାନି । ଆଉ ମିସେସ୍ ଗ୍ରିନ୍ ଅନେଇ ରହିଥିଲେ ସିଧା ତା' ଆଡ଼କୁ । ତାଙ୍କର ଓଠରେ ଉକୁଟି ଉଠୁଥିଲା ହସର ରେଖାଟିଏ ।

ସାବିତ୍ରୀ ଆଗେଇଲା । କିନ୍ତୁ ସେଇ ମୁହୂର୍ତ୍ତରେ ତାର ମନେ ହେଲା ପ୍ରବୃତ୍ତିର ଅନୁଗାମିନୀ ହୋଇ ଟି' ଟ୍ରେ ଫିଙ୍ଗିଦେଇ ପଳାଇବ ଦୂରକୁ ଓ କାନ୍ଦିନେବ ରାଗ ଓ ଅପମାନର ଲୁହ ।

…ସେଇଦିନ ସନ୍ଧରେ ଏକୁଟିଆ ଘରେ ସେ କାନ୍ଦିଲା ଭୁହାକୁ ଭୁହା । କାହିଁକି ବୋଲି ପଗ୍ଚରିବାର ସାହସ ହେଲା ନାହିଁ, ଧୈର୍ଯ୍ୟ ରହିଲା ନାହିଁ । ଭଲକରି କାନ୍ଦିନେଲେ ହୁଏତ ସବୁ ପ୍ରଶ୍ନର ସମାଧାନ ହୋଇଯିବ ।

କାନ୍ଦଣାର ଜୁଆର ସରିଲାବେଳେ ସେ ମୁହଁଟେକି ଅନାଇଲା ଓ ଦର୍ପଣରେ ଦେଖିଲା ତାର କାନ୍ଦୁରା ମୁହଁ । ହସି ଉଠିଲା ସେ । ଏଇ ହେଉଛି ସାବିତ୍ରୀ ! ଖାଲି ନାରୀ !

କିନ୍ତୁ ଟିକିଏ ପରେ, ଦୁଇ ହାତରେ ମୁଣ୍ଡବାଳକୁ ଗୋଛେଇ ନେଇ ସେ ହସିଲା ଆଉଥରେ । ସେ କାନ୍ଦୁଛି କାହିଁକି ? ତାର ତ ହସିବାର କଥା । ସାବିତ୍ରୀ ଖାଲି ଷ୍ଟେନୋଗ୍ରାଫର ନୁହେଁ । ସେ ମଧ୍ୟ ନାରୀ । ଆଜି ତାର ନାରୀତ୍ୱର ସାର୍ଟିଫିକେଟ୍ ଦେଇଛନ୍ତି ସୁନ୍ଦରୀ ମିସେସ୍ ଗୁପ୍ତ; ତାଙ୍କ ଆଖିରେ ଥିବା ସେଇ ଈର୍ଷାର ନିଆଁ ଓ ଧରି ରଖିବାର ଆତୁରତା ମିଛ ନୁହେ ।

ଟେବୁଲ୍ ଉପରେ ଥିବା ଦର୍ଶନ ବହିଗୁଡ଼ାକ ତା' ଆଡ଼କୁ ଚାହିଁ ରହିଥିଲେ ଜଳଜଳ ହୋଇ ।



# ସାବିତ୍ରୀର ସୁଦିନ

ଏହି ଗଳ୍ପଟିକୁ ଜଣାଶୁଣା ପ୍ରେମତ୍ରିଭୁଜ ବୋଲି ଧରି ନେଲେ ମୁଁ ଆଦୌ ଆପତ୍ତି କରିବି ନାହିଁ । କାରଣ ତଥାକଥିତ ପ୍ରେମର ରାଜ୍ୟ ଏତେ ବିଶାଳ, ଏତେ ଛବିଳ, ଯେ ସେଥିରେ ସବୁପ୍ରକାର ରଙ୍ଗଢଙ୍ଗ, ଛଇଛଟକ, ଇତର ହିଂସୁକୁଟିଆ ଲୁହ, ତଥା ବୌଦ୍ଧିକ ଆଳାପ-ଆଲୋଚନା ଖାପ୍ ଖାଇ ଯାଇପାରିବ । କିନ୍ତୁ ମୋର ନିବେଦନ ଏହି ଯେ ଯଦି ମୁଁ ନିରୋଳା ପ୍ରେମ ଗଳ୍ପଟିଏ ଲେଖିବାକୁ ଚାହୁଁଥିଲି, ତାହାହେଲେ ତ୍ରିଭୁଜଗତ ଦ୍ୱନ୍ଦ୍ୱକୁ ଆହୁରି ଶାଣିତ କରି ପାରି ନ ଥାଆନ୍ତି ? ବିଶେଷତଃ ଦାମ୍ପତ୍ୟର ବାହାରକୁ ଲମ୍ବିଥିବା ଭୁଜଟିକୁ ଏତେ ହାଲୁକା କରି ଥୋଇଲି କାହିଁକି ?

ଦିଲ୍ଲୀର ପୃଷ୍ଠଭୂମିରେ ଲେଖା ହୋଇଥିବା ସମ୍ଭବତଃ ଏହି ପ୍ରଥମ ଗଳ୍ପଟିକୁ ମନେ ପକାଇଲି ବେଳକୁ ମୋର ଖିଆଲ ହେଉଛି ଯେ ମୁଁ ଯେଉଁ ସାବିତ୍ରୀର ରୂପ ଦେଖିଥିଲି ସେଠି, ତାହା ମୋ ପାଇଁ ଥିଲା ଗୋଟିଏ ନୂତନ ଉଦବୋଦ୍ଧୀପକ ଆବିଷ୍କାର ! ନିଜ ଗୋଡ଼ରେ ଠିଆ ହୋଇ କାମ କରୁଥିବା ମଧ୍ୟବିତ୍ତ ପରିବାରର ସ୍ତ୍ରୀ ଆଜିକାଲି ଅନେକ ମିଳିବେ । କେବଳ ଦିଲ୍ଲୀ ପରି ମହାନଗରୀରେ ନୁହେଁ, ଓଡ଼ିଶାର ପୁରପଲ୍ଲୀରେ । କିନ୍ତୁ ସେତେବେଳେ ଏମାନଙ୍କ ସଂଖ୍ୟା ସୀମିତ ଥିଲା, ଏବଂ ଅଧିକାଂଶରେ ଏମାନଙ୍କ ଭାବମୂର୍ତ୍ତି ( ଇମେଜ୍ ) ବିଶେଷ ସ୍ପୃହଣୀୟ ନ ଥିଲା । ସତେକି ସେମାନେ ସ୍ୱଭାବତଃ ସୁଶ୍ରୀ, କୋମଳାଙ୍ଗୀ, ମୋଟ ଉପରେ ନାରୀଭାବାପନ୍ନ ନୁହଁନ୍ତି । ଏବଂ

ଯେକୌଣସି କାରଣରୁ ବାଧ୍ୟ ହୋଇ ବାହା ହୋଇ ନ ଥିବାରୁ ବୁଭୁକ୍ଷୁ । ତେଣୁ ଦୟାର ପାତ୍ର । ଏହି ଇମେଜ୍-ବଗୃହ ବିରୁଦ୍ଧରେ ଧାବଣୀ ସ୍ୱର ଉଠେଇଛି— ଇଏ କେଉଁ ପ୍ରକାର ନ୍ୟାୟ ? ମୁଁ କଅଣ ନାରୀ ନୁହେଁ ? ମୋର କଅଣ୍ଟା ନାହିଁ ଯେ ବିଳାସିନୀ ଘରଣୀ ମୋ ପ୍ରତି ଦୟା ଦେଖାଇବ ? ଇତ୍ୟାଦି । ଶେଷକୁ ସେ ଜିତିଲା କି ହାରିଲା, ତା'ର ଯନ୍ତ୍ରଣା ସୁନ୍ଦନ ଆସିଲା କି ସେ ନିଜକୁ ଠକେଇଲା, ତା'ର ବିଗୃହ ବୈକ୍ରିକ । ହୁଏତ କାବ୍ୟିକ । କିନ୍ତୁ ମୋ ଗଳ୍ପମାନଙ୍କର ମୂଳକଥା ହେଲା ତା'ର ଏଇ ସମାଜଗଢ଼ା ଦୂରବସ୍ଥା ପ୍ରତି ସହାନୁଭୂତି । ଏମିତି କାହିଁକି ହେବ ? ହେବା କଣ ଉଚିତ ?

ଯୁଗ ବଦଳୁଛି । ଇମେଜ୍ ବଦଳୁଛି । ଆଜି ଅନେକ ଘରଣୀ-ନାରୀ ମଧ୍ୟ ମୋର ସହାନୁଭୂତି ଦାବୀ କରି ବସନ୍ତି । ଆମେ ଘରଣୀ ବୋଲି କଣ କେବଳ ଘରକରଣାର ଜୀବ ? ବୁଦ୍ଧି ଚାତୁରୀରେ ଊଣା ସମାଜ ପ୍ରତି କଣ ଆମର କିଛି ଅବଦାନ ନାହିଁ ? କେଉଁ ଅଧିକାରରେ ସେଇ ସ୍ମାର୍ଟ୍ ଫେସନିଆ ସ୍ୱାଧୀନାର ଦଳ ଆମକୁ ନାକ ଟେକିବେ ? ଇତ୍ୟାଦି, ଇତ୍ୟାଦି । କିନ୍ତୁ ଭାବିବାର ବିଷୟ ହେଉଛି ଯେ ଏ କୂଳରୁ ହେଉ ବା ସେ କୂଳରୁ ହେଉ ନାରୀ-କଣ୍ଠରୁ (କେବଳ ନାରୀ କଣ୍ଠରୁ) ଏହି ଭଳି ରାଗ ଅଭିମାନର ସ୍ୱର ତଥାପି ଶୁଣିବାକୁ ମିଳେ । ତାହା ହେଲେ କଣ କହିବେ ଯେ ହଲ୍ଲସଲ୍ଲ ହେବା ନାରୀଜାତିର ଧର୍ମ ? ନା ଦୁଃଖର ସହିତ ମାନିବାକୁ ପଡ଼ିବ ଯେ ଯୁଗ ଯଥାର୍ଥରେ ବଦଳି ନାହିଁ, ବିଶେଷତଃ ଭାରତରେ ? ତେଣୁ ଯାଉଣୁ ଆସୁଣୁ ସୀତା ସାବିତ୍ରୀମାନଙ୍କର ଜୟ-ଜୟକାର କରିବା ଛଡ଼ା ସମାଜର ଅନ୍ୟଗତି ନାହିଁ ?

କଟକ

୧୫ ଜୁଲାଇ ୧୯୮୬



# ଗୋଟିଏ ରାତିର କାହାଣୀ

ମଣ୍ଡିଦିଆ ଧୋବ ଫର ଫର ପୋଷାକ ଓ ଧଳା ପାଲିସ୍ ଚିଠାଣି । ବିସ୍ତୃତ ସମାନତା ଓ ମସୃଣତା ଭିତରେ ବ୍ୟକ୍ତିଗତ ଗୁଣର ସୂଚନା ଦିଏ ଖାଲି ଯନ୍ତ୍ରଣାର ବିଭିନ୍ନ ପ୍ରକାଶ । ନୂଆ କରି ଭୋଗୁଛି କିଏ । କହୁଛି ଅଳ୍ପ, କାନ୍ଦୁଛି ବେଶି । କଳ୍ପନାରେ ନିଜର ଅବସ୍ଥାକୁ ରଙ୍ଗ ଦେଇ ଭାବୁଛି, ସବୁ ସରିଗଲା,—ଆଉ ହୁଏତ ସୂର୍ଯ୍ୟ ସବୁଦିନ ପରି ହସି ହସି ଉଠିବନି ତା' ପାଇଁ, ଜହ୍ନ ଆଙ୍କିବନି ସ୍ୱପ୍ନ ଓ କବିତା । ଆଉ କିଏ ପାନିକରି ଜଣାଇବାକୁ ଚାହେଁ ଦୁନିଆକୁ ଯେ ତା'ର କିଛି ହୋଇଛି । ସମସ୍ତଙ୍କର ଏମିତି ହୁଏନା,—ତେଣୁ ସମସ୍ତଙ୍କଠାରୁ ତା'ର ପାଉଣା ବେଶି । ପୁଣି ଆଉ କିଏ ବାହାର ଦୁନିଆକୁ ସାଙ୍ଗରେ ନେବାକୁ ଚାହେଁନା । ସେମାନେ କ'ଣ ବୁଝିବେ ତା'ର ଦୁଃଖ ? ନା—ସେ ଖାଲି ଚାହେଁ ନିଜର କେହି । ମନ ଫେରିଯାଏ ମାଆର ଉଷୁମ କୋଳକୁ,—ଭାବନା ନାହିଁ, ଯନ୍ତ୍ରଣା ନାହିଁ, କିଛି ନାହିଁ ସେଠି । ଶେଷ ବିଶ୍ରାମ । ଆଖି ବୁଜିଦିଏ ଓ କଳ୍ପନା କରେ ଜଣକୁ । କିନ୍ତୁ ସେ ଜଣକ ପରଜୀବନର ଉପକରଣ ନେଇ କେତେ ଭିନ୍ନ ରୂପ ଧାରଣ କରେ । ବାଲ୍ୟ ସଙ୍ଗିନୀ,—ଯୌବନର ବେଣୀ-ହଲା ରୋମାନ୍ସ ନାୟିକା,—ପୁଣି ପୁରୁଣା, ଅମଳିନ ସବୁଦିନର ସାଥୀ, ଯେ ହସେ ତାକୁ ଖୁସି କରିବା ପାଇଁ, ସାନ୍ତ୍ୱନା ଦେବା ପାଇଁ । କଳ୍ପନା ତୁଟିଯାଏ ଯନ୍ତ୍ରଣାର ଆକ୍ରମଣରେ । ଇଚ୍ଛା ବିରୁଦ୍ଧରେ ବାହାରି ଆସେ ଅର୍ଦ୍ଧସ୍ଫୁଟ ଆର୍ତ୍ତନାଦ ।

ହରେନ୍ଦ୍ର ନୂଆ ହୋଇ ଆସିଛି ଡାକ୍ତରଖାନାକୁ ରୋଗୀ ହୋଇ ନୁହେଁ, ବନ୍ଧୁ ପ୍ରସନ୍ନକୁ ଦେଖିବାକୁ । ପୋଷ୍ଟ-ଗ୍ରାଜୁଏଟ ହଷ୍ଟେଲରେ ସବୁ ପିଲା ଠିକ୍ କରିଛନ୍ତି ପାଳି-କରି ଆସିବେ ତା' ପାଖକୁ ରାତିରେ ଜଗିବା ପାଇଁ । ଜଗିବାର ଯେ ବିଶେଷ ଦରକାର ତା' ନୁହେଁ । କିନ୍ତୁ ପ୍ରସନ୍ନ ଚାହେଁ । ବାପ ମାଆଙ୍କୁ ନ ଜଣାଇ ଦୂର ବିଦେଶରେ ଅପରେସନ୍‌ଟା କରିଦେଇଛି ଏଇ ତା'ର ଯଥେଷ୍ଟ ବାହାଦୁରୀ ବୋଲି ସେ ଭାବେ । କିନ୍ତୁ ରାତିର ନିର୍ଜନତା ଭିତରେ, ମରଣର ଅନ୍ଧାର-ଛାଇରେ ସେ ଶଙ୍କିଯାଏ ବେଳେ ବେଳେ । ମନେ ପକାଏ ବାପ ମାଆଙ୍କୁ । ତାଙ୍କ ଅଭାବରେ ଚାହେଁ ସାଙ୍ଗ ସାଥୀଙ୍କୁ, ଯାହାଙ୍କ ସାଙ୍ଗରେ ଲଘୁ ଆଳାପରେ ଜୀବନ ମରଣର ବଡ଼ ବଡ଼ ପ୍ରଶ୍ନବାଚକକୁ ଦୂରକୁ

ଠେଲି ଦେଇ ହେବ । ପ୍ରଶ୍ନ ଭାବନାକୁ ଦୂରେ, ଦୂରେଇ ରହେ । ତେଣୁ ସେ ଚାହେଁନ ରାତିରେ, ତା'ର ଅସହାୟତାର ସୁବିଧା ନେଇ ଭାବନାର ଭୂତ ତା'କୁ ଆଙ୍ଗୁଳି ଦେଖାଇବ,—ଶୁଣାଇବ ଜୀବନ-ଦର୍ଶନ । ନା,—ନା—ରାତିରେ ତା' ପାଖରେ କେହି ରହିବା ଉଚିତ । ତା'ହେଲେ ରାତିରେ ବି ଡାକ୍ତରଖାନା ହୋଇ ରହିବ ଗୋଟିଏ ନୂତନ ଅନୁଭୂତିର ସାମଗ୍ରୀ,—ଡରିବାର ନାହିଁ କିଛି ।

ଆଜି ହରେନ୍ଦ୍ରର ପାଳି । ସନ୍ଧ୍ୟା ନ ହେଉଣୁ ଚାଲିଆସିଛି ସେ । ରାତି ପାଇଁ ନିଜକୁ ଭଲ ଭାବରେ ପ୍ରସ୍ତୁତ କରିନେବାକୁ ।

ପ୍ରସନ୍ନ ସ୍ୱାଗତ ଜଣାଇଲା ତା'କୁ । ହରେନ୍ଦ୍ର ପ୍ରସନ୍ନର ବିଶେଷ ଘନିଷ୍ଠ ବନ୍ଧୁ ନୁହେଁ । କାରଣ ସେ ବେଶି ସମୟ ପ୍ରସନ୍ନର ଚପଳ, ଅଶ୍ଳୀଳ ମୁଖରତା ସହ୍ୟ କରି ପାରେନା,—'ଧାତ୍, ବାଜେ କଥା' କହି ଚାଲିଆସେ । ପଛରେ ପ୍ରସନ୍ନ କହେ "ଭିକ୍ଟୋରିୟାନ—ଏଇମାନେ ହିଁ ସମାଜର ପ୍ରକୃତ ବିପଦ !" କିନ୍ତୁ ହରେନ୍ଦ୍ରକୁ ଦେଖିଲେ ତାହାର କାହିଁକି ଈର୍ଷା ହୁଏ । ଅନ୍ୟମାନଙ୍କର ମଧ୍ୟ । ମନେହୁଏ ତା'ର ସୁନ୍ଦର ସ୍ୱାସ୍ଥ୍ୟ ସାଙ୍ଗରେ ମନଟା ବି' ସୁନ୍ଦର, ସଜୀବ ହୋଇଅଛି । ଶୋଷ ମେଣ୍ଟାଇବାକୁ ତା' ପାଇଁ କେବେହେଲେ କୁଳୁ କୁଳୁ ଝରଣା ପାଣିର ଅଭାବ ରହିବ ନାହିଁ । ତେଣୁ ସେ କାହିଁକି ଦେଖିବ ନର୍ଦ୍ଦମାରେ ସବୁ ଫୁଲର ସ୍ୱପ୍ନ—କାହିଁକି ଚାହିଁବ ବାମ୍ଫୁଆ ଘରେ· ନାଳି ପାଣିର ଉତ୍ତାପ ? ସେ ଯେମିତି ପ୍ରକୃତିର ଗୋଟିଏ ସହଜ ସୁନ୍ଦର ପ୍ରତୀକ । ପବନ ପରି ଖୋଲା,—ଖେଳି ବୁଲି ଭାସିଯିବ ଜୀବନକୁ ଉପଭୋଗ କରି । ସଜ ଜୀବନକୁ ସିଧା ଆଦର ନେବ,—ବୁଲାଣିଆ ବାଟବାଟେ ଯିବା ଦରକାର ନାହିଁ ।

କିନ୍ତୁ ସେମାନେ ଜାଣନ୍ତି ନାହିଁ ଯେ ହରେନ୍ଦ୍ର ଭୋକିଲା ଶିଶୁ ପରି ଜୀବନଟାକୁ ଗିଳିଦେବାକୁ ଚାହେଁନା । ଖାଦ୍ୟ ପ୍ରଚୁର । ତେଣୁ ସେହିବୁ କିଛି ଦେଖି, ନିରେଖି ଭାବିବାକୁ ଚାହେଁ, ଖାଇବା ଆଗରୁ ।

ହରେନ୍ଦ୍ର ବସିଲା ପ୍ରସନ୍ନର ଖଟ ପାଖରେ ପଡ଼ିଥିବା ଷ୍ଟୁଲଟି ଉପରେ । ପ୍ରସନ୍ନର ଓଠରେ ଖେଳିଲା ଗୋଟିଏ ବଙ୍କା ଅଧା ହସ । ହରେନ୍ଦ୍ରର ସୁସ୍ଥତାକୁ ଯେପରି ବିଦ୍ରୂପ କରୁଛି ଏଇ ରୋଗ ମୃତ୍ୟୁର ଘରେ ।

ଏଇ ସମୟରେ କିଏ ଜଣେ ପାଖ ଦେଇ ଚାଲିଗଲା । ଚପା ଧଳା ପୋଷାକ-ପିନ୍ଧା ଝିଅମାନଙ୍କ ମଧ୍ୟରୁ ଜଣେ । ହରେନ୍ଦ୍ରର ଆଗ୍ରହ ହେଲା ନାହିଁ ଦେଖିବାକୁ । କିନ୍ତୁ ସେ ଟିକିଏ ଆଗକୁ ଯାଇ ପୁଣି ଯେତେବେଳେ ପ୍ରସନ୍ନ ଆଡ଼କୁ ଫେରି ଚାହିଁଲା, ହରେନ୍ଦ୍ର ଦେଖିଲା ତା'ର ଆଖି ଦୁଇଟିକୁ,—ଦାମ୍ଭିକ, ସ୍ୱଚ୍ଛ ଓ ସୁନ୍ଦର । କିନ୍ତୁ ସେଥିରେ କ'ଣ ସରଳତା ଅଛି ? ତା' ଥିଲେ ସେ ଏମିତି ନରମ ହେବାକୁ ଚେଷ୍ଟା କରିବ କାହିଁକି ?

ସ୍ୱାଭାବିକ ଶାସନଭଙ୍ଗୀ ଛାଡ଼ିଦେଇ କଅଁଳ କଥାର ଆଶ୍ରୟ ନେବ କାହିଁକି ? କାରଣ ପ୍ରସନ୍ନ ଆଡ଼କୁ ଅନେଇ ମୁହଁକୁ ଈଷତ୍ ତଳକୁ କରି ଆଙ୍ଗୁଳି ଦୁଇଟିକୁ ଅଳସ ମୁଦ୍ରାରେ ମୁଣ୍ଡରେ ବୁଲାଇ ଆଣୁ ଆଣୁ ସେ ଯେତେବେଳେ ପଚାରିଲା, "ହ୍ୟାଲୋ ମିଷ୍ଟର ଫିଫ୍ଟି ଥ୍ରି,—ଆଉ ଶ୍ୱୋକ କରୁନାହିଁ ତ ?" ହରେନ୍ଦ୍ର ଭାବିଲା, ଏ ଝିଅଟି ନାଟକ କରିପାରେ, ଅନ୍ୟକୁ ବଶ କରିପାରେ, ହସାଇ ପାରେ, କନ୍ଦାଇ ପାରେ,—ରୂପର ବଡ଼ିମାରେ ନୁହେଁ, ଗୁଣର ଗାରିମାରେ ନୁହେଁ, ଖାଲି ଭଙ୍ଗୀରେ, ଗ୍ରହଣୀରେ, ଲାସ୍ୟରେ ।

ପ୍ରସନ୍ନ ହରେନ୍ଦ୍ରର ଉତ୍ସୁକତାରେ ଆଶ୍ଚର୍ଯ୍ୟ ହେଲା ନାହିଁ । ହରେନ୍ଦ୍ର କଣ ସମସ୍ତଙ୍କଠାରୁ ଅଲଗା ? କହିଲା,—'ଜାଣୁ ଏ ଝିଅଟି କିଏ ? ନାମ,—କୁମାରୀ ସାଧନା ଗୁପ୍ତା । ବ୍ୟବସାୟ, ନର୍ସିଂ ଓ 'ହବି' ଭଲପାଇବା ଓ କାନ୍ଦିବା ।'

ହରେନ୍ଦ୍ର ହସିଲା ପ୍ରସନ୍ନ ସାଙ୍ଗରେ, କିନ୍ତୁ ଖାଲି ଓଠ ଲମ୍ବେଇ । 'ସେଣ୍ଟିମେଣ୍ଟ' ଭାବପ୍ରବଣତା ତାକୁ କେମିତି ମାଡ଼ି ମାଡ଼ି ପଡ଼େ । ସେ ଭାବିପାରେନା ତାହା ପ୍ରକୃତରେ ସୁନା ନା ପିତଳ, ଜୀବନର ବିଳାସ ନା ଜୀବନୀ ଶକ୍ତିର ଅଭାବ ।

......ସେଇଦିନ ସ୍ୱଚ୍ଛରେ ହରେନ୍ଦ୍ର ଦେଖିଲା ସାଧନାକୁ ଆହୁରି ଭଲ ଭାବରେ,—ଯେତେବେଳେ ଉପରର ବିଜୁଳି ଆଲୁଅ ତା' ମୁହଁରେ ଠୁଳ ହୋଇ ତା'ର ଭଙ୍ଗୀ, ଭୂଷଣ, ଆଭରଣକୁ ଚହଲାଇ ଦେଇଥିଲା ଗୋଟି ଗୋଟି ହୋଇ । ଭ୍ରୂରେ ବୋଧହୁଏ କଳା ରଙ୍ଗର ତୂଳୀ ଦିଆ ହୋଇଛୁ,—ଓଠରେ ଦେଖା ନ ଦେଖା ହେଲାଭଳି ଲିପଷ୍ଟିକ, ଯେଉଁଥିରେ ସ୍ୱାଭାବିକ ରକ୍ତିମାର ଭ୍ରମ ହେବ,—ବେକ ତଳକୁ ଗୋଟିଏ କଳାଜାଇ,—ଓ ବାଁ ପାଖ କପାଳରେ ଗୋଟିଏ ଗ୍ରେଟ ପୋଡ଼ା ଦାଗ ଯାହା ପ୍ରାୟ ସବୁବେଳେ ବାଳରେ ଛାଙ୍କି ହୋଇ ରହେ କିନ୍ତୁ ବର୍ତ୍ତମାନ ଟିକିଏ ଅସାବଧାନ ହୋଇ ଧରା ପଡ଼ିଯାଇଛି । ଏଇ ହେଲା ତା'ର ଏକାଗ୍ର ଦୃଷ୍ଟିର କେତୋଟି ପୁରସ୍କାର । କିନ୍ତୁ ଏଇ କ'ଣ ଯଥେଷ୍ଟ ? ସାଧନାର ପ୍ରକୃତ ସ୍ୱରୂପ କଅଣ ? ତା'ର ଭଲ ପାଇବାର ରୂପ କେମିତିକା ? ତା'ର କାନ୍ଦଣାର ମୂଲ୍ୟ କେତେ ? ତା'ର ଗ୍ରହଣୀର ଶକ୍ତି କେତେ ଦୂର ? ହରେନ୍ଦ୍ରର କୌତୂହଳ ବଢ଼ିବାକୁ ଲାଗିଲା । ଏ ଝିଅଟି ଯେପରିକି ତାକୁ ଚ୍ୟାଲେଞ୍ଜ୍ କରୁଛି ତା' ବିଷୟ ଆହୁରି ଜାଣିବାକୁ ।

ସାଧନାର ହାତରେ ଥିଲା ଔଷଧ ସିରିଞ୍ଜ ଓ ସେ ଯାଉଥିଲା ୫୪ ନମ୍ବର ବେଡ୍‌ରେ ଥିବା ରୋଗୀର ହାତରେ ଇଞ୍ଜେକ୍‌ସନ୍ ଦେବାକୁ । ସେ ମୁହଁରେ ସେତେ-ବେଳେ ଖାଲି କାମ ସାରିନେବାର ବ୍ୟସ୍ତତା । ରୋଗୀ କଅଣ କହୁଥାଏ ଏଣୁ ତେଣୁ । କିନ୍ତୁ ସାଧନା କେତେବେଳେ ଟିକିଏ ମୁଣ୍ଡ ହଲାଉଥାଏ ଓ କେତେବେଳେ ନ ଶୁଣିଲା

ପରି ରହିଥାଏ । ଆହୁରି ତିନିଟା ଓ୍ୱାର୍ଡ଼ ଦେଖିବାକୁ ହେବ । ଭାଗ୍ୟକୁ ଆଉ ବିଶେଷ ଗୋଳମାଳିଆ କେଶ୍ ନାହିଁ । ଅଧିକାଂଶ ଭଲ ହୋଇଯିବା ଉପରେ । ବାକି କେତେଜଣଙ୍କର ଅବସ୍ଥା ସୁଧୁରିବାର ନୁହେଁ—ଆଉ ଦିନେ ଦୁଇ ଦିନର କଥା । ୫୪ ନମ୍ବର ସେମାନଙ୍କ ମଧ୍ୟରୁ ଜଣେ ।

ଇନ୍‌ଜେକ୍‌ସନ୍ ଦେଇସାରି ସାଧନା ମୁଣ୍ଡ ଉଠାଇଲା ଓ ହରେନ୍ଦ୍ର ଆଡ଼କୁ କଣେଇ ଚାହିଁ ପଚାରିଲା,—"କଣ ଦେଖୁଛନ୍ତି ଏତେବେଳଯାଏଁ ?"

ପୁଣି ସେଇ ଭଙ୍ଗୀ । ଲଜ୍ଜା ଓ ଶୀତଳତାର ଝଲମଲ ପୋଷାକ ତଳେ ସ୍ଥୂଳ ଆଦିମ ଆହ୍ୱାନ । 'ମୋର ଆକର୍ଷଣ ତୁମେ ଏଡ଼ିପାରିବ ନାହିଁ । ତେବେ ଭୟ କାହିଁକି ? ଆହୁରି ଆଗେଇ ଆସ ।'

ହରେନ୍ଦ୍ରର ଇଚ୍ଛା ହେଲା ହାତୁଡ଼ି ପିଟି ଭାଙ୍ଗିଦେବ ତା'ର ଏଇ ଅଶ୍ଳୀଳ ବଡ଼ିମା । ତେଣୁ ସେ କହିଲା—"ମୁଁ ଦେଖୁଥିଲି ରୋଗୀକୁ ,—ତା'ର ମୁହଁର ଭାବ । ଆଲୁଅ ଛାଇର କେତେ ରକମର ରଙ୍ଗ ସେଥିରେ । ନିରୋଳାରେ ଦେଖିବାକୁ ଭଲ ଲାଗେନା ?"

ଭାବିଥିଲି ସାଧନା ବିରକ୍ତ ହେବ । କିନ୍ତୁ ବିରକ୍ତିର କୌଣସି ଚିହ୍ନ ତା' ମୁହଁରେ ଫୁଟିଲା ନାହିଁ । ବରଂ ସେ ହସିଲା ସ୍ୱରରେ ପ୍ରଚ୍ଛନ୍ନ ବ୍ୟଙ୍ଗର ବିଷ ମିଶାଇ କହିଲା,—"ହଁ, ନିଶ୍ଚୟ—କିନ୍ତୁ ଆପଣଙ୍କ ପରି ସୂକ୍ଷ୍ମ 'ବାରୋମିଟର୍' ମନ କେତେ ଜଣଙ୍କର ଅଛି ?"

କିଛି ଉତ୍ତର ଦେବାକୁ ଭାବିଲା ବେଳକୁ ସାଧନା ଅବହେଳାର ଭଙ୍ଗୀରେ କହିଲା,—'ଏ ରୋଗୀ ଆଉ ବେଶୀଦିନ ନୁହେଁ । କିଡ଼୍‌ନିଟା ପୁରାପୁରି ଖରାପ ହୋଇ ଯାଇଛି । ହୁଏତ କାଲି ସଞ୍ଜ କିମ୍ବା ପଅରଦିନ ।'

ଏତିକି କହି ସେ ଚାଲିଗଲା ତରତର ହୋଇ,—ଓ ହରେନ୍ଦ୍ର ଆଖି ଫେରାଇ ଆଣିଲା ଆଗକୁ ।

ଆଗରେ ତା'ର ୫୪ ନମ୍ବର । ସେ ମରିବାକୁ ଯାଉଛି । ହରେନ୍ଦ୍ରର ମନେ ହେଲା ସେ ନୂଆ କରି ଦେଖୁଛି ତା'କୁ । କାହିଁକି ? ଡାକ୍ତରଖାନାକୁ ଆସିଲାବେଳଠାରୁ ସେ ତ' ବେଶୀ ତା' ପାଖରେ ଅଛି କେଉଁ ନ୍ୟାୟରେ ସେ ଭାବିବ ନାହିଁ ତା' ବିଷୟ ? ସେ ବି'ତ ଜଣେ ମଣିଷ । ତା'ର ବି'ତ ଅଛି ଅଲଗା ସ୍ୱାଧୀନ ବ୍ୟକ୍ତିତ୍ୱ ।

ହରେନ୍ଦ୍ର ଲଜ୍ଜିତ ହେଲା । ନା—ସେ ସାଧନାକୁ ମିଛ କହିନାହିଁ । ଯାହା ତା'ର କହିବାର ଉଚିତ ସେଇୟା କହିଛି ।

୫୪ ନମ୍ବର ଶୋଇଛି । ହାଡ଼ ଆ ମୁହଁରୁ ସବୁ ରସ ଚୁପୁଡ଼ି ହୋଇଯାଇଛି । ଆଖି ଦୁଇଟା କେଉଁ କୋଟର ଭିତରେ ରହିଲାଣି । ନାକ ପୁଡ଼ାରୁ ନିଃଶ୍ୱାସ ଜୋର୍‌ରେ ଆସୁଛି ଯାଉଛି । କମ୍ବଳ ଭିତରୁ ହାତ ଗୋଟାଏ ପଦାକୁ ବାହାରି ଆସିଛି ଓ ତା'ର ପ୍ରତ୍ୟେକ ଶିରା ଚମଡ଼ାକୁ ଟାଙ୍କି ଧରିଛି । ଦେହ ଭିତରର ସବୁ ଅଂଶ ଯେପରିକି ବ୍ୟସ୍ତ ହୋଇଗଲେଣି ଏଇ ଖୋଳଟାକୁ ଛାଡ଼ି ବାହାରି ଯିବାକୁ ।

କିନ୍ତୁ ସେ ଖୋଳ ଭିତରେ ମନ ଅଛି । ସେ ବି' ଭାବିପାରେ । ତା'ପାଇଁ ସଂସାରର କେନ୍ଦ୍ର ସେ । ସେ ଦେଖୁଛି ବୋଲି ସଂସାର ଅଛି । ସେ ଶୁଣୁଛି ବୋଲି ଶୁଭୁଛି ସକାଳ ସନ୍ଧ୍ୟାର କଳରାଉଣା । ସେ ଅଛି ବୋଲି ସଂସାର ସତ ।

ଆଶ୍ଚର୍ଯ୍ୟ, ଓ୍ୱାର୍ଡ଼'ରେ ଶୋଇଥିବା ପ୍ରତ୍ୟେକ ରୋଗୀପାଇଁ ବି ଏଇଆ ସତ । ପୃଥିବୀରେ ଅସୁମାରି ଲୋକଙ୍କ ପାଇଁ ସେଇ ଏକା କଥା । କାହିଁ ସୁଦୂର ଆଫ୍ରିକାର କଙ୍ଗୋ ଉପତ୍ୟକାରେ ମାଟିଆ ଧୂସର ଲୋକଟିଏ ନେଳିଆ ପୋଖରୀ କୂଳରେ ବସି ଗୀତ ଗାଉଥିବ ଏଇକ୍ଷଣି । ତା'ପାଇଁ ତ' ସଂସାର ତାକୁହିଁ ନେଇ । ତା'ପାଇଁ ହରେନ୍ଦ୍ର ମହାନ୍ତି ବଞ୍ଚିନାହିଁ । କଳାକୁଳୋ ସାଧନା ଗୁପ୍ତା ତା'ପାଇଁ କେହି ନୁହେଁ । ସେମାନେ ଶହେଥର ମରି ବଞ୍ଚିଲେ ବି' ତା' ସଂସାରର କିଛି ଯାଏଆସେ ନା ।

କି ଅସଂଗତ, ଯୁକ୍ତିବିହୀନ ଏ ସଂସାରର ଗଢ଼ଣ ! ସଂସାର ଯଦି ଗୋଟାଏ ହୁଏ, ତା'ର ଚେତନା ତା'ର ଅନୁଭୂତି କାହିଁକି ଗୋଟିଏ ହେବ ନାହିଁ ? ସମବେତ ଚେତନା ଯଦି ସତ ନୁହେଁ, ସମ୍ଭବ ନୁହେଁ,—ତାହାହେଲେ କାହିଁକି କହିବ ଯେ ଗୋଟାଏ ସଂସାର, ଗୋଟାଏ ମଣିଷଜାତି ? ପ୍ରତ୍ୟେକ ଚେତନାକୁ ନେଇ ସଂସାର, ଯେଝାକୁ ଯେଝା । ଗୋଟାଏ ନୁହେଁ,—ଲକ୍ଷ ସହସ୍ର ।

୫୪ ନମ୍ବର ମରିବାକୁ ଯାଉଛି । ତା'ର ଅନୁଭୂତିର ପ୍ରତ୍ୟେକ ଅଣୁ ବେଦନାରେ ଚିତ୍କାର କରି ଉଠୁଛି । ତା'ପାଇଁ ସଂସାର ସରିଯାଉଛି—ଖସିଯାଉଛି କଳା, କୁତ୍ସିତ ଅନ୍ଧାରକୁ ।

କିନ୍ତୁ ହରେନ୍ଦ୍ର ପାଇଁ ସେ ଖାଲି ଆଉ ଜଣେ । ତା'ର ଚେତନାର ହାନିଲାଭ ସେଇ ଜାଣେ । ହରେନ୍ଦ୍ର ତା'ର ନିଜର କେହି ହୋଇଥିଲେ ବୋଧହୁଏ ବ୍ୟସ୍ତ ହୋଇଥାନ୍ତା, କାନ୍ଦିଥାନ୍ତା । କିନ୍ତୁ ସେଇ ଅନୁଭୂତିର ଅଂଶୀଦାର ହୋଇ ନୁହେଁ, ତା'ର ନିଜର ଅନୁଭୂତିର ସଂସାରରୁ କିଛି ବଞ୍ଚିତ ହୋଇଗଲା, ନଷ୍ଟ ହୋଇଗଲା ବୋଲି ।

କେଉଁ ଦୂରରେ ଟ୍ରେନ୍ ଯାଉଛି, ସିଟି ଶୁଭୁଛି । କେତେ ଯାତ୍ରୀ ଯାଉଥିବେ । କିନ୍ତୁ ଖାଲି କେତେ ଯାତ୍ରୀ ନୁହେଁ । ଜଣକୁ ଜଣେ । ଟ୍ରେନ୍ ଭାଙ୍ଗିଯାଇ ସମସ୍ତେ

ମରିଗଲେ ବି' ଥାର୍ଡ଼ କ୍ଲାସ୍‌ରେ ବସିଥିବା ଅନାଦି ବେହେରା ଯଦି ବଞ୍ଚିଯାଏ, ତା'ର ସ୍ମୃତିର ଅନୁଭୂତିର ସଂସାର ନିଖୁଣ ହୋଇ ରହିବ । ତୁଳସୀ ମୂଳରେ ମୁଣ୍ଡିଆମାରି ସେ କହିବ,—ଠାକୁରଙ୍କର ଅସୀମ ଦୟା !

ହରେନ୍ଦ୍ରକୁ ସବୁ ପ୍ରହେଳିକା ପରି ମନେହେଲା । ତା'କୁ ବ୍ୟସ୍ତ ଲାଗିଲା । ତା'ର ନିଜ ଭାବନାରୁ ଛୁଟିପିଟି ହୋଇ ପଳାଇଯିବାକୁ ଇଚ୍ଛା ହେଲା ।

ଏ କ'ଣ ପ୍ରକୃତରେ ସତ ? ତାହାହେଲେ ସହାନୁଭୂତି ଆସେ କାହିଁକି ? କାହିଁକି ଅଯଥା ମଣିଷ ଚାହେଁ ଆଉ କାହା ଅନୁଭୂତିରେ ମିଶିବ,—ଆଉ କାହା ଚେତନାରୁ ଧାର ନେବ ଟିକିଏ ? ତା' ନିଜ ଚେତନାର ଲୁହା ଜାଲରେ ବନ୍ଦୀ ସେ—ଚେଷ୍ଟାକଲେ ବି' ଫିଟି ଆସିପାରିବ ନାହିଁ । ତେବେ ସେ କାହିଁକି ମିଛରେ ଚାହେଁ ହାତ ବଢ଼େଇ ଆଉ କାହା ଚେତନାକୁ ଛୁଇଁବାକୁ । ଟିକିଏ ଲୁହ,—ଟିକିଏ ହାୟ,—ବେଶ୍ । କଣ ଲାଭ ସେଥିରେ ?

ଲାଭ ନାହିଁ । ତଥାପି ସେ ପ୍ରବୃତ୍ତି ଆସେ । ଅଯଥା, ଅମାନିଆ । ତଥାପି ହରେନ୍ଦ୍ର ଚାହେଁ ମରିଯାଉଥିବା ଏଇ ରୋଗୀର ଚେତନାରେ ମିଶିଯିବ । ତିଳ ତିଳ କରି ମରିବାର ସେଇ ଅନୁଭୂତିଟିକୁ ନିଜର କରିନେବ । ତା'ର ସେଇ କଳା ଦେହ ତା'ର ସେଇ ନିଃଶ୍ୱାସ, ତା'ର ସେଇ ଆହା—ସବୁ ସତ । ତାହାହେଲେ ସେ ହରେନ୍ଦ୍ର ପାଇଁ ସତ ହେବନାହିଁ କାହିଁକି ?

ଏଇ ସହାନୁଭୂତି କଣ ସହଜାତ, ନା ଖାଲି ସଂସ୍କାର ? ସେ ରୋଗୀଆଡ଼ୁ ମୁହଁ ଫେରାଇ ଆଣିଲା । ଅନେଇଲା ପ୍ରସନ୍ନ ଆଡ଼କୁ । ସେ ଶୋଇଛି ଶାନ୍ତିରେ । ଦେଖୁଥିବ ସହପାଠିନୀ ରେବାର ସ୍ୱପ୍ନ । ଏଇକ୍ଷଣି ରେବା ତା'ପାଇଁ ସତ । ଆଉ କିଛି ନୁହେଁ ।

ନା,—ସେ ଶୋଇପଡ଼ିବ । ରାତି ବେଶୀ ହେଲାଣି । ବଞ୍ଚି ରହିଥାଉ ସଂସାର ତା'ର ନିର୍ଜନ ଅସଂଗତି ନେଇ । ଶୋଇପଡ଼ିବ ଓ ବୋଧହୁଏ ସ୍ୱପ୍ନ ଦେଖିବ ଏଇ ହେ ପୁର ଅନ୍ତର୍ମୁଖୀ ୫୪ ନମ୍ବରର ହାଡ଼ୁଆ, ଶେତା ମୁହଁ ।

ହରେନ୍ଦ୍ର ଶୋଇପଡ଼ିଲା—ଲୁହା ଖଟର ବାଡ଼ରେ ଗୋଡ଼ ଲମ୍ବେଇ ଦେଇ । କିନ୍ତୁ ସ୍ୱପ୍ନ ତାକୁ ଠକିଦେଲା । ସ୍ୱପ୍ନରେ ଆସିଲା ନାହିଁ ୫୪ ନମ୍ବର । ଆସିଲା ସାଧନା ଗୁପ୍ତା । ତା'ର କଳା ବାଳରେ ଢେଉ ଖେଳାଇ ସେ ହରେନ୍ଦ୍ର ପାଖକୁ ଲାଗି ଆସିଲା ଓ କହିଲା,—"ହରେନ୍ଦ୍ର ବାବୁ, ମୋତେ କିଛି ଜାଣିଲ,—ବୁଝିଲ ? ଏଇ ତୁମ ହାତରେ ମୋ ହାତକୁ ରଖ । କିଛି ପାଉଛ ଏଥିରୁ ? ଖାଲି ନରମ ସ୍ପର୍ଶ ନା ଆଉ କିଛି ?"

ହରେନ୍ଦ୍ର ଭାବୁଥିଲେ ଭାବିଥାନ୍ତା,—କେତେ ଅହଙ୍କାର କଥା ଏ ! ସେ କି ସାଧନା ଗୁପ୍ତାକୁ ଭାବିବାକୁ ଚାହିଁନଥିଲା ? ତେବେ ସେ କାହିଁକି ଆସିଲା ସ୍ୱପ୍ନରେ ?

...କିନ୍ତୁ ସକାଳେ ନିଦ ଭାଙ୍ଗିଲାବେଳକୁ ବି ତା' କାନରେ ଶୁଭୁଥିଲା ସାଧନାର ଝଣଝଣିଆ ଗେହ୍ଲେଇ ହସ । ସେ ଆଖି ମଳି ମଳି ଚାହିଁଲା । ଆଗରେ ପଡ଼ିରହିଥାଏ ନାଲି କମ୍ବଳ ଭିତରର ଜୀବଟିଏ,—ତା' ଭିତରୁ ଗୋଟାଏ କୁଞ୍ଚିତ ମୁହଁ । ପାଟିଟା ଏଇକ୍ଷଣି ମେଲା ହୋଇଯାଇଛି । ୫୪ ନମ୍ବର ।

ପ୍ରସନ୍ନର ନିଦ ଭାଙ୍ଗିଲା ଟିକିଏ ପରେ । ହରେନ୍ଦ୍ରର ଚେହେରାକୁ ଦେଖି ପଚାରିଲା, —"କିରେ ଶୋଇ ନ ଥିଲୁକି କାଲି ରାତିରେ ? ସାଧନା ଗୁପ୍ତା କଥା ଭାବୁଥିଲୁ ?" ହରେନ୍ଦ୍ର ଚାହିଁଲା ତା' ଆଡ଼କୁ । ଆଖିରେ ଯେମିତି ନାଆଁ ।

"ଏଁ,—ଏମିତି ଖୁଣ୍ କଲା ଭଳିଆ ଚାହିଁଛୁ କାହିଁକି ? ସାରା ହସ୍‌ପିଟାଲ୍ ଯାହା ପାଇଁ ପାଗଳ,—ତା' କଥା ରାତିଅଧରେ ଟିକିଏ ଭାବିଲେ କ୍ଷତି କଅଣ ?"—ପ୍ରସନ୍ନ କହିଲା ।

ହରେନ୍ଦ୍ର କିଛି ଉତ୍ତର ଦେଲା ନାହିଁ । କଣ କହିବ ଏମାନଙ୍କୁ ଯେଉଁମାନେ ଦେହର ଭୋକଛଡ଼ା ଆଉ କିଛି ଜାଣନ୍ତି ନାହିଁ ?

ହରେନ୍ଦ୍ରକୁ ଚୁପ୍ ରହିବାର ଦେଖି ପ୍ରସନ୍ନ ଗୁରୁତ୍ୱର ଭଙ୍ଗୀରେ ଫୁସ୍ ଫୁସ୍ ହୋଇ କହିଲା, ଗୋପନ ସତକଥା ବାଣ୍ଟିଲା ପରି—"ଜାଣିଛୁ ? ସାଧନା କିନ୍ତୁ ଭଲପାଏ ଜଣକୁ । ସେ ହେଉଛନ୍ତି ଜଣେ ଡାକ୍ତର,—ରବିଶଙ୍କର ସିହ୍ନା,—ବିଲାତ ଯାଇଛି ଏଫ୍. ଆର୍. ସି. ଏସ୍. ପଢ଼ିବାକୁ । ଆଉ ତା'ର ପାଇଁ ସେ କାନ୍ଦେ । କଥାରେ ଗୀତରେ କେଉଁଠି ଟିକିଏ କରୁଣତାର ଛନ୍ଦ ବାଜିଲେ ସାଧନା କାନ୍ଦିପକାଏ । ପାଇଛି,—କାଲେ କିଏ ଛଡ଼ାଇ ନେବ, ଯାଇଛି,—ହୁଏତ ଫେରିଆସିବ ନ, ଏଇଥିପାଇଁ ଭାବି ତା'ର ଗ୍ରନ୍ଥି ଭିତର କଣ ହୋଇଯାଏ ଓ ଆଖିରୁ ଝରିପଡ଼େ ଥପ୍ ଥପ୍ । ସାଧନାକୁ ଅନେକ ଭାବନ୍ତି ଛଇଳା, କିନ୍ତୁ ସେ ଖାଲି ବାହାରକୁ । ତା'ର ମନଟା ଜଣକ ପାଇଁ, ତା'ର ପାଇଁ ସେ କାନ୍ଦେ । ଆଉ ସେହି ମୁହୂର୍ତ୍ତିରେ ଯେ କେହି ଆଉ ପଡ଼ିକେ ତା'ର ଆଗରେ ସବୁ ଅଜାଡ଼ିଦିଏ ।"

ପ୍ରସନ୍ନର ବକ୍ତବ୍ୟ ଶେଷହେଲା । ହରେନ୍ଦ୍ରର ଜ୍ଞାନ କିନ୍ତୁ ବିଶେଷ ବଢ଼ିଲା ନାହିଁ । ଆଗରୁ ଶୁଣିଥିଲା ସାଧନା ଭଲପାଏ ଓ କାନ୍ଦେ, ବର୍ତ୍ତମାନ ଶୁଣିଲା ସେ ଜଣକ ପାଇଁ କାନ୍ଦେ । କିନ୍ତୁ ସେ ଭଲପାଇବା ଓ କାନ୍ଦିବାଟା କେମିତିକା ? ଇଚ୍ଛାହେଲା ଟିକିଏ ପରଖିନିଅନ୍ତା ନିଜେ ।

ହରେନ୍ଦ୍ର ଫେରିଆସିଲା । ଉଞ୍ଚେଇ ଉଠୁଥିବା ଧଳା ଡାକ୍ତରଖାନାର ଧଳା ଦେହରେ ଭସ୍ମଧଇଳ ଅନ୍ଧକାରଗିଥିଲ ଆଗରୁ । ହରେନ୍ଦ୍ରକୁ ଲାଗିଲା ସେ କେଉଁ ମାୟାପୁରୀରୁ ଫେରିଆସିଛି,—ଯେଉଁଠି ସବୁ ଜିନିଷ ରୂପ ବଦଳାଇଦିଏ'—ନଜର କକ୍ଷଚ୍ୟୁତ ହୋଇ ଓଲଟା ଦେଖାଯାଏ । ସକାଳର ଗୁରୁଆ ଖରାରେ ତା'ର ଭୂତ ଛୁଟିଗଲା ଯେମିତ । ଏଇକ୍ଷଣି ସବୁ ସିଧାସଳଖ ।

···କିନ୍ତୁ ସେଦିନ ସନ୍ଧ୍ୟାବେଳେ ପୁଣି ତାକୁ ଆସିବାକୁ ପଡ଼ିଲା । ତା'ର ପାଳି ଆଉ ଦିନେ ବଢ଼ିଗଲା, ତା'ପରେ ଆସିବା ଲୋକର କୌଣସି ଅସୁବିଧା ହେତୁ ।

ପୁଣି ସେଇ ଧଳାକୋଠା । ସନ୍ଧ୍ୟାର ଶୀତଳ ଛାଇରେ ନିର୍ଜୀବ ହୋଇ ପଡ଼ି ରହିଛି । ତା' ଭିତରର ଅସଂଖ୍ୟ ଦୁଃଖ ଯନ୍ତ୍ରଣା ଏକାଠି ହୋଇ ବରଫ ପାଲଟିଯାଇଛି ସତେ ।

ଉପରକୁ ଉଠିଥିବା ଲମ୍ବା ପାହାଚରେ ଗୋଡ଼ ଦେଲାବେଳକୁ ହରେନ୍ଦ୍ରକୁ ଲାଗିଲା ସେ ଯାଉଛି କିଛି ସନ୍ଧାନରେ । ଏଇ ଅସାଡ଼ ପଥରପିଣ୍ଡୁଲା ଭିତରୁ ସେ ଯେମିତ ପାଇବ କିଛି,—ତା'ର ଜୀବନର ପାଥେୟ ।

ଉପରୁ କିଏ ଓହ୍ଲାଇ ଆସୁଛି । ସାଧନା ଗୁପ୍ତା ! ତା'ର ମନର ଅବସ୍ଥାରେ ଭାବନା ସମୟ ପାଇଲା ନାହିଁ । ପାଟିରୁ ବାହାରିଆସିଲା,—"ନମସ୍କାର" ।

ମୁହୂର୍ତ୍ତକରେ ବୁଝିଲା ତା'ର ଭୁଲ୍ । ସେ ସାଧନା ଗୁପ୍ତା ନୁହେଁ । ସେମିତିକା ପୋଷାକ ପିନ୍ଧା, ସେଇ, ବୟସର ଆଉ ଜଣେ ନର୍ସ । ଲଜ୍ଜା ଲାଗିଲା ତା'କୁ ଓ ରାଗ-ହେଲା । କିଏ ଏଇ ସାଧନା ଗୁପ୍ତା—ଜାଣିକରି ଓ ଅଜାଣତରେ ତା' ଉପରେ ଏତେ ଅତ୍ୟାଚାର କରୁଛି ? ପୁଣି ହରେନ୍ଦ୍ର ଉପରେ,—ଯେ ସ୍ତ୍ରୀଲୋକ ଦେଖିଲେ ଶହେ ହାତ ଦୂରରେ ରହେ, ଭବେ ସେ ଆଉ କେଉଁ ଦେଶର ଲୋକ, ଆଉ କେଉଁ ସଂସାରର ଜୀବ ?

କିନ୍ତୁ ପାହାଚ ଶେଷ ନ ହେଉଣୁ ଦେଖିଲା ତା'କୁ—ସଶରୀରରେ ସାଧନା ଗୁପ୍ତା । ନର୍ସ ପୋଷାକରେ ନୁହେଁ । ଶାଗୁଆ ରଙ୍ଗର ପତଳା ସିଲ୍‌କ ଶାଢ଼ୀ ପିନ୍ଧିଛି,—ତା' ଭିତର ପତଳା ବ୍ଲାଉଜ୍ ତା' ଭିତରେ 'ବଡିସ୍'ର କ୍ଷୀଣ ଆଭାସ । ହାତରେ କଳା ବ୍ୟାଗ୍ । ମୁହଁରେ ହସ ଏ କୂଳରୁ ସେ କୂଳକୁ । ଆଖିରେ ନିତ୍ୟ ନୂତନ ଚମକ । ସେ ଯେମିତ କେବେହେଲେ ଶୁଏ ନା,—କ୍ଳାନ୍ତି କଅଣ ତା ଜାତକରେ ନାହିଁ ।

ଏ ପୁଣି କାନ୍ଦେ ? ଏ ଆଖିରୁ ପୁଣି ଲୁହ ଝରେ ? ହରେନ୍ଦ୍ର ଭାବିପାରିଲା ନାହିଁ !

ହରେନ୍ଦ୍ର ପୁଣି ଥରେ ହାତ ଉଠାଇଲା ନାହିଁ,—ପ୍ରତିଶୋଧ ନେଲାପରି । କିନ୍ତୁ ସାଧନାର ହସର ପ୍ରତିଦାନ ନ ଦେଇ ରହିପାରିଲା ନାହିଁ । ଅଳ୍ପ ହସି ପଚାରିଲା—"ଆଜି କଣ ଏ ନୂଆ ବେଶ ? ଡିଉଟି ନାହିଁ କି ? ଆଉ କଣ ଭାରି ଖୁସି ଥିଲାପରି ଜଣା-ପଡ଼ୁଛନ୍ତି ?"

କଅଁଳ କଥାରେ କାଚର ରୁଣୁଝୁଣୁ ମିଶାଇ ସେ କହିଲା—"ଆପଣଙ୍କୁ କଣ ସବୁ କଥାର ଉତ୍ତର ଦେବାକୁ ପଡ଼ିବ ? ତେବେ ଖୁସି ଅଛି ନିଶ୍ଚୟ । କଣ ସେତକ ଅଧିକାର ନାହିଁ ଆମର ?"

ତା'ପରେ—"ଆଜି ବି' କ'ଣ ବନ୍ଧୁ ଦର୍ଶନରେ ଆସିଛନ୍ତି ?" ଗ୍ରୀବାଟିଆ 'ହଁ'ଟିଏ ଭରି ହରେନ୍ଦ୍ର କହିଲା—"କିନ୍ତୁ ଡାକ୍ତରଖାନାରେ ଆଉ ଗୋଟିଏ ରାତି—ଭାବିଲାବେଳକୁ—"

"କଣ ଡରିଲେଗେ ?"—ହସି ହସି ପଚାରିଲା ସାଧନା, 'ଆଚ୍ଛା—ମୁଁ ତାହା-ହେଲେ ଆସିବି ଆପଣଙ୍କର ଯଦି ଆପତ୍ତି ନ ଥାଏ । ବେଶୀ ଡର ଲାଗିଲେ ଇଞ୍ଜେକସନ୍ ଦେଇ ଶୁଆଇ ପକାଇବି ।'

"ବାସ୍ତବିକ୍ ଆପଣ ଆସିଲେ ଭାରି ଭଲ ହୁଅନ୍ତା । ରାତିଟା ଗପରେ କଟି-ଯାଆନ୍ତା । କିନ୍ତୁ ଆପଣଙ୍କୁ ଅଯଥା କଷ୍ଟ—"

"ବ୍ୟସ୍ତ ହୁଅନ୍ତୁ ନାହିଁ । ରୋଗୀ ସେବା ଆମର କାମ"—କହି ଚପଳ ଗତିରେ ଚାଲିଗଲା ସେ । ଫେରନ୍ତା ଚାହାଣୀରେ କଣ କିଛି ଦେଇଗଲା ହରେନ୍ଦ୍ରକୁ ପୁଣି ବସି ଭାବିବା ପାଇଁ ।

ହରେନ୍ଦ୍ର କିନ୍ତୁ କିଛି ଭାବିବାକୁ ଚାହିଁଲା ନାହିଁ । କଣ ଅଛି ଭାବିବାରେ ? ସାଧନାକୁ ଆଉ ଟିକିଏ ଭଲଭାବରେ ଜାଣିବାକୁ ପାଇବ ଓ ରାତିଟା ବି' କଟିଯିବ ସ୍ୱଚ୍ଛନ୍ଦରେ । କ୍ଷତି କଅଣ ?

କିନ୍ତୁ ତା ମନ ଭିତରେ ଉଙ୍କିମାରିଲା ପ୍ରଶ୍ନ—ସାଧନାର କଣ ତା'ପରି ଏକାଭଳି ମନ ଅଛି ? ତେବେ ସେ କାହିଁକି ଚାହିଁବ ରାତିରେ ଆସିବାକୁ—ଡିଉଟି ନଥିବା ସତ୍ତ୍ୱେ ଦୁଃସାହସୀ ଉତ୍ତର ତା' ମନକୁ ଆସୁଥାଏ, ସେ ଚାହେଁ ତୋର ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ ତାରୁଣ୍ୟ । କିନ୍ତୁ ସେ ଜୋର୍‌କରି ତା'କୁ ତଡ଼ିଦେଇ ଭାବିଲା,—ନା ସାଧନା ବି ତା' ବିଷୟରେ ଅଧିକ ଜାଣିବାକୁ ଚାହୁଁଥିବ - ଏଥିରେ ଅସ୍ୱାଭାବିକ କଣ ଅଛି ?

ହରେନ୍ଦ୍ର ପହଞ୍ଚିଲା ପ୍ରସନ୍ନ ପାଖରେ । ଦେଖିଲା ତା' ମୁହଁରୁ ଯେମିତି ସବୁ ଜ୍ୟୋତି ଲିଭିଯାଇଛି । ପଚାରିଲା—"କଥା କଅଣ ? ଏମିତି ଗୁମ୍ ହୋଇ ରହିଛୁ କାହିଁକି ?"

ପ୍ରସନ୍ନ ଧୀର ଗଳାରେ କହିଲା,—"ନାହିଁ ଭାଇ, ମୁଁ ଚାହୁଁ ନଥିଲି ଆଜି ରାତିରେ କେହି ଆସିବାକୁ । ଏଇ ଯେଉଁ ଖଟ ଦେଖୁଛୁ ମୋ ପାଖରେ ପଡ଼ିଛି, ସେ ରୋଗୀ ବୋଧହୁଏ ଆଜି ଶେଷ ହୋଇଗଲା—ଡାକ୍ତର କହୁଥିଲେ । ବଚାବାର ଆଉ କେହି ନାହିଁ । ଏଇକ୍ଷଣି ଚୁପ୍ ହୋଇ ପଡ଼ିରହିଛି । କିନ୍ତୁ ରାତିଅଧରେ ମରିବା ମୁହଁରୁ ଗାଁ ଗାଁ,—ଚିତ୍କାର,—ତୁ ସହିପାରିବୁ ? ମୁଁ ସିନା ଶୋଇପଡ଼ିଥିବି ନିଦ ଔଷଧ —କିନ୍ତୁ ତୁ ?"

ହରେନ୍ଦ୍ର ପ୍ରସନ୍ନର ବ୍ୟାକୁଳତା ଓ ଭୟରେ ଆଶ୍ଚର୍ଯ୍ୟ ହେଲା ନାହିଁ । ସେମିତିକା ସେ । ସହଜ ପ୍ରବୃତ୍ତିର ଦାସ । ସେ ହସି ହସି କହିଲା—"ବ୍ୟସ୍ତ ହୁଅନା, ସାଧନା ଗୁ ପ୍ତା କହିଛି ଆସିବ ରାତିରେ ଓ ଦରକାର ହେଲେ ମୋତେ ନିଦ ଇଞ୍ଜେକ୍ସନ୍ ଦେବ ।"

"ଏଁ ?" ପ୍ରସନ୍ନର ଆଖି ଓ ପାଟି ଦୁହେଁ ବିସ୍ମାରିତ ହୋଇ ଉଠିଲେ, "ତାକୁ ସକାଳେ ଦେଖିଥିଲି,—କହୁଥିଲି ତା'ର ଡିଉଟି ନାହିଁ !"

"ହଁ—ତା'ର ଡିଉଟି ନାହିଁ । ତଥାପି ସେ ଆସିବ—" ହରେନ୍ଦ୍ର ଦୃଢ଼ତାର ଭଙ୍ଗୀରେ କହିଲା ।

ପ୍ରସନ୍ନ ଚାହିଁରହିଲା ହରେନ୍ଦ୍ରକୁ ଓ ହସିଲା ଟିକିଏ । ଶେଷକୁ ହରେନ୍ଦ୍ର ! କିନ୍ତୁ ଅସମ୍ଭବ କଅଣ ? ଫ୍ରେଣ୍ଡ୍ କଣ ମିଛ କହୁଛି ? × × × ରାତି ଘନେଇ ଆସୁଛି । ଡାକ୍ତରଖାନାର ସବୁ ଖସ୍‌ଖାସ୍ ଟୁପ୍‌ଟାପ୍ ଶବ୍ଦ ସରିଆସୁ ଛି । ଖାଲି ମଝିରେ ମଝିରେ ଶୁ ଭୁଛି 'ଓହୋ' 'ଆହା' ଧ୍ୱନି ଆହୁରି ତୀବ୍ରହୋଇ । ରାତିକୁ ଶୋଇବାକୁ ଦେଉନାହିଁ,—ଛୁଞ୍ଚି ଗଳେଇଦେଉଛି ତାର ନିର୍ବିକାର ବକ୍ଷମରେ । ଆଣ୍ଟିସେପ୍‌ଟିକ୍, ସ୍ପିରିଟ ଡେଟୋଲ୍‌ର ଗନ୍ଧ ଗୋଳେଇ ହୋଇ ଆସୁଛି ଚାରିଆଡ଼ୁ । ବୈଜ୍ଞାନିକ ସ୍ୱଚ୍ଛତା ତା'ର ସ୍ୱରୂପ ପ୍ରକାଶ କରିବାକୁ ଚାହୁଁଛି ରାତିର ଅବହେଳାରେ । ସବୁ କୁତ୍ସିତତା, ରୋଗ ମୃତ୍ୟୁର ଗନ୍ଧକୁ ଘୋଡ଼ାଇ ଦେଇ କହୁଛି—ଡର ନାହିଁ, ମୁଁ ଅଛି ।

ହରେନ୍ଦ୍ରର ଶ୍ୱାସ ରୁଦ୍ଧ ହୋଇଆସିଲା । ଭାବିଲା ବାହାରକୁ ଯିବ । ଓ୍ୱାର୍ଡ଼ର କଡ଼ରେ ଲମ୍ବି ଯାଇଥିବା ଖୋଲା ବାରଣ୍ଡାକୁ ।

ବାରଣ୍ଡାକୁ ଆସିଲା ସେ । ଆକାଶରେ ଗୋଲ୍ ଜହ୍ନ । ଅଃ—କି ଆରାମ ।

କିନ୍ତୁ ଜହ୍ନକୁ ଅନେଇ ଅନେଇ ତା'କୁ ଲାଗିଲା ଯେ ସେ କିଛି ଅଲଗା ନୁହେଁ । ସେ ଏଇ ଡାକ୍ତରଖାନାର ଧାତ୍ରୀ । ଢାଳି ଦେଉଛି ଆଣ୍ଟିସେପ୍ଟିକ୍ ତା'ର ଶୀତଳ ମୁଣି ଭିତରୁ ଧୀରେ ଧୀରେ, ନର୍ସଙ୍କ ଭଳି ।

ତା'କୁ ଅସହ୍ୟ ଲାଗିଲା । କାହିଁକି ? କାରଣ କ'ଣ ? କାହାଠାରୁ ଖସିପିଟି ହୋଇ ପଳାଇ ଯିବାକୁ ଚାହୁଁଛି ସେ ? ୫୪ ନମ୍ବର ?—ଯେ ମରୁଛି ଆସ୍ତେ ଆସ୍ତେ

—ଯାହାଅଢ଼େ ସେ ଥରେ ହେଲେ ଅନାଇ ନାହିଁ ଏପର୍ଯ୍ୟନ୍ତ ? ଏ ତ ଡର ନୁହେଁ । ଆସ୍ପୃତି । କିନ୍ତୁ କାହିଁକି ? ତା'ର ଅସ୍ତିତ୍ୱ ସେ ମାନିବାକୁ ଚାହେଁ ନା,—ଏଥିଲାଗି ?

—କେତେବେଳେ ଆସିବ ସେ—ସାଧନା ଗୁପ୍ତା ?

ଦୂରରେ ପୋଲିସ୍ ଲାଇନ୍ ଘଣ୍ଟାରେ ବାରଟା ବାଜିଲା । କିନ୍ତୁ ହରେନ୍ଦ୍ରର ଆଖିରେ ନିଦ ନାହିଁ । କଣ କରିବ ସେ ? ଘରର ଭିତରକୁ ଯିବାକୁ ଇଚ୍ଛାହେଲା ନାହିଁ । ବାରଣ୍ଡାର ଖୁଣ୍ଟରେ ଆଉଜା ଛଡ଼ା ହୋଇ ରହିଲା ।

କିଛି ସମୟ ପରେ ପଛରୁ କଣ ବାସ୍ନା ଭାସି ଆସିଲା,—ମଲ୍ଲୀ ନା ହେନା ? ଏ ତ ଡାକ୍ତରଖାନାର ବାସ୍ନା ନୁହେଁ ?

ପଛକୁ ଫେରି ଚାହିଁଲା । ଦୁଆରବନ୍ଧରେ ଛିଡ଼ାହୋଇଛି ସାଧନା ଗୁପ୍ତା । ଜହ୍ନ ଆଲୁଅରେ ତା' ମୁହଁ ଦିଶୁଛି ଗୋଟିଏ ଅପାର୍ଥିବ ଛବିପରି । କିଆରି, ସୁଦୂରରେ—ବାଟ ଭୁଲିଆସିଛି ଏଠିକି । ଆଣ୍ଟିସେପ୍‌ଟିକ୍ ଉଭେଇଯାଉଛି ଓ ଆସିଛି ଚନ୍ଦନର ପ୍ରତିମା—, ତା'ର ଜଳୁଥିବା କପାଳରେ ଶାନ୍ତିର ମଲମ ଲଗାଇ ଦେବ ।

"କଣ ଜହ୍ନକୁ ଚାହିଁ ଚାହିଁ ନିଦ ହେଉନାହିଁ ? ଇଞ୍ଜେକ୍‌ସନ୍‌ର ଦରକାର ହେବ ନାହିଁ ବୋଧହୁଏ—"

ହରେନ୍ଦ୍ର ଚେଷ୍ଟା କରି ସୁଦ୍ଧା କିଛି କହିପାରିଲା ନାହିଁ ।

ସାଧନା ପାଖେଇଗଲା । "କଅଣ ଭାବୁଛନ୍ତି ଏତେ ? ଆପଣଙ୍କ ପରି ଭାବୁକ ରୋଗୀ ମୁଁ ଖୁବ୍ କମ୍ ଦେଖିଛି"—କହି ହସିଲା ସିଧା ହରେନ୍ଦ୍ର ଆଡ଼କୁ ଚାହିଁ ।

କଣ କହିବ ସେ ? ରାତିରେ ଗୋଟିଏ ଝିଅ ସାଙ୍ଗରେ କେମିତି ଆଳାପ କରିବାକୁ ହୁଏ ? ପୁଣି ଏଇ ପରିସ୍ଥିତିରେ ।

କିଛି ଠିକ୍ କରି ନ ପାରି ହରେନ୍ଦ୍ର ଖାଲି ପଚାରିଲା—"ଆପଣଙ୍କର ଏତେ ଡେରିହେଲା ଯେ—ଶୋଇପଡ଼ିଥିଲେ ?"

'ହୁଁ'—କହି ସାଧନା ପଚାରିବସିଲା,—"ଆଚ୍ଛା ହରେନ୍ଦ୍ର ବାବୁ,—ଏକୁଟିଆ ରାତିରେ ଜହ୍ନକୁ ଦେଖିଲେ ଆପଣଙ୍କର କଣ ଇଚ୍ଛାହୁଏ ?"

ବେଶି ରାତି ହୋଇଥିଲେ ଶୋଇପଡ଼ିବାକୁ, ନ ହେଲେ ଗୀତ ଗାଇବାକୁ' ।

ତା' ହେଲେ ଶୋଇପଡ଼ୁ ନାହାନ୍ତି ଏଇକ୍ଷଣି—ମୁହଁକୁ ହଲାଇ ପଚାରିଲା ସେ ଓ ଝୁଲିପଡ଼ୁଥିବା ମୁଣ୍ଡର ବାଳକୁ ହଟାଇ ଦେଲା ।

"କାରଣ ତୁମେ—ମାନେ ଆ..ଣ ଗୀତ ଗାଇବେ ।" ହସି ଉଠିଲି ସାଧନା, ସ୍ୱରରେ ତା'ର ଯେଇ ଅଭିନବ ଝଙ୍କାର ଦେଇ—"ତୁମେ' କହିଲେ କିଛି ଆପତ୍ତି ନାହିଁ—ତେବେ ଆପଣ ଜାଣିଲେ କେମିତି ମୁଁ ଗୀତଗାଏ ବୋଲି ?"

"ସବୁକଥା ଜାଣିବାକୁ ପଡ଼େ ନା । 'ବାରୋମିଟର୍' ମନ ଯେତେହେଲେ,—ଅନ୍ୟର ଦୋଷ, ଗୁଣ, ବିଦ୍ୟା, ବୁଦ୍ଧି ସବୁ ଧରିନିଏ ସହଜରେ"—ହରେନ୍ଦ୍ର କହିଲା ସ୍ୱରରେ ଶ୍ଳେଷ ମିଶାଇ ।

ସାଧନା ଗଦ୍ ଗଦ୍ ହେଲାପରି ଜଣାଗଲା । କଥାଗୁଡ଼ାକ କଣ୍ଠରୁ ଅଧା ରହି ଅଧା ଗୁଳିଆସୁଛି ଯେମିତି,—କୁଳୁକୁଳୁ ହୋଇ କହିଲା,—"ଆପଣ ସତରେ 'ୱାଣ୍ଡର୍‌ଫୁଲ'—କେହି ଦେଖିଲେ ଭାବିବ ନାହିଁ, ଆପଣଙ୍କ କଥା କହିଆସେ ବୋଲି ।"

ହରେନ୍ଦ୍ରକୁ ଏପରି ପ୍ରଶଂସା ବୋଧହୁଏ କେହି କରି ନାହିଁ । ବର୍ତ୍ତମାନର ପ୍ରଶଂସା ମଧ୍ୟ କେତେଦୂର ଆନ୍ତରିକ ସେ ଭାବିପାରିଲା ନାହିଁ । ତଥାପି ସେ ଖୁସି ହେଲା ।

ଏ ଝିଅଟି ପାଖରେ ଖୁସି ନ ହୋଇ କେତେ ସମୟ ରହିହେବ ? ହେଉ ପଛେ ସେ ସାଦା କିଛି ।

—କିନ୍ତୁ ସେ ଦୋଷ ଦେଲା ନାହିଁ ନିଜକୁ । ଦୋଷ ଦେଲା ଏ କାଓ୍ୱାଲା ରାତି ଓ ଜହ୍ନକୁ । ମଲ୍ଲୀ, ହେନା ଓ ଚନ୍ଦନର କାଳିଜିଆ ସୌରଭକୁ ।

ତା'ପରେ ସାଧନା ଗୀତ ବୋଲିଲା, ଆଗରୁ ସୂଚନା ନ ଦେଇ । ହରେନ୍ଦ୍ର ଛୁଏଁ ଛୁଏଁ ପାଖେଇ ଆସିଲା,. ମନ୍ତ୍ରମୁଗ୍ଧ ପରି,—ଗୀତର ଲହରୀ କୁଆଡ଼େ ଫିଟି ପଳାଇବ ପରି !

ସେ ଗାଇଲା ଜହ୍ନର ଗୀତ,—ବିରହୀ ଚକୋର, କଇଁଫୁଲ, ଇତ୍ୟାଦି ଇତ୍ୟାଦି । ସାହିତ୍ୟରେ ସେ ସବୁ ଦେଖିଥିଲେ, କମ୍ବା ଆଉ କାହାଠୁଁ ଶୁଣିଥିଲେ ହରେନ୍ଦ୍ର ନାକ ଟେକି ଥାଆନ୍ତା । —କହିଥାନ୍ତା 'ତୁଚ୍ଛା ଅର୍ଥହୀନ ସେଣ୍ଟିମେଣ୍ଟ' । ଏଇକ୍ଷଣି ବି' ଗୀତର ଭାବ ତା' ମନକୁ ଛୁଉଁ ନ ଥିଲା । ସେ ଖାଲି ଦେଖୁଥିଲା ଗାୟିକାକୁ । ଗୀତର ପ୍ରତ୍ୟେକ ଛନ୍ଦରେ ସେ ଖୋଜି ବୁଲୁଥିଲା ସାଧନା ଗୁପ୍ତାର ସନ୍ଧାନରେ ।

କିନ୍ତୁ ଏ କିଏ ସାଧନା ଗୁପ୍ତା ?—ତା'ର କଳ୍ପନା ତା'କୁ ଉସ୍‌କେଉଥାଏ । ନର୍ସ ସାଧନା ଗୁପ୍ତା ତ କେବେଠୁଁ ଗଲେଣି,—ଏ ତ ଆଉ ଜଣେ,—ଚନ୍ଦ୍ରର ସହଚରୀ—ଶାନ୍ତିର ନାୟିକା ।

କଳ୍ପନା ଓ ଭାବନାର ଦ୍ୱନ୍ଦ୍ୱରେ ହରେନ୍ଦ୍ର ବନ୍ଧୁକ ରହିଯାଇଥାଏ ଓ ସାଧନା ଗୀତ ବୋଲୁଥାଏ ଗୋଟିକ ପରେ ଗୋଟିଏ । ବେଳେ ବେଳେ ଓଠ ଟିକିଏ ହସି ଉଠୁଥାଏ ଓ ବେଳେ ବେଳେ ଆଖି ।

ଅଜାଣତରେ କେତେବେଳେ ସାଧନାର ହାତଟା ତା' ହାତରେ ରହିଯାଇଛି ସେ ଜାଣେନା । କିନ୍ତୁ ଜାଣି ପାରିଲା ପରେ ବି ସେ କିଛି କଲା ନାହିଁ । ଅଯଥା କଠୋର ହୋଇ ଲାଭ କଅଣ—ସେ ନିଜକୁ ତ ଭୁଲିଯାଇ ନାହିଁ ।

କିନ୍ତୁ ଭୁଲିନାହିଁ କଅଣ ? ଭାବିଲାବେଳକୁ ତା' ମନର ପଛପଟ ପରଦା ଦୋହଲି ଉଠିଲା । ତା' ଭିତରେ କିଏ କାନ୍ଦୁଛି—କିଏ ଚିତ୍କାର କରୁଛି । କାହାକୁ ପଛରେ ପକାଇ ଆସିଥିଲା ସେ, ଶୁଆଇ ଦେଇଥିଲା, ସେ ଏଇକ୍ଷଣି ଚମକି ଉଠି କହୁଛି —ମୋତେ ଛାଡ଼ି ଯାଅନା, ମୋତେ ଛାଡ଼ି ଯାଅନା, ମୁଁ ବି ତୁମର ।

ନାହିଁ ଥାଉ—ହରେନ୍ଦ୍ର ବିରକ୍ତ ହେଲା । ସେ କିଛି ଭୁଲିଯାଇ ନାହିଁ । କିନ୍ତୁ ବର୍ତ୍ତମାନ ସେ ସାଧନା ଗୁମ୍ଫାର ସନ୍ଧାନରେ । ବର୍ତ୍ତମାନ ସେ କାହାର କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ ।

...ସେଇ ସନ୍ଧାନ ପଥରେ ସେ କିଛି ସମୟ ପରେ ସାଧନାକୁ ଆଉଜାଇ ଆଣିଥିଲା ଛାତିକୁ ଓ ତା ଥରଥର ଓଠରେ ଆଙ୍କି ଦେଇଥିଲା ଚୁମ୍ବନ ।

ଜହ୍ନ ଦୂରରୁ ଅଟ୍ଟା କରୁଥାଏ—ଏଇ କଣ ତୋର ସାଧନା ଗୁମ୍ଫାର ସନ୍ଧାନ ?

ହରେନ୍ଦ୍ର ନିଜକୁ ବୁଝାଉଥାଏ । ହଁ—ଏ ବାଟରେ ଯଦି ସାଧନାର ପରିଚୟ ମିଳିପାରିଲା କ୍ଷତି କଅଣ ?

ଜହ୍ନ ତଥାପି ବୋଧହୁଏ ହସୁଥାଏ ଓ ହରେନ୍ଦ୍ର ପାଉଥାଏ ମଲ୍ଲୀ, ଚନ୍ଦନ ସାଙ୍ଗରେ କଞ୍ଚା ଦେହର ବାସ୍ନା ।

...ମୁହୂର୍ତ୍ତ ପର ଆସୁଥାଏ । ଦେହରୁ ଦେହଯାଏ—ଅସଂଖ୍ୟ ମୁହୂର୍ତ୍ତ, ଅସଂଖ୍ୟ ପରଶ । ସରିବନି ବୋଧହୁଏ । ଏ ରାତ ବୋଧହୁଏ ସକାଳ ହେବ ନାହିଁ ।

ଜହ୍ନ ଥାଏ ଆଖି ସାମନାରେ । ସେମିତିକା ଗୋଲ୍ ଓ ଧଳା ।

ହଠାତ୍ ହରେନ୍ଦ୍ରକୁ ଲାଗିଲା ଯେ ଜହ୍ନ ନାଲି ହୋଇ ଆସୁଛି । ତା'ପରେ ଆସ୍ତେ ଆସ୍ତେ ନାଲି ଟୁକୁଟୁକୁ । ରକ୍ତରେ ଜୁଡ଼ୁବୁଡ଼ୁ । ହୁଏତ ଥପ୍ ଥପ୍ ହୋଇ ପଡ଼ିବ ଏଇକ୍ଷଣି ।

ହରେନ୍ଦ୍ରକୁ ଲାଗିଲା ତା'ର ଅନୁଭୂତି ରାକ୍ଷସ ପରି ମାଡ଼ି ଚାଲିଛି କାହାକୁ ଓ ବାଟଯାକ ପିଚିକି ପଡ଼ୁଛି ରକ୍ତ ।

ଏ କଅଣ ହେଉଛି ହରେନ୍ଦ୍ର ? ଏ ପାଗଳାମି କାହିଁକି ? ରାତିର ଏଇ ସହଜ ସୁନ୍ଦର ଅନୁଭୂତିଟିକୁ ବିକୃତ କରିବାର ଚେଷ୍ଟା କାହିଁକି ?

କିନ୍ତୁ ତା'ର ମନ ମାନିଲା ନାହିଁ । ତା'କୁ ଲାଗିଲା ତା'ର ଛାତିର ପ୍ରତ୍ୟେକ ଧକ୍ ଧକ୍, ତା'ର ଶିରାର ପ୍ରତ୍ୟେକ ସ୍ପନ୍ଦନ ସାଙ୍ଗରେ ଆଉ କାହାର ଅନୁଭୂତି ତାଳ ଦେଉଛି, ବାଟ ଓଗାଳୁଛି,—କିନ୍ତୁ ପାରୁନାହିଁ, ଛେଚାଡ଼ି ହୋଇ ପଡ଼ୁଛି ଲହୁଲୁହାଣ ହୋଇ ।

ଆଉ କିଏ ? ଆଉ କାହାର ଅନୁଭୂତି । ସେ କାହିଁକି ଟାଣି ଧରୁଛି ତାକୁ ?

ହରେନ୍ଦ୍ର ଦେହ ହାତ ଲେଉଟାଇଲା । କିନ୍ତୁ ତା'ର ମନେ ହେଲା ଯେ ହସ୍ପିଟାଲରୁ ସେ ରାସ୍ତା ପରି ଲାଗି ରହିଛି ତା' ପଛରେ । ଗୋଡ଼ାଉଛି ତା'କୁ । ତାଠାରୁ ପଳାଇ ଆସିବ ବୋଲି ସେ ସାଧନା ପାଖରେ ଧରା ଦେଇଛି । କିନ୍ତୁ ସେ ଯାଇନି । ଲାଗି ରହିଛି । ପଡ଼ୁଛି, ଉଠୁଛି କିନ୍ତୁ ରହିଛି ତଥାପି । କୁତ୍ସିତ କାନ୍ଦଣା, କୁତ୍ସିତ ରକ୍ତ ଦେଇ ସେ ଟାଣୁଛି ତା'କୁ—ଓଟାରି ଆଣୁଛି ସାଧନା ପାଖରୁ, ଜହ୍ନ ପାଖରୁ, ମଲ୍ଲୀ ଓ ଚନ୍ଦନର ସଂସାରରୁ ।

ସାଧନା ଲକ୍ଷ୍ୟ କଲା ହରେନ୍ଦ୍ରର ଅସ୍ଥିରତା । ଅସଂଯତ ଭଙ୍ଗୀ । ପଚାରିଲା— "କିଏ ବ୍ୟସ୍ତ ଲାଗୁଛି ? ନା ଅନୁତାପ ଆସିଲା ଭୁଲ ହୋଇଗଲା ବୋଲି ? ମୁଁ ଆପଣଙ୍କୁ ଖରାପ କରିଦେବି—ନା ?"

"ନା—ନା—ସାଧନା । ତୁମେ ବୁଝିପାରିବ ନାହିଁ । ମୋର ଏମିତି ମଝିରେ ମଝିରେ ହୁଏ"—ହରେନ୍ଦ୍ର କହିଲା ।

ହଠାତ୍ ହରେନ୍ଦ୍ରର ଇଚ୍ଛା ହେଲା ସାଧନାକୁ ତା'ର ଦ୍ୱନ୍ଦ୍ୱରେ ଭାଗୀ କରାଇବ । ସେ କାହିଁକି ଏମିତି ନିର୍ବିକାର ଛାଣୁ ହୋଇ ରହିଥିବ ହରେନ୍ଦ୍ରକୁ ଭୋଗିବାକୁ ଛାଡ଼ି ଦେଇ ।

ଚେଷ୍ଟା କରି ସହଜ ଭଙ୍ଗୀରେ ପଚାରିଲା ସେ—"ଆଚ୍ଛା ସାଧନା—ଏ ୫୪ ନମ୍ବର କଣ ଆଜି ମରିଯିବ ? ତା'କୁ କଣ ଆଉ କିଛି ଔଷଧ ଇଞ୍ଜେକ୍ସନ୍ ଦିଆଯିବ ନାହିଁ ?"

ସାଧନା ହସିଲା—"ଆଉ କଣ ହୋଇଯିବ ? ସେ ତ ମରିଗଲାଣି କହିଲେ ଚଳେ । ମୁଁ ଯାଏ ଦେଖେ— । ମୁଁ ଅଛି ଯେତେବେଳେ ରିପୋର୍ଟ କରିଦେବାକୁ ପଡ଼ିବ ।"

ସାଧନା ଉଠି ଲୁଗାପଟା ସଜାଡ଼ି ଦେଇ ଘର ଭିତରକୁ ଚାଲିଗଲା ଓ ଟିକିଏ ପରେ ଫେରି ଆସି କହିଲା—"ସେ ମରିଗଲାଣି । ମୁଁ ଯାଉଛି ରିପୋର୍ଟ କରି ଆସେ । ଚାଦର ଘୋଡ଼େଇ ଦେଇଛି । ଡରିବ ନାହିଁ ।" ଏହା କହି ପୁଣି ତା'ର ସେଇ ଅନୁପମ ହସ ଉଚ୍ଛୁଳେଇ ଦେଇ ଚାଲିଗଲା ।

ହରେନ୍ଦ୍ରକୁ କଣ କିଛି ଲାଗିଲା ? ମରି ତ ଯାଇଛି । ବେଶ୍ । ଆଉ କଅଣ ? ସାଧନା ତ ସବୁ ନିର୍ବିକାର ଭାବରେ ନେଇ ଯାଉଛି । ସେ କାହିଁକି ନେବ ନାହିଁ ?

କିନ୍ତୁ ରାତିର ବାକିତକ ସେ ସେଇଠି ପଡ଼ି ରହିଲା । କେତେବେଳେ ନିଦ ଲାଗି ଯାଇଛି । ସ୍ୱପ୍ନ ଦେଖିଲା—ଜହ୍ନକୁ କିଏ କାଟି ଖଣ୍ଡ ଖଣ୍ଡ କରି ପକାଇ ଦେଉଛି । ସାଧନା ଗୁପ୍ତା ହସି ହସି ସବୁ ତୋଳି ନେଉଛି ହାତରେ ।···

···ପାହାନ୍ତିଆ ବେଳକୁ ସେ କାହାକୁ ନ କହି ଚାଲି ଆସିଲା ଡାକ୍ତରଖାନାରୁ । ହଷ୍ଟେଲରେ ପହଞ୍ଚି, ଗାଧୋଇ ପାଧୋଇ ସେ ଲେଖିଲା ତା' ଡାଏରୀରେ ତିନୋଟି ଧାଡ଼ି, ଗୋଟିକ ପରେ ଗୋଟିଏ—

ସାଧନା ଗୁପ୍ତା ।

ହରେନ୍ଦ୍ର ମହାନ୍ତି ।

ନ: ୫୪ ।

ତା'ପରେ ମନେ ପଡ଼ିଲାରୁ ଆହୁରି ଧାଡ଼ିଏ ଯୋଡ଼ି ଦେଲା—

ଡାକ୍ତର ରବିଶଙ୍କର ସିହ୍ନା ।

ବେଶ୍ କାହାଣୀ ଶେଷ । ମନେ ମନେ କହିଲା—ଜହ୍ନରୁ ସାଧନା ଦେବୀ । ତୁମେହିଁ ଜିଣିଛ ।

ତୁମ ପାଇଁ ସବୁ ସହଜ, ସରଳ ଓ ସୁନ୍ଦର । ତୁମ ସଂସାରରେ ଜଣକର ଅନୁଭୂତି ଅଯଥା ଚେଷ୍ଟା କରେ ନାହିଁ ଆଉ କାହା ଅନୁଭୂତିରେ ମିଶିବା । ପୁଣି ଗୋଟାଏ ମୁହୂର୍ତ୍ତ ଚେଷ୍ଟା କରେ ନାହିଁ ଆଉ କେଉଁ ମୁହୂର୍ତ୍ତକୁ ଟାଣି ଧରିବା । ସେଇ-ଲାଗି ମରଣର ଛାଇରେ ବି' ତୁମେ ପାଇପାର ସ୍ୱଚ୍ଛନ୍ଦ ଉପଭୋଗର ଆନନ୍ଦ । ସେଇଲାଗି

ତୁମେ ଜଣକୁ ଭଲ ପାଇପାର ବାହାହେବା ପାଇଁ, କିନ୍ତୁ ସେଥିରେ ଶତ ଶତ ମୁହୂର୍ତ୍ତିରେ ଛୁଇ ପଡ଼ିବ ନାହିଁ, ଯେଉଁଥିରେ ତୁମେ କାହାକୁ ଭଲ ପାଇଥିଲ ହସିବା ପାଇଁ, କାନ୍ଦିବା ପାଇଁ, ଉପଭୋଗ ପାଇଁ । ସବୁ ମୁହୂର୍ତ୍ତି ଅଲଗା ଅଲଗା । କାହା ସାଙ୍ଗରେ କାହାର ସମ୍ପର୍କ ନାହିଁ ଓ ପ୍ରତ୍ୟେକ ମୁହୂର୍ତ୍ତି ନିଜର ଅନୁଭୂତି ନେଇ ଗଢ଼ା,—ଅନାବିଳ, ନିର୍ମଳ,—ଆଉ କାହା ଅନୁଭୂତିରୁ କାଣିଚାଏ ନେବାକୁ ଚେଷ୍ଟା କରେନା ।

ତୁମ ପାଇଁ ସ୍ମୃତି ଓ ସହାନୁଭୂତି ଉଭୟ ଅଦରକାରୀ । ସ୍ଥିତି ଓ କାଳ ଦୁହିଁଙ୍କୁ ଜିଣିଛ ତୁମେ ।

ଡାଏରୀ ବନ୍ଦ କଲି ଓ କହିଲି,—ବଞ୍ଚିରହ ତୁମେ ଅବନ୍ଧନା, ଅନିନ୍ଦିତା ଉର୍ବଶୀ, ସ୍ୱାର୍ଥର ସ୍ୱର୍ଗରେ ରାଣୀ ହୋଇ ! କିନ୍ତୁ ସେ ଦର୍ଶନ ମୋ ପାଇଁ ନୁହେଁ । ମୋତେ ଛୁଡ଼ିଦିଅ ମୋର ପଙ୍କୁଆ ପୋଖରୀ,—ଚଣା ଚଣି ଦେନାଦେନର ସଂସାର । ନଥାଉ ମୁକ୍ତି ସେଥିରେ ନଥାଉ ଶାନ୍ତି ।

× × × ×

ଚାରିମାସ ପରେ ସେମାନେ ବାହା ହେଲେ,—ଡକ୍ଟର ସିହ୍ନା ଓ ସାଧନା ଦେବୀ । ହରେନ୍ଦ୍ର ଅଭିନନ୍ଦନ ପଠାଇଲି । ଅଚହ୍ନା ନାଁ ଦେଖି ଡକ୍ଟର ସିହ୍ନା ପଚାରିଲେ—"କିଏ ଏ ?"

"କେହି ନୁହେଁ,—ଗୋଟିଏ ଆଡ଼ପାଗଲା ରୋଗୀ,—ଯାହାର ମୁଁ ସେବା କରିଥିଲି ।"



# ଗୋଟିଏ ଘରର କାହାଣୀ

ଏଇଟି ମୋର ପ୍ରଥମ ଗଳ୍ପ ଯେଉଁଥିରେ ମୁଁ ମୋର ପିଲାଦିନୁ ଆଜିଯାଏଁ ଲମ୍ବି ଆସିଥିବା ଗୋଟିଏ ଅଛିଣ୍ଡା ପ୍ରଶ୍ନ ପଚାରିଛି ନିଜକୁ ଓ ଉତ୍ତର ନ ଦେଇପାରି ଛଟପଟ ହୋଇଛି । କିନ୍ତୁ ପ୍ରଶ୍ନକର୍ତ୍ତା ପ୍ରଥମ ପୁରୁଷ ହିସାବରେ ହରେନ୍ଦ୍ରର ବିଶେଷ ମହତ୍ତ୍ୱ ଅଛି । କାରଣ ସେ ଥିଲା ନବଯୁବକ । ବୋଧହୁଏ ମଧ୍ୟ-ବୟସ୍କ ହୋଇଥିଲେ ସେ ପ୍ରଶ୍ନକୁ କୌଣସିମତେ ଠେଲି ଦେଇ ଥାଆନ୍ତା ଦୂରକୁ, କିମ୍ବା ନାସ୍ତିକା ସାଧନାର ଅଳିକରେ, ତା' ଦେହର ଗହନରେ ଲୁଚେଇବାକୁ ଚେଷ୍ଟା କରିଥାଆନ୍ତା । ବୟସ୍କ ହୋଇଥିଲେ ସେ ହୁଏତ ଏକାଧାରରେ ନିଜକୁ ସାଧନାଦ୍ୱାରା ସୁଖ ଓ ଦାର୍ଶନିକମାନଙ୍କର ଚମତ୍କାର ଉକ୍ତି ପରଷିବାକୁ ସାହସ କରିଥାଆନ୍ତା । କିନ୍ତୁ ଯୁବକ ହରେନ୍ଦ୍ର ସହଜେ ରୋମାଣ୍ଟିକ୍, ଜୀବନ ରହସ୍ୟକୁ ଅନାସ୍ଥାରେ ଆଡ଼େଇ ଦେଇ ପାରିଲା ନାହିଁ, ଅବା ମାଂସଳ ଦର୍ଶନରେ ପୋତି ଦେଇ ପାରିଲା ନାହିଁ । ତେଣୁ ବିଚରା ଏତେ କଷ୍ଟ ପାଇଲା । କଅଁଳ କଳିଟିକୁ ନାଲି ରକ୍ତରେ ଜୁଡ଼ୁବୁଡ଼ୁ କରି ନ ଗୁଡ଼ିବା ଯାଏଁ ତା'ର ମନ ପୂରିଲା ନାହିଁ । ସ୍ୱାଦ୍ୟର ତୀବ୍ରତାକୁ ସୁଗୁଇବାକୁ ଯାଇଁ ସାଧନାକୁ ମଧ୍ୟ ଅଯଥାରେ ଟାଣି ନେଇ ଗଲା ଅପର ପାଖର ସୀମାକୁ । ସଙ୍ଗରେ କହିଲା ଯେ ତୁମ ପାଇଁ ସ୍ମୃତି ଓ ସହାନୁଭୂତି ଉଭୟ ଅଦରକାରୀ, ଅର୍ଥାତ୍ ତୁମର ସମ୍ବେଦନା ଘରେ ଶୂନ୍ । ହରେନ୍ଦ୍ରକୁ କ୍ଷମା କରନ୍ତୁ ।

ଯାହା ହେଉ ପଛେ ସେଇ ଥିଲା ମୋର (ଏବଂ ମୋର ପରବର୍ତ୍ତୀ ନାନାଦି ଚରିତ୍ରମାନଙ୍କର) ପହିଲି ପ୍ରଥମ ପୁରୁଷ । "ମୁଁ" ଭାବରେ ତାପିତ, ଧର୍ଷିତ, କ୍ଳାନ୍ତ । ପଚାରିଲି, ମୁଁ କାହିଁକି ବନ୍ଦୀ ହୋଇ ରହିବି ମୋ ନିଜ ଭିତରେ ? ଇଏ କିଭଳି ପ୍ରହସନ ଯେ ମୁଁ କହିବି ମୁଁ ଅଛି ବୋଲି ସନ୍ଧାର ଅଛି, ତୁମ କହିବ ଯେ

ଅଛୁ ବୋଲି ସଂସାର ଅଛୁ, ଶାମ କହୁବ··· ? କଏ ସତ, କାହାର ସଂସାର ସତ ? ସବୁ ମିଶିଲେ ଯାଇଁ ସତ ? ସେଇଟି ପୁଣି କି ଜିନିଷ ? ମୁଣ୍ଡରେ ପଶୁଛୁ ହୁଏତ, କିନ୍ତୁ ଅନୁଭବକୁ ପାଉ ନାହିଁ, ମୋଟେ ପାଉ ନାହିଁ ।

ପ୍ରବୀଣ ବୟସ୍କ ଲେଖକ ମୃଦୁ ମୃଦୁ ହସି କହୁଛୁ—ସେଇ ତ ମଜା ! ସେଇଥିପାଇଁ ସାର୍ତ୍ରେ କହିଥିଲେ, ଛୁଗୁଲେଇଲା ପରି, ଯେ ନର୍କର ଅର୍ଥ ସେମାନେ, ଅନ୍ୟମାନେ । ଅଥଚ ଟେନେସି ଉଇଲିୟମ୍ସ କହିଲେ,—ତୁମେଇ ନର୍କ । ସେଥିରୁ ରକ୍ଷା ପାଇବାକୁ ହେଲେ ଆଉ କାହା ପାଇଁ ମର, ଅନ୍ୟ ଉପାୟ ନାହିଁ । ସେଇ ଏକା କଥା । ସେଇଆକୁ ବିବେକାନନ୍ଦ ଆଧ୍ୟାତ୍ମ ଦୃଷ୍ଟିରେ କହିଲେ,—ନିଜକୁ ଭୁଲିଯାଅ, ଏଇ ହେଲା ପରମାନନ୍ଦର ପ୍ରଥମ ପାଠ ।

ହରେନ୍ଦ୍ର ବଲବଲ ହୋଇ ଅନେଇଛୁ ଲେଖକର ମୁହଁକୁ । ସତେ କି ଜଣେ ମୂକ, ଅନ୍ୟଜଣକ ବଧୀର । ଚେତାଇ ଦେଉଛୁ ଯେ ତୁମେ ଯେମିତି ବନ୍ଦୀ, ମୁଁ ବି' ସେମିତି ବନ୍ଦୀ । ଅତଏବ କେହି କାହାକୁ 'ଉତ୍ତର' ଦେଇ ପାରିବ ନାହିଁ । ଦାର୍ଶନିକ ଜେ. କୃଷ୍ଣମୂର୍ତ୍ତି କହିଲା ପରି, ସତ୍ୟ ଏକ ଅଗମ୍ୟ ଦେଶ । ନିଜକୁ ନିଜେ ବାଟ ଖୋଜି ବାହାର କର, ମୁକ୍ତ ହେଲେ ହୁଅ, ନଚେତ୍··· ଚୁଲିକୁ ଯାଅ !

ତଥାପି ଏଇ ଦାରୁଣ ରହସ୍ୟର କଲବଲକୁ ନାନା ଭାବରେ ବିଭିନ୍ନ ଚରିତ୍ରମାନଙ୍କ ଜରିଆରେ ଅନୁଭବ କରି ନ ପାରିଲେ ମୁଁ ଲେଖୁଛୁ କାହିଁକି ? ଏଇ ହାସ୍ୟାସ୍ପଦ ବଡ଼ିମାକୁ ଗଣ୍ଠି କରି ଧରିଛୁ ଆଜିଯାଏଁ ।

ପାଟଣାରେ ଏମ୍. ଏ. ପଢ଼ୁଥିଲାବେଳେ ମେଡ଼ିକାଲ କଲେଜ ହସ୍‌ପିଟାଲରେ ମୋର ଜଣେ ବନ୍ଧୁଙ୍କର ରୋଗ-ଶଯ୍ୟାରେ ପହରା ଦେବାକୁ ଯାଇଁ ଏଇ ମୋର ଗୋଟିଏ ଗୁଡିର କାହାଣୀ । ହରେନ୍ଦ୍ର ଅବାସ୍ତବ ନୁହେଁ । ଏବଂ ଅଲ୍ପନା ଏବେ ମଧ୍ୟ ବଞ୍ଚିଛୁ ।

କଟକ
୧୭ ଜୁଲାଇ, ୧୯୮୬

# ମାନସୀ

'ରବସ୍ ! ମୁଁ କିଛି ଶୁଣିବାକୁ ଚାହେଁ ନା ।'

'ନ ଶୁଣିଲେ ବି' ମୁଁ କହିବି । ମୋର କହିବାର ଅଧିକାର ଅଛି ।'

'ଷ୍ଟପ୍ ଇଟ୍,—ଆଇ ସେ' ।

'କାହିଁକି ବନ୍ଦ ହେବି ? ସମସ୍ତେ ଶୁଣିବେ—ଶୁଣନ୍ତୁ । କାହାରିକୁ ଅଜଣା ନାହିଁ ତୁମ କଥା ।'

'ମୋର ଯାହା ଇଚ୍ଛା ହେଲା ତାହା କରିବି, ଆଉ କାହାର କିଛି କହିବାର ଅଧିକାର ନାହିଁ,—ଦୁନିଆର ନାହିଁ—କାହାର ନାହିଁ,—ବୁଝିଲ ?'

ପାଟି ବଢ଼ି ଚାଲିଲା । ଶେଷରେ ଚଉକି ଫୋପାଡ଼ିବାର ଶବ୍ଦ । ତା' ପରେ, ପ୍ରଥମ ଜଣକ—ପୁରୁଷ—ବାହାରକୁ ବାହାରି ଆସିଲେ ଅସଂଯତ ପାଦରେ ଓ ଘର ଭିତରୁ ଶୁଭିଲା ଫୁଁ ଫୁଁ କାନ୍ଦଣା ।

ମାନ୍ଦ୍ରାଜରେ ସେହି କେତେଦିନ ରହଣି ଭିତରେ ମାସକେ ଥରେ ଅଧେ ଏମିତି ଦୃଶ୍ୟ ଦେଖିବାକୁ ମିଳୁଥାଏ । ଭଙ୍ଗାରୁଜା ଖପରଲି ଘର,—ବାହାରୁ ଦେଖାଯାଏ ଗୋଟିଏ ପୁରୁଣା ଅଥଚ ସମ୍ଭ୍ରାନ୍ତ ବଙ୍ଗଳା ପରି, ଦାରିଦ୍ର୍ୟ ଓ ଆଭିଜାତ୍ୟ ମିଶାମିଶି । ବନ୍ଧୁମାନେ କହନ୍ତି,—ବେଶ୍ ନିରୋଳା ଓ ସୁନ୍ଦର ଜାଗାଟିଏ ପାଇଛ । ଭାଗ୍ୟ ଭଲ ।

ମନର ଦୁଃସ୍ଥତା ଜଣାଇବାକୁ ଇଚ୍ଛା ହୁଏ ନା । କହିବାକୁ ଲାଜମାଡ଼େ ଯେ ଭିକ୍ଟୋରିଆ ଯୁଗର ଏଇ ସ୍ନିଗ୍ଧ କୁଟୀର ଭିତରେ ଆମର ଅବସ୍ଥିତି ଗୋଟିଏ ରୁମ୍‌ରେ । ଉପରେ ଗୋଟିଏ ବିଜୁଳି ପଙ୍ଖା ଅଛି, ଯାହାକୁ ହାତରେ ତିନି ଚାରି ଥର ବୁଲାଇଲେ ମନ ଦୁଃଖରେ କୁଁ କୁଁ ହୋଇ ଚାଲେ ଟିକିଏ—ତା' ପରେ ବନ୍ଦ ହୋଇଯାଏ । ବର୍ଷା ଦିନେ ଛାତରୁ ପାଣି ଗଳିହୁଏ କହିଲେ ଅତ୍ୟୁକ୍ତି ହେବ ନାହିଁ । ଟେବୁଲ୍‌ଟିକୁ କୋଣକୁ ଟାଣି ତା ଉପରେ ଚଉକି ରଖି ତା ଉପରେ ବସିବାକୁ

ପଡ଼େ । ବାଥ୍‌ରୁମ୍ ଓ ରୋଷେଇ ଘର ଅଧମାଇଲ ଦୂରରେ । ଡାଲି କିମ୍ବା ତରକାରି ସରିଗଲେ ଆଉ ଥରେ ମାଗିବାକୁ ଇଚ୍ଛା ହୁଏ ନା,—ପୁଝାରୀର ଗୋଡ଼କୁ କଷ୍ଟ ହେବବୋଲି । ଇତ୍ୟାଦି ଇତ୍ୟାଦି । ଆଉ ତା' ଛଡ଼ା— ।

ହଁ—ତା' ଛଡ଼ା ଆଉ ଯାହା ଥିଲା ସେଇଟାହିଁ ସବୁଠୁଁ ବଡ଼ ଜିନିଷ । ଚାଲିବାର ଅସୁବିଧା, ଝାଳ, ମଇଳା, ଅଳନ୍ଧୁ ଏ ସବୁ ଥିଲା ବାହାରର ଅନୁଭୂତି । ଇଚ୍ଛାକଲେ ଏଡ଼ିଦେଇ ହସି ହେଉଥିଲା । କିନ୍ତୁ ଆମର ଇଚ୍ଛାର ବାହାରେ, ଆମର ଭିତର ମନ ଓ ବାହାର ଇନ୍ଦ୍ରିୟର ସମସ୍ତ ଅନୁଭୂତିକୁ ନିଙ୍ଗାଡ଼ି, ଆମର ହସ ଓ କାନ୍ଦକୁ ନିୟନ୍ତ୍ରିତ କରି ରଖିଥିଲେ ସେମାନେ—ଆମର ଗୃହସ୍ୱାମୀ ଓ ସ୍ୱାମିନୀ ।

ସେମାନେ ଥିଲେ ଘରର ମାଲିକ ଓ ଆମେ ଥିଲୁ ଭଡ଼ାଟିଆ ।

କିନ୍ତୁ ବେଳେ ବେଳେ ସେମାନେ ଥିଲେ ଅଭିନେତା ଓ ଆମେ ଥିଲୁ ଦର୍ଶକ । ସେଇ କେତୋଟି ମୁହୂର୍ତ୍ତରେ ଆମେ ହସୁଥିଲୁ ସ୍ୱାଧୀନ ହସ । ନିପୀଡ଼ିତ ଜୀବନରେ ସେଇତକ ଥିଲା ନିର୍ଭେଳ ଉପଭୋଗ, ଆମୋଦ ଓ ଉଲ୍ଲାସ !

ସେଦିନ ରାତିରେ ଏମିତି ଗୋଟାଏ ଅଭିନୟ ହୋଇଥିଲା ଓ ଆମେ ଆମ ରୁମ୍‌ରେ କବାଟ ବନ୍ଦକରି ଅନୁଭବ କରୁଥିଲୁ ନିଜର ଉନ୍ନତ ପାରିବାରିକ ଜୀବନ । ଜୟନ୍ତୀ ଓ ମୁଁ ପରସ୍ପରକୁ ଚାହିଁ ହସୁଥିଲୁ, ମନେ ହେଉଥିଲା ଯେପରି ଆମ ଜୀବନରେ କେବେହେଲେ କିଛି ମଳିଧୂଳି ଆସିନାହିଁ । କଳିକଜିଆ ଆମର ଅନୁଭୂତିର କାହିଁ କେତେ ଦୂରରେ···।

···ତା' ପରଦିନ ମୁଁ ଅଫିସରୁ ଫେରିଛି, ଜୟନ୍ତୀ ଉଚ୍ଛୁଳା ଆଗ୍ରହରେ କହି ଉଠିଲା—'ବୁଝିଲ—ଆଜି ଗୋଟାଏ ମଜା କଥା ହୋଇଛି— ।' କଥାର ସାରାଂଶ ହେଉଛି ଏହି ଯେ, ବହୁତ ଦିନ ପରେ ଜୟନ୍ତୀ ଉତ୍ତମ ପ୍ରତିବେଶୀର କର୍ତ୍ତବ୍ୟ ପାଳନ କରିବାକୁ ଯାଇ ଘରର ମାଲିକାଣୀ ଓରଫ୍ ମିସେସ୍ ନାୟାର୍‌ଙ୍କ ରୁମ୍‌କୁ ଯାଇଥିଲା । ଶ୍ରେଷ୍ଠ ଝିଅ ରୁନୁ ତାଙ୍କ ଝିଅ ବେବି ସାଙ୍ଗରେ ଖେଳିବା ଦ୍ୱାରା ବାର୍ତ୍ତାଳାପ ଆହୁରି ଟିକିଏ ସୁବିଧାଜନକ ହୋଇଗଲା । ଏଥର 'ବେଶି ପଙ୍ଖା ଚାଲୁଛି', 'ପିଲା ରାତିରେ କାନ୍ଦୁଛନ୍ତି' ଇତ୍ୟାଦି କିଛି ଅଭିଯୋଗ ହୋଇନାହିଁ । ବରଂ ମିସେସ୍ ନାୟାର କହିଲେ 'ଦେଖିଲ, ପିଲା ଦୁଇଜଣ କେତେ ଖୁସିରେ ଖେଳୁଛନ୍ତି ! ତୁମେ ରୁନୁକୁ ବରାବର କାହିଁକି ଏଠିକି ପଠାଇ ଦେଉନ ?' ମିଲିଟିଲିଙ୍କ କଥା ପଡ଼ୁ ପଡ଼ୁ ସେ କହିଲେ ଯେ ଦଶ ବର୍ଷ ବାହାଘର ଭିତରେ ତାଙ୍କର ଏଇ ଗୋଟିଏପିଲା—ତିନୋଟି ନଷ୍ଟ ହୋଇଛନ୍ତି । ସେ ପୁଣି ସ୍କୁଲକୁ ଚାଲିଗଲେ ତାଙ୍କୁ ନିହାତି ଏକୁଟିଆ ଲାଗିବ ! କହୁ କହୁ ସେ କୁଆଡ଼େ ଟିକିଏ ଭାବାକୁଳ ହୋଇଗଲେ ଓ

ତା'ପରେ ଆକସ୍ମିକ ଭାବରେ କହି ଉଠିଲେ—'କାଲି ରାତରେ ତୁମେମାନେ ଖୁବ ବିରକ୍ତ ହୋଇଥିବ । କଣ କରିବ—ତାଙ୍କର ଏମିତି ମଝିରେ ମଝିରେ ହୁଏ । ସେ ଖୁବ ଭଲ ମଣିଷ । କିନ୍ତୁ ନିଶାର ଜୋର୍‌ରେ ବେଳେ ବେଳେ ଏମିତି ଧଣ୍ଡ ଭଳିଆ ହୋଇଯାଆନ୍ତି । କଣ ବୋଲି କଣ କହନ୍ତି । ମୁଁ କେତେ ଚେଷ୍ଟା କଲିଣି ଛଡ଼ାଇବାକୁ—କିନ୍ତୁ ପାରୁ ନାହିଁ ।' ଜୟନ୍ତୀ ସହାନୁଭୂତି ଦେଖାଇବାକୁ ଯାଇ କହିଲା—ହଁ—ପୁରୁଷଙ୍କର ଅଭ୍ୟାସ ଛଡ଼ାଇବା ଭାରି କଷ୍ଟ । ଏଇ—ତାଙ୍କର ସିଗାରେଟ୍ ଅଭ୍ୟାସ ଏମିତି ହୋଇ ଯାଇଛି ଯେ— । ମିସେସ୍ ନାୟାର କୁଆଡ଼େ ଟିକିଏ ହସି ଉଠିଲେ—କୃତଜ୍ଞତାରେ । ତା ପରେ ଟିକିଏ ଜଳଯୋଗ ଓ ହସଖୁସି ପରେ ଜୟନ୍ତୀ ବିଦାହୋଇ ଆସିଲି ଓ ନିମନ୍ତ୍ରଣ ପାଇଲି ପ୍ରତିଦିନ ଖରାବେଳେ ଆସିବାକୁ ।

ଜୟନ୍ତୀର କଥା ସରିଲା ପରେ ମୁଁ ପଚାରିଲି—'ତା ହେଲେ ମୋଟ ଉପରେ ତୁମର ଧାରଣା କଅଣ ?—ଯେ ମାନନୀୟା ମିସେସ୍ ନାୟାର ଏମ୍. ଏ. ଯେ କି ହସିବାକୁ, ପଡ଼ୋଶୀ ସାଙ୍ଗରେ କଥାବାର୍ତ୍ତା କରିବାକୁ ଦୁର୍ବଳତା ବୋଲି ମନେ କରନ୍ତି, ତାଙ୍କର ଆଜି ହଠାତ୍ ପରିବର୍ତ୍ତନ ହୋଇ ଯାଇଛି ?' ଜୟନ୍ତୀ ଟିକିଏ ଭାବିଲା ପରି ହୋଇ କହିଲା—'ନା, ପରିବର୍ତ୍ତନ କଣ ହୋଇଛି ମୁଁ କହିପାରିବ ନାହିଁ । ତେବେ ମୋର ବିଶ୍ୱାସ ଯେ ପରିସ୍ଥିତି ହିଁ ତାଙ୍କୁ ଏତେ ରୁକ୍ଷ କରି ଦେଇଛି । ନ ହେଲେ ବୋଧହୁଏ ସେ ଏମିତି ହୋଇ ପାରି ନ ଥାନ୍ତେ ।' ଉତ୍ତର ଦେଲି ନାହିଁ । କିନ୍ତୁ ମିସେସ୍ ନାୟାରଙ୍କ କଥାରେ ମୁଁ ଖାଲି ପାଇଲି ଗୋଟିଏ ଦାମ୍ପତ୍ୟ କଳହର ସଫେଇ, ମୋର ଦୋଷ ନୁହେଁ ଓ ମୋର ସ୍ୱାମୀ ବି ଏତେ ଖରାପ ନୁହନ୍ତି ଯେତେ ତୁମେ ଭାବୁଛ ତା' ଛଡ଼ା ଆଉ ଗୋଟିଏ ଭାବ, ଯେ ଏମାନଙ୍କ ସାଙ୍ଗରେ ମିଳିମିଶି ରହିବା ଭଲ, ନ ହେଲେ ଏମାନେ ନିଜ ନିଜର ଧାରଣା କରିନେଇ ବାହାରେ ପ୍ରଚାର କରି ବସିବେ ।

କିଛିଦିନ ପରେ । ସେଦିନ ରବିବାର । ଦି'ଦିନର ଅସ୍ପଷ୍ଟ ଓ ଅବିରାମ ବର୍ଷା ପରେ ପୁରୁଣା ସୂର୍ଯ୍ୟ ଯେମିତି ନୂଆ ବେଶ ହୋଇ ଆସିଛି ଓ ଘର ଆଗରେ ଥିବା ଅନାବନା ଗଛଗୁଡ଼ିକୁ ଚକଚକିଆ ଶାଢ଼ୀ ପିନ୍ଧେଇ ନିଜେ ହସୁଛି ଦେଖିବାକୁ ଦେଖି ।

ମିଷ୍ଟର ନାୟାର ମଧ୍ୟ ନୂଆ ପୋଷାକ ପିନ୍ଧିଥିଲେ । ସାଗୁଆ ବୋତଲ ରଙ୍ଗର ସୁଟ୍—ନାଲିଆ ଟାଇ ଓ କୋଟ୍‌ର ବୋତାମ ଘରେ ଦରଫୁଟା ଗୋଲାପ । ପାଖରେ ମିସେସ୍ । ଫିକା ହଳଦିଆ ରଙ୍ଗର ସିଲ୍କ ଶାଢ଼ୀ ଓ ଆକାଶି ରଙ୍ଗର ବ୍ଲାଉଜ୍ । ମୁଣ୍ଡରେ ସିନ୍ଦୂର ଟୋପା ଜକ୍‌ଜକ୍ ଦିଶୁଛି—ହିନ୍ଦୁତ୍ୱର ଶେଷ ନିଶାଣ ଦେଇକି—

ଲଭିଯିବାକୁ ଡେରି ଲାଗିବ । ଗୋରା ରଙ୍ଗ । ଲମ୍ବା ଦେହ, ଧାରୁଆ ମୁହଁ । ଆଖି ଦୁଇଟି ବିଶେଷ ସୁନ୍ଦର ନ ହେଲେ ବି ଉଜ୍ଜ୍ୱଳ ଓ ଊର୍ଦ୍ଧ୍ୱମୁଖୀ—ସତେ ଯେମିତି ସୁଦୂର ଆକାଶରୁ କଣ କିଛି ଅପେକ୍ଷା କରି ରହିଛି । କିନ୍ତୁ ଆଖି ତଳେ ତଳେ ଗାଢ଼ି ଗାଢ଼ି କାଳିମା—ବୋଧହୁଏ ଜୀବନର ଋକ୍ତତାର ଉପହାର । ସିଧା ଚାଲି, ସ୍ଥିର ଦୃଷ୍ଟି । ଚାପା ଓଠ । ମୁଁ ଜୟନ୍ତୀକୁ କହେ, 'ଦାମ୍ଭିକତା, ଗର୍ବ ଟିକିଏ କମ୍ ଥିଲେ ଏ ଚେହେରାଟି ବୋଧହୁଏ ମାନନ୍ତା—ନୁହେଁ ?'

ଆଉ ମିଷ୍ଟର ନାୟାର ? କଳା ମୁଚୁ ମୁଚୁ ରଙ୍ଗ । କୁଞ୍ଚୁ କୁଞ୍ଚୁଆ ବାଳ, ନିଦା ମିଟା ଦେହ, କିନ୍ତୁ ସେ ଦେହରେ ଅଛି ମସୃଣତା ଓ ସହଜ ସାବଲୀଲ ଭଙ୍ଗୀ । ଚାଲିଲାବେଳେ ଶବ୍ଦ ହୁଏନା । ସାଧାରଣ କଥା କହିଲାବେଳେ ଫୁସ୍‌ଫୁସ୍ ଶୁଣାଯାଏ ଓ ଅନବରତ ଓଠରେ ଗୋଟିଏ ସିଗାରେଟ୍ ଲାଗି ରହିଥିବାରୁ ଆହୁରି ଅସ୍ପଷ୍ଟ ମନେ ହୁଏ । ମୋଟ ଉପରେ ସେ ଦେହରେ ଯେମିତି ଅଛି, ବାଘ-ବିଲେଇ ଜାତିର ସୌନ୍ଦର୍ଯ୍ୟ, ଶକ୍ତି ଓ ଲାଳସା । ଓଠ ଦୁଇଟି ନିହାଣରେ ତିଆରି, ସରୁ ଓ ସୂକ୍ଷ୍ମ । କିନ୍ତୁ ସେଥିରେ ନାହିଁ ସ୍ୱାଭାବିକ ରକ୍ତିମା । ସେତକ ବୋଧହୁଏ ଯାଇ ଜମାଟ ବାନ୍ଧି ରହିଛି ଆଖିରେ । ସେଇ ନିଦୁଆ ରକ୍ତିମ ଆଖିରେ ମିଳେ ବିଳାସର ଗନ୍ଧ ଓ ଆହ୍ୱାନର ଇଙ୍ଗିତ । 'ଗୁହା-ମାନବ, କିନ୍ତୁ ରୋମାଣ୍ଟିକ୍,—ନୁହେଁ ?' ମୁଁ ଜୟନ୍ତୀକୁ ପଚାରେ । ସେ ଉତ୍ତର ଦିଏ ନା—ଖାଲି ଡଗର ଡଗର ଚାହିଁ ରହେ ମୋତେ ।

ଦୁହେଁ ଆଗକୁ ଚାଲିଛନ୍ତି । ଦୁହିଁଙ୍କ ପାଦ ସମନ୍ୱୟରେ ଗତି କରୁଛି । ବୋଧହୁଏ ମନକୁ ମିଳାଇବାର ଚେଷ୍ଟାରେ ଦେହ ଦୁଇଟି ଅକ୍ଳାନ୍ତ ପରିଶ୍ରମ କରି ଚାଲିଛନ୍ତି । ଦୂରରୁ ଶୁଭୁଛି ଗୀର୍ଜାର ଘଣ୍ଟା । ପୁରାତନ ଧର୍ମର ଡାକ । ସାମାଜିକ ମିଳନର ଅପେକ୍ଷା । ନୂଆ ସାଲିସ୍ ଦେହରେ ରଙ୍ଗ ଲାଗୁଛି । ମନରେ ଆସୁଛି ଆଶା, ଉତ୍ତେଜନା । ଆଗକୁ ପଛକୁ ଚାହିଁବାର ବେଳ ନାହିଁ ।

ସବୁ ସୁନ୍ଦର; କୁହୁଡ଼ିଆ ଅତୀତ ଓ ଭବିଷ୍ୟତ ଭିତରେ ଆଜିକ ଯେମିତି ନିହାତି ସ୍ପଷ୍ଟ, ନେଳିଆ, ଅସୀମ ଆକାଶରେ ଖଣ୍ଡ ଖଣ୍ଡ ହୋଇ ଭାସୁଥିବା ମେଘ ପରି । କିନ୍ତୁ ସ୍ପଷ୍ଟତାରେ ବୋଧହୁଏ ସବୁବେଳେ ଥାଏ ସରିଯିବାର, ଭାଙ୍ଗିଯିବାର ପ୍ରବଣତା । ଆମ ଦୁହିଁଙ୍କ ମନରେ ସେତେବେଳେ ସେଇ ଗୋଟିଏ ଭାବନା ଥାଏ—'ଇୟେ କେତେ ଦିନ ରହିବ ?'

କିନ୍ତୁ କେତେଦିନ ହେଲାଣି କିଛି ପରିବର୍ତ୍ତନ ନାହିଁ । ଭଦ୍ର, ସାମାଜିକ ଜୀବନର ନମୁନା ଦେଖାଇ ଚାଲିଛନ୍ତି ସେମାନେ । ହସ ଖୁସିର ଇଙ୍ଗିତ ମିଳେନା ସତ, କିନ୍ତୁ କଳିକଜିଆର ଦୃଶ୍ୟ ବି ନ ଥାଏ । କଣ ହେଲା ? ଏ' କଣ ମିସେସ୍ ନାୟାରଙ୍କ ପ୍ରଗାଢ଼ ଚେଷ୍ଟାର ଫଳ ? ନା ମିଷ୍ଟର ନାୟାରଙ୍କ ନିଶାର ଦାଉ ଟିକିଏ

କମିଯାଇଛୁ ? ଦ୍ୱିତୀୟଟିରେ ବିଶ୍ୱାସ ହେଲ ନାହିଁ । କାରଣ ମୁଁ ନିଜେ ଦେଖିଛୁ ଲୁଗୁଛୁଆ ହୋଇ ବୋତଲ ଆସିବାର । ତାହାହେଲେ କଣ ମିଷ୍ଟର ନାଏାର ଟିକିଏ ସାବଧାନ ହୋଇ ଯାଇଛନ୍ତି ? କେଜାଣି ?

ଜୟନ୍ତୀର ମନରେ କିନ୍ତୁ ସରସତା ନ ଥାଏ । କାରଣ ଏଇ କେତେଦିନ ହେଲ ଦୁଇ ପରିବାର ଭିତରେ ପୁଣି ସଂଘର୍ଷ ଆରମ୍ଭ ହୋଇଯାଇଛୁ । ମିସେସ୍ ନାୟାରଙ୍କ ଦୈନନ୍ଦିନ ଅଭିଯୋଗ,—ଆମ ଗୃହର ତାଙ୍କୁ ଅପମାନ ଦେଇଛୁ, ଗୁଲୁ ତାଙ୍କ ଘରକୁଯାଇ ସବୁ ଘାଣ୍ଟି ଦେଇଛୁ, ଇତ୍ୟାଦି ଇତ୍ୟାଦି । ମିଷ୍ଟର୍ ନାୟାର ବିଶେଷ କିଛୁ କହନ୍ତି ନାହିଁ । କିନ୍ତୁ ଭଡ଼ା ବଢ଼ାଇବାର ପ୍ରସ୍ତାବ କରନ୍ତି ବେଳେ ବେଳେ । ମୁଁ ଜୟନ୍ତୀକୁ ଆଶ୍ୱାସନା ଦେଇ କହିଲି—ବ୍ୟସ୍ତ ହୁଅ ନାହିଁ । ଦ୍ୱିତୀୟ ଅଧ୍ୟାୟର ବେଶି ଡେରି ନାହିଁ । ଏକ ପକ୍ଷେ ମନାନ୍ତର ସ୍ୱାମୀ ଓ ସ୍ତ୍ରୀ ଭିତରେ ଓ ଦ୍ୱିତୀୟ ପକ୍ଷେ ତୁମର ଓ ମିସେସ୍‌ଙ୍କର ବନ୍ଧୁତା । ଜୟନ୍ତୀର ଧାର୍ମିକ ଆଦର୍ଶରେ ବାଧା ପଡ଼ିଲା । ସେ କହିଲା—'ଛି, ମୁଁ ସେପରି ବନ୍ଧୁତାର ପକ୍ଷପାତୀ ନୁହେଁ । ସେମାନେ ଖୁସି ରହନ୍ତୁ ମୁଁ ଗୁହେଁ । କିନ୍ତୁ ତା' ବୋଲି ଜଣେ ଶିକ୍ଷିତ ସଭ୍ୟ ମଣିଷ ଅନ୍ୟକୁ ବୁଝିବାର ସାଧାରଣ ଶକ୍ତି ହରାଏ କାହିଁକି ମୁଁ ଜାଣିପାରେ ନା ।' ହସିଲି ମନେ ମନେ । ମଣିଷ ମନର ଏଇ ଅସଙ୍ଗତି ନ ଥିଲେ କବି ଓ ଲେଖକ ପାଇଁ ଖୋରାକ୍ ମିଳନ୍ତା କୁଆଡ଼ୁ ?

ଏମିତି କେତେଦିନ ଗଲା । ଦିନେ ସନ୍ଧ୍ୟାବେଳେ ମୁଁ ବାରଣ୍ଡାରେ ଚଉକି ପକାଇ ସୃଷ୍ଟିର ନୀରବ ସଙ୍ଗୀତ ଶୁଣିବା ପାଇଁ ନିଷ୍ଫଳ ଚେଷ୍ଟା କରୁଥିଲି, ଏହି ସମୟରେ ଗୋଟିଏ ରିକ୍‌ସା ଆସି ଘର ସାମନାରେ ରହିଲା ଓ ସେଥିରୁ ଗୋଟିଏ ଝିଅ ଓହ୍ଲାଇ ଆସିଲା । ଆଶ୍ଚର୍ଯ୍ୟ ହେଲି । ତା'ପରେ ଦେଖିଲି, ଝିଅ ନୁହେଁ,—ନିମ୍ନ ଶ୍ରେଣୀର ଗୋଟିଏ ସ୍ତ୍ରୀ । ମୁହଁରେ ପାନବୋଳ, ମଇଳା ଶାଢ଼ୀଟିଏ ପିନ୍ଧିଛୁ,—କିନ୍ତୁ ଶାଢ଼ୀତଳର ବ୍ଲାଉସ୍‌କୁ ସୁଦୃଶ୍ୟ କରିବାର ଯଥେଷ୍ଟ ଚେଷ୍ଟା କରିହୋଇଛୁ, ପିଠିରେ ପଡ଼ିଥିବା ତେଲବୋଳା ମୁଣ୍ଡବାଳ ଭିତରେ ମଲ୍ଲି ଫୁଲର ମାଳା । ମୋତେ ଦେଖି ଅଯଥା ହସିପକାଇ କହିଲା—

'ବାବୁ, କାଲିକା ପଇସା ?

'ପଇସା, କି ପଇସା ?'—ଆଶ୍ଚର୍ଯ୍ୟ ହେଲି ।

ତା'ପରେ ସେ ମୋ ମୁହଁକୁ ବଲ ବଲ ହୋଇ ଗୁହିଁ ପଗ୍ଚରିଲା—

'ତମେ ତାହାହେଲେ ଏଠିକାର ଖ୍ରିଷ୍ଟିଆନ୍ ବାବୁ ନୁହଁ ?' ଏହାପରେ କଥା ବୁଝିବାକୁ ଡେରି ଲଗିଲା ନାହିଁ । ଆଉ ମୋତେ ନ ଚହ୍ନିପାରିବାର କାରଣ

ହେଉଛି ବୋଧହୁଏ ଯେ ଅନ୍ଧାରର ଉପଭୋଗ ଭିତରେ ଚେହେରାର ମୂଲ୍ୟ ନ ଥାଏ ।

ତା'ପରେ ଆଉ ଦିନେ । ଘରେ ଭାରି ଗରମ ଲାଗୁଥାଏ । ସମୟ ରାତି ଏଗାରଟା ହେବ । ବାହାରକୁ ଚାଲି ଆସି ଦେଖେ ଯେ ଗୋଟିଏ ଆଙ୍ଗ୍ଲୋ-ଇଣ୍ଡିଆନ୍ ଝିଅ ଆସୁଛି ଚାଲି ଚାଲି ଓ ଆଉ ଜଣେ ଲୋକ ଘରୁ ଯାଉଛି ପାଛୋଟି ଆଣିବାକୁ । ବ୍ରିଟିଶ୍ଟିର ରଙ୍ଗ କଳା ରାତି ସାଙ୍ଗରେ ମିଶିଯାଉଛି । ଖାଲି ଧଳା' ପରସ୍ତ କରି ମୋଡ଼ିଥିବା ଧୋତି ଖଣ୍ଡିକ ଚହଲା ପକେଇ ଦେଉଛି,—ଜଣେଇ ଦେଉଛି ଯେ ସବୁକଥା ଲୁଚି ରହେନା । ନିଶ୍ଚୟ ମିଃ ନାୟାର ଓ ଆଉ ଜଣକ ବୋଧହୁଏ ଗୋଟିଏ ରାତିର ସାଥୀ । ଦୁହେଁଯାକ ହାତ ଧରାଧରି ହୋଇ ଚାଲି ଆସିଲେ—ଘର ପଛ ପଟକୁ ।

ଏମିତି ଗୋଟିକ ପରେ ଗୋଟିଏ ଦୃଶ୍ୟ ଦେଖିବାକୁ ମିଳିଲା । କେଉଁଦିନ ସ୍ନୋ, ପାଉଡ଼ର୍, ଲିପ୍ଷ୍ଟିକ୍ ମଖା ବଜାରିଆ,—ନମସ୍କାରର ବଡ଼ିମା ନେଇଆସେ, କୃତାର୍ଥ କରିବାର ଭଙ୍ଗୀରେ, କାରଣ ତା' ଦେହରେ ଅଛି ଧନପୁରୁଷ ତଳର ଗୋରା ଚମଡ଼ାର ବାସ । ଆଉ କେବେ ନେଟିଭ୍ କ୍ରିଷ୍ଟିଆନ୍ ଝିଅ—କଳା ଦେହରେ ଧୋବଫରଫର ଶାଢ଼ୀର ସ୍ୱଚ୍ଛତା । 'ପରିଷ୍କାର ପରିଚ୍ଛନ୍ନତା ଈଶ୍ୱର ପ୍ରାଣତାର ଠିକ୍ ପଛକୁ'—ନିଜ ଧର୍ମ ବଳକେଣ୍ଟରେ ବାଧା ଦେବ କାହିଁକି ? ପୁଣି ଆଉ କେବେ ସେଦିନ ପରି ଅତି ନିଚସ୍ତରର ଝିଅ, ଖୋଲା ଖୋଲି ଦେହର ସଉଦା କରିବାକୁ ଆସେ, ସେଥିରେ ଲଜ୍ଜାର କାରଣ କଅଣ ବୁଝେ ନା ।

ମିଃ ନାୟାର କାମୁକ । ମିଃ ନାୟାର ଲମ୍ପଟ, ଅସଚ୍ଚରିତ୍ର, ସେଥିପାଇଁ ଆଉ ପ୍ରମାଣର ଅଭାବ ନାହିଁ । କିନ୍ତୁ କାହିଁ,—ମିସେସ୍ ନାୟାରଙ୍କର ଆଖିରେ କାଁ ପୁଣି ଥରେ ଜଳଜଳ ନାହିଁ କାହିଁକି ? ଘର ଭିତରେ ଏ ସବୁ କାରବାର ଚାଲିଛି,— ପୁଣି ରାତିର ପ୍ରଥମ ପ୍ରହରରେ, ଯେତେବେଳେ ତାଙ୍କର ଜାଣିବାର ସବୁ ସୁଯୋଗ ଓ ଅବକାଶ ଅଛି । ତଥାପି କାହିଁକି ସେ ନୀରବ ? ଆମର ଖାତିର୍‌ରେ ? ବିଶ୍ୱାସ ହେଲା ନାହିଁ । ଜୟନ୍ତୀକୁ ପଚାରିଲି । କିନ୍ତୁ ସେ ଆଉ ସେ ସବୁ ବିଷୟରେ କଥାବାର୍ତ୍ତା କରିବାକୁ ନାରାଜ । ମୋତେ ଓଲଟି ପଚାରିଲା—"ତୁମର ସେମାନଙ୍କ ବିଷୟରେ ଏତେ ଜାଣିବା କଅଣ ଦରକାର କହିଲ ?"

କିଛିଦିନ ପରେ ଶୁଣିଲି ଯେ ମିଃ ନାୟାର ଟୁର୍‌ରେ ଯାଇଛନ୍ତି ଓ ଦେଖିଲି ଯେ ଜୟନ୍ତୀ ଓ ମିସେସ୍ ନାୟାର ପୁଣି କଥାବାର୍ତ୍ତା କଲେଣି । କିନ୍ତୁ ଜୟନ୍ତୀଠାରୁ ଶୁଣିବାକୁ ପାଇଲି ଯେ ସେ ଆଳାପରେ ପୂର୍ବର ଆଗ୍ରହ ଓ ଆନ୍ତରିକତା ନାହିଁ । ଆଶ୍ଚର୍ଯ୍ୟ ହେଲି ନାହିଁ, କିମ୍ବା ଏଇ ଅପୂର୍ବ ବନ୍ଧୁତା ବିଷୟରେ ବିଶେଷ ମନୋଯୋଗ ଦେବାକୁ ଚେଷ୍ଟା କଲି ନାହିଁ ।

ତନ୍ଦି ଗୃଶଦନ ପରେ ସକାଳେ ମିଃ ନାମ୍ଭାରଙ୍କ ଫେରିବାର ଖବର ପାଇଲି । ଖବର ଆଣିଦେଲା ଝିଅ ରୁନୁ,—କହିଲା—'ବାପା, ବେବିର ବାପା କାର୍‌ରେ ଆସିଛନ୍ତି ଓ ତାଙ୍କ ସାଙ୍ଗରେ ତା'ର ଗୋଟିଏ ନୂଆ ବୋଉ' । ଝିଅକୁ ଚୁପ୍ ହେବାକୁ କହିଲି ଯେପରିକି ତା'ର ଏଇ କଳ୍ପନାର ଦୌଡ଼ ସେମାନଙ୍କ କାନରେ ନ ପହଞ୍ଚେ । କିନ୍ତୁ ଘଟଣା ଏତେ ମାମୁଲି ହୋଇ ଯାଇଥିଲା ଯେ ସେ ବିଷୟରେ ଆଉ ଭାବିବାକୁ ଚାହିଁଲି ନାହିଁ । ସକାଳର ଚା' କପ୍‌ର ବିଳାସକୁ ବଢାଇବାକୁ ଲାଗିଲି ଓ ଝରକା ଭିତର ଦେଇ ଅନେଇଲି ବାହାର ବଗିଚା କଦଳୀ ଗଛର ପତ୍ରକୁ, ଯେଉଁଠୁ ଅତି ସୂକ୍ଷ୍ମ ସୁନ୍ଦର କାକର ଥୋପାଟିଏ ଝରି ପଡ଼ୁଥାଏ । କବିର କଳ୍ପନା ଦେଇ ଭାବୁଥିଲି—ଯେ ଏଇ ଛୋଟିଆ ସୁନ୍ଦର ଜିନିଷଟିର ମୂଲ୍ୟ କିଏ ଦେଇପାରିବ ଏଇ ବିଶାଳ ବସ୍ତୁଟି ଯାହାର ମୋଟା ଗଣ୍ଡି ଆବୁରି ରହିଛି ସ୍ଥୂଳ ମାଟିକୁ । ତା' ବଦଳରେ ହୁଏତ ଗୋଟିଏ ନରମ ଲାଉ ଲତା,—ସେଥିରେ ଗୋଟିଏ ଛୋଟିଆ ଧଳଫୁଟା ଫୁଲ,—ତା'ର ନିଦବୋଳା ଆଖିରୁ ଝରି ପଡ଼ୁଥାନ୍ତା...... ।

କଳ୍ପନାରେ ବାଧା ପଡ଼ିଲା ତାଙ୍କ ଘର ବେବିର ଡାକରେ । ହଠାତ୍ ଘର ଭିତରକୁ ପଶି ଆସି କହିଲା—'ମା 'ଅଣ୍ଟି' (ମାଉସୀ)ଙ୍କୁ ଡାକୁଛନ୍ତି—ଯାହାଙ୍କ ସାଙ୍ଗେ ଆସିବାକୁ' । ଆକସ୍ମିକ ଏଇ ତଲବରେ ଆଶ୍ଚର୍ଯ୍ୟ ହେଲି । ଜୟନ୍ତୀ ମଧ୍ୟ ଆଶ୍ଚର୍ଯ୍ୟ ହୋଇ ଝିଅଟି ସାଙ୍ଗରେ ଚାଲିଗଲା ତା'ଙ୍କ ଘରକୁ । କାରଣ ଅବସ୍ଥାର କରିବା ନିରର୍ଥକ ଭାବି ମୁଁ ଅପେକ୍ଷା କଲି ଜୟନ୍ତୀର ଫେରିବା ଯାଏଁ ।

ଜୟନ୍ତୀ ଫେରି ଆସିଲା । ମୁହଁରେ କାରୁଣ୍ୟର ଛାପ । ଭାବର ଆବେଶରେ ଭାଷା ଜମାଟ ବାନ୍ଧି ଯାଇଛି ପରି । ଥଟ୍ଟା କରିବାକୁ ଯାଉଛି, ଏଇ ସମୟରେ ସେ ମୋର ମନ କଥା ଜାଣି ପାରିଲା ଭଳି କହି ଉଠିଲା—

'ତୁମେ ପୁରୁଷମାନେ ବୁଝିପାରିବ ନାହିଁ,—ସ୍ତ୍ରୀର ମନ କଅଣ ଚାହେଁ । ତୁମ ମତରେ ସ୍ତ୍ରୀକୁ ଟଙ୍କା, ଶାଢ଼ୀ, ଗହଣାରେ ଭୁଲାଇ ନେଇ ହୁଏ । ତୁମେମାନେ ବୁଝନା ସ୍ତ୍ରୀର ସମ୍ମାନ ସେଥିରେ ନାହିଁ,—ଅଛି ଟିକିଏ ସହାନୁଭୂତି, ଟିକିଏ ମିଠା କଥାରେ—'

ଗମ୍ଭୀର ହେବାକୁ ବାଧ୍ୟ ହେଲି । ସେ କହି ଚାଲିଲା—'ଏଇ ଦେଖ ମିସେସ୍ ନାମ୍ଭାର୍ କଥା । ବିଚାରୀ ମୋ ଆଗରେ ଆଖି ଛଳ ଛଳ କରି ଦେଖାଇଲେ । ସ୍ୱାମୀ ଟୁର୍‌ରୁ ଫେରିଛି । ଏ ଅନାଇ ରହିଛନ୍ତି ହୁଏତ ସେ ଆସି ହସିକରି ପଚାରିବେ—'ଡାର୍ଲିଂ, ମୋର ଡେରି ହୋଇଗଲା କି ?' ଆଉ ମିସେସ୍ ଲଜେଇ କରି କହିବେ—'ନା—ଭାରି ସହଳ ହୋଇଛି !' ଆଉ ତା' ପରେ ମୁହଁ ହାତ ଧୋଇବାକୁ ଡାକି ନେବେ । କିନ୍ତୁ ତା' ବଦଳରେ ସ୍ୱାମୀ ଫେରି ଆସି ଗୋଟାଏ ଦେଇଁ ସ୍ତ୍ରୀକୁ ଡ୍ରଇଂରୁମ୍‌ରେ ବସାଇ

ସ୍ବାମୀର ହାତରେ ଜଳଖିଆ ମଗେଇ ପଠାଇଲେ ଦୁଇଜଣଙ୍କ ପାଇଁ । ସ୍ତ୍ରୀ ରହିଲା ପରଦା ପଛରେ । ଘରର ଗୋଟାଏ ଜୀବ,—ହୁଏତ ଦରକାରୀ ।'

ଉଚ୍ଛ୍ୱାସରେ ଜୟନ୍ତୀ କହି ଚାଲିଥାଏ । ତା'ର ଗୋରା ମୁହଁ ଲାଲ୍ ହୋଇ ଉଠୁଥାଏ...

ସେଇଦିନ ମୁଁ ମିସେସ୍ ନାୟାରଙ୍କୁ ଗୋଟିଏ ନୂଆ ରୂପରେ ଦେଖିଲି । ଆତ୍ମାଭିମାନୀ, ଶିକ୍ଷିତା ସ୍ତ୍ରୀ । ବୟସ ଢଳି ଗଲାଣି । ତାରୁଣ୍ୟ ସଙ୍ଗରେ ସ୍ୱାମୀର ଭଲ ପାଇବାକୁ ବି' ହରାଇଛି । ଜାଣେ ତାର ସ୍ୱାମୀ ମଦ୍ୟପ, ଲମ୍ପଟ, ନାରୀ ଦେହଲୋଭୀ । ତେଣୁ ସେ ଯୌବନର ଦାବୀ କରେ ନା, ଭଲ ପାଇବା ମାଗେ ନା । କିନ୍ତୁ ତାର ଉଜ୍ଜ୍ୱଳ ଆଖି ଦୁଇଟି ଏବେ ସୁଦ୍ଧା ମାଗେ, ଦାବୀ କରେ ସ୍ତ୍ରୀର ସମ୍ମାନ । ମିସେସ୍ ନାୟାରର ମର୍ଯ୍ୟାଦା । ସେଇଲାଗି ଯେଉଁ ମିସେସ୍ ନାୟାର ନିଜର ପରୋକ୍ଷରେ ରାତିରେ ସ୍ୱାମୀର ସବୁ କାର୍ଯ୍ୟକଳାପ ଜାଣି ସୁଦ୍ଧା ଚୁପ୍ ହୋଇ ରହେ, ସେ ଅନ୍ୟ ସ୍ତ୍ରୀ ଆଗରେ ନିଜର ଅବହେଳା ସହିପାରେ ନା । ହଠାତ୍ ପଡ଼େ,—ଦି' ଦିନିଆ ବୃଦ୍ଧବେଶୀ ଆଗରେ ନିଜର ମନ କଥା ଅଜାଡ଼ି ଦିଏ । କିନ୍ତୁ ଅଭିମାନ କରେ ନାହିଁ ସ୍ୱାମୀ ପାଖରେ । ତିକ୍ତତା ବଢ଼ିଗଲେ ଯୁଦ୍ଧ ଆରମ୍ଭ କରିଦିଏ, ନିଜକୁ ନେଇ ନୁହେଁ, ସ୍ୱାମୀର ଅନ୍ୟାନ୍ୟ ସାମାଜିକ ତ୍ରୁଟି ନେଇ,—ଯଥା ମଦ ଖାଇବା, ବେବର ପଢ଼ାରେ ଅବହେଳା କରିବା ଇତ୍ୟାଦି ।

ସରଳ ଜୟନ୍ତୀ ଭୁଲ୍ ବୁଝିଛି । ମିସେସ୍ ନାୟାର ମିଠା କଥା, ସହାନୁଭୂତିର ଲାଳସୀ ନୁହେଁ—ପ୍ରେମ ଭଲପାଇବାର ବହୁତ ଦୂରରେ ସେ । କିନ୍ତୁ ସେ ଖାଲି ଚାହେଁ ତା'ର ବ୍ୟକ୍ତିଗତ ଓ ସାମାଜିକ ସମ୍ମାନ ।

ହାୟରେ ଅଭିମାନିନୀ ! ଜୀବନର ଯୁଦ୍ଧରେ ହାରିଯାଇ ବି' ପୁରୁରାଜା ପରି କହିବାକୁ ଚାହେଁ—'ମୁଁ ରାଜାର ସମ୍ମାନ ଚାହେଁ ।' ଏଇ କଠୋର ନିଜତ୍ୱଟିକୁ ଭୁଲିଯାଇ ସାଧାରଣ ସ୍ତ୍ରୀ ପରି ସ୍ୱାମୀ ସ୍ନେହର ଉପଯାଚିକା ହୋଇଥିଲେ ସେ କଣ ବେଶୀ ସୁଖୀ ହୋଇ ପାରି ନ ଥାନ୍ତା ?

କିନ୍ତୁ ତା' ହେଲା ନାହିଁ କାହିଁକି ?

× × ×

ମାନ୍ଦ୍ରାଜରୁ ଫେରିବାର ବହୁତ ଦିନ ପରେ । ଦିଲ୍ଲୀର ଗୋଟିଏ ଶୀତଦିନିଆ ରାତିରେ ଜୟନ୍ତୀ, ମୁଁ ଓ ଓଡ଼ିଶାରୁ ଆସିଥିବା ଜଣେ ଇଂଜିନିୟର ଶ୍ରୀଯୁକ୍ତ ମହାପାତ୍ର ଚାଣ୍ଡପରେ ନିଆଁ ପାଖରେ ବସି ଗପ କରୁଥିଲେ । ମହାପାତ୍ର ବାବୁ ବୟସ୍କ—ପରିବାରର ଜଣେ ବିଶେଷ ବନ୍ଧୁ । ବହୁତଦିନ ପରେ ଦେଖା । କଥାର ସୁଅ ଛୁଟିଥାଏ ।

କଥା ପଡ଼ୁ ପଡ଼ୁ ମାନ୍ଦ୍ରାଜ କଥା ପଡ଼ିଲା । ମହାପାତ୍ରବାବୁ ଚାକିରିର ଆରମ୍ଭରେ ମାନ୍ଦ୍ରାଜରେ ଥିଲେ । କହିଲେ, 'ମାନ୍ଦ୍ରାଜରେ ଥିଲବେଳେ ମୋର ସବୁଠୁ ବେଶୀ ପରିଚୟ ଓ ବନ୍ଧୁତା ଥିଲା ମିଷ୍ଟର ସୋମସୁନ୍ଦରଙ୍କ ସଙ୍ଗରେ । ମାନ୍ଦ୍ରାଜର ଡି. ପି. ଆଇ. ଥିଲେ କିଛିଦିନ । ତାଙ୍କ ଝିଅ ଆଶା, ଦୀପକମ୍,—।

ଜୟନ୍ତୀ ଓ ମୁଁ ଦୁହେଁ ଆଶ୍ଚର୍ଯ୍ୟ ହୋଇ ଏକାଠି ପଚାରି ବସିଲୁ—'ଦୀପକମ୍,—କିଏ ମିସେସ୍ ନାୟାର ?'

'ମିସେସ୍ ନାୟାର ? କେଜାଣି,—ହଁ ହଁ,—ସେ କେଉଁ ଗୋଟିଏ ନାୟାରକୁ ବାହା ହୋଇଥିଲା,—ଏଗ୍ରିକଲ୍‌ଚର୍ ଡିପାର୍ଟମେଣ୍ଟରେ କଣ ଗୋଟାଏ ସାଧାରଣ ଚାକିରି କରୁଥିଲା ।—'

ବର୍ତ୍ତମାନ ଆମର ସନ୍ଦେହ ରହିଲା ନାହିଁ ଯେ ସେ ହେଉଛି ମିସେସ୍ ନାୟାର । ମୁଁ ପଚାରିଲି,—ଏତେ ଉଚ୍ଚ ଶିକ୍ଷିତା ବଂଶର ଝିଅ ହୋଇ ସେ ଏପରି ଗୋଟିଏ ଲୋକକୁ ବାହା ହେଲା କାହିଁକି ? କଣ ଖାଲି ବାପ କଥାରେ ।

ମୋ ପାଟିରୁ କଥା ଛଡ଼ାଇ ନେଇ ଜୟନ୍ତୀ କହିଉଠିଲା—'ମିଷ୍ଟର ନାୟାର—ଅମଣିଷ—ସ୍ତ୍ରୀକୁ ଗୋଡ଼ ପଥରଠୁ ବି ହୀନ ବ୍ୟବହାର କରେ ।'

ମହାପାତ୍ର ବାବୁ ହସି ଉଠିଲେ ଓ ଜୟନ୍ତୀ ଅପ୍ରତିଭ ହୋଇଗଲା ।

'କିନ୍ତୁ ମୋର ଧାରଣା ଓଲଟା ଥିଲା,' ସେ କହିଲେ, 'ମୁଁ ଦୀପୁର ବାପାଠୁଁ ଯାହା ଶୁଣିଛି,—ସେଇ ଲୋକଟି ଜାଣିଶୁଣି ଦୀପୁକୁ ବାହା ହୋଇଥିଲା,—ସବୁ ଘଟଣା ସତ୍ତ୍ୱେ ସେ ତା'କୁ ଗ୍ରହିଥିଲା ।'

'ସବୁ ଘଟଣା—ମାନେ ?'

'ତୁମେ ସବୁ କିଛି ଜାଣିନା ତା' ହେଲେ ?'—ବିସ୍ମାରିତ ଆଖିରେ ମହାପାତ୍ର ବାବୁ ଆମକୁ ଅନାଇ କହିଲେ—'ଦୀପୁ ଘରୁ ପଳାଇ ଯାଇଥିଲା ଗୋଟିଏ ମୁସଲମାନ ଟୋକା ସାଙ୍ଗରେ । ଅନେକ କହନ୍ତି ତାର ଗର୍ଭ ହୋଇଯାଇଥିଲା ସେତେବେଳକୁ । ସେଠୁ ତାକୁ ଜବରଦସ୍ତି ଆଣି ଘରେ ବନ୍ଦ କରି ରଖା ହୋଇଥିଲା ।

ଖ୍ରୀଷ୍ଟିୟାନ୍ ସମାଜରେ ବାଦନ୍ଦ ପଡ଼ିଯାଇ ଥିଲା । କିନ୍ତୁ ତା' ପରେ ଏଇ ଲୋକଟି,—ଯେ ଦୀପୁକୁ ପିଲାଦିନୁ ଜାଣିଥିଲା,—ଜାଣି ଶୁଣି ତା'କୁ ବାହା ହେବାକୁ ରାଜି ହେଲା,—ସବୁ କ୍ଷମା କରିଦେଇ—'

ଜୟନ୍ତୀ ଚୁପ ହୋଇ ବସି ରହିଥାଏ ।

କିନ୍ତୁ ମୋ ଆଖି ଆଗରେ ନାଚି ଯାଉଥାଏ ରୁକ୍ଷା, ଅଭିମାନିନୀ ମିସେସ୍ ନାୟାର୍‌ର ମୁହଁ । ବିତୃଷ୍ଣା,—କ୍ଷମାର ଆଘାତରେ ଫଣା ଟେକିଛି । ଦୟା ପାଉଥାନ୍ତା । କିନ୍ତୁ ସାଧାରଣ, ଅଯୋଗ୍ୟ ସ୍ୱାମୀର ଦାନ ସହିପାରେ ନାହିଁ ।

ଜୟନ୍ତୀ ଆଡ଼କୁ ଚାହିଁ ଗମ୍ଭୀର ହୋଇ କହିଲି—'ଅମଣିଷ ନାୟାର । କ୍ଷମା ବଦଳରେ ସେ ଆଉ କଣ ଆଶା କରିଥିଲା ? ଭଲ ପାଇବା ?'



# ମାନିନୀ

ବିଖ୍ୟାତ ଔପନ୍ୟାସିକ ଉଇଲିୟମ୍ ଫକ୍ନର୍ କହିଥିଲେ ଯେ ଗଳ୍ପଲେଖାର ଆଧାର ତ୍ରିବିଧ : ଅଙ୍ଗେ ନିଭେଇବା, ଆଖି ବୁଲେଇ ଦେଖିବା ଏବଂ କଳ୍ପନା କରିବା । କିନ୍ତୁ କହିଲେ ଯେ ଯେକୌଣସି କାରଣରୁ ଗୋଟିଏ ଦୁର୍ବଳ ପଡ଼ିଲେ ଅନ୍ୟମାନେ କ୍ଷତି ପୂରଣ କରିବା ପାଇଁ ବାହାରି ଆସନ୍ତି । ମୋର ମୋଟାମୋଟି ଧାରଣା ଯେ ଶ୍ରେଣୀ ଓ ଜୀବିକାର ସୀମିତ ପରିସର ମଧ୍ୟରେ ଥାଇ ମୋର କଳ୍ପନାକୁ ହିଁ ଅତ୍ୟଧିକ ପରିଶ୍ରମ କରିବାକୁ ପଡ଼ିଛି । କିନ୍ତୁ 'ମାନିନୀ' ସେହି ମୁଷ୍ଟିମେୟ ଗଳ୍ପମାନଙ୍କ ମଧ୍ୟରୁ ଗୋଟିଏ, ଯେଉଁଥିରେ ମୋର କଳ୍ପନାକୁ ରଙ୍ଗ ଲଗେଇବା, ସଜେଇବା, ସଜାଡ଼ିବା ଛଡ଼ା ଆଉ କିଛି କାମ କରିବାକୁ ପଡ଼ି ନାହିଁ । ଚାକିରିର ଆରମ୍ଭରେ ଆମେ ଯେତେବେଳେ ମାନ୍ଦ୍ରାଜରେ ଥିଲୁ, ମୋର 'ସୌଭାଗ୍ୟ'କୁ ମିଳିଥିଲା ପ୍ରକୃତରେ ସେମିତି ଗୋଟିଏ ଘର ଏବଂ ଘରର ମାଲିକ୍-ମାଲିକାଣୀ, ଯେଉଁମାନେ ମୋ ଥାଳୀରେ ଆଧାରଟିକୁ ପରିଷିଦେଇ ଯାଇଛନ୍ତି । ଅନେକ ଧନ୍ୟବାଦ । ଆଶା କରେ ଅନ୍ତତଃ ଜୀବନର ସନ୍ଧ୍ୟାରେ, ଅର୍ଥାତ୍ ତାତି କମିଗଲା ପରେ ତୁମେ ଦୁଇଜଣ ପରସ୍ପରକୁ ଭଲ ନ ପାଇଲେ ବି' ସବୁଠାରୁ ନିଜର ବୋଲି ମାନି ନେଇ ପାରିଥିବ । କ୍ଷମାର ପରାଭବ କାହିଁ କେଉଁ ପଛରେ ପଡ଼ି ରହିଥିବ, ହୁଏତ ତା'ର ସତ୍ତା ବୁଡ଼ି ଯାଇଥିବ ।

କିନ୍ତୁ ଆଜି ପଛକୁ ଅନେଇ ଦେଖିଲେ ମନେ ହୁଏ ମୁଁ କଣ ଶ୍ଳେଷପ୍ରବଣ ହେବାକୁ ଯାଇଁ ମିସେସ୍ ନାୟାରଙ୍କ ପ୍ରତି ଅବିଚାର କଲି ? ମୋ ସ୍ତ୍ରୀ ଜୟନ୍ତୀଙ୍କ ଆନୁକୂଲ୍ୟରେ ଯେଉଁ ସହାନୁଭୂତି ଗଢ଼ି ଉଠୁଥିଲା ତାଙ୍କ ପାଇଁ ତାକୁ ମୁଁ ଅଯଥାରେ ଗୋଟାଏ ମନସ୍ତାତ୍ତ୍ୱିକ ମୁଥ ମାରି ତଳେ ଗଡ଼େଇ ଦେଲି ? ଏଥିରୁ କଣ

ମୋର ସଂସ୍କାରଗତ ପୁରୁଷାହଂକାର ବୁଝା ପଡ଼ୁ ନାହିଁ ? ହୋଇଥିବ । କିନ୍ତୁ ଉଣାଅଧିକେ ମାନିବାକୁ ପଡ଼ିବ ଯେ କ୍ଷମାର ଦାନକୁ ସହଜେ ସହି ହୁଏ ନାହିଁ, ବିଶେଷତଃ ସେହିମାନଙ୍କ ପାଇଁ ଯେଉଁମାନେ ଆତ୍ମାଭିମାନକୁ ପରମସମ୍ପଦ ବୋଲି ମନେ କରନ୍ତି । ସ୍ଥଳ ବିଶେଷରେ ଆତ୍ମାଭିମାନ ଯଥାର୍ଥ କି ନୁହେଁ ତା'ର ବିଗ୍ଭର ଅବାନ୍ତର । ତେଣୁ ମିସେସ୍ ନାୟାରଙ୍କ ଜୀବନଟା ଯାଏ ତାଙ୍କ ସ୍ୱାମୀଙ୍କ ଦାନକୁ ନେଇ ବଞ୍ଚି ପାରିଲେ ନାହିଁ, ସ୍ୱାମୀଙ୍କୁ ଭଲ ପାଇ ପାରିଲେ ନାହିଁ, ଏଥିରେ ତାଙ୍କୁ ଦୋଷ ଦେବା କାହିଁକି ? ଅପର-ପକ୍ଷେ ମିଷ୍ଟର୍ ନାୟାର ବଦାନ୍ୟତାର ଊର୍ଦ୍ଧ୍ୱକୁ ଯାଇ ପାରିଲେ ନାହିଁ । ଅଧିକନ୍ତୁ ସୁସ୍-ନାମ୍ବାର ଶିକାର ହୋଇ ପତ୍ନୀପ୍ରେମକୁ ସହଜରେ ହେଉ ବା ଉତ୍କୁରରେ ହେଉ ଗଜୁରିବାକୁ ଦେଲେ ନାହିଁ, ଏଥିପାଇଁ ତାଙ୍କୁ ନିନ୍ଦା କରିବାକୁ କିଏ ମନା କରୁଛି ?

କ୍ଷମା କଥା ଛାଡ଼ନ୍ତୁ । କୃତଜ୍ଞତା ମାନେ ହିଁ ବିପଜ୍ଜନକ । କାରଣ କୃତଜ୍ଞର ମନରେ ଭୟ ହୁଏ—ମୁଁ ତଳକୁ ଖସିଗଲି କି ? ମୁଁ ସତେ କଣ ଉଧାର ଫେରାଇ ନେଇ ପାରିବି (ପ୍ରତିଶୋଧ ନେଇ ପାରିବି) ? ତେଣୁ ଉପକାରୀ 'ଭଲମଣିଷ'କୁ ମଧ୍ୟ ବେଳେ ବେଳେ କାନ୍ଦିବାକୁ ପଡ଼େ, ମୋତେ କାହିଁକି ଭଲ ପାଉ ନାହଁ ମୋର ଦୋଷ କଅଣ ବୋଲି ସେ ବୁଝିପାରେ ନାହିଁ । ମୋର ଉତ୍ତର ଜୀବନର ଗୋଟିଏ ଗଳ୍ପ "ମୁନୁ ପାଇଁ ଗପଟିଏ"ରେ ଏହି ଅଘଟଣ ଦେଖିବାକୁ ପାଇବେ । ବାସ୍ତବରେ ମୁଁ ମିସେସ୍ ନାୟାରଙ୍କୁ ତଥା ମୁନୁମାନଙ୍କୁ ଶ୍ରଦ୍ଧା କରେ ।

କଟକ

୧୮ ଜୁଲାଇ ୧୯୮୬



# ସରମାର ରୋମାନ୍ସ

ପୋଖରୀଟିକୁ ଲାଗି ଟିକିଏ ଛୋଟ ଫୁଲ ବଗିଚା । ତା' ସେ ପାଖକୁ ଛୋଟିଆ ତୋଟା,—ଆମ୍ବ, ପିଜୁଳି ଏମିତି ଜାତି ଜାତିକିଆ ଫଳଗଛ । ସ୍କୁଲର ଅଧା ଛୁଟିବେଳେ ଝିଅମାନେ ଦଳ ଦଳ ହୋଇ ବାହାରକୁ ଆସନ୍ତି । କେତେକ ବୟସ ଅନୁପାତରେ ଗମ୍ଭୀର । ପିଲାଳିଆମି ବିଶେଷ ଭଲ ଲାଗେ ନାହିଁ ତାଙ୍କୁ । ସେମାନେ ଦୁଇଟିକିଆ ହୋଇ ଗପ କରନ୍ତି ଅନେକ କଥା ଯାହାର ଗୋପନୀୟତା ଓ ଗମ୍ଭୀରତା ଝିଅ ମହଲରେ ବେଶୀ । ରୋମାନ୍ସ—ବିବାହ—ଆଦର୍ଶ ମଣିଷର କଥା ।

ଆଉ ଥୋକେ ସେ ସବୁଥିରୁ ଦୂରରେ । ବାହାର ଦୁନିଆର ସମ୍ପର୍କରେ ଆସି ନଥାନ୍ତି ବିଶେଷ । ତାଙ୍କ ପାଇଁ ଭାଇ ଭଉଣୀ, ବାପ ମା ଓ ବନ୍ଧୁପରିକୁ ଛାଡ଼ି ବାକୀ ଉପଭୋଗ କରିବାର ଜିନିଷ ହେଉଛି ଏ ସ୍କୁଲ ଘରର ଉପକରଣ, ଶିକ୍ଷୟିତ୍ରୀ, ସାଙ୍ଗସାଥୀ, ପୋଖରୀ ଓ ଫୁଲ ବଗିଚା । ପୁଣି ତା' ଛଡ଼ା ଅଛି ବରକୋଳି, ଘରୁ ଆଣିଥିବା ଖଟା ଆଚାର, କୌତୁକ ଓ ମନଖୋଲା ହସ !

ଅନ୍ୟମାନେ କେତେଜଣ 'ସିନିୟର' । ସମ୍ମାନସ୍ଥାନୀୟା । ଆଉ ବର୍ଷେ ଗଲେ ହୁଏତ ଶିକ୍ଷକ ହୋଇ ଆସିବେ । ସେମାନେ ମଧ୍ୟ ଗୋଟି ଗୋଟି ହୋଇ ବୁଲନ୍ତି । ଅଳ୍ପ କଥା କହନ୍ତି । ଓଠ ଚିପି ଗମ୍ଭୀର ହୋଇ ହସନ୍ତି । ପିଲାମାନଙ୍କୁ କୃତାର୍ଥ କରିବାର ଭଙ୍ଗୀରେ ମଝିରେ ମଝିରେ ତାଙ୍କ ସାଙ୍ଗରେ ମିଶିବାର ପଟୁତା ଦେଖାଇ ଥାଆନ୍ତି ।

···ସରମା—କେଉଁ ଶ୍ରେଣୀରେ ପଢ଼ିବ ସେ ? ତା'ର ବୟସ ଚଉଦ ପୂରି ପନ୍ଦର । ଗୋରା ଦେହ ଓ ଦେହରେ ମାଂସର ପ୍ରାଚୁର୍ଯ୍ୟ । ମୁହଁରେ ପ୍ରଧାନ ଆକର୍ଷଣ ଆଖି ଦୁଇଟି—ବେଶ୍ ବଡ଼ ଓ ଚଞ୍ଚଳ ।

ବାପା ବଡ଼ଲୋକ କହିଲେ ଚଳେ । କିନ୍ତୁ କୃତ୍ରିମ ବଡ଼ଲୋକ ଭିତରେ ବଢ଼ିବାକୁ ବିଶେଷ ସମୟ ପାଇ ନାହିଁ ସେ । କାରଣ ତାର ବାପା ହରବୁଦିନେ ରହନ୍ତି ବାହାରେ ତାଙ୍କର କାମର ଆବଶ୍ୟକତା ନେଇ । ତା'ର ମାଆ ତାକୁ ବଢ଼ାଇଛନ୍ତି

ଖୁବ୍ ଯତ୍ନରେ,—ସ୍ନେହ ଓ ତାଡ଼ନାର ସମନ୍ୱୟରେ—ଯେମିତିକ ସେ ଆଦର୍ଶ ଗୃହିଣୀ ହୋଇ ପାରିବ ।

ସେଥିଲାଗି ତାର ବଡ଼ଲୋକି ଜଣା ପଡ଼େନା । କିନ୍ତୁ ତାର ସ୍ୱଭାବଗତ କେତୋଟି ଜିନିଷ ତା'ର ମାଆ ଦବାଇ ପାରିନାହାନ୍ତି । ଗୋଟିଏ ହେଉଛି ତାର ସ୍ୱାଧୀନ ଓ ନିର୍ଭିକ ଭାଷା, ଯାହା ସ୍ଥାନ ବିଶେଷରେ କଟୁ ଓ ଅସଙ୍ଗତ ହୋଇଯାଏ,—ଓ ତା'ର କୌତୁହଳ ଓ ଆମୋଦର ଉଦ୍ଦାମତା, ଯାହା ବେଳେ ବେଳେ ଉଚ୍ଛୃଙ୍ଖଳ ହୋଇ ଉଠେ । ଏ ଦୁଇଟି ସେ ପାଇଛି ତାର ବାପାଙ୍କଠାରୁ । ତା'ଛଡ଼ା ଏମିତି ହେବାର କାରଣ କିଛି ହେଉଛି ତା'ର ପିଲାଦିନର ଅନୁଭୂତି । ଭାଇ ଭଉଣୀଙ୍କ ଭିତରେ ସବୁଠୁ ଗୋରୀ, ସବୁଠୁ ସୁସ୍ଥ ଓ ସବୁଠୁ ଚପଳ ହୋଇଥିବାରୁ ସେ ସବୁବେଳେ ପ୍ରଶଂସା ପାଇ ଆସିଛି । ଅଜାଣତରେ ତାର ମନ ଭିତରେ ଗୋଟିଏ ପ୍ରଭାବ ରହିଯାଇଛି ଯେ ତାର ନିର୍ଦ୍ଦିଷ୍ଟ ସୀମାବଦ୍ଧ ସମାଜ ଭିତରେ ସେ 'ଜଣେ',—ଯାହାକୁ ଏଡ଼ିଦେଇ ହେବ ନାହିଁ, ଯାହାର ମୂଲ୍ୟ ଅଛି ।

ପ୍ରଥମ ଆଳାପରେ ଲୋକେ ତାକୁ ଭଲ ନ ପାଇ ବସିଲେ ମଧ୍ୟ ଆକୃଷ୍ଟ ହୁଅନ୍ତି । ମନ ଭିତରେ ନେଇ ଯାଆନ୍ତି ଗୋଟିଏ ଛବିର ଆଭାସ, ଯାହା ସହଜରେ ଲିଭିଯାଏ ନାହିଁ । ସେଥିରେ ଥାଏ କେତୋଟି ଉଜ୍ଜ୍ୱଳ ରଙ୍ଗ,—ତାର ଚଞ୍ଚଳ, ପ୍ରଖର ଦୃଷ୍ଟି, ସୁସ୍ଥ ଓ ସୁନ୍ଦର ଦେହର ପ୍ରକାଶ, ମନଖୋଲା ହସ ଓ ପ୍ରଗଲ୍ଭ ମୁଖରତା ।

ଜୀବନର ପ୍ରଥମ ପାହାଚ ଡେଇଁ ଆସିଛି ସେ । ଭବିଷ୍ୟତ ପାଇଁ ଆଶଙ୍କା ନାହିଁ । ସେକଥା ଭାବିବା ପାଇଁ ବେଳ ନାହିଁ ତାର । ରୋମାନ୍ସ, ବିବାହ ଏସବୁ ବିଷୟ ଚର୍ଚ୍ଚା କରିବାର ବହୁ ଦୂରରେ ସେ—କାରଣ ସେଥିରେ ଥାଏ ଆଉ ଗୋଟିଏ ପୁରୁଷର କଥା । ସେ ତା'ର ମାନେ ବୁଝେନା,—ପସନ୍ଦ କରେନା । ନିଜକୁ ନିଜ ସଂସାର ଭିତରେ ଖୁସି କରିବାର ସାମଗ୍ରୀ କଣ ଯଥେଷ୍ଟ ନାହିଁ ଯେ ତାର ଦରକାର ଆଉ କେଉଁ ଗୋଟିଏ ପୁରୁଷର ସାହଚର୍ଯ୍ୟ ! ଅବଜ୍ଞାରେ ତା'ର ଭୃରୁ କୁଞ୍ଚିତ ହୋଇ-ଯାଏ, ଯେତେବେଳେ ସେ ଦେଖେ ତା'ର ସାଙ୍ଗମାନେ ଗୋପନ ଲଜ୍ଜାର ଭଙ୍ଗୀ ଦେଖାଇ ସେସବୁ ବିଷୟରେ ଚର୍ଚ୍ଚା କରନ୍ତି । ସେ ତାଙ୍କଠାରୁ ଖସି ପଳାଇ ଆସେ ଅନ୍ୟ ଦଳକୁ ଯେଉଁଠି ଖାଲି ଅଛି ସରଳ ହସ, ଖୁସି ଓ ଖେଳ ।

କିନ୍ତୁ ସେ ଦ୍ୱିତୀୟ ଦଳରେ ନିଜକୁ ହଜାଇ ଦେଇ ପାରେନା କାରଣ ତାର ନିଜତ୍ୱର ଗର୍ବ ତାକୁ ଆଣିଦିଏ ନେତୃତ୍ୱ । ଶେଷକୁ ସମସ୍ତଙ୍କ ମୁହଁରେ ଆସେ—'ହଇମା, ତୁ ତ [illegible], ନ [illegible]'

...କିନ୍ତୁ ଏଇ କେତେଦିନ ହେଲ ସେ କେମିତି ବେଳେ ବେଳେ ଗମ୍ଭୀର ହୋଇ ଉଠୁଛି । ଜଣକ କଥା ତା'ର ମନରେ ଆସୁଛି ଥରକୁ ଥର ।

ସେ ତାର ଖେଳର ସାଥୀ ନୁହେଁ । ତେବେ ବନ୍ଧୁ କହିଲେ ବି ଠିକ୍ ହେବ ନାହିଁ । ସେ ତା'ର ସମବୟସୀ ନୁହେଁ ଯାହା ପାଖରେ ମନର କଥା ଦି'ପଦ କହି-ହେବ । ତା ଛଡ଼ା ସରମା ଏପର୍ଯ୍ୟନ୍ତ କୌଣସି ଗୋପନ କଥାର ବୋଝ ଅନୁଭବ କରିନାହିଁ,—ଯାହାକୁ ସେ ଅନ୍ୟଠାରେ ଅଜାଡ଼ି ଦେଇ ହାଲୁକା ବୋଧ କରିବ । ତା ଆଖିରେ ସବୁ ଜିନିଷ ସାଦାସିଧା, ସରଳ । ସମସ୍ୟା ଛିଣ୍ଡାଇ କରିବାର ପ୍ରବୃତ୍ତି ବା ଆବଶ୍ୟକତା ତାର ଆସିନାହିଁ ଆଜିଯାଏଁ ।

ତଥାପି ସେ କାହିଁକି ଭାବୁଛି ଏତେ ସେହି ଜଣକ କଥା ? ବୋଧହୁଏ ସେ ଅସାଧାରଣ,—ସେଇଥିଲାଗି ? ନା ତା'ଠି ପ୍ରକୃତରେ କିଛି ଅଛି ଯାହା ତାର ଭିତର ମନକୁ ଛୁଇଁ ପାରିଛି ?

ମୀରା ଅପା । ଆଶ୍ଚର୍ଯ୍ୟ ଲୋକଟିଏ । ବୟସରେ ବେଶ୍ ବଡ଼ । ସୁନ୍ଦର ବୋଲି କହିହେବ ନାହିଁ । ଅପେକ୍ଷାକୃତ ଡେଙ୍ଗା । ପଢ଼ାପଢ଼ିରେ ବିଶେଷ ଦକ୍ଷତା ନାହିଁ । ଦୁଇବର୍ଷ ସିନିୟର୍ ଥିଲା । ଫେଲ ହୋଇ ତା ସାଙ୍ଗରେ ପଢ଼ୁଛି । ଖେଳାଖେଳିରେ ବି ମନ ନାହିଁ । ଅନ୍ୟମାନଙ୍କ ପରି ହସ ଖୁସିରେ ନିଜକୁ ହଜାଇ ଦିଏନା,—ଚୁପଚାପ ରହିବାକୁ ଭଲ ପାଏ ।

ତଥାପି ସେ କାହିଁକି, ତାଠାରୁ ଏତେ ଭିନ୍ନ ସରମା ପରି ଝିଅ ସାଙ୍ଗରେ ମିଶିବାରେ ଏତେ ଆନନ୍ଦ ପାଉଛି ? ତାକୁ ଦେଖିଲେ ମୀରା ଅପାର ତନ୍ଦ୍ରାକୁଳ ଆଖି ଯୋଡ଼ିକ କାହିଁକି ଆହୁରି ନରମ ହୋଇ ଉଠେ ? ବହୁତ ଦିନ ହଜିଥିବା ଜିନିଷକୁ ପାଇବାର କରୁଣ ଆନନ୍ଦ କାହିଁକି ସେ ଆଖିରେ ଦେଖାଦିଏ ହଠାତ୍ ?

ସରମା ନିଜକୁ ଏକୁଟିଆ କରିନିଏ ବେଳେ ବେଳେ ଏଇ କଥା ଭାବିବା ପାଇଁ । କିନ୍ତୁ ପୋଖରୀର ଥିର ପାଣିରେ, ଓଦା ପତରର ବାସନାରେ, ଦୂରରୁ ଶୁଭୁଥିବା ରେଣୁର ଉଚ୍ଚ ହସରେ, ତା'ର ଭାବନାର ଖିଅ ହଜିଯାଏ । ସମାଧାନ ଆସନ୍ତାକାଲିର ଦାୟିତ୍ୱରେ ପଡ଼ିରହେ ।

କିନ୍ତୁ ପ୍ରଶ୍ନର ଉତ୍ତର ନ ପାଇଲେ ମଧ୍ୟ ସରମା ଖୁସି ହୋଇ ଉଠେ,—ଗୋଟାଏ ନୂଆ କିଛି ପାଇଛି ବୋଲି । ତା'ର କିଶୋରୀ ମନରେ ଏଇ ନୂତନ ଆଗନ୍ତୁକର ଛବିଟିକୁ ସେ ଓଲଟ ପାଲଟ କରି ଦେଖିବାକୁ ଚାହେଁ । ଭଲ ପାଇବାର ଆଗ୍ରହଠାରୁ କୌତୁହଳର ମାତ୍ରା ସେଥିରେ ବେଶୀ—ଶିଶୁର ନୂଆ ଖେଳଣା ପାଇଲା

...ସେଦିନ ନିମନ୍ତ୍ରଣ ଥିଲା ମୀରି ଅପା ଘରେ । ମୀରି ଅପାର କେତେଗୁଡ଼ିଏ ସାନ ଭାଇ ଭଉଣୀ । ନୀରି ଓ ଧୀରି ବିବାହିତା—ବାକି ସମସ୍ତେ ଶ୍ରେଷ୍ଠ ଶ୍ରେଷ୍ଠ ।

ଉତ୍ସବର ଆଡ଼ମ୍ବର । ହସ, ଗୀତ, ଥଟ୍ଟାରେ ଘର ପୂରି ଉଠୁଥାଏ । ନୀରି ଓ ଧୀରି ଗୀତ ଗାଇଲେ ଓ ତା' ପରେ ସରମା । ମୀରିର ମାଆ ଆଧୁନିକା । ନିଜେ ଝିଅମାନଙ୍କର ଗୀତ ବିଗ୍ରହ ଦେଉଥାନ୍ତି ଓ ଶୁଣୁଥାନ୍ତି । ସରମା ଗୀତ ଗାଇ ସାରିଲା ପରେ ସେ କହିଲେ—'ବାଃ, ସରମା ଏତେ ସୁନ୍ଦର ଗାଇପାରେ ବୋଲି ମୁଁ ଜାଣି ନ ଥିଲି—।'

ସମସ୍ତେ ସରମାକୁ ଧନ୍ୟବାଦ ଦେଲେ, ହାତ ମିଳାଇ, ଥଟ୍ଟା କରି ଓ କିଶୋରୀ ସୁଲଭ ଚପଳତା ନେଇ ।

କିନ୍ତୁ ପ୍ରଶଂସା କଲା ନାହିଁ ଜଣେ । ସେ ମୀରି ଅପା ।

ସରମା ଆଡ଼କୁ ଅନାଇ ସେ ଖାଲି ହସିଦେଲା । ଗମ୍ଭୀର ହୋଇ—ଗୁରୁତ୍ୱର ଆଭାସ ଦେଖାଇ ।

ପ୍ରଶଂସାର ଉଚ୍ଛ୍ୱାସ ପରେ ଏଇ ନୀରବ ହସର ନରମ ପରଶ ସରମାକୁ ବିବ୍ରତ କରିଦେଲା । ସେ ଲାଜେଇ ଗଲା । ମୀରି ଅପା । ଅଦ୍ଭୁତ ଲୋକଟିଏ । ଚପଳତା କଅଣ ସେ ଜାଣେନା ? ଏମିତ ବଡ଼ ମଣିଷଙ୍କ ପରି ସେ ହୁଏ କାହିଁକି ?

ଉତ୍ସବର କୋଳାହଳ ଥମିଗଲା ପରେ ସରମା ପଚାରିଲା—'ମୀରି ଅପା, ତୁମେ ଗୀତ ଗାଇଲ ନାହିଁ କାହିଁକି ?'

ମୀରି ପ୍ରକୃତରେ ଗୀତ ଗାଇ ନଥିଲା ସେଦିନ—ଯଦିଓ ତା'ର ଗୀତ ଗ୍ରହୀ-ମହଲରେ ପ୍ରସିଦ୍ଧ । ତା'କୁ ଗୀତ ଗାଇବାକୁ କେହି ଅନୁରୋଧ ବି କରି ନଥିଲେ । ସେ ଯେମିତି ନିହାତି ଜଣାଶୁଣା, ପୁରୁଣା କଥା ।

ତା' ଛଡ଼ା ତା' ଗୀତରେ ଅଛି ଗୋଟିଏ ନିବିଡ଼ କରୁଣତା,—ଯାହା ମନେ ପକାଏ ସନେଇ ଆସୁଥିବା ସନ୍ଧ୍ୟାର କଥା, ବାଟ ପାଉ ନଥିବା ବର୍ଷାର କଥା, ନ ଫେରି ଆସିବାର ନିଶ୍ଚିତ ନିଷ୍ଠୁରତାର କଥା । ସେଥିପାଇଁ ଏଇ ମୁଖର, ଚପଳ ବାୟୁମଣ୍ଡଳ ଶୋଭା ପାଏନା ।

ମୀରି ସରମା ଆଡ଼କୁ ଅନେଇ ଖୁବ୍ ଆସ୍ତେ କହିଲା—'ମୁଁ ଗୀତ ବୋଲିଲେ ତୁ କଣ ସତରେ ଖୁସି ହେଉ ?'

ସରମା କଣ କହିବ କିଛି ଭାବି ପାରିଲା ନାହିଁ । ସାଧାରଣ ପ୍ରଶ୍ନରେ ଏଇ ଅସ୍ୱାଭାବିକ ଗମ୍ଭୀରତାର ଇଙ୍ଗିତ ସେ ବୁଝି ପାରିଲା ନାହିଁ । ନୀରବତାରୁ ରକ୍ଷା ପାଇବା ପାଇଁ ସେ ହସି ପକାଇଲା ।

ହଠାତ୍ ସେ ଦେଖିଲା ମୀରା ଅପାର ମୁହଁ ଫିକା ପଡ଼ି ଯାଇଛି । ସେ କଣ ଯେମିତି ଚାହିଁଥିଲା—ପାଇଲା ନାହିଁ । ତା'ର ସ୍ୱାଭାବିକ କରୁଣ ଆଖିରେ ନିରାଶାର ଛାଇ ।

ମୀରା ଚାଲିଯିବାକୁ ଚେଷ୍ଟା କଲା । କିନ୍ତୁ ସରମା ତାକୁ ଟାଣି ଆଣିଲା ହାତ ଧରି । ତା ମୁହଁକୁ ଚାହିଁ ଡାକିଲା—'ମୀରା ଅପା !'

ସେଇ ପଦୁଟିଏ କଥା । ସବୁ ଯେମିତି ସମାଧାନ ହୋଇଗଲା । ସରମା ଖାଲି ଚାହିଁଥିଲା ଗୋଟିଏ ଜଟିଳ ଅବସ୍ଥାକୁ ସଜାଡ଼ି ଦେବାକୁ । କିନ୍ତୁ ସେଥିକିରେ ମୀରା ଅପା ବୋଧହୁଏ ପାଇଲା ଆଶ୍ୱାସନା । ତା'ର ଆଖି ଦୁଇଟି କହିବାକୁ ଚାହୁଁଥିଲା—'ମୋର ଦୁଃଖ ତୁ ବୁଝି ପାରିନୁ, କିନ୍ତୁ ଆଘାତ ଦେବାକୁ ଚାହୁଁନା । ସେଇତ ମୋର ଯଥେଷ୍ଟ ।'

ମୀରା ସରମାର ଦୁଇ ହାତକୁ ନିଜ ହାତରେ ମିଶାଇ ରଖିଲା ବହୁତ ସମୟ । ତା'ପରେ ହଠାତ୍ କହିଲା—'ମୁଁ ଆସେ ।'

ସରମା ତା'ର ଯିବା ବାଟକୁ ଚାହିଁ ରହିଲା ଆଶ୍ଚର୍ଯ୍ୟ ଓ କୌତୂହଳ ନେଇ । ତା'ର ମନଟା କେମିତି ନରମ ହୋଇ ଆସିଥିଲା ମୀରା ଅପା ପାଇଁ ।

ସେଇଦିନ ରାତିରେ ସରମାକୁ ନିଦ ହେଲା ନାହିଁ କେତେବେଳଯାଏଁ । ସେ ଖାଲି ଭାବିଲା ମୀରା ଅପାର କଥା । ସେ ତା'ଠୁ କ'ଣ ଚାହେଁ ? ସହାନୁଭୂତି, ସ୍ନେହ ନା ଆଉ କଅଣ ? ତା'କୁ ଲାଗିଲା ସେ ଯେମିତି ବଡ଼ ହୋଇ ଯାଇଛି । ସେ ଆଉ ଚପଳା କୁମାରୀ ନୁହେଁ ଯେ ଖାଲି ହସ ଓ ଖୁସି ବାଣ୍ଟି ପାରେ । ସେ ବଡ଼ ମଣିଷଙ୍କ ପରି ଆଶ୍ରୟ ମଧ୍ୟ ଦେଇପାରେ,—କ୍ଷତବିକ୍ଷତ ହୃଦୟକୁ ସାନ୍ତ୍ୱନା ଦେଇପାରେ । ନାରୀତ୍ୱର ଗର୍ବରେ ସେ ଫୁଲି ଉଠିଲା । ତା'ର ମନେ ହେଲା ସେ ଖାଲି କଅଁଳ ଫୁଲର ଆମୋଦ ନୁହେଁ—ସେ ମଧ୍ୟ ଝଙ୍କାଳିଆ ବରଗଛର ଛାଇ ।

କିନ୍ତୁ ମୀରା ଅପାର ଦୁଃଖ କେଉଁଠି ? ସେ କାହିଁକି ତା'ର ଭଉଣୀ ନୀରା ଓ ଧୀରାଙ୍କଠାରୁ ଏତେ ଅଲଗା ? ସେମାନେ ବିବାହିତା । କିନ୍ତୁ ବଡ଼ ଭଉଣୀ ମୀରା ଅପାର ବାହାଘର ହୋଇ ନାହିଁ । କାହିଁକି ? ତା'କୁ କଣ କେହି ପସନ୍ଦ କରି ନାହାନ୍ତି ? ନା ସେ କାହାକୁ ପସନ୍ଦ କରିନାହିଁ ? ସରମା ବିଶ୍ୱାସ କରିପାରିଲା ନାହିଁ

ଯେ ବାହାଘର ପରି ଗୋଟିଏ ସାଧାରଣ, ଗୌଣ, ସାମାଜିକ ଅନୁଷ୍ଠାନ ମଣିଷର ମନକୁ ଆଚ୍ଛନ୍ନ କରିପାରେ । ଭାବିଲା—ନା, କାରଣ ବୋଧହୁଏ ଆଉ କିଛି ।

କିନ୍ତୁ ସେଇ ଗୋଟିଏ କଥା ସେ ଦୋହରାଇ ପଚାରୁଥାଏ ନିଜକୁ ଓ ଖୁସି ହେଉଥାଏ । ମୀରା ଅପା ତା'ଠାରୁ କିଛି ଚାହେଁ,—ନାରୀର ଦାନ, ସ୍ନେହର ଆଶ୍ରୟ । ସେ ଖୁସି ହେଲା । ଭାବିଲା ତା'ର କୈଶୋର କଟିଯାଇଛି । ସେ ନାରୀ ।

...ମୀରା ଅପା ଆଜିକାଲି ତା' ପାଖକୁ ଆସୁନାହିଁ ବିଶେଷ । ଦୈବାତ୍ ଏକାଠି ପଡ଼ିଲେ କିଛି ନା କିଛି ବାହାନା ଦେଖାଇ ଖସି ପଳାଇ ଯାଉଛି । ଦିନେ ହାଫ୍—ଟାଇମ୍‌ରେ ସରମା ନିଜେ ଗଲା ତା' ପାଖକୁ ଜାଣିଶୁଣି କିନ୍ତୁ ମୀରା ଅପାର ମୁହଁକୁ ଚାହିଁ କଣ ଭାବି ଫେରି ଆସିଲା । ତା'କୁ ଲାଗିଲା—ମୀରା ଅପା ତା'ର ସମବୟସୀ ନୁହେଁ,—ତା'ଠୁ ଯଥେଷ୍ଟ ବଡ଼ । ତା'ର କଡ଼େଇ ହୋଇ ରହିବାରେ କିଛି ବିଶେଷ କାରଣ ଥାଇପାରେ । ସେଥିରେ ସେ ବାଧା ଦେବ କାହିଁକି ?

ସରମା କ୍ଷୁଣ୍ଣ ହେଲା ନାହିଁ । କିନ୍ତୁ ସାମାନ୍ୟ ଆହତ ହେଲା । ସେ ନିଜକୁ ମନେ ମନେ ଯେଉଁ ନାରୀତ୍ୱର ଆସନରେ ବସାଇଥିଲା, ତାହା ମିଛ ବୋଲି ମନେ ହେଲା...

...କିଛିଦିନ ପରେ । ସ୍କୁଲରେ ପୁରସ୍କାର ବିତରଣୀ ସଭା । ସବୁ ଝିଅଙ୍କ ମନରେ ଉତ୍ସାହ ଓ ଆବେଗ । ଅନ୍ତତଃ ସବୁ ଦିନଠାରୁ ଅଧିକା କିଛି । ଆଲୁଅ, ଫୁଲ, ବେଶଭୂଷାର ଆଡ଼ମ୍ବର, ବଡ଼ ଅତିଥି, ଶିକ୍ଷୟିତ୍ରୀଙ୍କ ମୁହଁରେ ଲାଗି ରହିଥିବା ନାଟକୀୟ ହସ ଏ ସବୁ କାହାକୁ ଭଲ ନ ଲାଗିବ ଭଲା ?

ସରମାର ହାତରେ ପୁରସ୍କାରର ବୋଝ । ଚକଚକିଆ ନୂଆ ବହି ଇଂରେଜି ଓ ଓଡ଼ିଆ,—ନେଳିଆ ଶିବନରେ ବନ୍ଧା । ତା' ଭିତରେ ଲେଖାଥିବ କୁମାରୀ ସରମା ଦେବୀଙ୍କୁ...ଇତ୍ୟାଦି । ସରମା ବହି ଭିତର ଖୋଲି ଦେଖିବାର ଲୋଭ ସମ୍ଭାଳି ରଖିଲା । ଏତେଗୁଡ଼ାଏ ଖୁସି ଏମିତି ଯାଗରେ ଧରି ରଖି ପାରିବନି ବୋଧହୁଏ ।

ଅଭିନନ୍ଦନ...କରତାଳି । ଯେଉଁମାନେ ଈର୍ଷାରେ ସଡ଼ି ଯାଉଥିଲେ ସେମାନେ ମଧ୍ୟ ପାଖକୁ ଆସି ପଚାରି ବସିଲେ—'ଦେଖେ—ଦେଖେ—ସରମା ତୋ' ବହିଗୁଡ଼ା—ଏ ବହିଟାତ ପୁରୁଣା ନିଶ୍ଚିତ,—ମୋ ଭାଇ ପାଇଥିଲେ । ଆଉ ଏଇଟା...

ସରମାର ଧୈର୍ଯ୍ୟ ରହେ ନାହିଁ । ପଳାଇ ଆସେ ସେଠୁ ।

ହଠାତ୍ ସରମାର ମନେ ହେଲା ସେ ମୀରା ଅପା ପାଖକୁ ଯିବ । ନିଶ୍ଚୟ ଯିବ । ଲଜ୍ଜା ବା କୁଣ୍ଠାର କୌଣସି କାରଣ ସେ ଦେଖି ପାରିଲା ନାହିଁ ଆଜି । ସେ ଭାବିଲା

ମୀଗ୍ୱ ଅପାର ଅଭିନନ୍ଦନ ତା'ର ପ୍ରାପ୍ୟ । ମୀଗ୍ୱ ଅପା କେତେ ଦୁର୍ବଳ । ସେ ତା'କୁ ଚୁହେଁ । ବଜାଯ୍ୟର ଉଲ୍ଲାସରେ ଫୁଲି ଉଠିଲି ସେ । ତା'ର ମନେ ହୋଲା ସେ ବହୁତ ପାଇଛି—ଏଥର ତା'ର ଦେବାର ପାଳି ଓ ଯେଉଁ ଦାନ ପାଇ ସବୁଠାରୁ ଖୁସି ହେବ ମୀଗ୍ୱ ଅପା । ସେ ନିଶ୍ଚୟ ତାକୁ ଖୁସି କରିବ । ମୀଗ୍ୱ ଅପା ତା'କୁ ଚୁହେଁ ।

ସରମା ହଲରୁ ବାହାରି ଆସି ମୀଗ୍ୱ ଅପାକୁ ଖୋଜିବାକୁ ଲାଗିଲା । ତା'ର ଚଞ୍ଚଳ ଆଖି ଖୋଜି ବୁଲିଲା ସ୍କୁଲ ହତାର ଚାରି ପାଖେ । କିନ୍ତୁ ମୀଗ୍ୱ ଅପାର ଦେଖା ନାହିଁ । ବିରକ୍ତ ଓ ନିରାଶ ହୋଇ ସେ ଫେରି ଆସୁଥିଲା । ଏଇ ସମୟରେ ଦେଖିଲା ମୀଗ୍ୱ ଅପା ପୋଖରୀର ସେ ପାଖରେ ସେଇ ପୁରୁଣା ଗଛ ମୂଳଟାରେ ଏକୁଟିଆ ବସିଛି ଓ ଗୋଟାଏ ବହି ଧରି ପଢ଼ୁଛି । ପାଖରେ କେହି ନାହାନ୍ତି । ଦୂରରେ ଗୋଟାଏ ମାଳୀ ପାଣି ଦେଉଛି ଫୁଲ ଗଛରେ···।

ସରମା ଆଶ୍ଚର୍ଯ୍ୟ ହେଲା ନାହିଁ । ମୀଗ୍ୱ ଅପାର ଏମିତି ଏକୁଟିଆ ବସି ରହିବାର ଅଭ୍ୟାସ । ସରମା ପାଖେଇ ଆସିଲା, ଧୀର, କୁଣ୍ଠିତ ଗତିରେ । ମୀଗ୍ୱ ଅପାକୁ ସେ ଜାଣିଛି ।

ମୀଗ୍ୱ ବହି ଉପରୁ ଆଖି ଉଠାଇ ଅନାଇଲା ତା' ଆଡ଼କୁ । ତାର ଦୃଷ୍ଟିରେ ବିସ୍ମୟ ବା ଆବେଗ ନାହିଁ ! ଅଳ୍ପ ହସି ସେ ଖାଲି କହିଲା—'କିଏ, ସରମା ? ବସ' ।

ସରମା ତା' ପାଖରେ ବସି ପଡ଼ିଲା । ତା'ପରେ ସେ ସରମା ଆଡ଼କୁ କିଛି ସମୟ ଅନାଇ ରହି କହିଲା—'ମୁଁ ଜାଣେ ତୁ ଆସିବୁ ମୋ ପାଖକୁ—' ।

ଚପଳା ସରମା ଶିଶୁର ଅବୁଝା କୌତୂହଳ ଦେଇ ପଚାରିଲା 'କାହିଁକି ?'

ମୀଗ୍ୱଠାରୁ କିଛି ଉତ୍ତର ପାଇଲା ନାହିଁ । ସନ୍ଧ୍ୟା ହେବାକୁ ବାକି ଅଛି । ଶୀତ ଦିନର ସନ୍ଧ୍ୟା । ପବନରେ ଉଦ୍ଦାମତା ନଥାଏ—ଥାଏ ଆବେଶ । ବୁଡ଼ି ଯାଉଥିବା ସୂର୍ଯ୍ୟର ସ୍ୱାଭାବିକ ନାଲିଆ କିରଣରେ କିଏ ଯେମିତି ନାଲି ବୋଳି ଦେଇଛି ବେଶି କରି । କୋଳାହଳମୟ ଉତ୍ସବର ସମାରୋହ ନାହିଁ । ଅଛି ନିଭୃତ ମିଳନର ଇଙ୍ଗିତ । କେହି ଜଣେ ଆସିବ ଏକୁଟିଆ ହୋଇ । ତା'ରି ପାଇଁ ଏଇ ନୀରବ ଶୃଙ୍ଗାର ।

ସରମାର ଚଞ୍ଚଳ ଆଖି ଓ ମୀଗ୍ୱର ଭସାଣିଆ କରୁଣ ଆଖି ପରସ୍ପରକୁ ଚାହିଁ ରହିଥିଲେ, କ'ଣ କହିବେ ବୋଲି ।

···ତା' ପରେ, ମୀଗ୍ୱ ସରମାର ଦୁଇହାତକୁ ଧରି ଟାଣି ଆଣିଲା ତା' ପାଖକୁ ଖୁବ୍ ଆସ୍ତେ । ସରମାର କୋଳରେ ବହିଗୁଡ଼ା ତଳେ ପଡ଼ିଗଲା···

...ତା' ପରେ—ହଠାତ୍,...ଅନୁଚ୍ଚା କୁମାରୀ ପାଇଲା ଦୁଇଟି ଓଠର ଉଷ୍ମ ସ୍ପର୍ଶ । ଆକସ୍ମିକ ।

ସେ ଚମକି ଆସିଲା ପଛକୁ । ତା'ର ଲଜ୍ଜାବୋଳା ମୁହଁର ରଙ୍ଗ ବୋଧହୁଏ ହୋଇ ଯାଇଥିଲା ସେଇ ସନ୍ଧ୍ୟାର ସବୁଠାରୁ ସୁନ୍ଦର ବିଭବ ।

ବନ୍ଧୁ ସେଇଠି ପଡ଼ିରହିଲା । ସରମା ଉଠିପଡ଼ି ପଳାଇ ଆସିଲା ସ୍କୁଲ ଭିତରକୁ, ଯେଉଁଠି ଅଛି କୋଳାହଳ,—ସାଧାରଣ, ସହଜ ମଣିଷର ମାମୁଲି ଆନନ୍ଦ...।

× × ×

ସେଇ ଗୋଟିଏ ମୁହୂର୍ତ୍ତ । ଆଜି ବହୁତ ଦିନ ପରେ ସରମାର ମନେ ପଡ଼ୁଛି ତା'ର କଥା ।

'ଶୋଇବାକୁ ଯିବା ପୂର୍ବରୁ ସ୍ୱାମୀ ଅଜିତ୍ ବାବୁ କହିଲେ—ଆଚ୍ଛା ତୁମ ସାଙ୍ଗରେ ମୀରା ମହାପାତ୍ର ବୋଲି କିଏ ପଢୁଥିଲା କି ?—ଯିଏ ସେ ଭଲ ଗୀତ ଗାଉଥିଲା ମ ।'

'ହଁ—ହଁ—କଣ ହେଲା କି ?'

'ତୁମେ ଜାଣି ନ ? ମୁଁ ଶୁଣିଛି ସେ କଲେଜର ପ୍ରୌଢ଼ ଇତିହାସ ଅଧ୍ୟାପକ ନାରଣବାବୁଙ୍କୁ ବାହା ହେଉଛି—। ବୟସର ତଫାତ୍ ୨୫ ବର୍ଷରୁ କମ୍ ହେବନି ବୋଧହୁଏ । ଗ୍ରେଟ୍—ଦୁନିଆରେ ଅସାଧାରଣ ଜିନିଷର ଅଭାବ ନାହିଁ'—ଏହା କହି ଅଜିତ୍ ବାବୁ ଅନ୍ୟ କଥା ପକାଇଲେ...

କିନ୍ତୁ ସରମା ଏତେ ଚଞ୍ଚଳ କଥାଟିକୁ ଆଡ଼େଇ ଦେଇ ପାରିଲା ନାହିଁ । ମୀରା ଅପା ତାହାହେଲେ ବାହା ହେଲା ! ଲଭ୍ ମ୍ୟାରେଜ୍ ? କେଜାଣି । ଯାହା ହେଉ କୂଳରେ ପହଞ୍ଚି ଯାଇଛି । ଏଥର ବୋଧହୁଏ ଟିକିଏ ବଦଳି ଯିବ । ହସ୍ତାନ୍ତ ସାମାଜିକ ନାଟ୍ୟ ଉତ୍ତାପ ଆଣେ ନା, ଅନୁଭୂତିକୁ ଚହଲାଇ ଦିଏ ନା । ଖାଲି ଗୋଟାଏ ଅନୁଷ୍ଠାନ । ନିଶାଣ—ସିନ୍ଦୂର, ଉଦ୍ଦେଶ୍ୟ—ବଂଶରକ୍ଷା । ସରମା ହସି ପକାଇଲା । ଭାବପ୍ରବଣ ମୀରା ଅପା । କାରୁଣ୍ୟର ପ୍ରତିମା । ସେ ବର୍ତ୍ତମାନ ହେବ କଅଣ ?

ଅସାଧାରଣ । ଅସାଧାରଣ କ'ଣ ମୀରା ଅପାର ଏଇ ବିବାହ ? ସରମାର ମନେ ପଡ଼ିଲା ସେ ଦିନର ସେଇ ମୁହୂର୍ତ୍ତର କଥା । ତା'ଠୁ ବେଶୀ ଅସାଧାରଣ ଆଉ କଣ ହୋଇପାରେ ?

ସରମା ଭାବି ଚାଲିଥାଏ । ଆଜି ସେ ପ୍ରକୃତରେ ବଡ଼ ହୋଇ ଯାଇଛି । ସତ ସତିକିଆ ନାରୀ ହୋଇଛି । ପାଖରେ ସ୍ୱାମୀ । ସେ ପାଖକୁ ଦୁଇଟି ପିଲା । ଆଜି

ବୁଝିବାରେ ସନ୍ଦେହ ନାହିଁ ଯେ ମୀସ୍ ଅପାର ଭଲପାଇବା ପଛରେ ଥିଲା ବିଫଳ ଯୌବନର ଆତ୍ମପ୍ରକାଶ। ସରମାଠାରେ ସେ ପାଇଥିଲା ଅତୃପ୍ତ କାମନାର କ୍ଷତି ପୂରଣ। ସ୍ୱାଭାବିକ କ୍ଷୁଧାର ଅସ୍ୱାଭାବିକ ରୂପ।

ତଥାପି ତା'ର ମନେ ହେଲା ଯେ ସେଇ ଅଧ୍ୟାୟଟି ସୁନ୍ଦର ଥିଲା, ଓ ତା' ଭିତରେ ସେଇ ଗୋଟିଏ ମୁହୂର୍ତ୍ତି,—ଯେଉଁଥିରେ ଥିଲା ଭଲ ପାଇବାରେ ଦେହର ପ୍ରଥମ ଲଜ୍ଜା ଓ ଉଲ୍ଲାସ।

ସ୍ୱାମୀର ସଂସାର ଧର୍ମ, କାମ ଓ ଅର୍ଥର ତରଣୀ। ସେଥିରେ ଅଛି ଶାନ୍ତି, ସନ୍ତୋଷ—ସବୁ। କିନ୍ତୁ ରୋମାନ୍ସ ? ରୋମାନ୍ସ କଣ ସେ ଜାଣେନା। କିନ୍ତୁ ମୀସ୍ ଅପାର ବିକୃତ ଭଲ ପାଇବାରେ ବୋଧହୁଏ ଥିଲା ତାହାର ଇଙ୍ଗିତ ଟିକିଏ। ସରମା ଗୁହାଳ ଅତୀତକୁ ଆଉ ଟିକିଏ ନଠେଇ କରି ଦେଖନ୍ତା।

ନା—ନା—ଏ ସବୁ ଭାବିବା ଉଚିତ ନୁହେଁ। ସରମା କଡ଼ ଲେଉଟାଇ ଶୋଇବାକୁ ହେଲା।

କିନ୍ତୁ ତା'ର କାନରେ ବାଜିଲା ଦୂରରୁ ଅସ୍ପଷ୍ଟ ଗୀତ। ସେ ବୋଧହୁଏ ମୀସ୍ ଅପାର କରୁଣ ଆହ୍ୱାନ। ମୀସ୍ ଅପା ବାହା ହୋଇ ନାହିଁ। ସେ ବାହାହୋଇ ପାରିବ ନାହିଁ। ଖାଲି ଗୁହାଳିବା ପାଇଁ; କାନ୍ଦିବା ତା'ର ଜନ୍ମ। ସେ ଏବେ ବି ଗୁହେଁ ତାର ସରମାକୁ।

ଏକା ନିଃଶ୍ୱାସରେ ସରମା ପୁଣି ସବୁ ଭୁଲି ଯିବାକୁ ବସିଲା। କାହିଁକି ଏ ବିକୃତ, ଅସଙ୍ଗତ ଭାବନା ? ହାତ ବଢ଼ାଇ ଅନୁଭବ କଲା ବର୍ତ୍ତମାନର ବାସ୍ତବ ସତ୍ୟ। ସ୍ୱାମୀର ଦେହ। ସ୍ଥୂଳ ସ୍ପର୍ଶ ଓ ତାତିଲା ନିଃଶ୍ୱାସ···।



# ଚରମାର ରୋମାନ୍ସ

ଏଇ ରୋମାନ୍ସ ଜିନଷଟି କଅଣ ? ଭଲ ପାଇବାର ଗୃଶପାଖରେ ଏଇ କୁହୁଡ଼ି, ଏଇ କାରୁଣ୍ୟ, ଏଇ ଚନ୍ଦ୍ରମଣ୍ଡଳର ଉଦ୍ଦେଶ୍ୟ କଅଣ ? ସହଜ ଉତ୍ତର ମିଳ ଯାଇପାରେ : ଆହା ଏତକ ବୁଝି ପାରୁନାହାନ୍ତ ? ଭଲପାଇବା ଅର୍ଥାତ୍ ଆଦାମ୍-ଇଭଙ୍କ ପ୍ରାକୃତକ ମୌଳକ (କହବାକୁ ଗଲେ ସ୍ଥୂଳ) ଆକର୍ଷଣକୁ ଜଗାଇବା ଏବଂ ବଞ୍ଚାଇ ରଖିବାର ଏଇ ତ ଏକମାତ୍ର ଉପାୟ ! ମିଛ, କନ୍ତୁ ଆବଶ୍ୟକ । ସଭ୍ୟତାର ଅନ୍ୟତମ ଦାନ, କବତା ସମେତ ।

ବାସ୍ତବତାର ଲେଖକ ହୋଇ ମୁଁ ଏଭଳ ଭାବାର୍ଥକୁ ଭୁଲ୍ ବୋଲ କହ ପାରବ ନାହିଁ । କନ୍ତୁ କେବଳ ଏତକ କହବାକୁ ଗୃହେଁ ଯେ ରୋମାନ୍ସ ଯେଉଁଥିପାଇଁ ଆସିଥାଉ ନା କାହିଁକ, ସେ ସବୁବେଳେ ରାଧାଙ୍କ ଲଳତା ହୋଇ ରହବାକୁ ଗୃହେଁ ନାହିଁ । ବେଳେ ବେଳେ ରାଧାଙ୍କୁ ପଛରେ ପକେଇ ନଜେ ମତ୍ତ ହେବାକୁ ଗୃହେଁ, ଶ୍ରୀକୃଷ୍ଣ କେତେବେଳୁ ଅପେକ୍ଷା କର ରହଛନ୍ତ, ସେକଥା ଭୁଲଯାଏ । ମନେ ହୁଏ ଯେ ସେ ପ୍ରେମର ଅବା ପ୍ରେମପିଣ୍ଡ ଦେହର ବୋଲକରା ନୁହେଁ । ସେ ମୁକ୍ତ, ସ୍ୱାଧୀନ !

ଏଇ ସ୍ୱାଧୀନତାଟିକ କଣ ନଜ ଗୁଣରେ ସୁନ୍ଦର ନୁହେଁ ? ଏଣୁ କର ଅଦେହୀ ପ୍ଲାଟୋନକ୍ ପ୍ରେମକୁ ମଧ୍ୟ ମଣିଷ ଜୀବନର ସତକଥା (ହୁଏତ ଦୁର୍ଲଭ) ବୋଲ ସ୍ୱୀକାର କର ତାକୁ ଆଙ୍କି ବସିଲେ କଣ ବାସ୍ତବତାର ଅବମାନନା ହେବ ? ଆହୁର ଦୂରକୁ ଯାଇ, ଯୌନତାର କାହିଁ କେତେ ପଛରେ ପଡ଼ିଥିବା କେଉଁ ମଢ଼ାର ଟିକ ଝିଅଟି ପ୍ରତ ଉଚତରୁ ଅଧିକ ସ୍ନେହ, କେଉଁ ଦାଆଦର [illegible] ଅଧିକ ଦରଦ, ଇତ୍ୟାଦ ଇତ୍ୟାଦ

ରୋମାଣ୍ଟିକ୍ 'ପ୍ରେମ'କୁ ନିଷ୍ପ୍ରାଣ ଭାବପ୍ରବଣତା ଅବା ସେକ୍ସର ପ୍ରଚ୍ଛନ୍ନ ପରିପ୍ରକାଶ ବୋଲି କହିଲେ କେଉଁ ବାହାଦୁରି ଅଛି ? ମୋର ନିବେଦନ ଯେ ବରଂ ତା'ର ସୂକ୍ଷ୍ମ ସୁଂଦର ଅନୁଭବକୁ ଅନୁଧ୍ୟାନ କର । ବାଙ୍କଚାତୁରି ହିଦହିଏ ଧ୍ୱସିଦେଇ ନିଜକୁ ଏକ ବିଶିଷ୍ଟ ଆନନ୍ଦରୁ ବଞ୍ଚିତ କର ନାହିଁ ।

ଆହୁରି ଦୂରକୁ ଯାଅ । କେଉଁଠି ଲେଖା ହୋଇଛି ଉକ୍ତ ସ୍ୱାଧୀନତା ଅର୍ଥାତ୍ ସହଜ ପ୍ରବୃତ୍ତିର ସୁଦୂରପ୍ରସାରୀ ସୁନ୍ଦରତା କେବଳ ପୁରୁଷ-ସ୍ତ୍ରୀ ସମ୍ପର୍କରେ ବାନ୍ଧି ହୋଇ ରହିବ ? ଅବଶ୍ୟ ସମାଜ ସଂସ୍କାରର ଅନୁଗାମିନୀ ହୋଇ ନିଜେ ଦରମା ତା'ର ସ୍ୱତନ୍ତ୍ର ସୁନ୍ଦରତାକୁ ଚିହ୍ନି ପାରି ନାହିଁ, 'ବିକୃତି'ର ବିଶ୍ଳେଷଣ କରିବାକୁ ପଛେଇ ନାହିଁ, କିନ୍ତୁ ଯେଉଁ ଅସ୍ପଷ୍ଟ ଗୀତ ଶୁଣୁଛି, ସ୍ୱାମୀର ସ୍ଥୂଳ ଦେହ ଓ ତାଠାରି ନିଶ୍ୱାସଟିକୁ କାଟି ଦେଇ ଦୂରରୁ ଦୂରକୁ···ତାକୁ ହସି ଉଡେଇ ଦେବା ଉଚିତ ହେବ କି ?

ମୋର ଦୁଃଖ ଯେ ଏହି ଗଳ୍ପଟି ପଢ଼ିଲା ପରେ କେତେକ ବଂଧୁ ମୋତେ ଭୁଲ କାରଣରୁ ପ୍ରଶଂସା କରିଛନ୍ତି ଏବଂ ଏବେ ମଧ୍ୟ କରନ୍ତି । ଯେ ଇଏ ଓଡ଼ିଆ ସାହିତ୍ୟରେ ଏକ କ୍ରାନ୍ତିକାରୀ ପଦକ୍ଷେପ, ଯେହେତୁ ମୁଁ ଏଥିରେ ଲେସ୍‌ବିଆନିଜମ୍ (Lesbiansim) ନାମକ ଏକ ନିଷିଦ୍ଧ ସପର୍କର ଅବତାରଣା କରିଛି, ଦୁଃସାହସୀ ଅତ୍ୟାଧୁନିକତାର ପରିଚୟ ଦେଇଛି, ଇତ୍ୟାଦି । କେହି ଥରେ ହେଲେ କହି ନ ଥାଆନ୍ତେ ଯେ ନୂଆ ଲେଖକଟିକୁ ରୋମାଣ୍ଟିସିଜିମ୍ ବଳେଇ ପଡ଼ିଛି ?

କଟକ

୧୯ଜୁଲାଇ୧୯୮୬



# ଅପମାନ

ଅବିନାଶ ବାବୁ ଓରଫ୍ ବଡ଼ ସାହେବ ଲେଖି ଚାଲିଥିଲେ । ଝରକା ଭିତର ଦେଇ ଖରା ପଡ଼ୁଥାଏ ଟେବୁଲ ଉପରେ ଫାଳିକିଆ ହୋଇ । ଲମ୍ବା ଲମ୍ବା ଆଙ୍ଗୁଳି ଭିତରେ ଚୋଖିଆ କଲମର ତୀକ୍ଷ୍ଣ ମୁନ ଚର ଚର ହୋଇ କାଗଜକୁ ସ୍ପର୍ଶି ଚାଲିଥାଏ । ତୀକ୍ଷ୍ଣ, ଧାରୁଆ ମନର ବିଦ୍ରୂପ ସତେ ଯେମିତି ଅଜାଡ଼ି ହୋଇ ପଡ଼ୁଥାଏ ଅନର୍ଗଳ ହୋଇ ।

ଅବିନାଶ ବାବୁ ଲେଖୁଥାନ୍ତି ଅଫିସର ଫାଇଲ ଉପରେ । ନିବିଷ୍ଟ ଚାହାଣୀ । ଦକ୍ଷତା,—ସେଥିରେ ସନ୍ଦେହ ନାହିଁ । କିନ୍ତୁ ସେହି ଦକ୍ଷତା ଯେ ଆଉ କାହାର ନାହିଁ, ସେହି ଭାବଟି ଫୁଟାଇବାକୁ ହେବ ସହଜ ଓ ସ୍ୱଚ୍ଛନ୍ଦ ଭାଷାରେ ।

ଅବିନାଶ ବାବୁଙ୍କର ଭ୍ରୁ କୁଞ୍ଚିତ ହୋଇ ଯାଉଛି ଓ ଲେଖନୀରୁ ଝରି ପଡୁଛି ବିଷାକ୍ତ ମନ୍ତବ୍ୟ,—ଆକ୍ଷେପ, ବିଦ୍ରୂପ ଓ ବିରକ୍ତି । "ଅସଲ ଜିନିଷ କେହି ବୁଝିନାହାନ୍ତି । ଅଫିସରେ ଯେତେକ ସମସ୍ତେ ଅଳସୁଆ ଓ ନିର୍ବୋଧ । ବୁଢ଼ା ଅଫିସରଙ୍କର କାମରେ ଆଗ୍ରହ ନାହିଁ ଓ ଟୋକା ଅଫିସରଙ୍କୁ କାମ ଜଣା ନାହିଁ ।"

ଟେବୁଲଯାକ ଖରା ବନ୍ଦ ହୋଇ ଗଲାଣି । ଏଇଥର ଶେଷ । ଶେଷଥର ପାଇଁ ଗୋଟାଏ ଲମ୍ବା ଦସ୍ତଖତ ଟାଣି ଅବିନାଶ ବାବୁ ଫାଇଲ ବନ୍ଦ କରିଦେଲେ ଓ ପାଇପ୍‌ଟାକୁ ହାତରେ ଧରି ମୁହଁରେ ଲଗାଇଲେ ନିର୍ବିକାର ଓ ନିର୍ଭୀକ ଭଙ୍ଗୀରେ । କାମରେ ସନ୍ତୋଷ । ନିଜତ୍ୱର ବଳିଷ୍ଠ ଆତ୍ମ ପ୍ରକାଶ,—ଅନ୍ୟର ହେୟତା ଓ ଗୌଣତାରେ ।

ଝରକା ସେପାଖକୁ ଅନାଇଲେ । ମଣିଷ ଆସୁଛନ୍ତି ଯାଉଛନ୍ତି । ମଝିରେ ମଝିରେ ଗୋଟାଏ କାର୍, ଘୋଡ଼ା ଗାଡ଼ି । କିନ୍ତୁ ବଡ଼ ସାହେବଙ୍କ ଆଖିରେ ଖାଲି ଦିଶିଗଲା ବାଟଚଲା ମଣିଷର ଚାଲି । ଗୋଟାଏ ଯୋଡ଼ାଏ ମଣିଷର ଯିବା ଆସିବା ଦେଖୁଁ ଦେଖୁଁ ତାଙ୍କ କଳ୍ପନାରେ ନାଚିଲା ଅଗଣିତ ମଳମୁଣ୍ଡିଆ ମଣିଷର ଯାତ୍ରା । ଶୋଭାଯାତ୍ରା ନୁହେଁ—ପିମ୍ପୁଡ଼ି ଧାର । ଜଣକ ପଛକୁ ଜଣେ,—ଭାଷାହୀନ, ଭାବହୀନ,

କିନ୍ତୁ ଚଞ୍ଚଳ । ଅବିନାଶ ବାବୁଙ୍କର ମନେ ପଡ଼ିଲା ତାଙ୍କ ଅଫିସର ଦେଢ଼ ହଜାର କର୍ମଚାରୀଙ୍କ ଦଳ ଟିଫିନ ଘଣ୍ଟା ସରିଲା ପରେ କେମିତି ଗଳି ଘର୍ଷି ଚାଲି ଆସୁଥାନ୍ତି ଗୋଟିକ ପଛରେ ଗୋଟିଏ, ବଡ଼ ସାହେବଙ୍କୁ ଦେଖି,—କାଳେ ମିଳିଟିଏ ଧ'ମିଳାଇ୍ ଡେର ହୋଇଥିବ ପରା । ବାଡ଼ି ଉଞ୍ଚେଇଲେ 'ଟିମ୍' କୁକୁର ଯେମିତି ଲାଙ୍ଗୁଳ ଜାକି ପଳାଇଯାଏ ।

ଡାମନାସି—ରବିସ୍ (Rubbish) ! କାହିଁ,—ଏପର୍ଯ୍ୟନ୍ତ ତ କାହାର ସାହସ ହୋଇନାହିଁ ମୁହଁ ଖୋଲି ପ୍ରତିବାଦ କରିବାକୁ, ଭାଷାରେ ଜୋର୍, କଣ୍ଠରେ ତେଜ ଦେଇ । ତଳ ଅଫିସରମାନେ ଆସନ୍ତି ସୁପାରିଶ କରିବାକୁ,—ଅବଶ୍ୟ ତା'ର ଡେର କରିବା ଉଚିତ ନଥିଲା,—କିନ୍ତୁ ତଥାପି—ଘଟଣା ଚକ୍ରରେ···ଇତ୍ୟାଦି, ଇତ୍ୟାଦି । ଡାମଇଟ୍ । ଅଫିସରେ ଡିସିପ୍ଲିନ୍ ରଖିବାକୁ ହେବ । ଗୋଟାଏ ମଣିଷର ସେଣ୍ଟିମେଣ୍ଟ—କଣ ମୂଲ୍ୟ ସେଥିରେ ? ଅଫିସ ସରକାରୀ କଳ, ଯନ୍ତ୍ର ଚାଳକ ସେ । ଯନ୍ତ୍ରଚାଳକ—ଲୌହ ଦାନବର ମାଲିକ । ଅବିନାଶ ବାବୁ ହସି ଉଠିଲେ ନିଜର ସେହି ରୂପଟିକୁ ଭାବି । ହାତରେ ଶିରାଗୁଡ଼ା ଫୁଟି ଉଠୁଛି,—ପତଳା ଶୁଖିଲା ହାତ । କିନ୍ତୁ ସେଥିରେ ଶକ୍ତି ଅଛି, କାରଣ ସେ କଲମ ଧରେ । ସେହି କଲମ ଗାରରେ ଦେଢ଼ ହଜାର ଲୋକଙ୍କୁ ହସେଇ, କାନ୍ଦେଇ ହୁଏ । ଦାନବ ବଜ୍ର ମୁଷ୍ଟିରେ ପ୍ରହାର କରେନା । ନାଲି ଫିତାରେ ଗୁଡ଼େଇ ଗୁଡ଼େଇ ତଣ୍ଟି ଚିପିଦିଏ । ମୁହଁ ହୋଇଯାଏ ନେଳିଆ ଓ ତା'ପରେ ଶେତା । ସବୁ ରକ୍ତ ଚପୁଡ଼ି ହୋଇ ଯାଇ ଖାଲି ରହେ ମଣିଷର ଛାଇ ।

ନିଜ ଭାବନାରେ ଅବିନାଶ ବାବୁ ଟିକିଏ ଚମକି ଉଠିଲେ—ଏଁ—ଏହି କ'ଣ କ୍ରୂରତା,—ସ୍ୟାଡ଼ିଜମ୍ (sadism) ? ନା,—ନା—ଏ ଖାଲି ଗୋଟାଏ କଠୋରତାର କଳ୍ପନା, ଓ ସେଇ କଠୋରତା ଦରକାର ଅଫିସ—ସମାଜର ସ୍ୱାସ୍ଥ୍ୟ ପାଇଁ ।

ଏଇ କଥା ଭାବୁ ଭାବୁ ହଠାତ୍ ତାଙ୍କ ମନରେ ଉଙ୍କିମାରି ଦେଖା ଦେଲା ଜଣକର ରୂପ,—ମିଃ ହ୍ୱାଇଟ୍—ଡ଼ିପାର୍ଟମେଣ୍ଟର ବଡ଼ ସାହେବ ଥିଲେ ଯେତେବେଳେ ସେ ଚାକିରୀରେ ଯୋଗ ଦେଇଥିଲେ । ଅଫିସ ପରିଦର୍ଶନ କରିବାକୁ ଆସି ଡକାଇ ପଠାଇଲେ ତାଙ୍କୁ । କାଠଗଡ଼ାରେ ଆସାମୀକୁ ପଚାରିଲା ପରି କହିଲେ—

'ତୁମର କେତେ ବର୍ଷ ଚାକିରୀ ହେଲଣି ?'

'ପାଞ୍ଚ ବର୍ଷ ।'

'ଆଉ କେତେ ବର୍ଷ ଚାକିରୀ କରିବାକୁ ଇଚ୍ଛା ?'

ନିରୁତ୍ତର ।

'ଦେଖ—ଯଦି ଚାକିରିରେ ରହିବାକୁ ଇଚ୍ଛା, ତାହାହେଲେ ଆଉ ଟିକିଏ କମ୍ ନିର୍ବୋଧ ହେବାକୁ ଚେଷ୍ଟା କର । ମୁଣ୍ଡରେ ମଗଜ ଖଟାଇ ଫାଇଲ ପଢ଼ ଓ ବୁଝ । ଏଇଥର ପାଇଁ କ୍ଷମା ଦେଲି । କିନ୍ତୁ ଯା' ପରେ ସାବଧାନ । ...ଆଚ୍ଛା, ବର୍ତ୍ତମାନ ତୁମେ ଯାଇପାର ।'

ପଞ୍ଚମ ଜର୍ଜଙ୍କ ଫଟୋ ତଳେ ବଡ଼ ଅଫିସ ଘଣ୍ଟା ଥୁଆ ହୋଇଥିଲା । ସେ ବି ଯେମିତି ଟିକ୍ ଟିକ୍ କରି ଅଣ୍ଡା କରୁଥିଲା—'ହଁ, ବର୍ତ୍ତମାନ ତୁମେ ଯାଇପାର ।'

ରୁମ୍‌ରୁ ବାହାରି ଆସି ଅବିନାଶ ବାବୁ ଭାବିଲେ ବର୍ତ୍ତମାନ ଇସ୍ତଫା ଦେଇ ଦେବେ । କଲେଜର କୃତୀ ଛାତ୍ର । ଡିବେଟିଂରେ, ରଚନା ଲେଖା ପ୍ରତିଯୋଗିତାରେ ସବୁବେଳେ ପ୍ରଥମ । ତାଙ୍କୁ ପୁଣି କୁହାଗଲା 'ନିର୍ବୋଧ !'

'ନିର୍ବୋଧ !' 'ନିର୍ବୋଧ !!' ଇଚ୍ଛା ହେଲା ଯାଇ ସାହେବକୁ ଡାକିଆଣି ପଚାରିବାକୁ—କ୍ୟାଣ୍ଟ, ହେଗେଲଙ୍କ ବିଷୟରେ ପଦେ ଅଧେ, ମାର୍କସଙ୍କ ବିଷୟରେ କିଛି । ହୁଏତ କିଛି ଜାଣିଥିବ, କିନ୍ତୁ ଗୁଡ଼େଇ ତୁଡ଼େଇ ପଚାରିଲେ ଭିତର, ଗୂଢ଼ ଜିନିଷ ବୁଝାଇ ପାରିବ ନାହିଁ । ଖୁବ୍ କମ୍ ଲୋକ ବୁଝାଇ ପାରିବେ । କିନ୍ତୁ ସେଥିପାଇଁ ସେ ପ୍ରଶଂସା ପାଇଛନ୍ତି କେତେଥର । ତଥାପି ସେ ନିର୍ବୋଧ ! ଫାଇଲର ଗଧ କାମ, ଯେଉଁଥିରେ ବୁଦ୍ଧି ଲୋଡ଼ା ହୁଏ ନାହିଁ,—ସେଥିରେ କେଉଁଠି ଟିକିଏ ଏପାଖ ସେପାଖ ହୋଇଗଲା,—ଯେଉଁଥିରେ କିଛି ଯାଏ ଆସେ ନାହିଁ,—ସେଇ ହେଲା ତାଙ୍କ ନିର୍ବୋଧତାର ପରିଚାୟକ !

ଚାକିରିରେ ପଶିଥିଲେ ଉତ୍ସାହ, ଆଗ୍ରହ ନେଇ । ଭାବିଥିଲେ ଏଇ ହେଉଛି ସଫଳ କଲେଜ ଜୀବନର ସମାନ୍ୟ୍ୟ ଗତି, ଯେଉଁଥିରେ ନିରୋଳା ଉଦ୍ଦେଶ୍ୟହୀନ ବୁଦ୍ଧିର ସମ୍ମାନ ଦିଆଯାଏ । କିନ୍ତୁ ଏବେ ତାଙ୍କୁ ଲାଗିଲା, ସେ ସବୁ ମିଛ । ଏଠିକାର ମାପ କାଠି ଅଲଗା । ଏଠି ଦରକାର ବେପାରୀ ବୁଦ୍ଧି, ମାମୁଲି, ଗୌଣ ବିଷୟ ନେଇ ଘଣ୍ଟା ଚକଟା ଓ ଗଧ ଖଟଣି । ଚାକିରି ପ୍ରତି ଆସିଲା ଘୃଣା,—ନିବିଡ଼ ଘୃଣା ।

କିନ୍ତୁ ଇସ୍ତଫା ଦେବା ହେଲା ନାହିଁ । ସେହି ଘୃଣାରୁ ଆସିଲା ଦୃଢ଼ତା ଓ ଦୃଢ଼ତାରୁ ଶକ୍ତି । କାମ କରିବାର ଶକ୍ତି,—ନିଜର ପ୍ରଭୁତ୍ୱ ଦେଖାଇବାର ଶକ୍ତି । ଆଜି ତାଙ୍କୁ ଅଫିସ କାମ ଭଲ ଲାଗେ । ସେଥିରୁ ଶାନ୍ତି ଓ ସୁଖ ମିଳେ କି ନାହିଁ, ତା' ସେ କେବେହେଲେ ଭାବି ନାହାନ୍ତି । କିନ୍ତୁ ତା'ର ଭିତର ଦେଇ ଫୁଟି ଉଠିଛି

ଗୋଟିଏ ନୂଆ ବ୍ୟକ୍ତିତ୍ୱର ରୂପ, ଯାହାକୁ ସେ ଅନୁଭବ କରିବାକୁ ଚାହାନ୍ତି ପ୍ରତି ମୁହୂର୍ତ୍ତରେ ।

ଆଜି ଘୃଣା ମନେ ନାହିଁ । ଋଜୁତା ମାନିବାକୁ ନାରାଜ । କିନ୍ତୁ ଶିରରେ ଶିରରେ ଅନୁଭବ କରିହେଉଛି ଶକ୍ତି,—ଟାଣୁଆ ଶୃଙ୍ଖଳ ଓ ନିଦା । ତା'ର ଉପାଦାନ ବାଛିବାକୁ ବେଳ ନାହିଁ, ଇଚ୍ଛା ନାହିଁ । ସରକାରୀ କାମ ଖେଳଘର ନୁହେଁ ।

ହ୍ୱାଇଟର ମୁହଁର ଛବି ପୋଛି ଦେଇ ପରେ ସେ ହାତଟାକୁ ବୁଲାଇ ଆଣିଲେ ଶୂନ୍ୟରେ । କଅଣ ପିଲାଦିନର କଥା । ପିଲାଳିଆ ଭାବନା । ଘଣ୍ଟାକୁ ଅନେଇଲେ । ବେଳ ହୋଇଗଲାଣି,—ଅଫିସ ଯିବାକୁ ପଡ଼ିବ । ଚଉକି ଛାଡ଼ି ଘର ଭିତରକୁ ମୁହେଁଇଲେ ଓ ପାଇପ୍‌କୁ ଟାଣିବାକୁ ଲାଗିଲେ ଘନ ଘନ ହୋଇ···

···'ବଡ଼ ସାହେବ ଖାଲି ଅଛନ୍ତି ?'

'ହିଁ କଣ ଦରକାର ଅଛି ?' ସୁନେଲି ଜରିଧଆ ବ୍ୟାଜ୍ ପିନ୍ଧି, ଲମ୍ବା ଦରପାକଲା ନଣକୁ ସାଉଁଳେଇ ରୋନେଲାଲ ପଚାରିଲା । ରୋନେଲାଲକୁ ସମସ୍ତେ ଭାବିବାକୁ ଚେଷ୍ଟା କରନ୍ତି ଜଣେ ସାଧାରଣ ଚପରାଶି ବୋଲି । କିନ୍ତୁ ପାରନ୍ତି ନାହିଁ, ଯେତେବେଳେ ମନେ ପଡ଼େ ଯେ ଦିନର ବେଶି ସମୟ ସାହେବ ତାର ମୁହଁ ଦେଖନ୍ତି ଓ ତା' କଥା ଶୁଣିଲି ବେଳେ ବିଶେଷ ବିରକ୍ତ ହୁଅନ୍ତି ନାହିଁ ।

'ରାମ ପ୍ରସାଦ ରାୟ—ପ୍ରଥମ ବିଭାଗ କିରାଣୀ'—ଏତକ କାଗଜ ଖଣ୍ଡିକରେ ଲେଖି ଆଗନ୍ତୁକ ସାମାନ୍ୟ ଦୃଢ଼ତାର ଭଙ୍ଗୀରେ କହିଲା—'ମୋର ପର୍ସନାଲ କାମ ଅଛି ।'

'ହୁଁ—ସାହେବଙ୍କୁ ପଚାରେ' କହି ଚପରାଶି କାଗଜ ନେଇ ଭିତରକୁ ଚାଲିଗଲା ଓ କିଛି ସମୟ ପରେ ଆସି କହିଲା—

"ଅସିପାର ଏଇକ୍ଷଣି"

ଆଗରେ ବଡ଼ ସାହେବ । ବଙ୍କା ଓଠରେ ହସ ଓ ଗ୍ରେଟ ଗ୍ରେଟ ଆଖି ଦୁଇଟିରେ ଶାସନର ମୁନିଆ ଚାହାଣୀ ।

କଣ କହିବ । ଭାବିଥିଲା କହିବ କେତେ କଥା,—ନିଜର ଦାବୀ, ଶୃଙ୍ଖଳାର ନୀତି ଓ ଶାସକର ଅବିଚାର ବିଷୟରେ ପଦେ ଅଧେ । କିନ୍ତୁ କହିଲା ଏତିକି—'ଆଜ୍ଞା, ମୋ ନା ଆର୍. ପି. ରାୟ । ମୋ ବାପାଙ୍କୁ ବୋଧହୁଏ ଚିହ୍ନିଥିବେ,—ସେ ଡି. ଏସ୍. ପି ଥିଲେ ବହୁତ ଦିନ,—ଏସ୍. ପି. ରାୟ । ମୋର ବଡ଼ଭାଇ ଏଇ ଅଫିସରେ—'

'ଅବାନ୍ତର କଥା ମୁଁ ଶୁଣିବାକୁ ଚାହେଁ ନାହିଁ । କଣ କହିବାର ଅଛି ଶୀଘ୍ର କହ ।'

ରାମ ପ୍ରସାଦର ମୁହଁ ଲାଲ୍ ହୋଇ ଉଠିଲାଣି । ସେ କହିଲା—'ଆପଣ ସେ ଦିନ ଅର୍ଡ଼ର ଦେଲେ ଯେ ମୋର କ୍ୟାରେକ୍ଟର ରୋଲରେ ଲେଖା ହେବାକୁ—ଯେ ମୁଁ କାମରେ ଅବହେଳା କରେ—'

'ହିଁ-ହିଁ-ହୋଇଥିବ । ସେଥିରେ କହିବାର ଅଛି କଅଣ ?'

'ଡେପୁଟି ସାହେବ ଲେଖିଥିଲେ ଯେ ମୁଁ ଜାଣିଶୁଣି ଅବହେଳା କରିନାହିଁ ।'

'ଡେପୁଟି ସାହେବ କ'ଣ କହିଥିଲେ ନ କହିଥିଲେ ତା' ତୁମର ଜାଣିବା ଦରକାର ନାହିଁ । କିନ୍ତୁ ମୁଁ ଜାଣିବାକୁ ଚାହେଁ ତୁମେ ତୁମର ଉପରିସ୍ଥ ଅଫିସରଙ୍କର ଅନୁମତି ନେଇଛ ?'

'ହିଁ—ମୁଁ—ମୁଁ—କିନ୍ତୁ ଲିଖିତ...'

ମୁଁ ଆଉ କିଛି ଶୁଣିବାକୁ ଚାହେଁ ନା । ମୋର ଅର୍ଡର୍ କାଏମ୍ ରହିବ ।'

'କିନ୍ତୁ କ୍ୟାରେକ୍ଟର ରୋଲ୍—'

'ଗେଟ୍ ଆଉଟ୍—ଆଇ ସେ—ମୋର ସମୟ ନଷ୍ଟ କରନାହିଁ ।'

ରାମ ପ୍ରସାଦର ଆଖି ଦୁଇଟି ମୁହୂର୍ତ୍ତକ ପାଇଁ ଜଳି ଉଠିଲା । କିନ୍ତୁ ତା' ପରେ ମୁହଁ ଫେରାଇ ସେ ବାହାରିଗଲା ଘର ଭିତରୁ । ଗ୍ରେଣନ୍ ଲାଲର ବଜ୍ରପ୍ରଭରି 'ହୁଁ' ବି ତା' କାନରେ ପହଞ୍ଚି ପାରିଲା ନାହିଁ ।

ସେଇ ଦିନ ସନ୍ଧ୍ୟାବେଳେ ଅବିନାଶ ବାବୁଙ୍କର ଲମ୍ବା ଓଲ୍ଡ୍‌ସ ମୋବାଇଲ୍ ଗାଡ଼ିଟି ଗ୍ୟାରେଜ୍‌ରୁ ବାହାରିଗଲା ବେଳେ, ରାମ ପସାଦ ଅନାଇ ରହିଥିଲା ଫାଟକ ମାଝରେ । ସ୍କୁଲ ବେଳର ସହଜ ପ୍ରବୃତ୍ତି ମନେ ପଡ଼ିଗଲା,—ତଳୁ ଢେଲା ଉଠାଇ ଫିଙ୍ଗିଲା ସେଇ ବର୍ବଟ ଜନ୍ତୁ ଉପରକୁ । ତା' ପରେ ଆସିଲା ଅବସାଦ । ଭାବିଲା—ଏ ଅପମାନର କଣ ପ୍ରତିକାର ନାହିଁ ? ସାତବର୍ଷର ଅଧ୍ୟବସାୟ ଓ ପରିଶ୍ରମ ପରେ କ୍ୟାରେକ୍ଟର ରୋଲ୍‌ରେ ଗୋଟାଏ କଳାଦାଗ, ବିନା କାରଣରେ, ଖାଲି ବଡ଼ ସାହେବର ଗୋଟାଏ ଦୁଷ୍ଟ ଖିଆଲ୍‌ରେ... । ଆଉ ଭାବି ପାରିଲା ନାହିଁ । ତଳେ ପଡ଼ିଥିବା ଢେଲା ଖଣ୍ଡିକ ମୂର୍ତ୍ତିମନ୍ତ ଅଭିମାନ ହୋଇ ଅନାଇ ରହିଲା ତା' ଆଡ଼କୁ... ।

ଗାଡ଼ି ଭିତରେ ନିଜର ଲମ୍ବା ଦେହଟାକୁ ଆଉଜାଇ ଦେଇ ଅବିନାଶ ବାବୁ ଚାଲି ହୋଇଥିବା ଦେଖାଇ [illegible] ଚାହିଁଥିଲେ ।

ଆଜି ଯେମିତି ଦେହ ଭିତରେ ଖାଁଣି ଖାଁଣି ଆଳସ୍ୟ ଓ ବିତୃଷ୍ଣା ।

ଅଫିସ ଚାଲୁଛି—ଚାଲିଥିବ । ଠିକ୍ ବାଟରେ ଚାଲୁଛି ତାଙ୍କର ଯୋଗୁଁ । କିନ୍ତୁ ଚଳେଇବା ଲୋକର ହାତ ବୋଧହୁଏ ଯୋଡ଼େଇ ଆସିଲାଣି ଚାବୁକ୍ ମାର ଧର । ବର୍ତ୍ତମାନ ଦରକାର ଟିକିଏ ବିଶ୍ରାମ । ଛୁଟି ନେଇ ଘରେ ବସିବା ବିଶ୍ରାମ ନୁହେଁ । ପ୍ରକୃତ ମନର ବିଶ୍ରାମ । ଯେଉଁଥିରେ ଠିକ୍ ଭାବରେ ଚାଲିବାରେ ଓ ଚଳାଇବାର ତାଡ଼ନା ନଥିବ ।

ଘରେ ସ୍ତ୍ରୀ ଓ ଯୋଡ଼ିଏ ଝିଅ । ମାର୍ଜିତ ଓ ଭଦ୍ର । ବାପାଙ୍କୁ ଯଥୋଚିତ ସମ୍ମାନ ଓ ଅଭ୍ୟର୍ଥନା ଦିଅନ୍ତି ଅଫିସରୁ ଫେରିଲା ବେଳେ । କିନ୍ତୁ ସେ ପ୍ରକୃତିରେ ଯେମିତି ଥାଏ ସେଇ 'ଠିକ୍' ଭାବରେ ବ୍ୟବହାର କରିବାର ସଂସ୍କାର ।

ଭିତର ମନର କବାଟ ଖୋଲି ଉଛୁଳା ସୁଅ ବାହାରି ଆସନ୍ତା କି !—ହେଉ ପଚିଛି ସେ ଗୋଳିଆ କାଦୁଅ ପାଣି । ମନେ ପଡ଼ିଲା ପିଲା ଦିନର ଗୋଟିଏ ଦୃଶ୍ୟ । ଲତା ସାଙ୍ଗରେ ଦେହର ସେଇ ପ୍ରଥମ ସମ୍ଭୋଗ, ଯେତେବେଳେ ସମସ୍ତଙ୍କ ଧାରଣା ଯେ ସେ ଲତାକୁ ପାଠ ପଢ଼ାଉଛନ୍ତି । ସମାଜକୁ ଆଖି ମାରି ସେଇ ଗୁପ୍ତ ମିଳନର ଆନନ୍ଦ, ଭାବିଲା ବେଳକୁ ଅବିନାଶ ବାବୁଙ୍କର ଅଧେ ଅବସାଦ କଟିଗଲା ଯେମିତି । କିନ୍ତୁ ଆଜି ସେହି ଲତା । ବୟସ ଅନୁସାରେ ସୌନ୍ଦର୍ଯ୍ୟ ବିଶେଷ କମି ନାହିଁ । କିନ୍ତୁ ତା' ମୁହଁରେ ଆଉ ଆସୁନାହିଁ ଲଜ୍ଜାମିଶା ଆନନ୍ଦର ଫଗୁ । ତା' ଓଠ ଆଉ ଥରୁନାହିଁ କଣ କିଛି ନୂଆ ଜିନିଷ ପାଇବ ବୋଲି । ସେ ଖାଲି ମିସେସ୍ ଅମୁକ । ଚମତ୍କାର ସ୍ତ୍ରୀ, ଗୃହିଣୀ ଓ ଅତିଥି ସତ୍କାରିଣୀ । ଲତା ତାଙ୍କର ସ୍ତ୍ରୀ ନ ହୋଇ ଆଉ କିଛି ହୋଇ ଥାଆନ୍ତା କି !

ଘର ପାଖ ହୋଇ ଆସିଲା । ଅଳସ ହାଇମାରି ଅବିନାଶ ବାବୁ ଦିନର ଶେଷ ଅଧ୍ୟାୟଟିକୁ ଭାବି ବସିଲେ ଓ ବିରକ୍ତ ହେଲେ । ସାତଟା ବେଳେ ଅଛି ଗୋଟିଏ ସାନ୍ଧ୍ୟ ମିଳନ—ଉତ୍ତରପଡ଼ା ପ୍ରଗତି ସଙ୍ଘର ଆନୁକୁଲ୍ୟରେ କେତେଗୁଡ଼ିଏ ମାମୁଲି ଜୀବଙ୍କର ଏକାଠି ହେବାର ବାହାନା । ତାଙ୍କପରି କେତେ ଜଣ ବଡ଼ ବଡ଼ ଲୋକଙ୍କ ସାଙ୍ଗରେ ମିଶିବାର ସୁଯୋଗ ପାଇବା ପାଇଁ । ନୂଆ ପଲସ୍ତରା କରା କାନ୍ଥପରି ଭାବହୀନ, ରେଖା-ହୀନ କେତେଗୁଡ଼ିଏ ଖାଉ ଓ ନପ୍ଳେନ ମୁହଁରେ ସଦ୍ୟତାର ପରିକଳ୍ପନା,—ହସିବାର ଚେଷ୍ଟା ! ହାଓ ସିଲି ! ( ow Silly) !

ସାତଟା ବାଜୁ ନ ବାଜୁଣୁ ଅବିନାଶ ବାବୁ ବେଶ ବଦଳାଇ ବାରଣ୍ଡାରେ ବୁଲୁଥାନ୍ତି ସଙ୍ଘର ସଭ୍ୟମାନଙ୍କୁ ପାଛୋଟି ନେବାପାଇଁ । ସେ ସଙ୍ଘର ସଭାପତି ଓ ସଙ୍ଘର ବୈଠକ ବସେ ତାଙ୍କର ଘରେ ।

ଗୋଟିଏ ଗୋଟିଏ ହୋଇ ସମସ୍ତେ ଗଡ଼ିଲେ । ଲମ୍ବା କୁଞ୍ଚକୁ ପକେଟରେ ଗୁଞ୍ଜି ନଇଁପଡ଼ି ନମସ୍କାର କରି ଗୋପାଳ ବାବୁ—ପାନ ଚୋବାଇ ଚୋବାଇ, ତେଲଦିଆ ସିଠା ବାଳକୁ ଆଉଁସି ଆଉଁସି ଗାୟକ ଶ୍ରୀକାନ୍ତ ଚ୍ଛୋଟରାୟ,—ବେକରେ ବନ୍ଧା ହୋଇଥିବା ପୁରୁଣା ଟାଇର ବିରାଟ ସଙ୍କୀର୍ଣ୍ଣ ଗଣ୍ଠିକୁ ସଜାଡ଼ି ସଜାଡ଼ି, ସ୍ମାର୍ଟ୍ ହେବାକୁ ଚେଷ୍ଟା କରି, ନରେଶ ବାବୁ ଇତ୍ୟାଦି ଇତ୍ୟାଦି ।

ସମସ୍ତେ ଉତ୍ତର ପଡ଼ାର ବାସିନ୍ଦା,—ତଳିଆ ମଧ୍ୟବିତ୍ତ ଶ୍ରେଣୀର କିରାଣୀ, ମାଷ୍ଟର, ଷ୍ଟେଟ୍ କଣ୍ଟ୍ରାକ୍ଟର ଏମିତି ଉପରେ ଶ୍ରେଣୀର ଶକ୍ତି ଓ ସ୍ୱାଚ୍ଛନ୍ଦ୍ୟ ନାହିଁ ଯାଙ୍କ ପାଖରେ, ଲମ୍ବା ନାହିଁ ଚୂଳୀ ମୂଲ୍ୟର ଆଦମ ବ୍ୟକ୍ତିତ୍ୱ—ମାଟି ଓ ବାହାର କାଳ୍ପନିକ ଗୌରବ ।

ଅବିନାଶ ବାବୁ ଅଳ୍ପ ହସି ବଦାନ୍ୟତାର ଭଙ୍ଗୀରେ ସମସ୍ତଙ୍କୁ ବସାଇବାକୁ ଲାଗିଲେ । ତଳେ ପଡ଼ିଥିବା ସତରଞ୍ଜିରେ ଓ ଅନେଇ ରହିଲେ କେତୋଟି ମୁଖିଅଙ୍କର ଆସିବାକୁ,—ମିଃ ରାଉତ, ମିଃ ଦାସ, ମିଃ ରାଓ, ଏମିତି କେତେ ଜଣଙ୍କୁ । ଅଗତ୍ୟାରେ ନୁହେଁ,—ଆତିଥ୍ୟର ଗୋଟାଏ କାମ ସରିଯିବ ବୋଲି ।

ତା'ପରେ ସେମାନେ ବି' ଆସିଲେ । 'ହ୍ୟାଲୋ', 'ନମସ୍କାର', 'କ୍ଷମା କରିବେ, ଡେରି ହୋଇଗଲା' ଇତ୍ୟାଦିର ଆଦାନ ପ୍ରଦାନ, ଅବିନାଶ ବାବୁଙ୍କର ବ୍ୟସ୍ତତା ଓ ଜଳଯୋଗର ଆୟୋଜନରେ ସଭାଘର ସରଗରମ ହୋଇ ଉଠିଲା ।—

···ସଭାକାର୍ଯ୍ୟ ସରିବାକୁ ଆଉ ଡେରିଅଛି, ଅବିନାଶ ବାବୁ ସଭାସଦମାନଙ୍କ-ଠାରେ ଆଖି ବୁଲାଇ ଆଣିଲେ, ସେମାନଙ୍କର ଆଖିରେ କ୍ଳାନ୍ତି ଓ ବିରକ୍ତିର ପରିମାଣ ଜାଣିବାକୁ, ନିଜର ଅବସନ୍ନ ମନର ଉପଭୋଗ ପାଇଁ । ଏଇ ସମୟରେ ହଠାତ୍ ତାଙ୍କ ଆଖିରେ ପଡ଼ିଗଲା, ମିଃ ରାଉତଙ୍କ ପାଖରେ ଗୋଟିଏ ଝିଅ । କିଏ ଏ ? ଜଣେ ନୂଆ ମେମ୍ବର ? ଝିଅର ବୟସ ବୋଧହୁଏ କୋଡ଼ିଏ ବାଇଶି ବର୍ଷ । ଧଳା ଶାଢ଼ୀଟିଏ ପିନ୍ଧିଛି । ଆଖି ତଳକୁ କରିଛି । ଅବିନାଶ ବାବୁ ଅନାଇ ରହିଲେ ଏଇ ନୂତନ ବସ୍ତୁଟିକୁ ଆଉ ଟିକିଏ ଭଲ ଭାବରେ ଦେଖିବାକୁ ।

ତା'ପରେ ସେ ଝିଅଟି ଯେତେବେଳେ ଆଖି ଉପରକୁ ଉଠାଇଲା ଅବିନାଶ ବାବୁଙ୍କର କ୍ଳାନ୍ତି ଭାଙ୍ଗିଯାଇ ଆସିଲା ଅପୂର୍ବ ବିସ୍ମୟ । ବହୁତ ଦିନ ପରେ ସେ ଯୋଡ଼ିଏ ଆଖି ଦେଖିବାକୁ ପାଇଲେ ଯେଉଁଥିରେ ଅବସାଦ ନାହିଁ, ଆସ୍ପର୍ଦ୍ଧା ନାହିଁ,—ଅଛି ସକାଳର ସ୍ୱଚ୍ଛତା, ଶିଶୁର ଅମଳିନ ଆଗ୍ରହ । ଆଧୁନିକ ଶିଳ୍ପୀର 'ପଲ୍ଲୀବଧୂ' ଛବି ମନେ ପଡ଼ିଲା—'ଗୋଲ୍‌ଗୋଲ୍' କେତୋଟି ରେଖା ଭିତରେ ଦେଇ ଯୋଡ଼ିଏ ଉଦାସିଆ ନୟନ ଚାହାଣୀ—ସହଜ, ସୁନ୍ଦର ଓ ସ୍ୱାଭାବିକ ।

ଏ କୃତ୍ରିମ, ଗହଳି, ଫମ୍ପା କୋଳାହଳ ଭିତରେ ସେ ଯେମିତି ମଉଳି ଯାଉଛି । ଅବିନାଶ ବାବୁଙ୍କର ମନେ ହେଲା ଯେ ତାଙ୍କର ଗୋଟିଏ କର୍ତ୍ତବ୍ୟ ଅଛି, ମନୁଷ୍ୟତାର ପାଇଁ ଯେ ସେ ଏଇ ରୂପଟିକୁ ଜାଗ୍ରତ କରି ରଖିବେ ।

କିନ୍ତୁ କିଏ ସେ ? ସଭାର ଅବଶିଷ୍ଟ କେତେକ ସମୟ ପାଇଁ ଅବିନାଶ ବାବୁ କେବଳ ଏଇ କଥା ଭାବି ଲାଗିଲେ ।

ସଭା ଭାଙ୍ଗିଲା । ଅବିନାଶ ବାବୁ ପାଖେଇ ଗଲେ ସେହି ଝିଅଟି ପାଖକୁ ଓ ଝିଅଟି ହାତଯୋଡ଼ି ନମସ୍କାର କଲା । ତା'ପରେ ମିଃ ଦାସ ଝିଅଟି ଆଡ଼କୁ ହାତ ବଢ଼େଇ କହିଲେ, ଚିହ୍ନନ୍ତି ଯାଙ୍କୁ ? ଏ ନୂଆ ହୋଇ ଆସିଛନ୍ତି ଏଠାକୁ । ଯୋଗମାୟା ମହିଳା କଲେଜର ଲେକ୍‌ଚରର୍ । ଇତିହାସରେ ଫାଷ୍ଟକ୍ଲାସ ଫାଷ୍ଟ । ଯାଙ୍କ ବାପାଙ୍କୁ ବୋଧହୁଏ ଜାଣିଥିବେ ଆପଣ । ସୁଧୀର ବାବୁ ଇଞ୍ଜିନିୟରଙ୍କର ଝିଅ । ଗଞ୍ଜାମରେ ଘର । ଇତ୍ୟାଦି ଇତ୍ୟାଦି ।

ଅବିନାଶ ବାବୁଙ୍କର ଏତେ ଶୁଣିବାର ଧୈର୍ଯ୍ୟ ନ ଥିଲା । ଯେଉଁଠି ସଙ୍କ୍ଷେପ ଲୋଡ଼ା ନାହିଁ ସେଠି ଏତେ ପରଗ୍ରାହ୍ୟିକ ବ୍ୟାଖ୍ୟା କାହିଁକି ? ଖାଲି ଜାଣିବା ଦରକାର ଡାକିବା ପାଇଁ ନାମ । ସେଥିପାଇଁ ପଚାରିଲେ—

ଯାଙ୍କ ନାମ ?

'ମିସ୍ ଦାସ—ଇନ୍ଦିରା ଦାସ'

'ଓ' କହି ଅବିନାଶ ବାବୁ ଲମ୍ବା ହସଟିଏ ହସି ଝିଅଟି ଆଡ଼କୁ ଅନେଇ ମୁଣ୍ଡ ହଲଇଲେ ଓ ତା'ପରେ ଆରମ୍ଭ କଲେ ପ୍ରଶ୍ନ, କଲେଜ ବିଷୟରେ,—ପାଣିପାଗ, ଇତ୍ୟାଦି ଇତ୍ୟାଦି ।

ଝିଅଟିର କଣ୍ଠ ନରମ ।

ଖୁବ୍ ଅଳ୍ପ କଥା କହେ ।

ରୁଚି ଅଛି, ସୌଖୀନତା ନାହିଁ । ସରସ ଯୌବନ—କିନ୍ତୁ ଉନ୍ମୁଖ, ଉଦ୍ଧତ ନୁହେଁ ।

ସକାଳର ସଜ ଫୁଲଟିଏ । ପତ୍ରର ଭିତରୁ ଫୁଟି ଦିଶିଲାଣି । କିନ୍ତୁ ସିଧା ହୋଇ ଦିନର ଆଲୁଅକୁ ଅନାଇବାକୁ ଚାହେଁ ନାହିଁ । ଅବିନାଶ ବାବୁଙ୍କର ମନେ ହେଲା ଯେ ଅନେକ ଦିନ ହେବ ସେ ଏପରି ତାରୁଣ୍ୟ ଓ ସୌନ୍ଦର୍ଯ୍ୟ ଦେଖି ନାହାନ୍ତି, ଯେଉଁଥିରେ ନାହିଁ ନିମନ୍ତ୍ରଣର ଇଙ୍ଗିତ, ନାହିଁ ଅପେକ୍ଷା ଓ ଆବେଗ । ଏପରିକି ଗାଉଁଲି

ଟିଅ ଲତା ମୁହଁରେ ବ' ଏପରି ସ..ଳ ଓ ନିର୍ବିକାର ଭଙ୍ଗୀ ନ ଥିଲା,—ଥିଲା ବୋଧହୁଏ କିଛିଏ ପାଇବାର ଆଗ୍ରହ । ଆଉ ସହରର ନାନାଦି କକ୍‌ଟେଲ୍ (Cockt:il) ଓ ଡିନର୍ ପାର୍ଟିର ସୁନ୍ଦରୀ ମିସ୍ ଓ ମିସେସ୍‌ମାନଙ୍କ କଥା ମନେ ପଡ଼ିଲା । ସେମାନଙ୍କର ସୌନ୍ଦର୍ଯ୍ୟ ଅଛି, କିନ୍ତୁ ତା ଭିତରେ ଅଛି ଯେପରି ଅଦାମ ଇଭ୍‌ର ସ୍ଥୂଳ ଆକର୍ଷଣ । ସେଇ ଲିପ୍‌ଷ୍ଟିକ୍ ଓ 'ଗ୍ରେଲି' ଭିତରୁ ଯେପରି ଟାକି ବସିଛି 'ଲାଇଫ୍ ଫୋର୍ସ୍'ର ବିଭତ୍ସ ଅ.କ୍ୟା.ସ୍ ।

ଅବିନାଶ ବାବୁଙ୍କୁ ଲାଗିଲା ଯେ ଆଜିର ଏହି ମୁହୂର୍ତ୍ତଟି ବୋଧହୁଏ ଆସିଛି ତାଙ୍କର ଧୂଳିଧୂସର, କ୍ଲାନ୍ତ ମନଟିକୁ ଧୋଇ ପୋଛି ସତେଜ କରିବାକୁ ।

ମିଃ ଦାସ କଣ କହୁଥିଲେ ସେ ଶୁଣିପାରି ନ ଥିଲେ । ହଠାତ୍ ନିଦରୁ ଉଠିଲା ପରି ପଚାରିଲେ—'ଏଁ—କଣ କହୁଥିଲେ ?'

'ନା—ମୁଁ ପଚାରୁଥିଲି ଯେ ରାତି ଏତେ ଡେରି ହେଲାଣି—ଆପଣଙ୍କ ଡ୍ରାଇଭର୍ ମିଦ୍ ଦାସଙ୍କୁ ଛାଡ଼ିଦେଇ ଆସି ପାରିବ ଆପଣଙ୍କ ଗାଡ଼ିରେ ?'

'ନା-ନା-ମୁଁ ବସ୍‌ରେ ଚାଲିଯିବି ଯେ—'

'ନା-କାହିଁକି-ମୋର ଗାଡ଼ିଅଛି । ଡ୍ରାଇଭର୍ ଅବଶ୍ୟ ନାହିଁ । କିନ୍ତୁ ମୁଁ ନିଜେ ନେଇ ଛାଡ଼ି ଦେଇ ଆସିବି ।'

'ନାଇଁ-ନାଇଁ ଆପଣ କାହିଁକି କଷ୍ଟ କରିବେ । ମୁଁ ନିଜେ ଚାଲିଯିବି ଯେ'—ଝିଅଟି ଅନୁନୟର ଗଳାରେ କହିଲା ।

କିନ୍ତୁ ଅବିନାଶ ବାବୁ ଆଉ କିଛି ଉତ୍ତର ନ ଦେଇ ଚାଲିଗଲେ ଭିତରକୁ ଓ କିଛି ସମୟପରେ ତାଙ୍କର ବେବି ଗାଡ଼ିଟିକୁ ପର୍ଟିକୋରେ ରଖିଦେଲେ ଆଣି ।

ଝିଅଟିର ବୋଧହୁଏ ଆଉ ପ୍ରତିରୋଧ କରିବା ଶକ୍ତି ନ ଥିଲା । ଅବିନାଶ ବାବୁଙ୍କର ଘନ ଘନ 'ଆସନ୍ତୁ' 'ଆସନ୍ତୁ' ପରେ ସେ ଯନ୍ତ୍ରଚାଳିତ ପରି କାର୍ ପାଖରେ ପହଞ୍ଚିଲା । ତା'କୁ କିଛି ଭାବିବାକୁ ନ ଦେଇ ଅବିନାଶ ବାବୁ ଆଗ ସିଟ୍‌ର ଦରଜା ଖୋଲିଦେଲେ ।

...କୁ ହୁଡ଼ପେର୍ ରାସ୍ତା ଭିତର ଦେଇ ଗାଡ଼ି ଛୁଟି ଚାଲିଛି ଓ ଅବିନାଶ ବାବୁଙ୍କର କଥାର ଛୁଟ.. ସରୁ ନାହିଁ । ଇନ୍ଦିରା ପାଖରୁ ଉତ୍ତର ପାଉଛନ୍ତି କମ୍ । କିନ୍ତୁ ଗପ ବଢ଼ି ଚାଲିଛି—ଘରଦ୍ୱାର, ଭାଇଭଉଣୀ, କଲେଜ, ଇତ୍ୟାଦି ଇତ୍ୟାଦି । ଉତ୍ତର ସା..ରେ ..ନ୍ନ ଖାପ୍ ଖାଉ ନାହିଁ ବେଳେ ବେଳେ । ତଥାପି ଭାଷାର ବିରାମ ନାହିଁ ।

କ'ଣ ହୋଇଛି ଆଜି ?—ଅବିନାଶ ବାବୁ ନିଜେ ବୁଝି ପାରୁନାହାନ୍ତି । ସାଧାରଣ ଗୋଟିଏ ବାଳିକା—ଯେ କି ତାଙ୍କ ବଡ଼ଝିଅ ବୟସର ହେବ—ତା' ସାଙ୍ଗରେ ଏତେ ବାଗ୍ଲତା କାହିଁକି ? ସତେ ଯେପରି ଇନ୍ଦିରା ଆଗରେ ସେ ନିଜର କୈଫିୟତ୍ ଦେବାକୁ ଚାହୁଁଛନ୍ତି—ଯେ ସେ ଖାଲି ଅଫିସ୍‌ର ଗୋଟାଏ କଠୋର ଅନୁଷ୍ଠାନ ନୁହେଁ, ଗୋଟିଏ ସମ୍ଭ୍ରାନ୍ତ, ସଭ୍ୟ ପରିବାରର ଖୁଣ୍ଟ ନୁହେଁ, କିମ୍ବା 'ହ୍ୱାଇଟ-କଲର୍' ସମାଜର ଗୋଟିଏ ବିଳାସଧର୍ମୀ ଶିଷ୍ଟାଚାରର ମେସିନ୍ ନୁହେଁ । ସେ ଆହୁରି କିଛି—! କଅଣ ?

କେହି ପଚାରିଥିଲେ ବୋଧହୁଏ ସେ ଉତ୍ତର ଦେଇପାରି ନ ଥାନ୍ତେ—କାରଣ ସେ ନିଜେ ସେ ବିଷୟରେ ସଚେତନ ନ ଥିଲେ ।

ସେ ଖାଲି ଅନୁଭବ କରୁଥିଲେ ଗୋଟିଏ ନୂଆ ଭାବ, ଗୋଟିଏ ନୂଆ ରୂପ, ସୁନ୍ଦର, ସରସ ଓ ସଦ୍ୟ ବରଷାଧୁଆ ନୂଆ ଗଛର କଅଁଳ ପତର ପରି । ଫୁଲ ନାହିଁ, ରଙ୍ଗ ନାହିଁ, ବାସ ନାହିଁ,—କିନ୍ତୁ ଅଛି ସଜୀବତା, ପ୍ରାଣର ପ୍ରାଚୁର୍ଯ୍ୟ ।

ଦେହର ସାନ୍ନିଧ୍ୟ । ମନର ବି' ।

ସେଇ ଦେହର କ୍ଷଣିକ ସ୍ପର୍ଶ । ତା'ରି ଭିତର ଦେଇ ଯେମିତି ମନ ନୂଆ ହୋଇ ଉଠୁଛି । ବଡ଼ସାହେବର ଖୋଳ ଭିତରୁ ପଦାକୁ ବାହାରି ଆସିବାକୁ ଚାହୁଁଛି,—ଆଲୁଅ ଓ ପବନର ଦୁନିଆକୁ ।

'ଶୀତ କରୁଛି କି ?'—ଅବିନାଶ ବାବୁ ନିଜ ଦେହରୁ ଓଭର୍ କୋଟଟି କାଢ଼ି ଅଧେ ଇନ୍ଦିରା ଦେହରେ ପକାଇ ଦେଲେ ଓ ପୁଣି କଥାର ଖିଅ ଯୋଡ଼ିବାକୁ ଲାଗିଲେ ।

ଇନ୍ଦିରାର ମନୋବୃତ୍ତି ଲକ୍ଷ୍ୟ କରିବାକୁ ବେଳ ନାହିଁ ତାଙ୍କୁ । ତାଙ୍କୁ ଜଣାନାହିଁ ଯେ ଇନ୍ଦିରା ଦେହରୁ ଗୋଟିପଣେ ଝାଳ ବୋହି ଗଲାଣି,—ଯେ ସେ ବିସ୍ମୟ ଓ ଆଶଙ୍କାରେ ଥରି ଉଠି ଘୁଞ୍ଚିଯାଉଛି କାର୍‌ର ଗୋଟିଏ କୋଣକୁ—ଯେ ତା'ର ଉତ୍ତର ଖାଲି ଅସଲଗ୍ନ 'ହଁ, ଓ 'ନା'ରେ ରହିଲାଣି ।

ଅବିନାଶ ବାବୁ ଅଧେ କଳ୍ପନା ଅଧେ ଅନୁଭୂତିର ଦୋଳାରେ ରହି ଭାବି ଚାଲିଛନ୍ତି ଓ କହିଚାଲିଛନ୍ତି କେତେ କଣ ।

ତାଙ୍କର ଖିଆଲ ନାହିଁ ଇନ୍ଦିରା କହିଲାଣି—'କାର୍ ରଖନ୍ତୁ—ମୁଁ ଏଇଠୁ ଓହ୍ଲେଇ ଯିବି' ।

'ଏଁ—ଏଇଠୁ ଓହ୍ଲେଇଯିବ ?' କହି ଅବିନାଶ ବାବୁ ଆକସ୍ମିକ ଭାବରେ ହାତ ବଢ଼ାଇ ଆଣିଲେ ଇନ୍ଦିରା ଦେହରେ,—ପାଖକୁ ଟାଣି ଆଣିଲେ—ସତେ

ଯେପରି କ୍ଷଣିକ ସ୍ୱପ୍ନର ଏଇ ପ୍ରଚ୍ଛମାନ୍ଦିକୁ ସେ ଏତେଶୀଘ୍ର ଛାଡ଼ି ଦେବାକୁ ଚାହାନ୍ତି ନାହିଁ ।

ହଠାତ୍ ହାତ ଛଡ଼ାଇଦେଇ ଇନ୍ଦିରା ପାଟି କରି ଉଠିଲା—'ଲିଭ୍ ମି—ଲିଭ୍ ମି ୟୁ ବ୍ରୁଟ୍' ଓ ଦରଜା ଖୋଲି ଦେଇ ବାହାରକୁ ଯିବାକୁ ବସିଲା ।

କାର୍ ବନ୍ଦ କରିଦେଇ କିଛି କହିବା ପୂର୍ବରୁ ଇନ୍ଦିରା ବାହାରକୁ ଚାଲିଗଲାଣି । ଅବିନାଶ ବାବୁ ଓହ୍ଲାଇପଡ଼ି 'କଣ ହେଲା ?' ବୋଲି ନ କହୁଣୁ ସେ ଦୌଡ଼ି ପଳାଉଛି ଦୂରକୁ ।···

କିନ୍ତୁ ତା'ର ମୁହୂର୍ତ୍ତିକ ପରେ ରାତିର କୁହୁଡ଼ି ଘୁଞ୍ଚିଗଲା ପାଖରୁ ଓ ସେ ଅନୁଭବ କଲେ ଗୋଟିଏ ଆଘାତ ଓ ଅପମାନ— ତୀବ୍ର, ନିର୍ଦ୍ଦୟ ।

ଅପମାନ ! ଅବିନାଶ ନାୟକଙ୍କୁ ଅପମାନ !! ଏ'କଣ ସତ ହୋଇପାରେ ? ତାଙ୍କ ହାତରୁ ଚାବୁକ୍ ଗଲା କେବେ ? ଶାସନର କଳକୁ କୋହଲ ହେବାକୁ ଦେଲା କିଏ ?

କାହିଁକି ? କାହିଁକି ଏ ଅପମାନ ? ଅବିନାଶ ବାବୁ ନିଜକୁ ଧିକ୍କାର କରିବାକୁ ଲାଗିଲେ, ନିଜର ଅସାଧାରଣ ଆଚରଣ ପାଇଁ । ହାତ ଦୃଢ଼ଭାବେ ମୁଠା କରିବାକୁ ଲାଗିଲେ, ଅଧିକାରର ଆସ୍ୱାଦନା ପାଇବେ ବୋଲି ।

କିନ୍ତୁ ତାଙ୍କ ଗୋଡ଼ ରହିଯାଇଥାଏ ସେଇଠି । ତାଙ୍କୁ ଲାଗିଲା, ଯେ ସେ ପାଶବିକତାର ଜେଲ ଭିତରୁ ଚାଲି ଆସିଥିଲେ ଠିକିଏ । କିନ୍ତୁ ପୁଣି କିଏ ଟାଣି ଘୋଷାରି ନେଇ ଯାଉଛି ତା' ଭିତରକୁ ।

ଆକାଶର କୁହୁଡ଼ି ଭିତରୁ ମଳିଚଆ ଜହ୍ନ ଓଠ ଚିପି ଅନାଇ ରହିଥାଏ । କିନ୍ତୁ ଅବିନାଶ ବାବୁ ମୁହଁ ବୁଲାଇ ଫେରି ଚାଲିଲେ—କାଳାପାଣିର ଅନ୍ଧାରିଆ ଗହ୍ୱରକୁ ।



# ଅପମାନ

ଶକ୍ତିମାନ୍ ଅବିନାଶବାବୁଙ୍କୁ ଏଭଳି ଅପମାନ ଦେବା କଣ ଉଚିତ ଥିଲି ? ତାଙ୍କର ପରି ଜଣେ ବଡ଼ସାହେବ ଅବଶ୍ୟ ଗ୍ରୁଟି ଧରିଥିଲେ, ମୁଁ ଯେତେବେଳେ ସେହି ଉଚ୍ଚମନ୍ୟ ଭାରତ ସରକାରଙ୍କ ସେବାର ସାନ ପାହ୍ୟାରେ ଥିଲି, ଓ ତାଙ୍କ ପ୍ରତି ନାନାବିଧ ଭଲମନ୍ଦ ଭାବ ମୋ ମନରେ ଆସୁଥିଲି,—ଶ୍ରଦ୍ଧାକୁ ବାଦ୍ ଦେଇ । ମୋର ସହକର୍ମୀମାନେ ମଧ୍ୟ ଏହି ଅଶ୍ରଦ୍ଧାର ଅଂଶୀଦାର ଥିଲେ, ଯଦିଓ ଥୋକେ ତାଙ୍କୁ ଟାଣୁଆ ବୋଲି ପ୍ରଶଂସା କରୁଥିଲେ, ଏବଂ ଅନ୍ୟ କେତେକ ତାଙ୍କୁ ବିକାରଗ୍ରସ୍ତ ହାଣୁଆ ବୋଲି କହୁଥିଲେ । ଇନ୍ଦିରା ଦାସ ମଧ୍ୟ ମୋଟାମୋଟି ଅବାସ୍ତବ ନୁହେଁ । ତା' ବୋଲି ବଡ଼ ମଣିଷଟାକୁ ତଳେ ଗଡ଼େଇ ଦେଇ, କେମିତିକା କଚଡ଼ାଏ ଖାଇଲି, What a fall was there my countryman !, ଏହି ଭାବରେ ଇତର-ଜନୋଚିତ ତାଳି ମାରିବା କଣ ଉଚିତ ଥିଲି ?

ପ୍ରଶ୍ନର ଉତ୍ତରରେ ମୁଁ ଦୃଢ଼ତାର ସହିତ କହିପାରେ ଯେ ବ୍ୟକ୍ତିଗତ ଭାବରେ ଅବିନାଶ ବାବୁଙ୍କ ସହିତ ମୋର ଶତ୍ରୁତା ନ ଥିଲି । ସେ ମୋର କୌଣସି କ୍ଷତି କରି ନାହାନ୍ତି । ବରଂ ସେ ମୋର ଉପକାର କରିଛନ୍ତି ବୋଲି କୁହାଯାଇପାରେ । ତେଣୁ ମୁଁ ଏହି ଗଳ୍ପ ଜରିଆରେ ଆପଣା ଅପମାନ ମେଣ୍ଟେଇ ନେଲି, ଏଭଳି କହିବା ଏକାନ୍ତ ଅନୁଚିତ ଏବଂ ଅକାରଣ । କିନ୍ତୁ ଏକଥା ମଧ୍ୟ ସତ ଯେ ଜଣେ ଲେଖକ-କଳାକାର, ଅର୍ଥାତ୍ ଅନ୍ୟତମ ଭାବବାଦର ପ୍ରାଣୀ ହୋଇଥିବାରୁ ମୋର ତାଙ୍କର ବିଗ୍ରହ ପ୍ରତି ଯଥେଷ୍ଟ ଘୃଣା ଥିଲି । ସେହି ଦୃଷ୍ଟିରୁ ତାଙ୍କୁ ଅପମାନ ଦେବା ଛଡ଼ା ମୋର ଅନ୍ୟ ଉପାୟ ନ ଥିଲି ।

ମୁଁ ଜାଣେ ଯେ ନିଶ୍ଚୟ ଆଦି ଶକ୍ତିବାଦୀ ଦାର୍ଶନିକମାନେ ମୋର ଏଇ ସଫେଇକୁ ସ୍ୱୀକାରୋକ୍ତି ବୋଲି ମନେ କରିବେ । କହିବେ, ଯେ ସ୍ୱଭାବତଃ ଦୁର୍ବଳ ନିରକ୍ତିଆ ଲେଖକ-କଳାକାର-ମାନଙ୍କଠାରୁ ଆଉ କଣ ଆଶା କରିଯାଏ ? ସେମାନେ ସବଳ ପ୍ରତି ଏହିପ୍ରକାର ପରୋକ୍ଷ ପ୍ରତିଶୋଧ ନେବାକୁ ବସିବେ ନାହିଁ ତ ଆଉ କ'ଣଟା କରିବେ ? କେବଳ ପରୋକ୍ଷ ନୁହେଁ, ହାସ୍ୟାସ୍ପଦ । କାରଣ ଅବିନାଶବାବୁ ମାନେହିଁ ଗଡ଼ି ଜିତିବେ, ନେତା ହେବେ, ଇତିହାସ ତିଆରି କରିବେ । କହିବେ ଯେ ଅକ୍ଷମକୁ ମାଡ଼ି ଦଳି ଚକଟି ଦେବାର ପ୍ରବୃତ୍ତି ଓ ଶକ୍ତି ବିନା ପ୍ରଗତି ଅସମ୍ଭବ । ଇତ୍ୟାଦି । ଆଉ କେତେକ ମାନ୍ଦାଦଳିଆ ଶବ୍ଦର ବ୍ୟାପକ ଅର୍ଥ ବାହାର କରି କହିବେ ଯେ ଶକ୍ତି ଖଟେଇବାର ଅନ୍ୟାନ୍ୟ ସୂକ୍ଷ୍ମ ଉପାୟ ଅଛି, ଲେଖକ ମଧ୍ୟ ସେଥିରୁ ଦି'କଥା ଶିଖି ପାରିବ ।

ହେଲା । ମାନୁଛି ମୁଁ ଦୁର୍ବଳ । ତଥାପି ମୁଁ କହିପାରୁ ନାହିଁ ଯେ ଅବିନାଶ ବାବୁଙ୍କୁ ଅପମାନ ଦେବା ଉଚିତ ନ ଥିଲା । କାରଣ ଶକ୍ତି "ଖଟେଇବାର" ଅସୁନ୍ଦର ପଣ ହିଁ ମୋତେ ବାଧୁଛି, ଏବେ ମଧ୍ୟ ବାଧୁଛି । ସେ ସଫଳ ହାକିମ ହୁଅନ୍ତୁ, ନେତା ହୁଅନ୍ତୁ, ବା ଜଣେଅଧେ ଲେଖକ ।

ପ୍ରଭେଦ କେବଳ ଏତିକି ଯେ ବୋଧହୁଏ ଆଜକାଲିର ଲେଖାରେ ମୁଁ ତାଙ୍କୁ ଏଭଳି ସହଜ ଅପମାନ ଦେଇ ନ ଥାଆନ୍ତି । ସେ ଇନ୍ଦିରକୁ ପାଇ ମଧ୍ୟ ପାଇ ନ ଥାଆନ୍ତେ, ଆପଣା ମରୁଭୂମିକୁ ଆହୁରି ଜଳଜଳ ଦେଖି ପାରନ୍ତେ, ଏବଂ ତାଙ୍କ ତଣ୍ଟି ଶୁଖି-ଯାଆନ୍ତା, ଅତନ୍ତଃ କ୍ଷଣକ ପାଇଁ । ଆତ୍ମଦର୍ଶନର ସେହି ଗୋଟିଏ ମୁହୂର୍ତ୍ତରେ ।

କଟକ

୨୧ ଜୁଲାଇ, ୧୯୮୬



# ପୁଅ କାନ୍ଦୁଛି

ଅଧ ରାତି । ପୁଅ କାନ୍ଦୁଥିବ । ନିଦରୁ ଉଠି ଚର୍-ଚରେଇ ହୋଇ କାନ୍ଦିବ । ତୁନି କଲେ ତୁନି ହେବ ନାହିଁ । ସୁମି ପୁଣି ଥରେ ଉଠି ବିରକ୍ତ ହେବ, କାନ୍ଦିବ, ରାଗିବ ଓ ପୁଅକୁ ଚାପୁଡ଼ାଏ ପକାଇବ । କିଛି ଲାଭ ନାହିଁ । ପୁଣି ସେହି କାନ୍ଦଣା । ଶେଷକୁ ବାଧ୍ୟ ହୋଇ ଛାତିକୁ ପୁଅ ପାଟିରେ ମାଡ଼ିବ । ଶୁଖିଲା ଚମଡ଼ା, ଟାଣିଲେ କାଟୁଛି କିନ୍ତୁ ଉପାୟ ନାହିଁ । ନ ହେଲେ ପୁଅ କାନ୍ଦିବ । ସୁମି କାନ୍ଦି କାନ୍ଦି ପୁଅକୁ ଚୁଚୁମେଇବ ଓ କହିବ, "ଓଃ ଭଗବାନ ନେଇଯାଅ ଏଥିରୁ ଗୋଟାଏ, ମୋର ଏ ପିଲା ଦରକାର ନାହିଁ ।"

ଆଜି ଟୋକେ ବିଅର୍ ପିଇଦେଇ ରାଧାନାଥ ମନେ ପକାଇଲା ସେ ଦୃଶ୍ୟ ଓ ହସିଲା ନିଜକୁ ନିଜେ । ସତରେ ଯଦି ଭଗବାନ ଏମିତିକା ଗୁହାରି ଶୁଣନ୍ତେ ତାହା-ହେଲେ—?

ଆକାଶରେ ଜହ୍ନ ଉଠିଛି । ଆକାଶ କିନ୍ତୁ ନେଳିଆ ନୁହେଁ, କଳା । ଜହ୍ନ ଚକ୍ ଚକ୍ କରୁଛି ଓ ତା' ପାଖରେ ଟିମ୍ ଟିମ୍ ହେଉଛନ୍ତି ଛୋଟ ବଡ଼ ତାରା ।

କଳା ପରଦା ଜହ୍ନ ଓ ତାରାକୁ ନେଇ ଥର ଉଠିଲା । ବିଦେଶୀ ପେଁକାଳି ଗୁମୁରି ଉଠିଲା ଓ ତା' ତାଳରେ ମଞ୍ଚ ମଝିରେ ବସିଥିବା ଫ୍ରକ୍ ପିନ୍ଧା ଶ୍ୟାମଦୁହିତା ନାଲିଆ ଓଠ ମେଲି ଦେଇ ପେନସିଲ ଅଙ୍କା ଭୂରୁ ତଳେ ଛୋଟିଆ ଆଖିକୁ ନଚେଇ ଆରମ୍ଭ କରିଦେଲା,—

"ଅଣ୍ଡର୍ ଦ' ଶ୍ୟାମିଜ୍ ମୁନ୍···ର-ବା-ବା-ବା···"

(ଶ୍ୟାମର ଜହ୍ନ ତଳେ···ଟ-ବା-ଦା-ବା···)

ଚଉକି ଛାଡ଼ି ଯୋଡ଼ିକି ଯୋଡ଼ି ବାହାରି ଆସିଲେ ନାଚିବା ପାଇଁ, ବାଜାବାଲା ମଞ୍ଚ ଆଗରେ ଥିବା ସେଇ ଛୋଟିଆ ଜାଗା ଖଣ୍ଡିକରେ । କାନ୍ଥ କୋଣରେ ଲାଗି

ରହିଥିବା ନାଲି ନେଳା ଆଳୁଅ ସବୁ ଦୁକୁ ଦୁକୁ ହୋଇ ଜଳି ଉଠିଲା, ତୋଫା ଆଳୁଅ ନୁହେଁ, ଖାଲି ଯେପରି ଲୋକଙ୍କ ଗାଲରେ ରକ୍ତ ଚହଟିବାର ଭ୍ରମ ଆଣି-ପାରିବ ।

ସେମାନେ ନାଚବାକୁ ଆସିଲେ, ଶ୍ୟାମ (ଥାଇଲଣ୍ଡ)ର ରାଜଧାନୀ ବ୍ୟାଙ୍ଗକକ୍‌ର ନାଗରିକ ଓ ନାଗରିକାମାନେ । ପରିଧାନରୁ ବୁଝିହେବ ନାହିଁ କେଉଁ ଦେଶର, କିନ୍ତୁ ଗଢ଼ଣ ଓ ଦେହର ରଙ୍ଗରୁ ଅନୁମାନ କରିହେବ । ପୁରୁଣା ଦେଶ । ଏଠି ବୁଦ୍ଧଙ୍କ ବାଣୀ ପ୍ରଚାରିତ ହୋଇଥିଲା । ଏଠି ରାମାୟଣ, ମହାଭାରତର ବ୍ୟାଖ୍ୟା ହୋଇଥିଲା । ସବୁ ଭ୍ରମଣକାରୀଙ୍କ ପରି ରାଧାନାଥ ଆଜି ଧନସାରି "ପାଗୋଡ଼ା" ସବୁ ବୁଲି ଦେଖିଛି । ଶ୍ୟାମଳ ବୁଦ୍ଧ (Emesald Buddha), ଶାୟିତ ବୁଦ୍ଧ, ଇତ୍ୟାଦି । ଏଇସବୁ ତ ବ୍ୟାଙ୍ଗକକ୍‌ରେ ଦେଖିବାର କଥା । ବୁଦ୍ଧଙ୍କର ସେଇ ସୌମ୍ୟ ମୁଦ୍ରା ଦେଖି ସେ ଭକ୍ତିରେ ଗଦଗଦ ହୋଇଯାଇଛି, ଭାବିଛି ଗୋଟିଏ ଷ୍ଟେଚିଆ ପ୍ରତୀକ ନେଇଯିବ ସ୍ୱଭୂମି ପାଇଁ । ବୁଦ୍ଧଦେବଙ୍କ ସାଙ୍ଗରେ ସନାତନ ହିନ୍ଦୁଧର୍ମ ମଧ୍ୟ ଏଠି ତାର ପରାକାଷ୍ଠା ଦେଖାଇଛି ଚୁପ୍‌ଆଡ଼େ, କହୁଛି ମୁଁ ଆସିଛି ଆଗେ । ପାଗୋଡ଼ାରେ ପୁରାଣଚନ୍ଦ, ରାଜ-ଚିହ୍ନ ସ୍ୱରୂପ ଗରୁଡ଼, ଦୋକାନମାନଙ୍କରେ ପିଲଙ୍କ ପାଇଁ ରାବଣ, ସୀତା ଓ ଜଟାୟୁର ଛବି, ରାସ୍ତାର ନାମ "ସୂର୍ଯ୍ୟବଂଶୀ" (Surya wongse), ହୋଟେଲର ନାମ "ରତ୍ନକୋଶୀ", ସିନେମା ଚାଲିଛି 'ସୁରନାରୀ' । ହିନ୍ଦୁ ଓ ବୌଦ୍ଧଧର୍ମର ଅପୂର୍ବ ସମନ୍ୱୟ ! କିନ୍ତୁ ବଞ୍ଚିଛି କିଏ ? ଏ କଣ କଥନ୍ତା ଧର୍ମ ଓ ଜାତିର ଆଲିଙ୍ଗନ ? କାଳକାଳର ପଥର, ପିଲଙ୍କର କାହାଣୀ, ଭ୍ରମଣକାରୀର ଖାଦ୍ୟ,—'ଥାଏ' କଣ ଏଇଥିକୁ ନେଇ ବଞ୍ଚେ ? ନା ତାର ଦରକାର ଏଇ ନାଇଟକ୍ଲବ, ବିଦେଶୀ ଆମଦାନୀ ?

ଘରର ଚାରିଆଡ଼େ ଆଖି ବୁଲାଉ ବୁଲାଉ ରାଧାନାଥ ଦେଖିଲା ସେ ମୁଣ୍ଡର ଝରକା ପାଖରେ 'ପ୍ଲାଷ୍ଟିକ' ମାଛ ପାଣି ଭିତରେ ଖେଳୁଛି ଓ ତା' ମଝିରେ ବୁଦ୍ଧ । ନାଇଟ-କ୍ଲବରେ ବୁଦ୍ଧ ! "ଶ୍ୟାମର ଜହ୍ନ" ତଳେ ବୁଦ୍ଧ ! ବାଃ, ବାଃ । ତାଙ୍କର ତାଳକୁ ବ୍ୟାଞ୍ଜୋ ବାଜୁଛି, ରେଶମୀ ଦେହରେ ଦେହ ଲାଗି ଆସୁଛି ନାଚ ନାଚ, ଠିପି ଖୋଲି ରଙ୍ଗପାଣି ଉଚ୍ଛୁଳି ହୋଇ ପଡ଼ୁଛି, ରଙ୍ଗବେରଙ୍ଗ ବୁସ୍‌ସାର୍ଟ ପିନ୍ଧି ଲମ୍ବା ଲମ୍ବା ଗୋରା ବିଦେଶୀମାନେ ଘନ ଘନ ତାଳି ବଜାଉଛନ୍ତି । ପ୍ରକୃତରେ ଏଇଥିକୁ କହିବ ଅପରୂପ, ଅଲୌକିକ ସମନ୍ୱୟ ! ଆଧୁନିକ ସଭ୍ୟ 'ଥାଏ'ର ପ୍ରାଣ ଏଇଠି ଆଶ୍ରୟ ପାଇଛି । ପୃଷ୍ଠଭୂମି ଯୋଗାଇଛି ବୁଦ୍ଧର ଛବି, ରାମ-ରାବଣ ଗାଥା । ବିଦେଶୀ ଅଜାଡ଼ୁଛି ଟଙ୍କା, ସିଲ୍‌କ, ନାଇଲନ୍ ଓ 'ଜାଜ୍'ର ଧୂନ୍ । ଶ୍ୟାମରମଣୀ ଓଠ ମେଲାଇ ଚହଲି ଜହ୍ନକୁ ଡାକି ଆଣୁଛି । ଭାରତୀୟ ଗୋରଖପୁରୀ ଦରଓ୍ୱାନ୍ କବାଟ ଖୋଲି ଦେଉଛି । ଆଉ କଣ ଚାହିଁ ? ଜୟ ତୁ ବ୍ୟାଙ୍ଗ୍‌କକ୍ ! ରାଧାନାଥ ଆଉ ଟୋକେ ହୁଇସ୍କି ପିଇଦେଲା ।

ର-ବା-ବା… ! ନାଚ, ଭଲ କରି ନାଚ । ଧୀର ତାଳରେ ଦେହକୁ ଦେହ ମିଶେଇ ଆଣ, ଆସ୍ତେ, ଖୁବ୍ ଆସ୍ତେ । ବାଜା ଜୋର୍‌ରେ ବାଜି ଉଠିଲେ ଛୁଟିପିଟି ହୋଇ ନାଚ । ଚପା ସିଲ୍‌କ ଭିତରୁ ବକ୍ଷ ଜଘନ ଦୋହଲି ଉଠୁ ଦର୍ଶକମାନଙ୍କର ଆନନ୍ଦ ପାଇଁ, ଉପଭୋଗ ପାଇଁ ।

ରାଧାନାଥ ଚାହିଁଲା ନିଜକୁ ମିଶାଇଦେବ ଏଇ ବାତାବରଣରେ । ଏଠି ଭାରତର ନୀତିର ଅଙ୍କୁଶ ନାହିଁ । ଏଠି ସବୁ ଖୋଲା, ଲୁଚ୍ଚା ଚୋରା କିଛି ନାହିଁ । ଅଶ୍ଳୀଳତାର ସ୍ଥାନ ନାହିଁ, କଳ୍ପନାର ପରିସର ଅତି ସଂକୀର୍ଣ୍ଣ । ତାକୁ ଏଠି ଦେଖି ଏଠାର ଲୋକେ କେହି କହିବେ ନାହିଁ ଯେ ରାଧାନାଥ ନୀଚ, କାମୁକ, ବରଂ କହିବେ ଯେ ରାଧାନାଥ ମଧ୍ୟ ଭଲ ଭାବରେ ବଞ୍ଚିବାକୁ ଶିଖିଛି, ତାର ରସବୋଧ ଅଛି, ସେ 'ବୁଢ଼ା' ନୁହେଁ ।

ଆଫ୍ରିକା ଦେଶର ଜଣେ ବିଶାଳକାୟ ଯୁବକ ଗୋଟିଆ ଶ୍ୟାମୀୟ ଝିଅଟିକୁ ବାହୁରେ ଗୁଡ଼ାଇ ଧରିଛି । ତାର ଦରଖୋଲା ଉତ୍ତୁଙ୍ଗ ସ୍ତନ, ଚପା ପ୍ୟାଣ୍ଟତଳୁ ଉତ୍‌ଥିତ ନିତମ୍ବ, ହଳଦିଆ ଗୋରା ଦେହ, ହୁଏତ ହଳଦିଆ ଲହୁଣୀ ପରି ହାତକୁ ଲାଗୁଥିବ । ତାକୁ କଣ ଆଉ କେହି ସାଥୀ ମିଳିଲେ ନାହିଁ ?

ସେମାନେ ନାଚି ନାଚି ପାଖକୁ ଚାଲି ଆସୁଛନ୍ତି, ରାଧାନାଥର ବସିବା ଚଉକି ଆଡ଼କୁ । ରାଧାନାଥ ଚଞ୍ଚଳ ହେଲା । ନାଲି ଆଲୁଅ ଝଲକାଏ ପଡ଼ୁଛି ଝିଅ ମୁହଁରେ । ବାଜା ଧୀର ହୋଇ ଆସିଛି । ଗୀତ ଥମି ଯାଇଛି । ଆଫ୍ରିକୀୟ ଯୁବକ ଝିଅକୁ ଟାଣି-ଆଣିଲା ପାଖକୁ, ନାଚର ଗୋଟିଏ ମୁଦ୍ରା ଦେଖାଇବା ଉପଲକ୍ଷ୍ୟରେ । ରାଧାନାଥ ସେମାନଙ୍କ ଗୋଡ଼ରୁ ମୁଣ୍ଡଯାଏ ଅନାଇ ଚାହିଁବସିଲା ଝିଅର ମୁହଁକୁ । ସେ ଶୋଇ ଯାଇଛି ? ଆବେଶ ନା କ୍ଳାନ୍ତ ? କ୍ଳାନ୍ତ ? ଅବସାଦ ?? ପାଖରେ, ଆହୁରି ପାଖରେ ତା ମୁହଁ । ରାଧାନାଥ ଟେବୁଲ ଉପରୁ ଉହୁଙ୍କି ଉଠିଲା । ବିଅର୍ ଗ୍ଲାସ ଢାଳି ହୋଇଗଲା ଟେବୁଲ-କ୍ଲଥ ଉପରେ । ହାତକୁ ଓଦା ଓଦା ଲାଗିଲା । ସନ୍ତସନ୍ତିଆ । ତା'ର ଉପରେ ଅନ୍ଧାରିଆ ଆଲୁଅ । ଆଉ ସେ ଝିଅର ମୁହଁ; ଶୋଇଛି ।

ଶୋଇଛି । ଆଖି ବୁଜି ଦେଇଛି । ରାଧାନାଥ ମନରେ ଚାଉଁକିନା ଲାଗିଗଲା ଆଉ ଜଣକର ଶୋଇଲା ମୁହଁ । ସୁମି । ବେଳେ ବେଳେ ରାତି ଅଧରେ ନିଦ ଭାଙ୍ଗିଲେ ଝରକାରୁ ଏକୁଟିଆ ଲୋଭନୀୟ ଅଧା ଜହ୍ନକୁ ଦେଖି ସେ ଚାଲିଆସେ ସୁମି ପାଖକୁ । ସାନ ଝିଅକୁ ଆଡ଼େଇ ଦେଇ ସୁମିର ଦେହକୁ ଲାଗି ଲାଗି ଯାଏ । ଝିଅ ବିଛଣାରେ ମୁତିଛି । ଓଦା, ସନ୍ତସନ୍ତିଆ ଲାଗେ । ଥାଉ । ସେଇ ସନ୍ତସନ୍ତିଆ ଭିତରେ ସେ ସୁମିକୁ ଗେହ୍ଲା କରେ । ପୁଅକୁ ଚୁଚୁମେଇ ସେ ଆଖି ବୁଜିଛି ଏଇକ୍ଷଣି । ତଥାପି ଅଧା ନିଦରେ ସେ ହାତ ବଢ଼େଇ ଆଣେ ରାଧାନାଥ ଦେଖୁଛେ । ଆକାଶରେ ଜହ୍ନ ଓ

ତଳେ ସନ୍ତସନ୍ତଆଳୁ ନେଇ ସୁମିର ସେଇ ଶୋଇଲା ଝାଳୁଆ ମୁହଁ ରାଧାନାଥର ପ୍ରେମକୁ ସ୍ୱୀକାର କରିନାଏ । କ'ଣ ଥାଏ ତା' ମୁହଁରେ ? କ୍ଲାନ୍ତି, ଅବସାଦ ନା ତୃପ୍ତି ?

ଧାତ୍, କେଉଁଠୁ କେଉଁଆଡ଼େ ଭାବୁଛୁ ! ସୁମି ତାର ସ୍ତ୍ରୀ, ଗୃହିଣୀ, ପିଲାଙ୍କର ମାଆ । ତା'ର ସେ ମୁହଁରେ ଅଛି ଘରକରଣା ଓ ମାତୃତ୍ୱର ବେଦନା, ଓ ସେଇ ବେଦନାରେ ଅଛି ସମର୍ପଣର ଗୌରବ । ତା' ସାଙ୍ଗରେ ମିଶାଉଛୁ ଏଇ ନାଇଟ୍-କ୍ଲବର ସୁନ୍ଦରୀଙ୍କୁ ? ହୁଁ ଃ—ଏ ମୁହଁରେ ଅଛି ରାଶି ରାଶି ବଳାସର ସର, ଉପଭୋଗର ଚିହ୍ନ, ବାଜା ଗୀତରେ ପୁଣି ଚେଇଁ ଉଠିବ, ପୁଣି ମାଗିବ ଆହୁରି ଦିଅ । ଛିଃ, କାହାକୁ କାହା ସାଙ୍ଗରେ ସମାନ କରୁଛୁ ?

ସମର୍ପଣ, ତ୍ୟାଗ ସବୁ ସୁମି ପାଇଁ ଓ ତା ପାଇଁ ଏକ ନାଇଟ୍ କ୍ଲବ୍ ? ରାଧାନାଥର ଇଚ୍ଛା ହେଲା ନିଜକୁ ଧିକ୍କାର କରିବାକୁ । କିନ୍ତୁ ତା'ପରେ ସେ ନିଜକୁ ସଜାଡ଼ି ନେଲା । ଏ ଆତ୍ମ-ଗ୍ଲାନିର କିଛି ମୂଲ୍ୟ ନାହିଁ । ଏଥିରେ ସୁମିର ମନର ଅବସ୍ଥା ବଦଳି ଯିବନାହିଁ । ସେ ମଧ୍ୟ ଏପରି ପରିସ୍ଥିତି ପାଇଥିଲେ ଖୁସି ହୋଇଥାନ୍ତା, ପଳାଇ ଆସିବାର ଆନନ୍ଦ ଅନୁଭବ କରିଥାନ୍ତା ।

ପଳାୟନ । ସଂସାରର ଦାୟିତ୍ୱ ଜଞ୍ଜାଳରୁ ପଳାୟନ କିଛିକ୍ଷଣ ପାଇଁ । ଛାଇ-ଆଲୁଅ, ଦେଖା-ଅଦେଖା, ଚେତନ-ଅଚେତନ ଭିତରେ ଦେହର ଅନୁଭୂତି । ସ୍ୱପ୍ନ ପରି ଭାସିଯିବା କଥା । କାଲି ସକାଳକୁ ମନେ ରହିବ ନାହିଁ । ଆସୁ ଆଉ ଗୋଟାଏ ବୋତଲ୍ !

ମଞ୍ଚ ଉପରକୁ ଆଉ ଗୋଟିଏ ଝିଅ ଆସିଲା । ପ୍ରଥମଟି ପଛକୁ ଚାଲିଗଲା, ହାତରେ ଦୁଇଟା ଝଣଝଣିଆ ମୁଦ୍‌ଗର ଧରି ଗୀତ ସାଙ୍ଗରେ ତାଳ ଦେବାକୁ ।

ନୂଆ ଝିଅଟି ବର୍ଣ୍ଣରେ ସଫା ନୁହେଁ, କବି ଭାଷାରେ ତନ୍ୱୀ ଶ୍ୟାମା କହିବାକୁ ହେବ । ଥାଏଲଣ୍ଡର ନିଜସ୍ୱ ନୁହେଁ କିନ୍ତୁ କେଉଁ ଦେଶର କିଏ କହିବ । ହୁଏତ ପୁରୁଷ ପୁରୁଷ ଧରି ଦେହରେ ରହିଛି ଦେଶ ବିଦେଶର ଋଣ, ଆମେରିକାରୁ ଜାପାନ ଯାଏଁ । ଗାଲ ପଶି ଯାଇଛି, କଳା-ଧୂସର ବାଳ,—ଅନେକ ଦିନୁ ତେଲ ଲଗା ନ ହୋଇଥିଲା ପରି । ଚଉଡ଼ା ଓଠରେ ଯୋଇଗୁଲିଆ ରଙ୍ଗ । କିନ୍ତୁ ତାର ଆଖି ଦୁଇଟା ଲମ୍ବା, ସୁନ୍ଦର । ନରମ ନଇଁଲା ଚାହାଣୀ ମନେ ହୁଏ ସେ ଖାଲି ଅନ୍ୟର ଚାହାଣୀକୁ ଖୋଜେ ଓ ଡାକିଆଣେ ସ୍ୱପ୍ନ ଓ ସୁ[illegible]ର ରାଜ୍ୟକୁ ।

ସେ ଗୀତ ଆରମ୍ଭ କରିଦେଲା । ଥରଥରିଆ ସ୍ୱର ଓ ପ୍ରତ୍ୟେକ ଧାଡ଼ି ପରେ ଗୋଟିଏ କୃତ୍ରିମ ବ୍ୟଥାର ଲେହିଆ "ଆଁ" । ସତେ ଯେପରି ମିଠା ହାଲୁକା ଚିମୁଟିଟିଏ ଲାଗିଲା ଦେହରେ ।

ମଞ୍ଚର ବାଆଁକୁ ବସିଥିବା ବିଦେଶୀ ଯୁବକ କେତେଜଣ, ଆତ୍ମଭୋର ହେବେ ପରି, ହୁଇସିଲ୍ ମାରି ବସିଲେ ଦେଇ ଆଁ ପଦରେ । କିନ୍ତୁ ସେଇ ଦଳରେ ବସିଥାଏ ଗୋଟିଏ ସତର ଅଠର ବର୍ଷର ଟୋକା । ସେ ହୁଇସିଲ୍ ମାରିଲା ନାହିଁ । ଖାଲି ଓଠକୁ କୁଞ୍ଚେଇ ଦେଇ, ଆଖିପତା ନୋଇଁ ଅନାଇଲା ସେ ଝିଅ ଆଡ଼କୁ ବୋଧହୁଏ ନାଇଟ୍-କ୍ଲବ୍‌ର ପୋକ ନୁହେଁ, ଝିଅର ଚାହାଣୀ ଓ ଭଙ୍ଗୀରେ ବିଭୋର ହୋଇ ଯାଇଛି । ହୁଏତ ସୁବିଧା ଥିଲେ ପାଖକୁ ଦୌଡ଼ିଯାଇ ତା ଗୋଡ଼ରେ ମୁଣ୍ଡଦେଇ ଅନାଇ ରହନ୍ତା ତା'ର ଆଖିକୁ । ରୋମାଣ୍ଟିକ୍ , ବିଚରା !

ରୋମାଣ୍ଟିକ୍ । ମାନେ ଭଲ ପାଇବାର କୁହୁକ । ଯନ୍ତ୍ରାରେ ଥିବା ଚୁଡ଼ା । 'ମୋ ଆଖିର ଏଇ ଆକୁଳ କାମନା ଦେହର ଭୋକ ନୁହେଁ, ମନର ଚାହିଁବା, ଅତି ନିବିଡ଼ ଓ ଅତି ସୁନ୍ଦର' ।

ରଘୁନାଥ ଚଉକିର ଗୋଟିଏ ବାହୁରେ ଭରି ଦେଇ ତଳକୁ ଖସି ଆସିଲା । ଆଖି ବୁଜି ଆସିଲା । ବିଅର୍ କାମ ଦେଲାଣି ଟିକିଏ । ସେ ଝିଅର ଆଖି ଦୁଇଟିକୁ ଗଭୀର ଦୃଷ୍ଟିରେ ଧ୍ୟାନ କରିବାକୁ ଲାଗିଲା । ପରିଚିତ ଚାହାଣୀ ବୋଲି ମନେ ହେଲା । କାହାର ଥିଲା ଠିକ୍ ଏମିତି ନଇଁଲା ଚାହାଣୀ, ଛଳ ଛଳ ଯାଚନା ଭରା,—'ତୁମେ ଆସିବ ନାହିଁ ମୋ ପାଖକୁ' ?

ବିନ୍ଦ । ହାରୁ କକାଙ୍କ ଝିଅ । ସେଇ ଏମିତି ଚାହୁଁଥିଲା ଦିନେ ଲୋକ ଆଢ଼ୁଆଳରେ, ସୁନ୍ଦର ଚାହାଣୀରେ ନୂଆ ସକାଳ ଛୁଆଁ ଚମକ ଆଣିଦେଇ ।

ସେ ବି' ଗୋଟାଏ ଅଧ୍ୟାୟ ଥିଲା । ରଘୁନାଥ କପାଳରେ ହାତ ବୁଲାଇ ଆଣିଲା ଅତୀତକୁ ପୋଛିଦେଲା ପରି ।

ବିନ୍ଦର ଚାହାଣୀ । ସେଦିନ ସେ ସକାଳୁ ଗାଧୋଇ ପାଧୋଇ ବଗିଚାରୁ ଫୁଲ ତୋଳୁଥିଲା । ରଘୁନାଥ ଦାଣ୍ଡ ଘରେ ଅଳସ ଭାଙ୍ଗି ଉଠିଲାବେଳକୁ ଦେଖିଲା ତାର ଫୁଲ ତୋଳାର ଆଡ଼ମ୍ବର । ରଘୁନାଥକୁ ଦେଖି ସେ ଆଖି ପତା ତଳକୁ କରି ଅଧା ତୋଳାରେ ଚାହିଁ ରହିଲା କିଛି ସମୟ । କାହିଁକି ? ଖାଲି ବନ୍ଧୁ ତାର ଖାତିରରେ ଝିଅଟିଏ କଣ ଏମିତି ଚାହିଁପାରେ ? ନା ତାର ଚାହିଁବାର ଭଙ୍ଗୀ ସେମିତିକା ? ହସିଲା ଓଠ ପରି ଜଣେ ଜଣେ ସେମିତି ନିମନ୍ତ୍ରଣରେ ଚାହାଣୀ ନେଇ ଜନ୍ମ ହୋଇଥାଆନ୍ତି ? ପରେ ସେ ବୁଝିଲା ଯେ ସେ ଚାହାଣୀ ଥିଲା ଖାଲି ରଘୁନାଥ ପାଇଁ ବିଶେଷ ଅର୍ଥ ନେଇ; ଯେ ସେ ତାକୁ ଭଲ ପାଏ ଏବଂ ତା'ର ବହୁତ ଦିନ ପରେ ସେ ତା'ର ସତମୂଲ କରିପାରିଛି ବୋଲି ଭାବି ନେଇଥିଲା,—ଯେ ବିନ୍ଦର ସେ ଚାହାଣୀରେ ଥିଲା ଭୋକ, ଅତି ସହଜ ସାଧାରଣ ଭୋକ, ପୁରୁଷକୁ ପାଇବାର ଆତୁରତା ।

ଏ ଶ୍ୟାମଳୀ ଗାର୍ଦ୍ଧିକାର ଗୃହାଣୀ କଣ ତାର ସାଙ୍ଗରେ ମିଶିଯାଉଛି ? କଣ ଅଛି ସେଥିରେ ?

ନା—ନା—ସ୍ୱପ୍ନ ଦେଖ, ତାକୁ ଏତେ ତଳକୁ ଖସାଇ ଆଣୁଛ କାହିଁକି ? ତାର ଯେ ଗୃହିବାରେ ସତ ଆଗ୍ରହ ଥିଲା, ସଧୁ ଭାଇକୁ ପାଇବ । ସେଇ ଆଗ୍ରହର ନାଁ ତ ଭଲ ପାଇବା, ତା' ପଛରେ ଭୋକର ନାଁ କଳୁଥାଉ ପଛେ । ନାଁ ସତ ଓ ତା'ର ଜ୍ୟୋତି ମଧ୍ୟ ସତ । କିନ୍ତୁ ଏଇ ଶ୍ୟାମଳୀର କଣ ଅଛି ? ଏ ଗୃହାଣୀରେ ଭଲପାଇବାର ଜ୍ୟୋତି ନାହିଁ—ଏ ଜାଣିଶୁଣି ଠକାମି । ଆଉ ଭୋକ ? କେଜାଣି ।

ନାଲି ନେଳି ଆଲୁଅର ବନ୍ଧୁ କାନ୍ଥରେ ଘୂରିବାକୁ ଲାଗିଲେ । ଜହ୍ନ ଓ ତାରା ଥର ଉଠିଲେ । ରାଧାନାଥ ଆଖି ଖୋଲିଲା । ନାଚ ଚାଲିଛି ଖୁବ୍ ଜୋରରେ । ନାରୀ ଓ ପୁରୁଷ । ପୁରୁଷ ଓ ନାରୀ । ନାଲିନେଳି ସିଲ୍‌କରେ ବନ୍ଧା ମାଂସ ପିଣ୍ଡୁଳା ସବୁ । ପୁରୁଷର ସତ୍ତା ଲୁଚି ଯାଇଛି । ଖାଲି ଦିଶୁଛି ନାରୀ । ନାରୀ, ନାରୀ, ନାରୀ । ଗୃହ-ଆଡ଼ୁ ସେଇମାନେ, ହାଉଜାଉ ।

"ଶାମଳୁମାରୀ' ଯେ ନାଚ ନାଚ ଆଖି ବୁଜ ଦେଇଥିଲା ସେ ନାରୀ । 'ଶ୍ୟାମଳୀ' ଯେ ଗୃହାଣୀରେ ତରଙ୍ଗ ଖେଳାଇଥିଲା ସେ ମଧ୍ୟ ନାରୀ । ବନ୍ଦ ନାରୀ । ଆଉ ସୁମି, ତାର ସ୍ତ୍ରୀ, ସେ ମଧ୍ୟ ସେଇଆ । ସମସ୍ତେ ନାରୀ । ସମସ୍ତଙ୍କ ଆଖିରେ ଭୋକ, ଭାବ, ଭଙ୍ଗୀ ଭାଷା ସବୁଥିରେ ଭୋକ । ହାୟ, ଭଗବାନ !

ରାଧାନାଥ, ମୁଣ୍ଡ ଠିକ୍ କାମ ଦେଉଛି ତ ? ନିଶ୍ଚୟ, ସେ ଭାବିପାରୁଛି । ଭାବନାରେ ମଳାଧୁଳି ନାହିଁ ।

ଖାଲି କଣ ସ୍ତ୍ରୀର ଭୋକ ଅଛି, ପୁରୁଷର ନାହିଁ ? ହଁ, କିନ୍ତୁ ପୁରୁଷକୁ ଭୋକାଳ କରେ ସ୍ତ୍ରୀ । ସ୍ତ୍ରୀ ଟାଣେ, ପୁରୁଷ ଟାଣି ହୋଇ ଆସେ ।

ସ୍ତ୍ରୀ ଓ ଜନନୀ ।

ଜନନୀ ଓ ପ୍ରକୃତି ।

ପ୍ରକୃତି ଓ ସ୍ତ୍ରୀ ।

···ସବୁ କାନ୍ଥ ଆଲୁଅ ଲିଭି ଲିଭି ଆସିଲା । ନାଚ ଅଗଣାକୁ ମୁହେଁଇଥିବା ବଡ଼ ନାଲି ନେଳି ଆଲୁଅ ତିଆର ହୋଇଗଲା ଜଳିବ ବୋଲି । ନାଚଲାବାଲା ଫେରଗଲେ ନିଜ ନିଜ ଜାଗାକୁ । ଏଇକ୍ଷଣି 'ଫ୍ଲୋର୍-ସୋ' ହେବ । ମାନେ ସେଇ ଅଗଣାଟିରେ ଏକୁଟିଆ । ନାଲି-ନେଳି ଆଲୁଅରେ ଗାଧୋଇ ଝିଅଟିଏ ନାଚିବ, ଅଙ୍ଗଭଙ୍ଗୀ ଦେଖାଇବ । ନାଇଟ୍-କ୍ଲବର ସବୁଠୁ ବଡ଼ ଆକର୍ଷଣ ।

ରାଧାନାଥର ଚନ୍ଦ୍ରାର ସ୍ବପ୍ନ ମାଡ଼ି ଗ୍ରହିଥାଏ । କଏ ଗୋଟାଏ ଆସି ନାଚବ । ନାଚ୍ । ଏ ଗୁଡ଼ାଙ୍କୁ ଦେଖି ଦେଖି ଚଢ଼ି ମାଡ଼ିଲାଣି ।

ପୁଣି ମନେ ପଡ଼ୁଛି । ସୁମି । ବାହାଘରର କେତେଦିନ ପରେ ପୁରୁଣା ଘରେ ତଉଠି ଶେଯରେ ସେ ଓ ସୁମି । ପୁନେଇଁବାସିର ଜହ୍ନ ଆଲୁଅ ତୋରା ହୋଇ ପଡ଼ୁଥାଏ ଦୁହିଁଙ୍କ ମୁହଁରେ । ସୁମି ପିଲାଳିଆ ପଣରୁ ଉତୁର ନ ଥାଏ । ଥରେ ପଚାରିଲା, 'ଜହ୍ନ ଆଲୁଅରେ ତୁମ ମୁହଁଟା କେମିତି ଅନ୍ୟରକମର ଦେଖାଯାଏ,—ଲମ୍ବାଳିଆ' । ରାଧାନାଥ ହସିଲା, ପଚାରିଲା, "କଣ କରିବାକୁ ଇଚ୍ଛା ହୁଏ ?" ସୁମି ଲାଜେଇ ମୁହଁ ଗୁଞ୍ଜିଦେଲା ତା'ର ଛାତିରେ । ସେଇ ଦିନ ରାତିରେ ସେ ଶୁଣିଥିଲା ସୁମିର କଥା । ପରସ୍ପରକୁ ପାଇବାର ଆନନ୍ଦ ଭିତରେ ସେ ଚାହିଁଥିଲା ଆହୁରି କିଛି, ପୂର୍ଣ୍ଣତା ଆଣିଦେବା ପାଇଁ,—"ଆମ ଦୁଇଜଣଙ୍କ ଭିତରେ ଥାଆନ୍ତା କି ଆଉ ଗୋଟିଏ, ଛୋଟିଆଟିଏ, ଆମର ହୋଇ !"

ବୋକା ! କଣ ପାଇଲା ସେ ଚାହିଁବାରୁ ? ଗୋଟିକ ପରେ ଗୋଟିଏ ଚାରୋଟିର ମାଆ ହେଲା । ଆଉ ଏଇକ୍ଷଣି ରାତିରେ ନିଦ ନାହିଁ, ଦିନରେ ଶାନ୍ତି ନାହିଁ । ଦେହର ଶାନ୍ତି ନାହିଁ । ଦେହର ଶକ୍ତି ଗଲାଣି, ଆଖିର ଜ୍ୟୋତି ମଳିନ ହେଲାଣି ! ରାତିରେ ଅଧାନିଦରେ କ୍ଳାନ୍ତ ଅବଶ ଦେହ ଆଉଜିଯାଏ ସ୍ବାମୀର ଦେହକୁ, ସ୍ବାମୀ ପାଖକୁ ଆସିଲେ । ସେଇ ତା'ର ଆରାମ, ବଞ୍ଚିରହିବାର ପରିପୂର୍ଣ୍ଣତା !

ତା'ର ସେଇ କୋଛନାଧୂଆ ଚାହାଣୀରେ ହୁଏତ ଭେକ ଥିଲା । କିନ୍ତୁ କାହିଁକି, ମାଆ ହେବା ପାଇଁ ? ଦେହର ଉପଭୋଗରେ ସେ ଭେକ, ସୀମିତ, ତୃପ୍ତ ହୋଇ ପାଇଲା ନାହିଁ ? ସବୁ ସ୍ତ୍ରୀଙ୍କର ଏମିତି ହୁଏ ନା ସୁମି ଦମ୍ପତ୍ତିଙ୍କଠାରୁ ନିଆରା ?

ଆଖି ଖୋଲାଲାବେଳକୁ ନର୍ତ୍ତକୀ-ମଣି ଆସିଗଲେଣି । ଦେହରେ ଦୁଇଖଣ୍ଡ ଚକଚକିଆ ନାଲିଆ ସିଲ୍କ କନା ଗୁଡ଼ା ହୋଇଛି । ଖଣ୍ଡେ ଛାତି ପାଖରେ, ଆଉ ଖଣ୍ଡେ ତଳକୁ । ପିଆନୋ ଡ୍ରମ୍ ଗର୍ଜି ଉଠିଲେଣି । ସେ ଗୋଡ଼କୁ ବୁଲାଉଛି, ମୁଣ୍ଡର ମୁକୁଳା ବାଳକୁ ଛାଟୁଛି ପଛକୁ, ହାତକୁ ଲହଡ଼େଉଛି । ନାଚବା ଆରମ୍ଭ ହୋଇଯିବ ।

ରାଧାନାଥ ଆଖି ବୁଜିଦେଲା । ସୁମି ରାଗିବ । ନା—ନା ସେ ରାଗିବ ନାହିଁ । ସେଇ ତ ମୁସ୍କିଲ୍ । ଆସିଲାବେଳକୁ କହିଥିଲା ସେ 'ମନ ଖରାପ କରିବ ନାହିଁ । ସବୁ ଉପଭୋଗ କରିଯିବ । ଦେହକୁ ଦେଇଦେଲେ ବ' ଆପତ୍ତି ନାହିଁ । କିନ୍ତୁ ହୃଦୟଟା ମୋର, ସେ ଯେମିତି ଆଉ କାହା ପାଖକୁ ନ ଯାଏ ।' ରାଧାନାଥ ହସିଲା । କଣ କରିବ ସେ ଏ ହୃଦୟଟାକୁ ନେଇ ?

ରାତି କେତେ ହେଲାଣି । ତୁମି ପୁଣି ଉଠିବଣି ଆଉ ଥରେ । ପୁଅ କାନ୍ଦୁଥିବ । ନ ହେଲେ ସାନ ଝିଅ ଉଠି ଚିତ୍କାର କରୁଥିବ । ତା' ପେଟରେ କୃମି, ରାତିଯାକ ଶୋଇପାରେ ନାହିଁ । ଟାଇମ୍‌ପିସ୍ ଘଣ୍ଟାକୁ ଦେଖିବ, ଆଉ ଦୁଇଘଣ୍ଟା ଅଛି । ବଡ଼ ପିଲା ଦୁଇଜଣଙ୍କୁ ଉଠାଇ ସ୍କୁଲ ଯିବା ପାଇଁ ତିଆରି କରାଇବାକୁ ହେବ । ଦେହ ହାତ ଭାଙ୍ଗି ପଡ଼ୁଛି, ତଥାପି ଉପାୟ ନାହିଁ, ରକ୍ଷା ନାହିଁ । ସବୁ କରିଯିବାକୁ ହେବ । ରମାନାଥ କଥା ମନେ ପଡ଼ିବ । ରାଗ ଆସିବ ନାହିଁ ଯେ ସେ ତାକୁ ସବୁ ଜଞ୍ଜାଳ ଦେଇ ପଳାଇଗଲେ ବୋଲି । ନା,—ସେ ଦୂରରେ ଅଛନ୍ତି । କଳ୍ପନା କରିବ ତାଙ୍କ ଛାତିକୁ ଜାକି ଧରିଛି । ସେଇ ଶାନ୍ତି, ସେଇ ସବୁଥିର ଛନ୍ଦପୂରଣ ।

ଏଇଥିପାଇଁ କହିବ ସ୍ତ୍ରୀ ଭୋଗିନୀ, ଫାଶ ପକାଏ ପୁରୁଷ ପାଇଁ ? ସେ ଭୋକ ଯଦି ମାଆ ହେବାର ଭୋକ, ପ୍ରକୃତିର ହାତବାରିସି ହୋଇ ମଣିଷ ବଂଶ ବଢ଼ାଇବାର ଭୋକ, ତାହାହେଲେ ଦୋଷୀର ପାତ୍ର କିଏ, ପୁରୁଷ ନା ସ୍ତ୍ରୀ ? କଷ୍ଟ ସହେ କିଏ, ସନ୍ତାନପାଇଁ ଘାଣ୍ଟି ହୁଏ କିଏ, ପୁରୁଷ ନା ସ୍ତ୍ରୀ ?

କିନ୍ତୁ ସମସ୍ତେ ତୁମି ନୁହଁନ୍ତି । ସମସ୍ତଙ୍କୁ ପିଲାଙ୍କ ଜଞ୍ଜାଳ ମୁଣ୍ଡାଇବାକୁ ପଡ଼େ ନାହିଁ, ସମସ୍ତେ ମାଆ ହେବାକୁ ଚାହାନ୍ତି ନାହିଁ । ବିନର ସେ ଚାହାଣୀରେ କଣ ଥିଲା ମାଆ ହେବାର ଭୋକ, ନା ଖାଲି ଭଲପାଇବାର କାମନା, ଉପଭୋଗର ଲାଲସା ?

ହଁ, ବାହାରକୁ ଦେଖିବାପାଇଁ, ନିଜ ମନକୁ ଜାଣିବା ପାଇଁ ଭଲପାଇବା ଓ ତା' ତଳକୁ ଦେହର ଭୋକ । କିନ୍ତୁ ତା' ପରରେ ପ୍ରଚ୍ଛନ୍ନରେ ରହିଛି ମାଆ ହେବାର ପ୍ରବୃତ୍ତି । ପୁଅ କାନ୍ଦୁଛି । ତୁମି ପ୍ରକୃତି-ସ୍ୱରୂପା, ପ୍ରକୃତିର ଉଦ୍ଦେଶ୍ୟରେ ମିଶେଇ ଦେଇଛି ନିଜକୁ । ସେଇଲାଗି ସେ ସେଇ କାନ୍ଦଣା ଶୁଣି ପାରିଲା, ତରବର ହୋଇଗଲା କୋଳକୁ ନେଇ ଆସିବ । ବିନା ହେମିତି ନୁହେଁ । ତଥାପି ଆଜି ବାହାହୋଇ ଦାଶ ମାଆ ହେଲା ପରେ ତାର ସେଇ ଚାହାଣୀର ଭାଷା ବଦଳି ଯାଇଛି । ଏବେ ସେ ରାଧୁଭାଇ ଆଡ଼କୁ ସିଧା ହୋଇ ଚାହିଁ ପାରେ ନାହିଁ । ରାଧୁ ଭାଇ ଅତୀତ କିନ୍ତୁ ତା' ସ୍ୱାମୀ ଆଡ଼କୁ ଚାହିଁବାରେ ଥାଏ କୃତଜ୍ଞ ଆନନ୍ଦର ଇଙ୍ଗିତ । ଭୋକ ବଦଳରେ ଥାଏ ତୃପ୍ତିର ଛୁଇ । 'ମୁଁ ପାଇଛି' ।

ଆଖି ଖୋଲିଲା, ଏଁ ଏ କଣ ? ନାଚର ଘନଘଟା ଚାଲିଛି, ଓ ତା' ସାଙ୍ଗରେ ସେ ଖୋଲୁଛି ତା' ଦେହରେ ଲାଗିଥିବା କନାରୁ ଖଣ୍ଡେ, ତା ତଳେ ଥିବା ଆହୁରି ପାତଳା, ଆହୁରି ଶ୍ରେଷ୍ଠ ଖଣ୍ଡେ କନାର ଦୃଶ୍ୟ ଦେଖାଇ । ଇସ୍ ।

ଏହାର ବି ଭୋକ ଅଛି ?

ମାଂସଳ ହଳଦିଆ ମୁହଁରେ ରାଶି ରାଶି ପାଉଡ଼ର୍ । ଓଠରେ ଗାଢ଼ ନାଲି । ଦୁଇ ଆଖି ନାଚୁଛି । ନଗ୍ନ ଦେହରେ ମାଂସପେଶୀ ସବୁ [illegible] ଆସୁଛି [illegible]'ର

ବଭବ ଦେଖାଇବା ପାଇଁ । ମୁହଁରେ ହସ ମୋଡ଼ି ମୋଡ଼ି ବିକୃତ ଦେଖା ଦେଉଛି । ଖାଲି ଦେହରେ ପ୍ରଦର୍ଶନୀ । ସଭ୍ୟ, ବିଳାସକାମୀ ଦର୍ଶକମାନଙ୍କୁ ଦେଖାଉଛି ତଟକାମାଂସର ଲୋଭ ।

କିନ୍ତୁ କାହିଁ ନାଚ ? କାହିଁ ପ୍ରକୃତିର ଡାକ ? ପୁଅର କାନ୍ଦଣା ? ?

ରାଧାନାଥ ଆଖି ବୁଜି ଆଣିଲା । ପୁଅ ନାହିଁ ତାର । ପ୍ରକୃତିକୁ ଆଡ଼େଇଦେଇ ବଞ୍ଚିବାକୁ ଚାହିଁଛି । ତା'ର ଜୀଅନ୍ତା ପୁଅ ଘରେ କାନ୍ଦୁନାହିଁ । ପୁଅର ହସରେ ତାର ମୁହଁର ଭାବ ହସ ହସ, ନରମ ହୋଇ ପାରିନାହିଁ । ସେଇଲାଗି ସେ ରହିଯାଇଛି ଶିଥିଳ, କାଠୁଆ ହୋଇ । ହସିଲେ ବି ବିକୃତ ଦେଖାଯାଉଛି ।

ତା'ର ପୁଅ ନାହିଁ । ପୁଅ କାନ୍ଦୁନାହିଁ । ପୁଅର ତଣ୍ଟି ଚିପି ମାରି ଦେଇଛି ସେ ଦେହର ଲଭ ଉଠାଇବାପାଇଁ ଓ ସେଇଦେହର ଦୃଶ୍ୟ ଦେଖାଉଛି ରାତି ପରେ ରାତି, ତିବ୍ର ନାଲିଆ ଆଲୁଅ ମଝିରେ । ନିଜକୁ ବଞ୍ଚାଉଛି । ଅନ୍ୟକୁ ଖୁସି କରୁଛି । ପୁରନ୍ଦରକୁ ଆନନ୍ଦ ଯୋଗାଉଛି ।

କିନ୍ତୁ ସେ ନିଜେ କାନ୍ଦୁଛି । ତାର ଭିତରେ ଶିରା ପ୍ରଶିରା କାନ୍ଦୁଛି ଅନାଗତ, ଅଲୋଡ଼ା ସନ୍ତାନକୁ ଆଣିବା ପାଇଁ । ପ୍ରକୃତି ହନ୍ତସନ୍ତ କରୁଛି । ତା' ହସକୁ ମାରଦେଇଛି, ତା'ର ମୁହଁର ଜ୍ୟୋତି ଲିଭାଇ ଦେଇଛି । ଖାଲି ରଖିଛି ମାଂସ, ନେ ବଞ୍ଚିଥା ସେଇଥିକୁ ନେଇ ।

ହେକ୍ସ-ରମଣୀ । ଧମନୀଙ୍କୁ ଦେଇ ଦେଇ କଣ ପାଇଛି ସେ ? ରାଧାନାଥ ଢୁଳୁ ଢୁଳୁ ଆଖିରେ ଅନାଇଲା । ସେ ଆସୁଛି ତାର ଆଡ଼କୁ । ଗୁଡ଼ିର ଶେଷ କନାଟିକ ଖୋଲି ପାରିଲାଣି । ତା'ର ସେ ନଗ୍ନ ଦେହ କାନ୍ଦଉଠୁଛି ପୁଅର ଚୁମା ପାଇବ ବୋଲି । ତାର ସେ ନାଚ ନାଚ ନୁହେଁ, ନଷ୍ଟ ନାରୀତ୍ୱର ବେଦନା, କଲବଲ ।

ହୋଇ ସେ ପାଖେଇ ଆସୁଛି । ସଙ୍ଗୀତ ଉଦ୍ବେଳ ହୋଇ ଉଠୁଛି । ଦେଖଣାହାରୀ ହୋ ହୋ ହେଉଛନ୍ତି ଚୁହାକୁ ଚୁହା ।

ରାଧାନାଥର ହୋଇ ଥିଲା ? ସେ କହୁଥିଲା ଥିଲା ବୋଲି, ଯେ ତା'ର ଦେବା ଶକ୍ତି ସଜାଗ ଥିଲା । ହୁଏତ ଅନୁଭୂତିରେ ଥିଲା ଟିକିଏ କୁହୁଡ଼ି, ଝାପ୍ସା ଗୁଡ଼ି— ଆଲୁଅ ।

ସେ ପାଖେଇ ଆସୁଛି । ଏଇ ଅତି ପାଖରେ । ଦେହକୁ ପାତିଛି ରାଧାନାଥ ଆଗରେ । ତା' ଦେହ କାନ୍ଦୁଛି । ତାର ଖୋଲା ସ୍ତନ ମାଗୁଛି ସନ୍ତାନର ପରଶ ।

ନାସ୍ତିର ଅବେଦନ । ପୁଅର କାନ୍ଦଣା । ବହ୍ନଲ ରାଧାନାଥ ହାତ ବଢ଼େଇଲା । ସେ ପୁରୁଷ, ସେ ପୁଅ । ନାସ୍ତିର ପ୍ରାର୍ଥନା, ଆକୁଳ ମିନତି ଏଡ଼ାଇ ଦେଇ ପାରିବ ନାହିଁ ।

ଝୁଙ୍କିପାଇ ରାଧାନାଥ ହାତ ବଢ଼େଇଲା । ମୁହଁକୁ ପାଖେଇ ଆଣିଲା ।

ଟିଅ ଘୁଞ୍ଚିଗଲା । ତା'ପରେ ଅଟ୍ଟହାସ୍ୟର କୋଳାହଳ । ତାଳି ପରେ ତାଳି । ବାଃ ବାଃ, ବାଃ, ବାଃ । ଘର କମ୍ପିଲା, ଉଠିଲା । କଣ ହେଲା ?

କ୍ଲବର ମାନେଜର ହାତ ଧରି ତାକୁ ନେଇଗଲା ବାହାରକୁ, ନିଶାର ଜୋର୍ ଛଡ଼ାଇବ ବୋଲି । ଗୋରଖପୁରୀ ଦରଓ୍ୱାନ କବାଟ ଖୋଲିଦେଲା ।

ଉପରେ ନେଳିଆ ଆକାଶ ଓ ତାରା । ଆଦମ ଆକାଶ ତଳେ ସଭ୍ୟ ଦୁନିଆର ଆକାଶ, ଜହ୍ନ ଓ ତାରା । ପ୍ରବୃତ୍ତିର ଓଲଟା କସରତ୍ ।

ରାଧାନାଥ ହସିଲା । ଘରକୁ ଫେରିଗଲେ ସୁମିକୁ କହିବ ।



# ପୁଅ କାନ୍ଦୁଛି

୧୯୬୮ ମସିହାରେ ମୋର ପ୍ରଥମ ବିଦେଶ ଯାତ୍ରା । ଏକୁଟିଆ । କଲମ୍ବୋ ପ୍ଲାନ୍ ବିଶେଷଜ୍ଞ ହୋଇ ଦକ୍ଷିଣ ଭିଏତ୍ନାମ୍ ସରକାରଙ୍କୁ ତିନିମାସ ଯାଏଁ ସ୍ୱଳ୍ପ ସଞ୍ଚୟ ଯୋଜନା ବିଷୟରେ ପରାମର୍ଶ ଦେବା ପାଇଁ । ବାଟରେ ବ୍ୟାଙ୍କକରେ ଗୋଟିଏ ରାତିର ରହଣି । ତେତିଶ ଚଉତିରିଶ ବର୍ଷ ବୟସର ରାଧାନାଥ ସେଇ ରାତିଟାକୁ ନେଇ କଣ କରିଥାଆନ୍ତା ? ଚୁପଚାପ୍ ତା' ହୋଟେଲ୍ ରୁମ୍‌ରେ ଶୋଇଯାଇ ଥାଆନ୍ତା ? କିନ୍ତୁ ପଦାକୁ ଗୋଡ଼ କାଢ଼ିଲା ମାତ୍ରେ ସେକ୍ସର ଦଲାଲ୍ । ଏକାଧିକ । ସାର୍, କଅଣ ଦରକାର ? ଶୁଣନ୍ତୁ, ଇଆଡ଼େ ଆସନ୍ତୁ, ମୋ' କଥା ଶୁଣନ୍ତୁ । ସିଂଗାସଲଖ, ମାଡ଼ମରା, ମାଢ଼ଖିଆ, ଚୀନା ଜାପାନୀ, ଗୋରୀ, କାଳୀ···କେମିତିକା ସେକ୍ସ ଦରକାର ଆପଣଙ୍କର ? ବାଛିବାର ମୂଲେଇବାର ପ୍ରଶ୍ନ ଉଠୁନାହିଁ । ନୂଆ ବିଦେଶିଆ ଏବଂ ସେହି ଅର୍ଥରେ ମଫସଲିଆ ରାଧାନାଥ ଛେପ ଢୋକିବାକୁ ଆରମ୍ଭ କଲାଣି, ଉତ୍ତେଜନାରୁ ଭୟ ବଳି ପଡ଼ିଲାଣି । ଶେଷକୁ ସେ ସେମାନଙ୍କୁ କୌଣସି ମତେ ବୁଝେଇ ଦେଇ ପାରିଲା ଯେ ସେ ଅଳସୁଆ, ସେ କେବଳ ଦେଖିବାକୁ ଚାହେଁ, ତେଣୁ ତା'ର ଦରକାର ଗୋଟାଏ 'ଭଲ' କ୍ୟାବାରେ (Cabaret) ର ଦୃଶ୍ୟ, ହୋଟେଲ୍‌ରୁ ବେଶି ଦୂର ହୋଇ ନ ଥିବ···

ଏହି ଭାବରେ ରାଧାନାଥ ପହିଲିବାର ଗୋଟିଏ ଦସ୍ତୁରମତ ସେକ୍ସ କୁଡ଼ୁବୁଡ଼ୁ କ୍ୟାବାରେର ଦୃଶ୍ୟ ଦେଖିଲା; ଭାରତର ବାହାରେ । ପରେ ବିଭିନ୍ନ ବିଦେଶରେ, ବିଶେଷତଃ ଲଣ୍ଡନ୍, ବ୍ୟାଲ୍‌ଟିମୋର୍ ଓ ସିଡ୍‌ନିରେ ସେ ଯେଉଁସବୁ ଦୃଶ୍ୟ ଦେଖି ଆସିଛି, ତା' ତୁଳନାରେ, ବ୍ୟାଙ୍କକ୍‌ର, ଶ୍ୟାମଳୀ ଶ୍ୟାମଳୀମାନଙ୍କ

ଅବା ତଥାକଥିତ ନଗ୍ନ ନର୍ତ୍ତକୀ କାଳିକା ପିଲ୍ଲାଇ । କିନ୍ତୁ ବିଚାର କରନ୍ତୁ, ଯେତେବେଳେ ରାଧାନାଥ କେତେ ଅସହାୟ୍ୟ ମଣିଥିବେ ନିଜକୁ, ନିଷ୍ପାପ ନ ହେଲେ ମଧ୍ଯ ତା'ର ନିର୍ଭରଣ ସଂସ୍କୃତ ଚେତନାରେ ସେକ୍‌ସର ଘନଘଟା କିଭଳି ବିଭ୍ରାଟ ସୃଷ୍ଟି କରିଥିବ । ତେଣୁ ବିଚାରି ବିଅର୍ ପିଇଲା, ଉପଭୋଗ କଲା, ଅଥଚ କାନ୍ଦିଲା । ଖାଲି ନିଜେ କାନ୍ଦିଲା ନୁହେଁ, ଘରେ ଛାଡ଼ି ଆସିଥିବା ଛୋଟ ପୁଅକୁ କନ୍ଦେଇଲା, ମୃତଶଯ୍ୟାରେ ହାଲିଆ ହୋଇ ପଡ଼ିଥିବା ତା' ମାଆକୁ ଶେଷ୍ଟା କଲା···ଏଣେ ନିଦ ଢୁଳୁଢୁଳୁ ଆଖି ସାମ୍‌ନାରେ ନାଚୁଥିବା ସେକ୍‌ସଦାମିନୀ ଆଡ଼କୁ ହାତ ବଢ଼େଇଲା, ପୁଅ ପରି । କିଭଳି ଦାରୁଣ ସଂଘାତର ମୁକାବିଲା କରିବାକୁ ଯାଇ ସେ ସେକ୍‌ସରେ ଜନ୍ମଯୋନିର ଅଜବ୍ ଅନୁମାନ କରିପାରିଲା, ଭାବନ୍ତୁ ଦେଖି ?

ଘଟଣା ନାହିଁ, ଚରିତ୍ର ନାହିଁ, କେବଳ ଗୋଟିଏ ପନ୍ଥାର ଅନୁଭୂତିର ଅନ୍ତ—ଅନୁଭବ ଏବଂ ଦାର୍ଶନିକତା । ଶେଷ ଦୃଶ୍ୟର ଦୁଃସାହସୀ ନାଟକୀୟତାକୁ ଛାଡ଼ି ଦେଲେ ବାକୀ ସବୁ ସତ । ତଥାପି ଯେ ଯୁଏ'କୁ କେତେକ ବନ୍ଧୁ ଭଲ ପାଇ ପାରିଛନ୍ତି, ସେଇ ମୋର ସୌଭାଗ୍ୟ । ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଯେ ହିନ୍ଦୀରେ ଅନୂଦିତ ଓ ପ୍ରକାଶିତ ହୋଇଥିବା ଗଳ୍ପମାନଙ୍କ ମଧ୍ୟରେ ଏଇଟି ସର୍ବପ୍ରଥମ । ଅନୁବାଦ କରିଥିଲେ ଶ୍ରୀ ପ୍ରଭାତ କୁମାର ତ୍ରିପାଠୀ ଏବଂ କମଲେଶ୍ୱରଙ୍କ ଦ୍ୱାରା ସମ୍ପାଦିତ "ସାରିକା" ମେ ୧୯୬୯ ସଂଖ୍ୟାରେ ପ୍ରକାଶ ପାଇଥିଲା । କିନ୍ତୁ ସେମାନେ କାହିଁକି ଗପର ନାଆଁ ବଦଳାଇ "ଆଦମ ଆକାଶ" ରଖିଲେ ବୁଝିପାରୁ ନାହିଁ । ପୁଅକାନ୍ଦଣାର ନିଃସ୍ୱ ଅନ୍ତରଙ୍ଗତାକୁ ସହ୍ୟ ହେଲା ନାହିଁ ବୋଧହୁଏ !

କଟକ
୨୪ ଜୁଲାଇ ୧୯୮୬



# କମାରସାହୀର ଓକିଲବାବୁ

ବଡ ବଜାରର ଛକ ଉପରୁ ଯେଉଁ ଗ୍ରେଟିଆ ରାସ୍ତାଟିଏ ଗଡ଼ିଯାଇଛି ଟ୍ରଙ୍କ୍ ଓ ଲୁହା ବାସନ ଦୋକାନ ଦେଇ, ତାର ନାଆଁ ହେଉଛି କମାରସାହୀ ଓ ସେଇଠି ଛକର ଖଣ୍ଡେ ଦୂରରେ ଥିଲା ବ୍ରଜବାବୁଙ୍କ ସିରସ୍ତା । ରାସ୍ତାର ଧୂଳି ଆବର୍ଜନା, ଦୋକାନୀମାନଙ୍କର ଘନ ଘନ ନିମନ୍ତ୍ରଣରେ ଗୃପରୁ ରକ୍ଷା ପାଇବାକୁ ଯାଇ ଟିକିଏ ଉପରକୁ ଅନେଇଲେ ଜଣେଜଣଙ୍କର ଆଖିରେ ପଡ଼େ ଗୋଟିଏ ଉପର ଘର ବାରଣ୍ଡାର ବର୍ଣ୍ଣହୀନ ରେଲିଂରେ ଲଗା ହୋଇଥିବା କଳା କାଠ ପଟ୍ଟାଟିଏ, ଲେଖା ହୋଇଛି "ବ୍ରଜବନ୍ଧୁ ସାମନ୍ତରାୟ, ଓକିଲ" । ମୁହୂର୍ତ୍ତିକ ପାଇଁ ଟିକିଏ କୌତୁହଳ ଆସେ,—ଏ ଗଳିରେ ବି ଓକିଲ ଅଛନ୍ତି । ମଣିଷ ସମାଜର ଶିରାରେ ଶିରାରେ ଜଡ଼ିରହିଛି ଏଇ ଓକିଲ ଜାତିଟା, ଏଇଥା ଭାବ ଦେଖଣାହାରୀ ଆଗେଇ ଯାଏ ଦୂରେଇ ଯିବାକୁ ।

ଏ କିନ୍ତୁ କେତେଦିନ ତଳର କଥା । ଆଜିକାଲି ଆଉ ସେ କାଠପଟ୍ଟାଟି ଦେଖିବାକୁ ମିଳେ ନାହିଁ । ତା ବଦଳରେ ଦେଖିବ ରେଲିଂ ଉପରୁ ଝୁଲୁଛି ମଇଳା ମଇଳା ପିଲାଙ୍କ କୁର୍ତ୍ତା, ଗେଞ୍ଜି, ଲୁଙ୍ଗି ଓ ଗାମୁଛା । ତଳେ ଥିବା ଦୋକାନୀଟିଏ ତାର ପରିବାରକୁ ଆଣି ଦେଇଛି ସେଇ ଅନ୍ଧାରୁଆ ଯୋଡ଼ିଏ ଘରେ, ଦୋକାନ ପାଖରେ ରହି ବ୍ୟବସାୟକୁ ବଢ଼ାଇବା ପାଇଁ ।

ବ୍ରଜବାବୁଙ୍କୁ ଖୋଜିବାକୁ ଯାଇ ତାକୁ ପ୍ରଥମେ ପଚାରିଲେ ସେ କହେ 'କାହାକୁ ଖୋଜୁଛ, ବ୍ରଜବାବୁ ଓକିଲ ? ସେ ପଳାଇଗଲଣି ଆଜିକୁ ତିନି ଚାରିମାସ ହେବ ।' ତା'ପରେ ସେ ଅଳପ ହସି ଆଖିପତା ଟେକି ତୁମର ମୁହଁକୁ ଅନାଏ, ତୁମର କଳ୍ପନା ଓ ବୁଝିବାପଣକୁ ଆହ୍ୱାନ କରି ।

କେହି ତାଙ୍କ ଚରିତ୍ରର ବିଶଦବ୍ୟାଖ୍ୟା କରିବାକୁ ଯାଆନ୍ତି ନାହିଁ । କିନ୍ତୁ ରାତିରେ ଲୋକଗହଳି କମିଲା ବେଳକୁ ଛକମୁଣ୍ଡରେ ଥିବା ଯଦୁସାହୁ ଗୁଡ଼ିଆ ଦୋକାନରେ ଯେଉଁ ଆସର ଜମେ, ସେଇଠି ବେଳେବେଳେ ଶୁଣିବାକୁ ମିଳେ ତାଙ୍କ ବିଷୟରେ [illegible] ।

ଦୋକାନ ଭିତରେ ଥିବା ପୁରାତନ କାନ୍ଥଘଣ୍ଟାରୁ ଠଂ ଠଂ କରି ଦଶଟା ବାଜିଉଠେ ଝାରବଙ୍କମରେ । ଗାଡ଼ିବାଲା ଶୋଭନ୍ ଖାଁକୁ ସେଥିକିବେଳେ ବେଶି ଭେକ କରି ଉଠେ । ସେ ପାଟିକରେ ଯଦୁ ସାହୁ ଉପରେ, "ଆରେ ଦଅମ କଲଧି ଧେ'ଟା । ଅସି ଦଶଟା ବାଜିଲାଣି, ବ୍ରଜବାବୁର ବେଲ ଗଡ଼ିଗଲାଣି ।"

ବ୍ରଜବାବୁ ନାଁ ଶୁଣି ଯଦୁ ସାହୁ ମୁଣ୍ଡ ଟେକେ, ଶୋଭନ୍ ଖାଁ ଆଡ଼କୁ ମିନିଟିଏ ଗୃହେଁ, ସନ୍ଦେହ କଲା ପରି ଓ ତା'ର ଫାପୁଲା ମୁହଁରେ ହସକୁ ଗଡେଇ ଦେଇ ବଢ଼େଇ ବଢ଼େଇ କହେ, "ଆରେ ନବୁ ତ ଉଛନ୍ନ କାହିଁକି ? କଏ ଅନେଇ ବସିଥିବ ଯେମିତି ! ହେଃ ହେଃ ।"

ଶୋଭନ୍ ଖାଁ ତା ସ୍ତ୍ରୀକୁ ତଲାକ୍ ଦେଇଛି ତିନମାସ ହେଲା । ପରେ ଏକୁଟିଆ । ଶ୍ଳେଷ ପନ୍ଥୁଙ୍କେ ଠିକ୍ ଜାଗାରେ । ତଥାପି ରାଗ ଚପେଇ ସେ ବି ହସେ ଧମନ୍ତ୍ରଙ୍କ ସାଙ୍ଗରେ ।

କିନ୍ତୁ ପାଖ ମନୋହର ଦୋକାନର ନାରୁବାବୁର ମନକୁ ଅସିଯାଇଥାଏ ବ୍ରଜବାବୁଙ୍କ କଥା । ସେ ଆରମ୍ଭ କରେ, "ଖାସା ଲୋକଟାଏ ଥିଲା ବ୍ରଜବାବୁ । କେଇଟା ଲୋକ ଅଛନ୍ତି ତା' ଭଳିଆ ? ମୁଣ୍ଡ କଟିଯିବ ପଛେ ସତରୁ ହଡ଼ିବ ନାହିଁ ।"

ପାନ ଦୋକାନି ବୁଢ଼ିଆ ବିଡ଼ି ଲଗାଇ କଥା ଯୋଡ଼େ, "ସତ କଥା ଏକା । କିନ୍ତୁ ଏମିତିକା ଲୋକ ଏଇ କଳିଯୁଗପାଇଁ ନୁହେଁ । ଦେଖୁନା କଣ ହେଲା ତାର । ବ୍ୟବସାୟ ଗ୍ରୁଡ଼ି ଅପମାନ ମୁଣ୍ଡେଇ ମାନେ ମାନେ ବାହାରିଗଲା ତା' ବାଟରେ । ମିଛ ଟିକିଏ କହିଥିଲେ କଣ ଷଡ଼ିହୋଇ ଯାଉଥିଲା ? କୋର୍ଟ ଘର କଣ ତାକୁ ଗ୍ରୁଡ଼ି ମଦୁଆ ଚନ୍ଦରକୁ ବିଶ୍ୱାସ କରିଥାଆନ୍ତା ?"

ଗରମ କଲ୍‌ବି ଧେ'ଟା ଗପାଗପ୍ ପାଟିରେ ପକାଇ ପାଣି ପିଇ ସାରିଲା ବେଳକୁ ଶୋଭନ୍ ଖାଁର ପାଟିଫିଟେ । ଗଳାକୁ ଲମ୍ବେଇ ଚକ୍‌କାର ମାରିଲା ପରି ସେ କହେ, "ହଅଁ ହୋ,—ଭାରି ଗୋଟାଏ ଓକିଲ ଥିଲା ତ ! ତିରିଶ୍ରୀ ସାଲ କାଲୀ ଲଢ଼େଇରେ କେଡ଼େ ଦଙ୍ଗାଟାଏ ହୋଇଗଲା ଏଇ ଢ଼' ସାହି ଭିତରେ । କଣ କରି ପକାଇଲା ସେ ଅମ ସାହିବାଲା ହୋଇ ? ତାଙ୍କ ଆଡ଼ ଓକିଲ ମିଛ ସତ କହି ଆମକୁ ପଣା ପେଲେଇଲା ମାସେ । ଆଉ ଆମ ବ୍ରଜବାବୁ କହିଲେ କଣ ନା ମୋତେ ହେ ଭିତରକୁ ଟାଣ ନାହିଁ । ମିଳାମିଶା କରିବାକୁ କହିଲେ ମୁଁ ଯିବି । ହୁଁଃ ଶାଲା ଡର୍‌ପୋକ୍ କାହାଁକା ।"

ତାର ଟେହେ ମୁଣ୍ଡହଲା ଭଙ୍ଗୀ ନକଲ କଲା ପରି କଥା, ଓ ଅଙ୍ଗେ ନଚାଇଲା ପୁରୁଣା ମାଡ଼ର ସ୍ମରଣୀକାରେ ଥାକେ ହସି ଉଠନ୍ତି । କିନ୍ତୁ ଯଦୁ ସାହୁ ହସକୁ

ବଢ଼ିବାକୁ ଦିଏ ନାହିଁ । ବହୁତବେଳୁ ସହି ରହିଥିବା ଉଦାର ମାଷ୍ଟରଟି ପର ପାଟି-କରି ଉଠେ, "କାହିଁକି ସବୁ ହେଉଛି ଏମିତି ? କଥା କଥାରୁ ତମକୁ କଣ ମିଳୁଛି— ଏଁ ? ଦିଅ ଦିଅ କାମବଢ଼ାଅ ବେଗି ବେଗି । ତମର କଣ ଦରକାର, ଦିହ୍ୟାଏ, ଆଉ କଣ ବୁଝିଆ, ଆଉ ଚୋର—?"

କଥା ଛୁଣ୍ଡିଯାଏ ଏମିତି । କିନ୍ତୁ ସବୁଥର ଲକ୍ଷ୍ୟକଲେ ଦେଖିହେବ ଯେ ସେଥିରେ ଯୋଗ ଦିଏ ନାହିଁ ଜଣେ ସେ ହେଉଛି ଯଦୁ ସାହୁ । ଅଥଚ ସମସ୍ତେ ଜାଣନ୍ତି ଯେ ବ୍ରଜବାବୁ ଥିଲେ ତାର ନିତିଦିନିଆ ଗରାଖ, ଇଚ୍ଛା କଲେ ସେ ଅନେକ କିଛି କହି ପାରିବ ତାଙ୍କ ବିଷୟରେ । ହେଲେ କେହି ଭରସି ପଚାରି ପାରନ୍ତି ନାହିଁ । ଯଦୁ ସାହୁର ଭ୍ରୁକୁଟା ମୁହଁ ଦେଖି ଶଙ୍କି ଯାଆନ୍ତି ।

······ବ୍ରଜବାବୁଙ୍କ ବାହାଦୁରୀର ମୂଳକଥା ଜାଣିବାକୁ ହେଲେ ପ୍ରଥମେ ବୁଝିବାକୁ ହେବ ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ ଓ ସେଇ ଚରିତ୍ରର ମୂଳଦୁଆ ଖୋଜିବାପାଇଁ ଯିବାକୁ ପଡ଼ିବ ଜମ୍ବିରା ନଈକୂଳରେ ଥିବା ସୁନାପଡ଼ା ଗାଆଁକୁ, ଯେଉଁଠି ବ୍ରଜବାବୁ ଜନ୍ମ ହୋଇଥିଲେ, ନୂଆ କଥା କହି ଶିଖିଥିଲେ, ପହିଲି ପାଠ ପଢ଼ିଥିଲେ ଏବଂ ନିଜ ବିଷୟରେ ଓ ସଂସାର ବିଷୟରେ ପ୍ରାଥମିକ କଥା କେତୋଟି ମନକୁ ଆଣିଥିଲେ ।

ବ୍ରଜବାବୁଙ୍କର ବାପା ନରବାବୁ ଥିଲେ ସୁନାପଡ଼ା ଗାଆଁର ଜମିଦାର । କିନ୍ତୁ ଜମିଦାରୀ ଥିଲା କେବଳ ପ୍ରତିପତ୍ତି ଆଣିବା ପାଇଁ, 'ସାଆନ୍ତପଣ'ର ମର୍ଯ୍ୟାଦାର ଆଧାର ହୋଇ । ଆୟ ଯୋଗାଉଥିଲା ନିଜର ଜମ୍ବିରା ନଈର କୂଳେ କୂଳେ ଲମ୍ବିଯାଇଥିବା ଗହଳା ଧାନର କିଆରି ଓ ପ୍ରଶସ୍ତ ଆମ୍ବତୋଟା । ତେଣୁ ଅଧେ ସ୍ୱଗୁଣରୁ ଓ ଅଧେ ଜମିଦାରୀ ଉପରେ ନିର୍ଭର ନ କରୁଥିବା ହେତୁ ନରବାବୁ ସେ ଅଞ୍ଚଳର ଜଣେ ଦୟାଳୁ ଓ ଉଦାର ଜମିଦାର ବୋଲାଉଥିଲେ । ପାଖଆଖର ଜମିଦାରମାନେ ତୁଳନାରେ ଝସି ଯାଉଥିଲେ ତାଙ୍କୁ ।

କ୍ରମଶଃ ଗୋଟିଏ ଝିଅ ପରେ ବ୍ରଜବାବୁଙ୍କର ଜନ୍ମ । ସେତେବେଳକୁ ନର-ବାବୁଙ୍କର ମୁଣ୍ଡବାଳ ଅଧେ ପାଚିଗଲାଣି । ଜୀବନର ଗତି ଅଧାବାଟରୁ ଟଳିଗଲାଣି ଖଣ୍ଡେ ଦୂର, ଲେଉଟାଣିର ସୁସ୍ପଷ୍ଟ ସଙ୍କେତ ଦେଇ । ସଂସାରର ଅଧିକାଂଶଙ୍କ ପରି ସେତେବେଳେ ତାଙ୍କ ଆଖିରେ ପଡ଼ୁଥିଲା ପତ୍ରର ପାଚିବା ଓ ଝଡ଼ିବାର କ୍ରମ । ସେଥିରେ ତାର ପ୍ରଥମ ସବୁଜତା, ଚହଟିବା ଗୁଣକୁ ମନେ ପକାଇ ସେ ଧାଉଥିଲେ ଜୀବନର ବୈଚିତ୍ର୍ୟ ଏବଂ ସଂସାରର ସବୁ କିଛି ଦେଖି ନେଇ ସାରିଲାପରେ ଲବ୍ଧପ୍ରାପ୍ୟ ସନ୍ତୋଷରେ ତାଙ୍କର ଜୀବନ ଦର୍ଶନକୁ ଦୋହରାଉଥିଲେ । ତାର ମୂଳମନ୍ତ୍ର ତଳେ ଟାଣି ଆଣୁଥିଲେ ମୋଟା ନାଲିଗାର ।

ତାଙ୍କ ଦର୍ଶନର ବଶିଷ୍ଟତା ଥିଲା ଏତିକି ଯେ ତାହା ଆସି ନଥିଲା ଖାଲି ଗୋଟାଏ ବୟସ ସୁଲଭ ଧାରଣା ହୋଇ, ସ୍ରଷ୍ଟାର କୈଫିୟତ ଯୋଗାଇବା ପାଇଁ । ନା, ସେଥିରେ ତାଙ୍କର ଥିଲା ଅଗାଧ ବିଶ୍ୱାସ,—ଯେ ତାହା ଜୀବନ୍ତ ସତ୍ୟ, ସବୁବେଳେ, ସବୁଥିପାଇଁ । ମନସ୍ତାତ୍ତ୍ୱିକ କହିଥାନ୍ତା ଯେ ଏଇ ବିଶ୍ୱାସର କାରଣ ହେଉଛି ଏଇ ଯେ ସ୍ୱଚ୍ଛନ୍ଦ ସମତୁଲ ଜୀବନର ପଥିକ ହୋଇ ନଣବାବୁ କେବଳ ନୀତିର ସହଜରୂପ ଦେଖି ଆସିଛନ୍ତି, ବୈଷୟିକ ସ୍ୱାର୍ଥ ସହିତ ତାର ଅସହଯୋଗ, ସାମଞ୍ଜସ୍ୟ ପାଇନାହାନ୍ତି କେବେହେଲେ । କିନ୍ତୁ ନଣବାବୁ ସେକଥା ମାନି ନ ଥାଆନ୍ତେ, ହସି ଉଡ଼ାଇ ଦେଇଥାନ୍ତେ, ଜୀବନ ସହିତ ନୀତିର ସଂଘର୍ଷ ହୋଇପାରେ ନାହିଁ । ତେଲ ସାଙ୍ଗରେ ସଳିତାର ବିରୋଧ ହେବ କିପରି ?

ପୁଅ ଦୁଇ ମାସର ହୋଇ ହସିଲାବେଳକୁ ନଣବାବୁଙ୍କ ମନରେ ଆସିଲା ତୀବ୍ର 'ମୋ ପୁଅ' ଭାବ । ଏ ମୋ ପୁଅ, ମୋର ଦାୟାଦ, ଉତ୍ତରାଧିକାରୀ; ଖାଲି ଧନସମ୍ପତ୍ତିର ନୁହେଁ, ମୋର ସବୁ ଧର୍ମଧାରଣା ଓ ଭାବନାର । ସ୍ତ୍ରୀ ଯେତେବେଳେ ପୁଅକୁ ଶୁଆଇ ପକାଇବା ଲାଗି ଗୀତ ବୋଲନ୍ତି, 'ପାଠ ପଢ଼ିବୁ ତୁ, ବଡ଼ଲୋକ ହେବୁ, ପାଲିଙ୍କି ପାଇକ ଛତା', ନଣବାବୁ ମୁରୁକି ହସି କହନ୍ତି, 'ବଡ଼ଲୋକ ହେବ ? ଦରକାର ନାହିଁ ବାବୁ, ଖାଲି ମଣିଷ ହୋଇ ରହୁ, ସତ ମଣିଷ ପରି ମଣିଷଟାଏ' । ପରମ ଆଗ୍ରହ ଓ ଶ୍ରଦ୍ଧା ନେଇ ଉପରକୁ ଅନାଇ କଲା ଭଳି ଗୃହିଣୀ କହନ୍ତି, 'ସତରେ ? ଠିକ୍ ତା' ବାପ ଭଳିଆ' ?

ପୁଅ କଥା କହି ଶିଖୁ ନଶିଖୁଣୁ ନଣବାବୁ ତାକୁ ଶିଖାଇଲେ 'କଳା କଳେବର କହ୍ନାଇ' 'କମଳ ଲୋଚନ ଶ୍ରୀହରି' ଇତ୍ୟାଦି ଓ ପାଠପଢ଼ା ଆରମ୍ଭ କଲାବେଳକୁ ଚାଣକ୍ୟ ଶ୍ଳୋକ, ହିତୋପଦେଶର ନୀତିକଥା ଓ ଭକ୍ତକବି ମଧୁସୂଦନଙ୍କର ସ୍ତୋତ୍ର ମୁଖସ୍ଥ କରାଇଲେ । ସଞ୍ଜବେଳକୁ ବାପପୁଅ ଦୁଇଜଣ ବସିଯାନ୍ତି ଦାଣ୍ଡଘରେ ଓ ନଣବାବୁଙ୍କର ଗୁରୁଗମ୍ଭୀର ସ୍ୱର ସାଙ୍ଗରେ ଶିଶୁ ବ୍ରଜବାବୁଙ୍କର ପିଲାଳିଆ କଣ୍ଠ ଆବୃତ୍ତି କରେ "ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ, ଉହାଅ ପଷାଣ ମୋର ତବ ପ୍ରେମ ସ୍ରୋତେ···।" ତୁଳସୀ ଚଉରା ମୂଳେ ସଞ୍ଜ ଦେଉ ଦେଉ ବ୍ରଜବାବୁଙ୍କ ମାଆ ଶୁଣନ୍ତି ସେ ଗୀତ, ଭକ୍ତି ଭାବରେ ମିଶିଯାଏ ଗର୍ବର ପୁଲକ, ସତେ ଯେପରି ଦୀପ ଜଳୁଛି ଏଇ କଣ୍ଠ ଦୁଇଟିକୁ ସବୁଦିନ ପାଇଁ ସୁନ୍ଦର ଓ କାଞ୍ଚନ କରି ରଖିବା ପାଇଁ ।

କ୍ରମଶଃ ବ୍ରଜବାବୁ ପୂରାପୂରି ବାପାଙ୍କ ଭକ୍ତ ହୋଇଗଲେ । ତାଙ୍କର ପିଲାଳିଆ କଳ୍ପନାରେ ସୁନ୍ଦର ରାଇଜର ରଜା ହେଲେ ବାପା । ଠାକୁର ଘରୁ ଫେରି ଆସୁଛନ୍ତି ସେ ମହାଲୁଗା ପିନ୍ଧି । ଟକ୍‌ଟକ୍ ଗୋରା ଦେହ, ଚମ ଓହଳି ଆସିଛି, ଓଠରେ ଗୁଣୁ ଗୁଣୁ, ପାଦରେ କାଠଉ ଠକ୍ ଠକ୍, ଆଖି ତଳକୁ, ହାତ ଦୁଲୁଆସୁଛି ଅଧାଚନ୍ଦା

ମୁଣ୍ଡର ପାଚିଲାବାଳକୁ ଆଉଁଷି ଓ ପୁଅକୁ ଦେଖି ହସି ଦେଉଛନ୍ତି ଝିଅଟିଏ । ଦଶବର୍ଷର ବ୍ରଜବାବୁଙ୍କ ମନରେ ଆସେ ଯେ ଏଇ ହେଉଛି ସବୁ ଭଲ, ସବୁ ସୁନ୍ଦରର ଛବି । ମୁଗ୍ଧ ଦୃଷ୍ଟିରେ ଅନାଇ ରହନ୍ତି ସେ । ବଡ଼ ହେଲେ ସେ ଏମିତି ହୋଇଯିବେ ବାପାଙ୍କ ପରି ।

ସେଇ ଛବିର ଛାଇ, ତାର ଆଲୁଅ ସେ ଦେଖନ୍ତି, ଯେତେବେଳେ ଏକୁଟିଆ ହୋଇ ଘରର ଝିଙ୍କାଏ ଆଗରେ ଥିବା ଜମ୍ବୁ ନଈ କୂଳରେ ବସି ଅନାନ୍ତି ଆକାଶକୁ । ଗୋଳିଆ ପାଣିର କୁଳୁକୁଳୁ, ଝୁବ୍‌ଝୁବ୍, ଘସିଲା ପଥର, ଚକ୍‌କର ଦେଇ ଫଡ଼ ଫଡ଼ କରି ବୁଲୁଥିବା ଚଢ଼େଇ, ଧାନକ୍ଷେତରେ ପବନର ଥର ଅଉଁଷା, ଓଦାମାଟିରେ କଅଁଳ ଘାସର ଚମକ, ନଈ ସେପାଖରେ ଗହଳିଆ ଗଛଭିତରେ କୁଢ଼େଇ ହୋଇ ରହିଥିବା କୁଡ଼ିଆ ଓ ତାର ସିକୁବାଡ଼କୁ ଲଗି ଲଗି ଗୃକୁଳେଇ ହୋଇ ଯାଉଥିବା ଧଳା ଛେଳିଟିଏ, ଏସବୁ ଭିତରେ ମଜ୍ଜିଯାଆନ୍ତି ସେ । ଭାବକୁ ମନେ ମନେ ଭାଷା ଦେଇ ହୁଏ ନାହିଁ, କିନ୍ତୁ ଭଲ ଲାଗେ ଆଉ ସେତିକିବେଳେ ମନେ ହୁଏ ବାପା ପଛରେ ଅଛନ୍ତି । ବଡ଼ହୋଇ ପଛରେ ଠିଆ ହୋଇ ହସି ଦେଉଛନ୍ତି । ଦେହ ଶୀତେଇ ଯାଏ । ପାଣିର କୁଳୁକୁଳୁ ଆହୁରି ପାଖରେ ଶୁଭେ । ଧଳାଛେଳି ପାଖେଇ ଆସେ, ଧୋବ ଫର ଫର ହଂସେ ତାର ଦେହଟା ।

ଏଇ ମୁହୂର୍ତ୍ତଗୁଡ଼ିକ ତାଙ୍କ ମନରେ ରହିଯାଏ ଭଲ ଲାଗିବାର ଚରମ ଅନୁଭୂତିର ସ୍ମାରକ ହୋଇ । ପାଠ ପଢ଼ିଲାବେଳକୁ 'ସୁନ୍ଦରତା', 'ସ୍ୱଚ୍ଛତା' 'ପବିତ୍ରତା'ର ମାନେ ଖୋଜିବାକୁ ଗଲେ ସେଇ ମୁହୂର୍ତ୍ତର ଅନୁଭୂତି ଫେରିଆସେ । ଛବିର ସବୁ ରୂପରେଖ ମନେପଡ଼େ ନାହିଁ । ଖାଲି ଦିଶିଯାଏ ଗଡ଼ିଯାଉଥିବା ଲହଲହକା ଧାନ-କ୍ଷେତ, ଜମ୍ବୁର କୁଳୁକୁଳୁ, ଝୁବ୍‌ଝୁବ୍, ଶାଗୁଆ ପତର ଭିତରେ ଥିବା ଚକ୍‌ଚକ୍ ଧଳା ଛେଳି ଓ ସବୁରି ଭିତରେ ବାପାଙ୍କର ନିକଟତା, ତାଙ୍କର ସେଇ ଠାକୁରଘରୁ ଫେରି ଆସୁଥିବା ମୁହଁର ଉଜ୍ୱଳତା ।

ସେଥିଲାଗି ବାପାଙ୍କଠାରୁ ଶିଖିଥିବା ନୀତିକଥା ଓ ଆଦର୍ଶ ତାଙ୍କ ମନରେ କେବଳ ଶିଖିଥିବା କଥା, ଜାଣିବା କଥା, ବାପା ଗାଳିଦେବେ, ଠାକୁରେ ରାଗିବାର ଭାବ ନେଇ ଆସି ନ ଥିଲା । ତାକୁ ଘେରି ରହିଥିଲା ବାପାଙ୍କର ବ୍ୟକ୍ତିତ୍ୱ ଓ ସେଥିରେ ଥିବା ସମଗ୍ର ସୁନ୍ଦରତା ଓ ଭଲ ଲାଗିବାର କଳ୍ପନା । ପିଲାଦିନରୁ ସେଇ ପରିବେଶ ଛଡ଼ା ହୋଇ ଯାଇଥିଲା ବଡ଼ଦିନର ବୁଦ୍ଧିବିଚାରର ଢେଉକୁ ରୋକିବା ପାଇଁ ।

**'ମିଛ କହିବ ନାହିଁ'** ଏ ଥିଲା ସେ ନୀତିକଥାମାନଙ୍କ ଭିତରୁ ଗୋଟିଏ । ମିଛ କହିଲେ ମହାପାପ । ପାପ ମାନେ ସେ ବୁଝି ନ ଥିଲେ ନର୍କର କାରଣ ବୋଲି ।

ପାପ ମାନେ ଭୁଲ୍ । ସେଇଥିପାଇଁ ତାଙ୍କୁ କରିବା କଥା ନୁହେଁ । ବାପାଙ୍କ ଛବି ସାଙ୍ଗରେ ଖାପ୍ ଖାଇବ ନାହିଁ । କେଉଁଠି କଣ ମଇଳା ହୋଇଯିବ, ଅସୁନ୍ଦର ହୋଇଯିବ ।

ସ୍କୁଲ୍‌ରେ ପଢ଼ିବାବେଳେ କେତେଥର ଅବଶ୍ୟ ମିଛ କହିବାକୁ ପଡ଼ିଛି, ଅନ୍ୟ ସାଙ୍ଗମାନେ ସେମିତି କରନ୍ତି ବୋଲି । କିନ୍ତୁ ତା ପରେ ଅଡ଼ୁଆ ଅଡ଼ୁଆ ଲାଗିଛି, ଅଶାନ୍ତି ଆସିଛି । ଦିନକର କଥା ମନେ ଅଛି । ସେଦିନ ଦଣ୍ଡରୁ ରକ୍ଷା ପାଇବା ଲାଗି ସେ ମାଷ୍ଟରଙ୍କ ଆଗରେ ମିଛ କହିଥିଲେ । କିନ୍ତୁ ମନେହେଲା ଯେ ମାଷ୍ଟ୍ରେ ଅବିଶ୍ୱାସ କରିଛନ୍ତି । ଘରକୁ ଫେରି ବାପାଙ୍କର ହସିଲା ମୁହଁ ଦେଖି ତାଙ୍କର ମନ ଆହୁରି ଦବିଗଲା । ବାପାଙ୍କ ସାଙ୍ଗରେ ହସିଲା ବେଳକୁ ମନେ ହେଉଥିଲା ତାଙ୍କର ହସିବା ଉଚିତ ନୁହେଁ, ବାପାଙ୍କର ଅପମାନ ହୋଇଛି । ଆଉ ସେଇ ଘଟଣା—ଓଃ, ତାଙ୍କର ମନେ ଥିବ ସବୁଦିନ । ଝରକାରୁ ଅନେଇଲାବେଳକୁ ଜଟିଆନା ଘରର ଶିଉଳିଲାଗା ଭଙ୍ଗା ପାଚେରିରୁ କଳା କଳା ବର୍ଷା ପାଣି ନିଗିଡ଼ି ପଡ଼ୁଛି । ଗୃହଅଡ଼େ କବାଟ ବନ୍ଦ, ଝରକା ବନ୍ଦ । ପାଉଁଶିଆ ଆକାଶକୁ କଳା ପାଣିର ଝର, ଅନ୍ଧାରର ଝାଳ ପରି । ଖାଲି ଅନ୍ଧାର, ଝାଳ ଓ ଦେହର ବାସ୍ନା । ଶୋଇ ପାରିଲେ ନାହିଁ, ସେ ଉଠିପଡ଼ିଲେ । କବାଟ ବନ୍ଦ, ବାପାଙ୍କୁ ଡାକିଲେ ବି ଉଠିବେ ନାହିଁ । ବାପା ତାଙ୍କ ପାଖକୁ ଆସିବେ ନାହିଁ । ବ୍ରଜ ମିଛ କହିଛି । ଧଳା ଛେଳି ମୋଡ଼ି ହୋଇ ପଡ଼ିଛି କାଦୁଅରେ ।

...ଗାଁ ସ୍କୁଲରୁ ଯାଇ ରାଜପୁର ହାଇସ୍କୁଲ ଓ ତା' ପରେ କଲେଜ୍‌ରେ ପହଞ୍ଚିଲାବେଳକୁ ବ୍ରଜବାବୁଙ୍କର କଳ୍ପନାର ତେଜ ଟିକିଏ କମିଗଲାଣି । ଏବେ ଠିକ୍ ଭୁଲର ବିଚାର ପାଇଁ ଇଚ୍ଛା ହେଉଛି ବୁଦ୍ଧି ଖଟାଇବାକୁ ନ ହେଲେ ପାଠ ପଢ଼ିବାର ମୂଲ୍ୟ କଅଣ ? ନଦୀ ନାଲି ପଥରରେ ଗଢ଼ା କଲେଜ୍‌ର ପ୍ରଶସ୍ତ ପାହାଚ ଓ ଦାଲାଣରେ ବୁଲିଲାବେଳକୁ ତାଙ୍କର ମନେହୁଏ ଯେ ଏ ଜ୍ଞାନର ମନ୍ଦିର; ଏଠି ଗାଁ ଗହଳର କୁସଂସ୍କାର, ବନ୍ଧାମାଡ, ଚଳଚଳିତ ଧାରଣା ଓ ବିଶ୍ୱାସର ଜାଲକୁ ଏଡ଼ାଇ ଦେଇ ଶୁଦ୍ଧ ଜ୍ଞାନର ଆଲୁଅ ଆଣିବାକୁ ହେବ ନିଜ ଭିତରକୁ ।

କିନ୍ତୁ ଦିନୁଦିନ ଯେତେ ସାହିତ୍ୟ, ଇତିହାସ, ରାଜନୈତିକ ବିଜ୍ଞାନର ସମୁଦ୍ରରେ ପହଁରି ଦେହର ଧୂଳି ମଳି ଛଡ଼ାଇଲାବେଳକୁ ବ୍ରଜବାବୁଙ୍କର ମନେହେଲା ଯେ ଏ ପାଣି ଶୀତଳ, ନିର୍ମଳ ହେଲେ ମଧ୍ୟ ସବୁ ଗୁଣର ନୁହେଁ, ଏ ନୀତି ଅନୀତିର ବିଚାର ସ୍ପଷ୍ଟ କରି ଦେଇପାରେ ନାହିଁ, ଛାଡ଼ିଦିଏ ନିଜର ପ୍ରବୃତ୍ତି ଓ ଖିଆଲକୁ ।

କମନ୍ ରୁମ୍‌ରେ ସହରିଆ ପିଲା ସବୁ ପୁରୁଣା ରୁଚି ଓ ବିଚାରକୁ ଥଟ୍ଟା କରନ୍ତି, ତାକୁ ଟିକି ଟିକି କରି ଛିଣ୍ଡାଇ ପକାଇବାରେ ବୁଦ୍ଧିର ନମୁନା ଦେଖାନ୍ତି । କଥା ପ୍ରସଙ୍ଗରେ କେହି "ମିଛ କହିବା ଉଚିତ ନୁହେଁ" ବୋଲି କହିଲେ ସେମାନେ ହୁଏତ ହୋ ହୋ ହୋଇ ହସି ଉଡ଼ାଇ ଦିଅନ୍ତେ, କହନ୍ତେ ଯେ ସେ 'ପୋଜ୍' (Pose)

କରୁଛୁ, ଦେଖାଇ ହେଉଛୁ, କିମ୍ବା ତାର ନାବାଳକ ପଣ କାଟି ନାହିଁ । ଅଥଚ ସମସ୍ତେ ପିଲାଦିନେ ନିତ୍ୟମିତ ପ୍ରାର୍ଥନା କରିଥିବେ "ସତ୍ୟପଥେ ଧର୍ମପଥେ···" ଓ ହସ୍ତାକ୍ଷର ଖାତାରେ ଶହେଥର ଲେଖିଥିବେ "ମିଛ କହିବା ମହାପାପ" ।

ଗୁର୍ଜିର କଷଟିରେ ପିଲାଦିନର ନୀତିକଥା କଣ ମିଛ ହୋଇଯାଏ ? ତାହାହେଲେ ନୂଆ ନୀତି କଅଣ ? ମିଛ କହିବାକୁ ହେବ, ମିଛ କହିଲେ ଦୋଷ ନାହିଁ । ତେବେ ସେହି କଥାର ସ୍ପଷ୍ଟ ପ୍ରଚାର ହେଉନାହିଁ କାହିଁକି ? 'ସତ୍ୟମେବ ଜୟତେ'କୁ କାହିଁକି ରାଷ୍ଟ୍ରର ମୂଳନୀତି ଭାବରେ ରଖା ହୋଇଛି ?

କ୍ରମଶଃ ବ୍ରଜବାବୁଙ୍କ ମନରେ ଆସିଲା ଯେ ନୀତିକଥାକୁ ମଣିଷ ଖାଲି ଆଦର୍ଶ ବୋଲି ହିଁ ମାନି ନେଇଛି । ତାକୁ ଭୁଲ ବୋଲି କହିବାର କାହାର ସାହସ ନାହିଁ । କିନ୍ତୁ ସେ ଖାଲି ଆଦର୍ଶ । ତାକୁ ନେଇ ଚଳିବା କଥା ନୁହେଁ । ରାଜନୀତି ପାଇଁ ମିଛ କହିବାକୁ ପଡ଼େ, ବ୍ୟବସାୟ ପାଇଁ ମିଛ କହିବାକୁ ହୁଏ, ନିଜକୁ ବଞ୍ଚାଇବାକୁ ମିଛର ପ୍ରୟୋଜନ ହୁଏ । କଚେରୀରେ ସାକ୍ଷୀ ହୋଇ "ଯାହା କହିବି ସତ କହିବି" ବୋଲି ଶପଥ କଲେ ମଧ୍ୟ ସମସ୍ତେ ଧରିନିଅନ୍ତି ଯେ ଘୋଷଣା ବିଶେଷ ଗୁରୁତ୍ୱ ହୋଇଛି କେସ୍ ଜିତିବା ପାଇଁ, ସେଥିରେ ସେତିକି ସତ ଥାଇପାରେ ଯେତିକି ସୁବିଧାଜନକ ।

ତାହାହେଲେ କାହିଁକି ଏଇ ସତର ସମ୍ମାନ ? ଖାଲି ଶୋଭା ପାଇଁ, ପିଲାଙ୍କୁ 'ମଣିଷ' କରିବା ପାଇଁ ?

ବ୍ରଜବାବୁ କିଛି ଠିକ୍ କରି ପାରନ୍ତି ନାହିଁ । ବେଳେ ବେଳେ ନିଜକୁ ଗାଳି ଦିଅନ୍ତି ଏମିତିକା ପ୍ରଶ୍ନ ମନରେ ଆସୁଛି ବୋଲି । ଅନ୍ୟମାନଙ୍କ ପରି ସେ ମଧ୍ୟ ଆଦର୍ଶ ଓ ଜୀବନ, ପ୍ରାର୍ଥନା ଓ ପ୍ରତିକ୍ରିୟାକୁ ପୃଥକ୍ କରି ଚଳିପାରନ୍ତେ । କିନ୍ତୁ ସେତିକି ହୋଇପାରୁ ନାହିଁ କାହିଁକି ? ସେତିକିବେଳେ ତାଙ୍କର ମନେ ପଡ଼େ ବାପାଙ୍କର ରୂପ । ଆଖି ଆଗରେ ଆସିଯାଏ କାଶ୍ମୀ ନଈ କୂଳରେ ହସି ଉଠୁଥିବା ସୁନେଲି ସକାଳ । ସେଇ ଶୁଭ୍ରତାକୁ ସେ ଏଡ଼ିଦେଇ ପାରିବେ ନାହିଁ । ଅସମ୍ଭବ । ଯେ ଯାହା ଭାବୁ, କହୁ ପଛେ ।

ଏଇ ଆଦର୍ଶର ଦୃଢ଼ତା ନେଇ ସେ ଯେତେବେଳେ ଓକିଲାତିରେ ପଶିଲେ, ତାଙ୍କୁ ଜାଣିଥିବା ଅନେକଙ୍କ ମନରେ ଧାରଣା ଆସିଥିଲା ଯେ ସେ ସେଥିରେ ପାରିବେ ନାହିଁ ଓ ଥୋକେ ଭାବିଥିଲେ ଯେ ଏଥର ବ୍ରଜ ବଦଳିଯିବ । ବ୍ରଜବାବୁଙ୍କର ନିଜର ପିଲାଦିନର ଇଚ୍ଛା ଥିଲା ପିଲାଙ୍କୁ ପାଠ ପଢ଼ାଇବେ ଓ କିଛି ଲେଖାଲେଖି କରି ସଂସାରକୁ ଶୁଣାଇବେ । କିନ୍ତୁ ଯେତେବେଳେ ବାପା ବନ୍ଧୁ ରାମଶଙ୍କର ବାବୁଙ୍କର ପ୍ରସ୍ତାବରେ ରାଜି ହୋଇ କଥାଟା ପକାଇଲେ, ବ୍ରଜବାବୁ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଯାଇ ପରେ ଚିନ୍ତାକରି

କହିଦେଲେ "ଆଚ୍ଛା ହେଉ" । ତା'ପରେ କେତେଦିନ ସେ ନିଜକୁ ବୁଝାଇଲେ ଯେ ସେ କିଛି ଭୁଲ କରିନାହାନ୍ତି । ଏ ମଧ୍ୟ ଗୋଟାଏ ବ୍ୟବସାୟ । ମଣିଷ ଏ ବ୍ୟବସାୟକୁ କଳା କରି ଦେଇଛି । ବ୍ୟବସାୟର କିଛି ଦୋଷ ନାହିଁ । ବରଂ ଏଇଥିରେ ତାଙ୍କର ଆଦର୍ଶର ପରୀକ୍ଷା ହୋଇଯିବ । ଦେଖାଯିବ ସମସ୍ତଙ୍କ ପରି ସେ ବି ଆଦର୍ଶକୁ ପକେଟରେ ଗୁଞ୍ଜି ବଡ଼ଲୋକ ହେବାକୁ ବସିବେ କି ନାହିଁ ।

ପ୍ରଥମେ କେତେମାସ ତାଙ୍କୁ ପ୍ରବୀଣ ଓକିଲ ରାମଶଙ୍କର ବାବୁଙ୍କ ପାଖରେ ଟ୍ରେନିଂ ପାଇବାକୁ ପଡ଼ିଥିଲା । ଜଣେ ସଚ୍ଚୋଟ ଓକିଲ ହିସାବରେ ରାମଶଙ୍କର ବାବୁଙ୍କର ଖ୍ୟାତି ଥିଲା । ସେ ମହକିଲ ପାଇଁ ପ୍ରାଣପାତ ପରିଶ୍ରମ କରନ୍ତି, ବିପକ୍ଷଦଳ ସାଙ୍ଗରେ ସମ୍ବନ୍ଧ ରଖନ୍ତି ନାହିଁ, ଗରିବ ମହକିଲମାନଙ୍କୁ ଫିସ୍ ଛାଡ଼ିଦିଅନ୍ତି ଓ ଜୁନିଅରମାନଙ୍କୁ ଯଥେଷ୍ଟ ପାରିଶ୍ରମିକ ଦିଅନ୍ତି । ତା'ଛଡ଼ା ଓକିଲାତି ବାହାରେ ନାନାଦି ଉଚ୍ଚାଙ୍ଗ ଅନୁଷ୍ଠାନ ସହିତ ତାଙ୍କର ସମ୍ପର୍କ ଥାଏ—ଯଥା ବିଶ୍ୱସାହିତ୍ୟ ସଂସଦ, ସଙ୍ଗୀତ ଅନୁଶୀଳନ ସମିତି ଇତ୍ୟାଦି । ଭାରତୀୟ, ଉତ୍କଳୀୟ ଓ ଆର୍ଯ୍ୟ ସଂସ୍କୃତିର ଅବତାରଣା କରି ଓ ସ୍ଥଳବିଶେଷରେ ରହିର ପ୍ରୟୋଗ କରି ସେ ବହୁ ସଭାସମିତିରେ ବକ୍ତୃତା ଦେଇ ପ୍ରଶଂସା ପାଇ ପାରନ୍ତି । ଲୋକମୁଖରେ ଶୁଣିବାକୁ ମିଳେ—ଲୋକଟା ବଡ଼ଲୋକ, କିନ୍ତୁ କେଡ଼େ ଉଚ୍ଚ ମନ; ଲୋକଟା ଜ୍ଞାନୀ କିନ୍ତୁ ଶୁଖିଲାମୁହାଁ ନୁହେଁ ।

ରାମଶଙ୍କର ବାବୁଙ୍କ ପ୍ରତି ନରିବାବୁଙ୍କର ଅଗାଧ ଶ୍ରଦ୍ଧା ଥିଲା ଓ ପୁଅକୁ ତାଙ୍କ ହାତରେ ଦେଇ ସେ ଆଶ୍ୱସ୍ତ ହୋଇଥିଲେ ଯେ ତାର ସର୍ବାଙ୍ଗୀନ ଉନ୍ନତିର ପଥ ସୁଗମ ହୋଇଯିବ ।

କିନ୍ତୁ ମୂଳରୁ ବ୍ରଜବାବୁଙ୍କ ମନରେ ଆସିଲା ଯେ ରାମଶଙ୍କର ବାବୁଙ୍କର ଏଇ ସୁଖ୍ୟାତିରୁ ଚିହ୍ନଟି ପୁରାପୁରି ସତ ହୋଇପାରେ ନାହିଁ । ସେଥିରେ ଅଛି ଆଉ କିଛି । ଆଦର୍ଶବାଦ ଓ ସଫଳତା ମଝିରେ ଅଛି କୌଣସି ଅଦେଖା ସୂତ୍ର ଯାହା ସାଧାରଣଙ୍କ ଆଖିରେ ପଡ଼େ ନାହିଁ । ସେତିକି ରାମଶଙ୍କର ବାବୁଙ୍କର ବାହାଦୁରୀ ଓ ଅସାଧାରଣ ବୁଦ୍ଧିର ପରିଚୟ ।

ଦିନକର କଥା । ଗୋଟାଏ ବଡ଼ କେସ୍ ହାତରେ ପଡ଼ିଥାଏ । ରାମଶଙ୍କର ବାବୁଙ୍କ ସିରସ୍ତାର ମହକିଲ, ମୋହରିର, ସାକ୍ଷୀ ଓ ଜୁନିଅର ଓକିଲମାନଙ୍କର ଭିଡ଼ ହୋଇଥାଏ । ରାମଶଙ୍କର ବାବୁଙ୍କର ସଭାପତିତ୍ୱରେ ସାକ୍ଷୀମାନଙ୍କୁ ଗୋଟି ଗୋଟି କରି ଶିକ୍ଷା ହେଉଥାଏ କେମିତିରେ କଣ କହିବାକୁ ହେବ ।

ବ୍ରଜବାବୁ ଶୁଣି ଶୁଣି ଶେଷକୁ ରହିପାରିଲେ ନାହିଁ । ରାମଶଙ୍କର ବାବୁଙ୍କ ପାଖକୁ ଯାଇ କହି ପକାଇଲେ, "ସାର୍, ସ୍କୁଲ୍ ବିଶ୍ୱାଳକୁ ଯାହା ଶିଖାହେଲା

କହିବାକୁ, ସେସବୁ କଣ ଠିକ୍ ? ସେ ନିଜେ ଯେତେବେଳେ ସେସବୁ ଦେଖିନାହିଁ କିମ୍ବା ଶୁଣିନାହିଁ"—

ଓକିଲ ମୋହରିରମାନେ ଅବିଶ୍ୱାସର ମୁରୁକି ହସା ଦେଇ ଅନାଇଲେ ବ୍ରଜବାବୁଙ୍କ ଆଡ଼କୁ । ଲୋକଟାର କଣ ମୁଣ୍ଡ ଖରାପ ନା ସାଧୁତା ଦେଖାଇ ହେଉଛି ? ରାମଶଙ୍କର ବାବୁ କିନ୍ତୁ ଅଳ୍ପ ହସି ବିଜ୍ଞତାର ଭଙ୍ଗୀରେ ବ୍ରଜବାବୁଙ୍କର ପିଠି ଥାପୁଡ଼େଇ ବୁଝାଇବାକୁ ଆରମ୍ଭ କଲେ, ନବ୍ୟଶିକ୍ଷିତ ଜିଜ୍ଞାସୁ ନରେନ୍ଦ୍ରକୁ ରାମକୃଷ୍ଣ ପରମହଂସ ବୁଝାଇଲା ପରି "ୟଙ୍ଗ୍ ମ୍ୟାନ୍, ମୁଁ ତୁମକୁ ଦୋଷ ଦେଉନାହିଁ । ଜଣେ ଅଧେ କଲେଜ ଫେରନ୍ତା ନୂଆ ଓକିଲଙ୍କ ଏପରି ନୈତିକ ଭ୍ରମ ଆସିଥାଏ । ଆସିବା ସ୍ୱାଭାବିକ । କିନ୍ତୁ ଭୁଲ ହେଉଛି ଏଇ ଯେ, ତୁମେମାନେ ଭାବ ସତ କହିବା ପାଇଁ ସତ କହିବା ଦରକାର, ତାର ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ । ଭୁଲ୍, ଭୁଲ୍ । ସାମାଜିକ ମଙ୍ଗଳ, ସାମାଜିକ ନ୍ୟାୟ ପାଇଁ ସତର ପ୍ରୟୋଗ କରାଯାଏ ଓ କରିବା ଉଚିତ ଓ ସେଥିପାଇଁ ବେଳେ ବେଳେ ସତକୁ ଫୁଟାଇବାକୁ ପଡ଼େ, ଚକ୍ ଚକ୍ କରାଇବାକୁ ହୁଏ; ଟିକିଏ ତଥାକଥିତ ମିଛର ଉପାଦାନ ନେଇ । ଠିକ୍ ଯେପରି ଅଳଙ୍କାର ଗଢ଼ାଇବା ଲାଗି ସୁନା ସହିତ ଅଳ୍ପ ଖାଦ ମିଶାଇବା ଦରକାର । କିମ୍ବା ସାହିତ୍ୟରେ ମନକୁ ଛୁଇଁଲା ପରି ବାସ୍ତବତା ଆଣିବାକୁ ହେଲେ ବାସ୍ତବ ସହିତ କଳ୍ପନା ଯୋଖିବାକୁ ପଡ଼େ । ବୁଝିଲ ?" ତା' ପରେ ଅନ୍ୟମାନଙ୍କ ଆଡ଼କୁ ଅନେଇ ହସ ହସ ହୋଇ ଟିକିଏ ହଲେଇ କହିଲେ 'ନା, କଣ କହୁଛ ।' ଯୁଗପତ୍ କେତୋଟି ମୁଣ୍ଡ ଉଠିଲା ପଡ଼ିଲା । କେଡ଼େ ପଣ୍ଡିତ ଲୋକଟା, କେମିତି ଭାବରେ କଥାଟା ବୁଝାଇ ଦେଲେ । ଟୋକାର ମନକୁ ପାଇ ଯାଇଥିବ ।

କିନ୍ତୁ ବୁଝିଲେ ନାହିଁ ବ୍ରଜବାବୁ । ମିଛ ନ ମିଶାଇଲେ ସତ ଚଳେ ନାହିଁ, ଏଇ କଥାଟିର ଗୂଢ଼ ତଥ୍ୟ ସେ ବୁଝିପାରିଲେ ନାହିଁ । ରାମଶଙ୍କର ବାବୁ ଯୁକ୍ତିରେ ପ୍ରଶ୍ନର ସମାଧାନ କରିଦେଲେ । ସତର ମର୍ଯ୍ୟାଦା ରହିଲା, ଅଥଚ ବ୍ୟବସାୟର ଧାରା କ୍ଷୁଣ୍ଣ ହେଲା ନାହିଁ । କିନ୍ତୁ ଏ ସମାଧାନ ନୁହେଁ, ନିଜକୁ ଠକାଇବାର ଫନ୍ଦି । ବ୍ରଜବାବୁଙ୍କର ମନ ମାନିଲା ନାହିଁ ।

ଆସ୍ତେ ଆସ୍ତେ ସେ ରାମଶଙ୍କର ବାବୁଙ୍କଠାରୁ ଅଲଗା ହୋଇଗଲେ । ଛଅମାସ ପରେ ସେ ଯେତେବେଳେ ଜଣାଇ ଦେଲେ ଯେ, ନିଜର ଅଲଗା ସିରସ୍ତା କରିବେ, ରାମଶଙ୍କର ବାବୁ ମନରେ ଟିକିଏ ଦୁଃଖ କଲେ ଯେ, ବ୍ରଜବାବୁ ଭୁଲ କରୁଛି । କିନ୍ତୁ ବାହାରେ କିଛି ଆପତ୍ତି ନ କରି ଶୁଭେଚ୍ଛା ଦେଇ କହିଥିଲେ, "ଭଗବାନ ତୁମର ମଙ୍ଗଳ କରନ୍ତୁ ।"

ବାଛି ବାଛି ବ୍ୟବସାୟ ପାଇଁ ଏମିତିକା ଗଳିଟିରେ କାହିଁକି ଆସି ରହିଲେ ବୋଲି କେହି ପଚାରିଲେ ସେ କହନ୍ତି ଯେ ସେ ଜାଣିଶୁଣି ଏପରି ଜାଗା ବାଛିଛନ୍ତି ଯେଉଁଠି ଘଟଣା ଘଟେ ସାଧାରଣ ଲୋକଙ୍କର ଦୁଃଖ ସୁଖକୁ ନେଇ । ଓକିଲପଡ଼ାରେ ଥିଲେ ଘଟଣାର ସେଇ ନିକଟ ଗନ୍ଧ ମିଳନ୍ତା ନାହିଁ, କାଗଜପତ୍ରରେ ସାକ୍ଷୀପ୍ରମାଣରେ ଚାରିକୁଣିରେ ଝୁଲୁ କଥା ଘୋଡ଼େଇ ହୋଇ ଯାଆନ୍ତି ।

ଉପର ମହଲାରେ ଯୋଡ଼ାଏ ଘର । ଗୋଟିଏ ଅଫିସ୍ ଓ ଆଉ ଗୋଟିଏ ରହିବା ଘର । ଅଫିସ ଘରର ଝରକାରୁ ଦେଖାଯାଏ ରାମପାଳର ବାସନ ଦୋକାନ ଓ ପାଖକୁ ଲାଗି ଜାଲୁ ମିଆଁର ଚଷମା ଦୋକାନ । ତା' ସେପାଖକୁ ଛକ ମୁଣ୍ଡରେ ଗାଡ଼ିଘୋଡ଼ାର ଯାତାୟାତ ଦେଖିବାକୁ ମିଳେ ଓ ତା ସାଙ୍ଗରେ ପାନ ଦୋକାନର କାଲେଣ୍ଡର-ରମଣୀ, ଫଳ ଦୋକାନର ଟହଟହ ନାଲିଆ ସେଓ ଓ ପଚିଲାଆ ଗ୍ରେଟ ଗ୍ରେଟ ଅଙ୍ଗୁରର ପେଣ୍ଡା ଓ ଯଦୁ ସାହୁର ମିଠେଇ ଦୋକାନର ଫାଳେ ଯେଉଁଠି ଖାଲି ମାଛି ସଭାର ପାହାଡ଼ ଆଖିରେ ପଡ଼େ, ପଛରେ ଥିବା ରାବଡ଼ି ରସଗୋଲା ଓ ପାନ୍‌ତୁଆର ସମ୍ଭାବନା ଆଣି ।

ସେଇ ଝରକା ଦେଇ ସେ ଅନାଇ ରହନ୍ତି ରାସ୍ତାର ଲୋକଗହଳିକୁ । ପଛରେ ଥାକ ଉପରେ ସଜା ହୋଇଥାଏ ଆଇନ୍ ବହି, ନିଷ୍ପତ୍ତିର ନଜିର ଓ କବିତା ବହି କେତେଖଣ୍ଡ । ଏଇ ତାଙ୍କର କର୍ମସ୍ଥଳୀ । ଏଇଠି ହୁଏ ସଂଘର୍ଷ, ସବଳର ଦୁର୍ବଳ ଉପରେ ଅତ୍ୟାଚାର ଓ ତା'ପରେ ଆସେ ଆଇନ୍-ଜୀବୀର କର୍ତ୍ତବ୍ୟ ।

ରାସ୍ତାର ଛାଇ ଆଲୁଅ ଭିତରେ ଲୋକ ଯାଆନ୍ତି । କେତେ ରକମର ଲୋକ, ମଳାମୁଣ୍ଡିଆ, ବାବୁଭାୟା, ଦେଶୀ ବିଦେଶୀ, ପିଲା ଓ ସ୍ତ୍ରୀଲୋକ । ରାସ୍ତା କଡ଼ର କାଦୁଅ ଉପରେ ଘୋଡ଼ାଗାଡ଼ିର ଚକ ଗଡ଼ିଯାଏ, ଗାର ଉପରେ ଗାର ପଡ଼େ ଓ ତା' ଉପରେ ଲଦି ହୋଇଯାଏ ଅଭ୍ୟସ୍ତ ଶ୍ରମିକର ମୋଟା ପାଦର ଚିହ୍ନ । ସବୁରି ବ୍ୟସ୍ତତା, ତରତର ଭିତରେ ଦେଶର ଭବିଷ୍ୟତ ନାଗରିକମାନେ ଗୁଡ଼ି ଉଡ଼ାନ୍ତି ଉପରକୁ ଓ ଦୈବାତ୍ କାଦୁଅରେ କାହାର ଗୋଡ଼ ଖସିଗଲେ ହୋ ହୋ ହୋଇ ତାଳି ମାରନ୍ତି । ବୁଢ଼ା ଚଷମା ଦୋକାନୀ ସୂତାବନ୍ଧା ଚଷମା ଆଖି ତଳକୁ କରି ଅନାଏ, ନ ଶୁଝିଲା ପରି ଗାଳିଦିଏ ଓ ଫେରିଯାଏ ନିଜର ଚଉକି ଉପରକୁ । ଭିକମଗା ଫଳଦୋକାନ ପାଖରେ ତଳେ ପଡ଼ିଥିବା ଅଙ୍ଗୁର କୋଳି ଗୋଟାଇ ଖାଏ । ଝାଙ୍କରେ ମିଶେ ଧୂଳି ଓ ଧୂଳିରେ କାର୍ ଟ୍ରକର ମଝିଆଡ଼ୁ ଖସି ଆସୁଥିବା ଧୂଆଁ । ଧୂଳି ଧୂଆଁର ଆବରଣ ତଳେ ମଣିଷ ଗହଳିର ପାଟି ଶୁଭେ ଓ ତା ଉପରକୁ ଟ୍ରାଙ୍କ୍ ବାହନର ଟଂ ଟାଂ ଓ ବିଜ୍ଞାପନର ସାମୟିକ ମାଇକ୍ ଦିଆ ଚକାର । ଇନ୍ଦ୍ରିୟ ଉପଭୋଗର ସମନ୍ୱୟ

ପାଇଁ ନାକରେ ବାଜେ ପାଚିଲା-ପଚା ଫଳର ବାସ୍ନା ଓ ଘୋଡ଼ା ଘୁଅ, ପେଟ୍ରୋଲର ଗନ୍ଧ ।

ଶୁଣାଣି ଚାଲିଛି । କାହିଁ ସଂଘର୍ଷ ? ନ୍ୟାୟ ପାଇଁ ଲଢ଼ାଇ କରିବାର ଉପାଦାନ କାହିଁ ? ବ୍ରଜବାବୁ ନିରାଶ ହୁଅନ୍ତି । ଏ ସଂସାରରେ ପ୍ରକୃତରେ ଘଟଣା ଘଟେ ନାହିଁ, ତାକୁ ତିଆରି କରାଯାଏ ବ୍ୟବସାୟର ବୃଦ୍ଧି ପାଇଁ, କାମର ପରିସର ବଢ଼ାଇବା ପାଇଁ । ଏଠି ପ୍ରକୃତ ନ୍ୟାୟ ଅନ୍ୟାୟର ସଂଘର୍ଷ ହୁଏ ନାହିଁ । କାରଣ ସାଧାରଣ ମଣିଷ ନିଜ ହିସାବରେ ଓ ନିଜ ମତରେ ନ୍ୟାୟ କରିବାକୁ ଚାହେଁ । ବ୍ୟବସାୟର ନୀତି ନେଇ ଦୋକାନୀ ଦାମ୍ ବଢ଼ାଏ, କହେ ମୋ ଜିନିଷ ସବୁଠୁ ଭଲ । ଘରକରଣାର ନୀତି ନେଇ ଗରାଖ ଦାମ୍ କମାଏ, କହେ ତା ଜିନିଷ ସବୁଠୁ ଖରାପ, ତାଠୁ ଭଲ ଜିନିଷ କମ୍ ଦାମରେ ମିଳୁଛି । କିଏ କାହାକୁ ମିଛ କହିଲା, କିଏ ଠକାଇଲା ?

କିଣାବିକାରୁ ବେଳେ ବେଳେ ଗାଳି ଫଜିତ୍ ମାଡ଼ ଫୌଜଦାରୀ ହୁଏ କଚେରୀକୁ ଯିବା ପାଇଁ । କିନ୍ତୁ ବ୍ରଜବାବୁ ଦେଖନ୍ତି ଯେ ଦୋଷ ଦୁଇଆଡ଼ୁ କିମ୍ବା କହିବାକୁ ଗଲେ ଦୋଷ କାହାର ନୁହେଁ । ସମାଧାନ କରିବାକୁ ଚେଷ୍ଟାକରନ୍ତି, ନ ହେଲେ କେସ୍ ଆଡ଼େଇ ଦିଅନ୍ତି ହାତରୁ । ଟଙ୍କା ଫିସ୍ ପଚିଯାଏ । ରାମଶଙ୍କର ବାବୁଙ୍କ ସୌଜନ୍ୟରୁ ଥରେ ଅଧେ ଜମି ଜମା ସମ୍ପର୍କୀୟ କେସ୍ ହାତକୁ ଆସେ । ଗରିବ ବିଧବା ମାଆକୁ ସାବତ ପୁଅ କଷ୍ଟ ଦେଉଛି, ଧାନଗଣ୍ଡାଏ ଦେଉନାହିଁ । ଶୁଣିଲେ ଦୟା ଆସେ, ଇଚ୍ଛା ହୁଏ ଅଣ୍ଟା ଭିଡ଼ି ଲଢ଼େଇ କରିବାକୁ କିନ୍ତୁ କଚେରୀ ଘରେ ଅପର ପକ୍ଷର କେରା ଓ ଯୁକ୍ତିରେ ମନେହୁଏ ଯେ ବିଧବା ମାଆର କାର୍ଯ୍ୟକଳାପ କିଛି କମ୍ ନୁହେଁ, ଯେ ସାବତ ପୁଅର ମଧ୍ୟ ଯଥେଷ୍ଟ ନ୍ୟାଯ୍ୟ ଅଭିଯୋଗ ଅଛି । ପ୍ରମାଣ ଉପରେ ପ୍ରମାଣ ଚାଲେ, ଯୁକ୍ତି ଉପରେ ଯୁକ୍ତି । ଆଇନ୍ ବହିରେ ଥିବା ବାକ୍ୟ, ଛେଦ, କମା, ପୂର୍ଣ୍ଣଚ୍ଛେଦ ଉପରେ ଦୀର୍ଘ ଆଲୋଚନା ଚାଲେ । କିନ୍ତୁ ବ୍ରଜବାବୁ ଝାଉଁଳି ଯାଆନ୍ତି । କାହିଁକି ଏ କେସ୍ ହାତକୁ ନେଲେ ? କାହିଁ ଏଠି ନ୍ୟାୟ ଅନ୍ୟାୟର ସଂଘର୍ଷ ? ବାଦୀ ପ୍ରତିବାଦୀର ବିବାଦ ଧଳା ଓ କଳାର ବିବାଦ ନୁହେଁ । ଖାଲି କଜିଆର ଆନନ୍ଦ, ଛକାପଂଝା, ଜିଏ ଜିତିବ ଦେଖାଯାଉ । ଶେଷକୁ ବିଚାର ହୁଏ ଛେଦର ଅର୍ଥ ଓ ଓକିଲଙ୍କର ବାହାଦୁରୀ ନେଇ, ନ୍ୟାୟ ଅନ୍ୟାୟର ପ୍ରଶ୍ନ ନ ଥାଏ ସେଥିରେ ।

ଗଳିରେ ହଞ୍ଜ ବୁଢ଼େ, ଆଲୁଅ ଜଳେ । ବ୍ରଜବାବୁଙ୍କ ଭାବନାର ସୁଅ କମେ ନାହିଁ । ପାନ ଦୋକାନର ରେଡ଼ିଓ ଗର୍ଜନ କରି ଉଠେ । ଜିଣାବିକାର ଚହଳ ବଢ଼ି ଚାଲେ । ଜାଲୁ ମିଆଁ ତାର ଆଦମ ଚଉକିରେ ବସି ଶ୍ରୋତାର ଆଗ୍ରହକୁ ଅପେକ୍ଷା ନ କରି ରାଜନୀତିର ତାଟକା ଖବର ଚର୍ଚ୍ଚା କରେ । 'ଅସମ୍ଭବ', 'ଏଇ ନେତାମାନେ' 'ତିରିଶ ବର୍ଷ ହେଲା' ଇତ୍ୟାଦି ଖଣ୍ଡେ ଖଣ୍ଡେ କଥା କାନରେ ବାଜିଯାଏ । ବ୍ରଜବାବୁ

ହସନ୍ତି ମନେ ମନେ । ଜାନୁ ମିଆଁ ଜୀବନକୁ ଉପଭୋଗ କରୁଛି । ନିଜ ଯୁକ୍ତିରେ ଅଗାଧ ବିଶ୍ୱାସ । ଏଇଥି ହୋଇଥିଲେ ଏଇଥି ହୋଇପାରି ଥାଆନ୍ତା । ଅଜ୍ଞାନର ଅହମିକା । ଦାୟିତ୍ୱହୀନ ଦାମ୍ଭିକତା । କିନ୍ତୁ ସେଇଥିରେ ସେ ବଞ୍ଚିଛି । ଜାନୁ ମିଆଁ ଖାଲି ଚଷମା ଦୋକାନୀ ନୁହେଁ । ସେ ମଧ୍ୟ ସମାଜ ପାଇଁ ଭାବିପାରେ, କରିପାରେ । ଆଉ ବ୍ରଜବାବୁ ? କଣ କରିବେ ସେ ? କେଉଁଠିକି ନେଇଯିବେ ତାଙ୍କର ଜ୍ଞାନ, ବୁଝିବା ପଣିଆ, ତାଙ୍କର ଆଦର୍ଶର ସମ୍ମାନ ।

ଭାବୁ ଭାବୁ ଭୋକ ଲାଗିଆସେ । ଘଡ଼ିରେ ଦେଖନ୍ତି ଦଶଟା ବାଜିଲାଣି । ଯନ୍ତ୍ରଚାଳିତ ପରି ବ୍ରଜବାବୁ ଗଡ଼ିଆସନ୍ତି ତଳକୁ, ଯଦୁ ସାହୁର ମିଠାଇ ଦୋକାନ ଆଡ଼େ । ଯଦୁ ସାହୁର ରାବିଡ଼ି ଓ ତା ସାଙ୍ଗରେ ଟିକେ ବୁନ୍ଦିଆ । ସେବୁଦିନେ ରାତି ଦଶଟାରେ ତାର ସଦ୍‌ବ୍ୟବହାର କରି ବ୍ରଜବାବୁ ଘୋଡ଼େଇ ଦିଅନ୍ତି ତାଙ୍କର ବିରକ୍ତି ଓ ଅନୁଶୋଚନା, ଆଉ ଗୋଟିଏ ଦିନ ଆସିବାଯାଏଁ ।

ଯଦୁ ସାହୁ ବ୍ରଜବାବୁଙ୍କୁ ଠିକ୍ ଚିହ୍ନିଥିଲା ବୋଲି କହିହେବ ନାହିଁ । ସାଧାରଣଙ୍କ ପରି ସେ ଜାଣିଥିଲା ଯେ ବ୍ରଜବାବୁର ବ୍ୟବସାୟ ଚାଲୁନାହିଁ । କିନ୍ତୁ ତା' ଛଡ଼ା ବ୍ରଜବାବୁଙ୍କଠାରେ ସେ ଆଉ କିଛିର ଆଭାସ ପାଇଥିଲା । ଯାହାକୁ ସେ ଠିକ୍ ବୁଝାଇ ପାରି ନଥାନ୍ତା । ଅଥଚ ଯେଉଁଥିରୁ ତାର ଧାରଣା ଆସିଥିଲା ଯେ ଏ ବ୍ରଜବାବୁ ଲୋକଟିକୁ ବିଶ୍ୱାସ କରି ହେବ, ଯେ କୌଣସି ଇତର କଥା ତା'ଠାରୁ ଆଶା କରାଯାଏ ନାହିଁ । ସକାଳୁ ରାବିଡ଼ି ଖାଇଲାବେଳେ ବ୍ରଜବାବୁଙ୍କର ଆକାଶକୁ ଅନେଇବାର ଚାହାଣି ସେ ଦେଖିଛି, ସେଥିରେ ହୁଏତ ସେ ପାଇଛି ସହି ନେଇଥିବା ଦୁଃଖର ଚିହ୍ନ ଯାହାକୁ କେହି ଦୂରାଇ ଦେଇ ପାରିବେ ନାହିଁ କିନ୍ତୁ ହସିଦେଇ ପାରିବେ ନାହିଁ । ବ୍ରଜବାବୁ ଦୁଃଖୀ । କିନ୍ତୁ ସେଇ ଦୁଃଖରେ ବଡ଼ପଣ ଅଛି । ବ୍ରଜବାବୁ ଖାଣ୍ଟି ଲୋକ ।

ସେଇ ବ୍ରଜବାବୁଙ୍କ ପତ୍ନୀ ଶୋଭାକୁ ଚିଉସନ କରିବା କଥା । ଶୋଭା ଦୀନୁ ମହାନ୍ତି କମ୍ପାଉଣ୍ଡରଙ୍କ ଝିଅ । ଦୀନୁବାବୁ କେବେ କମ୍ପାଉଣ୍ଡର ଥିଲେ, ନାଁ ଡାକ ରହିଯାଇଛି । କିନ୍ତୁ ସେ ସହରର ଜଣେ ଧନବାନ, ଗଣ୍ୟମାନ ଲୋକ ହିସାବରେ ତାଙ୍କର ଖ୍ୟାତି ଥିଲା । କରଣକୁଳର ପୁରାତନ ମର୍ଯ୍ୟାଦା ରଖିବାକୁ ଯାଇ ସେ ଝିଅକୁ ସ୍କୁଲରେ ପାଠ ପଢ଼ାଇବାକୁ ପସନ୍ଦ କରିନାହାନ୍ତି । ଘରେ ପାଠ ପଢ଼ାଇଛନ୍ତି ଓ କେତେଦିନ ହେଲା ଉପଯୁକ୍ତ ଲୋକ ଖୋଜୁଛନ୍ତି ଝିଅକୁ ଟିଉସନ କରି ଆଉ ଟିକିଏ ଆଗେଇ ଦେବାକୁ ।

ବ୍ରଜବାବୁ ରାଜି ହୋଇଗଲେ । ନିଜକୁ କାରଣ ଦର୍ଶାଇଲେ ଯେ ଅଳସ ସମୟରେ କିଛି ଗୋଟିଏ ଧନ୍ଦା ମିଳିଯିବ ଓ ବାପାଙ୍କ ପାଖରୁ ହୁଏତ ଟଙ୍କା ମଗାଇବାକୁ ପଡ଼ିବ ନାହିଁ । କିନ୍ତୁ ମନରେ ଆସୁଥିଲା ସେ ତା ସାଙ୍ଗରେ ବୋଧହୁଏ କିଛିଏ ଥିଲା

ପିଲାଦିନର ପାଠ ପଢ଼ାଇବାର ମୋହ । କଳା କୋଟ୍‌ର ବେଷ୍ଟନୀରୁ ଟିକିଏ ଖସି-ପଳାଇବାର ଲାଳସା ।

ଶୋଭା । ଚଉଦ ପନ୍ଦର ବର୍ଷର ଝିଅ । ବ୍ରଜବାବୁ ପ୍ରଥମେ ବୁଝିପାରିଲେ ନାହିଁ ତା ସାଙ୍ଗରେ କିପରି ବ୍ୟବହାର କରିବେ । ଶୋଭା ଖୁବ୍ ହସେ । ମନେ ହୁଏ ତାର ହସ ଆଖି କୋଣରୁ ଉତୁରିଆସି ଓଠକୁ ଚହଲାଇ ଦିଏ ଓ ତା'ପରେ ଅଙ୍ଗପ୍ରତ୍ୟଙ୍ଗ ନଚାଇଦିଏ । ବ୍ରଜବାବୁ ବି ହସନ୍ତି । ଆଖି ଆଗରେ ଆସିଯାଏ ଜହ୍ନ ନଈକୂଳର ଶାଗୁଆ ଭୂଇଁ । ଧଳାବେଣ୍ଟିଆ କୁଦାମାରି ଖେଳୁଛି । ସେଇ ଆନନ୍ଦର ଲେଉଟଣି ତରଙ୍ଗ, ପ୍ରକୃତିର ନିଜ ରୂପ, ପ୍ରକୃତିର ସତକଥା । ବ୍ରଜବାବୁଙ୍କର ଇଚ୍ଛା ହୁଏ ଆଡ଼େଇ ହୋଇ ଯିବାକୁ ଆଗଣାର ଭାବିବାର ସନ୍ଦେହ ଓ ଅଶାନ୍ତି ନେଇ ।

ଶୋଭା ବ୍ରଜବାବୁଙ୍କୁ ମାନେ । ସାର୍ କେତେ କଥା ଜାଣନ୍ତି । ସାର୍‌ଙ୍କ କଥା କେବେ ଭୁଲ ହୁଏନାହିଁ । ପାଠ ପଢାଇଲାବେଳେ, ସୂର୍ଯ୍ୟଚନ୍ଦ୍ରଙ୍କ ଭୌଗୋଳିକ ଅବସ୍ଥିତି ବୁଝାଇଲାବେଳେ ଶୋଭା ଜଳ ଜଳ ହୋଇ ଚାହିଁ ରହେ ସାର୍‌ଙ୍କ ଆଡ଼କୁ । ତାଙ୍କ ମୁହଁରୁ ସତେ, ଯେପରି ନୂଆ ହୋଇ ଝରି ଆସୁଛି ଅଫିଟା ଜ୍ଞାନର ଧାରା । ବ୍ରଜବାବୁଙ୍କୁ ଅଡ଼ୁଆ ଲାଗେ । କିନ୍ତୁ ପରେ ଘରମୁହାଁ ହୋଇ ଫେରିଲାବେଳେ ତାଙ୍କ ମନରେ ଲାଖି ରହେ ଶୋଭାର ସେଇ ମୁଗ୍ଧ ଦୃଷ୍ଟି । ଜଣେ ଲୋକର ଏତେ ବିଶ୍ୱାସ ତାଙ୍କଠାରେ । ହେଉ ପଛେ ସେ ପିଲା, ଅଜ୍ଞାନ ବାଳିକା, ସେଥିରେ ଅଛି କଅଣ ?

ଶିଷ୍ୟର ସମର୍ପଣ । ଭାବିଲା ବେଳକୁ ଆମୋଦ ଲାଗେ । ହସିବାକୁ ଇଚ୍ଛା ହୁଏ । କିନ୍ତୁ ସେଇ ସମ୍ପର୍କରେ ଗୌରବ ଅଛି । କେହି ମନା କରିପାରିବେ ନାହିଁ । ବ୍ରଜବାବୁ ନିଜ ମନକୁ ଫୁଲିବାକୁ ଛାଡ଼ି ଦିଅନ୍ତି ।

ସବୁଦିନେ ସଞ୍ଜବେଳେ କଚେରୀରୁ ଫେରିବାଠାରୁ ପଢ଼ାଇବାକୁ ଯିବାଯାଏଁ ବ୍ରଜବାବୁ ଭାବି ବସନ୍ତି ଆଜି କଣ ପଢ଼ାଇବେ ଶୋଭାକୁ । କେଉଁଥିରେ ତାର ନରମ ମନକୁ ଛୁଇଁହେବ, ତାର ଆଖିରେ ମିଳିବ ମଜ୍ଜିଯିବାର ରୁଚି, ଉପଲବ୍ଧିର ବିହ୍ୱଳତା । କଣ ପଢ଼ାଇବେ ଆଜି, ପ୍ରାଣୀବିଜ୍ଞାନ,—ପୋକରୁ କେମିତି ପ୍ରଜାପତି ହୁଏ, କୁମ୍ଭିରରୁ ତିଆରି ହୁଏ ରଙ୍ଗର ବିଚିତ୍ରତା, ନା ଉଦ୍ଭିଦ ବିଜ୍ଞାନ,—ଗଛ ବଢ଼େ କିପରି, କଣ ଖାଏ, କେମିତି ତିଆରି ହୁଏ ଫୁଲର ପାଖୁଡ଼ା, କେଶର ଓ ଫଳ, ନା ଇତିହାସ,—ଦେଶ ବିଦେଶର କାହାଣୀ, ଦେଶ ପାଇଁ ହସି ହସି ମରିଯିବାର ଗୌରବ ଗାଥା ? କୋଉ ତିଆରି କରିବା ପାଇଁ ଯଦି ଏତିକି ଭାବୁଥାଆନ୍ତେ ! ବ୍ରଜବାବୁ ଲଜ୍ଜିତ ହୁଅନ୍ତି ନାହିଁ । ଯାହା ଜଟିଳ ତାହା ସବୁବେଳେ ମହତ୍ ନୁହେଁ । ଏଇ ସରଳ

ଜ୍ଞାନପ୍ରଦାନର ମୂଲ୍ୟ ଅନ୍ଧାରକାଣ୍ଡ ଆଇନ-ବିଭ୍ରମ ଓ ଯୁକ୍ତିର ଗୁରୁତ୍ୱଠାରୁ ଯଥେଷ୍ଟ ବେଶୀ ।

ଯିବାଆଗରୁ ଦର୍ପଣ ଆଗରେ ଛିଡ଼ା ହୋଇ ମୁଣ୍ଡ କୁଣ୍ଡାଇଲାବେଳକୁ ବ୍ରଜବାବୁଙ୍କର ଇଚ୍ଛା ହୁଏ ମିନିଟିଏ ନିଜକୁ ଦେଖିବାକୁ । ଫୁଲୁକା ଗାଲ, ଗ୍ରେଞ୍ଚିଆ ନାକ, ଗୋଲ ଗୋଲ ଅଳ୍ପ ଧୂସର ଆଖି, ଉଚ୍ଚ କପାଳ ଓ ମୁଣ୍ଡରେ ଫୁଲି ଉଠିଥିବା ସିଧା ସିଧା ବାଳ । ତାଙ୍କ ହସକୁ ଅନେକ କହନ୍ତି ଅମାୟିକ ଓ କେତେକ କହନ୍ତି ନିର୍ବୋଧ । ମୋଟ ଉପରେ ନରମ ଚେହେରା । କାହାକୁ କଷ୍ଟ ଦେବାର କମ୍ବା ଡରାଇବାର ଶକ୍ତି ନାହିଁ ସେଥିରେ । କିନ୍ତୁ ସେଥିରେ ଆଉ କଣ କିଛି ମିଳେ ନାହିଁ—କଳ୍ପନାର ଗଭୀରତା ? ଶାନ୍ତିର ନିସ୍ତରଙ୍ଗ ଆବେଶ ?

ଯାଃ, କଣ ଭାବୁଛି ଏମିତି । ଶୋଭା ପାଇଁ ? ବ୍ରଜବାବୁ ହସନ୍ତି । ପିଲାକୁ ପାଠ ପଢ଼ାଇ ଏ ବି' ଗୋଟାଏ ରକମର ସଫଳତା ଆମି । ଗଳାକୁ ଗୋଡ଼ ବଢ଼ାନ୍ତି । ପାଦ ଜୋର୍‌ରେ ଜୋର୍‌ରେ ଚାଲେ । ଯଦୁ ସାହୁର କଡ଼େଇରୁ ଉଠୁଥିବା ଗରାଲିଆ ଧୂଆଁ ବି' ଆଖିରେ ପଡ଼େ ନାହିଁ । ଶୋଭା ଅନେଇ ବସିଥିବ । ଗୃହିଣୀ ଚଞ୍ଚଳ ହେଉଥିବ । ବହିକୁ ଫିଟେଇ ଢ଼' ଧାଡ଼ି ମୁଖସ୍ଥ କରି ପୁଣି ରଖି ଦେଉଥିବ । ଟେବୁଲ ପାଖରେ ଚଉକିକୁ ସିଧା କରୁଥିବ ଥରକୁ ଥର । ଝରକା ପାଖରେ ନଇଁ ଆସିଥିବା ସୂର୍ଯ୍ୟମୁଖୀ ଫୁଲକୁ ଅଉଁସି ଅନେଇଥିବ ବାହାରକୁ । ସାର୍‌ ଆସିବେ ।

ଆଜିକାଲି ବ୍ରଜବାବୁ ତରତରରେ ଅଫିସରୁ ଫେରନ୍ତି । ଥରେ ତାଙ୍କର ଜଣେ ସମବ୍ୟବସାୟୀ ପଚାରିଲେ, "କିଓ ବ୍ରଜବାବୁ ଏତେ ତରତର କାହିଁକି ? କୌଣସି ନୂଆ ଆକର୍ଷଣର ସନ୍ଧାନ ମିଳିଲା ନା କଣ ?" ପରିହାସ ବୋଲି ମାନିନେଇ ବ୍ରଜବାବୁଙ୍କୁ ହସିବାକୁ ପଡ଼ିଲା । କିନ୍ତୁ ତା ଆଗରୁ ତାଙ୍କର ଗୋଲ ଆଖି ଦୁଇଟି ସ୍ଥିର ଓ ମୁନିଆ ହୋଇ ଜଣାଇଦେଲେ ଯେ ସେ ବିରକ୍ତ ଓ ଅସନ୍ତୁଷ୍ଟ ।

ଆକର୍ଷଣ ? ହଁ । କିନ୍ତୁ ତାହା ନାରୀ ପୁରୁଷର ଆକର୍ଷଣ ନୁହେଁ, ସମବୟସ୍କର ଆକର୍ଷଣ ନୁହେଁ । ହୁଏତ ବାତ୍ସଲ୍ୟ । କମ୍ବା ଗୋଟାଏ ଭଲ କାମ କରିବାର ଆଗ୍ରହ । କଅଁଳ ଫୁଲ ଗଛଟିକୁ ଝଡ଼ ତାଡ଼ରୁ ବଞ୍ଚେଇ ରଖି ବଢ଼ାଇବାର ଲୋଭ । ପ୍ରଶ୍ନ ଆସେ —କିଏ ଦେଲା ଏ ଦାୟିତ୍ୱ ? ଶୋଭା, ତାର ବାପା, ନା ସେ ନିଜେ ନିଜେ । ବ୍ରଜବାବୁ ଉତ୍ତର ଦିଅନ୍ତି ନାହିଁ, ଅନାବଶ୍ୟକ ପ୍ରଶ୍ନ ବୋଲି ।

......ସେଦିନର କଥା । ଛୁଟିଦିନ । ବ୍ରଜବାବୁ ଦିନ ଥାଉଁଥାଉଁ ପଢ଼ାଇବାକୁ ଆସିଥିଲେ । କିଛି ସମୟ ପରେ ହଠାତ୍ ମେଘ ବଜ୍ରକୁ ହୋଇ ଅଝଟ ବର୍ଷା ହୋଇଗଲା । ନୂଆ ବନ୍ଦୋବସ୍ତ ମତରେ କିଲୋମିଟର ମାପରେ ମାପିଲେ ନୂଆ ଏହି ରାସ୍ତାର

ନିଃଶ୍ୱାସ । ପ୍ରଥମଥର ପାଇଁ ବ୍ରଜବାବୁଙ୍କୁ ଲାଗିଲା ଯେ ଶୋଭା ଶୁଣୁନାହିଁ । ଭାରତର ସ୍ୱାଧୀନତା ସଂଗ୍ରାମ ଅଧା ସରିଲା ବେଳକୁ ସେ ପଚାରିଲା 'ଭଗତ ସିଂ କିଏ ? ସୁଭାଷ ବୋଷଙ୍କ ପୁଅ ? ତା'ପରେ ଅଳସ-ଭଙ୍ଗା ହାଇ । ବ୍ରଜବାବୁ ହସି ପଚାରିଲେ, "କିଲୋ ଭଲ ଲାଗୁ ନାହିଁ ?" ଶୋଭା ଅଧା ଲଜ୍ଜିତ ହୋଇ କହିଲା, "ନାଇଁ, ଭୋକ କଲାଣି ।" ସିଧା ସହଜ ଉତ୍ତର । ବ୍ରଜବାବୁ ଖୁସି ହେଲେ । ବାହାରକୁ ଅନେଇଲେ ବିରାମ, ବିଶ୍ରାନ୍ତ ଲେଖା ହୋଇଛି ସବୁଠି । ଆକାଶରେ ନୂଆ ମେଘ ତିଆରି ହେଉଛି । ତୃପ୍ତି ଓ ନୂଆ ଅଭିଳାଷ ମଝିରେ ପୃଥିବୀ ସଜାଡ଼ି ନେଉଛି ନିଜକୁ । ଥାଉ ନା ବନ୍ଧି-ପନ୍ଥା ।

ଶୋଭାକୁ ଭୋକ କଲାଣି । ଇନ୍ଦ୍ରିୟର ଡାକ ବ୍ରଜବାବୁଙ୍କୁ ଆଣିଦେଲା ଯଦୁ ସାହୁ ଦୋକାନର ଛବି । ସେଠି ଗରମ ରସଗୋଲା ତିଆରି ହେଉଥିବ ଏଇକ୍ଷଣି । ଆଉ ବହଳିଆ ସ୍ୱାଦିଆ ଛେନା ଚା, ନାଲିଚିଆ ସର ଜମିଥିବ ସେଥିରେ । ଶୋଭା ଭଲ ପାଇବ । ପଚାରିବାର ଇଚ୍ଛା ଦେଉ ନ ଦେଉଣୁ ସେ ପଚାରି ବସିଲେ, "ଶୋଭା, ଯଦୁ ସାହୁର ରସଗୋଲା ଭଲ ଲାଗେ ତୋତେ ?" ଶୋଭା ହସିଲା । ବ୍ରଜବାବୁ ସେଥିରେ ତାର ପୂର୍ଣ୍ଣ ସମ୍ମତି ସ୍ୱୀକାର କରିନେଲେ ଓ ସାଙ୍ଗେ ସାଙ୍ଗେ ପ୍ରସ୍ତାବ କଲେ । "ଚାଲ୍ ନା ଯିବା, ସେଠୁ କିଛି ଖାଇ ଆସିବା ।"

ପ୍ରସ୍ତାବର ନୂତନତ୍ୱ ତାର ବଳି ପଡ଼ିଲା । ଶୋଭା ଆଗ୍ରହରେ ନାଚିଲା ପରି ହୋଇ କହିଲା, "ଚାଲନ୍ତୁ" ବାପା ଗାଳିଦେବେ ? କାହିଁକି ? ସାର୍ ସାଙ୍ଗରେ ଅଛନ୍ତି ତ ।

ତା'ପରେ ଦୁହେଁ ବାହାରିଗଲେ ଯଦୁ ସାହୁର ଦୋକାନ ଆଡ଼କୁ । ବ୍ରଜ-ବାବୁଙ୍କ ପଛେ ପଛେ ଶୋଭା । ଟିକିଏ ଅଡ଼ୁଆ ଲାଗୁଥାଏ ବ୍ରଜବାବୁଙ୍କୁ । କିନ୍ତୁ ତାଠୁ ବେଶୀ ଲାଗୁଥାଏ ଗୋଟାଏ ନୂଆ କଥା କରିବାର ଆନନ୍ଦ । ବରଷା ଧୂଆ ଧାଉଁଆ ପବନ ଆନନ୍ଦକୁ ଆହୁରି ପାଖକୁ ନେଇ ଆସୁଥାଏ । ଦେହର ଅନୁଭୂତି ବୋଲି ଚହଲାଇ ଦେଇଥାଏ ।

ଯଦୁସାହୁ ଏ ଦୁହିଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ବ୍ରଜବାବୁ ଟିକିଏ ସହଳି ଆସିଛି । କିନ୍ତୁ ଶୋଭା, ସେ କେମିତି ଏଠି ? ବ୍ରଜବାବୁର ମୁହଁକୁ ଅନେଇଲା । ଏମିତିକା ଜ୍ୟୋତି ସେଥିରେ ସେ କେବେ ଦେଖି ନଥିଲା ପରି ମନେ ହେଲା । କଣ ପଚାରିବ ବୋଲି ହେଉଥିଲା, ପଚାରିଲା ନାହିଁ ।

ଦୋକାନରେ ଆଉ କେହି ଲୋକ ନଥିଲେ । ଦେବାର ନେବାର ଓ ଦେଖିବାର ଆଡ଼ମ୍ବର ନଥିଲେ ତାଜା-ତାଜା ରସଗୋଲା, ପାନତୁଆ,

ସୁବଡ଼ଙ୍କୁ ନେଇ । ସତେ ଯେପରି ଏ ଗୋଟିଏ ଅଭିଳଷିତ ମହାନ୍ ପର୍ବ, ଆଜି ଯାଏ ବାକି ଥିଲା ।

ଏଇ ସମୟରେ କାହାର ଗଣଗଣିଆ ପାଟି ଶୁଣାଗଲା । "ସଦୁଆନା, ସଦୁଆ—ନା—ହେଁ ।" ହସ ମଉଳିଗଲା ଝିଅଙ୍କ ମୁହଁରେ । କିଏ ଗୋଟାଏ ଆସୁଛି । ଶୋଭା ଘୁଞ୍ଚିଗଲା ପଛକୁ । ବ୍ରଜବାବୁ ସତର୍କ ହୋଇଗଲେ ।

ସଦୁସାହୁ ନିରେଖି ଅନେଇଲା ପାଖେଇ ଆସୁଥିବା ଦେହେରାକୁ । କିଏ ଚନ୍ଦରା ? ମଦ ଟିକିଏ ପଶିଛି ବୋଧହୁଏ । ଦାନୁ ମହାନ୍ତିଙ୍କ ମୂଲିଆ ଥିଲା ସେ କେତେ ଦିନ । ଏବେ ବଦମାସି କରି ତଡ଼ା ଖାଇଛି । ସଦୁସାହୁ ପ୍ରମାଦ ଗଣିଲା । ବ୍ରଜବାବୁ ଚାହିଁଲେ । ଶୋଭାକୁ ପୂରାପୂରି ପଛରେ ରଖି ନେବାକୁ ଚେଷ୍ଟା କଲେ ।

ଚନ୍ଦରା ପାଖେଇ ଆସିଲା । କୁତ୍ସିତ କଳା ଦି'ପାଟି ଦାନ୍ତ ଦେଖାଇ କହିଲା— "କିଓ, ମାଷ୍ଟର ବାବୁ ? ଏତେବେଳେ ଇଆଡ଼େ ?" ତା'ପରେ ବୁଝିଲା ପରି ହୋଇ କହିଲା, "ଓ-ଓ-ମାଫ୍ କର ।"

ସଦୁସାହୁ ତରଟି ଗୁହିଁଲା ତା' ଆଡ଼କୁ । କିନ୍ତୁ ଚନ୍ଦରାର ନଜର ବ୍ରଜବାବୁ ଉପରେ । ଆଖି ଘୂରି ବୁଲୁଛି । ହସରେ ଓଠରେ କୁଞ୍ଚେଇ ହୋଇ ଯାଉଛି । ନାକ-ପୁଡ଼ା ଫୁଲି ଉଠୁଛି । ତା'ପରେ ହଠାତ୍ 'ହେଃ' ବୋଲି ହସି ଦେଇ ସେ ଉଚ୍ଚ ସ୍ୱରରେ ଆରମ୍ଭ କଲା ଯୌନ ରହାପ୍ଲୁତ ଉପେନ୍ଦ୍ରଭଞ୍ଜୀ ।

ଗୀତ ବଢ଼ି ଗୁଲିଲା । ଗୀତରୁ ଆଖି ମିଟିକା, ଅଶ୍ଳୀଳ ଇଙ୍ଗିତ ଓ କୁତ୍ସିତ ଭଙ୍ଗୀ । ଉଦାର, ନରମ ନିରପେକ୍ଷ ବ୍ରଜବାବୁଙ୍କ ମୁହଁ ଲାଲ ହୋଇ ଆସିଲା । ଶୋଭାକୁ ରକ୍ଷା କରିବାକୁ ହେବ । ଶୀଘ୍ର, ଅତିଶୀଘ୍ର, କିଛି ଅନର୍ଥ ହେବା ଆଗରୁ । ଶେଷକୁ ସେ ଆଉ ସମ୍ଭାଳି ପାରିଲେ ନାହିଁ । ହଠାତ୍ ଚନ୍ଦରାର ଗାଲରେ ଚଟକଣିଟାଏ ବସେଇ ଦେଲେ । ଚନ୍ଦରାର ମୁଣ୍ଡ ତୋ କରି କାନ୍ଥରେ ବାଡ଼େଇ ହୋଇଗଲା ।

ସଦୁ ସାହୁ ହାତରୁ କରଛୁଲି ଖସି ପଡ଼ିଲା । ଆଖି ପିଛୁଳାରେ ସେ ତଳେ ହାଜର । 'ହଁ ଶାଳା—' କହି ଚନ୍ଦରା ବ୍ରଜବାବୁ ଉପରେ ହାତ ପକାଇଲାବେଳକୁ ସେ ଜୋର୍‌କରି ତା ହାତ ଛଡ଼ାଇ ଆଣିଲା ଓ ଶୋଭାକୁ ଜରୁରି କଣ୍ଠରେ ପାଟିକଲା ଘର ଭିତରକୁ ଗୁଲିଯିବାକୁ । ଶୋଭା ଦୋକାନ ଭିତରକୁ ପଶି ପଳାଇଲା ପଛପଟ ଘରକୁ । ଚନ୍ଦରା ଗର୍ଜିବାକୁ ଲାଗିଲା, ଦେଖି ନେବ ଶଳାକୁ—ତା ଓକିଲ ପଣ ଛଡ଼ାଇ ଦେବ; ହଁ—

ତାମସା ଜୁଟିଗଲା । ଦେଖଣାହାରୀ ଜମା ହୋଇଗଲେ । କେହି କିଛି ପଚାରିବା ଆଗରୁ ଯଦୁସାହୁ ଆରମ୍ଭ କରିଦେଲା, "କିଛି ନାହିଁ,—ଏ ହ୍ୱାପ ଚନ୍ଦରା ମଦୁଆ ଓକିଲ ବାବୁ ସାଙ୍ଗରେ ଥଟ୍ଟା କରୁଥିଲା—ପାଇଲା ମଜା ।" ବ୍ରଜବାବୁ କାଠ-ପିତୁଳା ପରି ଛିଡ଼ା ହୋଇ ଯାଇଥାଆନ୍ତି । ଯଦୁସାହୁର କଥା, ଦେଖଣାହାରୀଙ୍କ କୋଳାହଳ, ଚନ୍ଦରାର ଧମକ ସବୁ ମିଶି କାନ ପାଖରେ ଝାଇଁ ଝାଇଁ ହେଉଥାଏ । ଏ ଦୃଶ୍ୟ ବ୍ରଜବାବୁର ଅଜଣା ? ବ୍ରଜବାବୁ ? ସେଇ ନିଜେ ??

ଥୋକେ ବ୍ରଜବାବୁଙ୍କୁ ଧରି ଧରି ନେଇଗଲେ ଗୋଟାଏ ପାଖକୁ ଓ ଆଉ ଦଳେ ଚନ୍ଦରାକୁ । କିନ୍ତୁ କେତେବେଳଯାଏଁ ଚନ୍ଦରାର ପାଟି ଶୁଭୁଥାଏ, "ମୁଁ କେସ୍ ଦେବି । ମୁଁ କେସ୍ କରିବି । ମୁଁ ତା ମଜା ଚଖେଇ ଦେବି । ଇତ୍ୟାଦି"

...ସତକୁ ସତ ଚନ୍ଦରା କେସ ଦାଏର୍ କରିଦେଲା । କିନ୍ତୁ ଯଦୁସାହୁର କଥା ମାନି ଶୋଭାର ନାଁ ରଖିଲା ନାହିଁ ସେଥିରେ । ଓକିଲ ଟୋକା ଚେଙ୍ଗେ ପାଉ । ସେଇ ଯଥେଷ୍ଟ ।

କଥା ପ୍ରଘଟ ହୋଇଗଲା । ସମସ୍ତେ ଜାଣିଲେ । ଟୋକା ଓକିଲ ମହଲରେ ଆଲୋଚନା ହେଲା । ଖାଲି ମୂଳ କଥାଟା,—ବ୍ରଜବାବୁ ଗୋଟାଏ କାହାକୁ ହାତ ଉଠାଇ ଗୁପୁଡ଼ାଏ ମାରିଛି, ସେ କେସ୍ କରିଛି ବ୍ରଜବାବୁ ନାଁରେ । ଅଭିନବ ଘଟଣା । ବ୍ରଜବାବୁ ଏମିତି ଗୋଟାଏ କାଣ୍ଡ କରିବ ବୋଲି କିଏ ଜାଣିଥିଲା ? ଆମୋଦରୁ କୌତୂହଳ । କାହିଁକି ଏମିତି ହେଲା ବ୍ରଜବାବୁର ? କିଛି ଗୋଟାଏ ଭିତିରିଆ କାରଣ ଥିବ ନିଶ୍ଚୟ— । କେହି କିନ୍ତୁ କାରଣର ସଠିକ ସନ୍ଧାନ ପାଇପାରିଲେ ନାହିଁ । ଯଦୁ ସାହୁ ସେପାଖଟା ସମ୍ଭାଳି ନେଇଥିଲା ।

କିନ୍ତୁ ବ୍ରଜବାବୁ କଣ କହିବ ? ଧାନୁବାବୁ ପ୍ରଥମେ ଗାଳି ଦେଇ ପରେ ଅନୁନୟ କରିଛନ୍ତି ଶୋଭାର ନାଁ ଯେପରି ପଦାରେ ନ ପଡ଼େ । ଯଦୁସାହୁ ଧାନୁବାବୁଙ୍କ ତରଫ ହୋଇ ସେଇ କଥା ବୁଝାଇଛି କେତେଥର । ଶୋଭା କରଣ ଘରର ବାଢ଼ୁଅ ଝିଅ । ଲୋକେ ବାର କଥା ଉଠାଇବେ । ଚନ୍ଦରାକୁ ରାଜି କରି ହୋଇ ଯାଇଛି । ଖାଲି ବ୍ରଜବାବୁଙ୍କ ଉପରେ କଥା ।

ବ୍ରଜବାବୁ କିଛି କହନ୍ତି ନାହିଁ । ବେଳେ ହସି ଦିଅନ୍ତି ଟିକିଏ । ଯଦୁସାହୁ ଓ ଧାନୁବାବୁ ନିରାଶ ହୋଇ ଯାଆନ୍ତି । ଲୋକଟା ମିଛ କହିବ ନାହିଁ । ତା ଧାତୁରେ ସେତିକ ନାହିଁ 'ହଉ ଶୋଭାର ଭବିଷ୍ୟତ ତୁମ ଉପରେ, ତୁମ ବିବେକ ଯାହା କହିବ' କହି ଫେରି ଆସନ୍ତି ଦୁହେଁ ।

ବ୍ରଜବାବୁ ଭାବନ୍ତି । ଗ୍ରେଟିଆ କଥାଟା । ସାମାନ୍ୟ ଅପରାଧ ! ଲଜ୍ଜାର କାରଣ ନାହିଁ, ଅପମାନର ପ୍ରଶ୍ନ ନାହିଁ । କିନ୍ତୁ ତା' ବୋଲି ମିଛ କହିବ ? ସତ ମିଛର ଉପଯୋଗ କଅଣ ଗ୍ରେଟ ବଡ଼ କଥା ନେଇ ହୁଏ ? ବ୍ରଜବାବୁ ମୁଣ୍ଡ ହଲାନ୍ତି । 'ପରେ ଭାବିବା' ବୋଲି ଲାଗିଯାଆନ୍ତି ନିଜ କାମରେ ।

କେସ୍ ବଗ୍ସରର ଆଗଦିନ । ଆଜି ଭାବନାର ଶେଷ କରିଦେବାକୁ ହେବ । ପଛ ଝରକା ଦେଇ ବ୍ରଜବାବୁ ଅନେଇଲେ ପଶ୍ଚିମ ଆକାଶକୁ ସୂର୍ଯ୍ୟ ଅସ୍ତ ହୋଇ ଗଲାଣି । ଫିକା ନାଲି ଆସ୍ତରଣ ଉପରେ ମେଘ ଖଣ୍ଡ ଖଣ୍ଡ ଲାଲ୍ ଲାଲ୍ ଦେଖାଯାଉଛି ନିଆଁରେ ପାଚିଗଲା ପରି । ହାତ ମାରିଲେ ତାଡ଼ିଯିବ । ସନ୍ଧ୍ୟାର ଶୀତଳତା ତାଙ୍କ ଦେହ ମନରେ ଲାଗିଲା ନାହିଁ, ଆତ୍ମୀୟ ଭାବ ଆଣି ପାରିଲା ନାହିଁ । ସବୁ ସୁଦୂରର । ଆକାଶ ଉଗ୍ର, ପୃଥିବୀ ନିସ୍ତେଜ । ନିଜ ନିଜର କାଳିମାକୁ ନେଇ ଘୋଡ଼େଇ ହୋଇ ଯାଇଛନ୍ତି ସବୁ ଘର, କୋଠା, କୁଡ଼ିଆ, ଗଛପତର । ଗ୍ରେଟିଆ ଏକୁଟିଆ ଘରେ ବ୍ରଜବାବୁ ନିଜ କଥା ନିଜେ ବୁଝିବେ । ନିଜର ପରାଭବ, ନିଜର ସନ୍ଦେହକୁ ଖୋଲେଇ ଦେଖିବେ, ନ ହେଲେ ଘୋଡ଼େଇ ଦେବେ ।

ମନ ଟାଣି ନେଇଗଲା ଜମ୍ବା ନଈର କୂଳକୁ । ସେଠି ସବୁ ଆପଣାର, ହାତ ପାହାନ୍ତାରେ । ପବନ ଖେଳେ ଖରା ସାଙ୍ଗରେ ଓ ଦୁହେଁ ମିଶି ଖେଳାନ୍ତି ଜହ୍ନାକୁ, ଢେଉରେ ଢେଉରେ କୁରୁ କୁରୁ କରି ଲେଟେଇ ତଅନ୍ତି । କୁ ଳୁ କୁ ଳୁ, ଟୁବୁଟୁବୁ । ପାଖ କୁଡ଼ିଆ ଘରୁ ଧୂଆଁ ଉଠେ । ଧଳା ଛେଳି ଖେଳି ବୁଲେ । ଠାକୁର ଘର ପାହାଚରୁ ଖଟ୍ ଖଟ୍ ଶୁଣାଯାଏ । ବାପା ଆସୁଛନ୍ତି ହସି ହସି । ସଂଘର୍ଷ ନାହିଁ, ସନ୍ଦେହ ନାହିଁ । ସବୁ ଭଲ, ସବୁ ସୁନ୍ଦର, ସବୁ ସତ । ଖାଲି ପିଲାଳିଆ ଛବି ? ହେଉ ପଛେ, ସେଇ ଛବି । କହିବ, ସଙ୍କେତ ଦେବ କଣ କରିବାକୁ ହେବ । ପିଲାଦିନର ସହଜ ଧାରଣା ବାଟ କଢ଼େଇବ ଓକିଲ ବଡ଼ ମଣିଷ ବ୍ରଜବାବୁଙ୍କୁ । ବ୍ରଜବାବୁ ଆଖି ବୁଜି ସେଇ ଛବିର ସାହାଯ୍ୟ ମାଗିଲେ ।

ନିହାତି ସାନ କଥା । ପୃଥିବୀ ଓଲଟ ପାଲଟ ହୋଇଯିବ ନାହିଁ ବ୍ରଜ-ବାବୁ ସତ କହିଲେ ବା ମିଛ କହିଲେ । କିନ୍ତୁ ତା' ବୋଲି ସେ ମିଛ କହିବେ କାହିଁକି ?

ଶୋଭା ପାଇଁ ? ସତ କହିଲେ ଶୋଭା ନାଁ ପଦାରେ ପଡ଼ିବ । ଲୋକେ ଉଚ୍ଛାକୁ ବାର କଥା କହିବେ । ଶୋଭାର ହସ ମଉଳିଯିବ । ସରଳତା ଭାଙ୍ଗିଯିବ । ସଂସାରକୁ ସେ ସନ୍ଦେହ କରି ଶିଖିବ, ଘୃଣା କରି ଶିଖିବ । ତା'ର କାରଣ ହେବେ ବ୍ରଜବାବୁ, ଯାହାଙ୍କୁ ସେ ଏତେ ବିଶ୍ୱାସ କରିଥିଲା ।

ଭାବନା ଗୋଳମାଳ ହୋଇଗଲା । ନିଶ୍ଚୟ ଏ ସମାଜର ମୁଣ୍ଡ ବିଗିଡ଼ି ଯାଇଛି, କଳ ଖରାପ ହୋଇଯାଇଛି, ଯେଉଁଥିପାଇଁ ମିଛରେ ଭଲ ଗଢ଼ା ହେବାର ସମ୍ଭାବନା ଆସେ, ସତରେ ସରସ ସୁନ୍ଦରପଣ ନଷ୍ଟ ହୋଇଯାଏ ।

ତେବେ କଣ କହିବେ ସେ—ସତ ନା ମିଛ ?

......ସେଦିନର ଭାବନା ମରିଗଲା ନିଦରେ । କିନ୍ତୁ ତା' ପରଦିନ କୋର୍ଟକୁ ଯିବାଯାଏଁ ଭାବନା ଖେଳୁଥାଏ ସେମିତି, ଛଟପଟ କରୁଥାଏ ବ୍ରଜବାବୁଙ୍କୁ ।

ଯୋଡ଼ାଏ ଛବି । ଶୋଭାର ହସିଲା ମୁହଁ, ଆଗ୍ରହ ଆନନ୍ଦ ଓ ବିଶ୍ୱାସରେ ଉନ୍ମୁଖ, ତା' ବଗିଚାର ସୂର୍ଯ୍ୟମୁଖୀ ଫୁଲ ପରି ଓ ବାପାଙ୍କର ମୁହଁ, ଆପଣା ଆଲୁଅରେ ଉଦ୍ଭାସିତ, ଅନ୍ୟକୁ ବାଟ କଢ଼େଇ ଦିଏ, ଦମ୍ଭ ଦିଏ । କାହାକୁ ଆଡ଼େଇ ଦେବେ ସେ ? ଶୋଭା କାନ୍ଦିବ । ଉଚ୍ଚମାଂସର ମଣିଷ, ସରଳା ବାଳିକା ଅପମାନ ପାଇବ । କିନ୍ତୁ ବାପାଙ୍କର ସେ ଜ୍ୟୋତି, ନୀତି ଓ ସଂସ୍କାରର ବଡ଼ପଣ ତା'ର ସରିଯିବ କିଣ ?

ଦୁଇଟିଯାକ ଛବି ଓଲଟପାଲଟ ହୋଇ ଶେଷକୁ କେଉଁଟା କାହିଁକି ଆଗକୁ ଆସିଲା କହିହେବ ନାହିଁ । କିନ୍ତୁ ବ୍ରଜବାବୁ ମାଜିଷ୍ଟ୍ରେଟଙ୍କ ପ୍ରଶ୍ନର ଉତ୍ତରରେ କହିଲେ, "ହଁ, ମୁଁ ଚନ୍ଦ୍ରିକା ବେହେରାକୁ ମାରିଛି ।" "କାହିଁକି ?" ଅଳ୍ପ ମିନିଟିଏ ଉତ୍ତର ନାହିଁ ଓ ତା' ପରେ "ମୋତେ ତାର ବ୍ୟବହାର ଭଲ ଲାଗିଲା ନାହିଁ ।" ଚନ୍ଦ୍ରିକା ହସି ଉଠିଲା । ଦେଖଣାହାରୀ ଅଧେ କୁରୁକୁରୁ ହେଲେ । ମାଜିଷ୍ଟ୍ରେଟ ରାଗିଲା ଭଳି ହୋଇ ପଚାରିଲେ "କିପରି ବ୍ୟବହାର ?" ବ୍ରଜବାବୁ ଉତ୍ତର ଦେଲେ "ତା'ର କଥା କହିବା ଢଙ୍ଗ ମୋତେ ଭଲ ଲାଗିଲା ନାହିଁ । ମୁଁ ଆଉ କିଛି କହିବାକୁ ଚାହେଁ ନାହିଁ ।"

ମାଜିଷ୍ଟ୍ରେଟ ଗମ୍ଭୀର ହେଲେ । ପାଞ୍ଚ ମିନିଟ ବକ୍ତୃତା ଦେଲେ ଯେ ମଣିଷର ସଂଯମ ଶିଖିବା ଉଚିତ, ବିଶେଷତଃ ବ୍ରଜବାବୁଙ୍କ ପରି ଶିକ୍ଷିତ ଲୋକ ଯେଉଁ-ମାନଙ୍କର ସମାଜ ପ୍ରତି ଦାୟିତ୍ୱ ଅଛି । ତା'ପରେ ଜୋରିମାନା ଦଣ୍ଡ ଆଦେଶ ହୋଇଗଲା ।

ବ୍ରଜବାବୁ କାହାକୁ ନ ଅନାଇଁ ସିଧାସଳଖ ଚାଲିଆସିଲେ । ସମସ୍ତେ କିନ୍ତୁ ଜଳଜଳ କରି ଅନାଇଲେ ତାଙ୍କ ଆଡ଼କୁ । ଚନ୍ଦ୍ରିକା ବି ଅନାଇଲା ଯୋଡ଼ାଏ ।

ତା'ର କିଛିଦିନ ପରେ ବ୍ରଜବାବୁ ବଡ଼ି ସକାଳୁ ବାହାରିଗଲେ ଘେନି, କାହାକୁ ନ ଜଣାଇ ଯଦୁ ସାହୁ ହାତରେ ଚାବି ଓ ଘରଭଡ଼ା ଧରାଇ ଦେଇ । ଯଦୁ ସାହୁକୁ ବ୍ରଜବାବୁ ବିଷୟ ପଚାରିଲେ ସେ କିଛି କହେନା । ତାଙ୍କ ନଡିଆ ଘରେ

ପ୍ରଶଂସା କଲେ ସେ ଖାଲି ମୁଣ୍ଡ ହଲାଏ ଓ କେହି ତାଙ୍କୁ ଡରକୁଳା ବୋଲି କହିଲେ ରାଗିଯାଏ ।

ଶୁଣାଯାଏ ବ୍ରଜବାବୁ ଆଜିକାଲି ସୁନାପଡ଼ା ଗାଆଁ ସ୍କୁଲରେ ମାଷ୍ଟର ହୋଇଛନ୍ତି । କିନ୍ତୁ ସାହିର ଗେଜେଟ୍ କାନତରାଟି ପୁଅ ଗୋକୁଳ କହେ ଯେ, ନିଜ ଆଖିରେ ଦେଖି ଆସିଛି ବ୍ରଜବାବୁ ଖାଲି ଜମ୍ପା ନଈ କୂଳରେ ବସି ରହୁଛି, ଆକାଶକୁ ଅନାଉଛି ଥରେ ଓ ଆଉ ଥରେ ନଈର ପାଣିକୁ । ସଂସାରର ଜାଣିବା ଶୁଣିବା ପାରିବାର ଲୋକ ସବୁ ସେ ମୁହଁ ହଲାଇ କଥା ଛୁଣ୍ଡେଇ ଦିଏ, "ଧାତ୍ ତା' ଦେଇ କଣ କାମ ହେବ ?"



# କମାରସାହିର ଓକିଲବାବୁ

ମୋର ଯେଉଁ କେତେକ ଗପ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି, କିନ୍ତୁ କୌଣସି ଗଳ୍ପ ସଂକଳନରେ ସ୍ଥାନ ପାଇ ନାହିଁ, ଇଏ ସେଥିରୁ ଗୋଟିଏ । ପଞ୍ଚଦଶନ୍ଧିର ଲେଖା, ହୁଏତ ମୋର 'ଭଙ୍ଗା ଖେଳଣା'କୁ ନେଇ ଆସିପାରି ଥାଆନ୍ତା । ଆଣିଲି ନାହିଁ କାହିଁକି ? ଏତେଦିନ ପରେ ଠିକେ ଠିକେ ମନେ ପଡ଼ୁନାହିଁ କାହିଁକି ଗପଟିକୁ ସଂକଳନର ମର୍ଯ୍ୟାଦାରୁ ବଞ୍ଚିତ କଲି । ତେବେ ଏଇ ଗପଟି ମୋର 'ଭଙ୍ଗା ଖେଳଣା' ବେଳର ଗପମାନଙ୍କ ସାଙ୍ଗରେ ମିଶୁନାହିଁ, ଏଥିରେ ବୋଧହୁଏ କାହାର ଦ୍ୱିମତ ରହିବ ନାହିଁ । ବ୍ରଜବାବୁଙ୍କ କାହାଣୀ ଚରିତଗତ 'ଷ ଦ୍ରୁଗଳ୍ପ'ର ଧର୍ମକୁ ଆବୋରି ପାରି ନାହିଁ, ଶ୍ଲେଷଚତୁର ସୂକ୍ଷ୍ମସୁନ୍ଦର ଝଲକ ନ ଦେଖାଇ ଅତ୍ୟଧିକ କୁହାଳିଆ ହୋଇ ପଡ଼ିଛି, ଅଥବା ଆଦର୍ଶ ଦୃଷ୍ଟ ବ୍ରଜବାବୁ ବାସ୍ତବ ନୁହଁନ୍ତି, ଏହିପ୍ରକାର ଅକ୍ଷମତାବୋଧ ବୋଧହୁଏ ମୋତେ ମାଡ଼ି ପଡ଼ିଲା । ଭାବିଲି ହଂସମଧ୍ୟେ ବକୋ ଯଥା ପରି ଭଦ୍ରଲୋକ ପଙ୍ଗତରେ ବସିବାର ଅଯୋଗ୍ୟ । ବସି-ଥାଆନ୍ତୁ ସେ ଜମ୍ବୁ ନଦୀ କୂଳରେ । ନଈର କୁଳୁକୁଳୁ ପତ୍ରର ଫଡ଼ଫଡ଼ ଇତ୍ୟାଦି ପ୍ରକୃତିର ଯେସବୁ ଶବ୍ଦକୁ ନେଇ ନିଶବ୍ଦ ହେବାର ସୁଖ, ସବୁଜ ଘାସରେ କ୍ରୀଡ଼ା କରୁଥିବା ଧଳା ଛେଳି ସାଙ୍ଗରେ (ମନେ ମନେ) ପେରେମ ହେବାର ଆନନ୍ଦ, ଏବଂ ବାପାଙ୍କର ଶୁଦ୍ଧପୂତ ଚକଚକ ଭାବମୂର୍ତ୍ତିର ସ୍ମୃତି, ଏ ସମସ୍ତକୁ ଏକାଠି କରି ସେ ଯେଉଁ ସତ୍ୟଶିବସୁନ୍ଦରର ଭୋଜିଭାତ ଖାଇବାକୁ ଚାହାଁନ୍ତି, ଖାଆନ୍ତୁ । କିନ୍ତୁ ଏକୁଟିଆ । ତା'ର ଅନୁଭବକୁ ହାଟ ବଜାରରେ ବୃତ୍ତି ବ୍ୟବସାୟରେ ଯୋଡ଼ିବାର ମହତ୍ତ୍ୱଟିକ ତାଙ୍କ ଭକ୍ତ କମାରସାହିର ଗୁଡ଼ିଆ ଯଦୁ ସାହୁ ମଧ୍ୟ ବୁଝିବ ନାହିଁ,

ମୋର ରସଜ୍ଞ ପାଠକମାନଙ୍କ କଥା ଛାଡ଼ିଦିଅ । ଭଦ୍ରଲୋକ ଥରେ ଗୋଟିଏ ପତ୍ରିକାରେ କେତୋଟି ପୃଷ୍ଠା ଦଖଲ କରିପାରିଲେ, ସେଇ କଣ ଯଥେଷ୍ଟ ନୁହେଁ ?

ତା’ଛଡ଼ା ଆଉ ମୋର ମତ ହେଉଛି, ଯେ ମୁଁ ବ୍ରଜବାବୁଙ୍କ ପ୍ରତି ଅନ୍ୟାୟ କରିଛି । ଆଜିକାଲି ମୋ ଗପଗୁଡ଼ିକ ବଡ଼ ହୋଇ ଗଲାଣି, ମୋର ଚରିତ୍ରମାନେ ଘରରୁ ବାହାରକୁ ଗଲେଣି, ତେଣୁ ବ୍ରଜବାବୁ ସେମାନଙ୍କ ହାତରେ କେବଳ ଖାପ୍ ଖାଇଯାଇ ଥାଆନ୍ତେ, ସେ କଥା ନୁହେଁ । ଛୋଟପଣରୁ ବ୍ରଜବାବୁ ଅବାଗିଆ ହୋଇ ପଡ଼ିଲେ ବୋଲି ଆମେ କହିଲେ ନାହିଁ । ଏତେ ବଡ଼ଟିଏ ହୋଇ ମଧ୍ୟ ସେ ସତ-ମିଛ ଭଲ-ମନ୍ଦ ସୁନ୍ଦର-ଅସୁନ୍ଦର ବିଚାରକୁ ଅଲଗା କରିପାରିଲେ ନାହିଁ, ବରଂ ଆରମ୍ଭ ବ୍ୟବସ୍ଥାର ଦଶ-ମାନଙ୍କରେ ଥାପି ଦେଇ ଆତ୍ମସ୍ଫୂର୍ତ୍ତିର ଆସ୍ୱାଦ ପାଇ ପାରିଲେ ନାହିଁ, ଶେଷରେ କଳାବନ୍ଧୁକ ଏବଂ ଓଷଧକୁ ଛାଡ଼ଛୁଡ଼ ଦେଇ ପଳେଇଲେ କୁଆଡ଼େ,—ଏଇଥିରୁ ବୁଝି ନାହାନ୍ତି ? ଅପରନ୍ତୁ ମୋର ଅନୁଶୋଚନାର ମୂଳ କଥା ହେଉଛି ଯେ ମୁଁ ତାଙ୍କର ସେଇ ସରଳତା ଅବା ପିଲାଳିଆମିର ସମ୍ମାନ ଦେବାକୁ ଡରିଲି । ଶୈଳୀ ଦୋଷରେ କାହାଣୀ କେଉଁଠି ନାହିଁ । ମୁଁ ଡରିଲି ଖାସ୍ ଏଇଥିପାଇଁ ଯେ କାହିଁକି ? ପିଲା ନା ହେଲେ କଣ ସତ୍ୟ, ଶିବ ଓ ସୁନ୍ଦରଙ୍କୁ ଏକାଠି କରି ଦେଖି ହେବ ନାହିଁ ? ସତ୍ୟ ସୁନ୍ଦର ହେବ ନାହିଁ ? ସୁନ୍ଦର କେବଳି ପ୍ରକୃତିରେ, ତଥାକଥିତ କଳ୍ପନାରେ ଉଦ୍ଭାସିତ ? ଏବଂ ମଙ୍ଗଳମୟ ଶିବ ଖାଲି ସ୍ୱାର୍ଥର ଦୃଷ୍ଟିରୁ ବିଚାରିବା ଭଳି ଥାଆନ୍ତି ?

ଭଲ କରି ଦେଖନ୍ତୁ, ମହାତ୍ମା ଗାନ୍ଧୀ କଣ କହିଲେ ? ଯେ କହି କହି ଥକି ଗଲେ ଯେ ଜୀବନ ଏକ, ତେଣୁ ତା’ର ନୀତି (ସତ୍ୟ) ମଧ୍ୟ ଏକ, ଅଭିନ୍ନ, ଏବଂ ତାହାହିଁ ଶିବ, ତାହାହିଁ ସୁନ୍ଦର ? ଯେ ମିଛ କେବଳ ଭୁଲ ନୁହେଁ, ଅସୁନ୍ଦର ? ଧର୍ମ ଯାହା ରାଜନୀତି ସେଇଆ ? ଅର୍ଥନୀତି ସେଇଆ ? କେହି କାହାର ବିରୋଧୀ ନୁହେଁ । ଜୀବନ ଖଣ୍ଡିତ, ତେଣୁ ଅସୁନ୍ଦର ହେବାକୁ ବାଧ୍ୟ ? ସିଦ୍ଧପୁରୁଷମାନଙ୍କ କଥା ଛାଡ଼ି ଦିଅନ୍ତୁ, ଜ୍ଞାନୀ ଦାର୍ଶନିକମାନେ ମଧ୍ୟ କଣ କହିଯାଇ ନାହାନ୍ତି ଯେ ଜ୍ଞାନର ମୂଳକଥା ହେଲା

ସମନ୍ୱୟ, ସାମୂହିକ ଅନୁଧ୍ୟାନ, ତହୁଁ ଉପଲବ୍ଧି ? ତେଣୁ ବିଚରା ବ୍ରଜବାବୁ ଯଦି ସତ୍ୟାନ୍ୱେଷ ସାଙ୍ଗରେ ଧଳା ଛେଳି, ଜାୟା ନଈ ଏବଂ ପିତୃ ପ୍ରତିମାକୁ ଏକାଠି କରି ଦେଖିଲେ, ତାଙ୍କର ମନୋ-ଭାବକୁ କଣ ପିଲାଳିଆ ବୋଲି ଉଡ଼େଇ ଦେଇ ହେବ ?

ଅମେ ହୁଏତ ବେଶି ବୁଦ୍ଧିଆ, ଯେଉଁମାନେ ଜାଣୁ ଯେ ଅନ୍ତସ୍କରଣରେ ସାନକଥାକୁ ନେଇ କାମ କରି ବସିଲେ ବିପଦ । କାରଣ ଉକ୍ତ ସାନକଥା ଏକମୁଖୀ, ବାଛବିଚାରର ଧାର ଧାରେ ନାହିଁ । ବୁଝେ ନାହିଁ ଯେ ଭୃତ୍ୟ, ଭଗବାନ, ହାକିମ, ନେତା, ସ୍ତ୍ରୀ, ପରକୀୟା, ବେପାରୀ, ଗରାଖ, ସମସ୍ତଙ୍କ ପାଇଁ ବିଭିନ୍ନ 'ସତ୍ୟ ପାଠ'ର ବ୍ୟବସ୍ଥା ରହିଛି । ବିଭିନ୍ନ ଚେହେରାର ମୁଖା, ବିଭିନ୍ନ ଆଚରଣ, ଯେପରିକି ସ୍ୱାର୍ଥର ବହୁମୁଖୀ ତୁଷ୍ଟି ହୋଇପାରିବ । କିନ୍ତୁ ଏଇ ବହୁମୁଖୀପଣ ସାତସିଆଁ ତାଳପକା କନ୍ଥାଠାରୁ କଣ ଆହୁରି ଅସୁନ୍ଦର ନୁହେଁ ? ବରଂ ସ୍ୱାର୍ଥକୁ ଯଦି ଯଥାସମ୍ଭବ ଲମ୍ବେଇ ହୁଅନ୍ତା, ନିଜଠାରୁ ପିଲାଛୁଆଙ୍କ ବାଟ ଦେଇ ବିଶ୍ୱଯାଏଁ, ଯେଉଁ-ଥିରେ ଏଇ କାରିଗରିର ଅବକାଶ ନ ଥାଅନ୍ତା···

ଗାନ୍ଧୀ କହିଥିଲେ ଯେ ମୁଁ ପ୍ରାକ୍‌ଟିକାଲ୍ ଆଇଡ଼ିଆଲିଷ୍ଟ । ଅର୍ଥାତ୍ ମୁଁ ମହାତ୍ମା ନୁହେଁ ମଣିଷ, କିନ୍ତୁ ଅଭିରାମ ରାମଙ୍କ ସତ୍ୟତାକୁ ମାନି ନେଇ ମଧ୍ୟ ତାଙ୍କ ପାଖକୁ ଯିବା ପାଇଁ କଷ୍ଟ ନ କରିବା, ଆଦର୍ଶକୁ ସ୍ୱୀକାର କରି ମଧ୍ୟ ତାକୁ କେବଳ ପୂଜା କରି ଖଟୁଳିରେ ଥୋଇବା କେଉଁଆଡ଼ର ମଣିଷ ପଣିଆ ? କେଉଁ ପ୍ରକାର ଯୁକ୍ତି ?

ତେଣୁ କମାରସାହିର ଓକିଲବାବୁ ଯେତେ ଦୟନୀୟ ହେଲେ ମଧ୍ୟ ମୋର ବିଶ୍ୱାସ ଯେ ମହାତ୍ମା ଗାନ୍ଧୀ ତାଙ୍କୁ ଭଲ ପାଇ ଥାଆନ୍ତେ । ଅନ୍ତତଃ ସେଇ ଭରସାରେ ତାଙ୍କୁ ବଡ଼ ମଣିଷ ଓରଫ୍ ବାସ୍ତବ ମଣିଷ (ମହାର୍ଘ ହେଲେ ମଧ୍ୟ ବାସ୍ତବ) ବୋଲି ଚିହ୍ନେଇବା ଉଚିତ ନୁହେଁ କି ?



କଟକ
୩୦ ଅକ୍ଟୋବର ୧୯୮୬

# ସ୍ୱପ୍ନ-ସୁନ୍ଦରୀ

ଖବର ଲେଉଟିଲାଣି । ଦିଲ୍ଲୀରେ ଆଶ୍ୱିନ ମାସର ଶୀତ ବାଟ ଖୋଜୁଛି ଆସିବ ବୋଲି । ସୁନେଲି ସୂର୍ଯ୍ୟର ରଥୀମାନେ ଦୂମେଇ ପଡ଼ିଛନ୍ତି ଟିକିଏ । ଉଦାସିଆ ଭାବ । ଆସୁଛି ଆସୁ,—ଏତେ ଭାବନା କାହିଁକି ?

କନଟ୍‌ପ୍ଲେସର 'ବସୁବସ୍ତ୍ର' ରେସ୍ତୋରାଁ ପାଖରେ ସେଇ ଦୋକାନଟା । କାମ୍ବୋଜ ଷ୍ଟୋର୍ସ । ପୂଜା ବଜାରରେ ନାଲି ନେଳି ବଲବ୍‌ରେ ସଜା ହୋଇଥିଲା । ସେଥିରୁ ଏଇକ୍ଷଣି ଦେଖା ହେଉଛି ଜାଠ ଜାଠକା ପାଚିଲା ଫଳ ପରି । ଭିତରେ ଥିବା ସାମଗ୍ରୀ ସାଙ୍ଗରେ ବେଶ୍ ଖାପ୍ ଖାଇ ଯାଉଛି ।

ଭିତରେ ଅଛି କେତେ ରକମର ଫଳଫୁଲର ଖାଦ୍ୟ,—ବୋତଲ ଧାଡ଼ି । ଆଉ ତା' ପାଖରେ କାଚ ଥାକର ଭିତରେ ମିଳିବ ଉତ୍ତେଜକ ପାନୀୟର ନିମନ୍ତ୍ରଣ । ଇଗଲ ଚଢ଼େଇ ଡେଣା ମେଲାଇ ବସିଛି ଗୋଟିକରେ,—ଆଶ୍ରୟ ଦେଇଛି ତା'ର ନାଁର ଗ୍ରେଟ ବଡ଼ ନେଳିଆ ବୋତଲ । ଗୁପ ମାରିଛି,—'ଗୋଲଡନ୍ ଇଗଲ୍ ବିଅର, ମେଡ୍ ଇନ୍ ଇଣ୍ଡିଆ ।' ଖାଣ୍ଟି ସ୍ୱଦେଶୀ—ଭୁଲ ବୁଝିବାର ବାଟ ନାହିଁ । ଆଉ ଗୋଟିକ ଥାକର ଭିତରେ ଆଉ କେତେ ରକମର ବୋତଲ । ଇଂରେଜ, ଫ୍ରେଞ୍ଚ, ଜର୍ମାନ୍ । ଭାରତର ଶୀତଳ ଗୁଇ ତଳେ ମଧୁର ସହାବସ୍ଥାନ ।

ଘର ଭିତରେ ଆଖି ଆଗରେ ପଡ଼େ ଗୋଟିକ ଉପରେ ଗୋଟିଏ ଥୁଆ ହୋଇଥିବା କେତେ ରକମର ଗୋଲ ଗୋଲ ଡବା । ଶାଗୁଆ କାଗଜର ଆବରଣ ଉପରେ ଦିଶୁଛି ଟହ ଟହ ନାଲିଆ ଟମାଟୋ, ପିଚ୍, ଆପ୍‌ଲ, ହଳଦିଆ ସପୁରି, ଅରେଞ୍ଜ ଏମିତି କେତେ କଣ ଫଳର ଛବି । ସବୁ ଜାମ୍, ଜେଲି, ମାର୍‌ମାଲେଡ୍‌ର ଉପାଦାନ । ପୁଣି ଗୃହପାଖ ଥାକରେ ଥୁଆ ହୋଇଛି ଆଉ ସବୁ ଖାଇବା ଜିନିଷ । ବିସ୍କୁଟ, ଚକ୍, ଟିଣ ମାଛ, ଟିଣ ଦୁଧ ଇତ୍ୟାଦି ।

ବଇନି ସିଂ ଓରଫ୍ ବଚ୍ଚୁ ମଟିର ସେଇ ଟିଣ ଡବାର ଉହାଡ଼ରେ ଲମ୍ବାଇ ଦେଇଛି ନିଜକୁ । ବାହାରୁ ଅନେଇଲେ ଆଖିରେ ପଡ଼ିବ ଖାଲି ତା'ର ଗୋଡ଼

ସଜାଡ଼ିବାକୁ ସମସ୍ତ ହୋଇ ନାହିଁ । ସେଇଠି ପଡ଼ିଛୁ ସେମିତ । ମ୍ୟାନେଜର୍ ମହେନ୍ଦର୍ ଲାଲ୍ ବ ମନ ଦେଇ ନାହିଁ ସିଆଡ଼େ । ଦଶଦଶ୍ରା ପରର ମାନ୍ଦା ବଜାର । ମହେନ୍ଦର୍‌ରେ କେତେ କଥା ଭାବବାକୁ ଫୁର୍ସତ୍ ମିଳୁଛି ଟିକିଏ । ସଜଡ଼ା ହେବ ତ,—ଏତେ ତରତର କାହିଁକି ?

ମ୍ୟାନେଜର୍ ମହେନ୍ଦର୍ ଲାଲ୍ କାଚ ଟେବୁଲର ପଛ ପାଖେ ବସି ଭାବୁଛି । କେତେଦିନ ଏମିତ ମୁଣ୍ଡ ବିକୁଥିବ ମାରୁଆଡ଼ି ଘରେ ? ପାଞ୍ଚବର୍ଷ ହୋଇ ଗଲାଣି ଚାକିରି କରିବାର । ଦରମା ବଢ଼ିଛି ମୋଟେ ପାଞ୍ଚ ଟଙ୍କା । ସେ ପୁଣି ବର୍ଷକ ତଳେ, —ତା' ଝିଅ ବାହାଘରରେ କାମ କରିଥିବାର ଇନାମ୍ ରୂପେ । ବୁଢ଼ା କିନ୍ତୁ ତା'କୁ ଭଲ ପାଏ । ସ୍ୱେକ୍‌ଠୋକ୍ ଟଙ୍କା ଗଣିବାକୁ ନାରାଜ—କିନ୍ତୁ ବେଳେ ବେଳେ ଜିନିଷ କିଣାଇ ଦିଏ, ଟାଇ ଫାଉଣ୍ଟେନ୍‌ପେନ୍ ଇତ୍ୟାଦି । ଦେବିବାରିଆ ଖାଇବାକୁ ଡାକେ, ଘରର ହାଲଚାଲ ପଚାରେ । ଗୋଟିଏ ବୋଲି ଝିଅ । ସେ ତ ବାହା ହୋଇ ଗଲାଣି । ହୁଏତ,—ହୁଏତ ତା'କୁ ପୁଅ କରି ନେଇ ପାରେ । ଜ୍ୱାଇଁ ତ ସହରେ ବଡ଼ ଲୋକ,—ତା'ର ଆଉ ଦରକାର କଣ ? ତା' ପରେ—ତା' ପରେ ଆଉ କେତୋଟା ଦିନ । ବୁଢ଼ା କେତେଦିନ ବଞ୍ଚିବ ? ନା—ନା—ସେ ତା'ର ମରିବାକୁ ଚାହେଁନା । କିନ୍ତୁ ପାଚିଲା ତାଳ—ଖସିବାକୁ କେତେ ସମୟ ? ବୁଢ଼ାର ଶ୍ରାଦ୍ଧରେ ସେ ନିଶ୍ଚୟ ଟଙ୍କା ଖର୍ଚ୍ଚ କରିବ । ସମସ୍ତଙ୍କୁ ଖୋଇବ, ପେଇବ, ଖୁସି କରିବ ଓ ତା' ପରେ— ତା' ପରେ ଦୋକାନ ହେବ ତା'ର । ବେଶି ଟଙ୍କା ଲଗାଇବ ସେଥିରେ । ଗୋଟାଏ ଫ୍ୟାଶନେବଲ ମ୍ୟାନେଜର ରଖିବ ଓ ଦୁଇ ତିନିଜଣ ପୋଷାକ ପିନ୍ଧା ବେଅରର୍ ତା'ପରେ ହୁଏତ ଗୋଟାଏ 'ବାର୍' ଓ ରେସ୍ତୋରାଁ କିଣିବ । 'ବସୁ ବନ୍ଧୁ' ରେସ୍ତୋରାଁ ଶୁଣୁଛି ଭଲ ଚାଲୁ ନାହିଁ । ତାକୁହିଁ କିଣିନେବ । ବଡ଼ ବଡ଼ ଆଙ୍ଗ୍ଲୋ-ଇଣ୍ଡିୟାନ୍ ଝିଅ ଆଣି ଫ୍ରେଞ୍ଚ, ସ୍ପାନିଶ ବୋଲି ଘୋଷଣା କରି କାବାରେ (Cab ret) ନାଚ ପ୍ରସ୍ତୁତ କରିବ । ରାତି ଅଧିକୁ ସେ ବସିଥିବ ଉପର ମହଲରେ । ତଳୁ ଶୁଭୁଥିବ ନାଚର ରୁଣୁଝୁଣୁ,—ପିଆନୋ, ଭାୟୋଲିନ୍‌ର ଉନ୍ମତ୍ତ ତାନ । ଆଉ ପାଖରେ ଥିବ ଦାମିକା ଫରାସି ମଦ,—'ସାମ୍ପେନ୍' କିମ୍ବା 'କ୍ରିମ୍-ଡ଼ ମେନ୍ଥ' । ଆଉ ତା' ଛଡ଼ା ହୁଏତ ଆଉ ଜଣେ— ।

ସେଇ ଆଉ ଜଣକର ରୂପ କଳ୍ପନା କରୁ କରୁ ମହେନ୍ଦର୍ ଲାଲର ଆଖିପତା ଲାଗି ଆସିଲା ଧୀରେ ଧୀରେ । ତା' ପରେ ଆସିଲା କେତେ ରଙ୍ଗର ମିଶାମିଶି, କେତେ ତାନର କୋଳାହଳ, କେତେ ଲୋଭନୀୟ ରୂପ ଓ ଦେହର ଲୁଚକାଳି । ରାଜଧାନୀର ସୁନେଲି ସନ୍ଧ୍ୟା ମହେନ୍ଦର୍ ଲାଲର ସ୍ୱପ୍ନରେ ବସା ବାନ୍ଧିଲା ଓ ତା'କୁ କରିଦେଲା ସ୍ୱର୍ଗ ଓ ମର୍ତ୍ତ୍ୟର ଚକିତ ସମାବେଶ ।

·········କିନ୍ତୁ ଏ ପୁଣି କିଏ ? ରାଜପଥର ବିପଣୀରେ ଏ ବି କଣ ଗୋଟିଏ ଷୌଖୀନ ଦୃଶ୍ୟ ?

କିଏ ଗୋଟିଏ ପାଖେଇ ଆସୁଛି । ତାର ନାଁ ନାହିଁ । ଘ୍ରେଷେଇ ଘ୍ରେଷେଇ ଚାଲେ । ଜିଭ ନଥିଲା ଭଳିଆ କଥା କୁହେ । ଯାଙ୍କ ଲୋକମାନେ ଡାକନ୍ତି 'ତୋତା-ରାମ' । କିନ୍ତୁ ଅନ୍ୟମାନେ ଯେଉଁମାନେ ହିଁ ରାଜଧାନୀର ନାଗରିକ, ରାଜପଥର ଯାତ୍ରୀ, ସେମାନେ ତାକୁ ଜାଣନ୍ତି ଖାଲି ଫୁଟପାଥର ଗୋଟିଏ ଜୀବ ବୋଲି । ଗୋଟାଏ କଣାଗୁଣ୍ଡା ଚଦ୍ଦର,—ଗଛତଳର ବର୍ତ୍ତିଖୁଣ୍ଟ ପରି ଜମ୍ବା ହେଇ ଭଙ୍ଗା ମସ୍‌ଜିଦ୍‌ର କାନ୍ଥ ପରି । ଅଦରକାରୀ,—କିନ୍ତୁ ନ ଥିଲେ ହୁଏତ ଅଡ଼ୁଆ ଲାଗନ୍ତା । ନୂଆ ଆସୁଥିବା ନଗର-ପ୍ରେମୀମାନେ ଭାବନ୍ତେ କିଛି କେଉଁଠି ହଜିଗଲା ପରି । ତା' ପରେ ଇତିହାସର ବିଜ୍ଞତା ନେଇ କହନ୍ତେ ଟୋକାମାନଙ୍କୁ,—'ଏଇ କନଟ୍‌ପ୍ଲେସ ବଦଳିଗଲାଣି କେତେ । ବ୍ରିଟିଶ ଅମଳରେ ଥିଲା ଅନ୍ୟ ରକମର । ଦେଖିଲେ ପେଟ ପୂରି ଉଠୁଥିଲା । କିନ୍ତୁ ଆଜି— । ଟୋକାମାନେ ଉତ୍ସୁକ ହୋଇ ପଚାରନ୍ତେ—'ଆଉ କଣ ଥିଲା ଅଧିକା ?' 'ଆ-ହା-,-ତୁମେ ବୁଝି ପାରିବ ନାହିଁ । ସବୁ ଅଛି,—ସେଇ କୋଠା, ସେଇ ବଜାର । କିନ୍ତୁ ନାହିଁ ସେଇ ବାତାବରଣ,—ସେଇ 'ଆଟମସ୍‌ଫିଅର୍‌'—ପ୍ରବୀଣ ଉତ୍ତର ଦିଅନ୍ତେ । ପ୍ରଶ୍ନ ଲାଜେଇ ଯାଆନ୍ତା ।

ତୋତାରାମ ଯେ କି ଏହି 'ଆଟମସ୍‌ଫିଅର୍‌'ର ଗୋଟିଏ ପ୍ରଧାନ ବସ୍ତୁ--ସେ କିନ୍ତୁ ଦେଖି ନାହିଁ କଣ ବଦଳିଛି । ଲୋକେ ଚାଲୁଛନ୍ତି ସେମିତି । ସେମିତିକା ଟାଇ-କୋଟ୍ ଓ ମାଇପିଙ୍କର ସେମିତି ପାତଳା ନାଲି ନେଳି ଫର ଫର କନା,—ଶୀତ ଦିନେ ବି' । ଥୋକେ ମର୍ଦ୍ଦ ଲମ୍ବା କୋଟ ପିନ୍ଧି ଆସୁଛନ୍ତି,—ବେକଯାଏଁ ଚପା ହୋଇଛି, ହସ ବି' ସେଥିରେ ଚୁପି ହୋଇ ଯାଉଛି ଯେମିତି । କିନ୍ତୁ ଆଉ କିଛି ବଦଳି ନାହିଁ । ଆଗଭଳି ଦଶଜଣ ମୁହଁ ଛୁଆଡ଼ି ଆଡ଼େଇ ହୋଇ ଗଲେ ଜଣେ ହୁଏତ କଣା ପଇସାଟାଏ ପକାଇ ଦେଇ ଯାଉଛି । ମାସେ ଦୁଇ ମାସରେ ଅନାହୂତ ପୁଲିସ ସେମିତି ଜେଲର ଧମକ ଦେଇ ଯାଉଛି । କିନ୍ତୁ ସେ ତା'ର କଳା କୁଚୁକୁଚୁ ବିକୃତ ମୁହଁଟାକୁ ଆହୁରି ବିଚକଟିଆ କରି ଦେଉଛି ତା'ର ସାଧନା-ନୈପୁଣ୍ୟ ବଳରେ ଓ ଚାହିଁ ରହୁଛି ନିର୍ଘାତ୍ ବୋକା ପରି । ପୁଲିସ ଘୃଣାରେ ବାଡ଼ିରେ ଗୋଟାଏ ପାହାର ପକାଇ ଚାଲି ଯାଉଛି ତା' ବାଟରେ । ଏଟାକୁ ହାଜତକୁ ନେଇଗଲେ ବାହାଦୁରୀ ତ ନାହିଁ ମୋଟେ—ବରଂ କିଛି ସମୟ ପାଇଁ ଗୋଟାଏ କୁତ୍ସିତ ବୋଝ ।

ଏମିତି ସେ ରହି ଯାଇଛି । ଗୋଟାଏ ଦିନର ଅଇଁଠା ବଳି ପଡ଼ୁଛି ଆର-ଦିନକୁ ଓ ତା' ପରେ ଆଉ ଗୋଟିଏ ଦିନର ପାଦରକୁ । କେହି ଛୁଅନ୍ତି ନାହିଁ ତାକୁ

କରେ ଓ ଲୋକ ନଥିଲା ବେଳେ ଘୋଷେଇ ଘୋଷେଇ ଚାଲେ ଖଣ୍ଡେ ବାଟ, ଦୋକାନରୁ କଣ କିଣି ଖାଇବ ବୋଲି । ରୁଟି ଦି’ ଖଣ୍ଡକୁ ଟିକିଏ ପିଆଜ କିମ୍ବା ଚଟଣି ଦେଇ ଖାଏ ଓ ଖୁସି ହୁଏ ଖାଉଛି ବୋଲି । ସେତେବେଳେ କୁକୁର ବି କଲବଲ ହୋଇ ଅନାଇଲେ ସେ ଟୁକୁଡ଼ାଏ ପକାଇଦିଏ ତା’ ଆଡ଼କୁ ।

କିନ୍ତୁ ଦି’ ଦିନ ହେଲା ତା’ର ଏଇ ସୁଖର ମୁହୂର୍ତ୍ତିଟି ଆସିନାହିଁ । ଦଶହରା ବଜାରରେ ବାବୁମାନଙ୍କର ପାଦ ଜୋର୍‌ରେ ଜୋର୍‌ରେ ପଡ଼ୁଛି । ପାଖକୁ ଅନେଇବାର ବେଳ ନାହିଁ । ଜିନିଷ କିଣିବାକୁ ହେବ,—ଓ ତା’ ପରେ ଆଗରେ ରହିଛି ବିଜୟା ମିଳନ, ରାମଲୀଳା, ନ ହେଲେ ସିନେମାର ସ୍ପେଶାଲ ଶୋ । ଏଇ ଦୁଇଦିନ ଭିତରେ ସେ ପାଇଛି ଖାଲି ଅଇଁଠା ପାନ ଖଣ୍ଡେ ।

ପେଟ ଭିତରେ ଭୋକ ଜଳି ଅଙ୍ଗାର ହେଲାଣି କେବେଠୁଁ । ଆଉ ସେଇ ଭୋକ ବୋଧହୁଏ ଦେହଯାକ ଜଣାଗଲାଣି । ଗୁଡ଼ି ଭିତରଟା ରହି ରହି କଣ ହୋଇ ଯାଉଛି । ଉଠିଲେ ମୁଣ୍ଡ ଘୂରେଇ ଦେଉଛି ।

ତଥାପି ସେ ଘୋଷେଇ ଘୋଷେଇ ମୁହେଁଇଛି ଏଇ ଦୋକାନ ଆଡ଼କୁ । କାହିଁକି ଜାଣେ ନା । ଭାବିବାକୁ ଚେଷ୍ଟା କରି ନାହିଁ । ଖାଲି ଅଖି ବାଟ କଢ଼େଇ ଦେଇଛି । ଆଖି ଦେଖିଛି ଫଳ ଫୁଲୁରିର ଛବି ଓ ସଙ୍କେତ ଦେଇଛି ଅନ୍ୟ ସବୁ ଇନ୍ଦ୍ରିୟଙ୍କୁ ।

ଦୋକାନର ଚାକର ଟୋକା ଶୋଇ ପଡ଼ିଛି । ବାବୁ ବି କାଚ ଟେବୁଲରେ ମୁଣ୍ଡ ଦେଇ ଘୁମେଇ ପଡ଼ିଛନ୍ତି । କେହି ନାହିଁ ଦେଖିବାକୁ । ବୋଧହୁଏ ସେ ପଶିଗଲେ ବି’ କାହାରି ନିଦ ଭାଙ୍ଗିବ ନାହିଁ । ତା’ ପରେ ସେ ଯଦି ଦି’ ଚାରିଟା କ’ଣ ଜିନିଷ ନେଇ ଆସେ ? କେହି କଣ ଜାଣିବେ ? ନା—ନା—ନା କାହାରି ନିଦ ଭାଙ୍ଗିବ ନାହିଁ । କେହି ଜାଣିବେ ନାହିଁ । ତା’ ପରେ ବାହାରକୁ ଆସି ପଡ଼ିଆରେ ସେ ଜିନିଷ ଖୋଲି ପକାଇବ । ତା’ ଭିତରେ ନିଶ୍ଚୟ ଥିବ ସୁଆଦିଆ ଖାଇବା ଜିନିଷ —ଖଟା, ମିଠା ଯାହା ହେଉ । ସେଥିରୁ ଟିକିଏ ଖାଇବ ଆଜି । ବାକି ରଖିଦେବ ଆହୁରି କେତେ ଦିନ ଟିକିଏ ଟିକିଏ କରି ଖାଇବା ପାଇଁ । ଏଇ ଆନନ୍ଦ କେତେଦିନ ତା’ର ଛୁଟି । ଘାସ ଉପରେ ଗଛ ତଳେ ବସି ଆରାମ କରିବ ଖାଲି । ପିଲାମାନେ ଖେଳୁଥିବେ । କାଉଗୁଡ଼ା ଚଢ଼ାଚଢ଼ି ହେଉଥିବେ ତା’ଠୁ ଟିକିଏ ଜିନିଷ ପାଇଁ । ସେ ଖାଲି ଦେଖୁଥିବ । ହୁଏତ ଖଣ୍ଡେ ବଡ଼ କେଉଁଠୁ ଆଣି ଚାଟୁଥିବ ଆସ୍ତେ ଆସ୍ତେ । ଆଃ—

ତୋତାରାମ ଚେଇଁ କରି ସ୍ୱପ୍ନ ଦେଖୁଛି ଓ ପାଖେଇ ଆସୁଛି ଦୋକାନ ଆଡ଼କୁ । ଆଉ ଟିକିଏ ଗଲେ ସବୁ ଜିନିଷ ତା’ର ହାତ ପାହାନ୍ତାରେ । ଚାକର

ଶୋଇକରି ଘୁଙ୍ଗୁଡ଼ି ମାରୁଛି । ବାବୁ ସେମିତି ବସି ଢୁଳେଇ ପଡ଼ୁଛି । କିଛି ଚିନ୍ତା ନାହିଁ । ଆଉ ଦ'ଖୋଜ ।

ଦୁଆରବନ୍ଧ ଡେଇଁଗଲାଣି ସେ । ଆଉ ଟିକିଏ ଗଲେ ସେଇ ସାମନାରେ ଥିବା ବଡ଼ ନେଳଆ ଟିଣ । ତାକୁଇ ଆଗେ—

ହଠାତ୍ କାହାର ଗ୍ରୀଇ ପଡ଼ିଲା ଆଗରେ । ଚମକି ପଡ଼ି ପଛକୁ ଅନାଇଲା ସେ । ପଡ଼ିଯାଇଥାନ୍ତା ବୋଧହୁଏ । କିନ୍ତୁ ଆଖି ଆଗରେ ଯାହାକୁ ଦେଖିଲା, ତା'ର ସ୍ଥିର ଦୃଷ୍ଟି ଓ ଦ'ପାଟି ଲମ୍ବା ହସ ଦେଖି ସେ କଣ କରିବ ଭାବି ପାରିଲା ନାହିଁ ।

କିନ୍ତୁ ସେଇ ନାରୀ ମୂର୍ତ୍ତି ହସିବା ସାଙ୍ଗେ ସାଙ୍ଗେ ଡାହାଣ ହାତକୁ ଉପରକୁ ଉଠାଇ ରଖିଲେ ଅଶ୍ୱାସନାର ମୁଦ୍ରାରେ । ତୋତାରାମ ଯଦି ପୁରାଣ, ଇତିହାସ, ଦେବ ଦେବୀଙ୍କ କଥା ଜାଣିଥାନ୍ତା ତାହା ହେଲେ ସେ ସେଥିରେ ପାଇଥାନ୍ତା ବୁଦ୍ଧଦେବଙ୍କର ଶାନ୍ତିର ଦୀକ୍ଷା କିମ୍ବା ମାଆ ଜଗଜ୍ଜନନୀର ଅଭୟ ଆଶିଷ । କିନ୍ତୁ ସେ ଖାଲି ଅନେଇ ରହିଲା ଓ ବସି ପଡ଼ିଲା ସେଇ ଚଟାଣରେ ଦୁଆରବନ୍ଧକୁ ଲାଗି ।

ଆଗନ୍ତୁକାଙ୍କର ପରିଚୟ ବିଶେଷ ଦେବା ଦରକାର ନାହିଁ । ଖାଲି ମିସେସ୍ ଗ୍ରେପ୍ରା କହିଲେ କନଟ୍‌ପ୍ଲେସ୍‌ର ଜଣାଶୁଣା ମହଲ ବୁଝିବେ ଲୋକଟି କିଏ । ମିଷ୍ଟର ଗ୍ରେପ୍ରା କିଏ ଅନେକ ବୋଧହୁଏ ଜାଣି ନଥିବେ—କିନ୍ତୁ ତା' ଜାଣିଲେ ଅଧିକା କଣ ହୁଅନ୍ତା ?

କନଟ୍‌ପ୍ଲେସ୍‌ର କୌଣସି ବାର୍, ରେସ୍ତୋରାଁ, ବିଉଟି ପାର୍ଲର ନାହିଁ, ଯେଉଁଠି ମିସେସ୍ ଗ୍ରେପ୍ରାଙ୍କର ବ୍ୟକ୍ତିତ୍ୱ ଅଦୃଷ୍ଟ, ଅବହେଳିତ ହୋଇ ରହିଯାଇଛି । ସବୁବେଳେ ତାଙ୍କ ସାଙ୍ଗରେ ଥାଆନ୍ତି ନୂଆ ନୂଆ ଲୋକ । ତାଙ୍କ ଭିତରୁ କିଏ ଆମେରିକାନ୍, କିଏ ଗୃଇନିଜ୍, କିଏ କଣ । କିନ୍ତୁ ସେମାନେ ସବୁ ଭୁଲି ହୋଇ ଯାଆନ୍ତି । ମନେ ରହନ୍ତି ଖାଲି ମିସେସ୍ ଗ୍ରେପ୍ରା—ତାଙ୍କର ଅଳସ ଅନୁନାସିକ ହସ, ଆୟତ ଆଖିର ବିସ୍ତାର ଯେଉଁଥିରେ ଅଛି ଆଦେଶ ଓ ଆହ୍ୱାନର ଯୁଗଳ ଇଙ୍ଗିତ ଓ ତାଙ୍କର ପ୍ରସାଧନର ଭଙ୍ଗୀ ଯେଉଁଥିରେ ଅଜନ୍ତା ଓ 'ହଲଉଡ଼' ଏକାଠି ହେବା ପାଇଁ ଚିତ୍କାର କରନ୍ତି ।

ମୋଟ ଉପରେ ସେ ଜଣେ ବିଶିଷ୍ଟା ନାରୀ । ବିଶିଷ୍ଟା ଏଇ ହିସାବରେ ଯେ, ସେ ଯେ କୌଣସି ଯାଗାରେ, ଯେ କୌଣସି ରୂପରେ ଥାଆନ୍ତୁ ନା କାହିଁକି, ତାଙ୍କୁ ସହଜେ ଅନ୍ୟମାନଙ୍କଠାରୁ ବାରି ହୋଇଯିବ । କିଏ କହେ ତାଙ୍କ ସ୍ୱାମୀ ଜଣେ ବଡ଼

କଣ୍ଟ୍ରାକ୍ଟର । କିଏ କହେ ସେ ଜଣେ ଉଚ୍ଚପଦସ୍ଥ ମିଲିଟାରୀ ଅଫିସର । ସେଥିପାଇଁ ସେ ସବୁବେଳେ ନୂଆ ନୂଆ ବେଶରେ ଆସନ୍ତି । ଯାହାହେଉ ପ୍ରତ୍ୟେକଟି ସମାରୋହରେ ସେ ନିଜକୁ ସୁନ୍ଦର ଭାବରେ ଫୁଟାଇ ପାରନ୍ତି ଓ ସମସ୍ତଙ୍କୁ ଖୁସି କରି ପାରନ୍ତି 'ବଅରର୍'କୁ ମିଶାଇ ।

କିନ୍ତୁ ସଭ୍ୟ ସମାଜରେ ଫୁଆଗରେ ଗାଧୋଇସାରି ସେ ଯେତେବେଳେ ଘରକୁ ଫେରନ୍ତି, ସେତେବେଳେ ତାଙ୍କର କାମ କ'ଣ, ଧନ୍ଦା କ'ଣ, କେହି ଜାଣି-ନାହାନ୍ତି ବା ଜାଣିବାକୁ ଚେଷ୍ଟା କରିନାହାନ୍ତି । ସେ ଖାଲି କନଟ୍‌ପ୍ଲେସର ମିସେସ୍ ଗ୍ରେପ୍ରା—ଗୋଟିଏ ଅନୁଷ୍ଠାନ, ଗୋଟିଏ ଉଚ୍ଚାଙ୍ଗ ଶିଳ୍ପର ନମୁନା ।

ମିସେସ୍ ଗ୍ରେପ୍ରା ଆଜି ଏଇ ଦୋକାନ ପାଖରେ ପହଞ୍ଚିଛନ୍ତି ନିରୁଦ୍ଦେଶ ଭାବରେ । ଏକାକିନୀ । କୁଆଡ଼େ ଯିବେ, ସନ୍ଧ୍ୟାଟି କେଉଁଠି କଟାଇବେ । ତାହା ଆପେ ଆପେ ସ୍ଥିର ହୋଇଯିବ ।

କିନ୍ତୁ ଏଇକ୍ଷଣି ତାଙ୍କର ପରିପାଟୀ ତଳର ସାଧାରଣ ଦେହରେ ଜଳୁଛି ସାଧାରଣ ଲୋକ । ମିସେସ୍ ଗ୍ରେପ୍ରା ଏଇ ମାମୁଲି ଜିନିଷକୁ କେବେହେଲେ ଖାତିର କରିନାହାନ୍ତି । ଇତର ଖାଦ୍ୟ ଖାଲି ବଞ୍ଚିବା ପାଇଁ—ବଳେ ବଳେ ତାଙ୍କ ପାଖକୁ ଚାଲି ଆସିଛି ।

ତଥାପି ବର୍ତ୍ତମାନ ପାଇଁ ସତ ଏଇ ଭୋକ । ଆଜି ଗୋଟାଏ ଅସ୍ୱାଭାବିକ ଦିନ । କୌଣସି ନିମନ୍ତ୍ରଣରେ ଯାଇନାହାନ୍ତି ସେ । ଭ୍ୟାନିଟି ବ୍ୟାଗରେ ଯାହା କିଛି ଥିଲି ସବୁ ଖର୍ଚ୍ଚ ହୋଇ ଯାଇଛି କାଲି, ଗୋଟିଏ ଆଧୁନିକ ଚିତ୍ରକରର ସମ୍ବର୍ଦ୍ଧନାରେ । ତାହାର ମୂଲ୍ୟ ଅଛି ଭବିଷ୍ୟତ୍ ପାଇଁ । କିନ୍ତୁ ବର୍ତ୍ତମାନ ପାଇଁ ଯେଉଁ ମୂଳଧନ ଖଟା ହୋଇଛି ତା'ର ପ୍ରତ୍ୟକ୍ଷ ପରିଣାମ ହେଉଛି ଖାଲି ବ୍ୟାଗ ଓ ଭୋକିଲା ପେଟ ।

ମିସେସ୍ ଗ୍ରେପ୍ରା ଏଇ ଦୋକାନକୁ ଭଲ ଭାବରେ ଜାଣନ୍ତି । ମହେନ୍ଦର୍‌ଲାଲ୍‌କୁ ସେ କେତେ ଭାବରେ ଆପ୍ୟାୟିତ କରିଛନ୍ତି । ପିଲାଟି ବେଶ୍ ସ୍ମାର୍ଟ ଓ ସୁନ୍ଦର । ସଭ୍ୟ ସମାଜରେ ବେଶ୍ ନିଜକୁ ଚଳାଇ ପାରେ ।

ହଁ—ମିସେସ୍ ଗ୍ରେପ୍ରାଙ୍କୁ ଭୋକ କରୁଛି । ସେ ଦେଖିଲେ ଆଗରେ ଶୋଇଛି ମହେନ୍ଦର୍‌ଲାଲ ଓ ତା ଚାକର ଟୋକା । ଆଉ ଏଇ ଭିକାରୀଟା ଏଇ ସୁଯୋଗ ଦେଖି କଣ ବୋଧହୁଏ ଆତ୍ମସାତ୍ କରିବାକୁ ଯାଉଥିଲା । ସେ ଆସିଯିବାରୁ ନିରସ୍ତ ହେଲା । ବଦମାସ୍ !

ମିସେସ୍ ଗ୍ରେପ୍ରା ଆଗେଇଲେ । ଆଜିକାଲି ଭ୍ୟାନିଟି ବ୍ୟାଗଟା ବେଶ୍ ବଡ଼ । ଅକ୍ଲେଶରେ କେଉଁଟା ଜିନିଷ ରହିପାରିବ । ଛତି କ'ଣ ? ଗୋଟିଏ ନିର୍ଦ୍ଦୋଷ

ସଉକ୍ । ତାକୁ ମେଣ୍ଟାଇବାରେ ଲଭର ଇଚ୍ଛା ନାହିଁ—ଲେଭର ପରିଚୟ ମିଳେନା । ଖାଲି ଗୋଟାଏ ସୌଖିନ ଖିଆଲ । ସଭ୍ୟ ଗଣତାନ୍ତ୍ରିକ ଯୁଗରେ ଯଦି ଏଇ ଶ୍ରେଷ୍ଠ ଶ୍ରେଷ୍ଠ ଖିଆଲକୁ ପୋଷି ନ ହେଲା ତାହାହେଲେ ଏଇ ସମାଜ ରହିଛି କାହିଁକି ? ପୋଡ଼ି ଜଳିଯିବା ଭଲ ।

ମହେନ୍ଦ୍ରଲାଲ ଉଠିଯାଇ ପାରେ । ଉଠୁ । ସେ ପୁଣି ତାକୁ ସନ୍ଦେହ କରିବ ? ଆଉ ଏଇ ଲୋଖାଟା । ମାତ୍ର—ତା'ର ଭାବନାର ଦୌଡ଼ କେତେଦୂର ? ସେ ବୋଧହୁଏ ଭାବିବ ଯେ ସେ ଦୋକାନର ମାଲିକାଣୀ କିମ୍ବା ଜଣେ ପୁରୁଣା ଗରାଖ ଯାହାର ଏମିତିକା ଅଧିକାର ଅଛି ।

ମିସେସ୍ ଗୁପ୍ତା ଆଉ ଡେରି କଲେ ନାହିଁ । ଖୋଲି ହୋଇ ପଡ଼ିଥିବା ଚକୋଲେଟ୍ ଉପରୁ ଏକଚତୁର୍ଥାଂଶ ତାଙ୍କର ଭ୍ୟାନିଟିବ୍ୟାଗ ମଣ୍ଡନ କଲା ।

ଲୋଖାଟା ଆଁ କରି ଶୁଣୁଥାଏ । ମହେନ୍ଦ୍ରଲାଲ ତା'ର ସହଯାତ୍ରିଣୀକୁ ଖୋଜି ବୁଲୁଥାଏ ସ୍ୱପ୍ନର ପରୀ ରାଇଜରେ । ଆଉ ବଚନ ସିଂ ବାବୁଗୃହର ଝିଅକୁ କୃତାର୍ଥ କରୁଥାଏ ।

ମିସେସ୍ ଗୁପ୍ତା ସବେଗେ ମହେନ୍ଦ୍ରଲାଲର ହାତକୁ ହଲାଇ ଉଠାଇ ଦେଲେ । ମହେନ୍ଦ୍ରଲାଲ ଆଖି ଖୋଲି ଦେଖିଲା । କ୍ଷଣକ ପାଇଁ ତା'ର ମନେହେଲା ତା'ର ସ୍ୱପ୍ନ ସତ ନାହିଁ । ଏ ତା'ର ସହଯାତ୍ରିଣୀର ନିକଟତମ ରୂପ ।

କିନ୍ତୁ ପର ମୁହୂର୍ତ୍ତରେ ସେ ଫେରି ଆସିଲା ଜାମ୍ବୋର ଷ୍ଟୋର୍ସର ଗୋଟିଏ ଅପରାହ୍ନର ଘଟଣାକୁ । ଆଗରେ ମିସେସ୍ ଗୁପ୍ତା । ଅପୂର୍ବ । ସତ୍କାର କରିବା ପାଇଁ ସେ ଚଉକି ଛାଡ଼ି ଉଠିପଡ଼ିଲା ଓ ଦୁଇହାତ ଯୋଡ଼ି 'ମୋତେ କ୍ଷମା କରନ୍ତୁ,—ଟିକିଏ ଶୋଇ ପଡ଼ିଥିଲି' କହି ଲଜେଇବାକୁ ଲାଗିଲା ।

ମିସେସ୍ ଗୁପ୍ତା 'ବ୍ୟସ୍ତ ହୁଅନ୍ତୁ ନାହିଁ, ବ୍ୟସ୍ତ ହୁଅନ୍ତୁ ନାହିଁ' କହି କାଚ ଟେବୁଲ ଆଡ଼କୁ ପାଖେଇ ଗଲେ ଓ ଚଟ୍‌କରି ଭ୍ୟାନିଟିବ୍ୟାଗ୍ ଖୋଲି ପକାଇ 'ନେଇ ନଅନ୍ତୁ—ତାଜା ଚକୋଲେଟ୍' କହି ଦୁଇଟା ବଢ଼େଇ ଦେଲେ ମହେନ୍ଦ୍ରଲାଲ୍ ଆଡ଼କୁ । ମହେନ୍ଦ୍ରଲାଲ୍ ଅପ୍ରତିଭ ହେଲା ପରି କହି ଉଠିଲା 'କାହିଁକି କଷ୍ଟ କରୁଛନ୍ତି, —ଆପଣଙ୍କୁ ମୋର ଦେବାର କଥା ।' କିନ୍ତୁ ତା' ପରେ ସେ ଗୋଟାକୁ ଖୋଲିବାକୁ ଲାଗିଲା ଓ ଭାବିଲା ଯେ ମିସେସ୍ ଗୁପ୍ତାଙ୍କ ପରି କଲଚର୍ (Culture) ଓ ସୌନ୍ଦର୍ଯ୍ୟ ଏକାଠି ଅଛି କେତେଜଣଙ୍କ ପାଖରେ ? ତା'ର ଭବିଷ୍ୟତର ସାଥୀ ଯଦି ଏହିପରି ଜଣେ—

ପାଟିତୁଣ୍ଡରେ ବଚନ ସିଂ ବି' ଉଠିପଡ଼ିଲା । ତା'ର ନିଦ ଭାଙ୍ଗି ଆଖି ଝଲସି ଉଠିଲା ଆଗନ୍ତୁକାଙ୍କୁ ଚିହ୍ନି । ଅଃ—ସ୍ୱପ୍ନଟା ବେଶ୍ ସୁନ୍ଦର ହୋଇଥିଲା । କିନ୍ତୁ ତା' ପରର ଏଇ ଦୃଶ୍ୟଟା ବି' ଚମତ୍କାର !

ମିସେସ୍ ଗ୍ରେପ୍ରାଙ୍କ ଆଖିରେ ଥିଲା ନିର୍ବିକାର ଉଦାରତାର ଭଙ୍ଗୀ । ପିଲାଟିର ନିର୍ବୋଧ, ଲୋଲୁପ ଦୃଷ୍ଟି ତାଙ୍କୁ ଭାରି ମଜା ଲାଗିଲା । ହଠାତ୍ ବ୍ୟାଗ୍‌ରେ ହାତ ପୂରାଇ ଗୋଟାଏ ଚକୋଲେଟ୍ କାଢ଼ି ସେ ତା' ଆଡ଼କୁ ଫୋପାଡ଼ିଦେଲେ । ନେଉ,—ଆହୁରି ଅନେକ ବାକି ଅଛି ।

ବଚନ ସିଂ କାବା ହୋଇଗଲା । ଏ କ'ଣ ସାକ୍ଷାତ୍ ଦେବୀ ? ଆସିଛନ୍ତି ତା'ର ସ୍ୱପ୍ନକୁ ସାର୍ଥକ କରିବାକୁ । ସେ ହାତ ପାତି ପାଟକୁ ନେଇ ପାରିଲା ନାହିଁ । ଖାଲି ଅନାଇଲା ଜଳ ଜଳ ହୋଇ ।

ମିସେସ୍ ଗ୍ରେପ୍ରାଙ୍କ ମୁହଁରେ ସନ୍ତୋଷର ବ୍ୟାପ୍ତି । ସେ ଫେରି ଚିହ୍ନିଲେ । ଭିଖାରୀଟା ଦୁଆରବନ୍ଧର ସେପଟରେ ବସି ରହିଛି ସେମିତି । ସେ ବି' କାହିଁକି ବାକି ପଡ଼ିବ ? ସେ ଆଉ ଗୋଟିଏ ଚକୋଲେଟ୍ କାଢ଼ି ତା' ଆଡ଼କୁ ଫୋପାଡ଼ି ଦେଲେ ।

ତୋଲାରାମ କଲା ଦୃଶ୍ୟର ଶୁଭ ସମାପ୍ତି । ମୁଣ୍ଡକୁ ଥରକୁ ଥର ତଳେ ଲଗାଇ ସେ କହି ଉଠିଲା—'ଭଗବାନ୍ ଭଲ କରେ ଆପ୍‌କା । ଭଗବାନ୍ ଭଲ କରେ ଆପ୍‌କା' । ମିସେସ୍ ଗ୍ରେପ୍ରା ଧୀର, ଶାନ୍ତ ଦୃଷ୍ଟିରେ ସେଇ ଆଶୀର୍ବାଦ ଗ୍ରହଣ କରି-ନେଲେ କୃତକୃତ୍ୟ ହୋଇ ।



# ସ୍ୱପ୍ନ-ସୁନ୍ଦରୀ

ପଞ୍ଚ ଦଶନ୍ଧରେ ପ୍ରକାଶିତ ଆଉ ଗୋଟିଏ ଗପ, ଯାହାକୁ କୌଣସି ସଂକଳନରେ ଥାପିବାର ସାହସ ହେଲ ନାହିଁ । କିନ୍ତୁ ତା'ର କାରଣ କ'ଣ ବୋଲି ବିଶେଷ ଭାବିବାକୁ ପଡ଼ୁ ନାହିଁ । ମିସେସ୍ ଗ୍ରେପ୍ରାଙ୍କ ଚରିତ୍ରକୁ ଗଢ଼ି ସାରିଲା ପରେ ମୋର ନିଶ୍ଚୟ ମନେ ହୋଇଥିବ ଯେ ଭଦ୍ରମହିଳା ଭିତରେ ରାଜଧାନୀ ତଥା ତା'ର ସମ୍ଭ୍ରାନ୍ତ ରମଣୀର 'ସ୍ୱପ୍ନ-ସୁନ୍ଦରୀ' ହୋଇପାରନ୍ତି, କିନ୍ତୁ ମୋର ସମ୍ଭ୍ରାନ୍ତ ମନନଶୀଳ ଗଳ୍ପମାନଙ୍କରେ ଆସନ ପାଇବାର ଉପଯୁକ୍ତ ନୁହନ୍ତି । ତାଙ୍କର ଅନନ୍ୟ ଉଦାର ମୂଲ୍ୟବୋଧ, ଯାହାର ତାଡ଼ନାରେ ସେ ଦୋକାନରୁ ଚକୋଲେଟ୍ ଚୋରି କଲେ ଏବଂ ତାକୁ ଦୋକାନୀ ସମେତ ବୁଭୁକ୍ଷୁମାନଙ୍କୁ ବାଣ୍ଟି ଦେଲେ, ପ୍ରବୃତ୍ତିର ପୂର୍ତ୍ତି କରିବା ସଙ୍ଗେ ସଙ୍ଗେ ଅପରକୁ ଆପ୍ୟାୟିତ କଲେ, ସେଥିରେ ତ୍ରୁଟି ନାହିଁ । ଅଧିକନ୍ତୁ ମାନୁଛି ଯେ ତାଙ୍କୁ ପ୍ରଥମ ଶ୍ରେଣୀର ମାର୍କ ମିଳିବା ଉଚିତ୍, ଯେହେତୁ ସେ ଆପଣା ଉପଭୋଗ ପାଇଁ ଗ୍ରେଟବଡ଼ ଭୁଲ କାମ କରିବାକୁ ପଛେଇ ନାହାନ୍ତି, ପୁଣି ସେହି କାମର ଜରିଆରେ ଦାନଦକ୍ଷିଣାର ବଦାନ୍ୟତା ଦେଖାଇ ବିଶିଷ୍ଟ ରସିକତାର ପରିଚୟ ଦେଇଛନ୍ତି । ସେହି ଦୃଷ୍ଟିରୁ ତାଙ୍କୁ ସୁରସିକାର ସମ୍ମାନ ଦିଅନ୍ତୁ, ଅର୍ଥାତ୍ ତାଙ୍କ ସାଙ୍ଗରେ ରଙ୍ଗରସ ହେବାର ସ୍ୱପ୍ନ ଦେଖନ୍ତୁ, ମୋର ଆପତ୍ତି ନାହିଁ । କିନ୍ତୁ ତାଙ୍କଠାରେ ବୌଦ୍ଧିକତାର ଦରସାମାନ୍ୟ ଲକ୍ଷଣ ମିଳିଲା ନାହିଁ ତ ? ତାହାହେଲେ ତାଙ୍କୁ ଛଇଳି ସ୍ତ୍ରୀଲୋକଟିଏ ମନେ କରି ମୋର 'ଭଦ୍ର' ଚରିତ୍ରମାନଙ୍କ ଗହଣରୁ ଫେରାଇ ଦେଲି, ଏଥିରେ ମୋର ଦୋଷ କଅଣ ?

ମୋ ସଫେଇର ତାତ୍ପର୍ଯ୍ୟ ବୁଝିପାରିବେ ଯେତେବେଳେ ଆପଣ ମୋ 'ଲକ୍ଷବନ୍ଧଙ୍ଗ'ର ନାୟିକା ମିସେସ୍ ପୁରୀଙ୍କୁ ଭେଟିବେ । ସେ ମଧ୍ୟ ଉପଭୋଗୀ, ସେ ମଧ୍ୟ ସୁରସିକା । କିନ୍ତୁ ତାଙ୍କଠାରେ ଅଛି ଜୀବନ ଦର୍ଶନ, ଏକ ଅପରୂପ ଫିଲସଫି, ଯେଉଁଥିପାଇଁ ତାଙ୍କ ପ୍ରତି ଯେତେ ଆକୃଷ୍ଟ ହେଲେ ମଧ୍ୟ ତାଙ୍କ ପାଖକୁ ଆସିବାକୁ ଭୟ ଲାଗିବ । ସତେକି ସେ ଡମକୁ ବି' ତାଙ୍କ ଶାଢ଼ୀର ବନ୍ଧନୀଟିଏ କରି ଗୁଡ଼ି ଦେବେ, ଯାହାର ଧର୍ମ ହେଲା ମୁଗଧ ହେବା, ଦେବୀ ମୂର୍ତ୍ତିଙ୍କୁ ହାଁ କରି ଅନେଇ ରହିବା । ବୋଧହୁଏ ମୋର ମିସେସ୍ ଗ୍ରେମ୍ବା ହିଁ ଯଥାକ୍ରମେ ମିସେସ୍ ପୁରୀ ପାଲଟିଗଲେ (କହିପାରିନ୍ତି ମୋର କଲମ ପାକଲ ହେଲା) ସେ କଥା ଭିନ୍ନ ।

ମୋ ନିଜ ବିଚାର ବୁଦ୍ଧିରେ ତ୍ରୁଟି ଥାଇପାରେ, ସେଥି-ପାଇଁ ମୋର ଅନୁରୋଧ ଯେ ଆପଣ ନିଃସନ୍ଦେହରେ ରୂପବତୀ ଗୁଣବତୀ ଏଇ ଦୁଇଜଣ ଭଦ୍ରମହିଳା ତଥା 'ଉଚ୍ଚ ସମାଜ'ର ନାୟିକାଙ୍କୁ ପାଖାପାଖି ଦେଖନ୍ତୁ, ତାଙ୍କ ରୂପଗୁଣର ଅନୁଧ୍ୟାନ କରନ୍ତୁ, ଏବଂ କାହାକୁ ସାହିତ୍ୟ ପାଇଁ ବାଛିବେ ସ୍ଥିର କରନ୍ତୁ । ତେବେ ଏହି ସନ୍ଧାନରେ ଆପଣଙ୍କୁ ଗୋଟିଏ ଦାର୍ଶନିକ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ—ପ୍ରାଣୀସୁଲଭ କ୍ରିୟା ଯେତେ ଚତୁର-କୁଶଳ ହେଉ ନା କାହିଁକି, ତାହା ନିଷ୍କ୍ରିୟତାର ସମକକ୍ଷ ହୋଇ ପାରିବ କି ? ନିରୋଳା ମାନସିକ ବିଳାସ ଦୁଃସାଧ୍ୟ ହୋଇପାରେ, କିନ୍ତୁ ତା'ଠାରୁ ବଳି କାମ୍ୟ ଆଉ କିଛି ଅଛି ବୋଲି ଭାବୁଛନ୍ତି ? କ୍ଷମା କରନ୍ତୁ, ମୁଁ ମୋ ପ୍ରଶ୍ନରେ ଉତ୍ତର ଖଞ୍ଜି ଦେବାର ଲୋଭ ସମ୍ଭାଳି ପାରିଲି ନାହିଁ ।

ଯାହାହେଉ, ମୋତେ ସବୁଠାରୁ ଦୁଃଖ ଲାଗିବ ଯଦି ଆପଣ ତଥାକଥିତ ସମାଜ ଚେତନାର ବଶବର୍ତ୍ତୀ ହୋଇ ଏହିଙ୍କୁ ପାପୀୟସୀ ଅବା ସୁପ୍ରସିଦ୍ଧ ପତ୍ରକାର ସ୍ୱର୍ଗୀୟ ଡ. ଏଫ୍. କାପ୍କାଙ୍କ ଭାଷାରେ ମୂଲ୍ୟବାନ୍ ଶୂନ୍ (expensive nothing) କହି ସାହିତ୍ୟ ସଭାରୁ ନିକାଲି ଦେବେ । କାରଣ ଆପଣଙ୍କର ମନେ ରଖିବା ଉଚିତ ଯେ ଭାରି ହୁଅନ୍ତୁ ବା ହାଲୁକା ହୁଅନ୍ତୁ, ଏଭଳି ଉଚ୍ଚାଙ୍ଗ ରମଣୀଗଣ ଏବେ ମଧ୍ୟ ହସୁଛନ୍ତି, କହୁଛନ୍ତି ଯେ ଯେତେ-ଦିନ ଯାଏଁ ତୁମ ବସ୍ତୁବାଦୀ ସଭ୍ୟତା ଚମକୁଥିବ, ସେତେଦିନ

ଯାଏଁ ଆମେ ମଧ୍ଯ ଚକ ଚକ ହେଉଥିବୁ, ଯେହେତୁ ଆମେ ତୁମ ଶିଳ୍ପ-ଉଦ୍ୟୋଗର ସବୁଠାରୁ ମୂଲ୍ଯବାନ୍ ବସ୍ତୁ, "ପ୍ରୋଡକ୍ଟ୍" । ଶୁନ୍ ହେଲେ ବ ଲକ୍ଷେ । କହୁ ଆନ୍ତୁରେ ହସୁଛନ୍ତି, ସ୍ଵାଧୀନତା ଯେତକ ପୁରୁଣା ହେଉଛି ତାଙ୍କ ହର୍ଷଧ୍ଵନି ସେତକ ବଢ଼ି ଗ୍ଲୁଛି । ଶୁଣିପାରୁ ନାହାନ୍ତି ?

ବୁଝିଲ । ତାଙ୍କ ଅଭିଜାତ ହସ ହୋ-ହୋ ଠୋ-ଠୋ ନୁହେଁ, କୁଲୁକୁଲୁ । ସେଇଥିପାଇଁ ବୋଧହୁଏ ଆପଣଙ୍କର ଶୁଣିବାରେ ଅସୁବିଧା ହେଉଛି ।

କଟକ

୧ ନଭେମ୍ବର, ୧୯୮୭



# ପରିଚୟ

ଶଶିଶେଖର ବାବୁ ବିଶ୍ରାମ ନେଉଛନ୍ତି । ଦିନ ଭିତରେ ଏଇ କେତୋଟି ମୁହୂର୍ତ୍ତ । ପିଲାପିଲାଙ୍କ ଜଞ୍ଜାଳ ନାହିଁ । ଗୃହିଣୀଙ୍କ ଅଭିଯୋଗ ନାହିଁ । ପାଣିପାଗ ବି' ଅନୁକୂଳ । ଆଉ ଟିକିଏ ଗଲେ ଥଣ୍ଡା ମାଡ଼ି ଆସିବ ଓ ତା' ପରେ ଆରମ୍ଭ ହୋଇଯିବ ପୁରୁଣା ଧଇଁକାଶ ।

କିନ୍ତୁ ଆଜି ମନଟା ଆରାମ ନେବାକୁ ଚାହୁଁ ନାହିଁ । ମନ୍ଥାଳି ଚାଲିଛି ଅତୀତ ଓ ଭବିଷ୍ୟତ୍ । ଭାବନା ଛିଣ୍ଡୁ ନାହିଁ । ଦୋହଲାଇ ଦୋହଲାଇ ପୁଣି ଖିଅ ଧରୁଛି ସେଇ ପୁରୁଣା କଥା ଓ ତା'କୁ ପୁଣି ନୂଆ ରୂପରେ ।

ଶଶୀବାବୁ । ପଚାଶ ବର୍ଷର କମ ଦେହରେ ଛାପ ରଖି ଦେଇ ଯାଇଛି । ମୁଣ୍ଡର ବାଳ ଅଧେ ଧଳା । ପ୍ରଶସ୍ତ ଲଲାଟରେ କେତେଗୁଡ଼ିଏ କୁଞ୍ଚିତ ରେଖା । ଦୀର୍ଘ ହାତର ଆଙ୍ଗୁଳିରେ ଶୂନ୍ୟରେ ରେଖା କାଟିଲା ବେଳେ ହାତର ଶିରାଗୁଡ଼ିକ ବେଶ୍ ପରିଷ୍କାର ଜଣାପଡ଼ି ଯାଉଛି ଓ ଦିଶି ଯାଉଛି ହାତର ଲମ୍ବା ଲମ୍ବା ଗୋଜିଆ ନଖ— ପିଲାଦିନେ ହାତ ଦେଖାଇଲା ଯାଙ୍ଗମାନେ କହୁଥିଲେ 'ଆର୍ଟିଷ୍ଟିକ୍' ।

ଶଶୀବାବୁ କାନ୍ଥ ଆଡ଼କୁ ଅନେଇଲେ । କୋଉ କାଳର ପୁରୁଣା ଫଟୋ ଖଣ୍ଡେ ଟଙ୍ଗା ହୋଇଛି । ଭିତର ଛବିଟା ଉଇ ଲଗି କଣରୁ ଧଳା ହୋଇ ଆସିଲାଣି । ଖାଲି ଦିଶୁଛି ଗୋଟିଏ ପୁରୁଣାକାଳିଆ କୋଟ ଓ ତା' ଉପରକୁ ମୁହଁଟିଏ । ସେଇ ମୁହଁରେ ଯୋଡ଼ିଏ ଉତ୍ସୁକ, ଜାଗ୍ରତ ଆଖି । ଶଶୀବାବୁ ସେଇଆଡ଼କୁ ଅନେଇ ରହିଲେ କେତେବେଳ ଯାଏଁ ।

ଶଶୀବାବୁ ଅନେଇ ରହିଲେ ଓ ଆଶ୍ଚର୍ଯ୍ୟ ହେଲେ । କେତେଥର ତ ସେ ଏଇ ଘରେ, ଏଇ ଚଉକିରେ ବସିଛନ୍ତି । କାହିଁ, ସେ ଆଖି ଦୁଇଟି କେବେ ତ' ତାଙ୍କ ଦୃଷ୍ଟିରେ ପଡ଼ିନାହିଁ । ଆଜି କାହିଁକି ହଠାତ୍ ସେଗୁଡ଼ିକ ଏତେ ସଜୀବ ହୋଇ ଉଠିଛନ୍ତି ଓ ତାଙ୍କର ମୁହୂର୍ତ୍ତଗୁଡ଼ିକ କାହିଁକି ସେଥିରେ ବାନ୍ଧି ହୋଇ ଯାଉଛି

ଏମିତି ? ସତେ ଯେମିତି ସେଇ ଗୃହାଣୀ କ'ଣ ଉତ୍ତର ଗୃହେଁ । ବହୁତ ଦିନର ଅଲୁହା ଉତ୍ତର ।

ସେ ଥିଲା ଶଶୀବାବୁଙ୍କ ଟୋକାବେଳର ଫଟୋ । ସେଇ ଛବିର ଦୃଷ୍ଟି ଆଜି ତାଙ୍କର ଚଷ୍ମାକୁ ଆକ୍ରମଣ କରି ବୋଧହୁଏ ପଗୃରିବାକୁ ଗୃହୁଁଛି,—'ଏଇ କ'ଣ ସେଇ ଶଶୀ ? ଆଜିକାର ଶଶୀବାବୁ କ'ଣ ସେଇ ପୁରୁଣା ଶଶୀର ଯଥାର୍ଥ କ୍ରମ-ବିକାଶ ?'

ଏମ୍. ଏ. ପାସ୍ କରିଥିଲେ ଯେତେବେଳେ । ଗୃହାର ଛକ ଉପରେ ମଣିଷ ଗହଳି ଭିତରେ ଛିଡ଼ା ହେଲେ ସେତେବେଳେ ଲାଗୁଥିଲା ଯେ ସେ ସେମାନଙ୍କଠାରୁ ଅଲଗା । ସେ ନିଜେ ତାଙ୍କୁ ବାଟ କଢ଼େଇବେ । ତାଙ୍କର ଗୃଇରେ ସେମାନେ ଗଢ଼ି ହୋଇଯିବେ । ଜୀବନଟା ବହୁତ ପଡ଼ିଛି । ଦିନୋଟି ଆଖି ଦୁଇଟା ବହୁତ ଦୂରକୁ ଦେଖି ପାରୁଛି,—କେତେ ନୂଆ ରାଜ୍ୟ, ନୂଆ ସଂସାର, ନୂଆ ଅନୁଭୂତି । ସେ ସେସବୁକୁ ସାଉଣ୍ଟି ନେବେ ଓ ବାଣ୍ଟି ଦେବେ ଅନ୍ୟମାନଙ୍କୁ ନିଜର କିଛି ମିଶାଇ । ସମସ୍ତେ ଖୁସି ହେବେ ଓ ସେ ନିଜେ ହେବେ ବଡ଼ ।

ଗୋଟାଏ ପ୍ରେସ୍ ଗଢ଼ିବେ । ଖବରକାଗଜ ବାହାର କରିବେ । ତାଙ୍କର ବୁଦ୍ଧିର ତୀକ୍ଷ୍ଣତାରେ, ନୂଆ ନୂଆ ଚମକପ୍ରଦ ଅଭିମତ ଦେଇ ଲୋକମାନଙ୍କୁ ମୁଗ୍ଧ କରିବେ ।

କିମ୍ବା ଖୁବ ଜଣେ ନାମୀ ଓକିଲ । ଗୋଲଡ଼୍ ଫ୍ରେମର ଚଷମା ଆଖିରେ ସଜାଡ଼ି ସଜାଡ଼ି ଶାଣଦିଆ କଥାରେ ଆଇନ୍ ଗଢ଼ୁଥିବେ, ଭାଙ୍ଗୁଥିବେ । ଦେଖଣାହାରୀ ଆଁ କରି ଗୃହିଁଥିବେ । ପାଖ ଓକିଲ ଈର୍ଷା କରୁଥିବେ ।

କିମ୍ବା ଏମିତି ବହୁତ କିଛି । ଯେଉଁଥିରେ ଲୋକ ସମ୍ମାନ କରିବେ । ଶହେ ଲୋକ ଭିତରେ ଜଣେ ହୋଇ ଛିଡ଼ା ହୋଇ ହେବ ।

କିନ୍ତୁ ତା' ହେଲା ନାହିଁ କାହିଁକି ? ଗୃକିରିର ସୀମା ଭିତରେ ରହି ଖାଲି ଟଙ୍କା କିଛି ଜମେଇ ହେଲା । ନିର୍ଦ୍ଦିଷ୍ଟ ସୀମା ପରିସର ଭିତରେ ଟିକିଏ ହାକିମ ପଣିଆ କରିହେଲା ।

କିନ୍ତୁ ତା' ଛଡ଼ା ? ଚନ୍ଦ୍ରକୁ ହାତ ବଢ଼େଇବାର ସେ ଆକାଂକ୍ଷା ଗଲା କୁଆଡ଼େ ? କିଛି ନ ଥିଲେ ମଧ୍ୟ ଆଗକୁ ମିଳିବ,—ଆଖି ଦୁଇଟା ସବୁବେଳେ ଗୃହିଁଥିବ କେଉଁ ସୁବର୍ଣ୍ଣ ଦ୍ୱୀପ ଆଡ଼େ, ସେ ଭାବ ହଜିଲା କେଉଁଠି ?

ଆଜ ବେଶି ଦୂରକୁ ଗ୍ଚାହିଁ ହେଉନାହିଁ । ଆଉ ଏଗୁଟି ବର୍ଷ ଅଛୁ । ଏଥକ ବଡ଼ ହେବ । ସେଥକରେ ମୁଣ୍ଡି ମରବ । ତା'ପରେ ପେନ୍‌ସନ,—ଫଯାରକୁ ପେନ୍‌ସନ୍ ନେଲା ପୂର୍ବରୁ ପ୍ରସ୍ତୁତ ହେବା ପାଇଁ ସେଇ କେତୁଟା ଦନ । ବେଶ୍ ।

ଏଇଥିପାଇଁ କ'ଣ ସେ ଜନ୍ମ ହୋଇଥିଲେ ? ଫଟୋ ଆଡ଼କୁ ଅନେଇ ରହିଲେ ଶଶୀବାବୁ । ସତରେ ଏ କ'ଣ ତାଙ୍କର ଫଟୋ ?

ଏ କ'ଣ ସେଇ ଶଶୀ ?

ପାଖରେ ଥିବା ସବୁଜ କ୍ଷେତର ଛବି,—ଜଳପ୍ରପାତର ଛବି,—ବର୍ଣ୍ଣିଷ୍ଟ୍ରକଂଶର ଫଟୋ,—ଜବାହରଲାଲଙ୍କର ମୂର୍ତ୍ତି ସବୁ ଯେମିତ ସାଦା କାନ୍ଥରେ ମିଶିଗଲା । ସମସ୍ତଙ୍କର ବଗିଷ୍ଟତା ନେଇ ସେଇ ପୁରୁଣା ଫଟୋରେ ଥିବା ଯୁବକର ଆଖି ଦୂଇଟା ଗ୍ଚାହିଁ ରହିଲା ତାଙ୍କର ଆଡ଼େ ।

ବୁଢ଼ା ଶଶୀବାବୁଙ୍କର ଆଖି ଦ'ଟା ଛଳ ଛଳ ହୋଇ ଉଠିଲା । ଆଜର ଏଇ ନରେଲା ଖଗ୍ଚବେଳରେ ତାଙ୍କର ଦୁର୍ବଳତା ବୋଧହୁଏ ଆଉ କାହା ଆଖିରେ ପଡ଼ବ ନାହିଁ । ଆଜି ସେ ନଜକୁ ନଜେ ।

ଅତୀତ ଆଜ କାନ୍ଦ କର କହୁଛୁ,—ମୁଁ ହସିପାରଥାନ୍ତ, ମୁଁ ଫୁଟିପାରଥାନ୍ତ । କନ୍ତୁ ଆଉ ସମୟ ନାହିଁ । ଆଉ କଛ ହୋଇ ପାରବ ନାହିଁ । ବର୍ତ୍ତମାନର ଏଇ ଜୀର୍ଣ୍ଣ ଖୋଳ ଭତରୁ ମୋର ସୁନାର ଆତ୍ମାଟି ଆଉ ବାହାର ପାରବ ନାହିଁ । ସେ ସେଇଥିରେ କାନ୍ଦ, ବାହୁନ ସଢ଼ିଯିବ ।

ସେଇ ତାରୁଣ୍ୟ ଆଖି ଦୁଇଟା ଗ୍ଚାହିଁ ରହିଛୁ ଯେମିତ । ବୋଧହୁଏ ଆଜର ଏଇ ଶେତା, ମଳାନ ଆଖିରୁ ଗ୍ଚାହୁଁଛୁ ଲୁହର ପ୍ରତଦାନ ।

ଶଶୀବାବୁ ତଳକୁ ମୁହଁ ପୋତ ଟେବୁଲ ଆଡ଼କୁ ଅନେଇଲେ ।

ଟେବୁଲ ଉପରେ ପଡ଼ଥିଲା ଫିଟା ହୋଇଥିବା ଖଣ୍ଡେ ଲଫାପା ।

ସେଇ ଲଫାପା ଉପରେ ଆଖି ପଡ଼ବାକ୍ଷଣି ଶଶୀବାବୁଙ୍କର ବରକ୍ତ ଆସିଲା । ସେ ହାତରେ ସେଇ ଲଫାପାଟିକୁ ଧର ମୋଡ଼ମାଡ଼ ଫିଙ୍ଗି ଦେବାକୁ ବସିଲେ ।

ନା—ନା—ଅଯଥା ବରକ୍ତ ହୋଇ ମୋର ଆଉ କେତୁଟା ବର୍ଷର ପରମାୟୁକୁ କମେଇବ କାହିଁକ ? ଶଶୀବାବୁ ପୁଣି ଚଠିଟିକୁ ଯଥାସ୍ଥାନରେ ରଖି ଦେଲେ ।

କିନ୍ତୁ ବିରକ୍ତି କମିଲା ନାହିଁ । ବର୍ତ୍ତମାନର ଅନୁଶୋଚନା ସେ ବିରକ୍ତିକୁ ଇନ୍ଧନ ଯୋଗାଇଲା ।

ସେ ଥିଲା ଜୟନ୍ତର ଚିଠି । ଜୟନ୍ତ ଶଶୀବାବୁଙ୍କର ବଡ଼ ପୁଅ । ସେ ଜନ୍ମନଯାକ ବାପାଙ୍କର ଅବାଧ୍ୟ ସନ୍ତାନ ହୋଇ ଆସିଛି ଓ ସେଇଥିରେ ଅନୁଭବ କରିଛି ଗର୍ବ ଓ ଆତ୍ମମର୍ଯ୍ୟାଦା । ଆଜି ଏଇ ଚିଠି ହେଉଛି ସେଇ ଅବାଧ୍ୟତାର ଅନ୍ୟତମ ନମୁନା । ପାଠଶାଠ ଅଧାରୁ ସାରି ଜୟନ୍ତ ବାହା ହେବାକୁ ମନ କରିଛି । କିନ୍ତୁ ତା' ଚିଠିରେ ସେ ଯେଉଁ ପ୍ରସ୍ତାବ ଦେଇଛି, ସେ ଜାଣେ ବାପା ସେଥିରେ କେବେହେଲେ ରାଜି ହେବେ ନାହିଁ । କାରଣ ଝିଅର ବାପ କେବଳ ଯେ ଜାତି, କୁଳରେ ଶ୍ରେଷ୍ଠ, ତା ନୁହେଁ—ସେ ମଧ୍ୟ ତାଙ୍କ ଶୁଭାକାଙ୍କ୍ଷୀଙ୍କ ମଧ୍ୟରୁ ଜଣେ ନୁହେଁ । ପୁଣି ଜୟନ୍ତ ଯେ ନିହାତି ଭଲପାଇ ବାହା ହେବାକୁ ଯାଉଛି,—ତା' ମଧ୍ୟ ନୁହେଁ । ଏ ଖାଲି ଗୋଟାଏ ଜିଦ୍, ଖିଆଲ । ଏଇ ଖିଆଲ, ଅସ୍ୱାଭାବିକ ଆଗ୍ରହ ଜୟନ୍ତ ଜୀବନରେ ବଡ଼ କଥା । ଆଡ଼ଭେଞ୍ଚର ଜୀବନର ପ୍ରକୃତ ରସ ।

ସେ ଚିଠିର ଶେଷରେ ଏଇ ଦୁଇ ଲାଇନ୍ ଥିଲା—"ମୁଁ ଜାଣେ ଆପଣ ଏଥିରେ ରାଜି ହେବେ ନାହିଁ । କିନ୍ତୁ ତଥାପି ମୁଁ ସେଠି ବାହା ହେବାକୁ ଚାହେଁ ଓ ମୋ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ ବିଷୟରେ ମୁଁ ନିଜେ ବେଶୀ ସଚେତନ ବୋଲି ମୋର ବିଶ୍ୱାସ ।"

ଶଶୀବାବୁ ଚିଠି ଖଣ୍ଡିକ ଆଗରୁ ପଢ଼ିଥିଲେ । ମନେ ମନେ ରାଗିଥିଲେ ଖୁବ୍ । କିଛି ଉତ୍ତର ଦେବେ ନାହିଁ ବୋଲି ଠିକ୍ କରିଥିଲେ । ବର୍ତ୍ତମାନ ସେଇ ଚିଠି ଖଣ୍ଡିକ ପୁଣି ତାଙ୍କର ଆଖିରେ ପଡ଼ିବାରୁ ତାଙ୍କ ମନ ଆହୁରି ତାତି ଉଠିଲା ।

ଶଶୀବାବୁ ପଚାରିଲେ ନିଜକୁ—କିଏ ଏମାନେ ? କାହିଁକି ଏମାନେ ଆସିଲେ ତାଙ୍କ ଜୀବନରେ ? କିଏ ଏ ଜୟନ୍ତ, ରଜତ, ସତ୍ୟ ? ଏଇମାନଙ୍କ କଥା ଭାବି ଭାବି, ଏଇମାନଙ୍କର ସୁଖସ୍ୱାଚ୍ଛନ୍ଦ୍ୟର ଉପାୟ ଖୋଜି ଖୋଜି ତାଙ୍କ ସାରା ଜୀବନ ବିତିଗଲା । କିନ୍ତୁ ସେଥିରେ ଲାଭ ହେଲା କ'ଣ ? ତାଙ୍କ ଯୌବନର ସବୁ ଆଶା, ଆକାଙ୍କ୍ଷା, ସ୍ୱପ୍ନ ଉଭେଇ ଯାଇ ତା' ବଦଳରେ ଛିଡ଼ା ହେଲେ ଏଇମାନେ । ସେ ତାଙ୍କର ପାଇଁ ନିଜର ସବୁ କିଛି କ୍ଷୟ କଲେ । ସେଥିରେ ନା ନିଜର କିଛି ଉନ୍ନତି ହେଲା ନା ସଂସାରର ? ଅକର୍ମଣ ? ହଁ,—କିନ୍ତୁ ସେଥିରେ ସୁଖ ନାହିଁ, ଅଛି ଅଶାନ୍ତି । ଖାଲି ନିଜର ବୋଲି ଅରୁଚି ବଢ଼ିବା, ନିଜର ନିଜର କହି ପ୍ରକୃତ ନିଜତ୍ୱକୁ ବଳି ଦେବା, ଏହାଠାରୁ ବଳି ମୂର୍ଖତା ଆଉ କ'ଣ ଥାଇପାରେ ? ଶଶୀବାବୁଙ୍କର ହସିବାକୁ ମନ ହେଲା । ପିଲାମାନେ ଅସୁନ୍ଦର ହୁଅନ୍ତୁ, ଅବାଧ୍ୟ ହୁଅନ୍ତୁ, ନିର୍ବୋଧ ହୁଅନ୍ତୁ, ତଥାପି ସେମାନଙ୍କର ରୋଗଶୋକରେ ଲୁହ ବୁହାଇବା, ସେମାନଙ୍କର କଳିକଜିଆ,

କୋଳାହଳ, ଅବାଧଭାବରେ ବିରକ୍ତ ହୋଇ ମଧ୍ୟ ସେମାନଙ୍କୁ ଗ୍ରହଣ କରିବା, ଏହାର ମାନେ କଅଣ ? ହୁଏତ ତା'ର ମାନେ ଏଇ ଯେ ତାଙ୍କର ନିଜକୁ ନେଇ ଖୁସି ହେବାର ଭାବିବାର, ଗର୍ବ କରିବାର ଆଉ କିଛି ନାହିଁ । ଓଃ ! ଏଇ-ମାନଙ୍କୁ ନେଇ ତାଙ୍କର ଜୀବନର ରଙ୍ଗିନ୍ ସକାଳ ଧୂଳି ଧୂସର ହୋଇ ହାରି ଯାଇଛି । ଆଜି ପଛକୁ ଆଖି ଫେରାଇଲେ ନିଜ ପାଇଁ ଦୁଃଖ ଆସୁଛି—ଦୁଃଖ ଓ ଘୃଣା ।

କାହିଁକି ଏମିତି ହେଲା ? ସେ କ'ଣ ବର ଆଣିଥିଲେ ଏମାନଙ୍କୁ ? ସେ କଅଣ ଚାହିଁଥିଲେ ଜୟନ୍ତ ବୋଲି ଜଣେ ଏମିତି ଗୋଟିଏ ରୂପ, ଗୁଣ ବିଶିଷ୍ଟ ଲୋକ ତାଙ୍କ ଜୀବନକୁ ଆସିବ ? ଓ ଅନ୍ୟମାନଙ୍କ ଆସିବାକୁ ସେ ତ ଲୋଡ଼ି ନ ଥିଲେ ମୋଟେ ! ଯେଉଁମାନଙ୍କର ଆଗମନ ଆକସ୍ମିକ, ଅଲୋଡ଼ା ଓ ଅନିର୍ଦ୍ଦିଷ୍ଟ ସେମାନଙ୍କୁ 'ନିଜର' 'ନିଜର' ବୋଲି କହି ତାଙ୍କର ପାଇଁ ବିନିଦ୍ର ହେବା,—ଏଭଳି ଅସଙ୍ଗତ ପ୍ରହସନରେ ସେ ଭାଗୀ ହେଲେ କାହିଁକି ? ଦୁନିଆର ନିୟମ,—ସମସ୍ତେ କହିବେ । କିନ୍ତୁ ତା'ର କ'ଣ ଅଧିକାର ଥିଲା ତାଙ୍କର ସ୍ୱତନ୍ତ୍ର ବ୍ୟକ୍ତିତ୍ୱକୁ ବାନ୍ଧିଦେବ ଏମିତି ?

ଶଶୀବାବୁ ଚଉକିରୁ ଉଠି ଦୁଇ ହାତ ପଛରେ ଛନ୍ଦି ଅସ୍ଥିର ଭାବରେ ବୁଲିବାକୁ ଲାଗିଲେ । ତା'ପରେ ଛିଡ଼ା ହୋଇ ପୁଣି ଅନେଇଲେ ସେଇ ଫଟୋ ଆଡ଼କୁ ।

ଆଉ କଣ କିଛି ଉପାୟ ନାହିଁ ? ଯାହା ହୋଇ ପାରିଲା ନାହିଁ ତା' କ'ଣ ଆଉ କେବେ ହୋଇପାରିବ ନାହିଁ ? ଜୀବନଟା ଏତେ ଛୋଟ ହେଲା କାହିଁକି ? ମୋଟେ ଷାଠିଏ ବା ସତୁରିଟା ବର୍ଷ । ସେଥିରେ କଣ ଭଲ ହୁଅନ୍ତା ?

ଫଟୋ ଆଡ଼କୁ ଅନେଇଲେ । ଲମ୍ବା କାମିଜ ଉପରେ କାଳିଆ କୋଟ୍ ଖଣ୍ଡେ ପିନ୍ଧା ହୋଇଛି । କୋଟ୍‌ର ବୋତାମ ଅଛି ଲମ୍ବା ଖୋଲା କଲର୍ ତଳେ ପେଟ ଉପରକୁ । କୋଟ୍‌ର ଧାଆର କୋଣିଆ ନ ହୋଇ ଗୋଲ । ସେତେବେଳେ ହେଇଟା ଥିଲା ଫେସନ୍ । ବର୍ତ୍ତମାନ ଲୋକେ ଦେଖିଲେ କହିବେ ମରହଟ୍ଟୀ—ଊନବିଂଶ ଶତାବ୍ଦୀର ! କୋଟ୍‌ର ପକେଟରୁ ରୁମାଲ ଉଙ୍କି ମାରୁଛି । ତା' ଉପରେ ଗୋଟିଏ ବଡ଼ ଫୁଲ ଅଙ୍କା ହୋଇଛି । ତତ୍‌କାଳୀନ ରୁଚିର ନମୁନା ।

'ହାସ୍ୟ' ପଦରେ ମନର ସବୁ ପ୍ରତିକ୍ରିୟା ଶେଷ କରିଲା ବେଳକୁ ଶଶୀବାବୁ ଭାବିଲେ—ହଁ, ଆଜି ରୁଚି ବଦଳିଛି, ଫେସନ୍ ବଦଳିଛି । କିନ୍ତୁ ସେଇ ଆଖିର ତୀକ୍ଷ୍ଣତା ସେଇ କଳ୍ପନାର ଉତ୍ତାପ କ'ଣ ପ୍ରତ୍ୟେକ ଯୁବକର ନାହିଁ ? କିଛି ଗୋଟାଏ କରିବ—କିଛି ଗୋଟାଏ ଅଲଗା,—ଆଉ ଗୋଟାଏ ନୂଆ,—ଏଇ ଭାବ କଣ ଆକ୍ରମଣ କରୁ ନାହିଁ ଆଜିର ଯୁବକମାନଙ୍କୁ ?

ଯାହା କାଲି ଥିଲା,—ତା' ଆଜି ମଧ୍ୟ ରହିଛି—ଆସନ୍ତାକାଲି ବି' ରହିବ ।

ତାହାହେଲେ କାଲି ଯାହା ହୋଇ ପାରିନ, ତା' ପାଇଁ ଦୁଃଖ କାହିଁକି ?

ଶଶୀବାବୁଙ୍କର ଆଖିରେ ଲଗିଲା ଯୁଗ ଯୁଗାନ୍ତରର ଶୋଭାଯାତ୍ରା,—ପଛୁଆର, ଗୋଟାଏ ଅବିଚ୍ଛିନ୍ନ ସୂତ୍ର ମଣିଷକୁ ନେଇ । ଯିଏ ଚାଲି ଯାଇଛି, ତା'ର ସବୁ କିଛି ସରି ଯାଇ ନାହିଁ । ସେ ତା'ର ହସ ଦେଇ ଦେଇଛି ତା'ର ପଛରେ ଆସୁଥିବା ଲୋକକୁ । ତା'ର ହାତରେ ଧରାଇ ଦେଇଛି ଦୀପ । ଏମିତି ଚାଲିଛି ସୃଷ୍ଟିର କ୍ରମଶଃ ।

ତେବେ ହଜିଯାଇଛି କିଏ ? ସରିଯାଇଛି କଣ ? ବ୍ୟକ୍ତି, ନା ତା'ର ସ୍ୱପ୍ନ, ତା'ର ଆକାଙ୍କ୍ଷା ?

ନା—ନା,—ଜୀବନ ଶ୍ରେଷ୍ଠ ନୁହେଁ । ଜୀବନ ଗୋଟାଏ ଅନନ୍ତ ମାଳା । ଆଜିକାର ମଣିଷ ଚାଲିଯାଉଛି । କିନ୍ତୁ ମାଳା ସରୁ ନାହିଁ । ସେଇ ରଙ୍ଗ, ସେଇ ବିଭବ ନେଇ ନୂଆ ନୂଆ ମୁକ୍ତା ଦେଖା ଦେଉଛି, ନୂଆ ନୂଆ ମଣିଷ । କିନ୍ତୁ ବାହାରର ରୂପ ଅଲଗା । ଆଜିକାର ମାପ କାଠିରେ ଲୋକେ କହୁଛନ୍ତି,—ଏଇଟା ନୂଆ ଏଇଟା ପୁରୁଣା ।

ଫଟୋରେ ସେ ଯେଉଁ ଅଧା ହସଟା ଅଛି—ଶଶୀବାବୁ ନିରେଖି ଦେଖିଲେ । ଜୟନ୍ତ ବେଳେ ବେଳେ ଏମିତି ହସେ ପରା ! ଭାବାବେଶରେ ନାକପୁଡ଼ା ଦୁଇଟି ଅଳ୍ପ ଫୁଲି ଉଠେ,—ଠିକ୍ ଏମିତିକା ।

କଳା କଳା ଘଞ୍ଚ ଭ୍ରୂରୁ ଆଖିକୁ ଘୋଡ଼େଇ ଦେଇଛି,—ଜୟନ୍ତର ଯେମିତି । ଜୟନ୍ତର ଆଖି ଦୁଇଟା ଯାହା ଖାଲି ତା' ମାଆ ପରି । ମୁହଁର ଗଢ଼ଣ ବି' ଟିକିଏ ଅଲଗା ।

କିନ୍ତୁ ଏଇ ଅବାଧ, ଅଶାନ୍ତ ଜୟନ୍ତଟି କଣ ନାହିଁ ତାଙ୍କ ଜୀବନର କିଛି । ତା'ର ସବୁ ପ୍ରତାରଣା, ଭଣ୍ଡାମି ଭିତରେ କ'ଣ ନାହିଁ ତାଙ୍କ ନିଜର ଦୁର୍ଦ୍ଦମ ଆଶା ଓ ଅଭିଳାଷର ଇଙ୍ଗିତ ?

ଶଶୀବାବୁ ଭାବିଲେ । ଜୟନ୍ତ ହୁଏତ ତା' ନିଜ ଜୀବନରେ ଅକାମି, ଅବହେଳିତ ଜୀବ ହୋଇ ରହିଯିବ । କିନ୍ତୁ ତା' ପୁଅ ?—କିମ୍ବା ତା' ପୁଅ ??

ଜୟନ୍ତ କିଏ ? ଖାଲି ସେଇ ନିରବଚ୍ଛିନ୍ନ ମାଳାର ଗୋଟିଏ ମୁକ୍ତା ତ,—ଆଉ କ'ଣ ?

କିନ୍ତୁ ମୁକ୍ତାରେ ଫରକ ଥାଏ । ମଣିଷ ମଣିଷ ଭିତରେ ପ୍ରଭେଦ ଥାଏ । ସେଇ ସ୍ୱାତନ୍ତ୍ର୍ୟର ଗୌରବ ନେଇ କହନ୍ତ,—ଏ ମୋ' ଦେଶ,—ମୋ' ଜାତି, ମୋ' ବଂଶ ।

ମୋ ବଂଶ,—ମୋର ବଂଶ ।

ଶଶୀବାବୁ ଥମକି ଠିଆ ହେଲେ । ଯେଉଁ ଅସାଧାରଣ ପ୍ରତିଭାଟି ବିକଶିତ ହୋଇ ପାରିଥାନ୍ତା ତାଙ୍କ ଜୀବନରେ,—ତା'ର ମୂଲ୍ୟ ଦେବ ଭବିଷ୍ୟତ୍ । କିନ୍ତୁ ତାହା ଅସୁମାର ଜନଗହଳର ଭବିଷ୍ୟତ୍ ନୁହେଁ—ସେ ତାଙ୍କର ବଂଶର ଭବିଷ୍ୟତ ।

ଜୟନ୍ତ—ତାଙ୍କର ପୁଅ । ଜୟନ୍ତର ପୁଅ । ତା'ପରେ ତା'ପରେ ଏମିତି । ନ ହେଲେ ସତ୍ୟ, ରଜତ, – ତାଙ୍କର ବଂଶ । ସେମାନେ ଯାହା କିଛି ହୁଅନ୍ତୁ ପଛେ ତାଙ୍କଠି ଅଛି ନିଜର ବଶିଷ୍ଟ ସତ୍ତା । ସେ ନିଶ୍ଚୟ ଫୁଟିବ,—କେବେହେଲେ ।

ଶଶୀବାବୁ ଫେରି ଆସିଲେ ଟେବୁଲ ପାଖକୁ । ଛାତି ଭିତରୁ ଦୀର୍ଘ ନିଃଶ୍ୱାସ ବାହାରି ଆସିଲା,—ଆଶ୍ୱସ୍ତିର । ସୁଦୂର ଭବିଷ୍ୟତ ଆଖି ଠାରୁଛି,—ହସି ହସି ।

ଚିଠିଟିକୁ ହାତରେ ଧରିଲେ ।

···ହଠାତ୍ ପଛରୁ ନାରୀର କଣ୍ଠ ଶୁଣା ହେଲା । ଶଶୀବାବୁ ପଛକୁ ଫେରି ଚାହିଁଲେ । ଜୟନ୍ତର ମାଆ । ତାଙ୍କର ଆବିର୍ଭାବ ନିଜ ଭାବନାରେ କପରି ଗୋଟାଏ ବୈଷମ୍ୟ ସୃଷ୍ଟି କଲା । ସ୍ତ୍ରୀ ଜାତି—ସେମାନେ ଏଇ ବଂଶର ଗୌରବ ବୁଝନ୍ତି ନାହିଁ, ବୁଝିପାରିବେ ନାହିଁ । ସେମାନେ ଖାଲି ବଂଶ ଗଢ଼ିବାରେ ସାହାଯ୍ୟ କରନ୍ତି—ଉପକରଣ ମାତ୍ର । ବଂଶ,—ପୁରୁଷର ସୃଷ୍ଟିର ପରମ୍ପରା । ପୌରୁଷର ଗର୍ବରେ ଶଶୀ-ବାବୁ ନିଃଶ୍ୱାସ ମାରିଲେ ।

ଜୟି ବୋଉ ଅତମତ ହୋଇ କଣ ପଚାରିବେ ବୋଲି ହେଲେ । ଶଙ୍କାକୁଳ ଜୀବଟିଏ । ଲୁହ ପୋଛି ପୋଛି ଆଖିର ଉଜ୍ଜ୍ୱଳତା ଲିଭିଯାଇଛି ଯେମିତି । କଣ୍ଠରେ ଆଶଙ୍କା ଓ ଉଦ୍‌ବେଗ ନେଇ କହିଲେ,—'ହିଁ କ'ଣ କହୁଥିଲି କି—ଇଯେ ଜୟନ୍ତ ଚିଠି ଦେଇଥିଲା—ତା' ବାହାଘର ବିଷୟରେ ।

ଜୟି ବୋଉଙ୍କ ପାଟିରୁ କଥା ନ ସରୁଣୁ ଶଶୀବାବୁ କହି ଉଠିଲେ –'ହିଁ,—ହିଁ,—ମୁଁ ପଢ଼ିଛି । ତା' ଇଚ୍ଛା ଅନୁସାରେ ତ ହେବ—ସେଥିରେ ଆପତ୍ତିର କଥା କ'ଣ ଅଛି ?'

ଜସ୍ମି ବୋଉ ନରେଖି ଗୃହିଁଲେ ସ୍ୱାମୀଙ୍କୁ । ଏ କ'ଣ ପ୍ରକୃତ ସମ୍ମତ—ନା ବିରକ୍ତ—ଅବହେଳା ? କାହିଁ ତାଙ୍କ ମୁହଁରେ ବିରକ୍ତିର ଚହ୍ନ ତ ଫୁଟି ଉଠୁ ନାହିଁ !

× × × ×

ଦୁଇ ବର୍ଷ ପରେ ।

ସେଇ ଘରେ । ଶଶୀବାବୁ କେତେଦିନ ହେଲା ଶଯ୍ୟାଗତ । କିନ୍ତୁ ଆଜି ତାଙ୍କ ମୁହଁରେ ଖୁସି ଉକୁଟି ଉଠୁଛି । ଦ୍ୱରକାଟା ଖୋଲି ଦେବାକୁ କହି ସେ ଅନେଇଲେ ବାହାରକୁ । ଚାକରକୁ ପଗ୍ଚରିଲେ– 'ମାଆ କାହାନ୍ତି—ଟିକିଏ ଡାକି ଦେଲୁ ଏଠିକି'—

ଜସ୍ମି ବୋଉ ଆସିଲେ ।

ବ୍ୟଗ୍ର ହୋଇ ଶଶୀବାବୁ ପଗ୍ଚରିଲେ—'ହଁ—କଣ କହୁଥିଲ କି ?' ତା'ପରେ ତାଙ୍କ ମୁହଁକୁ ଅନାଇ—'ଏଁ—ଏମିତି ହାଣ୍ଡି ଭଳିଆ ମୁହଁଟାକୁ କାହିଁକି କରିଛ ? ଆଜି ପରା ଜସ୍ମି ପୁଅର ଏକୋଇଶା—'

ଜସ୍ମି ବୋଉ ମଳିନ ହସଟିଏ ହସିଦେଇ କହିଲେ—'ହଁ-ମ-ଏକୋଇଶା ହେଉଛି ତମ ଦେହ ତ ଏମିତି—'

ଶଶୀବାବୁ ବିରକ୍ତ ହେଲା ପରି କହିଲେ—'ଓ-ହୋ-ଏଇ ମାଇପି କଥା ଗଲା ନାହିଁ । ମୋ ଦେହ କଣ ଆଉ ଖରାପ ହୁଅନ୍ତା ନାହିଁ—ନା ମୁଁ ସବୁଦିନେ ବଞ୍ଚି ରହିଥିବି ? ତା ପରେ କାମଦାମ ସାରି ଘରକୁ ଫେରିବା କଥା । ···ଗୁଡ଼—ବର୍ତ୍ତମାନ ଅନ୍ୟ କଥା ଭାବ । ହଁ—ମୁଁ କଣ କହୁଥିଲି କି—ପୁଅ ନାଁ କଣ ଦିଆ ହେଉଛି ?

'କେଜାଣି—ପିଲାମାନେ କ'ଣ ସୁନ୍ଦରିଆ ନାଁ ସବୁ ବାଛୁଛନ୍ତି । ସ୍ୱପନକୁମାର, ଦେବଦତ୍ତ, ଚନ୍ଦନଶୁଭ୍ର—ଏମିତି ସବୁ କଣ ।'

ମୁଣ୍ଡଟାକୁ ଝିଙ୍କି ନେଇ ଉଠି ପଡ଼ିଲେ ଶଶୀବାବୁ । ଦନ୍ତେ ଯେମିତି କ'ଣ କିଛି ଭଙ୍ଗି ଦଳି ଦେବେ । କହିଲେ—ଧାତ୍—କିଏ ଏସବୁ ନାଁ ଦେଲା ? ଯେତେକ ସବୁ ବଜାରିଆ ନାଁ—ନା ଅଛି ଲାଳିତ୍ୟ ନା ଅର୍ଥମାଧୁର୍ଯ୍ୟ ।'

ଏମିତିକା କଥାରେ ସ୍ୱାମୀ ଗମ୍ଭୀର ଚିନ୍ତା କରି ଅନ୍ୟମାନଙ୍କୁ ବାଛୁବେ, ଏହା ଜସ୍ମି ବୋଉ ଭାବି ନ ଥିଲେ ମୋଟେ । ସେ ମନେ ମନେ ଖୁସି ହେଲେ ଯେ, ଶଶୀ

ବାବୁଙ୍କର ସଂସାର ପ୍ରତି ଆସକ୍ତି କମି ନାହିଁ ବିଶେଷ—ବାର୍ଦ୍ଧକ୍ୟ ଓ ରୋଗ ସତ୍ତ୍ୱେ । ସେ କୁତୁହଳୀ ହୋଇ କହିଲେ ପିଲା ଖେଳାଇଲା ଭଙ୍ଗୀରେ—'ବେଶ୍—ତମେ ତା' ହେଲେ ଗୋଟାଏ ଭଲ ନାଁ ବାଛି ଦେଉନାହଁ ?'

ଶଶୀବାବୁ ଗମ୍ଭୀର ହୋଇ କହିଲେ—'ନା—ନା—ମୁଁ କଣ ବାଛିବି ? ସେଇ ପିଲାମାନେହିଁ ବାଛନ୍ତୁ । କିନ୍ତୁ ମୋର ଗୋଟିଏ କହିବାର କଥା—ଯେଉଁ ନାଁ ଦିଆହେଉ ପଛେ, ସେଥିରେ 'ଶେଖର' ନିଶ୍ଚୟ ଥିବ ।'

ସାନ ପୁଅ ସତ୍ୟ ଓ ତା' ଭଉଣୀ ଅରୁଣା ଘର ଭିତରକୁ ଆସି ଯାଇଥିଲେ । ସତ୍ୟ ବିଦ୍ରୂପଭରା କଣ୍ଠରେ କହିଲା—'ମାନେ କ'ଣ ସ୍ୱପ୍ନଶେଖର, ଦେବଶେଖର ଏମିତି—'

'ସେ ସବୁ ତୁମେ ଜାଣ । ମୋର ଖାଲି ଏତିକି କହିବାର କଥା ଯେ, ସେ ନାଁରେ 'ଶେଖର' ନିଶ୍ଚୟ ରହିବ । ଚନ୍ଦ୍ରଶେଖର—ଶଶୀଶେଖର—ଜହ୍ନିନ୍ତ ଶେଖର—'

ଅରୁଣା ଆହତ ଭଙ୍ଗୀରେ ହାତ ଦୁଇଟାକୁ ହଲାଇ କହିଲା—'ନାହିଁ ବାପା— ତାହାହେଲେ ତା'ର କିଛି ମାନେ ରହିବ ନାହିଁ । ଏଇ ଭାଇଙ୍କ ନାଁ ଜହ୍ନିନ୍ତଶେଖର ଦିଆ ହୋଇଛି । କ'ଣ ତା'ର ମାନେ ଅଛି ଭଲା !

ଶଶୀବାବୁ ହସିଲେ ଅବହେଳାର ହସ । ଏ ପିଲାମାନେ କ'ଣ ବୁଝିବେ ବଂଶର ଗୌରବ ।

ତାଙ୍କ ଆଖି ଆଗରେ ଦିଶୁଥିଲା—ଏଇ 'ଶେଖର' ପଦବୀଟିକୁ ନେଇ ଲମ୍ବି ଯାଇଛି ତାଙ୍କର ବଂଶଧାରା ।

ଏଇ ସାଧାରଣ ଜିନିଷର ରୂପରେ ଅସାଧାରଣ ପରିଚୟ ଭବିଷ୍ୟତ ପାଇଁ ନିର୍ଦ୍ଦିଷ୍ଟ ହୋଇ ରହିଛି । ଏଥିରେ ହାସ୍ୟାସ୍ପଦ କ'ଣ ଅଛି ?

...କିନ୍ତୁ ଅରୁର ମନ ଫିକା ହୋଇ ଯାଇଥିଲା ଯେ ବାପାଙ୍କ ଯୋଗୁ ପୁଅ ପାଇଁ ରବୀନ୍ଦ୍ରନାଥ, ମାନସିଂହଙ୍କର କବିତା ବହିରୁ ବଛା ହୋଇଥିବା ଭଲ ଭଲ ନାଁ ଦେଇ ହେଲା ନାହିଁ ।

ଆଉ ଜମ୍ବି ବୋଉ କାବା ହୋଇ ଗୁହାଁ ରହିଥିଲେ ସ୍ୱାମୀଙ୍କ ଆଡ଼େ ଓ ଭାବୁ- ଥିଲେ ଯେ ବୁଢ଼ା ହେଲେ ମଣିଷେ ସବୁ ଏମିତି ଅବାଗିଆ ହୁଅନ୍ତି କାହିଁକି ?



# ପରିଚୟ

ଆଜି ଏଇ ଗପଟି ପଢ଼ି ସାରିଲା ପରେ ମୋତେ ପ୍ରଥମେ ହସ ଲାଗେ । ଯେ ମୁଁ ମାତ୍ର ପଚିଶ ବର୍ଷ ବୟସର ଶଶୀଶେଖର ବାବୁଙ୍କୁ ବୁଢ଼ା କରି ଛାଡ଼ି ଦେଲି ! ମୋତେ ତେଷଠି ବର୍ଷ ପୂରିବାକୁ ବସିଲାଣି ଓ ମୋର ମନେ ପଡ଼ୁଛି ମୋତେ ଯେତେ-ବେଳେ ପଚିଶ ବର୍ଷ ହୋଇଥିଲା କାହିଁ, ସେତେବେଳକୁ ମୋ ଦେହ ମନର ଭାବ ବିଶେଷ କିଛି ଊଣା ପଡ଼ିଥିଲା ବୋଲି ମନେ ହେଉ ନାହିଁ ତ ? ଅବଶ୍ୟ ନିଜକୁ ଟୋକା ବୋଲି ଭାବି ହେଉ ନଥିଲା, କିନ୍ତୁ ଟୋକାପଣରେ ନାନାବିଧ ଆଶା ଅଭିଳାଷ ମୋର ପ୍ରବୃତ୍ତିକୁ ତଥା ଚିତ୍ତବୃତ୍ତିକୁ ଉସକେଉ ନଥିଲା ବୋଲି କହିପାରିବି ନାହିଁ, ଯଦିଓ ମୋତେ ଭୟ ଲାଗୁଥିଲା କାଳେ ଅନ୍ୟମାନେ ଜାଣିନେବେ ଓ ମୋର ବେହେଲପଣକୁ ଥଟ୍ଟା କରିବେ । ଆଜି ମୁଁ ସ୍ୱୀକାର କରିବାକୁ ବାଧ୍ୟ ହେଉଛି ଯେ ବିଭିନ୍ନ କ୍ଷେତ୍ରରେ ଶିଥିଳତା ଆସିଗଲାଣି ଏବଂ ଆସିବା କଥା । ତଥାପି ମନେ ହେଉଛି ଯେ ବାର୍ଦ୍ଧକ୍ୟ କେବଳ ଗୋଟାଏ ଧାରଣା, ଆମର ସମାଜ ଭିନ୍ନ ପ୍ରକାର ହୋଇଥିଲେ ମୁଁ ବୋଧହୁଏ ମୋର ସର୍ଭିସ୍ତାର ମିଆଦ ବଢ଼େଇ ଦେଇ ପାରିଥାଆନ୍ତି, ଆହୁରି ଘୋଡ଼ାଏ ତିନିଟା ଲଙ୍କାକୁ ଦେଇ ବାନ୍ଧିବାର ପ୍ରୟାସ କରିପାରି ଥାଆନ୍ତି ! ଯେଝାର ଲଙ୍କା ଯାହାର । କିନ୍ତୁ ମୋର ବକ୍ତବ୍ୟ ହେଉଛି ଯେ ଏଇ ଗପଟି ଲେଖିଲା ବେଳେ, ସେତେବେଳେ ମୋତେ ବତିଶ ବର୍ଷ, ମୁଁ ଅନୁମାନ କରିପାରି ନଥିଲି ଯେ ବୟସ ବଢ଼ିବା ସାଙ୍ଗେ ସାଙ୍ଗେ 'ଜୀବନ ସରିଗଲା, ଏଇ ସରିଗଲା' ବୋଲି ଯେତେ ଦୁଃଖ କଲେ ମଧ୍ୟ ତଥାକଥିତ ନିଜତ୍ୱକୁ ସହଜେ ବିଦାୟ ଦେଇ ହୁଏ ନାହିଁ । ଶେଷ ଇନ୍ଦ୍ରିୟକୁ ଏଇ ମୋର ନିଜତ୍ୱ

ବୋଲି ମାଡ଼ି ବସି, ଆଉ ଖଣ୍ଡେ ବାଟ ମ, ବୋଲି ଫୁସୁଲେଇବାକୁ ମନ ହୁଏ । ତେଣୁ ଶଶୀଶେଖରବାବୁଙ୍କ ସ୍ତ୍ରୀ ଯେଉଁ ଶେଷ ପ୍ରଶ୍ନଟି ଛାଡ଼ିଦେଲେ ଶୂନ୍ୟକୁ, ଯେ ବୁଢ଼ା ହେଲେ ମିଣିପେ ଏମିତି ଅବାଗିଆ ହୁଅନ୍ତି କାହିଁକି, ତା'ର ଉତ୍ତରରେ ମୋର କହିବାକୁ ଇଚ୍ଛା ହେଉଛି ଯେ ସବୁ ମିଣିପେ ଏମିତି ନୁହନ୍ତି, ତମ ସ୍ୱାମୀ ଅକାଳରେ ବୁଢ଼ା ହେବାକୁ ବସିଛନ୍ତି । ନିଜଭିତର ବିକଳ୍ପକୁ ଖୋଜି ବୁଲୁଛନ୍ତି । ଦୋଷ ତାଙ୍କର ଅବା ତାଙ୍କ ଅର୍ବାଚୀନ ଲେଖକର । ହଁ, ଯଦି ସତୁରି ପଚସ୍ତରି ବର୍ଷ ହୋଇଥାଆନ୍ତା, ତାହାହେଲେ ହୁଏତ······

ହେଲା, ଶଶୀଶେଖର ବାବୁ ଅକାଳରେ ବଂଶଧାରାକୁ ଡାକି ଛାଡ଼ିଲେ, 'ଶେଖର' ନାଆଁଟିକୁ ନେଇ ମୁଁ ବଞ୍ଚି ରହିବି, ଏହି ପ୍ରକାର ହାସ୍ୟାସ୍ପଦ ଢଙ୍ଗ ଦେଖେଇଲେ । କିନ୍ତୁ ମୌଳିକ ଅର୍ଥରେ, ନିଜକୁ ମୁଠେଇ ଧରିବା ବା ନିଜକୁ ଅନ୍ୟ କେଉଁ ଘଟରେ, ଔରସର ବା ମାନସର ପୁତ୍ର ଠାରେ ନିଜେ ତୋଳିଥିବା କୋଠା, ନିଜେ ରୋଇଥିବା ଗଛ, ନିଜେ ଗଢ଼ିଥିବା ମୂର୍ତ୍ତି ବା ଯେ କୌଣସି ପ୍ରକାର ସର୍ଜନାରେ ଥାପି ଦେଇ ଯିବାର ପ୍ରୟାସ କରିବା ଏକା କଥା ନୁହେଁ କି ?

'ନାଆଁ ରହିଥିବ କାଳ କାଳକୁ ?' ସତେ ? କେତେ ଦିନ ? ମହାକାଳର ଗର୍ଭ କେତେ ଗଭୀର, କେତେ ଉଦାର, କେତେ ବିଗତ ସଭ୍ୟତାର ଚିହ୍ନମୁନ, ରଜାମନ୍ତ୍ରୀ ତା'ର ଗର୍ଭରେ ପଡ଼ି ନିଶ୍ଚିହ୍ନ ହୋଇ ଗଲେଣି, ସେଇଥିପାଇଁ ସେ ଏମିତି ହାଡ଼ଟ୍ରୁ ହୋଇ ବସିଛି, ତମକୁ ଆମକୁ ଲୋଭଉଛି ତା' ସାଙ୍ଗରେ ଖେଳିବା ପାଇଁ, ଏତିକି ବୁଝିପାରୁନାହିଁ ? ହେ କବି-ଗୁରୁ, 'ଆଜି ସତେ ଶତ ବର୍ଷ ପରେ' ତମକୁ କିଏ ପଢ଼ିବ ନ ପଢ଼ିବ ସେଥିପାଇଁ ଏତେ ମୁଣ୍ଡବଥା କାହିଁକି ? ଯୁଗଯୁଗାନ୍ତରର ଧାରାରେ ଶହେବର୍ଷର ମାପ କଅଣ, ମୂଲ୍ୟ କଅଣ ?

ତା'ଛଡ଼ା ନିଜେ ଚାଲିଗଲା ପରେ ତମର କଣ ବଞ୍ଚି ରହିଲା, କେତେଦିନ ବଞ୍ଚି ରହିଲା, ସେଥିରେ ତମର ଯାଏ କେତେ ଆସେ କେତେ ?

ହାୟ ! କେହି ସଚେତନ ସ୍ୱାଭିମାନୀ ମଣିଷ କାହିଁ ଏଇ ସରଳ ସୁନ୍ଦର ସତ କଥାଟିକୁ ଆଦର ନେଇ ପାରିବ ନାହିଁ ଯେ ମୁଁ କିଛି ନ ଥିଲି କି କିଛି ହୋଇ ରହିବ ନାହିଁ ? ଯେ ଅବ୍ୟକ୍ତର ବିରାଟ ଅନ୍ଧାରରେ ଏଇ ବ୍ୟକ୍ତ ବିଜୁଳିଟିକ ଗାର କାଟି ପାରିବ ନାହିଁ ? ଅବା ବାଇରନ୍‌ଙ୍କ ଭାଷାରେ ଓଲଟା ଭାବରେ କହିବାକୁ ଗଲେ ଅନନ୍ତର ମହୋଜ୍ଜ୍ୱଳ ଶୁଭ୍ରତାରେ ଜୀବନ ସାମାନ୍ୟ କଳଙ୍କ ଦାଗ ଛଡ଼ା ଆଉ କିଛି ନୁହେଁ ? ···କିନ୍ତୁ ଲଜ୍ଜାର ବିଷୟ ଯେ ଏତେ ଖାସ୍ କଥା କହିଲା ପରେ ତଥା ଶଶୀଶେଖରବାବୁଙ୍କୁ ହସି ଉଡ଼େଇ ଦେଲା ପରେ ମଧ୍ୟ ମୋର ଆଶଙ୍କା ହେଉଛି ଯେ ମରିବା ପୂର୍ବରୁ ମୁଁ ମୋ ପିଲାମାନଙ୍କୁ କହିବି,—ଶୁଣ, ମୋ ପାଇଁ ସମାଧି ତୋଳିବ ନାହିଁ, ମୋ ନାଆଁରେ କୋଉଠି ଲାଇବ୍ରେରୀ ଗଢ଼ିବ ନାହିଁ, ବୃତ୍ତି ପୁରସ୍କାରର ବ୍ୟବସ୍ଥା କରିବ ନାହିଁ, ବୁଝିଲ ? ···କିନ୍ତୁ ମୁଁ ଲେଖିଥିବା ସେଇ ବହି କେତୋଟି···

ଇଏ ମୋର ଅନ୍ୟତମ ପ୍ରକାଶିତ କିନ୍ତୁ ଅବହେଳିତ ଗପ (କାରଣ ପସନ୍ଦରୁ ନାହିଁ) ଯାହା ମୋର କୌଣସି ଗଳ୍ପ ସଙ୍କଳନକୁ ଅଣା ହୋଇ ନାହିଁ । କିନ୍ତୁ କେତେ ବର୍ଷ ତଳେ ମୁଁ ଆଶ୍ଚର୍ଯ୍ୟର ସହ ଆବିଷ୍କାର କଲି ଯେ ଜଣେ ଉଦ୍‌ଯୋଗୀ ସଙ୍କଳନକାର ତାଙ୍କ ଗଳ୍ପ ସଙ୍କଳନରେ ଏଇ ଗପଟିକୁ ବାଛି ନେଇଛନ୍ତି । ସେ ଭାବିଲେ ଯେ ଏଇ ଗପଟି ମୋର ଲେଖକ-ମାନସକୁ ବିଶେଷ ଭାବରେ ଚହଲେଇ ଦେଉଛି ନା ବହିରେ ବାହାରି ନ ଥିବାରୁ ଏଇଟି ପାଠକମାନଙ୍କୁ ନୂଆ ପରି ଲାଗିବ, ସେକଥା ମୁଁ କହିପାରୁ ନାହିଁ ।

କଟକ
୩ ନଭେମ୍ବର, ୧୯୮୬



# ଆମରି ଭିତରୁ ଜଣେ

ଟେଲିଭିଜନ୍‌ରେ ପାଗପାଣି ଖବର ଆସିଥିଲା ଯେ ସନ୍ଧ୍ୟାବେଳକୁ ବରଫ ପଡ଼ିବାର ସମ୍ଭାବନା ଅଛି । ସେ ଥିଲା ମଧ୍ୟାହ୍ନର ଖବର; ଜନୈକ ଜନ୍ ଡଗ୍‌ଲାସ୍ ସସ୍ମିତ ବଦନରେ କୌଣସି ନଖ ସଫା ରଖିବାର ନୂତନ ଉପାଦାନର ବିଜ୍ଞାପନ ସହିତ ଖବରଟି ଦେଇଥିଲେ । ସବୁଦିନେ ସେ ଏତିକବେଳକୁ ଖବର ଦିଅନ୍ତି । ଲମ୍ବା ଲମ୍ବା ଆଙ୍ଗୁଳି ଟେଲିଭିଜନ ପରଦାରେ ଖୋଲି ହୋଇଯାଏ, ତା'ପରେ ଏକ ତରଳ ବସ୍ତୁ ସୁଦୂର ସ୍ୱର୍ଗରୁ ଝରିଲା ପରି ଝରିପଡ଼େ ହାତ ଆଙ୍ଗୁଳିରେ । ନଖ ଝଲି ଉଠେ, ସୁନ୍ଦର ନଖ ବିଶିଷ୍ଟ ହାତରେ ଯୁବତୀ ପାନୀୟ ପାତ୍ର ଧରେ ଚୁମିଲା ପରି ଓ ଅଳସ ଉପଭୋଗର ଆବେଶରେ ସିଗାରେଟର ଧୂଆଁ ଆକାଶକୁ ଛାଡ଼େ । ବାଜାବାଜଣାର ତରଳ ଝଙ୍କାର ସେହି ଦୃଶ୍ୟର ଅନୁମୋଦନ କରେ, ଉପଯୋଗୀ ବାତାବରଣ—ଆଟ୍‌ମସ୍‌ଫିଅର୍—ଯୋଗାଏ । ତା' ପରେ ଶ୍ରୀଯୁକ୍ତ ଜନ୍ ଡଗ୍‌ଲାସ ଉଭା ହୋଇ କହନ୍ତି ଯେ ଆପଣ ମଧ୍ୟ ସେହି ସୁନ୍ଦରୀଙ୍କର ଅନୁଭୂତି ପାଇ ପାରିବେ ଯଦି ଆପଣ ଅମୁକ ବସ୍ତୁ ବ୍ୟବହାର କରନ୍ତି ନଖ ସଫା ରଖିବା ପାଇଁ । କଥା ସରିଲା ପରେ ହସି କରି କହନ୍ତି,—ମୋ ନାଁ ଜନ୍ ଡଗ୍‌ଲାସ, ଆଜିକାର ମଧ୍ୟାହ୍ନ ଖବର ହେଉଛି…… । ଏହିପରି ସନ୍ଧ୍ୟାବେଳର ଖବର ଆସେ କୌଣସି ବିସ୍କୁଟ କମ୍ପାନୀ ତରଫରୁ ଓ ରାତି ୧୧ଟାର ଖବର ଦିଏ କୌଣସି ସିଗାରେଟ କମ୍ପାନୀ ।

ବରଫ ପଡ଼ିବାର ଖବର ଶୁଣିବା ମାତ୍ରେ ପିଲାମାନେ ନାଚି ଉଠିଲେ । ନାନାଦି ପ୍ରଶ୍ନ ଓ ମନ୍ତବ୍ୟ ଏକା ସାଙ୍ଗରେ ଆସିଲା,—ବରଫ କେମିତି ପଡ଼ିବ ? ଖଣ୍ଡ ଖଣ୍ଡ ହୋଇ ନା କୁଆପଥର ପରି ? ଲୋକମାନେ ରାସ୍ତାରେ ଯିବେ କେମିତି ? ମିଷ୍ଟର୍ ଅମୁକ କହୁଥିଲେ ଯେ ଘର ଆଗରେ ବରଫ ସଫା ନ କଲେ ଲୋକମାନେ କଚଡ଼ା ଖାଆନ୍ତି ଓ ସେଥିପାଇଁ ଶହେ ଡଲାର୍ ଜୋରିମାନା ଦେବାକୁ ପଡ଼େ, ଇତ୍ୟାଦି ଇତ୍ୟାଦି ।

ଶ୍ରୀମତୀଙ୍କର ଆଖିରେ ମଧ୍ୟ ଉତ୍ସୁକତା ଆସିଥିଲା, କିନ୍ତୁ ସେ ଶୀଘ୍ର ଭିନ୍ନ ଦୃଷ୍ଟିରେ ବ୍ୟସ୍ତତାର ଭାବ ଦେଖାଇଲେ । ବରଫ, ମାନେ ଅନ୍ଧାର ଥଣ୍ଡା । ଶ୍ରୀମତୀ ଥଣ୍ଡା ପ୍ରତି ଅସହିଷ୍ଣୁ । ତା'ଛଡ଼ା ଅନ୍ୟ କାରଣ ଅଛି । ଆଜି କାଗଜରେ ବାହାରିଥିଲା ଯେ ଡାଉନ୍‌ଟାଉନର ଲିନ୍‌ବର୍ଗ୍ ଦୋକାନରେ ସେଲ୍ ହେଉଛି, ଲେଡ଼ିଜ୍ ଗରମ କୋଟ ତିରିଶ ଡଲାର୍‌ରେ ମିଳୁଛି ଓ ପିଲାଙ୍କ ଡ୍ରେସ ସ୍କର୍ଟ ଆଦି ଦୁଇତିନି ଡଲାରରେ ମିଳିଯାଉଛି । ବରଫ ପଡ଼ିଲେ ବାହାରକୁ ଯାଇ ହେବ ନାହିଁ । ଶ୍ରୀମତୀଙ୍କ ମନ କଥା ଜାଣିପାରି ମୁଁ ପଚାରିଲି,—"କିଣ ସେଇ କଥା ଭାବୁଛ ? ଚିନ୍ତା ନାହିଁ, ଏ ଦେଶରେ ସେଲ ସବୁଦିନେ ଲାଗି ରହିଛି । ଆଜି ନ ହେଲେ କାଲି ହେବ, ଲିନ୍‌ବର୍ଗ ନ ହେଲେ ସିଅର୍ସ । ଭାବିବାର କଅଣ ଅଛି ?"

ଶ୍ରୀମତୀ ସନ୍ତୁଷ୍ଟ ହେଲେ ନାହିଁ । ପୁଣି ଥରେ ଆରମ୍ଭ କଲେ,—"ତୁମ କଥାରେ ପଡ଼ି ଇଣ୍ଡିଆରେ ସବୁ ଜିନିଷ ଛାଡ଼ି ଦେଇ ଆସିବାକୁ ହେଲା । ଏଠି କିଛି ନୂଆ କିଣା ହୋଇ ପାରିଲା ନାହିଁ । ଯେଉଁଠି ସବୁ ଇଣ୍ଡିଆନ ସ୍ତ୍ରୀମାନଙ୍କର ପ୍ରତି ଶାଢ଼ୀ ସାଙ୍ଗକୁ କୋଟ୍ ଅଛି, ସେଠି ମୋର ଅଛି କଅଣ ନା ମୋଟେ ଯୋଡ଼ିଏ । ସବୁ ରଙ୍ଗର ଶାଢ଼ୀ ସାଙ୍ଗକୁ ପାଇବ ନାହିଁ । ସେଲ ବୋଲି ଅଙ୍କା କରୁଛ, ହେଲେ ସେହି ଜିନିଷ ପୁଣି ଷାଠିଏ ସତୁରି ଡଲାରରେ କିଣିବାକୁ ହେବ । କିଣ. କିଏ ମନା କରୁଛି ?"

ବଡ଼ ଝିଅ ଯୋଗ ଦେଲା । ତା' ସ୍କୁଲ ସାଙ୍ଗ କହୁଥିଲା ଯେ ବଲ ପଏଣ୍ଟ କଲମ ସେଲରେ ତିରିଶ ସେଣ୍ଟ୍‌ରେ ମିଳୁଛି—ଏହି ଆମ ଘର ପାଖ ଡ୍ରଗ ଷ୍ଟୋରରେ ।

ମଝିଆଁ ଝିଅର ମନେ ପଡ଼ିଲା ଯେ ଏ ଶୀତକୁ ତା' ମୋଜା ପାଉନାହିଁ । ତା' ଛଡ଼ା ହାତ ପାଇଁ ଗ୍ଲୋଭସ୍ ଦରକାର ଆଉ କାନ ପାଇଁ ଇଅର-ମଫ୍ । ନ ହେଲେ ଏ ଥଣ୍ଡା ପବନରେ ସ୍କୁଲ ଯିବା କେମିତି ? ଅମୁକ 'ଆଣ୍ଟି' କହୁଥିଲେ ଯେ ଫୋର୍ଟିନ୍‌ଥ ଷ୍ଟ୍ରିଟର କେଉଁ ଦୋକାନରେ ଏସବୁ ଜିନିଷ ସେଲରେ ମିଳୁଛି, ସେ ତାଙ୍କ ଝିଅ ପାଇଁ ଆଣିଛନ୍ତି ।

ଶେଷକୁ ସବା ସାନ ପୁଅ ପାଟି କରି ଉଠିଲା, "ବାପା, ମୋର ବି' ସେଲ ଦରକାର । ମୋ ପାଇଁ ସେଲ ଆଣି ଦେବ ।"

ସେ-ଲ, ସେ-ଲ, ସେ-ଲ ! ଏଡ଼ାଇବାର ଉପାୟ ନାହିଁ । ପ୍ରତିଦିନର ଷାଠିଏ ପୃଷ୍ଠା ସମ୍ବଳିତ ଖବରକାଗଜ ଧରି ବସିଲା ବେଳକୁ ଆଖିରେ ପଡ଼ିବ ବିରାଟ ସେଲ, ପୃଷ୍ଠା ପୃଷ୍ଠା ଧରି । ବସ୍ତୁ ବିଶେଷରେ ପ୍ରଭେଦ ନାହିଁ । ପ୍ରତ୍ୟେକର ସମାନ

ଅଧିକାର ସାବ୍ୟସ୍ତ କରିବା ପାଇଁ । କେଉଁଠି ବିଭିନ୍ନ କାରର ଦାମ ଖସି ଆସି ଗୁଡ଼ିଏ ଚୁନା ହୋଇ ଗଲଣି ତ କେଉଁଠି ଖାଇବା ଜିନିଷ ଷ୍ଟୋର୍ ସାଟି କରୁଛି ପୃଷ୍ଠା-ବ୍ୟାପୀ ବଡ଼ ବଡ଼ ହରଫ୍‌ରେ :

ମେଣ୍ଢା ଗୋଡ଼ ୫୫ ସେଣ୍ଟ୍
ଘୁଷୁରି ମାଂସ ୭୦ ସେଣ୍ଟ୍
ଗୋରୁ କଲିଜା ୨୯ ସେଣ୍ଟ୍

ଏହାଛଡ଼ା ରେଡ଼ିଓ ଟେଲିଭିଜନ ତ ଅଛି ।

ଯାହାହେଉ ସେଲ୍‌ର ମହତ୍ତ୍ୱରୁ କଥାକୁ କୌଣସି ମତେ ଫେରାଇ ଆଣିଲି ବରଫ ପଡ଼ିବା ଖବରକୁ । ସେଲ୍ ବଡ଼ କଥା ହୋଇପାରେ, କିନ୍ତୁ ବରଫ ପଡ଼ିବା ତା'ଠୁ ବଡ଼ କଥା । ଭାରତବର୍ଷରେ ଏ ଦୃଶ୍ୟ ବିରଳ । ଗୋଟିଏ ଗରମ ଘରେ ବସି ରହିବାକୁ ହେବ, ହେଉ । ଝରକାରୁ ତ ଅନାଇ ରହିହେବ, ଦୃଶ୍ୟ ଦେଖି ହେବ । .........ବରଫ ପଡ଼ୁଛି । ସ୍ୱଚ୍ଛ ଶୁଭ୍ର ତୁଷାର କଣା । ସଭ୍ୟତାର ମଳଧୂଳି ତା' ଦେହରେ ଲାଗି ନାହିଁ । ବରଫ ଆକାଶର ଅକୁଣ୍ଠିତ ଦାନ, ପୃଥିବୀର କ୍ଷତ ଲୁଗାଇବା ପାଇଁ । ତା'ର ଉତ୍ତାପ ନାହିଁ, ରଙ୍ଗ ନାହିଁ, ବାସ୍ନା ନାହିଁ, କାରଣ ସେ ପୃଥିବୀର ନୁହେଁ । ସେ ଆସିଛି ତୁମ ପାଖକୁ, ତୁମର ହାତ ପାହାନ୍ତାରେ, ତୁମର ଘରପାଖରେ, —ଚିରନ୍ତନର ଆଭାସ ଦେଇ ଫେରିଯିବା ପାଇଁ ।

ତୁଷାରପାତର ମାହାତ୍ମ୍ୟ କଥା ଶ୍ରୀମତୀଙ୍କୁ କହିଲି । ସେ କିଛି ସମୟ ମନ ଦେଇ ଶୁଣିଲେ ଓ ତା' ପରେ କହିଲେ—"କିନ୍ତୁ ତୁମେ ଗୋଟାଏ କଥା ଭୁଲି ଯାଉଛ । ମଣିଷ ବଞ୍ଚିଥିଲେ ଉଷ୍ମ, ମରିଗଲେ ଥଣ୍ଡା । ସେଥିଲାଗି ମୋତେ ଯଦି ପଚାରିବ ମୁଁ କହିବି ବରଫ ହେଉଛି ମରିଯିବାର ଥଣ୍ଡା ହୋଇଯିବାର ସଙ୍କେତ । ତେବେ ବରଫ ଶାନ୍ତି ଆଣିଦିଏ, ସତ କଥା ।"

ମୁଁ ହସିକରି ଶ୍ରୀମତୀଙ୍କ ଆଡ଼କୁ ଅନେଇଲି । ଭୁଲ କହିନାହାନ୍ତି । ହେଲେ ଏମିତିକା ଭାବନା ତାଙ୍କ ମନରେ ଆସେ କାହିଁକି ?

ଯଥାକ୍ରମେ ପରିବାରର ସମସ୍ତେ ନିଜ ନିଜକୁ ପ୍ରସ୍ତୁତ କରିନେଲୁ ବରଫ ପଡ଼ିବାର ଦୃଶ୍ୟ ଦେଖିବା ପାଇଁ । ଛୁଟିଦିନର ଉପରବେଳା । ଓ୍ୱାଶିଙ୍ଗଟନ୍‌କୁ ଆମେ ନୂଆ ହୋଇ ଆସିଛୁ, ଅବସ୍ଥିତ ଗୋଟିଏ ହୋଟେଲ ଆପାର୍ଟମେଣ୍ଟରେ । କଟକ କଲିକତା ପରି ହଠାତ୍ କେହି ସାଙ୍ଗପଡ଼ିଶା ବନ୍ଧୁବାନ୍ଧବ ଆସିବାର ଆଶା ବା ଆଶଙ୍କା ନାହିଁ । ଆମ ପାଖ ଆପାର୍ଟମେଣ୍ଟମାନଙ୍କରେ କିଏ ଅଛନ୍ତି ତାହା ମଧ୍ୟ ଜାଣିବାର ଅବକାଶ ହୋଇ ନାହିଁ । ବାକି ରହିଲେ ଆମ ଭାରତୀୟମାନେ । ଥୋକେ ଚାହା ବେଶିଭାଗ

ଅଚହ୍ନା । ରାସ୍ତାରେ ଚାଲିଲା ବେଳେ କମ୍ବା ଦୋକାନରେ ଜିନିଷ କିଣିଲାବେଳେ ଶାଢ଼ୀପିନ୍ଧା ସ୍ତ୍ରୀ ଲୋକଟିଏ ଦେଖିଲେ ଶ୍ରୀମତୀ ହଠାତ୍ କହନ୍ତି,—ହେଇ ଜଣେ ଇଣ୍ଡିଆନ୍ । ମୁହାଁମୁହିଁ ହୋଇଗଲେ ବେଳେ ବେଳେ ସେହି ଲିପ୍‌ଷ୍ଟିକ ମଖା ଓଠରେ ଟିକିଏ ହସର ସୂଚନା ଆସିଯାଏ । ବେଶ୍, ସେତିକି । ଶ୍ରୀମତୀ ଦୁଃଖ କରନ୍ତି । ମୁଁ କିନ୍ତୁ ତାଙ୍କୁ କହେ,—ଆପଣା ପରିବାରରେ ଲୌକିକତାର ଦରକାର କଅଣ ? ଇଣ୍ଡିଆନ୍ କାହାରି ଦେଖା ହେଲେ ମନେହୁଏ ଯେ ଏ ବିଦେଶ ଭୂଇଁରେ ଆମେ ଏକା ନୁହେଁ, ଆମରି ପରି ଅନ୍ୟମାନେ ମଧ୍ୟ ଅଛନ୍ତି, ଆମରି ପରି ହୁଏତ ଖୋଜି ବୁଲୁଛନ୍ତି କେଉଁଠି ମିଳିବ, ତାକୁ ଏଠିକା ଇଂରାଜୀରେ କଅଣ କୁହନ୍ତି, ଆମରି ପରି ହେଲର ସନ୍ଧାନ ନେଉଛନ୍ତି ଯେପରିକି ଭାରତ ଫେରିବା ଆଗରୁ ଯଥାସମ୍ଭବ ଜିନିଷ ବିଦେଶ-ଭଣ୍ଡାରରୁ ସଂଗୃହୀତ ହୋଇପାରିବ । ସେ ଜଣେ ଇଣ୍ଡିଆନ୍, ଆମରି ଭିତରୁ ଜଣେ,—ଦେଖିଲେ ଭଲ ଲାଗେ ।

ଶ୍ରୀମତୀ ଏକମତ ନ ହୋଇ ରହିପାରନ୍ତି ନାହିଁ ।

ଆକାଶରୁ ରାସ୍ତାକୁ ଅନେଇ ଅହରହ କାର୍‌ର ଛୁଟିବା ଦେଖୁଛି, ରାସ୍ତା ସେ ପାଖରେ ଥିବା ଡ୍ରଗ୍‌ଷ୍ଟୋରର ଅନୁଧ୍ୟାନ କରୁଛି । ଡ୍ରଗ୍‌ଷ୍ଟୋରରେ ନାମମାତ୍ର ଡ୍ରଗ ବା ଔଷଧ ସାଙ୍ଗରେ କଫି, ହାମବର୍ଗର, କଣ୍ଡେଇ, ସିଗାରେଟ୍ ଇତ୍ୟାଦି ସବୁ ଜିନିଷ କାହିଁକି ମିଳେ ଓ ତଥାପି କାହିଁକି ତାକୁ ଡ୍ରଗ୍‌ଷ୍ଟୋର କହନ୍ତି ସେ ବିଷୟ ମନ ଭିତରେ ଆଲୋଚନା କରୁଛି, ଏହି ସମୟରେ ଟେଲିଫୋନ୍ ବାଜି ଉଠିଲା । ରିସିଭରକୁ ଉଠାଇ ଶୁଣିଲି ସରୁକଣ୍ଠର ସ୍ୱର,—"ମିସେସ୍ ଦାସ ଅଛନ୍ତି ? ଟିକିଏ ଡାକି ଦିଅନ୍ତୁ ।"

ନିଶ୍ଚୟ ଜଣେ କେହି ପରିଚିତା ଭାରତୀୟା ହୋଇଥିବେ । ଭାବିନେଲି ଯେ କୁଶଳ ସମ୍ଭାଷଣ ସହିତ ଧରାବନ୍ଧା କେତୋଟି ପ୍ରଶ୍ନର ପୁନରାବୃତ୍ତି ହେବ, ଯଥା,—ଘର ପାଇଲଣି କି ନାହିଁ ? କାର୍ କିଣିବା କେଉଁଯାଏ ଗଲା, କେଉଁ କାର କିଣିବାକୁ ଠିକ୍ କରୁଛ ? ପ୍ରଶ୍ନ ସହିତ ପରାମର୍ଶ । ସାହାଯ୍ୟ ମନୋବୃତ୍ତି ବିଶିଷ୍ଟା ଜଣେ ଦୁଇଜଣ ନୂଆ ହେଲର ସନ୍ଧାନ ଦେବେ ଓ ପ୍ରକାରାନ୍ତରେ ଜଣାଇଦେବେ ଯେ ଏଭଳି ସହରରେ କେତୋଟି ନୂଆ ନୂଆ ଜିନିଷ ଦରକାର ଯାହା ସେମାନେ କିଣି ସାରିଛନ୍ତି । ଅନୁମାନ ଭୁଲ ନୁହେଁ । ଦଶମିନିଟ ଟେଲିଫୋନରେ ଗପିସାରିଲା ପରେ ରିସିଭର୍ ରଖିଦେଇ ଶ୍ରୀମତୀ କହିଲେ, 'ମିସେସ୍ କପୁର ଫୋନ କରୁଥିଲେ, ପଚାରୁଥିଲେ ଯେ ଘର ପାଇଲଣି କି ନାହିଁ, ପିଲାମାନଙ୍କ ଖବର ଇତ୍ୟାଦି । ହଁ, ଆଉ କହୁଥିଲେ ଯେ କାର୍ପେଟ୍ ସଫା ରଖିବା ଭାକୁମ୍ କ୍ଲିନର୍ (vacuum cleaner) ସେଲରେ ମିଳୁଛି ଲର୍ନସ୍ ଦୋକାନରେ, ଖୁବ୍ ଶସ୍ତା । ତା'ପରେ କିଛି ସମୟ ରହିଯାଇ କହିଲେ, ଆଜି

କୁଆଡ଼େ ଖୁବ୍ ଜୋରରେ ବରଫ ପଡ଼ିବ, ପାଞ୍ଚ ଛଅ ଇଞ୍ଚ ଯାଏ । ଏଇ ଅଳ୍ପ ସମୟ ଭିତରେ ପଡ଼ିବ, ସନ୍ଧ୍ୟା ଆଗରୁ । ସେ ଫୋନ୍‌ରେ ବୁଝିଲେ ।"

"ହଁ ବାପା, ଏଠି ସବୁ ଫୋନ୍‌ରେ ପାଗ କଥା ବୁଝନ୍ତି । ଫୋନ୍ ଉଠାଇଲେ ସେ କହି ଚାଲିବ, ଟାଇମ୍ ପରି । ସେ ଫୋନ ନମ୍ବର କେତେ ଜାଣିଛ ?"

"ଜାଣେ ନାହିଁ", କହି ଚୁପ୍ ରହିଲି । ଏ ଜାଣିବା ଶିଖିବାର ପର୍ଯ୍ୟାୟ କଣ ଶେଷ ହେବ ନାହିଁ !

······ଶେଷକୁ ବରଫ ପଡ଼ିଲା । ମିସେସ୍ କପୁର ଠିକ୍ କହୁଥିଲେ । ଘଣ୍ଟାଏ ନ ଯାଉଣୁ ଆକାଶରୁ ହାଲୁକା ହେମାଳ ପବନ ଝସି ଆସିଲାପରି ଲାଗିଲା । କିଛି ସମୟ ପରେ ଦୂରରୁ ଦେଖାଗଲା ଅତି ଶ୍ରେଷ୍ଠ ରୂପେଲି ଦାନାସବୁ ପବନରେ ମିଶି ମିଶି ଆସୁଛି । ଏ କଣ ବରଫ ? ନା ଧୂଳିକଣା ଜ୍ୟୋତିଷ୍ମାନ ହସ୍ତର ଶେଡ଼ା ଆଲୁଅରେ ସେମିତି ଦେଖା ହେଉଛି ? ରୂପେଲି ଦାନାଗୁଡ଼ିକ ଅହୁରି ପାଖକୁ ଆସିଗଲେଣି । ଝରକାରୁ ହାତ ବଢ଼େଇଲି ଛୁଇଁବି ବୋଲି, ଦେଖିଲି ହାତ କାକର ଛୁଆଁ ପରି ଓଦାଳିଆ ହୋଇଯାଉଛି । ଏ କଅଣ ? ଆକାଶ କଣ ଖାଲି ବିନ୍ଦୁର ସମଷ୍ଟି ? ଏତିକି ଅଛି ନା ଆହୁରି ଆସିବ ? ପ୍ରତ୍ୟେକ ବିନ୍ଦୁର କଳେବର ବଢ଼ି ଗଲଣି, ସେମାନେ ବର୍ତ୍ତମାନ ପ୍ରତ୍ୟେକ ନିଜ ହାତରେ 'ଗଡ଼ଦପା' ଓ ନୂଆ ହୋଇ ସଂସାରକୁ ଆସି କଣ କିଛି କରି ପକାଇବେ ବୋଲି ଅସ୍ତବ୍ୟସ୍ତ ହେଉଛନ୍ତି । ଦିଗର ଜ୍ଞାନ ନାହିଁ, ଦେଶ-କାଳପାତ୍ର ଜଣା ନାହିଁ, ଧାରଣାଦର୍ଶନ ବିହୀନ ହୋଇ ଖେଦି ଯାଉଛନ୍ତି ଗୃହଆଡ଼େ । ଘୂରି ବୁଲୁଛନ୍ତି, ଗୋଡ଼ାଗୋଡ଼ି ହେଉଛନ୍ତି, ଖେଳୁଛନ୍ତି ଓ କଏ କେଉଁଠି ହଜିଯାଉଛି ପବନରେ ।

ଯଥାକ୍ରମେ ସତ ବରଫ ଆସିଲା ଆଟପଲଟଣ ନେଇ । ସେତେବେଳକୁ ବରଫ ଚୂନା ସବୁ ଘାସରେ ଓ ଡାଳପତରରେ ସେମାନଙ୍କ ଚିହ୍ନ ରଖିସାରିଲେଣି । ଘାସ-ପତର ଚକ୍ ଚକ୍ କରୁଛି, ଛଳ ଛଳ ଶିଶିର ଓ ସ୍ଫଟିକର ଶୋଭା ନେଇ । ମନେ ହେଉଛି ଯେ ବିନ୍ଦୁସବୁ ମୁହୂର୍ତ୍ତକ ପରେ ମିଳାଇ ଯିବେ, କିନ୍ତୁ ସେମାନେ ଯାଉ ନାହାନ୍ତି, ଆଖି ମିଟିମିଟି କରୁଛନ୍ତି ତାଙ୍କ ଉଜ୍ଜ୍ୱଳ ଯୌବନର ବାହାଦୁରୀ ଦେଖାଇ । ହେଲେ ଏ ଆଖିମିଟିକା, ଏ ଗୋଟି ଗୋଟିକିଆ ସୁନ୍ଦରପଣ ବେଶି ସମୟ ରହିବ ନାହିଁ । ବରଫ ଆସୁଛି, ଆସୁ ଛି, ଶୁଭ୍ରତାର ବିରାଟ ଆସ୍ତରଣ ନେଇ । ସବୁ ଏକାକାର କରିଦେବ । ଏଥର ବରଫ ତୁଳା ଖସିଲା ପରି ଝରୁଛି ଉପରୁ, କେଜାଣି କେତେ । ହାତ ଦେଖାଇଲେ ହାତରେ ମେଞ୍ଚାଏ ହୋଇ ରହିଯିବ । କେତେବେଳେ ଝୁରୁ ଝୁରୁ ଶିମୁଳିତୁଳା ପରି ଝରିପଡ଼ୁଛି, ଆଉ କେତେବେଳେ ଗୋଛି ଗୋଛି ହୋଇ ଖସି ପଡ଼ୁଛି । ତା'ର ପରସର ବିସ୍ତୃତ, ତା'ର ଗତି ଅବିରାମ; କିନ୍ତୁ କେତେ ନରମ ସେ, କେତେ ସ୍ୱଚ୍ଛ ଓ ସୁନ୍ଦର !

ପିଲାମାନେ କୁରୁଳିଖାଇ, ପାଟିକରି, ତାଳିମାରି ଯାଇ ଏହିକ୍ଷଣି ଚୁପ୍‌ଚାପ୍ ହୋଇ ଅନେଇ ରହିଛନ୍ତି ବାହାରକୁ । ଶ୍ରୀମତୀ କେତେବେଳୁ ମୋ ପାଖକୁ ଲାଗି ଛିଡ଼ା ହୋଇଛନ୍ତି ମୋତେ ଜଣା ନାହିଁ । ତାଙ୍କର ନିଃଶ୍ୱାସ ବା ଦେହର ବାସ୍ନା ମୋତେ ଜଗାଇଦେଲା । ମୁହଁ ପାଖରେ ମୁହଁ । ଦେହର ପରଶ, ଛୁଇଁ ନ ଛୁଇଁଲା ପରି । କଳ୍ପନାରେ ମୁଁ ଦେଖିଲି ଆମ ଦୁଇଜଣଙ୍କୁ । ସ୍ଥିତିବାନ୍ ମିଷ୍ଟର୍ ଦାସ ଓ ତାଙ୍କର ସ୍ତ୍ରୀ ନୁହେଁ, ଦୁଇଟି ମଣିଷ ପ୍ରାଣୀ ଆକାଶକୁ ଚାହିଁ ରହିଛନ୍ତି ପୁରାତନ ବିସ୍ମୟ ଓ ଆନନ୍ଦ ନେଇ । ପ୍ରକୃତିର ମହାନ୍ ଆନନ୍ଦର କାଣିଚାଏ ନେଇ ନିଜକୁ ହାଲୁକା ଲାଗୁଛି । ସୁନ୍ଦର ଏ ଦେହର ପରଶ, ଫୁଲ ପରି, ତୁଳା ବରଫ ପରି । ତୁଷାର ଅନ୍ଧାରରେ ମୁଁ ଖାଲି କହିଲି,—ଚମତ୍କାର, ନୁହେଁ ? ସେ ମୋ ପାଖକୁ ଆହୁରି ଲାଗି ଆସିଲେ, ଦେହରେ ହାତ ଗୁଡ଼ାଇ ଆଣିଲେ । ମନେହେଲା ଯେ ଅସଂଖ୍ୟ ତୁଷାର କଣାର ସ୍ପନ୍ଦନ ନିଜ ଭିତରେ ଶୁଣି ହେଉଛି, ଅନୁଭବ କରି ହେଉଛି ।

···"ଫୋନ୍ ! ଫୋନ୍ !" ପିଲାଙ୍କ ଭିତରୁ କିଏ ପାଟି କରି ଉଠିଲା । ନିଦରୁ ଉଠିଲା ପରି ଆମେ ଦୁହେଁ ଫେରି ଚାହିଁଲୁ । ମୁହୂର୍ତ୍ତକ ପାଇଁ ବୁଝିବାକୁ ଡେରି ଲାଗିଲା, ଏ ସମୟରେ ଫୋନର ଚିତ୍କାର କାହିଁକି ? ତା'ପରେ ଧାରଣା ଆସିଲା ଯେ ଫୋନ ଜରୁରୀ ଦରକାରୀ ଜିନିଷ ଓ ଆମେ କେବଳ ବରଫପଡ଼ିବା ଦେଖିବା ପାଇଁ ଆମେରିକା ଆସିନାହୁଁ । ତଥାପି ବିରକ୍ତ ଲାଗିଲା । ଫୋନ୍‌ରେ ଡାକରା ଆସିବ ମିସେସ୍ କପୁର ବା ତାଙ୍କରି ପରି ଆଉ କୌଣସି ଇଣ୍ଡିଆନ୍ ଭଦ୍ରମହିଳା ବା ଭଦ୍ର-ବ୍ୟକ୍ତିଙ୍କଠାରୁ । ପଡ଼ିବ ସେହି ସେଇ କଥା, ନହେଲେ ବର୍ତ୍ତମାନର ସମୟୋପଯୋଗୀ ପରାମର୍ଶ,—ବରଫ କେମିତି ସଫା କରିବାକୁ ହୁଏ, ବରଫରୁ ନିଜକୁ ବଞ୍ଚାଇ ରଖିବା ପାଇଁ କଣ କଣ ଦରକାର, ଇତ୍ୟାଦି ।

ବିରକ୍ତିର ଭାବ ନେଇ ରିସିଭର୍ ଉଠାଇଲି ଓ ରୁକ୍ଷ ଗଳାରେ ପଚାରିଲି,— "ୟେସ୍ ?" ସେ ପାଖରୁ ଉତ୍ତର ଆସିଲା, "ମୁଁ ସାହାନୀ କହୁଛି । ଗୋଟାଏ ବଡ଼ ଦୁଃଖ ଖବର ଦେବାକୁ ଯାଉଛି । ରଙ୍ଗାରାଓ ମରିଗଲା ଆଜି ସନ୍ଧ୍ୟାବେଳେ, ଜର୍ଜଟାଉନ ହସ୍‌ପିଟାଲରେ ।"

"ମରିଗଲା ? ରଙ୍ଗାରାଓ,—କିଏ ?"

"ରଙ୍ଗାରାଓ ଏମ୍ବାସିର ଜଣେ ଆସିଷ୍ଟାଣ୍ଟ । ବହୁତଦିନ ହେଲା କାନ୍‌ସର ରୋଗରେ ଭୋଗୁଥିଲା । ସ୍ତ୍ରୀ ଓ ଗୋଟିଏ ପିଲା ।"

ଏଥର ମନେ ପଡ଼ିଲା । ଦିନେ ଆମେ ଉପରବେଳା ଦଶ ମାଇଲ ଦୂରରେ ଥିବା "ବାଶିଂଟନେ ସିଟି" ନାମକ ବିରାଟ ଡିପାର୍ଟମେଣ୍ଟ ଷ୍ଟୋର୍‌ରେ "କସ୍‌ପି" ବୋଲି

ଗୋଟିଏ କଣ୍ଢେଇପିଲାର କାରସାଦି ଦେଖୁଛୁ,—କେମିତି ତା' ହାତକୁ ଧରିପକାଇଲେ ତା' ଓଠ ଚୁମା ଦେଲା ପରି ହୋଇଯାଏ ଓ ଆଲୋଚନା କରୁଛୁ ଦଶଡଲାର ଦେଇ ପିଲାଙ୍କ ପାଇଁ ଏହି କଣ୍ଢେଇ କିଣିବା ଉଚିତ ହେବ କି ନାହିଁ, ଏହି ସମୟରେ ସାଙ୍ଗରେ ଆସିଥିବା ମିସେସ୍ ବାସୁ ମୋ ସ୍ତ୍ରୀଙ୍କ ପାଖକୁ ଲାଗିଆସି ଜଣକ ଆଡ଼କୁ ହାତ ଦେଖାଇ ଫୁସ୍ ଫୁସ୍ ହୋଇ କହିଲେ, "ୟାଙ୍କୁ ଜାଣିଛନ୍ତି ? ବିଚାରୀ ବଡ଼ ଦୁଃଖରେ ପଡ଼ିଛି । ସ୍ୱାମୀ ତିନିମାସ ହେଲା ବେମାର, ମରିବ କି ବଞ୍ଚିବ ଠିକ୍ ନାହିଁ । ବର୍ଷକର ଗୋଟିଏ ଛୁଆ । କେଉଁ ଗୋଟାଏ ଅଫିସରେ ଟାଇପିଷ୍ଟ କାମ କରୁଛି··· ।" ବାକି କଥା ଶୁଣି ପାରିଲି ନାହିଁ । ମୁହୂର୍ତ୍ତକର ଝଲକରେ ସେ ଭଦ୍ରମହିଳାଙ୍କୁ ଦେଖିଥିଲି । ପାତଳା ହାଡ଼ୁଆ ମୁହଁ, ତୀକ୍ଷ୍ଣ ଚାହାଣି,—ସବୁ ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ,—ହାତରେ କିଣାକିଣି କରିବାର ବ୍ୟାଗ୍ ଓ ଚଞ୍ଚଳ ଗତି ।

ସାହାନି କହି ଚାଲିଛି, "ଆଜି ରାତି ଏଗାରଟା ବେଳେ ଫ୍ୟୁନେରାଲ ହେବ । ମୁଁ ଯାଉଛି, ମିଷ୍ଟର ରାଜନଙ୍କୁ ମଧ୍ୟ ସାଙ୍ଗରେ ନେଇ ଯାଉଛି । ବହୁତ ଇଣ୍ଡିଆନ୍ ଆସିବେ । ଯେତେହେଲେ ଆମର ଭିତରୁ ଜଣେ— ।"

ସାହାନି ଆମ ଅଫିସର କର୍ମଚାରୀ । କଣ କହିବାକୁ ଚାହେଁ ସେ ? ମୁଁ ରାତି ଏଗାରଟାରେ ବରଫ ବର୍ଷା ଭିତରେ ଯିବି ଦାହକ୍ରିୟା ଦେଖିବା ପାଇଁ ? ଝରକାରୁ ଦେଖିଲି ସନ୍ଧ୍ୟା ଅନ୍ଧାର ଘନେଇ ଆସିଲାଣି ଓ ବରଫ ଆହୁରି ଜୋର୍‌ରେ ପଡ଼ୁଛି । 'କିନ୍ତୁ କାହିଁକି ଯିବି ?' ଏହି ପ୍ରଶ୍ନ ନିଜକୁ ପଚାରିଲା ବେଳକୁ ଉତ୍ତରର ପ୍ରବଳ ଧକ୍କା ଆସିଲା,—ସେ ଆମର ଭିତରୁ ଜଣେ । ନ ଯିବାଟା ଅନୁଚିତ । କର୍ତ୍ତବ୍ୟ । ସହାନୁଭୂତି । ଯୁକ୍ତିର ପ୍ରଶ୍ନ ନାହିଁ । ଆଉ କିଛି ନ ଭାବି ମୁଁ ସାହାନିକୁ କହିଲି, "ମୁଁ ବି ଯିବାକୁ ଚାହେଁ, ଯଦି ସୁବିଧା ହୁଏ ।" "ମୁଁ ଆପଣଙ୍କୁ ନେଇଯିବି, ରାତି ସାଢ଼େ ଦଶଟାବେଳକୁ ପହଞ୍ଚିବ କାର୍ ନେଇ, ସାହାନି ଉତ୍ତର ଦେଲା ଓ 'ବାଏ' କହି ଫୋନ୍ ରଖିଦେଲା ।"

ଶ୍ରୀମତୀଙ୍କୁ କହିଲି । ସେ ମଧ୍ୟ କହିଲେ, "ହଁ, ତୁମର ଯିବା ଉଚିତ । ବିଚାରୀ, ତା'ର ଇଣ୍ଡିଆକୁ ଫେରିଯିବା ଖର୍ଚ୍ଚ ଗଭର୍ଣ୍ଣମେଣ୍ଟ ଦେବ ନିଶ୍ଚୟ,—ନୁହେଁ ? ···ଗ୍ଲୋଭ୍‌ସ ଓଭର୍‌କୋଟ୍ ପିନ୍ଧିଯିବ ଗଲାବେଳକୁ···ସ୍ତ୍ରୀଲୋକମାନେ ଯିବେ ? ମୁଁ ଯାଆନ୍ତି ସେ··· ।"

କୁତୂହଳୀ ବଡ଼ ଝିଅ ପଚାରିଲା, "କିଏ ମରିଗଲା ?"

"ଜଣେ ଇଣ୍ଡିଆନ ।"

ତା' ମୁହଁ ଗମ୍ଭୀର ଓ ଭାବାନ୍ୱିତ ହୋଇଗଲା । ତା' ଦେଖାଦେଖି ଅନ୍ୟ ପିଲମାନେ ମଧ୍ୟ ଗମ୍ଭୀର ହୋଇଗଲେ । ସାନପୁଅ ବଲବଲ କରି ସମସ୍ତଙ୍କ ମୁହଁକୁ ଚାହିଁଲା । ମୁଁ ପ୍ରମାଦ ଗଣିଲି, କାଳେ ପଚାରିବ,—ବାପା, ଇଣ୍ଡିଆନ୍ ମାନେ କିଏଣ ?

···ବରଫ ପଡ଼ୁଛି । ବର୍ଷା ନୁହେଁ, ଝଡ଼ । ରାସ୍ତା କଡ଼ରେ ବରଫ କୁଢ଼ କୁଢ଼ ହୋଇ ଜମିଗଲାଣି । କାର୍‌ସବୁ ବରଫରେ ଘୋଡ଼େଇ ହୋଇ ସାବଧାନ ହୋଇ ଚାଲିଛନ୍ତି ରାସ୍ତାରେ, କିନ୍ତୁ ତାଙ୍କ ଗତି ଶିଥିଳ ହୋଇଗଲାଣି । ବର୍ତ୍ତମାନ ସେମାନଙ୍କ ପାଇଁ ଏମର୍‌ଜେନ୍‌ସି ବା ଜରୁରୀ ଅବସ୍ଥାର ଘୋଷଣା ହୋଇସିବଣି,—ସ୍ନୋ ଟାୟାର୍ ବା ସ୍ନୋ ଚେନ୍ ନ ଥିଲେ କାର୍ ଚଳାଇବା ମନା, ବଡ଼ରାସ୍ତା କଡ଼ରେ କାର୍ ରଖିବା ମନା, ଇତ୍ୟାଦି ଇତ୍ୟାଦି । ତଥାପି ସେମାନେ ଚାଲିଛନ୍ତି, ସଂଖ୍ୟା ବିଶେଷ କମିନାହିଁ । ରାତିର କାର୍ଯ୍ୟକ୍ରମ କଣ ବରଫ ଯୋଗୁ ବନ୍ଦ ହୋଇସିବ ? ନା । ବରଂ ବରଫ-ବର୍ଷାର ସଙ୍ଗୀତ ରାତିର ଉପଭୋଗରେ ଉତ୍ତେଜନା ଆଣିଦେବ । ରେସ୍ତୋରାଁରେ କିମ୍ବା ଡ୍ରଇଂରୁମ୍‌ରେ ଜଣେ ଆଉ ଜଣକୁ କହିବ,—ହାଏ ବଡ଼ି, ଡୁ ଇଟ୍ ଏଗେନ୍ ! ଆଉ ଥରେ ଭାଇ, ଆଉ ଥରେ । ଆଉ ଗୋଟିଏ ପେଗ୍···ଆଉ ଥରେ ନାଚ···ଆଉ ଗୋଟିଏ ଗୀତ···ଆଉ ଥରେ ସେ ଜୋକ୍‌ଟା ପଢ଼ୁ । ଦୁଇଜଣିଆ ଗୋପନ ସାନ୍ନିଧ୍ୟରେ ସେହି ଭାବର ଅନ୍ୟ ରୂପ,—ଆଉ ଥରେ । ବରଫ ଡାକୁଛି ବଞ୍ଚିବାର ତରଙ୍ଗକୁ ଅଧିକ ବେଗରେ ଖେଳାଇବାକୁ, ବିଶିଷ୍ଟ ଆନନ୍ଦ ଓ ଆକୁଳତା ନେଇ ।

କେଜାଣି କାହିଁକି ମୋର ରଙ୍ଗୀରାଓ ଉପରେ ରାଗ ଆସିଲା । ମନେହେଲା ଯେ ସେ ମୋତେ ଏହି ବରଫଢାଲା ଆନନ୍ଦର ସଭାଘରୁ ଟାଣି ଧରିଛି, ଗୋଟାଏ ଅସୁନ୍ଦର କାମ କରି ତା' ଜାତି ଭାଇଙ୍କୁ ଡାକୁଛି ତା ଆଡ଼କୁ ଅନାଇବାକୁ, ତା' କଥା ଭାବିବାକୁ । ହୁଃ,—ସତେ ଯେପରି ଓ୍ୱାଶିଂଟନ୍‌ରେ ଜଣେ ଭାରତୀୟର ମୃତ୍ୟୁ ପୃଥିବୀର ଗୋଟିଏ ବିରାଟ ଘଟଣା !

ଯାହା ହେଉ ମୁଁ ମୋର ଅସନ୍ତୋଷକୁ ଦମନ କରି ଚଉକିରେ ବସିରହିଲି ଓ ହାତବନ୍ଧା ଘଡ଼ିରେ ଦେଖିଲି ସାହାନୀର ଆସିବାକୁ ଆଉ କେତେ ଡେରି ଅଛି ।

···ଖାଇସାରି କମାନ୍ଦ୍ୱୟରେ ତୃତୀୟ ସିଗାରେଟ୍ ଫୁଙ୍କିସାରିଲା ପରେ ସାହାନୀ ଆସି ପହଞ୍ଚିଲା, ଠିକ୍ ସମୟରେ । ବିଶେଷ ବାକ୍ୟବ୍ୟୟ ନ କରି ମୁଁ ପ୍ରସ୍ତୁତ ହୋଇଗଲି ଯିବା ପାଇଁ । ବାହାରିଲା ବେଳକୁ ସାହାନୀ କହିଲା, "ମିଷ୍ଟର ରାଜନ୍ ଆସି ପାରିଲେ ନାହିଁ, ତାଙ୍କର କଣ ଅସୁବିଧା ଥିଲା ।" ମୁଁ କିଛି ଉତ୍ତର ନ ଦେଇ ଜଣାଇଦେଲି ଯେ

ମୁଁ ଏଥରେ ଖୁସି ନୁହେଁ । ମିଷ୍ଟର ଗ୍ରନ୍ଥନଙ୍କର ଯଦି ଅସୁବିଧା ଥାଇପାରେ, ମୋର ମଧ୍ୟ ଅସୁବିଧା ନ ଥିବାର କୌଣସି କାରଣ ନାହିଁ । ଶ୍ରୀମତୀ ପୁଣି ଥରେ ପଗ୍ଗୁରବସିଲେ, "ସ୍ତ୍ରୀଲୋକମାନେ ଯଦି ସେଠିକି ଯାଉଥାଆନ୍ତି, ତାହାହେଲେ— ।" ମୁଁ ଗୋଟିଏ ଅବଜ୍ଞାସୂଚକ 'ନାହିଁ' କହିଦେଇ ଆଗେଇଗଲି ଦାଣ୍ଡଦୁଆର ଆଡ଼କୁ ।

ସାହାନୀ ଧୀରେ ଧୀରେ କାର୍ ଚଳାଉଥିଲା । ସବୁଥର ତା' ସାଙ୍ଗରେ କାର୍‌ରେ ବସି ଗଲାବେଳକୁ ମୁଁ ଦେଖିଛି ଯେ ସେ ଅବାଧରେ ରେଡ଼ିଓ ଛାଡ଼ିଦେଇ ଥାଏ; ଏଥର ଦେଖିଲି ରେଡ଼ିଓ ବନ୍ଦ ଅଛି । ଭାବିଲି ସାହାନୀ ଜାଣିଶୁଣି ସେପରି କରିଛି, ସଙ୍ଗୀତ ଆଜିକାର ଅବସ୍ଥାରେ ଅଶୋଭନୀୟ । କିନ୍ତୁ ସଙ୍ଗୀତ ନଥିବା ଦ୍ୱାରା ତା'ର ବାର୍ତ୍ତାଳାପ ବଢ଼ିଯାଇଛି, ଉତ୍ତର ବା ଅନୁମୋଦନର ଅପେକ୍ଷା ନ କରି ସେ ଆବଶ୍ୟକ ବିଷୟବସ୍ତୁର ଟିପ୍‌ପଣୀ ଦେଇଯାଉଛି, ମୋର ଜାଣିବା ପାଇଁ । ଯଥା,— ଏ ବର୍ଷ ବରଫ ବେଶୀ ପଡ଼ିବ ବୋଲି ଲାଗୁନାହିଁ, ଆରବର୍ଷ ପ୍ରଥମ ବରଫ ସାତଇଞ୍ଚ ଜମିଯାଇଥିଲା···ମିସେସ୍ ଦାସ କହୁଥିଲେ ପରା ଭଲ ନାଇଲନ୍ ମଗାଇବାକୁ ? ମୁଁ ଭାବୁଛି ନିଉୟର୍କରୁ ନ ମଗେଇ ହଂକଂକରୁ ମଗେଇଲେ ଭଲ ହେବ···ଏପାଖ ଏରିଆରେ ବେଶୀ ନିଗ୍ରୋ ରହନ୍ତି, ଭଲ ଘର ଶସ୍ତାରେ ମିଳିବ, ତେବେ ଆପଣଙ୍କ ପାଇଁ ଏ ସୁବିଧା ହେବ ନାହିଁ···ଆପଣ ତ ଏଇ ମାର୍ଚ୍ଚ ମାସରେ କାଲିଫର୍ଣ୍ଣିଆ ଅଡ଼କୁ ଯିବେ, ଗଲେ ଗ୍ରାଣ୍ଡ କାନିଅନ୍ ଦେଖିଯିବାକୁ ଭୁଲିବେ ନାହିଁ···ଏଇ ଡାହାଣହାତ ଯେଉଁ ରାସ୍ତା ଯାଇଛି, ସେଇଠି ବାନାର୍ଜିର ଘର, ତା'ର ତିନିବର୍ଷ ପୂରିଗଲାଣି ଇଣ୍ଡିଆ ଫେରିଯିବାର କଥା, କିନ୍ତୁ ସେ ଧରାଧରି କରି ଆଉ ବର୍ଷେ ରହିଯାଉଛି···ଇତ୍ୟାଦି । ମୁଁ ତା' କଥା ଶୁଣି ଯାଉଥାଏ, ବେଳେ ବେଳେ ହୁଁ, ହାଁ କହୁଥାଏ ଓ ରାସ୍ତାରେ ଚଳନ୍ତା ବରଫମଖା ଦୃଶ୍ୟ ଦେଖୁଥାଏ ।

ସାହାନୀର କଥା ସରୁନାହିଁ । ଭାବିଲି, ସେ ସବୁ କଥା ଗପୁଛି କିନ୍ତୁ ରଙ୍ଗାରାଓ କଥା ଥରେ ହେଲେ କିଛି କହୁନାହିଁ କାହିଁକି ? ସାହାନୀ ମୋ ମନକଥା ଜାଣିଲା ପରି ରଙ୍ଗାରାଓ କଥା ପକାଇଲା । କହିଲା, "ରଙ୍ଗାରାଓଟି ଭାରି ଭଲ ଲୋକ ଥିଲା । ସମସ୍ତଙ୍କୁ ସାହାଯ୍ୟ କରେ । ଆମେ ତାଙ୍କ ଅଫିସକୁ କିଛି ବିଷୟ ବୁଝିବାକୁ ଗଲେ ସେ କିଛି ଲୁଚାଏ ନାହିଁ, ସବୁ ଫାଇଲ୍ ଆଗରେ ରଖିଦିଏ ।" ସେତେବେଳକୁ ଆମ ବାଟ ସରି ଆସିଥିଲା । ସାହାନୀ ହାତ ଦେଖାଇ କହିଲା, "ଏଇ ହେଉଛି ଲି'ଜ୍ ଫ୍ୟୁନରାଲ ହୋମ୍ । ଏଇଠି ଦାହ ହେବ ।"

ଲି'ଜ୍ ଫ୍ୟୁନରାଲ ହୋମ୍ । ଗ୍ରେଟ ଘରଟିଏ, ପୁରୁଣାକାଳିଆ ଗ୍ରାଞ୍ଚରେ ତିଆରି । ବୋଧହୁଏ ଜଣାଇ ଦେବାକୁ ଚାହେଁ ଯେ ସେ ବହୁଯୁଗରୁ ନୀରବରେ ଲୋକ ସେବା କରି ଆସୁଛି । ନାଲିନେଳି ନିଅନ୍ ଲାଇଟ୍ ନାହିଁ, କେବଳ ନାଁ କଳା

ଅକ୍ଷରରେ ଲେଖା ହୋଇଛି ବାହାର କାନ୍ଥରେ । ଦେଖିବାକୁ ଭଲ ଲାଗିଲା । ଫ୍ୟୁନରାଲ ହୋମ୍ ଏହିପରି ହେବା ଉଚିତ; ମୃତ୍ୟୁର ମହାନତା ଆଗରେ ସଭ୍ୟତାର ଗାରିମା ଶୋଭା ପାଏ ନାହିଁ ।

ଧାଡ଼ି ଧାଡ଼ି କାର୍ ଛିଡ଼ା ହୋଇ ରହିଛି ଘର ଆଗରେ । ସାହାନୀ ଟିକିଏ ଅନେଇ ଦେଇ କହିଲା, "ଏସବୁ ହେଉଛି ଇଣ୍ଡିଆନମାନଙ୍କ କାର୍ ।" ମୁଁ ଅଭିଭୂତ ହେଲି । ଏତେ ଭାରତୀୟ ଭାଇ, ଗୋଟିଏ ପରିବାର । ଜଣକ ସୁଖ ଦୁଃଖରେ ସମସ୍ତେ ବନ୍ଧା । ଆନନ୍ଦ ଜଣାଇ ସାହାନୀକୁ କହିଲି, "ଏତେ ଇଣ୍ଡିଆନ, ଏତେ କାର୍ !" ସାହାନୀ କଥାର ପ୍ରାଧାନ୍ୟ କେଉଁଠି ରହିଲା ବୁଝିପାରିଲା ନାହିଁ । କହିଲା, "ହଁ, ଏଠି ଊଣା ଅଧିକ ସବୁ ଇଣ୍ଡିଆନଙ୍କର କାର୍ ଅଛି ।"

ସାହାନୀର କହିବା ଅନୁଯାୟୀ ଗୋଟିଏ ବଡ଼ ହଲରେ ଯାଇ ଓଭରକୋଟ୍ ଉତାରି ରଖିଦେଲି । ଫେରି ଆସୁଛି ଏହି ସମୟରେ ଦେଖାହେଲା ମିଷ୍ଟର ସାକ୍‌ସେନାଙ୍କ ସାଙ୍ଗରେ । ହସିଦେଇ 'ହ୍ୟାଲୋ' କହିଲି, କିନ୍ତୁ ଦେଖିଲି ସେ ହସୁ ନାହାନ୍ତି, 'ହ୍ୟାଲୋ' କହିବା ତ ଦୂରର କଥା । କଣ ହେଲା ? ଭାବିଲି ବୋଧହୁଏ ସେ ଅନ୍ୟମନସ୍କ, ମୋତେ ଦେଖିପାରି ନାହାନ୍ତି ।

ହଲରୁ ଆସି ଗୋଟିଏ ବାରଣ୍ଡା ଦେଇ ଆଉ ଗୋଟିଏ ପ୍ରଶସ୍ତ କୋଠରୀକୁ ଗଲି । ଦେଖିଲି ଧାଡ଼ି ଧାଡ଼ି ହୋଇ ଚଉକି ପଡ଼ିଛି ଓ କଳା ପୋଷାକ ପିନ୍ଧା ପୁରୁଷ ଓ ସ୍ତ୍ରୀ ଚୁପ୍ ହୋଇ ବସିଛନ୍ତି, କୌଣସି ଗୁରୁତର ଘଟଣାର ଅପେକ୍ଷା କଲାପରି ।

ଘରର ସେମୁଣ୍ଡରେ ଡାକ୍ତରଖାନାର ଷ୍ଟ୍ରେଚର୍ ପରି ଗୋଟିଏ ସରୁ ଲମ୍ବା ଟେବୁଲ ଉପରେ ଜଣେ ମଣିଷ ଘୋଡ଼େଇ ହୋଇ ଶୋଇଲା ପରି ଦିଶୁଛି । ମୁହଁ ଭଲ କରି ଦେଖାଯାଉ ନାହିଁ । ସେହି ନିଶ୍ଚୟ ରଙ୍ଗାରାଓ, ରଙ୍ଗାରାଓର ଶବ ।

ରଙ୍ଗାରାଓର ଶବ । ଭାବିଲାବେଳକୁ ସ୍ୱତଃ ଗୋଟିଏ ଦୀର୍ଘନିଃଶ୍ୱାସ ବାହାରି ଆସିଲା । ମଣିଷର ଶେଷ କଥା । ରଙ୍ଗାରାଓ ବିଦେଶକୁ ଆସିଥିଲା କାହିଁକି,—ମରିବା ପାଇଁ ? ଛାଡ଼ିଯାଉଛି ଯୁବତୀ ସ୍ତ୍ରୀ, କୋଳର ଶିଶୁ । ଏ କେବଳ ମରିବା ନୁହେଁ, ଏହାକୁ ହିଁ କହନ୍ତି ଟ୍ରାଜେଡ଼ି । ମୋର ମନେହେଲା ଯେ ମୁଁ ଜୀବନର ଗୋଟିଏ ସାର୍ଥକ ମୁହୂର୍ତ୍ତ ଅନୁଭବ କରୁଛି । ଟ୍ରାଜେଡ଼ି ଅନୁଭୂତିରେ ନିବିଡ଼ତା ଆଣିଦିଏ, ଜୀବନରେ ଗଭୀରତା । ବିଦେଶରେ ଏହି ଫ୍ୟୁନରାଲ ହୋମ୍, ବରଫବର୍ଷାର ରାତିରେ ଏଇ ଜନସମାବେଶ, ସମ୍ମୁଖରେ ଗୋଟିଏ ଜୀଅନ୍ତା ମଣିଷର ଶବ ବୃନ୍ତଚ୍ୟୁତ ପୁଷ୍ପପରି, ଏ ନୀରବତା, ଏ ଆତ୍ମୀୟତା,—ରଙ୍ଗାରାଓ ଏହାଠାରୁ ଅଧିକ ଆଉ କଣ ଆଶା କରିପାରିଥାଆନ୍ତା ? ଅତି ସୁନ୍ଦର, ଅତି କରୁଣ ଟ୍ରାଜେଡ଼ିର ଛବି ।

ହଠାତ୍ ଜନଗହଳ ଚଞ୍ଚଳ ହୋଇ ଉଠିଲା । ପୋଷାକ, ଜୋତା ଯଥାସ୍ଥାନରୁ ଅଳ୍ପବହୁତ ଘୁଞ୍ଚିଆସିବାର ଶବ୍ଦ ହେଲା । କାରଣ କଅଣ ଖୋଜିବାକୁ ଯାଉଛି, ଏହି ସମୟରେ ପାଖରେ ବସିଥିବା ଭଦ୍ରବ୍ୟକ୍ତି ଜଣକ ଫୁସ୍‌ଫୁସ୍ ହୋଇ କହିଲେ, "ଆମ୍ବାସଡ଼ର୍—ନିଜେ ।" ପଛକୁ ଫେରି ଦେଖିଲି ପ୍ରକୃତରେ ରାଜଦୂତ ଆସୁଛନ୍ତି, ଦେଶର ପ୍ରତିନିଧି ଓ ତାଙ୍କ ପଛରେ ଆଉ ଦୁଇ ତିନିଜଣ । ସେମାନେ ଆମର ବାଟ ଦେଇ ଗଲେ, ଦେଖିଲି ଆମ୍ବାସଡ଼ର୍‌ଙ୍କ ଅନୁସରଣ କରୁଛନ୍ତି ପ୍ରଥମ ସଚିବ ମିଷ୍ଟର ଶାହା ଓ ଦୁଇଜଣ ଦ୍ୱିତୀୟ ସଚିବ । ମିଷ୍ଟର ଶାହାଙ୍କୁ ମୁଁ ଭଲ ଭାବରେ ଜାଣେ । ମୁଁ ବନ୍ଧୁତାର ଖାତିର୍‌ରେ ତାଙ୍କ ଆଡ଼କୁ ଅନେଇ ହସିଦେଲି ଟିକିଏ । କିନ୍ତୁ ଆଶ୍ଚର୍ଯ୍ୟ, ହସର ପ୍ରତିଦାନ ନାହିଁ, ଟିକିଏ ମୁଣ୍ଡ ଟୁଙ୍ଗାରିବା ମଧ୍ୟ ନାହିଁ !

ବୁଝିଲି, କେଡ଼େ ନିର୍ବୋଧ ମୁଁ ! ଆଗରୁ ଜାଣିବା ଉଚିତ ଥିଲା । ଏ ନୀରବ ମୃତ୍ୟୁ ସଭାରେ ମୁଁ କେଉଁ ସାହସରେ ହସିବାକୁ ଗଲି, କୁଶଳ ସମ୍ଭାଷଣ କଲି ? ମିଷ୍ଟର ସାକ୍‌ସେନାଙ୍କ ବ୍ୟବହାର ବୁଝିହେଲା ଏତେବେଳକେ । ନିଜକୁ ଦୋଷୀ ଲାଗିଲା । ଭାବିଲି ମୁଁ ଅତି ଅଗୁଆଁର, ମୃତ୍ୟୁର ସମ୍ମାନ ଦେଇ ଜାଣେ ନାହିଁ ।

ଯାହାହେଉ ତା' ପରଠୁଁ ମୁଁ ନିଜକୁ ସଜାଡ଼ିନେଲି । ହସ ନାହିଁ, ପାଟିଚୁଣ୍ଟ ନାହିଁ, ସିଧାସଳଖ ବସି ଅନେଇ ରହିଲି ସମ୍ମୁଖରେ ଥିବା ରଙ୍ଗାରାଓର ଶବ ଆଡ଼କୁ । ଅନେଇ ରହିଲି ଓ ଅପେକ୍ଷା କଲି, ଅନ୍ୟମାନେ ଯେପରି ଅପେକ୍ଷା କରିଛନ୍ତି । ଆଗରେ ରାଜଦୂତ ଓ ତାଙ୍କ ସଚିବମଣ୍ଡଳୀ, ପଛରେ ଅନ୍ୟମାନେ ।

···ସମୟ ଗଡ଼ି ଚାଲିଲା । ଅନେଇ ରହି, ଅପେକ୍ଷା କରି କରି ମୋର ଭାବନା ଅନୁଚିତ, ଅସଂଗତ ହେବାକୁ ବସିଲା । ଏ ଛବି ସୁନ୍ଦର । କିନ୍ତୁ ଏ କଣ ଷ୍ଟାଣୁ, ଏଥିରେ ମଣିଷ ନାହାନ୍ତି ? ଏ ଶୋକସଭା ଟ୍ରାଜେଡ଼ିର କଳା ମଖମଲରେ ନିଜକୁ ସଜାଇଛି । ରଙ୍ଗାରାଓର ମରିବା ସାର୍ଥକ ହୋଇଛି, ଭାରତୀୟ ଭାରତୀୟଙ୍କୁ ସମୁଚିତ ଶ୍ରଦ୍ଧା ଓ ସମ୍ମାନ ଦେଇଛି । ନିଜେ ଆମ୍ବାସଡ଼ର୍ ଆସିଛନ୍ତି । କିନ୍ତୁ···

କିନ୍ତୁ କଅଣ ? ମୋ ଭିତରୁ କିଏ ଗୋଟାଏ ଅଶ୍ଳୀଳ ବିଦ୍ରୋହୀ ଜବାବ୍ ଦେଲା—ମିସେସ୍ ରଙ୍ଗାରାଓ । ମିସେସ୍ ରଙ୍ଗାରାଓ କାହିଁ ? କାହିଁ ତା'ର ଅସମ୍ଭାଳ ବେଶଭୂଷା ? କାହିଁ ତା'ର ବିକଳ କାନ୍ଦଣା ?—'ନିଅ ନାହିଁ, ନିଅ ନାହିଁ ତାଙ୍କୁ··· ମୁଁ ମରିଯିବି, ବଞ୍ଚି ପାରିବି ନାହିଁ···ମୋତେ ଗ୍ରୁଡ଼ବାଇ ଗ୍ରୁଡ଼ବାଇ କହୁଛି··· ।' ମୁଣ୍ଡ ବାଡ଼େଇ ହୋଇ ଫୁଲି ଯାଇଛି, ପାଟିରୁ ଲାଳ, ନାକରୁ ପାଣି ବହିଚାଲିଛି । ଶୋକ ସମ୍ଭ୍ରମକୁ ଜିଣି ଦେହକୁ ଅନାବୃତ କରି ଦେଖାଉଛି, ଅସୁନ୍ଦର କରି ଦେଖାଉଛି । ଜଣାଇ ଦେଉଛି ଯେ ଏ ଦେହ ଆଉ ନାରୀର ଦେହ ନୁହେଁ, ଯୌବନର ଦେହ

ନୁହେଁ, ଏ ଦେହ ଯାଇଛୁ ତାଙ୍କ ସାଙ୍ଗରେ । ଆଉ କିଛି ନାହିଁ, ସବୁ ସରି ଯାଇଛି ।

କାହିଁ ସେହି ମିସେସ୍ ରଙ୍ଗାରାଓ—ଶୋକାତୁରା ସ୍ୱାମୀହରା ତରୁଣୀ ସ୍ତ୍ରୀ ?

ମୁଁ ସେହି ବିଦ୍ରୋହକୁ ମାନିଲି ନାହିଁ । ମିସେସ୍ ରଙ୍ଗାରାଓର ଶୋକ ଅଛି, ଗଭୀର ଶୋକ—ନଥିବ କେମିତି ? କିନ୍ତୁ ସେ ଶିକ୍ଷିତା, ବୁଦ୍ଧିମତୀ । ତା' ଶୋକରେ ମର୍ଯ୍ୟାଦା ଅଛି, ସଂଯମ ଅଛି । ତା'ର ଦୁଃଖ ତା'ର ନିଜର । ସେ ତାକୁ ଦେଇ ଏ ସୁନ୍ଦର ସମବେତ ଦୁଃଖରେ ଆଞ୍ଚ ଲଗାଇବାକୁ ଯିବ ନାହିଁ । ଲି'ଜ୍ ଫ୍ୟୁନେରାଲ ହୋମ୍‌ର ପରମ୍ପରା ନଷ୍ଟ କରିଦେବ ନାହିଁ ।

ହେଲେ ମିସେସ୍ ରଙ୍ଗାରାଓ କାହିଁ ? କାହାକୁ ପଚାରିବାକୁ ସାହସ ହେଲା ନାହିଁ । ସେ ଯେଉଁଠି ହେଲେ ଥିବ ଏହି ସଭା ମଝିରେ—ଜାଣିକରି ଲାଭ କ'ଣ ?

ବେଳ ବଢ଼ିଲା । ଘଣ୍ଟାରେ ଦେଖିଲି ବାରଟା ବାଜିଲାଣି ଡେରି କାହିଁକି ? କେଉଁଥିପାଇଁ ଅପେକ୍ଷା କରିଛନ୍ତି ସମସ୍ତେ ? ଦେଖିଲି କେତେଜଣ ଘନ ଘନ ଘଣ୍ଟା ଦେଖି ଚାହିଁଛନ୍ତି । ମୋ ପାଖରେ ବସିଥିବା ଭଦ୍ରଲୋକଜଣକ ଆଖିବୁଜି ମୁଣ୍ଡ ତଳକୁ କରିଛନ୍ତି । ଆଗରେ ଜଣେ ସ୍ତ୍ରୀ ଲୋକ ଆଖି ଅଳ୍ପ ବୁଜି ପୁଣି ଖୋଲି ଜଳ ଜଳ ହୋଇ ଚାହୁଁଛନ୍ତି—କେହି ଦେଖିପାରିଲି କି ? କିଛି ଘଟିଲା କି ? ସର୍ବପ୍ରଥମ ଧାଡ଼ିରେ ବସିଥିବା ଲୋକମାନଙ୍କ ମଧ୍ୟରୁ ଜଣେ ଉଠିଆସି ଏଆଡ଼େ ଆସୁଛନ୍ତି, ସମ୍ଭବତଃ ଦ୍ୱିତୀୟ ସଚିବ ମିଷ୍ଟର କୁଲକାର୍ଣ୍ଣୀ । ସେ ମୋ ବାଟ ଦେଇ ବାରଣ୍ଡାକୁ ଯାଇ ଆଉ କାହା ସାଙ୍ଗରେ ଧୀରେ ଧୀରେ କଥାବାର୍ତ୍ତା କରୁଛନ୍ତି । ମୁଁ ଭାବିଲି ଯେ କିଛି ଗୋଟାଏ ଘଟିବାକୁ ଯାଉଛି ।

ଉଠିଯାଇ ବାରଣ୍ଡାକୁ ଯିବି କି ନାହିଁ ଭାବୁଛି ଏହି ସମୟରେ ଘର ଭିତରକୁ ପଶି ଆସିଲେ ଜଣେ ଦୀର୍ଘକାୟ ସୁପୁରୁଷ, କାହାରି ଆଖିରେ ନ ପଡ଼ିବା ନାହିଁ । ଦେଖିଲି ଭାରତ ଅଫିସ୍‌ର ଜନୈକ କର୍ତ୍ତା,—ଶ୍ରୀଯୁକ୍ତ ରଘୁନନ୍ଦନ ମିଶ୍ର । ଆଜିକାର ଏ ମୁହୂର୍ତ୍ତରେ ମଧ୍ୟ ସେ ଚାଲିଛନ୍ତି ଗାରଦର୍ପରେ, ଦୁଇ ବାହୁ ଦୋଳାୟମାନ, ସଜାଗ ସମ୍ମୁଖ ଚାହାଣୀ । ତାଙ୍କ ସାଙ୍ଗରେ ମୋର ଥରେ ଦୁଇଥର ଦେଖା ହୋଇଛି ପାର୍ଟିରେ । ପ୍ରଥମ ଦେଖାରେ ସେ ମୋତେ କହିଲେ ସେ ଜଣେ ପ୍ରଫେସର ଥିଲେ, ନିରାଟ ମସ୍ତିଷ୍କ ବିକୃତ ହୋଇ ନ ଥିଲେ ସେ ସରକାରୀ କଲମପେଷା ଚାକିରୀକୁ ଆସି ନ ଥାଆନ୍ତେ···ଅବଶ୍ୟ ଆର୍ଥିକ ଦୃଷ୍ଟିରେ ଦେଖିବାକୁ ଗଲେ···ହେଲେ ଟଙ୍କାଟା କ'ଣ ବଡ଼ କଥା ? ···ଇତ୍ୟାଦି । ଲୋକ ମୁଖରେ ଶୁଣାଯାଏ ଯେ ମିଷ୍ଟର ମିଶ୍ରଙ୍କ ବାପା ବାରାଣସୀର ଜଣେ ବିଖ୍ୟାତ ପଣ୍ଡିତ ଥିଲେ, ମିଷ୍ଟର ମିଶ୍ର ମଧ୍ୟ ଜଣେ ସଂସ୍କୃତ

ବିଶାରଦ, ସେ ବିଦେଶରେ ସଂସ୍କୃତ ମନ୍ତ୍ର ପଢ଼ି ବିବାହ କରାଇ ପାରନ୍ତି । ହୋଇଥିବ, କାରଣ ଥରେ ମୁଁ ଦେଖିଛି ସେ ଗୋଟିଏ କକ୍‌ଟେଲ ଗିଲାସ ସାରିବା ଭିତରେ ଅଭିଜ୍ଞାନ ଶକୁନ୍ତଳମ୍‌ର ବଛା ବଛା ଶ୍ଳୋକ ଦଶବାରଟି ଉଦ୍ଧାର କରିପାରିଲେ ଓ ତା' ଛଡ଼ା ବେଦର ମାହାତ୍ମ୍ୟ ବୁଝାଇ ପାରିଲେ ।

ପୂର୍ବରୁ କୌଣସି ସୂଚନା ନ ଦେଇ ମିଷ୍ଟର ମିଶ୍ର ରଙ୍ଗାସ୍ୱାମୀଙ୍କର ଶବ ପାଖରେ ଛିଡ଼ା ହୋଇଗଲେ ଓ ପ୍ରଣାମ କରିବା ଉଦ୍ଦେଶ୍ୟରେ ମୁଣ୍ଡକୁ ଈଷତ୍ ତଳକୁ କଲେ । ଆମ୍ବାସଡ଼ର୍‌ଙ୍କ ସହିତ ଆମେ ସମସ୍ତେ ଛିଡ଼ା ହୋଇଗଲୁ । ତା'ପରେ ସେ ଆରମ୍ଭ କଲେ ଗମ୍ଭୀର ସ୍ୱରରେ,—

"ଓମ୍ ତତ୍ ସତ୍
ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତଃ
ଅଭ୍ୟୁତ୍‌ଥାନଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ··· ।"

ସମସ୍ତେ ଶୁଣି ରହିଛନ୍ତି ନିର୍ନିମେଷ ନୟନରେ । ପର ଶ୍ଳୋକ :—

"ଜାନାମି ଧର୍ମଂ ନଚ ମେ ପ୍ରବୃତ୍ତିଂ
ଜାନାମ୍ୟ ଧର୍ମଂ ନଚ ମେ ନିବୃତ୍ତିଂ
ତ୍ୱୟା ହୃଷୀକେଶ ହୃଦି ସ୍ଥିତେନ
ଯଥା ନିଯୁକ୍ତୋସ୍ମି ତଥା କରୋମି··· ।"

ଏହିପରି ଶ୍ଳୋକ ଚାଲିଲା ଦଶ ମିନିଟ ଧରି । ଶ୍ଳୋକଗୁଡ଼ିକର ପାରସ୍ପରିକ ସମ୍ପର୍କ କିମ୍ବା ସେଗୁଡ଼ିକ ଦାହକ୍ରିୟା ଉପଯୋଗୀ କି ନୁହେଁ, ସେ ବିଷୟରେ ନିଜକୁ ଅଥବା ଅନ୍ୟମାନଙ୍କୁ ପ୍ରଶ୍ନ ପଚାରିବାର ପ୍ରଗଲ୍‌ଭତା ମୋର ନଥିଲା । ମିଷ୍ଟର ମିଶ୍ର ଜାଣନ୍ତି । ଆମେମାନେ କେହି ଜାଣିନାହୁଁ । ମିଷ୍ଟର ମିଶ୍ର ନ ଥିଲେ ରଙ୍ଗାସ୍ୱାମୀଙ୍କର ଶବ ଶାସ୍ତ୍ରକ୍ରିୟାରହିତ ହୋଇ ପୋଡ଼ା ହୋଇ ଥାଆନ୍ତା । ଲି'ଜ ଫ୍ୟୁନରାଲ ହୋମ୍‌ର ଅଣ୍ଡର୍‌ଟେକର ଭାବିଥାଆନ୍ତା ଯେ ଏମାନଙ୍କର ଫ୍ୟୁନରାଲ ସର୍ଭିସ ନାହିଁ, ଅତଏବ ଏମାନଙ୍କର ଧର୍ମରେ ରୁଚିଜ୍ଞାନ ନାହିଁ, ଏମାନେ ମୃତକୁ ସମ୍ମାନ ଦେଇ ଜାଣନ୍ତି ନାହିଁ । ମିଷ୍ଟର ମିଶ୍ର ଆମର ମାନ ବଞ୍ଚାଇ ଦେଲେ ।

ଶ୍ଳୋକପାଠ ପରେ ମିଷ୍ଟର୍ ପୁଣି ଥରେ ମୁଣ୍ଡ ଝୁଙ୍କାଇଲେ ପ୍ରଣାମ କଲା ପରି ଓ ଦ୍ରୁତଗତିରେ ଆଗେଇ ଆସି ପ୍ରଥମ ଧାଡ଼ିର ଗୋଟିଏ ଚଉକିରେ ବସି ପଡ଼ିଲେ । ଆମେ ସବୁ ବସିଗଲୁ । ଫେରଯାଉଥିବା ଲହରୀର ମର୍ମର ପରି ଲୋକମାନଙ୍କର ଅର୍ଦ୍ଧସ୍ଫୁଟ ସମବେତ ଶବ୍ଦ ଶୁଣିବାକୁ ମିଳିଲା—ଉତ୍‌କଣ୍ଠା ଓ ଚଞ୍ଚଳତାର ଶବ୍ଦ, ଏଥର ଦୃଶ୍ୟ ବଦଳି ଯିବ, ଘଟଣା ଘଟିବ, କାମ ବଢ଼ିବାକୁ ଆଉ ବେଶି ଡେରି ନାହିଁ ।

ଅଳ୍ପ ସମୟ ପରେ ଦୁଇଜଣ ଲୋକ ଆସି ରଙ୍ଗାସ୍ୱାମୀଙ୍କର ଶବ ସମେତ ଷ୍ଟ୍ରେଚରକୁ ଗଡ଼େଇ ନେଲେ ସେ ଘର ଭିତରୁ । ଦାଙ୍ଗରେ ଗ୍ଳଥାଆନ୍ତି ଜଣେ ଗୋରା ଲୋକ, ଅଣ୍ଡରଟେକର୍ ହେବେ ପରା । ଏଥର ବୋଧହୁଏ ଶେଷ କାମ, ଶବ ଦାହ ।

ଶବ ଯିବା ସାଙ୍ଗେ ସାଙ୍ଗେ ପ୍ରାୟ ସମସ୍ତେ ଛିଡ଼ା ହୋଇ ଘରୁ ବାହାରିବାକୁ ଲଗିଲେ । ଏଥର କଥାବାର୍ତ୍ତାରେ ବାଧା ନାହିଁ,—ଅବଶ୍ୟ ବଡ଼ ପାଟିରେ ନୁହେଁ,—ଯଥା, 'ଫ୍ୟୁନେରାଲ୍ ତ ଦୁଇମିନଟ୍ର କଥା, ଶବକୁ ମେସିନରେ ରଖି ସୁଇଚ ଟିପିଦିଅ, ବାସ୍···ଏତେ ଡେରି ହୋଇ ନଥାଆନ୍ତା, ମିଷ୍ଟର ମିଶ୍ର କୁଆଡ଼େ କେଉଁ ଡିନର ପାର୍ଟିକୁ ଯାଇଥିଲେ··ବାହାରେ ପୁଣି ବରଫ ପଡ଼ିବା ଆରମ୍ଭ ହୋଇଗଲାଣି । କାଲି ଅଫିସ ନ ଥାଆନ୍ତା କି···ଅମ୍ବାସଡ଼ର କଣ ଶେଷଯାଏଁ ରହିବେ ?··· ଇତ୍ୟାଦି । ମୁଁ ମନ୍ଥର ଗତିରେ ଅନ୍ୟମାନଙ୍କ ପଛେ ପଛେ ଗ୍ଳଲୁଛି ଶବଦାହ ଦେଖିବା ପାଇଁ । ଏଇ ସମୟରେ ଦେଖିଲି ଯେ ଘର ଭିତରେ ଥୋକେ ବସି ରହିଛନ୍ତି ସେମିତି । ଦୁଇଜନ-ଙ୍କ ଛଡ଼ା ସମସ୍ତେ ଭଦ୍ରମହିଳା, ସେମାନଙ୍କ ଭିତରୁ କେତେଜଣ ଉଠିଯାଇ ଲଗା-ଲଗି ହୋଇ ବସୁଛନ୍ତି ଆଗ କେତୋଟି ଧାଡ଼ିର ଚଉକିରେ । କାରଣ କଅଣ ? ସ୍ତ୍ରୀ ଲୋକମାନଙ୍କର କଅଣ ଶବଦାହ ଦେଖିବା ମନା ?

ହଠାତ୍ ସେହି ସ୍ତ୍ରୀ ଲୋକମାନଙ୍କ ମଧ୍ୟରୁ ଜଣେ କେହି ପାଟି କରି ଉଠିଲା ପରି ଲଗିଲା । ମୁଁ ଅମନା ହୋଇଗଲି । ନା, ଏ ଚିତ୍କାର ନୁହେଁ, କାନ୍ଦଣା । ବଳାପର ସ୍ୱର, ମାଟିଫୁଟା ଝରଣା ପରି ହଠାତ୍ ବାହାରି ଆସି ଭୂଇଁରେ ଲୋଟିଯାଉଛି । ଗୋଟିଏ ତୀବ୍ର କରୁଣ ଧ୍ୱନି, ଗୋଟିଏ ଝଙ୍କାର ଥରି ପବନ ଚହଲାଇ ଦେଇ ରହି-ଯାଉଛି ନିଜ ଭିତରେ । ସେହି ଯେପରି ତା'ର ଅସମ୍ଭାଳ ଆବେଦନ,—ପହିଲି ଓ ଶେଷ । ହାତରେ ମୁହଁ ଘୋଡ଼େଇ, ମୁଣ୍ଡ ତଳକୁ କରି ସେ କାନ୍ଦୁଛି, ନିଜକୁ ନିଜେ । ମନେ ହେଉଛି ସେ ଜଣାଇବାକୁ ଗ୍ଳହେଁ—ନା, ମୋର ଭୁଲ ହୋଇଗଲା, ମୁଁ ଆଉ କାନ୍ଦିବି ନାହିଁ, ଆଉ କାନ୍ଦିବି ନାହିଁ ।

ବୁଝିବାକୁ ବାକି ରହିଲା ନାହିଁ ସେ ଝିଅଟି କିଏ । ସେହି ହେଉଛି ମିସେସ୍ ରଙ୍ଗାସ୍ୱାମୀ । ସେହି ଗ୍ଳେଟ ପାତଳୀ ଝିଅକୁ ମୁଁ ଦେଖିଥିଲି ବାର୍‌ଗେନ୍ ସିଟି ଡ଼ିପାର୍ଟମେଣ୍ଟ ଷ୍ଟୋର୍‌ରେ ।

ଓଃ ! ତୋର ସେ ଦୁଃଖ,—କିଏ ନେଇ ପାରିବ ତାକୁ ? କେତେ ସହିଲୁ, ସମ୍ଭାଳିଲୁ , ଆଉ ପାରିଲୁ ନାହିଁ ! ଦେଖିଲି ଜଣେ ଦୁଇଜଣ ଭଦ୍ରମହିଳା ନୀରବରେ ଲୁହ ପୋଛୁଛନ୍ତି । କେହି ଜଣେ ବୟସ୍କା ଭଦ୍ରମହିଳା ଛିଡ଼ା ହୋଇ ଝିଅଟିର ମୁଣ୍ଡ ବାଳକୁ ହାତରେ ଆଉଁସୁଛନ୍ତି, ଅତି ଧୀରେ, ଆଶ୍ୱାସନା ଦେଲା ପରି ।

ଗଭୀର ସମବେଦନା ନେଇ ମୁଁ ଦେଖୁଥାଏ ମିସେସ୍ ରଙ୍ଗାରାଓଙ୍କୁ, ଯିବା ବାଟରେ ଅଟକ ରହିଯାଇଥାଏ । ରଙ୍ଗାରାଓ ଗୁଳିଯାଇଛନ୍ତି, ତା'ର ଶବ ପୋଡ଼ା ହେବ । କିନ୍ତୁ ଏ ସ୍ତ୍ରୀଅର ଅବସ୍ଥା କଅଣ ହେବ ? ଯାହାହେଉ ପାଠଶାଠ ପଢ଼ିଛି, ଭାରତ ଫେରିଯାଇ ନିଜ ଅର୍ଜନରେ ପିଲାକୁ ପାଠ ପଢ଼େଇ ମଣିଷ କରିପାରିବ । ଭାରତୀୟା ନାରୀ । ଦୁଃଖ କଷ୍ଟ ସହି ସେ ସମାଜରେ ନିଜକୁ ବଡ଼ କରି ରଖି ପାରିବ ।

ସମବେଦନା,—କେଉଁ ଧାତୁରେ ତିଆରି ? ବେଳେ ବେଳେ ଅନ୍ୟର ଦୁଃଖ ଦେଖିଲେ ଛଟପଟ ଲାଗେ, ଇଚ୍ଛା ହୁଏ ଭାବିବାକୁ ଯେ ତା'ର ଅସ୍ତିତ୍ୱ ନ ଥାଆନ୍ତା କି । ପୁଣି ବେଳେ ବେଳେ ଅସହାୟ ଲାଗେ, ଯେ ମୁଁ ହୁଏତ କିଛି କରିପାରି ଥାଆନ୍ତି, କରିପାରୁ ନାହିଁ । କିନ୍ତୁ ଆଜିର ଏହି ସମବେଦନାରେ ମୋର ଗୋଟିଏ ନୂଆ ଭାବ ଆସିଲା । ମୋତେ ଭଲ ଲାଗିଲା । ମନେ ହେଲା ଯେ ମିସେସ୍ ରଙ୍ଗାରାଓ ଗୋଟିଏ କଳା-ଚିତ୍ରର ଶେଷ ଅଂଶ ପୂରଣ କରିପାରିଛନ୍ତି । ମିସେସ୍ ରଙ୍ଗାରାଓ କାନ୍ଦୁଛନ୍ତି ଠିକ୍ ଯେତିକି କାନ୍ଦିବାର କଥା, ଯେଉଁ ମୁହୂର୍ତ୍ତରେ କାନ୍ଦିବାର କଥା । ଆଉ ତା'ର ସେ କାନ୍ଦଣା ବିକଳ ଅସନା କାନ୍ଦଣା ନୁହେଁ, ସେଥିରେ ରୁଚି ଅଛି, ଶୀଳତା ଅଛି । ବ୍ୟସ୍ତ ଲାଗୁନାହିଁ, ଇଚ୍ଛା ହେଉଛି ସେହି ଭଦ୍ରମହିଳାଙ୍କ ପରି ପାଖକୁ ଯାଇ ମୁଣ୍ଡ ଆଉଁସି ଦେବାକୁ ।

ମିସେସ୍ ରଙ୍ଗାରାଓ ଲୁହଧୁଆ ଆଖିରେ ମୁଣ୍ଡ ଟେକିଲା । ଛିଡ଼ା ହୋଇଥିବା ଭଦ୍ରମହିଳା ଅଳ୍ପ ମୁହଁ ଫେରାଇଲେ । ମୁଁ ଦେଖିଲି ଯେ ତାଙ୍କର ବେଶଭୂଷା ଉଚ୍ଚ ଦରର, ନିଶ୍ଚୟ କେଉଁ ସମ୍ମାନ ସ୍ଥାନୀୟ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ସ୍ତ୍ରୀ ହୋଇଥିବେ । ତାଙ୍କୁ କେଉଁଠି ଦେଖିଛି ବୋଲି ମନେ ପକାଇବାକୁ ଚେଷ୍ଟା କରୁଛି, ଏହି ସମୟରେ ଆମ୍ବାସଡ଼ର୍ଙ୍କ ସହିତ ଦଳେ ଲୋକ ଘର ଭିତରକୁ ପଶି ଆସିଲେ ଓ ଭଦ୍ରମହିଳା ଧୀର ପଦକ୍ଷେପରେ ଆମ୍ବାସଡ଼ର୍ଙ୍କ ପାଖକୁ ଲାଗି ଆସିଲେ । ମୁହଁରେ ବିଷାଦ ଓ ଆତ୍ମ ସନ୍ତୋଷର ଭାବ । ଆମ୍ବାସଡ଼ର୍ଙ୍କ ସ୍ତ୍ରୀ, ସନ୍ଦେହ ନାହିଁ । ମୋର ମୁକ୍ତ କଣ୍ଠରେ ପ୍ରଶଂସା କରିବାକୁ ଇଚ୍ଛା ହେଲା—ତାଙ୍କୁ ଓ ମିସେସ୍ ରଙ୍ଗାରାଓଙ୍କୁ ।

ଭିଡ଼ ବଢ଼ିଲା । ଘର ଭିତରେ ଲୋକ ହାଉଜାଉ ହେଲେଣି । ସାହାନୀ କୁଆଡ଼ୁ ଆସି ପାଖରେ ପହଞ୍ଚିଯାଇ କହିଲା, "ଯିବା ଏଥର ? ସମସ୍ତେ ବାହାରିଲେଣି । ଆପଣ ଫ୍ୟୁନରାଲ ଦେଖିବାକୁ ଗଲେ ନାହିଁ ? ଦେଖିବା କଥା । ଇଲେକଟ୍ରିକ୍ ମେସିନ, ଦୁଇମିନଟ୍‌ରେ ସବୁ ପୋଡ଼ି ଭସ୍ମ କରିଦେବ ।" ମୁଁ ନିରୁତ୍ତର ହୋଇ ସାହାନୀ ସାଙ୍ଗରେ ଫେରିବା ପାଇଁ ବାହାରିଲି, ଅନ୍ୟମାନଙ୍କ ପରି ।

ଫେରିବା ବାଟରେ ଦେଖିଲି ଯେ ବରଫ ଧୀରେ ସୁସ୍ଥେ ପଡ଼ୁଛି, ଅଳ୍ପ ଅଳ୍ପ ପରି । କିନ୍ତୁ ଘର, ରାସ୍ତା, ଗଛପତ୍ର ସବୁ ବରଫରେ ଢାଙ୍କି ହୋଇଗଲାଣି । ଫୁଲ-

ପତ୍ରବିହୀନ ଗଛମାନଙ୍କରେ ବରଫରୂପା ଗୁଡି ହୋଇଯାଇଛୁ ଏବଂ ପତ୍ରର ଥିବା ଗ୍ରୀନ୍ ଗଛମାନଙ୍କରେ ବରଫତୁଳା ଝୁଲି ହୋଇଯାଇଛୁ, ଝୋଲ ଯାଇଥିବା କପାଫଳ ପରି । ଅବିଚ୍ଛିନ୍ନ ଶୁଭ୍ରତାରେ ଠାଏଁ ଠାଏଁ ଆଲୁଅର ଛଟା, ଦୋକାନ-ବଜାରର ନାଲିନେଲି ନିଅନ୍ ଲାଇଟ୍ । ବହୁତ ସମୟ ଚୁପ୍‌ଚାପ୍ ବସିଲା ପରେ ମୁଁ ସାହାନୀକୁ ପଚାରିଲି, "ମିସେସ୍ ରଙ୍ଗାରାଓ କେବେ ଇଣ୍ଡିଆକୁ ଫେରୁଛୁ ? ଛଅମାସ ଭିତରେ ଫେରିଲେ ସରକାର ଖର୍ଚ୍ଚ ଦେବ—ନାଁ ?"

"ମିସେସ୍ ରଙ୍ଗାରାଓ ଫେରିବ ନାହିଁ ଇଣ୍ଡିଆକୁ ।"

ମୁଁ ସାହାନୀର ଉତ୍ତର ପ୍ରଥମେ ବୁଝିପାରିଲି ନାହିଁ । ପଚାରିଲି, "ଫେରିବ ନାହିଁ ? ମାନେ ?"

ସାହାନୀ ବୋଧହୁଏ ଭାବିପାରିଲା ନାହିଁ ଯେ ମୋର ନ ବୁଝିବାର କାରଣ କଣ ହୋଇପାରେ । କିଛି ସମୟ ରହିଯାଇ ଦୃଢ଼ ଭାବରେ କଥାର ଦ୍ୱିରୁକ୍ତି କଲା, "ସେ ଯିବ ନାହିଁ । ମୁଁ ଜାଣେ । ସେଦିନ ଟାଓ୍ୱାର୍‌ସରେ ସିଲକ ନାଇଲନ୍‌ର ସେଲ ହୋଇଥିଲା । ମିସେସ୍ ରଙ୍ଗାରାଓ ଯାଇଥିଲା, ମୋ ସ୍ତ୍ରୀଙ୍କ ସାଙ୍ଗରେ ଦେଖା ହେଲା । କଥା ପଡ଼ୁ ପଡ଼ୁ କହିଲା ଯେ, ଯଦି ସ୍ୱାମୀଙ୍କର କିଛି ହୋଇଯାଏ, ସେ ଇଣ୍ଡିଆ ଫେରିବ ନାହିଁ ।"

"କାହିଁକି ? ଇଣ୍ଡିଆରେ କଣ ତା'ର କେହି ନାହାନ୍ତି ? ଏଠି ଟାଇପିଷ୍ଟ କାମ କରି କେତେଦିନ ଚଳେଇବ ନିଜକୁ ?"

ସାହାନୀ ଧୈର୍ଯ୍ୟର ସହିତ ମୋତେ ବୁଝାଇବାକୁ ଚାହିଁଲା, କିନ୍ତୁ ତା' କଥାରେ ତେଜ, ଅସହିଷ୍ଣୁତା ଆସିଯାଇଥାଏ । କହିଲା, "ଅଛନ୍ତି, ସମସ୍ତେ ଅଛନ୍ତି । ବାପ ମାଆ, ଶାଶୂ ଶ୍ୱଶୁର, ଭାଇ ଭଉଣୀ ସମସ୍ତେ ଅଛନ୍ତି । ହେଲେ ଆପଣ ବୁଝୁନାହାନ୍ତି,— ତା'ର କଣ ଲାଭ ହେବ ସେଠିକି ଯାଇ ? ଏଠିକା ସୁବିଧା ସେ ପାଇବ ନାହିଁ । ମାଡ୍ରାସର କେଉଁ ଅପଲିରେ ପଡ଼ିବ ଯାଇଁ—କଣ ଦେଇ ତା' ପିଲାକୁ ମଣିଷ କରିବ ?

ଆଉ ପ୍ରଶ୍ନ ପଚାରିଲି ନାହିଁ । ମୁଁ କିଏ ପଚାରିବାକୁ ? ମିସେସ୍ ରଙ୍ଗାରାଓ ତା' ଭଲମନ୍ଦ କଥା ମୋଠୁଁ ବେଶି ଜାଣେ ।

...ସେଦିନ ରାତିପାହାନ୍ତା ବେଳକୁ ମୁଁ ଗୋଟାଏ ଅଦ୍ଭୁତ ସ୍ୱପ୍ନ ଦେଖିଲି, ଯେ ମୋତେ କେତେଜଣ ବରଫ ଶେଯରେ ଶୋଇ ଦେଉଛନ୍ତି । ମୋର ଆଖି ବୁଜି ବୁଜି ହୋଇ ଆସୁଛି, କିନ୍ତୁ ମୁଁ ଉଠିବସି ପାଟି କରୁଛି,—'ନା ନା, ମୁଁ ଏଠି ବରଫରେ ମରିବି ନାହିଁ । ମୋ ପାଇଁ ନିଆଁ ଆଣିଦିଅ, ଚିତା ଆଣିଦିଅ । ଆମ୍ବାସଡ଼ରଙ୍କ ସ୍ତ୍ରୀ

ମୋର କପାଳରେ ହାତ ବୁଲାଇ ଶୁଆଇ ଦେଉଛନ୍ତି । ତାଙ୍କ ସ୍ନିଗ୍ଧହାସ୍ୟରେ ଆଶ୍ୱାସନା ଦେଉଛନ୍ତି,—'କାହିଁକି ବ୍ୟସ୍ତ ହେଉଛ ? ଡରିବାର କିଛି କାରଣ ନାହିଁ, ସବୁ ଠିକ୍ ହୋଇଯିବ ।' ପାଖରେ ଛିଡ଼ା ହୋଇଛନ୍ତି ମୋର ଶ୍ରୀମତୀ ଓ ମିସେସ୍ ରଙ୍ଗାରାଓ । ମୋର ମନୋଭାବ ବୁଝିପାରିଲା ପରି ପରସ୍ପରକୁ ଚାହିଁ ମୁଣ୍ଡ ହଲାଉଛନ୍ତି, ଗମ୍ଭୀର ହୋଇ ।

ମୋର ନିଦ ଭାଙ୍ଗିଲା ବେଳକୁ ଦେଖେ ଯେ ଶ୍ରୀମତୀ ସକାଳର ଖବରକାଗଜ ଧରି ବସିଛନ୍ତି ଖଟ ଉପରେ । ମୋର ଉଠିବା ଦେଖି ମୋ ଆଡ଼କୁ ଚାହିଁ କହିଲେ, "ବୁଝିଲ, କାଗଜରେ ବାହାରିଛି, ଜର୍ଜ ଓ୍ୱାଶିଙ୍ଗଟନ୍ ଜନ୍ମଦିନ ସେଲ୍‌ରେ ସିଲଭର୍ ପ୍ଲେଟେଡ୍ କଣ୍ଡାଗ୍ରମୁଚ କାନ୍‌ସ ଦୋକାନରେ ମିଳିବ, ବହୁତ ଶସ୍ତା ଦରରେ । ବାର-ଜଣିଆ ସେଟ ମୋଟେ ପଚିଶ ଡଲାର୍...... ।"



# ଆମରି ଭିତରୁ ଜଣେ

ମୋର ପ୍ରଥମ ଗଳ୍ପ ସଂକଳନ "ଭଙ୍ଗା ଖେଳଣା" ପ୍ରକାଶିତ ହେବାର ସାତବର୍ଷ ପରେ ପ୍ରକାଶ ପାଇଲା "ଘର ବାହୁଡ଼ା"। ଏହି ଦୀର୍ଘ ବ୍ୟବଧାନର ଅନ୍ୟତମ କାରଣ ହେଉଛି ମୋର ବିଦେଶ ରହଣି ଓ ବିଦେଶରୁ ଫେରି ନିଜକୁ ସଜାଡ଼ିବାର ଦାୟିତ୍ୱମୟ ଦୁଃଖ। ଯାହାହେଉ ଫେରିଲା ପରେ ପରେ ସେଠିକାର ପଟ୍ଟଭୂମି ତଥା ପୃଷ୍ଠଭୂମିରେ ଲେଖା ହୋଇଥିବା ଏଇ ଛଅଟି ଗଳ୍ପର ସମାହାର; ପ୍ରଥମଟିର ନାଆଁ "ଆମରି ଭିତରୁ ଜଣେ"। ଭାଷାନ୍ତର କରିବାକୁ ଯାଇ ମୁଁ ଗଳ୍ପର ନାଆଁ ସ୍ୱେଚ୍ଛାରେ ବଦଳେଇ ଦେଇଛି। ବଙ୍ଗଳାରେ "ଜନୈକ ଭାରତୀୟର ମୃତ୍ୟୁ" ଇଂରେଜିରେ "Death of an Indian"।

ଗଳ୍ପଟିର ପ୍ରଥମ ପୁରୁଷ ନିଜେ ଲେଖକ ବୋଲି ମନେ ହେଉଛି। ଅନୁମାନ ସତ। ମୁଁ ସପରିବାର ଆମେରିକାର ରାଜଧାନୀ ଓ୍ୱାଶିଙ୍ଗଟନ୍ ଡି. ସି.ରେ ପହଞ୍ଚିବାର ମାସେ ଦୁଇମାସ ମଧ୍ୟରେ ଭାରତୀୟ ଦୂତାବାସରେ କାମ କରୁଥିବା ଜଣେ କର୍ମଚାରୀଙ୍କର ମୃତ୍ୟୁ ଘଟିଥିଲା, ଏବଂ ମୁଁ ତାଙ୍କ ଶବଦାହ ସମାରୋହରେ ଯୋଗ ଦେବାକୁ ଯାଇଥିଲି। ଏବଂ ଯିବା ପୂର୍ବରୁ ଓ ଯିବା ବାଟରେ ମୁଁ ମୋ ଜୀବନରେ ପ୍ରଥମ ବରଫବର୍ଷାର ଦୃଶ୍ୟ ଦେଖି ମୁଗ୍ଧ ହୋଇଥିଲି। ତେଣୁ ହସନ୍ତୁ ନାହିଁ ଯେ ସେଦିନ ରାତିର ସ୍ୱପ୍ନରେ ମୋତେ ଅଯଥାରେ ବରଫ ଉପରେ ଶୁଆଇ ଦିଆଗଲା, ଏବଂ ମୁଁ ମିଛୁଟାରେ ଚହଁକି ଉଠିଲି, ମୋତେ ଚିତା ଆଣିଦିଅ ବୋଲି ପାଟି କରି ଉଠିଲି।

ଶତାବ୍ଦୀର ସନ୍ତାନ ହୋଇ ଏହିଭଳି ଗୋଟିଏ ଦୁଃସ୍ୱପ୍ନ, କହିବାକୁ ଗଲେ ଏହିଭଳି ଗୋଟିଏ ଗଳ୍ପ ବାଢ଼ି ଦେଇ ଲେଖକ ସୁଲଭ ଭାବକାତରତାକୁ ତା' ପାଉଣା ଦେଇ ଖଲାସ ହୋଇଯିବା

ଛଡ଼ା ଉପାୟ କଅଣ ? ଅଣନିଃଶ୍ୱାସୀ ହେଲେ ହୁଅ, ତୁମକୁ ମଧ୍ୟ ଧାଇଁବାକୁ ପଡ଼ିବ, ଯନ୍ତ୍ରଉଠି ଧନଦରବ ଗୋଟେଇବାକୁ ହେବ; ମାତ୍ର ଦୁଇ ହାତର ଅଞ୍ଜୁଳି ଭରିବାକୁ ହେବ, 'ବଡ଼ଲୋକ' ନ ଦେଖେଇ ଦେଖେଇବାକୁ ହେବ, ଏବଂ ମନେ ରଖିବାକୁ ହେବ ଯେ ଧାବନ ହିଁ ସୁଖ । ନ ହେଲେ କେଉଁ ସାହସରେ ସଭ୍ୟ ତଥା ଆଧୁନିକ ହେବାକୁ ବସିଛ ? ଯୁକ୍ତରାଷ୍ଟ୍ର ଆମେରିକାର ସ୍ୱାଧୀନତା ଘୋଷଣାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି ପ୍ରତ୍ୟେକ ନାଗରିକର କାମ୍ୟ—ଜୀବନ, ସ୍ୱାଧୀନତା ଓ ସୁଖର ସନ୍ଧାନ (life, liberty and persuit of happiness) । କିନ୍ତୁ ତାଙ୍କର ଜଣେ ବ୍ୟଙ୍ଗ ଲେଖକ କହିଲା ପରି, ଆଜିକାଲି ସୁଖକୁ ଗୋଡ଼େଇବାର ମଜା ଗୋଡ଼େଇବାର ସୁଖରେ ହିଁ ଦୃପ୍ତ ଏବଂ ଲୁପ୍ତ । ସୁଖ କଅଣ ବୋଲି ଭାବିବାର କାହାର ବେଳ ଅଛି ?

କିନ୍ତୁ ମନେ କରିବା ଭୁଲ ଯେ ଏ ବ୍ୟାଧି କେବଳ ଆମେରିକାର ଅବା ପଶ୍ଚିମର ନୁହେଁ । ଆପଣମାନେ ବେଶ୍ ଦେଖି ପାରୁଥିବେ ଯେ ପ୍ରାୟ ପଚିଶ ବର୍ଷ ତଳର ଆମେରିକାରେ ମୁଁ ଯେଉଁ ବିପଣୀ ବଜାରର ଦୃଶ୍ୟ ଦେଖାଇଛି, ଆଜିର ଭାରତରେ ତାହା କେତେ ସୁଲଭ ହୋଇଗଲାଣି । ବିଶେଷତଃ ଆମ ଜଣା-ବିକାର ଗର୍ଜନ, ଟି. ଭି.ରେ, ରେଡ଼ିଓରେ, ଖବରକାଗଜରେ । ତେଣୁ ହୁଏତ ଆସନ୍ତା କାଲି ଆମ ଦୈନିକ ପତ୍ରିକାରେ ପୃଷ୍ଠା-ବ୍ୟାପୀ ହରଫରେ ଅମୁକ ଦୋକାନର ସିଙ୍ଗଡ଼ା, ଅମୁକ ବେପାରୀର ପିଆଜ, ଅମୁକ କଂପେଇର ଛେଳି ଗୋଡ଼ ମଧ୍ୟ ଚତ୍କାର କରିପାରେ—କିଏ ଜାଣିଛି ? ବ୍ୟାଧି ସମାନ, ଯଦିଓ ଆମଠିଁ ତା'ର ଉପସର୍ଗମାନ ଏତେ ଉତ୍କଟ ଏବଂ ହାସ୍ୟାସ୍ପଦ ହୋଇପାରି ନାହିଁ ଆଜିଯାଏଁ ।

ତେବେ ସନାତନ ସଂସ୍କୃତିର ବିରାଟ ଚଟା କାଟି ବୁଲିବା ସତ୍ତ୍ୱେ ଆମେ ପ୍ରତ୍ୟେକ ଭାରତୀୟ କେମିତି ତାଙ୍କ ସୁପରମାର୍କେଟ ସଭ୍ୟତାରେ ଉଣା ଅଧିକେ ବାଉଳା ହୋଇ ଯାଉ, ମଜ୍ଜି ହଜି ଯାଉ 'ଜିନିଷ' ହିଁ ଜୀବନ ଏବଂ ତାହା ମୁଖୁଠାରୁ ବଡ଼ ବୋଲି ଜଣେଇ ଦେଉ ଏହାଠାରୁ ବଳି ହାସ୍ୟାସ୍ପଦତା ଆଉ କଣ ଥାଇ-

ପାରେ ? ତାହାହେଲେ ଆମର ଏଇ ତଥାକଥିତ ସ୍ୱରଜାସ୍ତ୍ରତା କଣ ଗୋଟାଏ ସୁବିଧାବାଦୀ ଆତ୍ମଶଠତା ? ଚକ୍ର, ଚରଖା ଓ କମ୍ପ୍ୟୁଟରର ଚକଡ଼କୁ ସମଦୃଷ୍ଟିରେ ଦେଖି ପାରିବାର ଛଳନା ?

ଗଳ୍ପଟି ବେଶ୍ ଲୋକପ୍ରିୟ ହୋଇ ପାରିଛି, ବିଶେଷତଃ ଏହାର ସ୍ୱକୃତ ଇଂରେଜି ଅନୁବାଦ । ଏହା ପ୍ରଥମେ Debonair August 1976 ରେ ପ୍ରକାଶିତ ହୋଇଥିଲା । ମୋର ପ୍ରଥମ ଇଂରାଜୀ ଗଳ୍ପ ସଂକଳନ "Death of an Indian" ଏହି ଗଳ୍ପର ଶିରୋନାମା ଗ୍ରହଣ କରିଛି । ଏବଂ ନିକଟରେ କେନ୍ଦ୍ର ସାହିତ୍ୟ ଏକାଡ଼େମି ତରଫରୁ ଏହି ଗଳ୍ପଟି "ontempor ry Indian Short Story, Series III" ପାଇଁ ନିର୍ବାଚିତ ହୋଇଛି ।

କଟକ
୧ ଅଗଷ୍ଟ, ୧୯୮୬



# କାନ୍ଦୁରୀ

ପ୍ଲାଷ୍ଟିକ ନାଲି ଫୁଲର ମୋଟା ଟାଣ ପାଖୁଡ଼ା ମେଲି ହୋଇ ରହିଛି । ବାଜେ ଶସ୍ତା ଜିନିଷ । ହେଲେ ଡ୍ରଗଷ୍ଟୋରରେ ଭଲ ଫୁଲ ମିଳିବ କେଉଁଠୁ ? ଏଠି ଖାଲି କ୍ୟାଣ୍ଡି ଆଉ ଚକୋଲେଟ । ଯେତେ ଇଚ୍ଛା ସେତେ,—ଗୋଟାକୁ ପାଞ୍ଚ ସେଣ୍ଟ, ତିନିଟାକୁ ତେର ସେଣ୍ଟ, ଛଅଟାକୁ ପଚିଶ ସେଣ୍ଟ...... ।

ଗୀତା ତା' ମନିପର୍ସରୁ ପଇସା କାଢ଼ି ଗଣି ବସିଲା । ସବୁମୋଟ ଗୋଟିଏ ଡଲାର ପଚିଶ ସେଣ୍ଟ । ମାସଯାକ ଲାଗିକରି ଏତିକି ରହିଛି । ତରତରରେ କରି ପର୍ସକୁ ବୁଜିଦେଇ ଗୀତା ଆଗକୁ ଅନେଇଲା—ବିଦେଶୀ ଲୋକମାନଙ୍କୁ । ଦାମ୍ଭିକତାର ଭାବ ନେଇ ଅନେଇଲା । ଅର୍ଥ, ମୋ' ପର୍ସର ଦରିଦ୍ରତା ମୋର । କାହାର ଆଖିରେ ପଡ଼ିଲେ ଭାସିଯାଉଛି !

ଗୀତା କିଛି ଜିନିଷ ନ କିଣି ଏଣେତେଣେ ବୁଲୁଥାଏ ଓ ଭାବୁଥାଏ । ସେମାନେ ପାଖ ଦେଇ ଚାଲିଯାଉଛନ୍ତି । କେହି ମୋ ଆଡ଼କୁ ଅନାଉନାହାନ୍ତି । କାହିଁକି ଅନେଇବେ ? ଓ୍ୱାଶିଙ୍ଗଟନରେ କଣ ମୁଁ ଏକା ବିଦେଶୀ ପିଲା ? କେତେ ଏମ୍ବାସୀ (Embassy) ଅଛି, କେତେ ଦେଶର ପିଲା । ହଁ, ହୁଏତ ଶାଢ଼ୀ ପିନ୍ଧିଥିଲେ ଆଖିରେ ପଡ଼ନ୍ତା । ରଙ୍ଗବେରଙ୍ଗ ଶାଢ଼ୀ ଦେଖିଲେ ଏମାନଙ୍କର ଆଖି ଖୋସି ହୋଇଯାଏ । ହେଲେ ମୁଁ ଶାଢ଼ୀ ପିନ୍ଧିବି ନାହିଁ । ମାଆ ବି' ସେଇ କଥା କହିଛି—ଯେ ମୁଁ ଘରେ ଶାଢ଼ୀ ପିନ୍ଧିବାକୁ ଅଭ୍ୟାସ କରିବି, ବାହାରେ ପିନ୍ଧିବି ନାହିଁ ।

ଗୀତା ତାର ସ୍କର୍ଟ ଓ ବ୍ଲାଉସରେ ଆଖି ଫେରାଇଲା ଓ ପୁଣି ଥରେ ନିଜକୁ କହିଲା—ମୁଁ ଶାଢ଼ୀ ପିନ୍ଧିବି ନାହିଁ । କାହିଁକି ପିନ୍ଧିବି ? ମୁଁ କଣ ସୀନା ପରି ହୋଇଛି ? ସୀନା ପରି ଅଲଜୁକା, ଫୁଲେଇ ?

ସେ ସୀନାକୁ ଭଲପାଏ ନାହିଁ । ସୀନା କଥା ମନେ ପଡ଼ିଲାରୁ ସେ ସବୁବେଳେ ନିଜକୁ କହେ ଯେ ସେ ସୀନାକୁ ଭଲପାଏ ନାହିଁ, ଭଲପାଇବା କଥା ନୁହେଁ । ସୀନାର

ଶାଢ଼ୀ, ଝିନାର ଛଇଳ ଭଙ୍ଗୀ, ଟିକୁ ଲିପ୍‌ଷ୍ଟିକ୍ ମଖା ଓଠରେ ତା'ର ଇଂରେଜି କହିବାର ଟାଣି, ତା'ର ଉଡ଼ି ଉଡ଼ି ଯାଉଥିବା ହସ, ସବୁ ଗୀତାର ଆଖିରେ ନାଚି-ଯାଏ । ସେ ଠିକ୍ କରିନଏ—ଏପରି ଝିଅକୁ, ମାନେ ଇଣ୍ଡିଅନ୍ ଝିଅକୁ କିଏ କାହିଁକି ଭଲ ପାଇବ ?

କିନ୍ତୁ ଏବେକ୍ଷଣି ତାକୁ ଗୋଟାଏ କଥା ମଜାର ଲାଗିଲା । ଶାଢ଼ୀ ହେଉଛି ଇଣ୍ଡିଆନ ଜିନିଷ । ଗ୍ରେଟରୁ ବଡ଼ଯାଏଁ ସମସ୍ତେ ପିନ୍ଧନ୍ତି । କିନ୍ତୁ ଏଠି ଶାଢ଼ୀର ମାନେ ହେଉଛି ଶୋ', ଷ୍ଟାଇଲ,—ଇଣ୍ଡିଆନ ଷ୍ଟାଇଲ । ବିଦେଶୀମାନେ ଶାଢ଼ୀକୁ ବାହାବା ନ କରୁଥିଲେ ବୋଧହୁଏ ସବୁ ଇଣ୍ଡିଆନ ସ୍ତ୍ରୀଲୋକ ଡ୍ରେସ ପିନ୍ଧନ୍ତେ, ବାପା ହେଉଛି ଯେମିତି ସୁଟ୍ ପିନ୍ଧି ବୁଲୁଛନ୍ତି । ସେ ଆଶ୍ଚର୍ଯ୍ୟ ହେଲା । ବିଦେଶରେ ସବୁ କଥା କଣ ଏମିତି ଓଲଟା ହୋଇଯାଏ ?

ତା'ର ଆଖିଟିରେ ପଡ଼ିଲା ମ୍ୟାଗାଜିନ୍ ଥାକରେ ଗୋଟିଏ ମ୍ୟାଗାଜିନ୍ ଉପରେ ପ୍ରେସିଡେଣ୍ଟଙ୍କ ସ୍ତ୍ରୀ ଜାକି କେନେଡ଼ି ତା' ଆଡ଼କୁ ଅନେଇଛନ୍ତି । ସୁନେଲି-ବାଦାମି ମୁଣ୍ଡବାଳ ଫୋଲେଇ ହୋଇ ମୁହଁ ଉପରକୁ ଝୁଙ୍କି ଆସୁଛି, ମୁକ୍ତାମାଳ,—ବୋଧହୁଏ ମିଛିମିଛିକା, ଯେମିତି ତା' ସାଙ୍ଗ ସ୍କୁଲ ପିଲମାନେ ପିନ୍ଧନ୍ତି—ଗଳାରେ ପଡ଼ିଛି ଓ ତାଙ୍କର ହେଳି ଗ୍ରେଟିଆ ପିଲାଳିଆ ମୁହଁରେ ସେ ତା' ଆଡ଼କୁ ଗୃହିଁଛନ୍ତି । ସତେ ଯେପରି ତାକୁ ଡାକୁଛନ୍ତି—ହାଏ (Hi), କ'ଣ କରୁଛୁ ସେଠି ? ସେ ପାଖରେ ଔଷଧପତ୍ର, ପାଉଡ଼ର ସ୍ନୋ କାଉଣ୍ଟରର ପଛଆଡ଼େ ବୁଢ଼ୀ ସେଲ୍‌ସ ଗାର୍ଲ ଜଣେ ମୁଣ୍ଡରେ କାଗଜର ମୁକୁଟ ପିନ୍ଧିଛି । କ'ଣ ନା କାଲି ହେଉଛି ମଦର୍ସ ଡେ । ମାଆମାନଙ୍କ ଦିନ; ମାଆମାନଙ୍କୁ ପ୍ରେଜେଣ୍ଟ ଦିଆଯାଏ, ଆଉ ମାଆମାନେ କୁଆଡ଼େ ଏମିତି ରାଣୀ ହୋଇ ବସନ୍ତି ଦିନକ ପାଇଁ । ଗୀତା ମନେ ମନେ ହସିଲା—ଏ ହେଉଛି ଓଲଟା ଦେଶ, ଅଜବ ଦେଶ । ରାଣୀମାନେ ପିଲାଙ୍କ ପରି ହୁଅନ୍ତି, ସେଲ୍‌ସ ଗାର୍ଲ ରାଣୀ ହୁଏ, ଇଣ୍ଡିଆନ ଶାଢ଼ୀ ଷ୍ଟାଇଲ ହୁଏ...... ।

ଗୀତାର ପୁଣି ମନେ ପଡ଼ିଲା ତା'ର ଗୋଟିଏ ଡଲାର ପଚିଶ ସେଣ୍ଟ୍ କଥା । କାହିଁକି ଆସିଛି ସେ ଡ୍ରଗ୍‌ଷ୍ଟୋର୍‌କୁ? କଣ କିଣିବ ବୋଲି ? କ୍ୟାଣ୍ଡି ଚକୋଲେଟ୍ ପିଲାଳିଆ ଜିନିଷ, ଖେଳଣା ଘର, ଲିଭିଙ୍ଗ୍ ରୁମ୍, କଚେନ୍—ବହୁତ ଦାମ, ମଜା ମଜା ଲେଖା ଥିବା ଗ୍ରିଟିଂ କାର୍ଡ଼—କ'ଣ ଦରକାର ? ...... । ଧାଉ, ଏତକ ପଇସା ନେଇ ସେ କାହିଁକି ଆସିଛି ଡ୍ରଗ୍ ଷ୍ଟୋର୍‌କୁ ? ଆମେରିକାରେ ଏତକ ପଇସା ନେଇ ତା' ବୟସର ପିଲ କେହି ଜିନିଷ କିଣିବାକୁ ଆସନ୍ତି ନାହିଁ । ଏତକ ପଇସା ହେଉଛି ତାଙ୍କ ପାଇଁ ଦିନକର ପଇସା, ନ ହେଲେ ହପ୍ତାକର, ମାସକର ନୁହେଁ । କହିବାକୁ ଗଲେ ସେମାନେ ଡ୍ରଗ୍‌ଷ୍ଟୋର୍‌କୁ ଆସନ୍ତି ଖାଲି ଛୋଟମୋଟ ଜିନିଷ କିଣିବାକୁ,

ନ ହେଲେ ଦୁଇମିନିଟିଆ ଲଞ୍ଚ୍ ହ୍ୱାମ୍ ବର୍ଗର କୋକାକୋଲା ଖାଇବାକୁ, ନ ହେଲେ ବଏ ଫ୍ରେଣ୍ଡ୍ ମାନଙ୍କ ସାଙ୍ଗରେ ଅଡ୍ଡା ତାମଧା, ଠେଲାପେଲା ହେବା ପାଇଁ । ହେମାନେ କେତେ ଜୋର୍‌ରେ ହସନ୍ତି ! ଠେଲାପେଲା କଅଣ, ଖାଲି ଠେଲାପେଲା ନୁହେଁ, ତା ଛଡ଼ା...... ।

ଅଭଦ୍ର ! ଅତି ଅଭଦ୍ର ହେମାନେ । ଲାଜ ସରମ କିଛି ନାହିଁ । ଛିଃ ! ଗୀତା ନିଜ ଭିତରେ ସିଗର ମାଥାକୁ ବଢ଼େଇଲା, ଷୀନା ଉପରେ ସିଗିଲା ପରି । ଏ ଗୁଡ଼ା ଅତି ବେହିଆ ପଣ, ବିଦେଶୀ ଢଙ୍ଗ— ।

ବିଦେଶୀ ଢଙ୍ଗ ! ଗୀତା ନିଜର ବୋକାମିରେ ହସି ପକାଇଲା । ବିଦେଶୀ ମାନଙ୍କର ବିଦେଶୀ ଢଙ୍ଗ ନ ଥାଇ ଆଉ କଅଣ ଥାଆନ୍ତା ? ମାଆ ଯେମିତି କହି ତା'କୁ ବେଳେ ବେଳେ ଗାଳି ଦିଏ, ଗୀତା, ଯେମିତି କଅଣ ହେଉଛୁ ? ମୋତେ ସେ ସବୁ ବିଦେଶୀ ଢଙ୍ଗ ଭଲ ଲାଗେ ନାହିଁ । ଗୀତା ଆହୁରି ହସିଲା । ଇଚ୍ଛାହେଲା କ୍ଲାସ୍‌ର କେଉଁ ସାଙ୍ଗପିଲାକୁ କହିବ, ହେ ଆଲନ୍, ଯେମିତି କଅଣ ହସୁଛୁ ? ମୋତେ ସେ ସବୁ ବିଦେଶୀ ଢଙ୍ଗ ଭଲ ଲାଗେ ନାହିଁ ।

ଗୀତାକୁ ହାଲୁକା ଲାଗିଲା; କିନ୍ତୁ ତା'ର ସ୍ୱାଗ୍ଣୁ ଭାବ ଓ ହଠାତ୍ ହସ ତା'-ପାଖରେ ବୁଲୁଥିବା ଗୋଟିଏ ଜଗମୁକୁଟପିନ୍ଧା ସେଲସ୍‌ଗାର୍ଲର ଆଖିରେ ପଡ଼ିଥିଲା । ସେଲ୍‌ସ୍ ଗାର୍ଲର ବୟସ ଅଳ୍ପ, ମୁହଁରେ ହସ ଝିଆର ହୋଇ ରହିଛି, ସତେ ଯେପରି ସେ ଜିନିଷ ବିକିବା ଓ ବିକାଇବାର ପରମ ଆନନ୍ଦରେ ବିଭୋର । ହସକୁ ବିସ୍ତାର କରି, ସହାନୁଭୂତିରେ ଦୁର୍ଦ୍ଦମନୀୟ ଆବେଗ ନେଇ ସେ ଗୀତା ପାଖକୁ ଚାଲିଆସିଲା ଓ ପଚାରିଲା—ହନି (Honey), ମୁଁ କଅଣ ସାହାଯ୍ୟ କରିପାରେ କି ?

ଗୀତା ଚମକିଲା ପରି ହୋଇ ଅନାଇଲା ତା' ଆଡ଼କୁ । ତା' ପରେ ଲାଜବୋଳା ମୁହଁରେ ତରତର ହୋଇ କହି ପକାଇଲା, 'ନା, ଧନ୍ୟବାଦ' । ସେଲ୍‌ସ୍‌ଗାର୍ଲ ହସିଦେଇ ଫେରିଗଲା ଓ ଗୀତା ଗୋଟାଏ ଥାକ ଆଡ଼କୁ ଅନାଇ ଗମ୍ଭୀର ମନୋନିବେଶର ଭାବ ଦେଖାଇ ଆଗେଇଗଲା ।

ଛିଃ, ସେ କଣ ଭାବିଥିବ । ଯେ ଏ ପିଲାଟା କାହିଁକି ଏମିତି ମନକୁ ମନ ହସୁଛି । ମୁଁ କାହିଁକି ହସୁଥିଲି ? କଣ ଭାବୁଥିଲି ? ଗୀତା ନିଜକୁ ପ୍ରଶ୍ନ ପଚାରି ଅଥୟ କରିଦେଲା, ବ୍ୟସ୍ତ ହେଲା, କିନ୍ତୁ ପୁଣି ଥରେ ସ୍ଥିର ହୋଇ ରହିବାକୁ ସାହସ କରି-ପାରିଲା ନାହିଁ । ଭରା ଜିନିଷ ଦେଖି ଦେଖି ଛୁଇଁ ଛୁଇଁ ଗଲା । ଫୁଲ ଗଦା ହୋଇଛି, ପାନିଆ ଗଦା ହୋଇଛି, କାଚଜିନିଷ, କାଠଜିନିଷ, ଟିଣଜିନିଷ । ଗୀତା ଦେଖି ମଧ୍ୟ କିଛି ଦେଖିଲା ନାହିଁ । କୌଣସି ଜିନିଷର ବିଶେଷତ୍ୱ ପାଇଲା ନାହିଁ । ତା'ର ବିରକ୍ତ

ତା'କୁ ପୁଣି ଚେତାଇ ଦେଲା ଯେ ଡ୍ରଗ୍‌ଷ୍ଟୋର୍‌ର ଜିନଷ ସାଧାରଣ, ତା'ର ଗୋଟିଏ ଡଲାର୍ ପଚିଶ ସେଣ୍ଟ୍ ଠାରୁ ଅଧିକ ସାଧାରଣ । ସେ କାହିଁକି ଏଠିକି ଆସେ ? ନ ଆସିଲେ ଭଲ ହୁଅନ୍ତା । ବାଜେ ଲୋକ ସବୁ । ସେ ଯାହା ଭାବିଲା ନ ଭାବିଲା, ହସିଲା, ନ ହସିଲା ସେଥିରେ ତାଙ୍କର କଅଣ ଗଲା ?

'ହନି' ହୁଁ ! ସେଲ୍‌ସ୍‌ଗାର୍ଲର ସେହି 'ହନି' ପଦଟି ଉପରେ ତା'ର ସବୁ ଆକ୍ରୋଶ ପଡ଼ିଲା । ସେ ଗୋଟିଏ ଡଲ କଣ୍ଢେଇର ସୁନେଲି ବାଳକୁ ଆଉଁସୁଥାଏ ସେତେବେଳକୁ । ତା'ର ଅଧା-ଭାବନାରେ ବିଦେଶିନୀର 'ହନି' ମିଠା ମଧୁ ରୂପାନ୍ତ୍ରିତ ହେଲା ସେହି କଣ୍ଢେଇର ଆଧାର ନେଇ । ଗୋରା ତକ୍ ତକ୍ ନରମ ଦେହ, ନେଳିଆ ଛଳ ଛଳ ଆଖି, ସୁନେଲି ବାଳ । ମାର୍ଥା ପରି ! ମାର୍ଥାର ଦେହ, ତା'ର ଉଷ୍ମଗନ୍ଧ··· ମାର୍ଥାର ବଏଫ୍ରେଣ୍ଡ୍ କୁଆଡ଼େ ଖି-ଖି ସୁନ୍ଦର··· । ଗୀତାର ଇଚ୍ଛା ହେଲା ସେହି କଣ୍ଢେଇଟିକୁ କିଣିନେଇ ତା' ଉପରେ ରାଗିବ, ତା'କୁ ହଇରାଣ କରିବ, ତା'କୁ ଚିଡ଼େଇବ । ତା' ଗାଲରେ ଖୁନ୍ଦା ମାରି କହିବ,—ହନି, ହନି, ହନି ! ଯେଉଁ ତ ସୁନ୍ଦର !

ଗୀତାର ବିରକ୍ତିର ମାତ୍ରା ଯେବୁଠୁ ବଢ଼ିଗଲା ଯେତେବେଳେ ହଠାତ୍ ଡ୍ରଗ୍‌ଷ୍ଟୋର୍‌ର କେଉଁ କୋଣରେ ଥିବା ଗୋଟିଏ ରେଡ଼ିଓ ଗୀତ ଆରମ୍ଭ କରିଦେଲା । ଜଣାଶୁଣା ପୁରୁଣା ଗୀତ—ଓ ମାଇଁ ଡାର୍ଲିଙ୍ଗ୍, ଓ ମାଇଁ ଡାର୍ଲିଙ୍ଗ୍ କ୍ଲେମେଣ୍ଟାଇନ୍··· ।

ଗୀତା ଶେଷକୁ କେବଳ କିଣିଲା ତିନି ପ୍ୟାକେଟ୍ ଚକୋଲେଟ୍ । ପିଲାଙ୍କ ଜିନଷ । ସେ ଡ୍ରଗ୍‌ଷ୍ଟୋରକୁ ଆସି କିଣିଲା କ'ଣ ନା ତିନି ପ୍ୟାକେଟ୍ ଚକୋଲେଟ୍ ! କାହିଁକି ନା ତା' ପାଖରେ ଏତେ ଟଙ୍କା ଥିଲା, ଗୋଟିଏ ଡଲାର୍ ଓ ପଚିଶ ସେଣ୍ଟ୍ । ଏଥିରେ ରାଗ ଆସିବ ନାହିଁ ତ କଣ ହେବ ? ଏହି ରାଗକୁ ନେଇ ସେ ଗୃହିଁଲା ଯେ ଘରକୁ ଯାଇ ମାଆ ପାଖରେ ଅଭିଯୋଗ କରିବ, କଜିଆ କରିବ, କାନ୍ଦିବ । କିନ୍ତୁ ତା' ପରମୁହୂର୍ତ୍ତରେ ଭାବିଲା—ଲାଭ କଅଣ ? କିଛି ନ ଥିବା ଜାଗାରେ ପକେଟଖର୍ଚ୍ଚ ମିଳିଲାଣି, ହାତବ୍ୟାଗ୍ ଆସିଲାଣି । ପରେ ହୁଏତ ବେଶି ପକେଟ୍ ଖର୍ଚ୍ଚ ମିଳିବ, ହାତକୁ ରିଷ୍ଟ୍‌ୱାଚ୍ ଆସିବ । କଣ ହେବ ସେଥିରୁ ?

ତା'କୁ ଲାଗିଲା ଯେପରିକି ସେ ଖୁସିହୋଇ ପାରିବ ନାହିଁ, ତା'ର ଅସନ୍ତୋଷ ଆସିବା ସ୍ୱାଭାବିକ । ରୀନା, ମାର୍ଥା, ଅନ୍ୟମାନେ, ଜରିମୁକୁଟପିନ୍ଧା ସେଲ୍‌ସ୍‌ଗାର୍ଲ— ସେହିମାନେହିଁ ଖୁସି ହୋଇ ପାରନ୍ତି, ଆମେରିକାର ଦୋକାନ ବଜାରରେ ଖୁସି ହୋଇପାରନ୍ତି । ସେ ସେମିତି ହୋଇ ପାରିବ ନାହିଁ । କାହିଁକି ନା ସେ ଗୀତା ।

ତା'ର ଅସନ୍ତୋଷରେ ବଡ଼ପଣ ନ ଥିଲା । ଅନ୍ତତଃ ତା'ର ତେର ଚଉଦ ବର୍ଷିଆ ମନରେ ସେପରି ଭାବିବାର ଶକ୍ତି ଓ ଅହମିକା ନ ଥିଲା । କିନ୍ତୁ ସେ ତା'

ନିଜ ଅସନ୍ତୋଷର ରୂପ ଦେଖିପାରିଥିଲା ଏବଂ ସେ ତା'ର କାରଣ ଓ ଉଦ୍ଦେଶ୍ୟ ଭଲଭାବରେ ବୁଝି ନ ପାରି ମୋଟାମୋଟି ମାନିନେଲା ଯେ ସେଥିପାଇଁ ସେ ଦାୟୀ ନୁହେଁ, ତା'ର ମାଆ ଦାୟୀ ନୁହେଁ, ଡ୍ରଗ୍ ଷ୍ଟୋର ଦାୟୀ ନୁହେଁ କେହି ଦାୟୀ ନୁହେଁ । ହୁଏତ ଏମିତି ହୁଅନ୍ତା ନାହିଁ ଯଦି ସେ ଇଣ୍ଡିଆରେ ଥାଆନ୍ତା । କେଜାଣି !

ଗୀତା ଡ୍ରଗ୍ ଷ୍ଟୋରରୁ ବାହାରି ଆସିଲା । ବଡ଼ରାସ୍ତା କନେକ୍ଟିକଟ୍ ଆଭିନିଉରେ ସନ୍ଧ୍ୟାବେଳଆ ଉତ୍ତରଗତି ଓ ଉତ୍ସାହ ତା' ମନକୁ ଫେରାଇ ଆଣିଲା ସହଜ ଭାବନାର ସଂସାରକୁ । ଧାଡ଼ି ଧାଡ଼ି ହୋଇ କାର୍‌ର ପଛ ନାଲିଆ ଆଲୁଅ, ଗୋଟିକ ପରେ ଗୋଟିଏ କେଜାଣି କେତେ—ମାଳା ଗୁନ୍ଥି ଲ ପରି । ମାଳା ଲମ୍ବିଯାଇଛି କେତେ ଦୂରକୁ, ତା'ପରେ ହଜି ଯାଇଛି ଉଞ୍ଚ ଭୂଇଁରେ । ଟ୍ରାଫିକ୍ ଆଲୁଅ ଏବେକ୍ଷଣି ନାଲି ହୋଇଛି, ଟିକିଏ ପରେ ଶାଗୁଆ ହୋଇଯିବ । ନାଲି ଆଲୁଅର ମାଳା ଛିଣ୍ଡି ଯିବ, କାରସବୁ ଧାଇଁ ପଳାଇବେ ସାଇଁ ସାଇଁ ହୋଇ । ଏହିଇ ଦେଖୁ ଦେଖୁ ଆଲୁଅ ବଦଳିଗଲା, କାର୍ ସବୁ ଧାଇଁଛନ୍ତି,—ନେଳିଆ କାର୍, ନାଲିଆ କାର୍, ଧଳା କାର୍, ବଡ଼ କାର୍, କେତେ ରକମର ଡେଣା, କେତେ ରକମର ଲାଞ୍ଜ । ଅଉ କେତେ କୁଜା ଗ୍ରେଟିଆ କାର୍, ବେଙ୍ଗ ପରି ଦେଖାଯାଉଛି । ଖରାଦିନ ଯୋଗୁ ଅନେକ କାର୍‌ରେ ଝରକାକାଚ ତଳକୁ ହୋଇଛି । କାର୍ ରେଡ଼ିଓରୁ ଗୀତ ବାଜା ଶୁଭୁଛି । ବେଳେ ବେଳେ ଶୁଭିଯାଉଛି କେଉଁ ଗୋଟାଏ ପିଲାଙ୍କ ଜିନିଷର ଆଡ଼ଭର୍ଟାଇଜ୍‌ମେଣ୍ଟ—ହାଏ କିଡ୍ସ୍, ହିଅର ଅପ୍... ।

ତରତର ହୋଇ ଚାଲିବାର କୌଣସି କାରଣ ନ ଥିଲା । ଅ‌ାଲୁଅ ଲିଭିବାକୁ ଡେରି ଅଛି, ଅନ୍ଧାର ହେବା ଆଗରୁ ପହଞ୍ଚିଗଲେ ମାଆ କିଛି କହିବ ନାହିଁ । ତଥାପି ସେ ଏମିତି ଚାଲୁଥାଏ ଯେ ମନେହେବ ରାସ୍ତା ତାଡ଼ିକରି ନେଉଛି, ସନ୍ଧ୍ୟାପବନ ସହି ହେଉ ନାହିଁ । କିନ୍ତୁ ଭାବିପାରିଲା ନାହିଁ ଯେ ତା'ର ଚାଲିରେ ସ୍ୱାଭାବିକତା ତୁଟା ପଡ଼ିଯାଇଛି । ତା' ନିଜଭିତରେ ସେ ପ୍ରଶ୍ନ ଅ‌ାସିଥିଲେ ସେ ହୁଏତ ସହଜ ଉତ୍ତର ଦେଇପାରି ଥାଆନ୍ତା, ଏହାଛଡ଼ା ଆଉ କଣ ହୁଅନ୍ତା ? ଏ କଅଣ ଇଣ୍ଡିଆ ହୋଇଛି ?

ଗୀତା ଘରମୁହାଁ ହୋଇ ଚାଲୁଥାଏ । ବାଟ ଚାଲିବା ପଛରେ ଅଛି ଘରକୁ ଫେରିଯିବାର ଅତିପୁରୁଣା ସୁଖ, ନିଜ ସଂସାରରେ ମିଶିଯିବାର ସୁଖ । ଅଧା ବାଟରୁ ଦେଖାଯିବ ଘର ଆଗରେ ଥିବା ଡମ୍ବାପତ୍ରିଆ ଗଛ । ଘରେ ପହଞ୍ଚିଲାକ୍ଷଣି ବେଲ୍ ନ ବଜାଉଣୁ ସବାସାନ ଭାଇ ଭଉଣୀ ଦଉଡ଼ାଦଉଡ଼ି ହୋଇ ଅ‌ାସିବେ କବାଟ ଖୋଲିବା ପାଇଁ, କିଏ ଆଗ କବାଟ ଖୋଲିବ । ତା'ପରେ ସବୁଦିନିଆ କାନ୍ଦ, କଜିଆ ଓ ସାନଭାଇର ସେହି ନିବୋଧ ପ୍ରଶ୍ନ,—ଗୀତା ଅପା, ମୋ ପାଇଁ ଚେଲିଭିଜନ ଆଣିଛୁ ?

ତା'ର ଧାରଣା ଯେ ପିଲଙ୍କ ପାଇଁ ଗ୍ରେଟ ଟେଲିଭିଜନ୍ ମିଳେ, ସେ ତା'କୁ ନଜେ ବସି ଦେଖିପାରିବ ଓ କାହାକୁ ଦେଖାଇବ ନାହିଁ । ହେଲେ ସବୁଦିନେ ଟେଲିଭିଜନ୍ ବଦଳରେ ତା'କୁ ମିଳେ କ୍ୟାଣ୍ଡି ଓ ଚକୋଲେଟ । ଗୀତାଅପାକୁ ଆଶ୍ୱାସନା ମିଳେ— ଅଚ୍ଛା ହେଉ, କାଲିକୁ ଟେଲିଭିଜନ୍ ଆଣିବୁ । ନୁହେଁ ?

ଆଉ ଦୁଇଟା ଆଲୁଅ-ଛକ ପରେ ରାସ୍ତାର ଆରପାଖକୁ ଯାଇ ଥାର୍ଟି ସେକେଣ୍ଡ୍ ଷ୍ଟ୍ରୀଟ୍ ଧରିବାକୁ ପଡ଼ିବ ! ବେଶି ଡେରି ନାହିଁ । ସାଇଡ୍-ଓ୍ୱାକ୍‌ରେ ହୁଏତ କିଛି ସମୟ ଛିଡ଼ା ହୋଇ ରହିବାକୁ ହେବ, ଯଦି ସାମ୍ନା ଆଲୁଅରେ ଲେଖାହୋଇଥିବ "ଡୋନ୍‌ଟ୍ ଓ୍ୱାକ୍", ମାନେ ଚାଲ ନାହିଁ । ଦୁଇ ମିନଟ୍ ପରେ ଆଲୁଅ ବଦଳିଯିବ, ଲେଖା ହେବ "ଓ୍ୱାକ୍", ମାନେ ଚାଲ । ସମସ୍ତଙ୍କ ସାଙ୍ଗରେ ତରବର ହୋଇ ଆରପାଖକୁ ଯିବାକୁ ପଡ଼ିବ । ଥାର୍ଟି ସେକେଣ୍ଡ୍ ଷ୍ଟ୍ରୀଟ୍‌ରେ ଟିକିଏ ଆଗେଇଲା ପରେ ଡାହାଣ ହାତ ଗଳି, ଗଳିମୁଣ୍ଡର ଘର ଆଗରେ ଗୋଲାପବଗିଚା, ବୁଢ଼ାଟିଏ ଝୁଲା-ଚଉକିରେ ବସି ଅନାଇଥିବ ତା' ବଗିଚା ଆଡ଼କୁ । ତା' ପରେ ଉଠାଣି । ଉଠାଣି ଅଧାରେ ଦେଖାଯିବ ତମ୍ବାପତ୍ରିଆ ଗଛ, ପିଲାମାନେ ଖାଲିଗୋଡ଼ରେ ରାସ୍ତାରେ ଖେଳୁଥିବେ । ତା'ପରେ ଘର, ଥକିଲା ପାଦରେ ଆରାମ,···'ଝିଙ୍ଗ୍'··· ।

ଗ୍ୟାସ୍ ଷ୍ଟେସନ୍ ଆସି ପହଞ୍ଚିଲାଣି । ଗୀତା ସବୁଥର ପରି ମୁଣ୍ଡ ଟେକି ଉପରକୁ ଅନାଇଲା, ଗୋଟାଏ ବଡ଼ ଦୋକାନ ଘର ଉପରେ ନିଅନ୍‌ଲାଇଟ୍‌ର ଲେଖା ଜଳୁଛି, ଲିଭୁଛି, ବଦଳୁଛି ।

ଟାଇମ୍ — ୭.୦୫
ଟେମ୍ପ୍ — ୭୮

ଆଉ ମିନିଟକ ପରେ ସମୟ ହେବ ୭.୦୬ । ଟେମ୍ପରେଚର୍ ହେବ କେତେ ? ୭୭ ନା ୭୯ ? ବଢ଼ିବ ନା କମିବ ? ଏମିତି ତାର ଡେରି ହୋଇଯାଏ କିଛି ସମୟ ଏବଂ ପ୍ରାୟ ଏହି ଜାଗାରେ ଗୋଟିଏ ବିଚିତ୍ର ବାସ୍ନା ଆସେ, ତା'କୁ ଭଲ ଲାଗେ । କନେକ୍‌ଟିକଟ୍ ଆଭେନ୍ୟୁର ଅର୍ଥାତ୍ ଆମେରିକାର ବଡ଼ ରାସ୍ତାର ବାସ୍ନା ହୋଇ ତା ମନରେ ଲାଗିରହେ । କଣ ସେ ବାସ୍ନା ? ସେଥିରେ ବୋଧହୁଏ ଫୁଲଅତରର ମହକ ଅଛି ଓ ତା' ସାଙ୍ଗରେ ତମ୍ବାଖୁ ପାଇପ୍ ଧୂଆଁର ବାସ୍ନା । ଗୀତା ନିଃଶ୍ୱାସ ଭିତରକୁ ନିଏ, ଓ ମୁହୂର୍ତ୍ତକ ପାଇଁ ତା' ଆଖିରେ କଳ୍ପନାର ଆମେରିକା ଦେଖାଦିଏ । ସେ ଉର୍‌ଚେଷ୍ଟାର୍‌ର ଆମେରିକା ନୁହେଁ, ତା'ଠାରୁ ସୁନ୍ଦର, ସୌଖୀନ, ବିଳାସ-ଆମୋଦରେ ଭରପୂର । ସେଠି ଅଛନ୍ତି ସୌଖୀନ କଳାପୋଷାକ ପିନ୍ଧା ଜେଣ୍ଟଲମ୍ୟାନ, ପାଖରେ ସୌଖୀନ ଧଳାସିଲ୍‌କ ଡ୍ରେସ ପିନ୍ଧା ଲେଡ଼ି । ସେଠି ପାଇପ୍ ଅଛି, ଫୁଲ ଅଛି, ପିଆନୋର ବାଜା ଅଛି, ବାସ୍ନା ଅଛି ··· । ଗୀତା ସ୍ୱପ୍ନରୁ ଉଠି ରାସ୍ତାର ଟ୍ରାଫିକ୍

ଆଲୁଅକୁ ଅନାଏ । ତା' ଆଖିରେ ପଡ଼େ ସାଧାରଣ ଲୋକ ସବୁ, ସାଧାରଣ ବେଶ ପିନ୍ଧିଛନ୍ତି । ତା' ଭିତରେ ହୁଏତ ଗୋଟାଏ ମୋଟୀ ନିଗ୍ରୋ ସ୍ତ୍ରୀଲୋକ କଳା ଓଠରେ ନାଲି ଚକ୍‌ଚକ୍ ଲିପିଷ୍ଟିକ, ନାଲିଛତା, ମୋଟା କାଳିଆ ଗୋଡ଼ରେ ହାଇ-ହିଲ ଜୋତା । ଗୀତାକୁ ବିରକ୍ତି ଲାଗେ । ଗୋରା ଆମେରିକା ତରଫରୁ ହୋଇ, ମାର୍ଥା ଆଲିନ୍ ସୁଜାନ୍‌ମାନଙ୍କ ଦଳର ହୋଇ ସେ ଭାବେ ଯେ ଏହିମାନେ ସୁନ୍ଦର ଆମେରିକାକୁ ନଷ୍ଟ କରିଦେଲେ ।

ଟ୍ରାଫିକ-ଆଲୁଅ ନାଲିରୁ ଶାଗୁଆ ହୋଇଗଲା । ଗୀତା ଆଗେଇଲା । ଏହି ସମୟରେ ତା' କାନରେ ବାଜିଲା,—ହାଏ, ଗୀତା !

ଗୀତା ପଛକୁ ମୁହଁ ଫେରାଇଲା । ଲୋକ ନ ଚିହ୍ନିବା ଅଗରୁ କହି ପକାଇଲା, —ହାଏ । ତା'ପରେ ତାକୁ ଦେଖିଲା । ଡିକ୍, କ୍ଲାସ୍‌ମିଟ୍ । ସେ ପାଖକୁ ଆସିବାରୁ ଗୀତା ଆଉ ଥରେ 'ହାଏ' କହିଲା, ଓ ତା'ର ହସିଲା ମୁହଁକୁ ଅନାଇଲା ସାହସର ସହିତ, ହସର ପ୍ରତିଦାନ ନ ଦେଇ । ଡିକ୍‌ର ମୁହଁରେ ହସ କାହିଁକି ? ସେ ଏମିତି କିଛି ତ ମୋର ସାଙ୍ଗ ନୁହେଁ !

କେତେବେଳକେ ଡିକ୍ କହିଲା, "କୁଆଡେ ଯାଉଛୁ ତୁ ? ଘରକୁ ନା ଆଉ କୁଆଡେ ?"

ଗୀତାର ମନେହେଲା ଯେ ତା'ର ସେ ପ୍ରଶ୍ନ ନିରର୍ଥକ । ଡିକ୍‌ର ମୁରୁକିହସା ଓ ତା' ଗୁହାଣୀରେ କିଛି ଅଛି ଦୁଷ୍ଟାମି । ଏଠିକାର ସବୁ ପୁଅଗୁଡ଼ାକ ଏମିତି । ସେ ଗମ୍ଭୀର ହୋଇ ଉତ୍ତର ଦେଲା, "ଘରକୁ ।"

ଡିକ୍ ଆଶ୍ଚର୍ଯ୍ୟ ହେଲା ପରି ପଚାରିଲା, "ଘରକୁ ? ଓ-ଓ୍ୱେଲ ! ଚାଲୁ ନୁ ମୋ ସାଙ୍ଗରେ ଡ୍ରଗ୍‌ଷ୍ଟୋର୍ ଯାଏଁ ଯିବୁ ?"

"ନୋ, ଥ୍ୟାଙ୍କ୍‌ସ ।"

ଡିକ୍ ହସିଲା । କହିଲା, "ଓ୍ୱେଲ, ନ ହେଲେ 'ଫାଇଭ ଏଣ୍ଡ ଟେନ୍' ଷ୍ଟୋର୍‌କୁ ଯିବା ଚାଲ । ମୁଁ ଗୋଟାଏ ଚାରକୋଲ ବ୍ରେଜିୟର୍ କିଣିବି ପିକ୍‌ନିକ୍ ପାଇଁ, ଆଉ ସବୁ ପିକ୍‌ନିକ ଜିନିଷ । ତୋର କିଛି କିଣିବାର ନାହିଁ ?"

"ନୋ, ଥ୍ୟାଙ୍କ୍‌ସ ।"

"ଓ୍ୱେଲ୍—ଓ୍ୱେଲ । ଜେଙ୍ଗିସ୍ ଖାଁ ରେସ୍ତୋରାଁ ?"

"ନୋ ଥ୍ୟାଙ୍କ୍‌ସ ।"

"ଓ-କେ, ବାଏ ।"

"ବାଏ ।"

ଡିକ୍ ଚାଲିଗଲା ବେଳକୁ ଟ୍ରାଫିକ ଆଲୁଅ ପୁଣି ନାଲି ହୋଇ ଗଲାଣି । ଗୀତା ବିରକ୍ତ ହେଲା,—ଡିକ୍ ସାଙ୍ଗରେ କଥା ନ କହିଥିଲେ ମୁଁ ଏହା ଭିତରେ ରାସ୍ତା ପାରି ହୋଇ ସାରନ୍ତିଣି । ଅଯଥା ସେ ମୋର ସମୟଗୁଡାକ ନଷ୍ଟ କରିଦେଲା ।

କିନ୍ତୁ ରାସ୍ତାର ସେ ପାଖରେ ପହଞ୍ଚି ପୁଣି ସାଇଡ଼ୱାକ୍ ଧରି ଚାଲିଲା ବେଳେ ଡିକ୍ ପୁଣି କାହିଁକି ତା' ମନକୁ ଆସିଲା । ଗୀତାର ଇଚ୍ଛା ହେଲା ସେ ଗୋଟାଏ ଟିଚର କିମ୍ବା ସେମିତି କିଛି ହୋଇ ଆମେରିକାର ଏହି ପୁଅଝିଅମାନଙ୍କୁ ଲେକଚର ଦିଅନ୍ତା, ପାଠ ପଢ଼ାନ୍ତା । ଏମାନେ ସମସ୍ତେ ଅବାଗିଆ ହୋଇ ଯାଉଛନ୍ତି, କାହିଁକିନା ଏମାନଙ୍କ ଉପରେ ଯଥେଷ୍ଟ ଶାସନ ହେଉ ନାହିଁ । ବାପା ସେଦିନ କହୁଥିଲେ ପରା ଯେ ଏଇଥି ପାଇଁ ଏଠି ଜୁଭେନାଇଲ ଡେଲିଙ୍କ—କଣ ସେ ଶବ୍ଦଟା ମନେ ପଡୁନାହିଁ,—ବଢ଼ି ଚାଲିଛି ।

କିନ୍ତୁ ସେଥିପାଇଁ ତା'ର ଏତେ ବ୍ୟସ୍ତ ହେବା ଦରକାର କ'ଣ ? ଆମେରିକାର ପିଲାଏ ଯାହା ହେଲେ ନ ହେଲେ ସେଥିପାଇଁ ତା'ର ଏତେ ମୁଣ୍ଡ ବଥାଉଛି କାହିଁକି ?

ଗୀତା ନିଜକୁ ବୁଝାଇ ବାଟ ଚାଲିବାରେ ମନ ଦେଲା । କିନ୍ତୁ ତା'ର ମନେ ହେଲା ଯେ ଏହି ବାଟ ଚାଲିବାରେ କିଛି ବାହାଦୁରୀ ନାହିଁ । ଖାଇବା, ପିଇବା, ଘରକୁ ଫେରିବା, ତା'ପରେ— ?

ହେଲା ଏବେ ସେ ଡିକ୍ ସାଙ୍ଗରେ ରେସ୍ତୋରାଁକୁ ଯାଇଥାଆନ୍ତା, ବା ଆଉ କୁଆଡ଼େ ଯାଇଥାଆନ୍ତା । କଣ ହୁଅନ୍ତା ସେଥିରେ ? କିଛି ନ ହେଲେ ସେ କଣ ଭଲ କରି କଥା ପଦେ ତା' ସାଙ୍ଗରେ କହିପାରନ୍ତା ନାହିଁ ? ନୋ ଥ୍ୟାଙ୍କ୍ସ, ନୋ ଥ୍ୟାଙ୍କ୍ସ, ନୋ ଥ୍ୟାଙ୍କ୍ସ ? ସେମିତିକି ଆଉ କିଛି କଥା କହିବାକୁ ନାହିଁ !

ସେଦିନର ଘଣ୍ଟାକୁ ଆଡ଼େଇ ଦେଇ ଗୀତା ତା' ଭାବନାରେ ବୁଡ଼ି ରହିଲା ଘରେ ପହଞ୍ଚିବାଯାଏଁ । ଡିକ୍, ଆମେରିକାର ପିଲାମାନେ, ବାପା ମାଆ ଭାଇ ଭଉଣୀ ଓ ନିଜକୁ ଥରେ ଥରେ ଦୋଷୀ କରି ସାରିଲା ପରେ ତା'କୁ ଲାଗିଲା ଯେ ସେ ଥକି ଯାଇଛି, ଆଉ ପାରିବ ନାହିଁ । ଏଇ, ଘର ଅଗରେ— । 'ଗୀତା ଅପା, ଟେଲିଭିଜନ ଆଣିଛୁ ?' 'ଗୀତା ଅପା, ଚାଲ ଆଜି ପାର୍ଟି କରିବା,—କଣ କହୁଛୁ ?' ଗୀତା ଅପା, ଗୀତା ଅପା— ! ସତେ ଯେପରି ଗୀତା ଅପା ତାଙ୍କର ବନ୍ଧୁ, ତାଙ୍କର ପର । ଏହି ସବୁ ପିଲାଳିଆ କଥାରେ ନାଚିବ, ହସିବ, ଥେଇ ଥେଇ ହେବ !

ଗୀତାକୁ ଛଟପଟ ଲାଗିଲା । ଓଃ, ମୁଁ କଣ ଏହି ବୟସରେ ସବୁଦିନେ ଥିବ ? ଗ୍ରେଟ ହୋଇ ପାରିବ ନାହିଁ, ବଡ଼ ହେବ ନାହିଁ ??

( ୨ )

'ଗ୍ଗ୍-ଗ୍ଗ୍-ଗ୍ଗ୍—ଗ୍ଗ୍ଗ୍ଗ୍ଗ୍ଗ୍—ଗ୍ଗ୍'

ଆଲନ୍ ରେକର୍ଡର ଗ୍ଗ୍-ଗ୍ଗ୍-ଗ୍ଗ୍ ଧୂନ୍ ସାଙ୍ଗରେ ନାଚୁଛି । ମାନେ ଦେହ ହାତ ହଲଉଛି, ଗୋଡ଼ରେ ତାଳ ପକାଉଛି । ଆଲନ୍‌କୁ ବେଶ୍ ମାନୁଛି ତ ! କଣ ସ୍ୱପ୍ନ ଦେଖା ହେଉଛି ? ଆଲନ୍ ଗୋଟିଏ ମଜାର ପିଲା । ସେ ବଡ଼ ମଣିଷଙ୍କ ପରି କଥା କହେ, ହେଲେ ପିଲାଙ୍କ ପରି ହସେ, ଖେଳେ, ଥଟ୍ଟା କରେ । ମାର୍ଥାକୁ ଥଟ୍ଟା କରେ, କହେ ଯେ ମାର୍ଥା ଖାଲି ସ୍ୱପ୍ନ ଦେଖେ, ସେ ଭାରି ରୋମାଣ୍ଟିକ । ରୋମାଣ୍ଟିକର ଠିକ୍ ମାନେ କଅଣ ? ସେ ଯାହାହେଉ ମାର୍ଥାଟି ଭାରି ଭଲ ପିଲା, ଆଲନ୍ ବି । ସେ ଦୁଇଜଣଯାକ ମୋତେ ଭଲ ପାଆନ୍ତି ।

ଗୀତାର ଆମେରିକାକୁ ଆସିବା ପ୍ରାୟ ବର୍ଷକ ଉପରେ ହୋଇ ଗଲାଣି । ଏଥର ସେ ହାରିଯିବା ଭାବ ନାହିଁ । ଗୋଟିଏ ଡଲାର ପଚାଶ ସେଣ୍ଟ ନେଇ ଡ୍ରଗ-ଷ୍ଟୋରରେ ଅନ୍ୟମନସ୍କ ହୋଇ ଘୂରି ବୁଲିବାର ଅଭ୍ୟାସ ଚାଲିଗଲାଣି । ତା'ର ପକେଟ ଖର୍ଚ୍ଚ ଯେ ବିଶେଷ ବଢ଼ିଛି ତା' ନୁହେଁ । ଆଜିକାଲି ମଧ୍ୟ ସବୁ କିଣାକିଣି ପ୍ରାୟ ଘର-ପାଖ ଡ୍ରଗଷ୍ଟୋରରୁ ହୁଏ, କିନ୍ତୁ ଗୀତାର ମନେହୁଏ ଯେ ସେ ନିଜେ ଏହା ଭିତରେ ବଢ଼ିଗଲାଣି । ତା'ର ମଧ୍ୟ ସାଙ୍ଗ ଅଛନ୍ତି । ଆମେରିକାର ଦୋକାନ ବଜାରରେ ସେ ମଧ୍ୟ ଜଣେ ଗରାଖ ଉଚିତ ଜିନିଷ ଚଟ୍‌କରି ପସନ୍ଦ କରି ପାରିବ । ସେ ମଧ୍ୟ କହି ପାରିବ ଏ ମାସରେ କେଉଁ ରେକର୍ଡ଼ ଗୀତର ବେଶି ଚାହିଦା ଉଠିଛି । ମୋଟ ଉପରେ ସେ ମଧ୍ୟ ଜଣେ ଟୀନ୍-ଏଜର, ଆମେରିକାର ଗୋଟିଏ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟ । ସେ ଅବଶ୍ୟ ଇଣ୍ଡିଆନ, କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ଟୀନ୍-ଏଜରମାନେ କଣ କେବଳ ଆମେରିକାରେ ଅଛନ୍ତି ?

ସ୍କୁଲ ପିକ୍‌ନିକର ମେଳାରେ ଗୀତା ଘାସ ଉପରେ ବସିଛି ଅନ୍ୟମାନଙ୍କ ସହ ଓ ଆଲନ୍‌ର ନାଚକୁ ଦେଖୁଛି । ଖୁସି ଅଛି । ସମସ୍ତେ ତା'ର ଘରୁ ଆଣିଥିବା ସିଙ୍ଗଡ଼ା ଓ ଆଳୁଦମ୍‌କୁ ପସନ୍ଦ କରିଛନ୍ତି, ସବୁ ପ୍ରାୟ ସରି ଆସିଲାଣି । ପୁଣି ଥରକୁଥର ସାଙ୍ଗ-ମାନେ ଆସି ହ୍ୟାମ୍ ସାଣ୍ଡୱିଚ୍, ଏଗ୍‌ରୋଲ, କେକ୍, ଏମିତି କେତେ କଣ ଯାଚି ଯାଉଛନ୍ତି । ଆକାଶରେ ମେଘ ନାହିଁ । ଗଛ ପତ୍ରର ସିର ସିର ହୋଇ ଖେଳିଯାଉଛି ମଝିରେ ମଝିରେ, ଆଲନ୍‌ର ନାଚ ଦେଖି ଖୁସି ହେଲା ପରି ।

ଆଲାନ୍ ତା' ଦେହକୁ କେତେ ପ୍ରକାରରେ ମୋଡ଼ୁଛି, ଭାଙ୍ଗୁଛି ! ଆଉ ଗୋଟାଏ କେଉଁ ନାଚଗୀତ ବାଜିଲାଣି,—ଟ୍ୱି-ଟ୍ୱି-ଟ୍ୱି ନୁହେଁ । ଟ୍ୱିଷ୍ଟ ନୁହେଁ, ଆଉ କିଛି । ଗୀତାର ଦୁଃଖ ହେଲା ଯେ ସେ ସବୁ ନାଚର ଢଙ୍ଗ ଏ ପର୍ଯ୍ୟନ୍ତ ଜାଣିପାରିଲା ନାହିଁ । ଜାଣିବା ଦରକାର । ସେ ଇଚ୍ଛା କଲା ନାଚ ସାଙ୍ଗରେ ତାଳ ପକାଇଲା. ଗୀତର ପଦେ ପଦେ ଗାଇବାକୁ ଚେଷ୍ଟା କଲା ।

ତା'ର ଉତ୍ସାହ କ୍ଲାସ୍‌ଟିଚର ମିସ୍ ମନ୍‌ରୋଙ୍କ ଆଖିରେ ପଡ଼ିଲା । ସେ ଗୀତାକୁ କହିଲେ, "ଗୀତା, ଗିଭ୍ ଅସ୍ ଆନ୍ ଆଣ୍ଡିୟାନ ଡାନ୍‌ସ,—ଓଣ୍ଟ୍ ୟୁ ?" ( ଗୀତା, ଗୋଟିଏ ଇଣ୍ଡିଆନ ନାଚ ଦେଖାଇବୁନ ? )

ଗୀତା ମିସ୍ ମନ୍‌ରୋଙ୍କ ଆଡ଼କୁ ଚାହିଁ ଟିକିଏ ହସିଦେଲା ଓ ନ ପାରିବାର ଭଙ୍ଗୀ କଲା ।

ଏହି ସମୟରେ ମାର୍ଥା କେଉଁଠି ଥିଲା ଦୌଡ଼ିଆସି ଗୀତାକୁ କୁଣ୍ଢାଇ ପକାଇଲା ଓ କହିଲା,—ଗୀତା, ଚାଲ ମୋ ସାଙ୍ଗରେ ଯିବୁ । ଚାଲ ସେହି ପଥର ଉପରେ ବସି ଗୀତ ଗାଇବା, ସେହି ଯେଉଁ ବଡ଼ ପଥରଟାଏ ଅଛି, ହଳଦିଆ ଗଛ ତଳକୁ ।

ସେମାନେ ବସିଲେ ପଥର ଉପରେ । ସେଠି ହଳଦିଆ ପତରର ଗଛ ସାଙ୍ଗରେ ଆଉ ଗୋଟାଏ ଗଛ ଜାକିଜୁକି ହୋଇଥାଏ । ତା'ର ପତର ସବୁ ଧୂସର ହୋଇଗଲାଣି, ହେଲେ କେତୁଟା ନୂଆ ପତର ଅସମୟରେ କଅଁଳୁଛି, ଠିକ୍ ତାଙ୍କର ବସିବା ଜାଗା ଉପରକୁ ।

ମାର୍ଥା ତା'ର ଗୋଲଡନ-ଚେଷ୍ଟନଟ୍ କେଶଗୁଚ୍ଛକୁ ସାଉଁଳେଇ, ପିଠି ଉପରକୁ ସଜାଡ଼ି ବସିପଡ଼ିଲା । ଗୀତାର ଆଖିରେ ପଡ଼ିଲା ଯେ ମାର୍ଥାର ମୁଣ୍ଡବାଳରେ ନୂଆ ରଙ୍ଗ ଖେଳିଲାଣି, ନୂଆ ଢଙ୍ଗରେ ଓ ବାଳର ରଙ୍ଗ ବଦଳି ଆସିଲାଣି— ଗୋଲଡନରୁ ଗୋଲଡନ-ଚେଷ୍ଟନଟ ଆଉ କେତେଦିନ ଗଲେ ହୁଏତ ପୂରାପୂରି ଚେଷ୍ଟନଟ ହୋଇଯିବ ।

"ଗୀତା, ତୁମ ଦେଶରେ ଫୁଲ ହୁଏ ?"

ମାର୍ଥାର ଏହି ହଠାତ୍ ପ୍ରଶ୍ନରେ ଗୀତା ବିରକ୍ତ ହୋଇ ଉଠିଲା । ମାର୍ଥା ନ ହୋଇ ଆଉ କେହି ହୋଇଥିଲେ ବୋଧହୁଏ ରାଗିଯାଇ ଥାଆନ୍ତା । କେବେ ଏ ପ୍ରଶ୍ନ ସବୁ ସରିବ ? 'ଗୀତା, ତୁମ ଦେଶରେ ବ୍ରେକଫାଷ୍ଟ ଖାଆନ୍ତି ?'......'ତୁମ ଦେଶରେ ମ୍ୟୁଜିକ ଅଛି ?'......'ତୁମେ ସବୁ କୁଆଡ଼େ ଗାଈମାନଙ୍କୁ ନମସ୍କାର କର ?'...... ଇତ୍ୟାଦି ଇତ୍ୟାଦି । କେତେ ବୁଝେଇବ, କେତେ କହିବ ! ଯାହାହେଉ ଆଜି ସେ

ତା'ର ବରଚ୍ଛକୁ ହସରେ ଉଡ଼ାଇ ଦେଇ କହିଲା, "ନିଶ୍ଚୟ, ଆମ ଦେଶରେ ମଧ୍ୟ ଫ-ଲ ହୁଏ, ସବୁରେ ଝଡ଼େ, ନୂଆ ପତର କଅଁଳେ । ଆମ ଦେଶରେ ମଧ୍ୟ ଜହ୍ନ ଅଛି, ସୂର୍ଯ୍ୟ ଅଛି ।" ତା'ପରେ ସେ ଟିକିଏ ରହିଯାଇ ଦୁଃଖ କଲ ପରି କହିଲା, "କିନ୍ତୁ ଫ-ଲ ଥିଲେ କଅଣ ହେବ, ଫ-ଲ ଫ୍ୟାସନ ନାହିଁ ।" ମାର୍ଥା ତା' ସାଙ୍ଗରେ ହସିଲା ଓ ପ୍ରଶଂସା ଛଳରେ କହିଲା,—ଓ, ୟୁ ଆର୍ ସୋ କ୍ଲେଭର୍ ! (ତୁ ଭାରି ଚାଲାଖ !)

ମାର୍ଥା ଗୀତ ଆରମ୍ଭ କଲା । ଗୀତା ଯୋଗ ଦେଲା । ମାର୍ଥା ଆକାଶକୁ ଅନାଇ ମଜ୍ଜି ଗଲା ପରି ଗୀତ ଗାଉଥାଏ । କିନ୍ତୁ ଗୀତା ହସିକରି ପଦେ ପଦେ ଗାଇ ରହିଯାଉଥାଏ । ବେଳେ ବେଳେ ହଳଦିଆ ଶୁଖିଲା ପତର ଖଣ୍ଡେ ହାତକୁ ଆଣି ଚିକ୍‌ଚିକ୍ କରୁଥାଏ, କିମ୍ବା ଗୋଟିଏ ଏକୁଟିଆ ଉଇଁଚୁ ଗଛ ଉପରେ ଚଢ଼ିବାର ଦେଖି ଭାବୁଥାଏ ଉଇଁମାନଙ୍କ କଥା,—ସେମାନେ କେମିତି ସାଙ୍ଗ ହୁଅନ୍ତି, କଥାବାର୍ତ୍ତା କରନ୍ତି, ଖୁସି ହୁଅନ୍ତି ।

ଗୀତ ବୋଲୁ ବୋଲୁ ମାର୍ଥା କେତେବେଳେ ତା'ଠୁ ଅଲଗା ହୋଇଯାଇଛି । ଗୀତାର ମନେ ହେଲା ଯେ ମାର୍ଥା ତା' ପାଖରେ ନାହିଁ । ସେ ଏକାଠି ଗୀତ ବୋଲୁ ନାହିଁ, ନିଜ ପାଇଁ ନିଜେ ବୋଲୁଛି । ଗୀତା ବ୍ୟସ୍ତ ହେଲା ନାହିଁ । ମାର୍ଥା ସେମିତିକା, —ଆଲନ୍ ଭାଷାରେ ରୋମାଣ୍ଟିକ ।

ପତରଝଡ଼ା 'ଫ-ଲ' ଋତୁର ଉପରବେଳା । ଆଉ କିଛିଦିନ ଗଲେ ବେଶି ପତର ଝଡ଼ିବ । ପତରସବୁ ପବନରେ ଖେଳିବେ, ବର୍ଷାରେ ଲଗାଲଗି ହୋଇ ଜମା ହେବେ ରାସ୍ତା ଉପରେ ଓ ରାସ୍ତା କଡ଼ରେ । ହଳଦିଆ ପତର, ନାଲିଆ ପତର, ବାଦାମି ପତର । ଆଉ କେତେ ମିଶାମିଶିଆଁ ରଙ୍ଗ, ମିଶାମିଶିଆଁ ରୂପ,—ଫାଳକିଆ ପତର, ଝୁମ୍ପୁଝୁମ୍ପୁକିଆ ପତର, ଢେରପାଚିଲା ପତର । ଗୀତାକୁ ଏ ଋତୁ ଭଲ ଲାଗେ । ସବୁଠୁଁ ଭଲ ଲାଗେ ତାଙ୍କ ଘର ଆଗରେ ଥିବା ସେ ଗଛଟା,—ଯାହାର ସବୁ ପତର ଏକାବେଳକେ ଚହଟ ନାଲି ହୋଇ ଉଠେ, ତା'ପରେ ଆଖୁର ନାଲି ହୁଏ ଓ ଶେଷକୁ ଶୁଖି ଶୁଖି ଝଡ଼ିଯାଏ । ଭଲ ଲାଗେ ସତ, କିନ୍ତୁ ସେ ଗଛ ପାଖରେ ପହଞ୍ଚିଲା ବେଳକୁ ତାକୁ କେମିତି ମାଡ଼ି ମାଡ଼ି ପଡ଼େ । ମନେହୁଏ ଯେ ବେଶି ଗୁଡ଼ାଏ ରଙ୍ଗ ହୋଇ ଯାଇଛି, ଏତେ ଆଖିରେ ଧରିହେବ ନାହିଁ । ସେ ପଛେଇ ଯାଇ ଗଛକୁ ଦେଖେ, ତା'ର ନାଲିକୁ ମିଶାଇ ଦିଏ ଆକାଶର ନେଳି ସାଙ୍ଗରେ, ଆଉ ସବୁ ଗଛ ପତରର ରଙ୍ଗ ସାଙ୍ଗରେ । ଛବି ପରି ସମସ୍ତଙ୍କୁ ଏକାଠି ରଖି ସଜାଇ ସାରିଲା ପରେ ତାକୁ ଉଶ୍ୱାସ ଲାଗେ, ଇଚ୍ଛା ହୁଏ ତା'ର ଫଟୋ ନେବ ନ ହେଲେ କାଗଜରେ ଆଙ୍କିବ ।

ମାର୍ଥାକୁ ଦେଖି ଦେଖି ତା'ର ଗୀତ ଶୁଣି ଶୁଣି ତା'ର ସେମିତି ମନେହେଲା । ଯେ ସେ ମାର୍ଥାକୁ ତା'ର ଦୁଇ ଆଖିରେ ଧରି ରଖି ନଜର କରିପାରିବ ନାହିଁ । ମାର୍ଥାର ସବୁ ଅଛି । ସେ ସୁନ୍ଦର, ସେ ରୋମାଣ୍ଟିକ, ସେ ଭଲ ଗୀତ ବୋଲେ । ସେ ତା'ର ମୁଣ୍ଡବାଳକୁ ଭଲ ଭଲ ସଜାଇ ପାରେ, ସବୁ ଋତୁ ସାଙ୍ଗରେ ନୂଆ ନୂଆ ପୋଷାକ ପିନ୍ଧିପାରେ, ପାର୍ଟିରେ ସ୍କୁଲ ମିଟିଂରେ, ପିକ୍‌ନିକରେ, ସବୁ ସମୟରେ ଠିକ୍ ଧରଣର କଥା କହିପାରେ, ହସ ହସିପାରେ । ମାର୍ଥା ତା'ର ସାଙ୍ଗ ନୁହେଁ, ସେ ମାର୍ଥାର ସାଙ୍ଗ··· ।

······"ବେଲ୍‌ସ ଉଇଲ୍ ରିଙ୍ଗ୍

ୟୁ ଉଇଲ ବି ମାଇନ୍

ଇନ୍ ଆପ୍‌ଲ ବ୍ଲସମ୍ ଟାଇମ୍"······

ମାର୍ଥାର କଣ୍ଠ ଆହୁରି ନରମ ହୋଇ ଆସିଲା, ତା'ର ମୁହାଣୀ କେମିତି ଅନ୍ୟ ରକମର ହେଲା । ଗୀତା ତା' ଆଡ଼କୁ ଅନାଇ ରହିଲା,--ଆର୍ଟ ଗ୍ୟାଲେରିର ଗୋଟିଏ ସୁନ୍ଦର ଅଗୁଣ୍ଠା ଚିତ୍ର ଦେଖିଲା ପରି ।

କ୍ରମଶଃ ଗୀତାର ମନେ ହେଲା ଯେ ସେ କେବଳ ମାର୍ଥାକୁ ଦେଖୁନାହିଁ । ଅନ୍ୟମାନଙ୍କୁ ଦେଖୁଛି । ଆଉ ସବୁ ଝିଅ, ଆଉ ସବୁ ସୁନ୍ଦର ରୋମାଣ୍ଟିକ ଝିଅ । କାହାପରି ?

କେତେ ଝିଅ । ସୁନି ଅପା,—ସୁନିଅପା ? ତା' କଥା କାହିଁକି ମନେ ପଡ଼ିଲା ? ସୁନି ଅପା କଣ ମାର୍ଥା ପରି ? ଗୀତା ନିଜ ଭାବନାରେ ଆଶ୍ଚର୍ଯ୍ୟ ଓ ଆମୋଦିତ ହୋଇ ମାର୍ଥା ଆଡ଼କୁ ଅନାଇଲା । ସୁନିଅପାର ଗାଲ ଚହଲା ବୋଧହୁଏ ଟିକିଏ ମାର୍ଥା ସାଙ୍ଗରେ ମିଶିବ । ସୁନିଅପା କିଛି କମ୍ ଗୋରୀ ନୁହେଁ । ଆଉ ତା' ମୁହାଣୀ ଏମିତିକା ନରମ ଓ ସଫା । ତା' ଛଡ଼ା ସୁନିଅପା ଗୀତ ବୋଲେ,—ଏମିତିକା ରୋମାଣ୍ଟିକ ଗୀତ ।

ମାର୍ଥାର ରୂପରେ ସୁନିଅପାକୁ ଆବିଷ୍କାର କରି ଗୀତା ଭାବିଲା ଯେ ସେ ଗୋଟିଏ ଅଦ୍ଭୁତ ପିଲା, ତା'ର ଯେତେସବୁ ଅସମ୍ଭବ ଭାବନା ଆସେ । ସୁନିଅପା ଅଉ ମାର୍ଥା ! ଲଜକୁଳୀ ଛୋଟ ସହରର ଝିଅ ସୁନିଅପା ଓ ମଡ଼ର୍ଣ୍ଣ ଆମେରିକାନ ଝିଅ ମାର୍ଥା । ସୁନିଅପା ବାହା ହେଲା ଝିଅ, ଆଉ ମାର୍ଥା ହେଉଛି ଟୀନ୍ ଏଜର୍ । ଆକାଶ ପାତାଳ ପ୍ରଭେଦ । ଗୀତା ପ୍ରଭେଦ ବୈଷମ୍ୟ ବାଛି ବାଛି ଗଲା ଓ ପୁଣି ଆଶ୍ଚର୍ଯ୍ୟ ହେଲା ଯେ ସୁନିଅପାକୁ କେମିତି କାହିଁକି ଆଣି ଥୋଇଲା ମାର୍ଥା ପାଖରେ ।

କିନ୍ତୁ ସୁନୀଅପା ଅପଘର ଗଲା ନାହିଁ । ମାର୍ଥା ଯେତେବେଳେ ଗୀତ ଗାଇସାରି ଗୀତାର ହାତ ଧରି ତେଇଁପଡ଼ି ଅନ୍ୟମାନଙ୍କ ସାଙ୍ଗରେ ମିଶିବାକୁ ଗଲା, ଗୀତାର ମନେ ହେଲା ଯେ ସୁନୀଅପା ମଧ୍ୟ ଏମିତି ହୁଏ, ହୋଇପାରେ । ତା'ର ମଧ୍ୟ ଏମିତି ଉଚ୍ଛନ୍ନ ଉଚ୍ଚାଟ ପଣ ଅଛି । ଗୀତାର ମନେ ପଡ଼ିଲା ଯେ ଥରେ ସୁନୀଅପା ଏମିତି ଖଟରୁ ଉଠିପଡ଼ି ଗୀତାର ହାତ ଧରି ନାଚିଲା ପରି ହେଲା ବେଳକୁ ଜଣେ କିଏ ବଡ଼ ମଣିଷ ଆସିଗଲେ । ସୁନୀଅପା ଜିଭ କାମୁଡ଼ି ଓଢ଼ଣା ଟାଣି ଗୋଟାଏ କୋଣକୁ ଘୁଞ୍ଚିଗଲା । ଗୀତା ହସି ପକାଇଲା,—ଧରି ମାର୍ଥା ହେମିତି ଓଢ଼ଣା ଟାଣି ଜିଭ କାମୁଡ଼ି ଘୁଞ୍ଚିଯାଇ ଥାଆନ୍ତା !

ଫେରିବା ବେଳର ଆୟୋଜନ, ରଖାଥୁଆ, 'ବାଏ-ବାଏ' । ମାର୍ଥା ବିଦାୟ ନେଲା । କହିଲା, "ଗୀତା, ତୁ ଆମ ଘରକୁ କେବେ ଆସିବୁ କହିଲୁ ? ଏଥର ଏକୁଟିଆ ମୁଁ ଗାଇବି ନାହିଁ, ତୋତେ ମଧ୍ୟ ଗାଇବାକୁ ହେବ ।" ପୁଣି ଥରେ କୋକା-କୋଲା ପିଇବାର ପର୍ବ । କିଏ ଜଣେ ଖାଲି ବୋତଲ କୁନ୍ଦ ତଳକୁ ଗଡ଼େଇ ଦେଲା,—ଯା— ଗଡ଼ିଯା— । ସେ ଗଡ଼ି ଗଡ଼ି ପଡ଼ିଲା ଯାଇଁ ତଳେ, ଚାଲନ୍ତା ପାଣିଧାର ଉପରେ । ପିକ୍‌ନିକ ସରିଗଲା ।

ଗୀତା ସୋଫିଆ ସାଙ୍ଗରେ ଘରକୁ ଫେରିଲା ତା'ରି କାର୍‌ରେ । ତାଙ୍କ ଘର ଗୀତାର ଘର ପାଖରେ । ସୋଫିଆ ଗୀତାର ବିଶେଷ ସାଙ୍ଗ ନୁହେଁ, ଅଳ୍ପ କଥା କହେ । ତେଣୁ ଗୀତା ଯଥେଷ୍ଟ ସମୟ ପାଇଲା ପିକ୍‌ନିକ ଘରର ଅବସାଦ ଓ ସନ୍ତୋଷକୁ ଆପଣାର କରି ପାଇବାକୁ ।

ଗୀତା ଖୁସି ଥିଲା । ସୁନୀଅପାର ଛବି ମଝିରେ ମଝିରେ ମନ ଭିତରେ ଆସି ଚାଲି ଯାଉଥାଏ । ଗୀତାର ମନେ ହେଲା ଯେ ସୁନୀଅପା ଆସିଛି ଓ୍ୱାଶିଙ୍ଗ୍‌ଟନକୁ । ସୁନୀଅପା ପିକ୍‌ନିକରେ ବସି କୋକା-କୋଲା ପିଉଛି । ସୁନୀଅପା ଟ୍ୱିଷ୍ଟ ନାଚୁଛି । କିନ୍ତୁ ସୁନୀଅପାକୁ ନେଇ ଏମିତି ବିଭିନ୍ନ ଦୃଶ୍ୟ ଅନୁମାନ କରିସାରିଲା ପରେ ଗୀତା ନିଜକୁ କହିଲା,—ବିଚାରୀ ସୁନୀଅପା ! ଦୟା ଆସିଲା । ସତେ ଯେପରି ତାକୁ ଏଠିକି ଆଣି ଏମିତି ହାଇଜାକ୍ କରିବା ଉଚିତ ନଥିଲା ।

ବାଟରେ ଓ୍ୱାଶିଙ୍ଗ୍‌ଟନ ମନୁମେଣ୍ଟ ଚାଲିଗଲା । ଚାରିକୋଣିଆ ସ୍ତମ୍ଭ ସିଧାହୋଇ ଖ ହୋଇ ଉଠିଛି ଉପରକୁ, ଉପରେ ଗୋଜିଆ,—ପେନସିଲ ମୁନ ପରି, ରକେଟ ପରି । ଉପରକୁ ଉଠୁଛି, ଉଠୁଛି, ଚନ୍ଦ୍ରରେ ପହଞ୍ଚିବ, ଭେନସ୍‌ରେ ପହଞ୍ଚିବ । ଏମାନେ ହବୁ କେତେ ଉପରକୁ ଯିବେ କେଜାଣି !

ଓ୍ୱାଶିଙ୍ଗଟନ ମନୁମେଣ୍ଟରୁ ମନେ ପଡ଼ିଲା ଜେଫର୍‌ସନ୍ ମନୁମେଣ୍ଟ । ସେ ଆଉ ଥରେ ଯିବ ଦେଖିବାକୁ, କାନ୍ଥରେ ଲେଖା ହୋଇଥିବା ପ୍ରତ୍ୟେକ ଧାଡ଼ି ପଢ଼ିବ ।

ଆମେରିକା ଇତିହାସ ପଢ଼ି ସ୍ୱାଧୀନତା ଘୋଷଣାର ସେହି ପ୍ରଥମ କେତୋଟି ଧାଡ଼ି ତା'ର ମୁଖସ୍ଥ—We hold these t uths to be self-evident…… । ଆମେ ଏହିସବୁ ସତ୍ୟକୁ ସ୍ୱତଃସିଦ୍ଧ ବୋଲି ମାନୁଛୁ ଯେ ସୃଷ୍ଟିରେ ସମସ୍ତେ ସମାନ, ଯେ ନିଜ ଜୀବନ, ସ୍ୱାଧୀନତା ଓ ସୁଖସନ୍ଧାନ ଉପରେ ପ୍ରତ୍ୟେକ ଲୋକର ଅଧିକାର ଅଛି…… । କ୍ଲାସ୍ ଟିଚର୍ ତା'ର ଅର୍ଥ ବୁଝାଇ ଦେଇଥିଲେ । ଆଉ କହିଥିଲେ ଯେ ଏହି ହେଉଛି ଆମେରିକା ଇତିହାସର ସବୁଠାରୁ ବଡ଼ କଥା । ଏଇଥିପାଇଁ ଆମେରିକା ଏତେ ବଡ଼ ହୋଇଛି, ସ୍ୱାଧୀନ ପୃଥିବୀର ନେତା ହୋଇପାରିଛି । ଅବଶ୍ୟ ଆମେରିକାର ବଡ଼ପଣ ସବୁବେଳେ ମାନିନେବା କଥା ନୁହେଁ । ତେଣୁ ସେ ଭାବିଥିଲା ଘରକୁ ଗଲେ ବାପାଙ୍କୁ ପଚାରିବ,—ଇଣ୍ଡିଆର ଇତିହାସରେ ଏମିତି କଣ କିଛି ନାହିଁ ?

ଆଜି ସେ ଧାଡ଼ିଗୁଡ଼ିକ ପୁଣି ତା'ର ମନେ ପଡ଼ିଲା । ପ୍ରତ୍ୟେକ ଲୋକର ଅଧିକାର । ପ୍ରତ୍ୟେକ ଲୋକର ? ମାନେ ତା'ର ମଧ୍ୟ ସେ ଅଧିକାର ଅଛି ? ମାର୍ଥାର ଆଉ ସୁମିଅପାର ? ସେ ଅଧିକାର ଦେଲା କିଏ—ଭଗବାନ ?

କାର୍ ରେଡ଼ିଓରୁ ପାଣିପାଗର ଖବର ଆସିଲା,—ପ୍ରତି ଅଧଘଣ୍ଟାରେ ଆସେ, —ଯେ ରାତିରେ ବର୍ଷା ହେବ, ବର୍ଷା ସାଙ୍ଗରେ ପବନ ଓ ଘଡ଼ଘଡ଼ି ମଧ୍ୟ ହେବ । ତା'ପରେ ଆସିଲା କେଉଁ କୁକୁର ଖାଦ୍ୟର ଆଡ଼ଭର୍ଟାଇଜମେଣ୍ଟ । ସେ ଖାଦ୍ୟର ବାସ୍ନା ପାଇ କୁକୁରମାନେ କୁଆଡ଼େ ମାଇଲ ମାଇଲ ଦୂରରୁ ଧାଇଁ ଆସନ୍ତି ।

ଚନ୍ଦ୍ରା ଡ୍ରଗଷ୍ଟୋର ଅସିଗଲାଣି । ଗୀତା ମନେ ରଖିଲା ମାଆଙ୍କୁ କହିବ ଯେ ସେ ତିଆରି କରିଥିବା ସିଙ୍ଗଡ଼ା ଓ ଆଳୁଦମ୍‌କୁ ସମସ୍ତେ କେମିତି ପ୍ରଶଂସା କଲେ । ଆଉ କଣ କହିବ ବୋଲି ଭାବିଥିଲା ତ,—ମନେ ପଡ଼ୁନାହିଁ ।

ଘର ପାଖରେ ତାକୁ ଓହ୍ଲାଇ ଦେଇ ସୋଫିଆର ମାଆ ଧନ୍ୟବାଦ ଦେଲେ ଓ କହିଲେ ଯେ ତା' ସାଙ୍ଗରେ ଜଣାଶୁଣା ହେବାରୁ ସେ କେତେ ଖୁସି, ଯେ ତା' ମାଆଙ୍କ ସାଙ୍ଗରେ ଦେଖା ହେଲେ ସେ କେତେ ଖୁସି ହୋଇଥାଆନ୍ତେ, କିନ୍ତୁ କାମ ଥିବାରୁ ବାଧ୍ୟ ହୋଇ…ଇତ୍ୟାଦି ଇତ୍ୟାଦି । ଗୀତା ସବୁଥର ପରି ଧନ୍ୟବାଦ ଦେବା ଛଡ଼ା ଆଉ କିଛି କହିପାରିଲା ନାହିଁ ।

ଗୋଟିଏ ଗୋଟିଏ ପାଦରେ ଅଳସ ଗତିରେ ଦାଣ୍ଡ ପାହାଚ ଚଢ଼ୁ ଚଢ଼ୁ ଗୀତା ଆକାଶକୁ ଅନାଇଲା । ସତରେ ଆଜି ବର୍ଷା ହେବ, ଆକାଶ ମେଘରେ ଭରି ଗଲାଣି ।

…ସେଦିନ ରାତିରେ ବର୍ଷା ହେଲା ଓ ବର୍ଷା ସାଙ୍ଗରେ ପବନ । ପବନରେ କେତେ ପତର ଝଡ଼ିଲା, କେତେ ପତର ଉଡ଼ିଲା । ଗୀତା ଦେଖୁଥାଏ ଓ ଶୁଣୁଥାଏ ।

ଆଜି କଣ ଅକ୍ଟୋବରେ ଫ-ଲ୍‌ର ଆରମ୍ଭ ? ନା ତ, ଆଗରୁ ପତର ଝଡ଼ିଲାଣି କେତେ ? କିନ୍ତୁ ସେ ଭାବିଲା ଯେ ଫ-ଲ୍‌ର ଏମିତି ଆସିବା ଉଚିତ । ସ୍ପ୍ରିଙ୍ଗ୍ ମଧ୍ୟ ଏମିତି ଆସନ୍ତା । ଗୋଟିଏ ଦିନରେ ସବୁ ଫୁଲ ଫୁଟି ଉଠି କହନ୍ତେ—ଆଜିଠୁଁ ସ୍ପ୍ରିଙ୍ଗ ଆସିଲା । ଯେମିତି ଜନ୍ମଦିନ ଆସେ, ନଅ ପୂରି ଦଶ, ଦଶ ପୂରି ଏ'ଗାର । ଆଜିଠୁଁ ପିଲାଦିନ ସରିଗଲା । ବଡ଼ ଦିନ ଆସିଲା । ହେଲେ କହିବା କଥା ସିନା, ବଡ଼ଦିନ ତ ସେମିତି ହଠରେ ନାହିଁ । ଗୀତାର ଦୁଃଖ ହେଲା । ତା'ର ପିଲାଦିନ ସରିଛି ନା ସରିନାହିଁ ? ତା'ର କଣ କେଉଁଦିନ ଏମିତିକା ଫ-ଲ୍‌ର ସାତ ଆସିବ ନା ଆସିଥିଲା ?

ବର୍ଷା ମଝିରେ ମଝିରେ ଆସୁଛି ପାଗଳଙ୍କ ପରି । ପବନ ସାଙ୍ଗରେ ମିଶି କାଚଝରକା ଓ କାଠଘରକୁ କଣ ଗୋଟାଏ ଜରୁରୀ କଥା ଜୋର୍‌କରି କହି ଚାଲି ଯାଉଛି । ଫାୟାର ଇଞ୍ଜିନ ପରି । ଘର ଭିତରେ ବସି ଗୀତାକୁ ମଜା ଲାଗିଲା ବର୍ଷାର ପାଗଳାମି ଦେଖିବାକୁ । ସେ ମନେ ମନେ ବର୍ଷାକୁ କହିଲା,—ପାଟି କର, ବାଡ଼େଇ ପିଟି ହୁଅ, କିଏ ମନା କରୁଛି । ପାଟି କରିବାକୁ ସମସ୍ତଙ୍କର ଅଧିକାର ଅଛି । ଆମେ ଏହିସବୁ ସତ୍ୟକୁ ସ୍ୱତଃସିଦ୍ଧ ବୋଲି ମାନୁଛୁ ଯେ…

ଖାଇସାରି ବିଛଣାରେ ଆସି ଶୋଇଲା ବେଳକୁ ବର୍ଷାର ତେଜ କମି ଯାଇଥାଏ । ବର୍ଷା ଝିପୁରୁ ଝିପୁରୁ ହୋଇ ପଡ଼ୁଥାଏ,—ସତେ ଯେପରି ସରିବ ନାହିଁ, ଏମିତି ଝରୁଥିବ ସବୁବେଳେ । କଳ ଖରାପ ଥିଲେ ପାଣି ପାଇପରୁ ଯେମିତି ପାଣି ବନ୍ଦ ହୁଏ ନାହିଁ । କଥା ସରିଗଲେ ସୁଦ୍ଧା ପିଲାମାନେ ଯେମିତି କାନ୍ଦି ଚାଲନ୍ତି ।

ନିଦ ଆସିବା ଆଗରୁ ଗୀତାର ଆଖି ଆଗରେ ନାଚିଗଲା ପିକ୍‌ନିକ କଥା, ମାର୍ଥା, ମିସ୍ ମନ୍‌ରୋ ଓ ଅନ୍ୟମାନେ । ଅଯଥାରେ ସୁନାଅପା ମଧ୍ୟ ଦେଖା ଦେଲା । ଗୀତା ବୁଝି ପାରିଲା ନାହିଁ କାହିଁକି ସେ ଥରକୁ ଥର ମନକୁ ଆସୁଛି । ସୁନାଅପା ମାର୍ଥା ପରି ଦେଖିବାକୁ,—ସେଇଥିପାଇଁ ? ସୁନାଅପା ତା'ଠୁ ବଡ଼, ବାହାହେଲା ଝିଅ, ସମ୍ପର୍କରେ ଅପା । ତା'ର ମନେ ପଡ଼ିଲା ଦିନେ ସେ ଲଗାଲଗି ହୋଇ ସୁନାଅପା ସାଙ୍ଗରେ ଶୋଇଥିଲା, ଏକା ବିଛଣାରେ । ବ୍ରଜଭାଇ କୁଆଡ଼େ ଟୁର୍‌ରେ ଯାଇଥିଲେ । ସୁନାଅପାର ଗୋରା ସୁନ୍ଦର ଦେହକୁ ଦେଖି ତା'ର ଲୋଭ ଆସିଥିଲା,—ଝିଅମାନେ କଣ ଏମିତି ସୁନ୍ଦର ହୋଇ ବଢ଼ନ୍ତି ? ସେ ସୁନାଅପା ଦେହରେ ହାତ ପକାଇଥିଲା, ତାକୁ ଭଲ ଲାଗିଥିଲା । ସେଦିନ ତାର ଇଚ୍ଛା ହୋଇଥିଲା ଯେ ସେ ସବୁଦିନ ରାତିରେ ସୁନାଅପା ପାଖରେ ଶୁଅନ୍ତା । ବ୍ରଜଭାଇ ଆଉ ନ ଆସନ୍ତେ କି !

ତା'ର ମନେ ପଡ଼ିଲା ଯେ ସେଦିନ ରାତିରେ ବି ଏମିତି ବର୍ଷା ହେଉଥାଏ, ଝିପୁରୁ ଝିପୁରୁ ହୋଇ ଝରି ଚାଲିଥାଏ । ସୁନାଅପା ତା'କୁ ଥରକୁଥର କହୁଥାଏ ଶୋଇ

ପଡ଼ିଚାଲୁ, କିନ୍ତୁ ନିଜେ ଶୋଉ ନ ଥାଏ । ଆଉ ଗୀତାର ଇଚ୍ଛା ହେଉଥାଏ ଯେ ସୁନୀଅପା ଶୋଇପଡ଼ନ୍ତା ଓ ସେ ତାକୁ ବସି ଦେଖୁ ଥାଆନ୍ତା । ଶେଷକୁ ସୁନୀଅପା ରାଗିବା ଛଳରେ କହିଲା, "ଗୀତା, ତୁମେ ଖୁସି ଦୁଷ୍ଟ ହେଲଣି, ଏଥର ନ ଶୋଇଲେ ମୁଁ କହିଦେବି— ।" "କାହାକୁ କହିଦେବ,—ବ୍ରଜଭାଇଙ୍କୁ ?" ଗୀତା ପାଟିରୁ ବାହାରିଲା । ସୁନୀଅପା ହସିଲା । କିନ୍ତୁ ଗୀତାର ମନେ ହେଲା ଯେ ସେ ଖାଲି ହସିବା ପାଇଁ ହସୁଛି । ଶେଷକୁ ଗୀତା ଆଖିବୁଜି ଶୋଇ ରହିଲା, ଯେମିତିକି ସୁନୀଅପା ଭାବିବ ଯେ ସେ ନିଦରେ ଶୋଇଗଲଣି । ଶୋଉ ଶୋଉ ତାକୁ ନିଦ ଲାଗି ଆସିଲା । କିଛି ସମୟ ପରେ ହଠାତ୍ ତାର ଅଧା-ନିଦ ଭାଙ୍ଗିଗଲା । କଣ ହେଲା ? ଆଖି ଖୋଲିଲା ବେଳକୁ ସୁନୀଅପା ବିଛଣାରେ ମୁହଁମାଡ଼ି ଶୋଇଛି ଓ କାନ୍ଦୁଛି । ସେ କାନ୍ଦଣା ଅନ୍ୟରକମର, ପିଲାଙ୍କ କାନ୍ଦ ପରି ନୁହେଁ, ରୋମାଣ୍ଟିକ୍ ଦୁଃଖ ଗୀତ ଗାଇଲା ପରି ନୁହେଁ । ସେ କାନ୍ଦଣାକୁ ସତେ ଯେପରି ବୁଝାଇ ହେବ ନାହିଁ । ସୁନୀଅପା ଭଲ ଝିଅ, ସୁନ୍ଦର ଝିଅ, ନୂଆ ହୋଇ ବାହା ହୋଇଛି ବ୍ରଜଭାଇଙ୍କୁ । ସୁନୀଅପା ହସେ, ଗୀତ ବୋଲେ । ତେବେ ସେ କାନ୍ଦୁଛି କାହିଁକି ଏମିତି । ଗୀତାକୁ ବ୍ୟସ୍ତ ଲାଗିଲା କିନ୍ତୁ ଉଠି ବସିବାକୁ ସାହସ ହେଲା ନାହିଁ । ତାର ଇଚ୍ଛା ହେଲା ଘରେ ଆଲୁଅ ଜଳାଇ ଦିଅନ୍ତା, ବର୍ଷାର ଅସରନ୍ତି ଝରିବାକୁ କହନ୍ତା ବନ୍ଦ ହୋଇଯିବା ପାଇଁ ଓ ସୁନୀଅପାକୁ ପଚାରନ୍ତା ସେ କାହିଁକି କାନ୍ଦୁଛି । କିନ୍ତୁ ସେ କିଛି କରିପାରିଲା ନାହିଁ ।

ବଡ଼ମାନେ ଏମିତି କାନ୍ଦନ୍ତି କାହିଁକି ? ସେ ଦିନ ରାତିରେ ସେ ଏହି ପ୍ରଶ୍ନ କେତେ ପଚାରିଥିଲା ନିଜକୁ । ଆଜି ମଧ୍ୟ ତିନିଚାରି ବର୍ଷ ପରେ ସୁନୀଅପା କଥା ମନେ ପଡ଼ିଲାରୁ ସେ ସେହି ପ୍ରଶ୍ନ ପଚାରିବସିଲା । ବଡ଼ ଝିଅମାନଙ୍କୁ କଣ ଏମିତି କାନ୍ଦିବାକୁ ପଡ଼େ ? ଆମେରିକାର ଝିଅମାନେ, ବାହାହେଲା ବଡ଼ ଝିଅମାନେ କଣ ଏମିତି କାନ୍ଦନ୍ତି ? ପ୍ରଶ୍ନର ତାଡ଼ନା ସହି ନ ପାରି ସେ ଅନ୍ୟ କଥା ଭାବିବସିଲା—ମାର୍ଥା କେମିତି ଗୀତ ବୋଲେ, ଆଲନ୍ କେମିତି ନାଚେ । ଟ୍ୱିଷ୍ଟ୍ ପରେ ସେହି ଯେଉଁ ନୂଆ ନାଚ ବାହାରିଛି, ମଜାର ନା, "ଆଲୁ-ଚକଟା" (ମ୍ୟାସ୍‌ଡ୍ ପଟାଟୋ)··· ।

( ୩ )

ଆଜିକାଲି ମାର୍ଥାର ଗୋଟାଏ ଢଙ୍ଗ ବାହାରିଛି । ସେ ଯାଉଣୁ ଆସୁଣୁ ତା'କୁ କହୁଛି, "ଗୀତା, ମୁଁ ତୋତେ ଭଲ ପାଏ ।" ସେହି କଥାକୁ କେତେ ବାଗରେ କେତେ ଭଙ୍ଗୀରେ କହୁଛି । ସେ କଣ ସତରେ ମୋତେ ଏତେ ଭଲ ପାଏ ? ଗୀତା ମନେ ପକାଉଛି ମାର୍ଥା ଓଠରେ ସେହି କଥାଟିକି କେମିତି ଫୁଟିଉଠେ, ତା'ର ଆଖିପତା କେମିତି ଢଳେଇ ହୋଇ ଆସେ, ତା'ର ମୁହଁର ସବୁଯାକ କେମିତି ହସିଲା ଭଳି

ଦେଖାଯାଏ—ଆଇ ଲଭ୍ ୟୁ, ଆଇ ଲଭ୍ ୟୁ··· । ଅଜାଣତରେ ଗୀତାର ଓଠ ମଧ୍ୟ ଥର ଉଠିଲା କହିଲା ପରି—ଆଇ ଲଭ୍ ୟୁ ।

ମାର୍ଥା ତା'ର ବଏ-ଫ୍ରେଣ୍ଡ୍‌କୁ କଣ ଠିକ୍ ଯେମିତି ଭାବରେ କହେ ? ଗୀତାର ଇଚ୍ଛା ହେଲା ମାର୍ଥାକୁ ସେତେବେଳେ ଦେଖନ୍ତା ।

ଏତିକିବେଳେ ସ୍ୱୀନା କେଉଁଠି ଥିଲା ସେହି ବାଟ ଦେଇ ଚାଲିଗଲା, ଶାଢ଼ୀର ପଣତ ଉଡ଼ାଇ । ସାଙ୍ଗରେ ଆଉ କେତେଜଣ ଝିଅଟିଏ ଅଛି । ଗୀତାକୁ ଦେଖି ହାତ ହଲାଇ କହିଲା—ହାଏ, ଗୀତା । ଗୀତା 'ହାଏ' ର ପ୍ରତିଦାନ ଦେବା ପୂର୍ବରୁ ସେ କାହିଁ କେତେ ଦୂରରେ ।

ସମସ୍ତେ କହନ୍ତି ଯେ ସ୍ୱୀନାର କୁଆଡ଼େ ବଏ-ଫ୍ରେଣ୍ଡ୍ ଅଛନ୍ତି, ଜଣକରୁ ବେଶି । ସେ କୁଆଡ଼େ ତାଙ୍କ ସାଙ୍ଗରେ ରେଷ୍ଟୋରାଁକୁ ଯାଏ, ସିନେମା ଦେଖେ । ଧ୍ୟାତ୍—ସ୍ୱୀନା ଆଉ ତା ବଏ-ଫ୍ରେଣ୍ଡ୍ ! ଗୀତାକୁ ସେ କଳ୍ପନା ଅସୁନ୍ଦର ଇତର ବୋଲି ମନେ ହେଲା । ସ୍ୱୀନା କଅଣ ମାର୍ଥା ହୋଇଛି ? ସେ କହି ପାରିବ ମାର୍ଥା ପରି—ଅଇ ଲଭ୍ ୟୁ ? ହୁଁଃ ! ସ୍ୱୀନା ଫୁଲେଇ, ଦେଖେଇ ହୁଏ । ଇଣ୍ଡିଆନ୍ ଗାର୍ଲ ହୋଇ ଭାବେ ଯେ ସେ ଏମାନଙ୍କ ଭିତରୁ ଜଣେ ।

ଲଞ୍ଚ୍-ଆୱାର୍ ସରିଯିବାର ଘଣ୍ଟା ବାଜିଉଠିଲା । ଏବେ ଝଣି ସାଇନସ୍ କ୍ଲାସ୍ । ମାର୍ଥା ମଧ୍ୟ ସେହି କ୍ଲାସ୍‌କୁ ଯିବ । ଗୀତାର ଇଚ୍ଛା ହେଲା ସେ କ୍ଲାସ୍‌କୁ ଯିବ ନାହିଁ, ଆଡ଼େଇ ହୋଇ ରହିବ । କ୍ଲାସ୍‌ରେ ମାର୍ଥା ମୁହଁ ଖୋଲି କିଛି କହିବ ନାହିଁ, କିନ୍ତୁ କାଗଜରେ ହୁଏତ ଲେଖି ଦେବ—ଆଇ ଲଭ୍ ୟୁ । ସେଦିନ ଦବ ସେହି କାଗଜ ଦେଖିନେଇ ଥାଆନ୍ତା । କଅଣ ହୋଇଥାନ୍ତା ତା' ପରେ ? ଛିଃ !

ଯାହାହେଉ ସେଦିନ କ୍ଲାସରେ ମାର୍ଥା କିଛି ଦୁଷ୍ଟାମି କରି ନ ଥିଲା । କିନ୍ତୁ ମନେ ହେଉଥିଲା ଯେ, ତା'ର ପଢ଼ାରେ ମନ ନାହିଁ । କଣ ବସି କାଗଜରେ ଅଙ୍କୁଥିଲା ଓ ମଝିରେ ମଝିରେ ଉପରକୁ ଅନାଇ ଭାବୁଥିଲା । ଗୀତା ଠିକ୍ କରି ନେଲା, ଏଥିରେ ସନ୍ଦେହର କାରଣ କିଛି ନାହିଁ—ସେ ତା' ବଏଫ୍ରେଣ୍ଡ୍ କଥା ଭାବୁଛି । ଶୁଣାଯାଏ ଯେ ସେ ଅଳ୍ପଦିନ ଭିତରେ ତା'କୁ ବାହା ହେବ ।

ଗୀତାର ମାର୍ଥାକୁ ଷ୍ଟୁହିଁ ରହିବାକୁ ଇଚ୍ଛା ହେଲା । ତା'ର ମନ ଖଜବଜ ହେଲା ଜାଣିବାକୁ—ମାର୍ଥା କଣ ଭାବୁଛି । ଭଲ ପାଇଲେ ଏମିତି ସବୁ ହବନ୍ତି ପରା ! ସମସ୍ତେ ନୁହେଁ, ମାର୍ଥା ପରି ଝିଅମାନେ । କାହିଁକନା ମାର୍ଥା ହେଉଛି ରୋମାଣ୍ଟିକ୍ । ତାକୁ ମଜା ଲାଗିଲା । ସେହି ମୁହୂର୍ତ୍ତରେ ତା'ର ମନେ ହେଲା ଯେ ସେ ମାର୍ଥାକୁ ଭଲ ପାଏ, ବହୁତ ଭଲ ପାଏ ।

ସେଦିନ ସେ ଆଲନ୍ ସାଙ୍ଗରେ ସ୍କୁଲ୍‌ରୁ ଫେରିଲା ବସ୍-ଷ୍ଟପ ଯାଏଁ । ମାର୍ଥା ସାଙ୍ଗରେ ଦେଖା ହୋଇନାହିଁ । ସେ ଆଲନ୍‌କୁ ପଚାରିଲା ଯେ ମାର୍ଥା କାହିଁକି ବସ୍ ଧରିବାକୁ ଆସିନାହିଁ । ଆଲନ୍ କହିଲା ଯେ ଗୋଟାଏ ବଡ଼ କଳା କ୍ୟାଡ଼ିଲାକ୍ କାର୍ ଆସି ମାର୍ଥାକୁ ନେଇ ଯାଇଛି । କାହାର ସେ କାର୍ ? ମାର୍ଥା କହୁଥିଲା ଯେ ତାଙ୍କର ଗ୍ୟାରେଜ୍‌ରେ କେବଳ ଗୋଟିଏ ପୁରୁଣା ଫୋର୍ଡ ଅଛି । ନୂଆ ଗାଡ଼ି—କଳା କ୍ୟାଡ଼ିଲାକ୍—କାହାର ? କୌତୁହଳ ଭିତର ଦେଇ ଗୀତାକୁ ଖୁସି ଲାଗିଲା । କଳ୍ପନାରେ ସେ ଦେଖିଲା ମାର୍ଥାର ନୂଆ ସମ୍ପଦ—ସେ ଗୋଟିଏ ଅନିର୍ଦ୍ଦିଷ୍ଟ ରାଜ୍ୟର ରାଣୀ ହେବ, ହେବାକୁ ଯାଉଛି ।

ଆଲନ୍ ଭାରି ହସକୁରା । ସମସ୍ତଙ୍କୁ ଥଟ୍ଟା କରେ । ଗୀତାକୁ ମଧ୍ୟ ଥଟ୍ଟା କରେ । କହେ ଯେ ଗୀତା ଠିକ୍ କରିଛି ଆମେରିକାରେ ଘରଦ୍ୱାର କରି ବାହା ହୋଇ ରହିବ—କାହାକୁ ନା ମାର୍ଥାକୁ ! ଭାରି ଫାଜିଲ ଟୋକା; କିନ୍ତୁ ଭାରି ଭଲ, ସମସ୍ତଙ୍କୁ ସାହାଯ୍ୟ କରେ, ସମସ୍ତଙ୍କୁ ଖୁସି କରିବାକୁ ଚାହେଁ ।

କଥା ମଝିରେ ହଠାତ୍ ଆଲନ୍ କହିଲା—ଗୀତା, ତୁ ମାର୍ଥାର ବଏ-ଫ୍ରେଣ୍ଡ୍‌ର ଘର ଦେଖିଛୁ ? ମୁଁ ଦେଖିଲି ଏବେ, ଭାରି ସୁନ୍ଦର । ସେମାନେ ବାହା ହେଲେ ସେହି ଘରେ ରହିବେ, ପୁଅର ବାପ ମାଆ ଆଉ ଗୋଟାଏ ଘରକୁ ଯିବେ । ସେମାନେ ଭାରି ବଡ଼ଲୋକ, ତାଙ୍କର ବହୁତ ଘର ଅଛି । ଗୀତା କହିଲା—ସତେ ? କିନ୍ତୁ ସେହି ପଦଟିରେ ତା'ର ସ୍ପଷ୍ଟ ଆଗ୍ରହ ଓ ଉତ୍ସାହ ଆଲନ୍‌ର ଦୃଷ୍ଟି ଏଡ଼ାଇ ପାରିଲା ନାହିଁ । ସେ ମନ୍ତ୍ରଣାର ଗୋପନ ଭଙ୍ଗୀରେ ପଚାରିଲା—ଦେଖିବୁ ? ଦେଖିବୁ ସେ ଘର ? ବେଶି ଦୂର ନୁହେଁ । ଗୀତା ମନା କରି ପାରିଲା ନାହିଁ । ଭୁଲିଗଲା ଯେ ଘରେ ପହଞ୍ଚିବାକୁ କାଳେ ଡେରି ହେବ, ଅନ୍ଧାର ହୋଇଗଲେ ମାଆ ରାଗିବ ।

···କେଜାଣି କେତେ ବାଟ ଚାଲି ସାରିବା ପରେ ସେ ସେହି ଘର ପାଖରେ ପହଞ୍ଚିଲା । ପାଦ ଥକି ଆସିଲାଣି । ଆଲନ୍ ଘର ଦେଖାଇଲାରୁ ଗୀତାର ମନେହେଲା ଯେ ଏ ତ ଏଠିକାର ସବୁ ଘର ପରି—ଅଧିକା କଣ ଅଛି ଏଥିରେ ?

କିନ୍ତୁ ସେତେବେଳେ ସେ ତାକୁ ଭଲ ଭାବରେ ଦେଖି ନ ଥିଲା । ମାର୍ଥାର ଘର, ଏହି ଭାବନା ତା'ର ମନକୁ ଲାଗି ନ ଥିଲା । ଉପରମହଲର ଶୋଇବା ଘର ଝରକା ଉପରକୁ ଝୁଙ୍କି ପଡ଼ିଥିବା ଫୁଲପତ୍ରର ଗୋଛା ତା' ଆଖିରେ ପଡ଼ି ନ ଥିଲା ।

ନା, ଏ ଘର ସବୁ ଘର ପରି ନୁହେଁ । ଗୀତାର ଇଚ୍ଛା ହେଲା ଯେ ଆଲନ୍ ଯାହା ଭାବିଲେ ଭାବୁ ପଛକେ ସେ ସେହି ଘର ପାଖରେ କିଛି ସମୟ ଛିଡ଼ା ହୋଇ ରହିବ ଓ ତା'କୁ ଦେଖିବ ସବୁ ଆଡ଼ୁ ।

ଘରର ପଛଆଡ଼େ ଝାଡ଼ି ପାଖ୍‌ଲାଣ୍ଟରେ ଦେଖା ହେଉଛି ବହୁ ବଡ଼ ଗଛର ମେଳା, ରକ୍‌ଫିକ୍‌ ପାର୍କର ଜଙ୍ଗଲ୍‌ । ସକାଳୁ ଉଠି କଫି ତିଆରି କଲାବେଳକୁ ଝରକା ବାଟେ ଦେଖାଯିବ । ମାର୍ଥା କଫି ତିଆରି କରିବ । ମାର୍ଥାର କିଚେନ୍‌ ସଫାସୁତୁରା ହୋଇଥିବ ତା'ର ସବୁ ଜିନିଷ ପତ୍ର । କେତେ ରକମର ହତିଆର ପାତ୍ର ଥିବ—ସିଝା ଅଣ୍ଡାକୁ ସମାନ ଭାବରେ କାଟିବା ପାଇଁ, ଅଣ୍ଡାରୁ ହଳଦିଆ କାଢ଼ିବା ପାଇଁ, ପିଆଜ କାଟିବା ପାଇଁ ଯେମିତି ଆଖି ପୋଡ଼ିବ ନାହିଁ । କେତେରକମର ବାସନ ଥିବ, ରୋଷ୍ଟ୍‌ କରିବା ପାଇଁ, ବେକ୍‌ କରିବା ପାଇଁ—ସବୁ ନୂଆ ଧରଣର । ସେ ଅଳ୍ପ କିଛି ରାନ୍ଧିଦେଇ ଟେବୁଲ ଉପରକୁ ନେଇ ଆସିବ, ପରଶିବା ବାସନ ତଳେ ମହମବତୀ ଜଳୁଥିବ । ଧାତ୍—ଏ ସବୁ ତ ସାଧାରଣ ଜିନିଷ, ଆମ ଘରେ ଅଛି । ମାର୍ଥାର କେତେ ଆହୁରି ସୁନ୍ଦର, ମଜାଳିଆ ଜିନିଷ ସବୁ ଥିବ— ।

କିଚେନ୍‌ରୁ ବେଡ଼ରୁମ୍‌, ବେଡ଼୍‌ରୁମ୍‌ରୁ ଲିଭିଙ୍ଗ୍‌ ରୁମ୍‌ । କେଜାଣି କାହିଁକି ସେ ବେଡ଼୍‌ରୁମ୍‌ରେ ବେଶି ସମୟ ରହିପାରିଲା ନାହିଁ, ଭାବିବାକୁ ଲାଜ ଲାଗିଲା ।

ଆରେ, ଘରର ଗୋଟାଏ କୋଣକୁ ଗୋଲାପ ଗଛ କେଉଁଠା ଅଛି । କେଉଁ ରଙ୍ଗର ଫୁଲ ଫୁଟିବ ସେଥିରେ ? ନାଲି, ଗୋଲାପି ନା ହଳଦିଆ ? ମାର୍ଥା ଫୁଲ ଭଲ ପାଏ, କେତେ ରକମର ଫୁଲ ଗଛ ଲଗାଇବ । ଟୁଲିପ୍‌, ଅଜେଲିଆ, କ୍ରିସାନ୍‌ଥିମମ୍‌...... । ସବୁ ଫୁଲର ରଙ୍ଗ ରୂପ ତା'ର ମନେ ପଡ଼ିଲା ନାହିଁ । ଖାଲି ଆଖି ଆଗରେ ଭାସିଗଲା ସିନ୍ଦୁରିଆ ଲାଲ ଗ୍ଲେଟିଆ ଟୁଲିପ, ସ୍ପ୍ରିଙ୍ଗ ହେଲାକ୍ଷଣି ମୁଣ୍ଡଟେକି ଅନାଏ, ପବନ ସାଙ୍ଗରେ ଖେଳେ, ଏକୁଟିଆ ନିଜକୁ ନିଜେ । ନିଜକୁ ନିଜେ । ମାର୍ଥା ଆଉ ତା'ର— । ଏକୁଟିଆ ଦୁଇଜଣିଆ କଫି । କାର୍‌ର ଆଗସିଟରେ ଏକୁଟିଆ ଦୁଇଜଣ । ରେଡ଼ିଓ, ରେକର୍ଡ଼ର ଗୀତ ଏକୁଟିଆ ଦୁଇଜଣଙ୍କ ପାଇଁ ।

ମାର୍ଥା ଓ ତା'ର ସେ ଭଲପାଆନ୍ତି ଦୁହିଁଙ୍କୁ ଦୁହେଁ । ଏ ଘର ତାଙ୍କୁ ଭଲପାଏ । ଟୁଲିପ୍‌ ଫୁଲ ସବୁ ତାଙ୍କୁ ଭଲ ପାଇବେ ।

ଆଲନ୍‌ କହିଲା—ବିଉଟିଫୁଲ, ନୁହେଁ ?

ଗୀତା କେବଳ ମୁଣ୍ଡ ଟିଙ୍ଗାରିଲା— କଣ କହିବ ଆଉ । କ୍ଷଣକ ପାଇଁ ତା'ର ହିଂସା ହେଲା ମାର୍ଥା ଉପରେ । ଇଚ୍ଛା ହେଲା ଭାବିବାକୁ ଯେ ଯଦି ସେ ମାର୍ଥା ଜାଗାରେ ଥାଆନ୍ତା ଓ ମାର୍ଥା ତା' ଜାଗାରେ, ତାହାହେଲେ— !

...ଫେରିବା ବାଟରେ ଆଲନ୍‌ ଗୀତାକୁ କହିଲା,—ତୁ ମାର୍ଥାର ବଏ-ଫ୍ରେଣ୍ଡ ନାଁ ଜାଣିଛୁ ? ସେ କାହାକୁ କହିନାହିଁ, କିନ୍ତୁ ମୁଁ ଜାଣେ । ତା' ନାଁ ହେଉଛି ଆର୍‌ମାଣ୍ଡୋ, ତା' ପୂର୍ବପୁରୁଷମାନେ ଇଟାଲୀରୁ ଆସିଥିଲେ । ମୁଁ ତାକୁ

ଅବଶ୍ୟ ଦେଖିନାହିଁ, କିନ୍ତୁ ତା'ର ନିଷ୍ଟସ୍ ତୋର ପରି କଳା ବାଳ ହୋଇଥିବ ଓ ତା' ଆଖି ହୋଇଥିବ ତୋରି ପରି ଗଭୀରିଆ କଳା ।

ଓ, ସଟ୍ ଅପ୍ ,—କହି ଗୀତା ହାତ ହଲାଇ ଦେଲା ଅବହେଳାର ଭଙ୍ଗୀରେ । ଆଲିନ୍ ହସୁଥାଏ । ଏଥିରେ ଏତେ ହସିବାର କଅଣ ଅଛି ? ଆଲିନ୍‌ଟା ଭାରି ହସକୁରା ।

...ଆଲିନ୍ ଫେରିଗଲା । ଏବଂ ମାର୍ଥା ଓ ଆର୍‌ମାଣ୍ଡୋ ଗୀତାର ଭାବନାକୁ ଅଧିକାର କରି ରହିଲେ । ଆର୍‌ମାଣ୍ଡୋ । ତା'ର ମୁଣ୍ଡବାଳ କଳା, ତା'ର ଆଖି କଳା, ମୋ' ପରି । ବୋଧହୁଏ ସେଇଥିପାଇଁ ମାର୍ଥା ମୋତେ— । ଧାତ୍, କଅଣ ଏମିତି ଭାବୁଛି ସେ !

ହେଲେ ବସ୍ ଘର ପାଖରେ ପହଞ୍ଚିଲା ବେଳକୁ ଭାବନା ସରି ନ ଥାଏ । ଏ ପର୍ଯ୍ୟନ୍ତ କେତେଗୁଡ଼ିଏ ପ୍ରଶ୍ନର ସମାଧାନ ହୋଇପାରି ନାହିଁ । ସେ ମାର୍ଥାକୁ ଆର୍‌ମାଣ୍ଡୋର ନାଁ ନେଇ ଚିଡ଼ାଇବ କି ନାହିଁ,— ମାର୍ଥା କିଛି ଖରାପ ଭାବିବ ନାହିଁ ତ ! ମାର୍ଥାର ବାହାଘରକୁ ସେ କଣ ପ୍ରେଜେଣ୍ଟ ନେଇ ଯିବ ? ଘରକରଣା ଜିନିଷ, ଅଳ୍ପ ଦାମିକିଆ ଗହଣା, ନା ଆଉ କିଛି ? ଯାହାହେଉ ·ସେ ପ୍ରେଜେଣ୍ଟ ସାଙ୍ଗରେ ଲଫାପା ଭିତରେ ଚିଠି ଖଣ୍ଡେ ଦେବ । ସେଥିରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥିବ,—ଆଇ ଲଭ୍ ୟୁ, ମାର୍ଥା ଯେମିତି ଲେଖିକରି ଦିଏ । ଆର୍‌ମାଣ୍ଡୋ ତାକୁ ଖୋଲିକରି ଦେଖିବ । ଭାବିବ ଏ କି ଲେଖା ! ଭାରି, ମଜା ହେବ । ମାର୍ଥା ଖୁସି ହେବ ।

ବାହାଘର ପରେ ସେ ତାଙ୍କ ଘରକୁ ଯିବ । ମାର୍ଥାକୁ କହିବ ସେ କେମିତି ଆଗରୁ ଥରେ ଆସି ଦେଖିଥିଲା ତାଙ୍କ ଘରକୁ । ମିଚିମିଚିକା ଫୁଲର ବଗିଚା ଦେଖିଥିଲା, ଦେଖିଥିଲା ଟ୍ୟୁଲିପ୍ କେମିତି ଏକୁଟିଆ ମନକୁ ମନ ହସୁଛି ।

( ୪ )

ମାଆ ମୋତେ ଭଲପାଏ ନାହିଁ । ଏ ଘରେ ମୋତେ କେହି ଭଲ ପାଆନ୍ତି ନାହିଁ । କେହି ମୋତେ ବୁଝିବା ପାଇଁ ଚେଷ୍ଟା କରନ୍ତି ନାହିଁ ।......

ରାଗ କମିଗଲା ପରେ ଗୀତା ଠିକ୍ କଲା ଯେ ବଡ଼ମାନେ ସାନମାନଙ୍କୁ, ମାନେ ତା' ବୟସର ପିଲାଙ୍କୁ ବୁଝିପାରନ୍ତି ନାହିଁ । ନୂଆ କଥା ନୁହେଁ, ବହିରେ ଅଛି । ଟୀନ୍-ଏଜର୍‌ମାନଙ୍କୁ ବୁଝିବା କଷ୍ଟ । କିନ୍ତୁ ପୁଣି ଥରେ ତା'ର ରାଗ ଆସିଲା, —ସେ ସାଧାରଣ ଟୀନ୍-ଏଜର୍ ନୁହେଁ, ଆମେରିକାର ଟୀନ୍-ଏଜର ନୁହେଁ । ସେ

ସ୍ୱୀନା ପର, ଅନ୍ୟମାନଙ୍କ ପର ନୁହେଁ । ସେ ବାପମାଆଙ୍କର ଅବାଧ ହୋଇ ନିଜ ଇଚ୍ଛାରେ ଘୁରି ବୁଲିବାକୁ ଚାହେଁ ନାହିଁ । ସେ ଇଣ୍ଡିଆନ୍ ଝିଅ । ତଥାପି ତା'ର କ'ଣ ନିଜର ମତ କିଛି ନାହିଁ, ଟିକିଏ ବୋଲି ସ୍ୱାଧୀନତା ନାହିଁ ? ଯେତେହେଲେ ସେ ପିଲା ନୁହେଁ, ତା'ର ମଧ୍ୟ କିଛି ଇଚ୍ଛା ଅଛି, ଭଲମନ୍ଦ ଭାବିବାର ଶକ୍ତି ଅଛି ।

ସକାଳୁ ତା' ମନ ଭଲ ଥିଲା । ବହୁତ ଦିନର ଥଣ୍ଡା-ବରଫ ପରେ ଆଜି ଲାଗୁଥିଲା ଯେ ସ୍ପ୍ରିଙ୍ଗ ଆସିବାକୁ ଡେରି ନାହିଁ । ତା' ଛଡ଼ା ତା' ମନ ଭିତରେ ଥିଲା ଯେ ଆଜି ସ୍କୁଲରେ ଗୋଟିଏ ବଡ଼ ଧରଣର ପାର୍ଟି ହେବ ମାର୍ଥା ତାକୁ ବାର ବାର କହୁଛି ଆସିବାକୁ । ମାର୍ଥା କୁଆଡ଼େ ତାର ବଏ-ଫ୍ରେଣ୍ଡକୁ ଆଣିବ । ଖିଆପିଆ ହେବ, ନାଚଗୀତ ହେବ । ସେ ତା'ର ନୂଆ ଧଳା ଡ୍ରେସ ପିନ୍ଧିକରି ଯିବ—ସବୁଅଣ୍ଟା, କୁଞ୍ଚ ଘେର କେଜାଣି କେତେ, ବଲ୍‌ରୁମ୍ ଡ୍ରେସ୍ । ସେ ଅବଶ୍ୟ ନାଚିବ ନାହିଁ, ତଥାପି— ।

ପ୍ରଥମେ କେଉଁ କଥାରେ ତାକୁ ଚିଡ଼ ମାଡ଼ିଲା, ତା'ର ଖୁସିବାସିଆ ଭାବ ଚାଲିଗଲା ? ଗୀତା ଭାବି ଭାବି ଗଲା । ସକାଳ ଟ୍ରେ'—ବାପା ଖବର କାଗଜ ପଢ଼ି କଣ କହିଲେ ପଲିଟିକ୍‌ସ କଥା—ଡାକବାଲା ଚିଠି ଦେଇଗଲା—ତା'ପରେ ? ହଁ, ଡାକରେ ଖଣ୍ଡେ ଚିଠି ଆସିଥିଲା ସୁନୀଅପା ପାଖରୁ । ମାଆ ପାଖକୁ ଚିଠି ଆସିଥିଲା । ମାଆ କହିଲା—ଗୀତା, ସୁନୀଅପା ଚିଠି ଦେଇଛି, ତୋ କଥା ଲେଖିଛି, ଲେଖିଛି ଯେ ଗୀତା ଆଉ ତାକୁ ପଚାରୁ ନାହାନ୍ତି, ଚିଠି ଖଣ୍ଡକର ଉତ୍ତର ନାହିଁ । ସେଠିକରେ କଥା ଛିଣ୍ଡିଯାଇ ଥାଆନ୍ତା । କିନ୍ତୁ ମାଆ ଆଉ ପଦେ ଯୋଡ଼ିଦେଲା । କହିଲା,—ତୁ କାହିଁକି ଚିଠି ଦେଉନୁ ? ଭୁଲିଯାଆ ନାହିଁ ଯେ ତୁ ଇଣ୍ଡିଆକୁ ଫେରିଯିବୁ । ତୁ ଯେତେବେଳେ ବାହା ହୋଇ ଶାଶୁ ଘରକୁ ଯିବୁ, ତୁ ମଧ୍ୟ ଚାହିଁବୁ ଯେ ତୋ ପାଖକୁ ସମସ୍ତେ ଚିଠି ଦିଅନ୍ତେ । ସେତେବେଳେ କେହି ନ ପଚାରିଲେ ପସନ୍ଦ କରିବୁ ନାହିଁ ।

ଗୀତା ଭାବିଲା । ମାଆର ସେହି ପଦକ ଶୁଣି ସେ ପ୍ରକୃତରେ ଚିଡ଼ି ଯାଇଥିଲା, କଅଣ କହିବ ବୋଲି କହି ପାରିଲା ନାହିଁ । ହେଲେ ସେହି କଥାକୁ ନେଇ ସେ କଣ ଦିନଯାକ ଚିଡ଼ଚିଡ଼ ହେଉଛି ? ନା, ମାଆର ମଧ୍ୟ ଦୋଷ ଅଛି । ସେ କଥା କଥାରେ ତାକୁ ଦୋଷ ଦେଉଛି । ଯେତେ ଯେପରି ଘରେ ଆଉ କାହାର କିଛି ଭୁଲ ହୁଏ ନାହିଁ । ଗୁଡ଼, ଏମିତି ହେଇ ହେଇ ସନ୍ଧ୍ୟା ହୋଇ ଗଲାଣି, ଆଉ କିଛି ସମୟ ପରେ ପାର୍ଟିକୁ ଯିବାକୁ ହେବ । ମାର୍ଥା ହେରିକା ସମସ୍ତେ ଥିବେ । ହବବେ—ଗୀତାର ଆଜି କ'ଣ ହୋଇଛି ? ତାକୁ କଣ କିଏ ହସିବାକୁ ମନା କରିଛି ? କାହିଁକି ଏମିତି ହେଲା ?

ଗୀତାର ଇଚ୍ଛା ହେଲା ଫୋନ୍ କରି ମାର୍ଥାକୁ କହିବ ଯେ ସେ ପାର୍ଟିକୁ ଯିବ ନାହିଁ । ମାର୍ଥା ମନ ଖରାପ କରିବ, କରୁ ।

ଗୀତା ଅନେକମାନଙ୍କରେ ବସି ରହିଲା । ଟେବୁଲ ଉପରେ ଥିବା ଘଣ୍ଟାକୁ ଅନାଇଲା,—ଟିକ୍ ଟିକ୍ ହୋଇ ସମୟ ସରିଯାଉଛି । ଝରକା ବାଟେ ଦେଖିଲା ପଛ ଅଗଣାରେ ସ୍ନୋ-ମ୍ୟାନ୍‌କୁ । ବରଫ ସବୁ ତରଳି ଆସିଲାଣି ଆଖି କାନ ବାରି ହେଉ ନାହିଁ । କିଛି ସମୟ ପରେ ପୂରାପୂରି ତରଳିଯିବ, ସ୍ନୋ-ମ୍ୟାନ୍ ମରିଯିବ । ପାର୍ଟି ହେବ, ସରିଯିବ । ଗୀତା ଆସିଥିଲା ନ ଆସିଥିଲା କିଏ ମନେ ରଖିବ ? ଖାଲି ମାର୍ଥା, —କେଜାଣି ।

ଅନେକମାନଙ୍କରେ ମାର୍ଥା ପାଖରୁ ମଧ୍ୟ ନିଜକୁ ଦୂରେଇ ନେଇ ସାରିଲା ପରେ ଗୀତାକୁ ଫମ୍ପା ଲାଗିଲା । ମନେ ହେଲା ତା'ର କେହି ନାହାନ୍ତି, କେହି ନାହାନ୍ତି । ସେ ବି' ବାହା ହୋଇ ଶାଶୁ ଘରକୁ ଯିବ । ବାଜା ବାଜିବ, ହୁଳହୁଳି ପଡ଼ିବ । ଗୀତା ଗୋଟାଏ ଅଜଣା ଲୋକ ସାଙ୍ଗରେ ଏକାଠି ବସି କାର୍‌ରେ ଯିବ—କୁଆଡ଼େ ନା ଶାଶୁଘରକୁ । ସବୁ ଝିଅମାନେ ଯାଆନ୍ତି ସେଠିକି । ଶାଶୁଘରେ ବଡ଼ ପଲଙ୍କ ଥିବ ଶୋଇବା ପାଇଁ । ଅଲଗୁଣିରେ ତା' ଶାଢ଼ୀ ବ୍ଲାଉଜ୍ ସାଙ୍ଗକୁ ଆଉ କାହାର ଧୋତି କାମିଜ ଟଙ୍ଗା ହୋଇଥିବ । 'ସେ' ରାତିରେ ଆସିବେ । ଦେହରୁ ଜାମା ଖୋଲି ଦେବେ । ଖାଲି ଦେହ···ବ୍ରଜଭାଇଙ୍କର ଅସନା କାଳିଆ ଦେହ । ଶୋଇବା ଆଗରୁ ଘର କବାଟ ବନ୍ଦ ହୋଇଯିବ ।

ଗୀତା ରାତିରେ ଏକୁଟିଆ କାନ୍ଦିବ, ସୁନାଅପା ପରି । ସେମିତି ହୁଏ ।— ନା ସେମିତି ହୁଏ ନାହିଁ । ହେବାର କଥା ନୁହେଁ । ହତାଶାର ଶେଷ ପାହାଚରେ ପହଞ୍ଚି ଗୀତା ପ୍ରତିବାଦ ଜଣାଇଲା । ସେ ଆଲୁଅରେ ରହିବ, ଅନ୍ଧାର ରାଇଜକୁ ଯିବ ନାହିଁ । ତା' ଶୋଇବା ଘର କବାଟ ଆଉ କେହି ବନ୍ଦ କରି ଦେବ ନାହିଁ । ସେ ସୁନାଅପା ନୁହେଁ ।

ଗୀତା ଟେବୁଲ୍ ଡ୍ରୟରରୁ ପ୍ରସାଧନ ସାମଗ୍ରୀ କାଢ଼ିଆଣି ଥୋଇଲା ଗୋଟି ଗୋଟି କରି । ପ୍ରତି ଜିନିଷକୁ ଦୃଢ଼ ଭାବରେ ହାତରେ ଧରି ରଖୁଥାଏ ଯେପରିକି କାହାର ସନ୍ଦେହ ରହିବ ନାହିଁ ଯେ ସେ ସବୁ ତା'ର ନିଜର ଜିନିଷ । ନଖ ସଫା କରିବାର, ମାଜିବାର, ରଙ୍ଗ ଲଗାଇବାର, ରଙ୍ଗ ଛଡ଼ାଇବାର ଜିନିଷ । ମୁହଁରେ ଲଗାଇବାର କ୍ରିମ୍, ପାଉଡ଼ର୍ ତିନି ଚାରି ରକମର, ଛିଞ୍ଚି ହେବାର କୋଲନ୍, ରୁମାଲରେ ଲଗାଇବାର ଅତର । କିଛି ମାଆ କିଣିଛି, କିଛି ସେ ନିଜେ କିଣିଛି ପକେଟ୍‌ଖର୍ଚ୍ଚରୁ । ସାଙ୍ଗମାନଙ୍କଠାରୁ ଶୁଣି ନୂଆ ନୂଆ ରକମର ଜିନିଷ ଆଣିଛି, ଯଦିଓ କାହାକୁ କେତେବେଳେ ବ୍ୟବହାର କରିବାକୁ ହେବ ପୂରାପୂରି ଜାଣି ନାହିଁ । ତା'ଛଡ଼ା

ଡ୍ରୟର୍‌ର ପଛ ପଟେ ଲିପ୍‌ଷ୍ଟିକ୍ ଖଣ୍ଡେ ପଡ଼ିଛି, ଜଣେ ସାଙ୍ଗଠାରୁ ଆଣିଥିଲା । ଏପର୍ଯ୍ୟନ୍ତ ତାକୁ ଓଠରେ ଲଗାଇବାର ସାହସ ହୋଇ ନାହିଁ । ଆଜି ତାକୁ ସେ କାଢ଼ି ହାତରେ ଧରିଲା । ଭାବିଲା, ଯଦି ଲଗାଏ କ୍ଷତି କଅଣ ? ସାଙ୍ଗମାନେ ସମସ୍ତେ ଲଗାନ୍ତି । ଅବଶ୍ୟ ବେଶି ଲଗାଇଲେ ଖରାପ ଦେଖାଯାଏ, ରଙ୍ଗ ବୋଲିହେଲା ପରି ଦିଶେ । କିନ୍ତୁ ହାଲୁକା କରି ଲଗାଇଲେ କିଛି କ୍ଷତି ନାହିଁ । ମାଆ ପସନ୍ଦ କରିବ ନାହିଁ, ହେଲେ ମାଆ ତା'ର କେଉଁ ଜିନିଷ ପସନ୍ଦ କରୁଛି କି— ।

ସାହସ ପାଇଲା ନାହିଁ । ଗୀତା ଲିପ୍‌ଷ୍ଟିକ୍‌କୁ ପୂର୍ବସ୍ଥାନରେ ରଖି ଦେଲା । କିନ୍ତୁ ପୁଣି ଥରେ ସ୍ଥିର କଲା ଯେ ସେ ନିଶ୍ଚୟ ଦିନେ ଲଗାଇବ ତାକୁ । ଇଣ୍ଡିଆରେ ଘରେ କୁଟୁମ୍ବ ଭିତରେ ଅନ୍ୟମାନେ ଯେମିତି ଚଳନ୍ତି ଠିକ୍ ସେମିତି ଚଳିବାକୁ ହେବ ବୋଲି କିଛି ଲେଖା ହୋଇ ନାହିଁ । ସେ ଆଉ ଗୋଟିଏ ସୁନାଅପା ନୁହେଁ ।

ହଠାତ୍ ମାଆ ପଶି ଆସିଲା ଘର ଭିତରକୁ । ଗୀତା ଆଶ୍ଚର୍ଯ୍ୟ ହୋଇ ଅନାଇଲା, ତା'ପରେ ଚପା ଓଠରେ ମୁହଁ ତଳକୁ କରିଦେଲା । ମାଆ କଣ କହିବାକୁ ଆସିଛି କହୁ, ସେ କିଛି ଉତ୍ତର ଦେବ ନାହିଁ ।

ମାଆ ହାତରେ କଣ ଧରିଛି । ତା' ପାଖରେ ଛିଡ଼ା ହୋଇ କହିଲା— କିଲେ, ଏତେ ଡେରି ହୋଇଗଲାଣି, ପାର୍ଟିକୁ ଯିବୁ କେତେବେଳେ ? ଏଇ ଦେଖିଲୁ, ଏଇ ହାରଟା ପିନ୍ଧି କରି ଗଲେ ବୋଧହୁଏ ଭଲ ଦେଖାଯିବ—କଣ କହୁଛୁ ?

ଗୀତା କହିଲା—ଆଚ୍ଛା ହେଉ । ମୁହଁରେ ହସକୁ ଆସିବାକୁ ଦେଲା ନାହିଁ । ହେଲେ ତା ଚପାଓଠ କୋହଳ ହୋଇଗଲା । ଅଭିମାନ ଭିତରେ ଦେଇ ତା'ର ଇଚ୍ଛା ହେଲା ମାଆର ମୁହଁକୁ ସିଧା ହୋଇ ଅନାଇବ । ମାଆ କଣ ସତରେ ଚାହେଁ ଯେ ସେ ପାର୍ଟିରେ ସୁନ୍ଦର ଦେଖାଯିବ, ସମସ୍ତେ ତାକୁ ପ୍ରଶଂସା କରିବେ, ସମସ୍ତେ ତାକୁ ଭଲ ପାଇବେ— ?

ପାର୍ଟି ପାଇଁ ବାହାରିଲା ବେଳକୁ ଗୀତା ହସୁଥିଲା ଓ ସୁନ୍ଦର ଦେଖା ଯାଉଥିଲା । ମାଆ ତାକୁ ଭଲ ପାଏ ଓ ମାର୍ଥା ବି' ।

( ୪ )

ସେ କିଏ ? ସେ କିଏ ?

ଝିଅ ଜଣକ ନିଶ୍ଚୟ ମାର୍ଥା । କିନ୍ତୁ ପୁଅ ହେଉଛି ନାଲିଆ ଗୋରା, ଡେଙ୍ଗା, ମୁଣ୍ଡବାଳ କହରା ଗ୍ରେଟ । ଆର୍‌ମାନେ। ତ ସେମିତି ନୁହେଁ, ହେବାର କଥା ନୁହେଁ ।

ଆଲନ୍ ମିଛ କହୁଛି ? ନା ସେ ଝିଅ ମାର୍ଥା ନୁହେଁ, କିନ୍ତୁ ତା'ର ପର ? କିଏ ସତ, କିଏ ମିଛ ?

ସେ କଦେ ସ୍ୱପ୍ନ ଦେଖୁନାହିଁ ତ ? ପାର୍ଟିର ନିଶା ଛୁଡ଼ି ନାହିଁ ? ଭୋଫା ଆଲୁଅ, କୋକାକୋଲା ବୋତଲର ଅଦରନ୍ତ ଖୋଲା ହେବା ପପ୍ ପପ୍, ଛାଲିହେବା ଭୁଳୁ ଭୁଳୁ ଫେଣ, ଜାଜ ଗୀତର ପ୍ରଚଣ୍ଡ ଅହ୍ୱାନ—ହାଏ ବେ-ବି ! କେତେ ସ୍କର୍ଟର ଟ୍ୱିଷ୍ଟ, ହାତରେ ହାତ—ଗୀତା, ତୋ ହାରଟା ବିଉଟିଫୁଲ, ୟୁ ଲୁକ୍ ସୋ ଗ୍ଳମିଙ୍ଗ୍, କେତେ ବାସ୍ନା ଅତର, କେତେ ହସ, ହଠାତ୍ ଆଲୁଅ ଲିଭିଯିବାରେ ବିଚିତ୍ର କଳିକଳା ରଡ଼ି, ଆଲୁଅ ଫେରି ଆସିବାରେ ଆନନ୍ଦ କୋଳାହଳ, ଜର୍ଜ ସାଙ୍ଗରେ ସେହି ଅଦରି-କାଣ୍ଡ ଡ୍ୟାନ୍ସ......ଏ ସବୁ ତା' ମନକୁ ବହଲାଇ ଦେଇ ନାହିଁ ତ !

ସବୁ ସ୍ୱପ୍ନ ଭଲ ଲାଗୁଥିଲା, ଲାଗୁଥିଲା ଯେ ସେ ଲହଡ଼ି ଉପରେ ଚାଲୁଛି । ଚଢ଼ମାଡ଼ିକୁ ନା ଭଲ ଲାଗୁଛି ଭାବିବାକୁ ବେଳ ନାହିଁ, ଖାଲି ମନ ଭିତରେ ଅଛି ଯେ ଏ ହେଉଛି ଖୁସି ହେବାର ଢଙ୍ଗ, ସମସ୍ତେ ଖୁସି ହେଉଛନ୍ତି, ସେ ବି' ଖୁସି ହେଉଛି । ମାର୍ଥା କେତେ ଥର ଆସି ହସି ଦେଇ ଚାଲିଯାଇଛି । ମାର୍ଥା ଡିକ୍ ସାଙ୍ଗରେ କିଣ ଅନ୍ଧାନକଲ ହୋଇ ହସି ହସି ଗଡ଼ିଯାଉଛି—ମାର୍ଥା ତ ଏମିତି ହୁଏ ନାହିଁ ? ନା, ଏମିତିକା ଦିନରେ ବଡ଼ ପାଟି କରି ହସିବା କଥା, ମାର୍ଥା କିଛି ଅଲଗା ଜୀବ ନୁହେଁ । କିନ୍ତୁ ମାର୍ଥାର ସେ ସୁନ୍ଦର କଳା-ଆଖି ବଏଫ୍ରେଣ୍ଡ କୁଆଡ଼େ ଗଲା ? ପାର୍ଟିର ହସ ଗୀତ ନାଚ ଭିତରେ ଗୀତା ଥରକୁଥର ତାକୁହିଁ ଖୋଜି ବୁଲୁଥିଲା ।

କିନ୍ତୁ ସେ ଆର୍ମ୍ୟାଣ୍ଡୋକୁ ଦେଖି ପାରିଲା ନାହିଁ । କେତେ ସମୟ ପରେ ସେ ଦେଖିଲା ମାର୍ଥା ଭିକ୍ଟର୍ ସାଙ୍ଗରେ ନାଚୁଛି । ଭିକ୍ଟର୍‌ଟା ଦୁଷ୍ଟ ପିଲା, ଭଲ ପଢ଼େ ନାହିଁ, ଟିଚର୍‌ଙ୍କୁ ଅଛା କରେ, ଦେଖିବାକୁ ବି ସୁନ୍ଦର ନୁହେଁ । ମାର୍ଥା ତା' ସାଙ୍ଗରେ ନାଚୁଛି କାହିଁକି ? ତା' ପରେ ମାର୍ଥା କୁଆଡ଼େ ମିଶିଗଲା ଗହଳି ଭିତରେ । ପୁଣି ଥରେ ଦେଖିଲା ବେଳକୁ ସେ ଗୋଟାଏ କୋଣରେ କାନ୍ଥକୁ ଆଉଜି ସିଗାରେଟ୍ ଧୂଆଁ ଛାଡ଼ୁଛି ଓ ଦୂରରେ କାହାକୁ ଅନାଇ ହସୁଛି । ସେହି ବୋଧହୁଏ ଆର୍ମ୍ୟାଣ୍ଡୋ ହୋଇଥିବ । ଏହି ସମୟରେ ଜର୍ଜ ଓ ଆଲନ୍ ଦୁହେଁ ଆସି ପହଞ୍ଚିଗଲେ ଓ ତା'କୁ ହଲ୍ ମଝିକୁ ଟାଣି ନେଲେ । ମାର୍ଥା ଆଖି ଉଢ଼ାଳ ହୋଇଗଲା ।

ଜର୍ଜ ବାଧ୍ୟ କଲା ନାଚିବାକୁ, ଗୀତା ମନା କରି ପାରିଲା ନାହିଁ । କିନ୍ତୁ ଜର୍ଜ ଅତି ପାଖରେ ନାଚୁଛି । ତା'ର ବେକ ଅତି ପାଖରେ ଦେଖା ହେଉଛି, ଲୋମମୂଳ ସବୁ ଦେଖା ହେଉଛି ଯିମିତ ହେଲା ପରି—ସେଥିରେ ଝାଳ ଲାଗିଛି ନା ବୋଲନ୍ ? ଏତେ ପାଖରେ କିଏ ନାଚନ୍ତି ? ଏକସିଉଜ୍ ମି, ମୋର ଟିକିଏ କାମ ଅଛି—କହି ଗୀତା ଜର୍ଜ ପାଖରୁ ଚାଲିଆସିଲା ।

ପୁଣି ଗୋଟିଏ ସାଣ୍ଡୱିଚ୍ ଓ କୋକାକୋଲା । ଟେବୁଲ୍ ପାଖରେ ଆଉ ଜଣେ ଝିଅ ଛିଡ଼ା ହୋଇଥିଲା ଚୁପ୍ କରି—ସାଣ୍ଡ୍ରା, ଅନ୍ୟମନସ୍କ ହୋଇ କୋକାକୋଲା ପିଉଥିଲା । ଗୀତା କଥା ଆରମ୍ଭ ନ କରି ପଚାରିଲା—ମାର୍ଥାକୁ ଦେଖିଛ କି ? ସାଣ୍ଡ୍ରା ମୁହଁ ନ ବୁଲାଇ କହିଲା—କେଉଁ ମାର୍ଥା ? ମୁଁ କେମିତି ଜାଣିବି ସେ କେଉଁଠି ଅଛି ? ଗୀତା ଆହତ ହେଲା । ସାଣ୍ଡ୍ରା ଏମିତି କାହିଁକି କହୁଛି ? ସେ ଖୁବ ପାଗଳ ନାହିଁ ଯେ ସାଣ୍ଡ୍ରା । ଅଧଘଣ୍ଟାଏ ହେଲା ସେହି ଗୋଟିଏ କୋକାକୋଲା ବୋତଲକୁ ଧରି କରି ରହିଛି, କେହି ଏପର୍ଯ୍ୟନ୍ତ ତାକୁ ନାଚିବାକୁ ଡାକି ନାହାନ୍ତି ।

ରାତି ବଢ଼ିଲାବେଳକୁ ଗୀତର ଢଙ୍ଗ ବଦଳିଗଲା । କେତେଗୁଡ଼ିଏ ଆଲୁଅ ଲିଭିଗଲା, ଆଉ କେତେକ ଦୀପଲିଭ ହୋଇଗଲେ । ରୋମାଣ୍ଟିକ୍ ଗୀତ ବାଜିଲା, ତା' ସାଙ୍ଗରେ ଧୀର ବାଜଣା, ଦୂରରୁ ଦୂରକୁ ଯାଇ ହଜିଗଲା ପରି । ଗୀତ ସାଙ୍ଗରେ ଇଚ୍ଛା ହେଉଛି କେଉଁଠି ଲୋଟିଯିବାକୁ, ଆଖି ବୁଜି ଦେବାକୁ । ମାର୍ଥା ଠିକ୍ ଏମିତିକା ଗୀତ ଗାଏ ।

ଜର୍ଜ ପୁଣି ଥରେ ତା'ର ହାତ ଧରି ନେଇଗଲା ନାଚିବା ପାଇଁ । ଏଥର ତା'ର ଇଚ୍ଛା ହେଲା ସେ ନାଚିବ, କାହିଁକି ସେ ବୁଝି ପାରିଲା ନାହିଁ ।

ପାଦ ପଡ଼ୁଛି ତା' ମନକୁ, ଆଖି ଚଳନ୍ତା ସଂସାରକୁ ଟିକିଏ ଦେଖି ବୁଜି ହୋଇ ଆସୁଛି, ତା'ର ସବୁ ରଙ୍ଗ ଓ ସୁନ୍ଦରପଣକୁ ନିଜ ଭିତରେ ଦେଖିବା ପାଇଁ । ପାଖରେ ଜର୍ଜ ନାହିଁ, କେବଳ ଆଉ ଜଣେ । ସେ ଗୀତା ନୁହେଁ, ଗୀତା ବୋଲି ଗୋଟିଏ ଇଣ୍ଡିଆନ୍ ଝିଅ ନୁହେଁ, କେବଳ ଗୋଟିଏ ଝିଅ, ଝିଅର ପ୍ରତୀକ । ଝିଅ ଓ ଆଉ ଜଣେ । ମାର୍ଥା ଓ ଆର୍ମାନୋ । ଗୀତା ଭୁଲିଗଲା ଯେ ସେ ମାର୍ଥାକୁ ଖୋଜୁଥିଲା । ମାର୍ଥା ତ ଏଇଠି ଅଛି । ଗୀତା ହେଉଛି ମାର୍ଥା,—ଏହି ଗୀତ, ଏହି ଆନନ୍ଦ, ଏହି ସବୁଥିକା ପାଇଁ ।

ଗୀତ ବଦଳିଗଲା; ସବୁ ଆଲୁଅ ଜଳି ଉଠିଲା । ସ୍ୱପ୍ନ ଭାଙ୍ଗିଲା ପରେ ଗୀତା ଦେଖିଲା ଜର୍ଜକୁ । ତା'ରି ସାଙ୍ଗରେ ସେ ନାଚୁଥିଲା ଏତେବେଳଯାଏ ? ଜର୍ଜ ଗୋଟାଏ ସାଧାରଣ ପିଲା । ତା'ର ହସରେ ସେହି ଧୂର୍ତ୍ତ ଥଟ୍ଟା କଲା ଭାବ ଅଛି; ଡକ୍‌ର ଯେମିତି ଅଛି । ସେ ଏହିକ୍ଷଣି ମଧ୍ୟ ହସୁଛି ସେମିତି । ଗୋଟାଏ କଣ ଅଜଣା ଭୁଲ୍‌ର ଭୟ ଗୀତାର ମନରେ ଆସିଲା । ସେତିକିବେଳେ ସେ ଭାବିଲା ସେ ଯେମିତି ହେଲେ ମାର୍ଥା ଆର୍ମାନୋଙ୍କୁ ଖୋଜି ବାହାର କରିବ । ସତେ ଯେପରି ତାଙ୍କୁ ଦେଖିଲେ, ତାଙ୍କ ପାଖରେ ପହଞ୍ଚିଗଲେ ସେ ନିଜକୁ ବୁଝାଇ ପାରିବ ।

ବାଜା ଗୀତ ରହିଯାଇଥାଏ । ପାଟିତୁଣ୍ଡ ଠେଲାପେଲା ଭିତରେ ଗୀତା ହଲ୍ ବାହାରକୁ ଚାଲି ଆସିଲା । ତା'ର ମନେହେଲା ଯେ ମାର୍ଥା ଓ ଆର୍‌ମାଣ୍ଡୋ ହଲ୍ ଭିତରେ ନାହାନ୍ତି, ବାହାରେ ଅଛନ୍ତି ଏକୁଟିଆ ।

ପ୍ରଥମେ ସେ ଦେଖିଲା ମାର୍ଥାକୁ । ପାର୍କିଙ୍ଗ୍ ଲଟ୍‌ର ଶେଷ ମୁଣ୍ଡରେ ଥିବା ଦୁଇଟିକିଆ ଗଛ ମଧ୍ୟରେ ପଛ କରି ଛିଡ଼ା ହୋଇଛି, ଟିକିଏ ଝୁଙ୍କିଲା ପରି ହେଉଛି । ସ୍କୁଲ ଫାଟକ ଆଡ଼ୁ ଆସୁଥିବା ଗୋଟାଏ କାର୍‌ର ଆଲୁଅରେ ତାର ସୁନେଲି-ବାଦାମି ବାଳର ବଚନ ଖୋସା ଓ ଶାଗୁଆ ଡ୍ରେସ୍ ବାରି ହୋଇଗଲା । ମାର୍ଥା ଏଠି କଣ କରୁଛି ଭାବି ଆଶ୍ଚର୍ଯ୍ୟ ହେଲା ବେଳକୁ ଗୀତା ଦେଖିଲା ଯେ ସେ ଅଯଥାରେ ଝୁଙ୍କି ପଡ଼ି ନାହିଁ । ସେ ପାଖରେ ଆଉ ଜଣେ, ଆଉ ଜଣେ ପୁଅ । ଆଲୁଅ ପଡ଼ିଲାରୁ ସେମାନେ ଅଲଗା ହୋଇଗଲେ ।

ସଙ୍କୋଚ ଓ ଲଜ୍ଜାରେ ଗୀତା ଆଗେଇ ପାରିଲା ନାହିଁ । ସତେ ଯେପରି ତା'ର ଗୋପନ ଅନୁଭୂତିକୁ କିଏ ଆଗରେ ଆଣି ଥୋଇ ଦେଉଛି ବାହାରେ, ଆଖି ଆଗରେ । କିନ୍ତୁ ଏ ଲଜ୍ଜାରେ ଉଲ୍ଲାସ ଅଛି, ଗ୍ଲାନି ନାହିଁ । ଏମିତିକା ଦୃଶ୍ୟ ସେ ଦେଖି ପାରିଲା ! ସେ ଫେରିଯିବ କେମିତି ? ସେ ଭାବିଲା କଣ କରିବ ଏ ଅନୁଭୂତିକୁ ନେଇ ? ମାର୍ଥାକୁ ଚଡ଼େଇବ ? ନା ତାକୁ ନିଜ ଭିତରେ ରଖି ମାର୍ଥାକୁ ଦେଖି ବସିବ ସକାଳୁ ସଞ୍ଜଯାଏ ? ତା'ର ସବୁ ଢଙ୍ଗ, ସବୁ କଥା, ହସକୁ ନୂଆ ରୂପରେ ଦେଖିବ, ମନେ ମନେ କହିବ—ମୁଁ ଜାଣିଛି ଯେ ! ଗୋଡ଼ ... ଲୁ ନାହିଁ, କିନ୍ତୁ ଇଚ୍ଛା ହେଉଛି ଅଦୃଶ୍ୟ ହୋଇ ସେ ମାର୍ଥା ଆର୍‌ମାଣ୍ଡୋଙ୍କ ପଛେ ପଛେ ଯାଇ ଦେଖନ୍ତା ସେମାନଙ୍କୁ । ଭିତରେ ଶବ୍ଦ ବଢ଼ି ଚାଲିଛି···ଭଲ ଲାଗୁଛି । ଏତେ ବଡ଼ ଘଟଣା କଣ ସମସ୍ତଙ୍କୁ ଦେଖିବାକୁ ମିଳେ ?

ସେ ଦେଖିଲା ସେମାନେ ଏଆଡ଼େ ଆସୁଛନ୍ତି । ମାର୍ଥା ମୁହଁରେ ହସ । ଗୀତା ଅପେକ୍ଷା କଲା ।

ସେମାନେ ସ୍କୁଲ ଆଗରେ ଥିବା ଆଲୁଅ-ଖୁଣ୍ଟ ପାଖରେ ପହଞ୍ଚିଲା ବେଳକୁ ଗୀତା ଦେଖିଲା ସେ ପୁଅ ଜଣକୁ । ବିଶ୍ୱାସ ହେଲା ନାହିଁ; ଆଉ ଥରେ ନିରେଖି କରି ଦେଖିଲା । ବୁଝିପାରିଲା ନାହିଁ,—ଏ ମାର୍ଥା ନିଶ୍ଚୟ, କିନ୍ତୁ ସେ ପୁଅ ଜଣକ ତ ଆର୍‌ମାଣ୍ଡୋ ନୁହେଁ ! ତାହା ହେଲେ ସେ କିଏ ? ସେ କିଏ ? ନା ସେ ଝିଅ ମାର୍ଥା ନୁହେଁ, ତା'ର ପରି ଆଉ ଜଣେ ? ତା'ର କଣ ସବୁ ଭାବିବା ଭୁଲ, ଦେଖିବା ଭୁଲ !

ସେଠୁ ଫେରିଯିବା ପାଇଁ ସମୟ ନଥିଲା । ସେମାନେ ପାଖକୁ ଚାଲି ଆସିଲେ । ମାର୍ଥା ଗୀତାକୁ ଅନେଇ ହସିଦେଲା, କହିଲା,—'ହାଏ ଗୀତା, ପାର୍ଟି ସରିଗଲାଣି ନା କଣ ? ତା'ପରେ ସେ ତା' ସାଥୀ ଆଡ଼କୁ ହାତ ଦେଖାଇ କହିଲା, —'ରେନ, ଉଇଲସନ୍ ହାଇସ୍କୁଲରେ ପଢ଼େ । ଗୀତା, ମୋର ଟିକ ଇଣ୍ଡିଅନ୍ ଯାଙ୍ଗ ।' ଗୀତା ଓ ରେନ ହାତ ମିଳାଇଲେ, 'ହାଓ ଆର୍ ୟୁ' କହିଲେ । ତା'ପରେ ସେମାନେ,—ମାର୍ଥା ଓ ରେନ,—ଯାବନୀୟ ଭଙ୍ଗୀରେ ହଲ ଆଡ଼କୁ ଚାଲିଲେ । ଗୀତା ଦେଖିଲା ରେନ ଚୁଇଂଗମ୍ ଚୋବାଇ ଚୋବାଇ ଚାଲିଛି ।

( ୬ )

ସେଦିନ ରାତିରେ ଶୋଇବା ଶେଯରେ ଗୀତା ମାର୍ଥା ଉପରେ ରାଗିଲା, ଆଲନ୍ ଉପରେ ରାଗିଲା, ବାପ ମାଆଙ୍କ ଉପରେ ରାଗିଲା ତାକୁ ଆମେରିକା ଆଣିଛନ୍ତି ବୋଲି, ଆଉ ନିଜ ଉପରେ ରାଗିଲା । ପାର୍ଟିରୁ ଫେରିଲା ବେଳକୁ ଆଲନ୍ ସାଙ୍ଗରେ ଦେଖା ହୋଇଥିଲା । ଆଲନ୍ ପଚାରିଲେ 'ଗୀତା, ମାର୍ଥା ଆଉ ତା'ର ନୂଆ ବଏ-ଫ୍ରେଣ୍ଡକୁ ଦେଖିଲୁ ? କଥାରେ ଆଶ୍ଚର୍ଯ୍ୟ ନାହିଁ, ଅବିଶ୍ୱାସ ନାହିଁ, ସାମାନ୍ୟ କୌତୁହଳ । ଯେତେ ଯେପରି ସେ ପଚାରୁଛି,—ଗୀତା, ମାର୍ଥାର ନୂଆ ଡ୍ରେସ୍ ଦେଖିଲୁ ?

ମାର୍ଥା ସେ ସମସ୍ତଙ୍କ ପରି, ଅଲଗା ନୁହେଁ । ଆର୍‌ମାଣ୍ଡୋ ପୂର୍ବରୁ ହୁଏତ କେତେ ଥିଲେ ଓ ତା'ପରେ କେତେ ଆସିବେ । କିଛି କ୍ଷତି ନାହିଁ । ହେଲେ ମିଛଟାରେ ସେ ମୋତେ ତା' ଭିତରକୁ ଟାଣିଲା କାହିଁକି ? କାହିଁକି ସେ ଏମିତି ହସେ, ଗୀତି ବୋଲେ, ଏମିତି ଭାବରେ କହେ—ଆଇ ଲଭ୍ ୟୁ ? କାହିଁକି ସେ ଏମିତି ଠକେଇଲା ମୋତେ ?

ଗୀତାକୁ କାନ୍ଦ ମାଡ଼ିଲା, କିନ୍ତୁ ସେ କାନ୍ଦିବାକୁ ଚାହିଁଲା ନାହିଁ । ସେ ମାର୍ଥା ପରି ହସିବାକୁ ଚାହେଁ, ସୁନିଅପା ପରି କାନ୍ଦିବାକୁ ଚାହେଁ ନାହିଁ । ମାର୍ଥା କିଛି ଖରାପ ନୁହେଁ । ଏ ସଂସାରରେ ପ୍ରତ୍ୟେକର ଅଧିକାର ଅଛି··· ।

କିନ୍ତୁ ତା'ର ମନେହେଲା ଯେ ସୁନିଅପା ତା' ଆଡ଼କୁ ଚାହିଁ ହସୁଛି । କହୁଛି, —ଗୀତା କଣ ପାଇବ ସେଥିରୁ ? ମାର୍ଥାର ରାଜିଜ ତୁମକୁ ସୁହାଇବ ନାହିଁ । ଏଠିକାର କାନ୍ଦିବା ଭଲ, ଏଠିକି ଫେରିଆସ । ମୋରି ପରି, ଆଉ ସବୁ ଝିଅଙ୍କ ପରି କାନ୍ଦିବ ମନ ଖୋଲି କରି କାନ୍ଦିବ,······ରୁହ, ସେ ଆସିଲେଣି ନା କଅଣ, ତାଙ୍କ

ପାଦ ଶୁଖୁଛୁ । ମୁଁ ଯାଉଛୁ, ସ୍ୱେଷେଇ ଘରେ ତରକାରି ବସେଇ ଆସିଛୁ । ମୁଁ ତାଙ୍କୁ ସବୁରେ ଭଲପାଏ ମ,—ଜାଣିନାହିଁ ତୁମେ ?

ଗୀତା ରାଗିଲା ସୁନାଅପା ଉପରେ । କାହିଁକି ସେ ତା' ସାଙ୍ଗରେ ବାଦ କରୁଛୁ ଏମିତ ? ସେ ଠିକ୍ କଲା, ମାଆ ଯାହା କହିଲେ କହୁ ସେ ସୁନାଅପା ପାଖକୁ ଖଣ୍ଡେ ହେଲେ ଚିଠି ଦେବ ନାହିଁ ।



# କାନ୍ଦୁଣୀ

'ଭଙ୍ଗାଖେଳଣା'ର ଗୀତା ମନେ ଥିବ ବୋଲି ଆଶା କରୁଛି । ସେଇ ଗୀତା ବଡ଼ ହୋଇଗଲାଣି, ଗପ ସରିଲା ବେଳକୁ ସେ ଯୁବତୀ କହିଲେ ଚଳେ । କିନ୍ତୁ ଶୈଶବରୁ କିଶୋରୀ, କିଶୋରୀରୁ କୁମାରୀ, କୁମାରୀରୁ···ଏ କ୍ରମ ତ ଚିରନ୍ତନ— କେବଳ ଏଇ କ୍ରମପରିବର୍ତ୍ତନକୁ ନେଇ ମୁଁ କଣ ମନଲାଖି ଗପଟିଏ ଲେଖି ପାରିଥାଆନ୍ତି ? ନା ଗୀତାକୁ ଏମିତି କାନ୍ଦେଇ, ତା' ଲୁହକୁ ପୋଛି ନ ପାରିବାର ଦୁଃଖରେ ଆଉଟି ହୋଇଥାଆନ୍ତି ? ବୋଧହୁଏ ନୁହେଁ । କାନ୍ଦଣାର ରୂପଗୁଣ ଏପରି ଭିନ୍ନ ମନେ ହେଲା ଯେ ତା'କୁ ପାରି ହେଲା ନାହିଁ ଏବଂ ଗପ ଲେଖିବା ଛଡ଼ା ଅନ୍ୟ ଗତି ନ ଥିଲା, କାହିଁକିନା ବୟସର ଏଇ ମୋଡ଼ରେ ସେ ପହଞ୍ଚିଲା ଯାଇ ଆମେରିକାରେ । ସେଇଁଠି ସେ ଗୋଟିଏ ହିପି-ଚପଳ ବିପୁଳ ସମ୍ପ୍ରଦାୟରେ ଯୋଗ ଦେଲା, ଯାହାର ନାଆଁ "ଟୀନ୍‌ଏଜର୍" ।

ଦେଶରୁ ପ୍ରଥମ ଥର ପାଇଁ ବିଦେଶକୁ ଗଲେ ଅନେକ ନୂଆ କଥା ଅଜବ୍ କଥା ଦେଖିବାକୁ ଶୁଣିବାକୁ ମିଳେ । ସେ ସବୁ କ୍ରମଶଃ ଦେହସୁହା ହୋଇଯାଏ । କିନ୍ତୁ ଏଇ ବୟସର ଓଡ଼ିଆ ଝିଅ, ପୁଣି ଗୀତା ପରି ଗୋଟାଏ ଝିଅ, ଯେ ତା' ସଂସାରର ସମସ୍ତଙ୍କୁ ନେଇ ହସିବାକୁ ଚାହେଁ, ନ ପାରିଲାରୁ ତା' ତାଜ୍‌ମହଲ ହାତରୁ ଖସି ଭାଙ୍ଗିଯାଏ, ସେ ଆମେରିକାର ଟୀନ୍‌ଏଜର୍‌ଙ୍କୁ ସହଜରେ ନିଭେଇବ କେମିତି ? କାନ୍ଦୁଣୀଟାଏ, ଯୁଆଡ଼େ ଗଲେ କାନ୍ଦିବ, ସେଥିରେ ଆବଦାର କଣ ଅଛି ବୋଲି କହି ତା' ସାନକଥାକୁ ହସି ଉଡ଼େଇ

ଦାଆନ୍ତୁ ନାହିଁ । ଆମଣଙ୍କ ପୁରୁଖା ବଞ୍ଚପଣରୁ ଓହରି ଆସି ଥରେ ହେଲେ ତା' ପାଖକୁ ଆସନ୍ତୁ, ତା'କୁ ବୁଝିବାକୁ ଚେଷ୍ଟା କରନ୍ତୁ, ତା' ଲୁହ ପୋଛିବାକୁ ଚେଷ୍ଟା କରନ୍ତୁ । ମୁଁ ପାରିଲି ନାହିଁ ସିନା— ।

ଧରନ୍ତୁ ଗୀତା ମୋ ଝିଅ । ତା' ବୋଲି ସେ ଆପଣଙ୍କ ଝିଅ ହୋଇ ପାରିବ ନି' କାହିଁକି ?

ମୋର ଗୀତା 'ଚରିତ୍ର' ନୁହେଁ, ମୁଁ ତା'କୁ ସେ ଯାଏଁ ବଢ଼ିବାକୁ ଦେଲି ନାହିଁ । 'ନାଲିଗୁଲୁଗୁଲୁ ସାଧବ ବୋହୂ' ସେ ଦେଶକୁ ଫେରି ଆସିଲା ପରେ, ଯେତେବେଳେ ତା'ର ବାହାଘର ଲାଗିଲା, ମୁଁ ତା'ଠୁଁ ବିଦାୟ ନେଲି । ସେଣିକି ସେ ବଡ଼ ହେଉ, ଚରିତ୍ର ହେଉ,—ସେ ଆଉ ମୋର ଗୀତା ହୋଇ ରହିବ ନାହିଁ ତ !

ଏଇ ଗପରେ ଝିଅ ରୋମାନ୍ସର ବାସ୍ନା ପାଇଲା । କିନ୍ତୁ ଦୁଃଖର ବିଷୟ ଯେ ଆମେରିକାର ଶରତ ବସନ୍ତ ତା' ମୁଣ୍ଡ ଗୋଳମାଳ କରି ଦେଲା । ସେ ବୁଝିଲା ସୁମିଅପା ପରି ହେବ ହେଲେ ତା' ପରି କାନ୍ଦିବ ନାହିଁ, ମାର୍ଥା ପରି ହେବ ହେଲେ ତା' ପରି ସେ ବଦଳେଇ ପାରିବ ନାହିଁ, ଏଣେ ସେ ଶୁଣୁଥାଏ ସେଇ ମହାଦେଶର ମହାନ୍ ସ୍ୱାଧୀନତା ଘୋଷଣା—ଆମେ ଏହି ସବୁ ସତ୍ୟକୁ ସ୍ୱତଃସିଦ୍ଧ ବୋଲି ମାନୁଛୁ ଯେ ସମସ୍ତଙ୍କର ସମାନ ଅଧିକାର ଅଛି···

ଏତିକି କଅଣ, ଝିଅର କପାଳରେ ଆହୁରି କେତେ ଦୁଃଖ ଅଛି ପରା ! ତା'କୁ ଏତେ ବୁଦ୍ଧିଆ, ହେଲେ ନରମ ଓ ଭାବକାତର, ସେନ୍‌ସିଟିଭ୍ ହେବାକୁ କିଏ କହିଲା ? କିନ୍ତୁ ମୋର ଆଶା ଓ ବିଶ୍ୱାସ ଆପଣ ତା'କୁ ଭଲ ପାଇବେ ।

ଭୁବନେଶ୍ୱର
୬ ଅଗଷ୍ଟ ୧୯୮୬

●

# ଚୁମ୍ବନ

ରମଣୀବାବୁଙ୍କ ନାଁ ଏହିତ କଥାବସ୍ତୁର କିଛି ସମ୍ପର୍କ ନାହିଁ । ତାଙ୍କର ଏ ବିଗରେ କିଛି ବିଶେଷତ୍ୱ ଅଛି ବୋଲି ମଧ୍ୟ ଭାବିବା ଉଚିତ ନୁହେଁ । ରମଣୀକାନ୍ତ ଦାସ ଜଣେ ସୁଦର୍ଶନ ଯୋଗ୍ୟ ପୁରୁଷ । ସେ ବିବାହିତ, ତାଙ୍କର ପିଲାପିଲି ଅଛନ୍ତି । ସେ ବମ୍ବେର ଗୋଟିଏ ବଡ଼ କମ୍ପାନୀରେ କାମ କରନ୍ତି ଓ ବ୍ୟବସାୟ ସୂତ୍ରରେ ଦେଶବିଦେଶ ବୁଲିବାର ସୁଯୋଗ ପାଇଛନ୍ତି । ତାଙ୍କର ଦୋଷ ଭିତରେ ସେ ନିଜର ସ୍ୱଭାବସୁନ୍ଦର ଚେହେରାକୁ ରୋମାଣ୍ଟିକ୍ ରୂପରେ ଦେଖାଇବାକୁ ପସନ୍ଦ କରନ୍ତି, ଗୋଟାଏ ଧରଣର କଥା ବେଶି ଭାଗ କହନ୍ତି ଓ ତାଙ୍କ କଥାର ଭଙ୍ଗୀରେ ନାଟକୀୟତା ଅଛି ।

ମୁଁ ରମଣୀବାବୁଙ୍କୁ ବହୁଦିନରୁ ଜାଣେ । ମୁଁ ତାଙ୍କ କଥା ଅନେକ ସନ୍ଧ୍ୟା ସତ୍ତ୍ୱରେ ଶୁଣିଛି, ଯେତେବେଳେ ଆଉ କେହି ନ ଥାଆନ୍ତି, କେବଳ ସେ ଓ ମୁଁ । ସେତେବେଳେ ମଧ୍ୟ ତାଙ୍କ କଥାରେ ନାଟକୀୟତା ଥାଏ, କିନ୍ତୁ ମୋର ମନେ ହୁଏ ଯେ ଲୋକଟି ଅନୁଭୂତିର ରୂପ ଦେଇ ନ ପାରି ଏପରି କହୁଛି । ସୃଷ୍ଟି କରିବାର ଆଉ କିଛି ଉପକରଣ ତାଙ୍କ ପାଖରେ ନାହିଁ, ସେ ଗୀତ ଗାଇ ପାରନ୍ତି ନାହିଁ, ଛବି ଆଙ୍କି ପାରନ୍ତି ନାହିଁ, ସାହିତ୍ୟ ରଚନା କରିବାକୁ ଯାଇ ବହୁବାର ପରାସ୍ତ ହୋଇଛନ୍ତି । ତେଣୁ ସେ ଚାହାନ୍ତି ଯେ କେହି ଜଣେ ତାଙ୍କ କଥା ଶୁଣିବ, ଯେଉଁଥିରେ ସେ ତାଙ୍କ ଅସହନୀୟ ଅନୁଭୂତିକୁ ରୂପ ଦେବେ, ତାକୁ ନିଜଠୁଁ ଅଲଗା କରିଦେବେ, ଓ ମନ-ମୁଗ୍ଧକାରକ ଗଢ଼ିକରି ଥୋଇବେ ସମସ୍ତେ ଦେଖିବା ପାଇଁ । କଳାକାର ମାତ୍ରେହିଁ ଏମିତି;—ରମଣୀବାବୁଙ୍କୁ କାହିଁକି ଦୋଷ ଦେବ ?

ଦ୍ୱିତୀୟ କଥା ହେଲା ତାଙ୍କର ରୋମାଣ୍ଟିକ୍ ଭଙ୍ଗୀ । ଏଥିର ସଫେଇ ମୁଁ ଦେବାକୁ ଯାଉ ନାହିଁ । ତେବେ ଏତିକି ମନେ ରଖିବାକୁ ହେବ ଯେ ସେ ପିଲାଦିନରୁ ତାଙ୍କ ଚେହେରାର ପ୍ରଶଂସା ଶୁଣି ଆସିଛନ୍ତି,—ଯେ ତାଙ୍କ ବାଣୀରେ ମାଦକତା ଅଛି, ତାଙ୍କ ଓଠର ନାଲି ଯୁବତୀସୁଲଭ ଇତ୍ୟାଦି । ତେଣୁ କ୍ରମଶଃ ତାଙ୍କ ମନରେ

ଆସିଯାଇଛୁ ଯେ ସେ ସୁନ୍ଦର, "ରୋମାଣ୍ଟିକ୍" ଭାବରେ ସୁନ୍ଦର, ଏଣୁ ସେହି ରୂପର ପରିଚର୍ଯ୍ୟା କରିବା ତାଙ୍କର ସ୍ୱଧର୍ମ ।

ତେବେ ଯେଉଁମାନେ କହନ୍ତି ଯେ ରମଣୀବାବୁ ରସିକ ଲୋକ, ସେମାନଙ୍କ ସହିତ ମୁଁ ଧର୍ମତଃ ଏକମତ । ସେ ଶୃଙ୍ଗାର ରସକୁ ସବୁଠାରୁ ଭଲ ପାଆନ୍ତି । ଏହି ପ୍ରବଣତା ସାଙ୍ଗରେ ତାଙ୍କର ରୂପବିନ୍ୟାସକୁ ମିଶାଇଦିଅ, ଜାଣିବ ଯେ ସେ କାହିଁକି ଦୁର୍ନାମଗ୍ରସ୍ତ, କାହିଁକି ସମସ୍ତେ ଭାବନ୍ତି ଯେ ସେ ନିଜର ପ୍ରତ୍ୟକ୍ଷ ସ୍ଥୂଳ ଅନୁଭୂତିରୁ ସବୁ କଥା କହୁଛନ୍ତି ।

ଓ୍ୱାଶିଂଟନ୍‌ରେ ଗୋଟିଏ ସାନ୍ଧ୍ୟମିଳନର କଥା କହୁଛି । ରମଣୀବାବୁ କେତେ ଜଣ ଭାରତୀୟ ବନ୍ଧୁମାନଙ୍କୁ ଡିନର୍‌ପରର ଡ୍ରିଙ୍କସ୍ ପାଇଁ ଡାକିଥାଆନ୍ତି । ସେ ଥିଲା ଷ୍ଟାଗ୍ ପାର୍ଟି—ଅର୍ଥାତ୍ ସ୍ତ୍ରୀମାନଙ୍କର ସେଠି ପ୍ରବେଶ ନାହିଁ । ରମଣୀବାବୁ ସଦ୍ୟ ଦକ୍ଷିଣ ଆମେରିକା ଭ୍ରମଣରୁ ଫେରିଥାଆନ୍ତି । ତେଣୁ ସମସ୍ତେ ନିଃସନ୍ଦେହ ଥିଲେ ଯେ ଆଜି ଲାଟିନ ଦେଶର କଥା ପଡ଼ିବ, କେତେ ନୂଆ ଅନୁଭୂତିର ଚର୍ଚ୍ଚା ହେବ । ତାହାହିଁ ହେଲା । ରମଣୀବାବୁଙ୍କ ତାଙ୍କ ଗୃହାଣୀରେ ଯଥେଷ୍ଟ ମାଦକତା ଆଣି ପାନୀୟପାତ୍ରଟିକୁ ସାମାନ୍ୟ ଟହଲାଇ ଦେଇ କହିଲେ, "ଚୁମ୍ବନ ବିଷୟରେ ଆପଣମାନେ କଣ ଜାଣିଛନ୍ତି ?" ଓ ସମସ୍ତେ ହୋ ହୋ ହୋଇ ହସି ଉଠିଲେ । କାରଣ ଧରିନିଆଗଲା ଯେ ରମଣୀବାବୁ ନିଜ କ୍ରିଡ଼ାକଳାପର କାହାଣୀ କହିବାକୁ ଯାଉଛନ୍ତି, ଲାଟିନ୍‌ଦେଶରେ ସେ ଚୁପ୍ ହୋଇ ରହି ନାହାନ୍ତି ।

କିନ୍ତୁ ମୋର ଦୃଢ଼ଧାରଣା ଥିଲା ଯେ ସେ ନୀରବ ଦର୍ଶକ ଥିଲେ; କେବଳ ତାଙ୍କର ଅନୁଭୂତି ଅଶାନ୍ତ ହୋଇ ଉଠିଛି ।

ହସିସାରିଲା ପରେ ସମବେତ ଉତ୍ତର ଦିଆଗଲା, "ଆମେ କିଛି ଜାଣି ନାହୁଁ, ଆପଣ କୁହନ୍ତୁ ।"

ରମଣୀବାବୁ ସନ୍ତୋଷ ପ୍ରକାଶ କଲେ ଓ କିଛି ସମୟ ରହିଯାଇ ଭାବରେ ଗୁରୁତ୍ୱ ଆଣି ଆରମ୍ଭ କଲେ, "ବିଦେଶରେ, ମାନେ ଏହି ପଶ୍ଚିମ ଦେଶରେ ଚୁମ୍ବନଟା କି ଜିନିଷ ? ଘର ନାହିଁ, ଗାଡ଼ି ନାହିଁ, ରାସ୍ତାଘାଟ ପୋଖରୀ ପଡ଼ିଆ ପର୍ବତ ସମୁଦ୍ର ଯୁଆଡ଼େ ତା'ର ଯେଉଁ ଦୃଶ୍ୟ ଦେଖିବାକୁ ପାଉଛ, ସେ ସବୁ କଣ ଦେଖିବାକୁ ଭଲ ଲାଗେ ନା ଖରାପ ଲାଗେ ?"

ଜଣେ ଅଳ୍ପବୟସ୍କ ଭଦ୍ରଲୋକ ଚପଳତାର ନମୁନା ଦେଖାଇ କହିଲେ, "ଚୁମ୍ବନ ପୁଣି ଖରାପ ଲାଗିବ କାହିଁକି ? ଏ ଥିଙ୍ଗ୍ ଅଫ୍ ବିଉଟି…"

ରମଣୀବାବୁ ତାଙ୍କ ପାଖିରୁ କଥା ଛଡ଼ାଇନେଇ ଗୋଟାଏ ଦରକାରୀ ଝିଅ ପାଇଲା ପରି କହିଲେ, "ସେହି ହେଲା କଥା । ବିଉଟି, ସୌନ୍ଦର୍ଯ୍ୟ । କିନ୍ତୁ ଚୁମ୍ବନରେ ସବୁବେଳେ କଣ ସୌନ୍ଦର୍ଯ୍ୟ ଫୁଟି ଉଠେ ?"

ସେ ଆମ ସମସ୍ତଙ୍କ ଆଡ଼କୁ ଥର ଥର କରି ଅନାଇଲେ, ଯେତେ ଯେପରି ଆମ ମନରେ ଭାସିଯାଉଥିବା ଛବିଗୁଡ଼ିକୁ ନିରେଖି ଦେଖୁଛନ୍ତି, ଅନୁମାନ କରୁଛନ୍ତି ଯେ ସେଥିରେ ସୁନ୍ଦରତା ଅଛି ନା ଆଉ କିଛି ।

ତା'ପରେ ସେ ତାଙ୍କ ପ୍ରଶ୍ନର ବ୍ୟାଖ୍ୟା କଲେ, "ମୋ କହିବାର ଉଦ୍ଦେଶ୍ୟ ହେଉଛି ଯେ ଚୁମ୍ବନରେ ଭଲ ପାଇବାର ଇଣ୍ଟିମେସି ଅନ୍ତରଙ୍ଗତା ଅଛି । ବେଶ୍ । କିନ୍ତୁ ସବୁକ୍ଷେତ୍ରରେ ସେହି ଅନ୍ତରଙ୍ଗତା, ସେମିତିକା ଏକାଠି-ହେବାକୁ ଦେଖିଲେ କଣ ଆନନ୍ଦ ଆସେ ? ମୁଁ କହୁଛି ନିରୋଳା ଆନନ୍ଦର କଥା, ସୃଷ୍ଟିର ଗୋଟିଏ ସୁନ୍ଦର ଜିନିଷ ଦେଖିଲାପରି । ଆକାଶର ଇନ୍ଦ୍ରଧନୁ, ଚହଲା ପାଣିରେ ପଦ୍ମଫୁଲ ପରି—

"—କିମ୍ବା ଗୋଟିଏ ଅପୂର୍ବ ଦରଭୁଲା ସ୍ୱପ୍ନ ମନେପଡ଼ିଲା ପରି । ସେହି ହେଉଛି ଥିଙ୍ଗ୍ ଅଫ୍ ବିଉଟି । ଯେଉଁଥିରେ ମନ ଅଜାଣତରେ ନାଚି ଉଠେ, ଅଯାଚିତରେ କିଛି ମିଳିଗଲା ପରି ଲାଗେ । ବୁଝୁଛନ୍ତି ମୁଁ କଣ କହୁଛି ?"

ମୁଁ ଯୋଗ ଦେଲି, "ବୁଝିପାରୁଛି । କିନ୍ତୁ କେବଳ ଦୁଇଟି ଶ୍ରେଣୀର ଲୋକ ଏପରି ଆନନ୍ଦ ପାଆନ୍ତି,—କବି ଓ ପିଲା । ଅନ୍ୟ ପାପୀମାନଙ୍କ ପାଇଁ, ଯଥା ଆମମାନଙ୍କ ପାଇଁ ଆନନ୍ଦ ସାଙ୍ଗରେ ଆଉ କିଛି ଆସିଯାଏ, ଆନନ୍ଦ ଅଡ଼ୁଆ ତଡ଼ୁଆ ହୋଇ-ଯାଏ । ବିଶେଷତଃ ଚୁମ୍ବନର ଦୃଶ୍ୟ ଦେଖିଲେ ଗୋଟିଏ ଭିନ୍ନ ଉଦ୍ଦୀପନା ହିଁ ହେବ—"

ରମଣୀବାବୁ ହସି ଉଠିଲେ । କିନ୍ତୁ ପ୍ରଶ୍ନକୁ ଉଡ଼ାଇଦେଲେ ନାହିଁ । ପୁଣି ଆରମ୍ଭ କଲେ ।

"ଅଧିକାଂଶରେ ଆପଣଙ୍କ କଥା ସତ । ଚୁମ୍ବନ ସେକ୍ସର ପାଖାପାଖି, ଅନ୍ତରଙ୍ଗତା ପ୍ରାୟ ସେହି ଦିଗକୁ ଟାଣିଥାଏ । ବୋଧହୁଏ ସେଥିପାଇଁ ଆମ ଇଣ୍ଡିଆରେ ଚୁମ୍ବନ ଗୋପନରେ କରାଯାଏ, ସିନେମାରେ ତାକୁ ଦେଖାଇବା ମନା । କିନ୍ତୁ ଆମ କାବ୍ୟିକବୃତ୍ତିରେ ଚୁମ୍ବନର ମହିମା କେଉଁଠୁ ଆସେ ? ସେତେବେଳେ ସେ ଏତେ ସୁନ୍ଦର ହୋଇ ଫୁଟିଉଠେ କାହିଁକି ?

"ମୋଟ ଉପରେ କଥା ହେଲା ଯେ ଚୁମ୍ବନରେ ସେକ୍ସ ଓ ରୋମାନ୍ସ ଦୁଇଟି ମିଶିକରି ଅଛି । ଯୋଡ଼ାଏ ଓଠ ଆଉ ଯୋଡ଼ାଏ ଓଠ ସାଙ୍ଗରେ ମିଶିଲେ ଦେହର ମିଳନ ହୁଏ । କିନ୍ତୁ ସେହି ଦେହର ଛୁଆଁ ଛୁଇଁ, ସେହି ସୂକ୍ଷ୍ମ ସଙ୍ଗମ ମଧ୍ୟ ସୁନ୍ଦର ଦେଖା ଯାଇପାରେ । ସେତେବେଳେ ମନେ ହୁଏ ଯେ ସେ କେବଳ ଭଲ ପାଇବାର

ଆଳାପ, ନବଜ୍ର ଆଳାପ । ତାକୁ ଦେଖିଲେ ଖୁସି ଲାଗୁଛି, ଫୁଲ ଇନ୍ଦ୍ରଧନୁକୁ ଦେଖିଲେ ଯେମିତି—"

ସେ ବାକ୍ୟ ଶେଷ କଲେ ନାହିଁ, ସ୍ମିତହାସ ଦେଲେ । ବୋଧହୁଏ ଜାଣି-ପାରିଲେ ସେ ଉପମାର ପୁନରାବୃତ୍ତି କରୁଛନ୍ତି । କିନ୍ତୁ ତାଙ୍କ ଉପକ୍ରମଣିକା ସରି ନ ଥିଲା । ସେ କହିଲେ,—

"ଅନେକ ଇଣ୍ଡିଆନ୍ ଭାଇ ଏଠିକାର ଦୃଶ୍ୟାବଳୀ ଦେଖି କହନ୍ତି ସେ ଏମାନେ ଅତି ଅସଭ୍ୟ ହେଉଛନ୍ତି, ପଶୁପରି ହେଉଛନ୍ତି । ଆଉ କେତେଜଣ,—ଆମ ତରୁଣ ବନ୍ଧୁଙ୍କ ପରି—କହନ୍ତି ସେ ଚୁମ୍ବନ ଅତି ଉତ୍ତମ ଜିନିଷ, ଯେତେ ଭାବରେ ଯେତେ ରୂପରେ ଦେଖିଲେ ମଧ୍ୟ ଆନନ୍ଦ ଆସିବ, ଲଜ୍ଜା ଲାଗିବ ନାହିଁ, ବିରକ୍ତି ଲାଗିବ ନାହିଁ । ମୋ ମତରେ କୌଣସି କଥା ପୂରାପୂରି ସତ ନୁହେଁ । ସ୍ଥାନକାଳପାତ୍ର ନେଇ ପ୍ରଭେଦ ଅଛି । ଚୁମ୍ବନ ଛବି ହୋଇପାରେ ଓ ଦେହ, ପ୍ରେମର ରୋମାନ୍ସ ଓ ପ୍ରେମର ସେକ୍ସ ।

"ମୁଁ କେତୋଟି ଉଦାହରଣ ଦେବି ?"

ଏହି ସମୟକୁ ତ ସମସ୍ତେ ଅପେକ୍ଷା କରିଥିଲେ । "ନିଶ୍ଚୟ ନିଶ୍ଚୟ", "ଗୋ ଆହେଡ୍" ଇତ୍ୟାଦି କେତେ ରକମର ସମର୍ଥନ ଶୁଣାଗଲା ।

ରମଣୀବାବୁ ସୋଫାରୁ ଉଠିପଡ଼ି ବନ୍ଧୁମାନଙ୍କ ପାଖକୁ ଯାଇ କେତେଜଣଙ୍କ ଖାଲି ଗ୍ଲାସ ନେଇଆସିଲେ, ପୁଣି ଥରେ ଗ୍ଲାସ୍ ଭରି ଆଣିଲେ, କକ୍‌ଟେଲ୍-ଜଳଖିଆର ପ୍ଲେଟ୍ ପୁଣି ଥରେ ଥରେ ସମସ୍ତଙ୍କୁ ଦେଖାଇ ଆଣିଲେ । ଲମ୍ବାଗପର ପ୍ରସ୍ତୁତି ତିଆରି ହେଲା । ତା'ପରେ ସେ ନିଜ ସ୍ଥାନକୁ ଫେରିଯାଇ ପ୍ରଶ୍ନ କଲେ,—

"କେଉଁଆଡ଼ୁ ଆରମ୍ଭ କରିବି ? ଉତ୍ତର ଆମେରିକା ନା ଲଟିନ୍—"

"ଲଟିନ୍ ଆମେରିକା, ରିଓ, ବୁଏନସ୍ ଏରିସ୍ , ମେକ୍‌ସିକୋ—", ଉତ୍ସାହୀ ବନ୍ଧୁମାନେ ପରାମର୍ଶ ଦେଲେ ।

କିନ୍ତୁ କଳାକାର ରମଣୀବାବୁ ଧାରାଚ୍ୟୁତ ହେଲେ ନାହିଁ । ସେ ନିଜ ମତରେ କାହାଣୀକୁ ସଜାଇବେ । କହିଲେ, ନା, ମୁଁ ଦେଶ ଅନୁଯାୟୀ କହିବି ନାହିଁ, ମୋର ଯେମିତି ଭାବରେ ମନେ ପଡ଼ୁଛି ସେମିତି କହିବି । ସେଥିରେ କ୍ରମ ରହିବ କି ନାହିଁ ଜାଣେ ନାହିଁ ।"

ତା'ପରେ ସେ ମୋ ଆଡ଼କୁ ଅନାଇ କହିଲେ, "ମୋର ମନେ ପଡ଼ୁଛି ବର୍ଷକ ତଳର କଥା, କଲାଇ ଗୁର । ଯେତେବେଳେ ଆପଣଙ୍କ ସାଙ୍ଗରେ ଯାଇଥିଲି

ଓ୍ୱାଶିଂଟନ୍ ମନୁମେଣ୍ଟ ପଡ଼ିଆରେ ବାଣଫୁଟା ଦେଖିବା ପାଇଁ, ଆପଣଙ୍କ ସ୍ତ୍ରୀ ଓ ଝିଅ ସ୍ୱଗିଣୀ ସାଙ୍ଗରେ ଥିଲେ । ମନେ ଅଛି ?"

ମୋର ମନେ ପଡ଼ିଲା । କିନ୍ତୁ କଥାବସ୍ତୁ ଜଡ଼ିତ କୌଣସି ବିଶେଷ ଘଟଣା ବା ଦୃଶ୍ୟର ସ୍ମରଣ ହେଲା ନାହିଁ ।

ସେ କହି ଚାଲିଲେ, "ସେଦିନ ଖୁସି ଭିଡ଼ । ଆମେ ପ୍ରାୟ ଦେଢ଼ ମାଇଲ୍ ଦୂରରେ କାର୍ ପାର୍କ କଲୁ । କିନ୍ତୁ ସ୍ୱଗିଣୀର ଉତ୍ସାହ ଏତେ ଥିଲା ଯେ ସେ ବୋଧହୁଏ ଦଶ ମାଇଲ୍ ଚାଲିପାରି ଥାଆନ୍ତା ।

"ସ୍ୱଗିଣୀ ଅନବରତ ପ୍ରଶ୍ନ କରୁଥାଏ—ଜୁଲାଇ ଚାରିରେ କାହିଁକି ବାଣ ଫୁଟାଯାଏ ? ଆମ ଦେଶ ପରି ଏଠି ଏତେ ପତାକା ଉଡ଼ୁନାହିଁ କାହିଁକି ? ବିଚରା ବ୍ରିଟିଶ୍ ଲୋକ, ସେମାନେ ଆଜି କଣ ଭାବୁଥିବେ ? ତା' ମନରେ ଥିଲା ଯେ ଆଜି ଆମେରିକାନ୍‌ମାନେ ନିଶ୍ଚୟ ଖୁସି ହେଉଥିବେ ଯେ ସେମାନେ ସ୍ୱାଧୀନତା ପାଇଛନ୍ତି । ସେ ସ୍ୱାଧୀନତା ଦେଢ଼ଶ ବର୍ଷରୁ ଊର୍ଦ୍ଧ୍ୱ ହୋଇଗଲାଣି, ସେ ଆନନ୍ଦରେ ବହୁଦିନ ତଳେ ପଡ଼ିଗଲାଣି, ଆଜି କେବଳ ଗୋଟିଏ ଇତିହାସ କାହାଣୀ ମନେ ପକାଇବା ଓ ସରକାରୀ ଛୁଟି ପାଇବା କଥା, ଏ ଧାରଣା ତା'ର ଭାବିବାର ବାହାରେ । ତା'ର ଦୋଷ ନାହିଁ । କାରଣ ସେ ଦେଖୁଥିଲା ସମସ୍ତେ ଖୁସି ହେଉଛନ୍ତି, ଦଳ ଦଳ ହୋଇ ଖରାଦିନିଆ ରଙ୍ଗବେରଙ୍ଗ ବେଶଭୂଷା ପିନ୍ଧି ଚାଲିଛନ୍ତି । ସେ କେଉଁଠୁ ବୁଝିବ ଯେ ଏ ଖାଲି ବାଣଫୁଟା ଦେଖିବାର ଆନନ୍ଦ, ଖରାଦିନିଆ ମଉଚ୍ଛବର ଆନନ୍ଦ ?

"ଆମେ ଯଥାସମୟରେ ପହଞ୍ଚିଲୁ । କିଛି ସମୟ ଅପେକ୍ଷା କଲା ପରେ ବାଣ ଫୁଟିଲା । ଅନ୍ଧାର ଭିତରେ ଓ୍ୱାଶିଂଟନ୍ ମନୁମେଣ୍ଟ ଝଲ ଝଲ ଦିଶୁଥାଏ । ଜହ୍ନ ଆଲୁଅରେ ତାଜମହଲ ପରି ତା'ର ଧଳା ମାର୍ବଲ୍ ଦେହ ଫ୍ଲଡ୍‌ଲାଇଟରେ ଫୁଟି ଉଠୁଥାଏ । ଆଉ ଉପରେ ଆକାଶରେ ଆତସବାଜିର କେତେ ତାରା, କେତେ ଫୁଲ, କେତେ ଚକ ଆଲୁଅ ଝରାଉ ଥାଏ ।

"ଆମେ ଘାସ ଉପରେ ଅଧାଶୁଆ ହୋଇ ବସିଥିଲୁ । ପଟାଟୋ ଚିପସ୍ ଓ ଆଇସ୍‌କ୍ରିମ୍‌ର ଯଥେଷ୍ଟ ସଦ୍‌ବ୍ୟବହାର ହେଉଥାଏ । ଖରାଦିନ ହେଲେ ମଧ୍ୟ ଦେହକୁ ଅଳ୍ପ ଶୀତ ଲାଗୁଥାଏ, ଆପଣଙ୍କ ମିସେସ୍ ଲଗାଇଥାଆନ୍ତି—କାଲ୍‌ଦି ଘରକୁ ଫେରିଯିବା । କିନ୍ତୁ ସ୍ୱଗିଣୀ ଯିବାକୁ ନାରାଜ । ସେ ପ୍ରତି ବାଣ ଫୁଟିବା ସାଙ୍ଗରେ ତାଳି ମାରୁଥାଏ, ମିଛିମିଛିକା ଆଞ୍ଜୁଳା ଧରୁଥାଏ ଖସିପଡ଼ୁଥିବା ତାରାକୁ ଧରିବ ବୋଲି । ସେ କହିଲା ତାକୁ ଶୀତ କରୁନାହିଁ । କହିଲା—ଆମେ ଇଣ୍ଡିଆନ୍ ବୋଲି କଅଣ ସ୍ୱାଙ୍କର ସ୍ୱାଧୀନତା ଉତ୍ସବ ପାଳିବୁ ନାହିଁ ? ଆମେ ଆଗରୁ ଚାଲିଗଲେ ଏମାନେ ସବୁ କଣ ଭାବିବେ ?

"ଆମର ମଧ୍ୟ ଇଚ୍ଛାଥିଲା ଯେ ଆତସବାଜିର ଶେଷ ଅଂଶଟିକୁ ଦେଖିଲେ ଭଲ ହୁଅନ୍ତା । ସରୁଲବେଳକୁ କୁଆଡ଼େ ଅସଂଖ୍ୟ ରଙ୍ଗବେରଙ୍ଗ ଆଲୁଅ ପାଗଳ ହୋଇଉଠେ, ଶବ୍ଦ ଓ ବର୍ଣ୍ଣର କୁହାଟରେ ଦଗବାଦଗ ଭରିଯାଏ । ତଳେ ଥିବା ଲୋକ ଜଳ ଜଳ ହୋଇ ଦଶିଯାନ୍ତି, ଆନନ୍ଦ-ଆଶ୍ଚର୍ଯ୍ୟର ବିଭିନ୍ନ ଧ୍ୱନି ଆକାଶକୁ ଗର୍ଜ କରେ ।

"ସେ ବେଳ ଆସିବା ଆଗରୁ ଗୋଟିଏ ଶକ୍ତିଶାଳୀ ବାଣରେ ଆଲୁଅ ଝଲକ ହଠାତ୍ ଆମ ଉପରେ ପଡ଼ିଲା ଓ ମୁଁ ଦେଖିଲି ଆମ ପାଖଟିରେ, ଅତି ପାଖରେ ଗୋଟିଏ ନାଲିଆ ସ୍ୱେଟର୍ ଓ ଗୋଟିଏ ହଳଦିଆ ସ୍ୱେଟର୍ ଛନ୍ଦାଛନ୍ଦି ହୋଇଚନ୍ତି । ସେମାନେ ନିବିଡ଼ ଚୁମ୍ବନରେ ଲିପ୍ତ, ସନ୍ଦେହ ନାହିଁ । ମୁଁ ତାଙ୍କୁ ଦେଖିଲି ଓ ତା'ପରେ ଗୃହିଣୀ ଆଡ଼କୁ ଅନାଇଲି । ମୋ ମନରେ କେବଳ ଗୋଟିଏ ଭାବ ଆସିଲା, ଗୋଟିଏ ଆଶଙ୍କା ଓ ପ୍ରାର୍ଥନା,—ଗୃହିଣୀ ଏ ଦୃଶ୍ୟ ନ ଦେଖୁ ।

"ବାଣଫୁଟାର ଶେଷ ପର୍ଯ୍ୟାୟ ଆସିଲା । ସେତେବେଳେ ଗୃହିଣୀର ଆନନ୍ଦ, ତା'ର ବିହ୍ୱଳତା ଦେଖିବାର କଥା । ସେ କେବଳ ନିଜେ ଖୁସି ହେଉ ନ ଥାଏ, ଆମକୁ ଅମୁକ ରଙ୍ଗର ଫୁଲ, ଅମୁକ ମୁକ୍ତାମାଳା, ଦେଖନ୍ତୁ ଦେଖାଇ ଖୁସି ହେବାକୁ କହୁଥାଏ । ଶେଷକୁ ସେ ସ୍ଥିର ହୋଇ ବସି ପାରିଲା ନାହିଁ । ଛିଡ଼ା ହୋଇ ପଡ଼ି ନାଚିଲା ପରି ହେଲା ।

"ଆଲୁଅ-ଉତ୍ସବ ସରିଲା । ଆମେ ଗହଳି ଭିତରେ ଆଗେଇଲୁ କାର୍ ପାଖକୁ । ଗୃହିଣୀ କହିଲା ଯେ ଏପରି ଦୃଶ୍ୟ ସେ ତା'ର ଦୀର୍ଘଜୀବନରେ କେବେହେଲେ ଦେଖି ନ ଥିଲା ।

"ଫେରିଲା ବେଳକୁ ଭିଡ଼ରେ କାର ଚଳାଇ ହେଉ ନ ଥାଏ । ମନେ ହେଉଥାଏ ଯେ ଆଜି ସାରା ଓ୍ୱାଶିଙ୍ଗଟନ୍‌ର ଲୋକ ବାଣଫୁଟା ଦେଖିବାକୁ ଆସିଥିଲେ । ଗୋଟାଏ ଜାଗାରେ ଟ୍ରାଫିକ୍ ଅଲୁଅ ଦୁଇ ତିନି ଥର ଶାଗୁଆ ହୋଇଗଲା, କିନ୍ତୁ ଆମ କାର୍ ବିଶେଷ ଆଗେଇ ପାରିଲା ନାହିଁ । ପୁଣି ଥରେ ଅଲୁଅ ବଦଳିଲାରୁ ମୁଁ ଦେଖିଲି ଯେ ପାଖ ଲେନ୍‌ର କାର୍ ଚାଲିଛି, କିନ୍ତୁ ଆମ ଲେନ୍‌ର କାର୍-ଧାଡ଼ି ଚଳୁନି ନାହିଁ । କଣ ହେଲା ? ପଛରୁ ଅବିରାମ ହର୍ଣ୍ଣର ପେଁ ପେଁ । କିଏ ଭୁଲ କଲା ?

"ଭୁଲ୍ ଖୋଜିବାରେ ବେଶି ଡେରି ହେଲା ନାହିଁ । ଦେଖାଗଲା ଯେ ଆମର ଆଗରେ ଥିବା କାର୍‌ର ଯୁବକ ଡ୍ରାଇଭର୍ ଓ ତା'ର ସଙ୍ଗିନୀ ଚୁମ୍ବନରେ ଆବଦ୍ଧ । ପଛ କାର୍‌ର ହର୍ଣ୍ଣ ତାଙ୍କୁ ଶୁଭୁ ନାହିଁ, ରାସ୍ତାରେ ଗାଡ଼ି ଚଳାଉଛନ୍ତି ଏ ଧାରଣା ମଧ୍ୟ ବୋଧହୁଏ ନାହିଁ ।

"ମୋର ମନେ ଅଛି ଆପଣ ଖୁବ୍ ଜୋର୍‌ରେ ହର୍ଣ୍ଣ ଦେଲେ," ସେ ମୋ ଆଡ଼କୁ ଅନାଇ କହିଲେ; "ତା' ଛଡ଼ା ଆପଣ ବଡ଼ ବଡ଼ ଶବ୍ଦରେ ଗାଳି ଦେଲେ, ଖୁସି ହେବା ତ ଦୂରର କଥା ।"

"ସେ ଥିଲା କାର୍ ନମ୍ବର ଉଆନ୍ । ଯଥାକ୍ରମେ ସେମାନେ ଚେଇଁ ଉଠିଲେ ଓ ଆଗେଇଲେ । କିନ୍ତୁ କିଛି ସମୟ ପରେ କାର୍ ନମ୍ବର ଟୁ ବାଁ ଲେନ୍‌ରୁ ଆସି ଆମ ବାଟ ଓଗାଳିଲା । ସେ କାର୍‌ଟି ଚାଲୁଥାଏ, ତେବେ କିଏ ଚଲଉ ଥାଏ ବୁଝି ହେଉ ନ ଥାଏ, —ଡ୍ରାଇଭର୍ ସିଟ୍‌ରେ ବସିଥିବା ବାଳକ ନା ଷ୍ଟିଅରିଂ ହୁଇଲ ଉପରେ ଅଜାଡ଼ି ହୋଇ ପଡ଼ିଥିବା ବାଳିକା । ବାଳିକାର କେଶରାଶି ଚୁମ୍ବିତ ହେଉଛି ଓ କାର୍ କୁଆଡ଼େ ଯିବ ବୋଲି ବାଟ ପାଉନାହିଁ, ଗୋଟିଏ ଲେନ୍‌ରୁ ଅନ୍ୟ ଲେନ୍‌କୁ ଯାଇ ଫେରି ଆସୁଛି ।

ଶ୍ରୋତାଦଳ ଚୁମ୍ବନର ଏହିରୂପେ ବର୍ଣ୍ଣନା ଶୁଣି ହସୁଥିଲେ । ଏତେବେଳକୁ କଥାଟା ଜମିଲା । ହୁଏତ ସେମାନେ ଏପରି ଦୃଶ୍ୟ କେତେ ଦେଖିଥିବେ, କିନ୍ତୁ ରମଣୀ-ବାବୁଙ୍କ ମୁହଁରୁ ତା'ର ବର୍ଣ୍ଣନା ଶୁଣିବାକୁ ଭଲ ଲାଗୁଥାଏ, ଯେଖିଦ୍ ବୁଢ଼ୀମା ପାଖରୁ ଅସୁରୁଣୀ ଗପ ଶୁଣିଲା ପରି ।

କେଣ୍ଣ ରମଣୀବାବୁଙ୍କ ପରବର୍ତ୍ତୀ ମନ୍ତବ୍ୟ ପାଇଁ କେହି ପ୍ରସ୍ତୁତ ନ ଥିଲେ । ସେ କହିଲେ, ମୁଁ ଭାବିଲି ସେମାନେ ଆକ୍‌ସିଡ଼େଣ୍ଟ କରିବେ । କରନ୍ତୁ, ମରନ୍ତୁ ମୋର କିଛି ଯାଏ ଆସେ ନାହିଁ । କିନ୍ତୁ ମୁଁ ତାଙ୍କ ଉପରେ ରାଗିଲି ଭଗିନୀ ପାଇଁ । ସେ ଏ ସବୁ ଦୃଶ୍ୟ ଦେଖୁଥିଲା, ସନ୍ଦେହ ନାହିଁ । ହଠାତ୍ ତା'ର କଥାବାର୍ତ୍ତାର ସ୍ରୋତ ଥମି ଗଲା । ସେ କେବଳ ମଝିରେ ମଝିରେ କହୁଥାଏ—କେତେବେଳେ ଘରେ ପହଞ୍ଚିବା ? କେତେ ଟାଇମ୍ ହେଲାଣି ?

"ମୋର ରାଗ ଆସିଲା । କାହିଁକିନା ମୁଁ ଭାବିଲି ଯେ ଭଗିଣୀ ପ୍ରତି ଅନ୍ୟାୟ କରାଯାଉଛି । ସେ ଆଉ ଟିକିଏ ବଡ଼ ହୋଇଥିଲେ ହୁଏତ ଲାଜେଇ ଥାଆନ୍ତା, ହେଲେ ମନେ ମନେ ଖୁସି ହେଉଥାଆନ୍ତା । କିନ୍ତୁ ଦଶବାରବର୍ଷିଆ ଅଗଠିତ ପ୍ରବଣ ମନରେ ସ୍ୱାଧୀନତାର ପତାକା ଉଡ଼ୁ, ବାଣର ରଙ୍ଗ ଆଲୁଅ ଝରୁ,—ଏ ଚୁମ୍ବନର କୁତ୍ସିତତା କାହିଁକି ?

"କଣ କହିଲ ? ଚୁମ୍ବନ କୁତ୍ସିତ ? ହଁ, ସେଦିନର ପରିବେଶରେ ମୋତେ ତାହା କୁତ୍ସିତ ଲାଗିଲା । ରମଣୀୟ ପ୍ରଭାତରେ ଜନ୍ତୁର ସେକ୍‌ସ ପରି, ଦେବୀପୂଜାର ମଣ୍ଡପରେ ସିନେମା ଗୀତ ବାଜିଲା ପରି, ପ୍ରଣୟ ରଚନା ବେଳେ ପଲିଟିକ୍‌ସ୍ ଗପ ପରି । ଅସଙ୍ଗତ,—ନା, କେବଳ ଅସଙ୍ଗତ ନୁହେଁ, ଅଶ୍ଳୀଳତା । ଭଗିଣୀର ସ୍ୱଚ୍ଛ ମନରେ ଅଶ୍ଳୀଳତାର ଛାଇ ।

"ମୁଁ ପୁରୁଣାକାଳିଆ ନୁହେଁ । ମୁଁ ଜାଣେ ଏହି ସବୁ ଦୃଶ୍ୟର ସଂଘାତ ପାଇ ପିଲା ବଡ଼ ହୁଏ, ନ ହେଲେ ସେ ଅପରିପକ୍ୱ ରହିଯାଆନ୍ତା । ସେ ଦେଖେ ରାସ୍ତାର କୁକୁର ମୋଟରର ଧକ୍କା ଖାଇ ମରୁଛି, ତା'କୁ କେହି ପଗ୍ଉରୁନାହାନ୍ତି । ସେ ଦେଖେ ବାପ ମାଆ ମିଛ କହୁଛନ୍ତି । ସେମିତି ସେ ଦେଖିଲା ବଡ଼ମଣିଷମାନେ ରାସ୍ତା ଉପରେ ଏମିତି ବେଢ଼ଙ୍ଗ ହେଉଛନ୍ତି, ଦେହରେ ଦେହ ମିଶାଉଛନ୍ତି । ସେକ୍ସର କ୍ଷୀଣ ରୂପ ତା' ମନରେ ଜାଗିଲା,—କ୍ଷତି କଅଣ ?

"କିଛି କ୍ଷତି ନାହିଁ । କିନ୍ତୁ ମୁଁ ଭାବିଲି ଯେ ଆଜି ରାତିରେ ତା' ମନରେ, ସ୍ୱପ୍ନରେ ଏହି ଛବି ଆସିବ । ସେ ଦେଖିବ ସ୍ୱାଧୀନତା ଉତ୍ସବର ଚକ୍ ଚକ୍ ଗାଲିଚ୍ଛା ଉପରେ ବୁଢ଼ୀଆଣୀପୋକ ସବୁ ଚାଲୁଛନ୍ତି, ଗୋଡ଼ ଲମ୍ବାଇଛନ୍ତି । ମୋତେ ଭଲ ଲାଗିଲା ନାହିଁ ।"

ଜଣେ ବହୁଲୁବ୍ଧୀ ଶ୍ରୋତା ମନ୍ତବ୍ୟ ଦେଲେ, "ଠିକ୍ କହୁଛନ୍ତି । ଆଜିକାଲି ଏ ଯେଉଁ ଗୋଟାଏ ଫ୍ୟାଶନ ବାହାରିଛି ଯେ ପିଲାମାନେ ସେକ୍ସ ବିଷୟ ଜାଣିବା କଥା—

"ନା ନା, ମୁଁ ସେ କଥା କହୁନାହିଁ—" ରମଣୀବାବୁ ପ୍ରତିବାଦ ଜଣାଇଲେ, କିନ୍ତୁ ନିଜକୁ ବୁଝାଇ ପାରିଲେ ନାହିଁ ।

ମୁଁ ବର୍ଷକ ତଳର ଜୁଲାଇ ଚାରି କଥା ମନେ ପକାଇଲି । ଘଟଣା ସତ ବୋଲି ଲାଗୁଛି । କିନ୍ତୁ ରାଗିଣୀ କଣ ଭାବୁଥିଲା, ନ ଭାବୁଥିଲା କିଏ କହିବ ? ମୋର ଇଚ୍ଛା ହେଲା ପଚାରିବି—ରାଗିଣୀ ମୋ ଝିଅ, ମୁଁ ଯେତେବେଳେ ତା' ମନ କଥା ଜାଣି ପାରୁ ନାହିଁ, ଆପଣ କେଉଁ ସାହସରେ··· ? ତା'ପରେ ଭାବିଲି ଯେ ଲାଭ ନାହିଁ, ରମଣୀବାବୁଙ୍କ ପରି ଲୋକଙ୍କ ପାଇଁ କଳ୍ପନା ହିଁ ଦର୍ଶନ,—ସତ କଥାର ଦର୍ପଣ ଓ ଆଧାର ।

"ଆଉ ଗୋଟିଏ ଅସୁନ୍ଦର ଦୃଶ୍ୟ ମନେ ପଡ଼ୁଛି", ରମଣୀବାବୁ କହିଲେ, "ଆପଣମାନେ ନିଉୟର୍କର ସେଣ୍ଟ୍ରାଲ୍ ପାର୍କ୍ ଦେଖିଥିବେ । ଦକ୍ଷିଣ ମୁଣ୍ଡରେ ପୋଖରୀ ଓ ଲେକ୍ ମଝିରେ ଗୋଟିଏ କାରୁସେଲ୍ (Carousel) ଅଛି, ଦେଖିଛନ୍ତି ? ଯେଉଁଠି ପିଲାମାନେ କାଠର ଘୋଡ଼ା ହାତୀ ଉପରେ ବସି ଘୂରି ବୁଲନ୍ତି, ଗୀତବାଜା ତା' ସାଙ୍ଗରେ ତାଳ ଦିଏ । ମୁଁ ଜଣେ ବନ୍ଧୁଙ୍କ ପିଲାମାନଙ୍କ ସହିତ ସେଠିକୁ ଥରେ ଯାଇଥିଲି । ପିଲାମାନେ ନିହାତି ଗ୍ରେଟ, ବଡ଼ଟିର ବୟସ ୮।୯ ବର୍ଷ ହେବ । ପିଲାମାନେ ଯଥେଷ୍ଟ ଘୂରିସାରିଲା ପରେ ମୁଁ ତାଙ୍କୁ ପାଖ ଦୋକାନରୁ ପପ୍‌କର୍ଣ୍ଣ୍ ଓ କୋକା-କୋଲା କିଣାଇ ଦେଉଛି, ଏହି ସମୟରେ ଦେଖିଲି ଯେ ଆମ ପାଖରେ ଯୋଡ଼ିଏ ପୁରୁଷ-ସ୍ତ୍ରୀ ପାଖାପାଖି ଶୋଇଛନ୍ତି, ଓ ଚୁମ୍ବନରତ ।

"ପଥ୍ ଚଲା ଭୁଲି, ଗୁଇନାହିଁ ଯେଠି, ଗୃହଆଡ଼େ ଲୋକ ହୀଉଜାଉ ହେଉଛନ୍ତି, ଓ ସେମାନେ ବୁଢ଼ାବୁଢ଼ୀ !

"ମୋ ସାଙ୍ଗରେ ପିଲମାନେ ଥିଲେ ବୋଲି କହୁନାହିଁ । ସେମାନେ ନ ଥିଲେ ମଧ୍ୟ ମୋର ଇଚ୍ଛା ହୋଇ ଥାଆନ୍ତା ଆଖି ଘୋଡ଼ାଇ ଦେବାକୁ କିମ୍ବା ତାଙ୍କ ଉପରେ ଢେଲା ପକାଇବାକୁ । ମୋର ବକ୍ତବ୍ୟ ନୁହେଁ ଯେ ସେମାନେ ବୁଢ଼ାବୁଢ଼ୀ ହେଲେଣି ବୋଲି ତାଙ୍କର ପ୍ରେମ କରିବାର ଅଧିକାର ନାହିଁ । ଅଛି, ଶହେବାର ଅଛି । କିନ୍ତୁ ତାଙ୍କର ସର୍ବସମ୍ମୁଖରେ ଦେହର ଲୀଳା ଦେଖାଇବା କଥା ନୁହେଁ । ଯେପରିକି ଜଣେ ସ୍ଥୂଳା ବୟସ୍କା ସ୍ତ୍ରୀର ରଙ୍ଗମଞ୍ଚରେ ନାଚିବା ଉଚିତ ନୁହେଁ ।

"ସେ ପୁରୁଷ ଜଣକ ଷିଅର ହୋଇ ନ ଥାଏ, ପରିଧେୟ ଅତି ସାଧାରଣ, ଓହ୍ଲାଇଲା ପରି । ସ୍ତ୍ରୀଲୋକର ମୁଣ୍ଡବାଳ କହିବି, ଚାଉଁସିଆ, ହେୟାର୍-ଡ୍ରେସର୍ ସହିତ ସମ୍ପର୍କ ନ ଥିଲା ପରି ଦିଶୁଥାଏ । ହୁଏତ ସେମାନଙ୍କ ଗୃହାଣୀରେ ଜ୍ୟୋତି ଥିବ, ହୃଦୟରେ ପ୍ରେମ ଥିବ । କିନ୍ତୁ ତାଙ୍କର ଚୁମ୍ବନ ଅସୁନ୍ଦର, ଅନ୍ୟମାନଙ୍କୁ ଦେଖାଇବାର ନୁହେଁ—ଏ କଥା ସେମାନେ କାହିଁକି ବୁଝୁନାହାନ୍ତି ?"

ତା'ପରେ ସେ ମନ୍ତବ୍ୟ ଦେଲେ, "ସୌନ୍ଦର୍ଯ୍ୟ ଯୌବନକୁ ଛାଡ଼ି ରହି ପାରିବ ନାହିଁ । ଶୁଖିଲା ଫୁଲର ବ୍ୟକ୍ତିତ୍ୱ ଅଛି, କିନ୍ତୁ ତା'ର ବଞ୍ଚିବା ଗୁଣ ସରିଆସୁଛି,—ଏ କଥା ଅସ୍ୱୀକାର କରିହେବ ନାହିଁ । ତେଣୁ ସେ ଦେହଦଶା ରମ୍ୟରଚନା କରିବାର ଦୁଃସାହସ ନ କରୁ । କାରଣ ତା'କୁ ଦେଖି ଅନ ମାନେ କଷ୍ଟ ପାଇବେ, ସଜଫୁଟା ଫୁଲ ଭଅଁର ସାଙ୍ଗରେ ମନଖୁସିରେ ଖେଳି ପାରିବ ନାହିଁ, ଭାବିବ ଯେ ପ୍ରେମକରିବା ଏତେ ଅସନା ଦେଖାଯାଏ !

"ସେମାନେ କେବଳ କ୍ଷଣକେ ପାଇଁ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ଏମିତି କରୁ ନ ଥିଲେ । କରିଚାଲିଥିଲେ,—ଫଟା ରେକର୍ଡ଼୍‌ର ଘୋଷା ପରି । ପାଖରେ କେଉଁ ଗୋଟାଏ ଦୋକାନର ମାର୍କାମରା କାଗଜ ବ୍ୟାଗ୍ ପଡ଼ିରହିଥିଲା । ସେ ମଧ୍ୟ ତାଙ୍କର ପରି ପୁରୁଣା ।"

ରମଣୀବାବୁ ନିଷ୍ଠୁର । ତାଙ୍କର ସୌନ୍ଦର୍ଯ୍ୟବୋଧ ନିକୃଷ୍ଟ ଧରଣର । ନିଜେ ଦରବୁଢ଼ା ହେଲେଣି,—ତାଙ୍କର ଏ ସୁନ୍ଦରପଣ ଆଉ କେତେଦିନ ରହିବ ? ଏହି ମର୍ମରେ ମୁଁ ତାଙ୍କୁ ମନେ ମନେ ଗାଳି ଦେଲି । କିନ୍ତୁ ତା' ସହିତ ମନରେ ଆସିଲା ଯେ ସେ ବୋଧହୁଏ କେବେହେଲେ ବୁଢ଼ା ହେବେ ନାହିଁ ।

ରମଣୀବାବୁ ଜ୍ୟୋତିର୍ମ୍ମୟ ଦଶୁଥାଆନ୍ତି । ସତ ତେର ପାନୀୟର ଆଧିକ୍ୟ କମ୍ବା ବକ୍ତୃତାର ଶ୍ରମ ତାଙ୍କୁ ଛୁଇଁଲ ପରି ଲାଗୁ ନ ଥାଏ । ଯେପରିକି ସେ ତାଙ୍କ କଥା କହିବାର ସାର୍ଥକତା ପାଉଛନ୍ତି; ଆମମାନଙ୍କୁ ଭାବ ଯୋଗାଇବାର ଆନନ୍ଦ ପାଉଛନ୍ତି ।

ଆତ୍ମ-ସନ୍ତୋଷର ପ୍ରଶସ୍ତ ପ୍ରସନ୍ନତା ନେଇ ସେ କହିଲେ, "ମୁଁ ବର୍ତ୍ତମାନ ରିଓ କଥା କହୁଛି ।"

"ବ୍ରାଜିଲ୍ ତଥା ଦକ୍ଷିଣ ଆମେରିକାର ମଉଡ଼ମଣି,—ରିଓ-ଡି-ଜେନେରୋ । ବ୍ରାଜିଲ୍‌ର ରାଜଧାନୀ ବ୍ରାଜିଲିଆକୁ ଘୁଞ୍ଚିଗଲାଣି, କିନ୍ତୁ ରିଓର ପ୍ରତିପତ୍ତି ଅକ୍ଷୁଣ୍ଣ ଅଛି । କାରଣ ସାଗର, ଉପସାଗର, ହ୍ରଦ, ପାହାଡ଼ ପର୍ବତର ଶୋଭା ତା'ଠାରୁ କେହି ଛଡ଼ାଇ ପାରିବ ନାହିଁ । "କର୍କୋଭାଦୋ" ପାହାଡ଼ ଉପରେ ଯିଶୁଖ୍ରୀଷ୍ଟ ବାହୁଶାଖା ମେଲାଇ ଅଛନ୍ତି, କେବଳ ତାହାରି ମଙ୍ଗଳ ପାଇଁ । ଦରଦାମ ହୁ ହୁ କରି ବଢ଼ୁଛି, କିନ୍ତୁ ତା'ସାଙ୍ଗରେ ହାଓ୍ୱାମିଲାର କାରବାର ବଢ଼ୁଛି, କୋଠାବାଡ଼ିର ଆକାର ପ୍ରକାର ବଢ଼ି ଚାଲିଛି, ଆମେରିକାନ୍ ଟୁରିଷ୍ଟମାନେ "କୋପାକାବାନା" ବିଚ୍‌ରେ ଗୋଡ଼ାଗୋଡ଼ି ଖେଳ ଖେଳୁଛନ୍ତି । କାରିଓକା,—ରିଓର ଅଧିବାସୀମାନଙ୍କର ଡାକନାମ,—ଖୁସି ଅଛି । ମନେହୁଏ ଯେ ପୃଥିବୀ ଧ୍ୱଂସ ହୋଇଗଲେ ମଧ୍ୟ ସେ ଖୁସି ରହିବ, କାହିଁକି ନା ସେ କାରିଓକା ।

"ରିଓର ଆନନ୍ଦ ମୋ ମନକୁ ଛୁଇଁଥିଲା । କିନ୍ତୁ ଗୋଟିଏ ସକାଳ ସନ୍ଧ୍ୟାକୁ ଆସିବା ଯାଏଁ ମୋର ଉଦାସୀନ ଭାବ ଆସିଲା । ମୋର ମନେହେଲା ଯେ ସେମାନଙ୍କର ଏତେ ଖୁସି ହେବା ଉଚିତ ନୁହେଁ । ଅଯଥା ବର୍ଷାରେ ଫୁଟ୍‌ବଲ୍ ଖେଳିବାରେ କିଛି ଅର୍ଥ ନାହିଁ, ନାଇଟ୍‌କ୍ଲବ୍‌ରେ ରାତିଅଧିକୁ ନାଚଗୀତ ଆରମ୍ଭ କରିବା ଗୋଟାଏ ବାତୁଳତା, ପାହାଡ଼ ଉପରେ ଧାଡ଼ି ବାନ୍ଧିଥିବା "ଫାଭେଲ",—ନିଗ୍ରୋ ମୂଲିଆର କୁଡ଼ିଆଘର—ସେମାନଙ୍କ ଆଖିରେ ପଡ଼ିବା ଉଚିତ, ସ୍ତ୍ରୀଲୋକମାନଙ୍କର ଏତେ ବହଳିଆ ଲିପ୍‌ଷ୍ଟିକ୍ ଲଗାଇ, ଉଲଙ୍ଗ ଅଙ୍ଗର ମାଖି ବୁଲିବା ଗୌଣତାର ପରିଚୟ ଦିଏ, ଇତ୍ୟାଦି । ମୋଟ ଉପରେ ତାଙ୍କ ଆନନ୍ଦର ଅତିଶଯ୍ୟଭାବ ମୋତେ ବାଧିଲା । ସଭ୍ୟ ମଣିଷର ଏମିତି ହାତ ଗୋଡ଼ ବାଡ଼େଇ ଖୁସି ହେବା ଭଲ ଦେଖାଯାଏ ନାହିଁ ।

"ତେଣୁ ସଞ୍ଜ ବୁଡ଼ିଲା ପରେ ପରେ ମୁଁ ଯେତେବେଳେ "ଗ୍ଲୋରିଆ" ହୋଟେଲ୍‌ରୁ ବାହାରି ଅଳସଭ୍ରମଣ କରିବାକୁ ଗଲି, ସେତେବେଳେ ମୋ ମନରେ ଭାରିପଣ ଥିଲା । ମୋତେ ଲାଗୁଥିଲା ଯେ ମୁଁ ଏମାନଙ୍କଠାରୁ ଅଲଗା, ଓ ଏହି ଭିନ୍ନତାରେ ମହତ୍ତ୍ୱ ଅଛି ।

"ଫ୍ଲାମେଙ୍ଗୋ ବିଚ୍‌ର ଏକମୁଖୀ ରାସ୍ତାଗୁଡ଼ିକରେ କାର୍‌ସବୁ ଧାଉଁଥିଲେ । ନିର୍ଦ୍ଧାରିତ ବେଗ ଯେତେ ଥାଉ ନା କାହିଁକି ଏମାନେ ଘଣ୍ଟାକୁ ପଚାଶ ଷାଠିଏ ମାଇଲ୍ ବେଗରେ ଯାଆନ୍ତି, ନ ହେଲେ କୁଆଡ଼େ ଶହରର ନିଜତ୍ୱ ରହିବ ନାହିଁ । ଦୂର ପାହାଡ଼ର 'ଫାଭେଲ'ରେ ବତିଆଲୁଅ ଜୁଳୁ ଜୁଳୁ କରୁଥାଏ । ଅଉ ଗୋଟିଏ ପାହାଡ଼ ଉପରେ ଶହରର ହୁଇସ୍କି, ମୋଟର୍ କାର୍, ପୋଷାକ ଇତ୍ୟାଦିର ବିଜ୍ଞାପନ ନିଅନ୍-ଲାଇଟ୍‌ରେ ଘୂରି ବୁଲୁଥାଏ । ଫ୍ଲାମେଙ୍ଗୋ ବେ' ନିସ୍ତବ୍ଧିଆ, କେବଳ କେତୋଟି ମାଛଧରା ଡଙ୍ଗା ରାତି ପାଇଁ ମୁଣ୍ଡ ଗୁଞ୍ଜି ରହିଥାଆନ୍ତି । ପାଖ ଖେଳ ପଡ଼ିଆରେ ରଙ୍ଗମିଠା କାଗଜ ଖଣ୍ଡ ଖଣ୍ଡ ହୋଇ ପଡ଼ିଥାଏ, ଜଣାଇ ଦେଉଥାଏ ଯେ ଦିନରେ ସଭା ହୋଇଥିଲା । କେଉଁ ଗୋଟିଏ ପାର୍କ୍‌ର କାନ୍ଥରେ ବଡ଼ ନାଲି ଅକ୍ଷରର ପୋଷ୍ଟର୍ ଆଖିରେ ପଡ଼ୁଥାଏ,—ଆଜିକାର ଶୋ "ବାରେଷ୍ଟି ବିକିନି" ଦେଖିବାକୁ ଭୁଲ ନାହିଁ, ନାଇଟ୍ କ୍ଲବ୍‌ର ନାଁ, 'ଦିନ ଓ ରାତି', ମହାତ୍ମାଗାନ୍ଧୀ ରୋଡ୍ ।

"ଦିନର ଉଦ୍ୟମ ଓ ରାତିର ବିଶ୍ରାମ ମଝିରେ, ଶାନ୍ତ ବେଳାଭୂଇଁର ପାଖେ ପାଖେ ଏହି ଉତ୍କଟ ଚଞ୍ଚଳତା, ବେଗ, ଆଲୁଅ ଓ ବିଜ୍ଞାପନର କୋଳାହଳ ମୋତେ ବିରକ୍ତ ଲାଗିଲା । ମୋର ମନେହେଲା ଯେ ଏ ସ୍ୱର୍ଗର ଅପରପାଖ, ଏ ଆନନ୍ଦ ଗୋଟାଏ ମସ୍ତବଡ଼ ମିଛ ଓ ଭୁଲ୍‌ର ଆନନ୍ଦ । ଏଇଥିଁକୁ ବୋଧହୁଏ ପାପ କୁହନ୍ତି ।

"ମୋତେ ଏକୁଟିଆ ଲାଗୁଥିଲା । ଆପଣମାନେ କହିପାରନ୍ତି ଯେ ସେହି ଆନନ୍ଦରେ ମୁଁ ନିଜକୁ ମିଶାଇ ପାରୁ ନ ଥିଲି, ସେଥିପାଇଁ ମୋର ଏପରି ବିକୃତ ମନୋଭାବ ଆସୁଥିଲା । ହୋଇଥିବ । କିନ୍ତୁ ଯେତେବେଳେ ମୁଁ ଯଦି ଗୋଟିଏ ଚୁମ୍ବନର ଦୃଶ୍ୟ ଦେଖିଥାଆନ୍ତି; ମୁଁ ବୋଧହୁଏ ଚିହ୍ନାଙ୍କି ଉଠି ଥାଆନ୍ତି,—ଯେ ଏ ପାପର ଘୋଷଣା । ଓଠରେ ଓଠ ଲଗାଇବାର ଏହି ଭୋକଲପଣ, ଅକାରଣ ଏହି ଛନ୍ଦାଛନ୍ଦି ମଣିଷର ଧର୍ମ ନୁହେଁ,—ଜନ୍ତୁର କମ୍ବା ସଇତାନ୍‌ର ।

"ଦୁର୍ଭାଗ୍ୟ ! ମୁଁ ଗୋଟିଏ ଦୃଶ୍ୟ ଦେଖିଲି ନାହିଁ । ମୁଁ ଦେଖିଲି ସମବେତ ଦୃଶ୍ୟ, ଗଣ-ଚୁମ୍ବନ !!

ଶ୍ରୋତାମଣ୍ଡଳୀ ନିସ୍ତବ୍ଧ । ଉତ୍ସୁକତା ପରମୁହୂର୍ତ୍ତକୁ ଚାହିଁରହିଛି; ବର୍ତ୍ତମାନ ପ୍ରତି ମୁହୂର୍ତ୍ତ ମୂଲ୍ୟବାନ୍ ।

ରମଣୀବାବୁ ଯଥୋଚିତ ବିରାମ ପରେ କହିଲେ, "ଗୋଟିଏ ସାଧାରଣ ପାର୍କ । ଗଛପତ୍ର ସାମାନ୍ୟ, ଫୁଲ ନାହିଁ । ପାର୍କ ମଝିରେ ଗୋଟିଏ ମଳିନ ପଥରଘୋଡ଼ା ଓ ତା' ଉପରେ ଜଣେ ଇତିହାସର ଯୋଦ୍ଧା । ଯୋଦ୍ଧାର ବୃତ୍ତପାଖରେ ଓ ପାର୍କର ଗୃହ ଚାରିପଟରେ ବହୁସଂଖ୍ୟକ କାଠର ବେଞ୍ଚ୍ । ଏବଂ ପ୍ରତି ବେଞ୍ଚ୍‌ରେ ଚୁମ୍ବନ ।

"ଅନ୍ୟମନସ୍କ ହୋଇ ମୁଁ ସେହି ପାର୍କ ଭିତରେ ପଶି ଯାଇଥିଲି । ହଠାତ୍ ସେହି ଦୃଶ୍ୟ ଦେଖି ମୋର ମନେ ହେଲି ଯେ ମୋର ଅବଚେତନା ମୁଣ୍ଡ ଟେକି ମୋତେ ପାପର ନମୁନା ଦେଖାଯାଉଛି,—ଏହି ଦେଖ୍ ଗୋଟିଏ ନୁହେଁ, ଯୋଡ଼ିଏ ନୁହେଁ···।

"ତିରସ୍କାର ଓ ଘୃଣାର ଭାବ ପ୍ରବଳ ହୋଇ ଉଠିଲା । ଏ କଳ୍ପନା ନୁହେଁ, ସତ । ଅବଚେତନାର ଖେଳ ନୁହେଁ, ଚେତନାର ଅଭିନବ ଅବିଷ୍କାର । ଶରେ ଏମିତି ହୁଅନ୍ତି ।

"ମୁଁ କଣ କରିବି ? କୁଆଡ଼େ ଯିବି ? ବେଞ୍ଚ୍ ଖାଲି ନାହିଁ । ପଥର ମୂର୍ତ୍ତିର ମଣ୍ଡପରେ ବସିବା ଜାଗା ଅଛି;—ସେଠି ବସି ପାରିବି ?

ଇଚ୍ଛା ହେଲା ଫେରିଯିବି । କିନ୍ତୁ ଭାବିଲି ଫେରିଯିବା ସମ୍ଭବ ନୁହେଁ । ଜହ୍ନର ଧାର ଦେହରେ ବାଜୁଛି, ଜଳିବା କଷ୍ଟକୁ ଆଡ଼େଇ ଦେଇ ପାରିବି ନାହିଁ । ଗ୍ରେଟ ଖାଇବାକୁ ହେବ, ତା' ପରେ ହୁଏତ ନିଜ ବାଟରେ ଚାଲି ଯିବି ।

"ତେଣୁ ମୁଁ ମୋର ଅଦମ୍ୟ ରାଗ ଓ ବିରକ୍ତି ସହ ସେହି ଯୁଗଳ ମୂର୍ତ୍ତିମାନଙ୍କୁ ଅନାଇଲି । ପ୍ରାଣୀ ଚରିତ୍ର ମୋର ବୁଝିବା ଉଚିତ ।

"ଚୁମ୍ବନ ମୁଁ କଣ କେବେ ଆଗରୁ ଦେଖି ନ ଥିଲି ? ତେବେ ଏମିତି ନୂଆ ଦେଖିଲି ପରି ଲାଗୁଛି କାହିଁକି ? ଧୂସରବର୍ଣ୍ଣ ପୁଅଟିଏ ଗୌରବର୍ଣ୍ଣା ସଙ୍ଗିନୀକୁ ଗେହ୍ଲା କରୁଛି, ତା'ର ମୁଣ୍ଡବାଳକୁ ଆଉଁସୁଛି, କପୋଳରୁ ବାହୁଯାଏ ଚୁମ୍ବା ଦେଉଛି । ଝିଅ ଆଖି ବୁଜିଛି, ମୁଦ୍ରିତରେ ଜୀବନର ସବୁ ସୁଖ ପାଇଲା ପରି । ଆଉ ଗୋଟିଏ ବେଞ୍ଚ୍‌ରେ ଜଣେ ଘନ-ଶ୍ୟାମ ନିଗ୍ରୋ ତା'ର ପ୍ରେୟସୀର କୋଳରେ ଶୋଇଛି ଓ ଓଠରେ ଚୁମ୍ବା ପାଉଛି । ପର ବେଞ୍ଚ୍‌ରେ ଗୌରବର୍ଣ୍ଣ ଦୁଇଜଣ ପରସ୍ପରକୁ ନିବିଡ଼ ଆଲିଙ୍ଗନ କରି କିଛିକ୍ଷଣ ପାଇଁ ଅଲଗା ହୋଇଯାଉଛନ୍ତି, ଅଧାଶୁଣା ସ୍ୱରରେ କଅଣ କୁହାକୁହି ହେଉଛନ୍ତି, ଓ ପୁଣି ଆଲିଙ୍ଗନ,—ମନ୍ତ୍ର ପରେ ସ୍ୱାହା ପରି । ତା' ପାଖକୁ ଲାଗି ଅନ୍ୟ ଦୁଇଜଣ, ଝିଅ ତା' ପୁରୁଷର ଗ୍ରୀବାରେ ଆଉଜି ଯାଇଛି, ହାତଟିକୁ ଦେଇଦେଇଛି ଆଉଁସିବା ପାଇଁ, ଓ ତା' ପରେ ନିଜେ ଉଠି ପଡ଼ି ସାଥୀର ମୁହଁକୁ ଧରି ଗେହ୍ଲା କରୁଛି । ପର ବେଞ୍ଚ୍‌ରେ—।

"ନା, ଆଉ ଦେଖିବି ନାହିଁ । କେତେ ଦେଖିବି ? ଗୋଟିଏ ନୁହେଁ, ଯୋଡ଼ିଏ ନୁହେଁ—।

"ମୋ ଗୃହପାଖରେ ଏ କଣ ହେଉଛି ? ସେମାନେ କଣ ମୋତେ ଦେଖୁ-ନାହାନ୍ତି ? ପରସ୍ପରକୁ ଦେଖୁନାହାନ୍ତି ? ମୋର ମନେ ପଡ଼ିଲା ଜୁମ୍ମା ମସ୍‌ଜିଦ୍‌ରେ

ପ୍ରାର୍ଥନାର ଦୃଶ୍ୟ । ହଜାର ହଜାର ଲୋକ ଏକାସାଙ୍ଗରେ ଭୂମିଷ୍ଠ ପ୍ରଣାମ କରୁଛନ୍ତି; କିନ୍ତୁ ଚେତନା 'ସମବେତ ନୁହେଁ, ଗୋଟି ଗୋଟିକିଆ । ପ୍ରତି ଲୋକ ତା' ନିଜର ଭଗବାନ ସାଙ୍ଗରେ କଥାଭାଷା ହେଉଛି । ପ୍ରତି ଅଳି, ପ୍ରତି ବେଦନା, ପ୍ରତି ପୁଲକ ଅନ୍ୟଠାରୁ ଭିନ୍ନ । ସମସ୍ତେ ଏକାଠି ଅଛନ୍ତି, ପରସ୍ପରକୁ ଦେଖୁଛନ୍ତି; କିନ୍ତୁ ଜଣକର ନିଜକଥା ଆଉ କାହା ସାଙ୍ଗରେ ମିଶିଯାଉ ନାହିଁ, ଆଉ କାହାର ଭାବକୁ ଚହଲାଇ ଦେଉ ନାହିଁ ।

"ଏ ବୋଧହୁଏ ସେହିପରି ଗୋଟିଏ ସଭା । ସେମାନେ ଭାବୁଛନ୍ତି ଏଥିରେ ଲାଜ କରିବାର କିଛି ନାହିଁ ।

"ପ୍ରେମ ଓ ପ୍ରାର୍ଥନା ! ଧ୍ୟାନ । ମୁଁ ସେହି ପ୍ରାଣୀମାନଙ୍କୁ ପୁଣି ଅନାଇଲି, ଜଣକରୁ ଆଉ ଜଣକୁ । ପୁଣି ଦେଖିଲି କେତେ ରକମର ଚୁମା, କେତେ ପ୍ରକାରର ଆଦର, ଯାଚନା ଆବେଦନ ଦାନ ଗ୍ରହଣର କେତେ ନୂଆ ରୂପ ।

"ଦେଖି ରହିଲି । ଦେଖି ଦେଖି ମୋତେ ଲାଗିଲା ଯେ ମୁଁ ତାଙ୍କଠାରୁ କିଛି ପାଉଛି । ମୋତେ ଖରାପ ଲାଗୁ ନାହିଁ । ବରଂ ମୋତେ ଭଲ ଲାଗୁଛି, ସମ୍ପଦ ଲାଭର ଭାବ ଆସୁଛି । ପାପପୁଣ୍ୟ ଢଙ୍ଗ ବେଢଙ୍ଗର ବିଗୃର ଭୁଲିଯାଇ ମୁଁ କେବଳ ଦେଖୁଛି - ।

"—ଦେଖୁଛି ମୋ ଚୃଣପାଖରେ ଏତେ ଫୁଲ ଫୁଟିଛି !" ଏତେ ଆଦର, ଏତେ ଗେହ୍ଲାର ରଙ୍ଗବେରଙ୍ଗ ଫୁଲ । ଏ ସବୁ ଲୁଚ ରହିଥାଆନ୍ତା କାହିଁକି ?

"ଫୁଲର ରଙ୍ଗ ଓ ସୁବାସରେ ମୁଁ ବିଭୋର ହୋଇଗଲି । ଆଉ କିଛି ଭାବି ପାରିଲି ନାହିଁ···।"

ରମଣୀବାବୁ ସମ୍ମୋହନର ଭାବ ପ୍ରକାଶ କଲେ । ମୁଁ ଭାବିଲି ଯେ ଶେଷର ଅନୁପମ ଦୃଶ୍ୟ ଆଙ୍କିଲା ପରେ ତାଙ୍କ ସୃଷ୍ଟିର ପ୍ରବଣତା ବିଧ୍ୱସ୍ତ ଅଥବା ପରିପୂର୍ଣ୍ଣ ହୋଇ ସାରିଛି । ଏଥର ସେ ଆଉ କିଛି କହି ପାରିବେ ନାହିଁ ।

କିନ୍ତୁ ସେ କହିଲେ । କର୍ତ୍ତବ୍ୟ ପୂରଣ କଲା ପରି ନୂଆ କଥା ଆରମ୍ଭ କଲେ ।

"ମୁଁ ସାନ୍ତିଆଗୋରେ କିଛିଦିନ ଥିଲି । ସେଠି ଜଣେ ଭାରତୀୟ ଯୁବକ ମୋ ସାଙ୍ଗରେ ଯୁଟିଲେ । ତାଙ୍କ ମତରେ ଦକ୍ଷିଣ ଆମେରିକାରେ ଚୀଲି ହେଉଛି ସବୁଠାରୁ ସାର ଦେଶ । ଯଥା—ଚୀଲିରେ ଏମାନେ ବିଶୁଦ୍ଧ ସ୍ପାନିଶ୍ କହନ୍ତି, ଏମାନେ ସବୁଠାରୁ ଭଲ ଫୁଟବଲ ଖେଳନ୍ତି, ଏମାନେ ମଲା ମୁଣ୍ଡିଆ ହୋଇ ରାସ୍ତାକୁ ବାହାରନ୍ତି

ନାହିଁ, ଏଠି ପ୍ରକୃତି ଓ ମଣିଷର ରଚିତ ସୌନ୍ଦର୍ଯ୍ୟ ଅଛି, କିନ୍ତୁ ଏମାନେ ଅନ୍ୟ ଲାଟିନ୍ ମାନଙ୍କ ପରି ନିଜକୁ ଦେଖାଇ ହୁଅନ୍ତି ନାହିଁ. ଇତ୍ୟାଦି ।

"ତାଙ୍କ କଥାରେ କିଛି ସତ୍ୟତା ଥିଲା । ସାନ୍ତିଆଗୋରେ ଆଣ୍ଡିଜ୍ ପର୍ବତର ବରଫମଖା ସୌନ୍ଦର୍ଯ୍ୟ ଅଛି, ପାର୍କ ଉଦ୍ୟାନ ଆଦିର ଅଭାବ ନାହିଁ ଓ ରାସ୍ତାରେ ବୁଲୁଥିବା ସବୁ ଲୋକମାନେ ଭଦ୍ରଲୋକ ବୋଲି ମନେ ହୁଅନ୍ତି । କିନ୍ତୁ ଶୁରୁରୁ ଆସି ଗୋଟିଏ ପ୍ରଭେଦ ସର୍ବଦା ମୋ ଆଖିରେ ପଡ଼ୁଥିଲା—ଯେ ଏମାନେ ଅତି ଭଦ୍ର । ଏମାନଙ୍କ ରାଜନୀତିରେ ଅନେକ ଦଳାଦଳି ଅଛି, ହେଲେ ଏମାନେ କେବଳ ପାଟିତୁଣ୍ଡ କରନ୍ତି, ମରାମରି ହୁଅନ୍ତି ନାହିଁ । ରାସ୍ତାରେ ଭଦ୍ରବେଶରେ ବୁଲିବା ଭଲ କଥା, କିନ୍ତୁ ବେଳେ ବେଳେ ମନ ଖୁସିରେ ସାର୍ଟର ବୋତାମ ଟିକିଏ ଖୋଲି ଦେବାକୁ କଣ ଇଚ୍ଛା ହୁଏ ନାହିଁ ? ସ୍ତ୍ରୀ ପୁରୁଷ ହାତରେ ହାତ ଦେଇ, ଅଣ୍ଟାରେ ହାତ ଗୁଡ଼ାଇ ବୁଲିବା ପାଶ୍ଚାତ୍ୟ ସଭ୍ୟତା—କିନ୍ତୁ ସଭ୍ୟତାର ସୀମା କଣ କେବଳ ସେହି ଯାଏଁ ?

"ଏହି ଦୃଷ୍ଟିରୁ ମୁଁ ମୋର ବନ୍ଧୁଙ୍କୁ କହିଲି ଯେ ସାନ୍ତିଆଗୋ ମୋତେ ସବୁ ଭଲ ଲାଗୁଛି, କିନ୍ତୁ ଏଠି ବାଲ୍ୟ ଓ ଯୌବନର ଜ୍ୟୋତି ଦେଖିଲି ନାହିଁ । ସେ ଆଶ୍ଚର୍ଯ୍ୟ ହୋଇ କହିଲେ—ମାନେ ? ଆପଣ ଦେଖିନାହାନ୍ତି ସାନ୍ତାଲୁସିଆ ପାର୍କରେ ପିଲାମାନେ କେମିତି ମଜାରେ ଖେଳୁଛନ୍ତି ? ମଉଜମଜଲିସ୍ ପାଇଁ ଏତେ ପାର୍କ, ରେସ୍ତୋରାଁ, ନାଇଟ୍‌କ୍ଲବ୍, ଏତେ ସିନେମା, କନ୍‌ସର୍ଟ ହଲ୍... । ମୁଁ ତାଙ୍କୁ ବୁଝାଇ ପାରିଲି ନାହିଁ । କେମିତି କହିବି ଯେ ମୁଁ ଖୋଜୁଛି ବାଲ୍ୟ ଜୀବନର ଅପ୍ରତିହତ ଅଥଚ ନିଶ୍ଚିତ ରୂପ, ଯାହାକୁ ଦେଖିଲେ କହିହେବ—ଯେତେହେଲେ ପିଲା ! ଯେତେହେଲେ ଟୋକାବେଳ !

"ଦିନେ ଆମେ ପ୍ରଶାନ୍ତମହାସାଗର କୂଳରେ ଥିବା ଭିନଆଦେଲ ମାର୍ ଦେଖିବାକୁ ଗଲୁ । ଏ ଗୋଟିଏ ସୁପ୍ରସିଦ୍ଧ ସି-ରିସର୍ଟ (Sea-resort), ଏହାର ଆକ୍ଷରିକ ଅର୍ଥ—ସମୁଦ୍ରର ଦ୍ରାକ୍ଷାବନ ।"

"ସେଠି ସମୁଦ୍ରର ଶୋଭା ଦେଖି ମୁଁ ମୁଗ୍ଧ ହୋଇଗଲି । ସୁନୀଳ ଉତ୍ତୁଙ୍ଗ ଢେଉ କୂଳର ଅସଂଖ୍ୟ ପଥର ଓ ଶ୍ଲେଟ ପାହାଡ଼ରେ ବାଡ଼େଇ ହେଉଥାଏ । ସେହି ଆଘାତ ଆଣି ଦେଉଥାଏ ଧଳା ଫେଣର ବିସ୍ତାର ଓ ଧଳା ସମୁଦ୍ର ଚଢ଼େଇଙ୍କ ମେଳା । ତା' ଛଡ଼ା ଶୀତ ସମୁଦ୍ର ସ୍ରୋତ ହମ୍‌ବୋଲଟ୍ କରେଣ୍ଟ (Humboldt Current) ଏହି ବାଟ ଦେଇ ଯାଇଛି ବୋଲି ପାଣି ପବନରେ ଶୀତ ଭାବ ପୂରି ରହିଥାଏ । ମନେ ହେଉଥାଏ ଯେ ସମୁଦ୍ରର ଘନୀଭୂତ ନୀଳିମା, ତା'ର ଗଭୀରପଣ ଏହି ଶୀତର ସଙ୍ଗରୁ ଆସୁଛି । ଏହିପରି ପରିବେଶରେ ନିବିଡ଼ ଅନୁଭୂତି ଗଢ଼ି ଉଠେ ।

"ଆମେ ସମୁଦ୍ର କୂଳରେ କିଛି ସମୟ ବୁଲି ସାରିଲା ପରେ ଗୋଟିଏ ଉଚ୍ଚ ଧରଣର ବାର୍ ରେସ୍ତୋରାକୁ ଗଲୁ । ଦେଖିଲୁ ସୁସଜ୍ଜିତ ପୁରୁଷ ସ୍ତ୍ରୀ ଜମା ହୋଇଛନ୍ତି, ବାଜା ବାଜୁଛି । ବନ୍ଧୁ କହିଲେ, ଏ ହେଉଛି ଲଞ୍ଚ୍ ଉପଭୋଗର ଉପଯୁକ୍ତ ସ୍ଥାନ ।

"ରେସ୍ତୋରାଁରେ ବସି ଲଙ୍ଗୋସ୍ତିନୋ ନାମକ ବଡ଼ ଚିଙ୍ଗୁଡ଼ି ସାଙ୍ଗରେ ଚିଲିର ନିଜସ୍ୱ ଖଟା ହୁଇସ୍କି—ପିସ୍‌କୋ ସାଓ୍ୱାର—ଖାଇଲା ବେଳେ ମୋର ମନକୁ ଆସିଲା ଯେ ଏଠି ଏତେ ଲୋକ, ଏତେ ଆନନ୍ଦ କୋଳାହଳ, କିନ୍ତୁ ସମୁଦ୍ରକୂଳରେ ତ ଲୋକବାକ ଦେଖିଲି ନାହିଁ ।

"କିଛି ସମୟ ପରେ ରେସ୍ତୋରାଁରେ ଗୋଟିଏ ନାଚ ଦେଖିବାକୁ ମିଳିଲା । ତା' ନାଁ 'କୁଏକା'—ଆକ୍ଷରିକ ଅର୍ଥ କୁକୁଡ଼ା ନାଚ । ଏ ମଧ୍ୟ ଚିଲିର ନିଜ ସମ୍ପଦ । ଏଥିରେ ଜଣେ ପୁଅ ଓ ଜଣେ ଝିଅ ରୁମାଲ୍ ଧରି ନାଚନ୍ତି, ନାଚର ଇଙ୍ଗିତ ହେଉଛି ପୁରୁଷର ପ୍ରଣୟ ଯାଚନା ଓ ନାରୀର ଛଳିଲା ପଣ । ଦର୍ଶକବୃନ୍ଦ ତାଳି ମାରୁଥିଲେ, ବାଜା ସାଙ୍ଗରେ ତାଳ ଦେଉଥିଲେ । ଲୋକନୃତ୍ୟଟିକୁ ସମସ୍ତେ ବେଶ ଉପଭୋଗ କଲା ପରି ମନେ ହେଉଥିଲା ।

"ମୋତେ କିନ୍ତୁ ଏ ବନ୍ଦ୍-ଘର ଲୋକନୃତ୍ୟ ଭଲ ଲାଗିଲା ନାହିଁ । ମୁଁ ବନ୍ଧୁଙ୍କୁ କହିଲି—ସମୁଦ୍ର କୂଳକୁ ଯିବା । ମୋର ଇଚ୍ଛା ଥିଲା ଅନ୍ଧାର ହେବା ଆଗରୁ ଆଉ କିଛି ସମୟ ସେହି ଶୀତ-ନୀଳ ଢେଉମାନଙ୍କ ପରାକ୍ରମ ଦେଖିବି, ଭାବନା କଲ୍ଲୋଳରେ ମଗ୍ନ ହୋଇଯିବି ।

"ବନ୍ଧୁ ରାଜି ହେଲେ ଓ ହଠାତ୍ କହିଲେ ଆପଣ ଗୋଟାଏ ବାର୍ ଦେଖି-ନାହାନ୍ତି, ମୁଁ ମଧ୍ୟ ଦେଖିନାହିଁ । ତା' ନାଁ ହେଉଛି ଲଭର୍ସ ବାର୍, ଖାସ୍ ପ୍ରେମିକ-ମାନଙ୍କ ପାଇଁ । ଚାଲନ୍ତୁ ସେ ଆଡ଼େ ଯିବା ।

"ଲଭର୍ସ ବାର୍ ଖୋଜିବାକୁ ଅନେକ ଡେରି ହେଲା, ତା'ର କାରଣ କେହି ତା' ନାଁ ଶୁଣିନାହାନ୍ତି । ଯାହାକୁ ପଚାରିଲେ ସେ ଟିକିଏ ହସେ ଓ ମୁଣ୍ଡ ହଲାଏ । ମନେ ହୁଏ ସେ ଭାବୁଛି ଆମେ ଯୋଡ଼ିଏ ମାର୍କାମରା ଟୁରିଷ୍ଟ୍ ।

"ଆମେ ସବୁ ଜଣାଶୁଣା ବାର୍ ପାର ହୋଇ ସମୁଦ୍ର କୂଳରେ ବହୁତ ବାଟ ଆଗେଇ ଗଲୁ । ଏଥର ଖାଲି ବାଲି, କଣ୍ଟାଗଛ ଓ ପାହାଡ଼ିଆ ହଳଦିଆ ଫୁଲ ଦେଖିବାକୁ ମିଳିଲା । ଫେରିବୁ ବୋଲି ବସିଛୁ, ଏହି ସମୟରେ ମୁଁ ଦେଖିଲି ଯେ ଆଗରେ ଗୋଟିଏ ଗଛରେ ବସିଥିବା ପୁରାତନ ଜୀର୍ଣ୍ଣ କାଠପଟା ଉପରେ କଣ ଲେଖା ହୋଇଛି । ଯାତ୍ରା ସଫଳ । ଲଭର୍ସ ବାର୍ !

"କାଠଫଟାର ଆଙ୍ଗୁଳି ନିର୍ଦ୍ଦେଶ ଅନୁଯାୟୀ ଆମେ ତା'କୁ ଖୋଜିବାକୁ ଗଲୁ। ତଥାପି ତା'ର ଠାବ ମିଳିଲା ନାହିଁ। ଆଗରେ ସମୁଦ୍ର କୂଳକୁ ଲାଗି ଯେଉଁ ଖାଲି ଭୂଇଁଖଣ୍ଡକ ଅଛି, ଯାହାକୁ ଅନାଇ ବସିଲେ ଖସି ପଡ଼ିବାର ଭୟ ହୁଏ ସେଇଟା? ନା ଆଉ ଟିକିଏ ଗୁଡ଼ି ଇଉକାଲିପ୍ଟସ୍ ଓ ଉଇଲୋ ଗଛ ଘେରା ଯେଉଁ ଘାସ-ବାଲିର ଆସ୍ଥାନ ଅଛି ତାକୁହିଁ କୁହାଯାଏ— ? ଏହିପରି ଗୋଟିକରୁ ଅନ୍ୟଟିକୁ ଦେଖିଲୁ। ପ୍ରେମିକ ଭୂମିର ସନ୍ଧାନ ମିଳିଲା ନାହିଁ।

"ଶେଷକୁ ଦେଖିଲୁ ସମୁଦ୍ର ପାଖରେ ଥିବା ଗୋଟିଏ ଅନିର୍ଦ୍ଦିଷ୍ଟ ସନ୍ତସନ୍ତିଆ ଓଦା ଭୂଇଁରେ ଦୁଇଜଣ ଛିଡ଼ା ହୋଇଛନ୍ତି ଓ ପରସ୍ପରକୁ ଚୁମ୍ବନ ଦେଉଛନ୍ତି। ଧୀର ନିବିଷ୍ଟ ଚୁମ୍ବନ, ସ୍ଥିର ଜୀବନର ଛବି ପରି। ମୋର ବନ୍ଧୁ ଆନନ୍ଦରେ ମୋ' ହାତ ଧରି ପକାଇ କହିଲେ, ଦେଖିଲେ? ଦେଖିଲେ? ଏହି ହେଉଛି ଲଭର୍ସ ବିଚ୍।

"ନିଶ୍ଚୟ ହୋଇଥିବ ଲଭର୍ସ ବିଚ୍। ସାନ୍‌ଡିଆଗୋରେ ଏତେଦିନ ରହିଲା ପରେ ଏପରି ଦୃଶ୍ୟ ଏହି ପ୍ରଥମ ଦେଖିବାକୁ ମିଳିଲା। ଠିକ୍ ଅଛି। ଆଉ କେଉଁଠି ଦେଖିବା ପାଇଁ କେମିତି ଆଶା କରୁଥିଲି? ହଁ, ଯଦି ଲଭରସ୍ ଲେନ୍, ଲଭର୍ସ ପାର୍କ ଇତ୍ୟାଦି କିଛି ଥିବ—।

"ଫେରିବାବେଳକୁ ମୋ' ବନ୍ଧୁ ଥରକୁ ଥର କହିଚାଲିଥିଲେ—ମୁଁ କଣ କହୁଥିଲି? ଅର୍ଥ, ସାନ୍‌ଡିଆଗୋରେ ମଧ୍ୟ ଯୌବନ ଅଛି।"

"ଏହି ସାନ୍‌ଡିଆଗୋର ଘଟଣା ସାଙ୍ଗରେ ମୋର ମନେପଡ଼ୁଛି ନିଉୟର୍କର ଗ୍ରୀନ୍‌ଉଇଚ୍ ଭିଲେଜ୍‌ରେ ଗୋଟିଏ ଅନୁଭୂତି" ଦେଖିଲି ରମଣୀବାବୁ ହାରିବା ଲୋକ ନୁହନ୍ତି, ବିଶ୍ରାମ ନେବାକୁ ଚାହାନ୍ତି ନାହିଁ। ବୋଧହୁଏ କ୍ରମାନ୍ୱୟରେ ଗ୍ରୀନ୍‌ଉଇଚ୍ ଭିଲେଜ୍ କଥା କହିବା ପାଇଁ ସେ ଆଗରୁ ଠିକ୍ କରିଥିଲେ।

କହିଲେ, "ଗ୍ରୀନ୍‌ଉଇଚ୍ ଭିଲେଜ ଅତି ବିଚିତ୍ର ସ୍ଥାନ। ଆପଣମାନେ ନିଶ୍ଚୟ ଦେଖିଥିବେ, ଜାଣିଥିବେ। ଏଠି ସବୁ ଓଲଟା, କିମ୍ବା ଅଭିନବ—ଅନ୍ତତଃ ତାହାହିଁ ହେଉଛି ତା'ର ପ୍ରସିଦ୍ଧି। ତା'ର ମାଧୁର୍ଯ୍ୟ ଗ୍ରହଣ କରିବାକୁ ହେଲେ ଅନେକ ଦିନ ଲାଗିବ। ଅନେକ ଅନ୍ଧାର ଗଳି ବୁଲିବାକୁ ପଡ଼ିବ, ଅନେକ ଅଦ୍ଭୁତ ଲୋକଙ୍କ ସାଙ୍ଗରେ ସାକ୍ଷାତ କରିବାକୁ ହେବ, ଶତାଧିକ ନାଇଟ୍‌କ୍ଲବର ଆମୋଦ-କାଲଚର୍‌ରେ ଭାଗ ନେବାକୁ ହେବ। କିନ୍ତୁ ମୁଁ ତା'ର କେବଳ ଗୋଟିଏ ଝଲକ୍ ପାଇଥିଲି, ଗୋଟିଏ ସନ୍ଧ୍ୟାର ଅନୁଭୂତି। ସେଥିକରେ ମୁଁ ନିଃସନ୍ଦେହରେ କହିପାରେ ଯେ ଗ୍ରୀନ୍‌ଉଇଚ ଭିଲେଜ ସର୍ବଥା ଦର୍ଶନୀୟ।

"ଏଠି ବିଭିନ୍ନ ଆମୋଦସ୍ଥଳୀ, ଖାଇବା ଘର ଇତ୍ୟାଦିର ବିଜ୍ଞାପନ ପ୍ରାୟ କାନ୍ଥ ଉପରେ ଅଙ୍ଗାରରେ ଲେଖା ହୋଇଥାଏ, ପ୍ରତ୍ୟେକର ଢଙ୍ଗ ଅଲଗା । କେହି କେହି ସଗର୍ବରେ ଜାଣନ୍ତି—ସବୁଠାରୁ ନିକୃଷ୍ଟ ଅଥଚ ଆନନ୍ଦଦାୟକ ଶୋ' ଦେଖିବାକୁ ଥିଲେ ଏଠାକୁ ଆସ । ନାମକରଣ ସ୍ୱତନ୍ତ୍ର । ଯଥା କାଫେ ଇଡ୍' (Cafe Id), ବିଜ୍ଞାପନରେ ଲେଖା ହୋଇଥାଏ,—ଫ୍ରଏଡ୍ ପଢ଼ିଛ ? ରେସ୍ତୋରାଁର ନାଁ 'ସିଦ୍ଧ ପେଗ୍' । ବନ୍ଧ ଦୋକାନର ନାଁ ଭୂତକୋଠି (Haunted hou e), ଦୋକାନରେ ମାନସିକ ବିକାର ଓ ଅନିୟମ ଉପରେ ଉଚ୍ଚ ଧରଣର ମନସ୍ତାତ୍ତ୍ୱିକ ବହିପତ୍ର ଥାଏ ।

"ଏଠିକାର ରାସ୍ତାଗଳିରେ ବୁଲୁଥିବା ଭିଲେଜ୍‌ର ଅଧିବାସୀ ନିଜକୁ ଜଣାଇବା ପାଇଁ ଖୁବ୍ ଭଲପାଆନ୍ତି । ମୋର କେତେ ଘଣ୍ଟାର ରହଣି ମଧ୍ୟରେ ମୁଁ ଦେଖିଲି ନୋଳିଆମାନଙ୍କ ପରି ଲମ୍ବା ଝୋପା ପିନ୍ଧି ଆଧୁନିକ କଳାର ଛବି ବିକୁଥିବା ଜଣେ ଆର୍ଟିଷ୍ଟ, ଅଣ୍ଡର୍‌ୱେଅର୍ ଓ ସାର୍ଟ ପିନ୍ଧିଥିବା ଜଣେ ଦାଢ଼ିଆ ଭଦ୍ରଲୋକ ଯାହାଙ୍କ ବେକରେ ପ୍ଲାଷ୍ଟିକ୍ ମୁଣ୍ଡମାଳାର ହାର ଓ ମୁହଁରେ ଋଷିଙ୍କର ଗମ୍ଭୀରତା, ବାର୍‌ରେ ଅବିନ୍ୟସ୍ତ କେଶ ଜଣେ ଯୁବକ ଯେ ରମ୍ ଓ ଦୁଧ ଏକାଠି ମିଶାଇ ପିଇଲେ ଓ ଘୋଷଣା କଲେ ଯେ ମୋ ମାଆ ଏମିତି ପିଅନ୍ତି, ଇତ୍ୟାଦି ।

"ଏହି ଅଦ୍ଭୁତ-ସୁନ୍ଦର ସଂସାରରେ ପ୍ରେମର ଚେହେରା କେମିତି, ଚୁମ୍ବନର ବିଶେଷତ୍ୱ କଅଣ—ଆପଣମାନେ ନିଶ୍ଚୟ ଏ କଥା ଭାବୁଥିବେ ।"

ରମଣୀବାବୁ ଟିକିଏ ଚୁପ୍ ରହିଲେ ଓ କହିଲେ, "କିନ୍ତୁ ତା'ର ଆଲୋଚନା କରିବାକୁ ଗଲେ ଅନେକ ସମୟ ଲାଗିବ । କାରଣ ଏ ଦିଗରେ ଭିଲେଜ୍‌ର ନିଜତ୍ୱ ଅସାମାନ୍ୟ ଓ ବହୁମୁଖୀ । ମୁଁ କେବଳ ମୋର ଆଖିଦେଖା ଗୋଟିଏ ଦୃଶ୍ୟର କଥା କହୁଛି । ଏ ହେଉଛି ଲଭର୍‌ସ୍ ବିଚ୍‌ରେ ଚୁମ୍ବନ ଦେବାର ଅପରପାଖ । ଏଥିରୁ ଆପଣ ଦେଖିବେ ଗ୍ରୀନ୍‌ଉଇଚ ଭିଲେଜ୍‌ର କଳ୍ପନା କେତେ, ତା'ର ଉଦ୍ଭାବନ କେମିତି ପ୍ରେମିକମାନଙ୍କୁ ଆକ୍ରମଣ କରେ ।

"ଅନ୍ଧାର ହେଲା ପରେ ମୁଁ ପ୍ରଥମେ ଯେଉଁ ନାଇଟ୍ କ୍ଲବ୍‌କୁ ଗଲି ତା' ନାଁ ହେଉଛି 'ସାଇକ୍ଲୋପ୍‌ସ କାଫେ' । ତା'କୁ ମୁଁ ନାଇଟ୍‌କ୍ଲବ୍ କହୁଛି, କାରଣ ତା' ଛଡ଼ା ଆଉ କଣ କହିବି ଭାବିପାରୁ ନାହିଁ । ତା'ର ଅତି ସଙ୍କୀର୍ଣ୍ଣ ପ୍ରବେଶ ଦ୍ୱାରରେ ଗୋଟିଏ କଳାପରଦା ଝୁଲୁ ହୋଇଥାଏ । ତା' ଉପରକୁ କାନ୍ଥରେ ନାଲିନେଳି ରଙ୍ଗର ଗୋଟାଏ ବିରାଟ କାଠର ମୁଣ୍ଡ, ଧରିନେବାକୁ ହେବ ଯେ ସେ ହେଉଛି ଏକଆଖିଆ ରାକ୍ଷସ ସାଇକ୍ଲୋପ୍‌ସ୍‌ର ମୁଣ୍ଡ । ପରଦାକୁ ଧରି ଅଲଟ୍ରାବାୟୋଲେଟ୍ ଟିଏ

ବୁଢ଼ା ହୋଇଛି; ତା'ର ଚକ୍ଷୁ ଆଖି ଉଚ୍ଚ କପାଳରେ ସୁନ୍ଦରତା ନାହିଁ, କିନ୍ତୁ ହସରେ ବନ୍ଧୁଭାବ ପୂରି ରହିଛି ।

"ମୁଁ ତା' ଭିତରକୁ ଗଲି । ଦେଖିଲି ଯେ ରାକ୍ଷସ ନାହିଁ ସିନା!, ରାକ୍ଷସର ଗୁମ୍ଫା ଅଛି । ଅନ୍ଧାରିଆ ଲମ୍ବା ଘରର କାନ୍ଥ ସବୁ ଆବୁଡ଼ା ଖାବୁଡ଼ା, ଗୁମ୍ଫା ପରି ଓ ଘରର ସେ ମୁଣ୍ଡରେ ପାହାଡ଼ତୁଲ୍ୟ ଗୋଟିଏ ଉଚ୍ଚ ଜାଗା ଉପରେ ଜଣେ ଯୁବକ ଗିଟାର ବଜାଉଛି ।

"ଚଉକି ଖଣ୍ଡେ ବୋଲି ନାହିଁ । କାନ୍ଥକୁ ଲାଗିକରି ଅବିଚ୍ଛିନ୍ନ ପଥର ବେଞ୍ଚ୍, ତା' ଉପରେ ସିଧା ହୋଇ ବସିବାକୁ ପଡ଼ିବ, ହାତ ରଖିବାକୁ ହେବ ସାମ୍ନାର କାଠ ଟେବୁଲ ଉପରେ, କାନ୍ଥର ଗୋଜ ପିଠିରେ ଲାଗିବ ନାହିଁ ।

"ଗିଟାର୍‌ବାଜା ସରିଗଲା ପରି ହଠାତ୍ ଉଚ୍ଚ ସ୍ୱରରେ ପାଟି କରି ଉଠିଲା । ନୂଆ ଗୀତର ଆରମ୍ଭ ? ମୁଁ ଡରିବରି ହୋଇ ବେଞ୍ଚ ଉପରେ ବସି ପଡ଼ିଲି । ପାଖରେ କେହି ନାହିଁ । ଟେବୁଲ୍ ଉପରେ ପାଣି ଗିଲାସେ ଥୁଆ ହୋଇଛି ।

"ମୋତେ ଭାରି ଗରମ ଲାଗିଲା । ଦେଖିଲି ଯେ ଘର ଏୟାର୍‌କଣ୍ଡିସନ୍‌ଡ୍ ନୁହେଁ । ତେବେ ଗୋଟିଏ ହେଲେ ପଙ୍ଖା କିଣ ରହିବା କଥା ନୁହେଁ ?

"ଶେଷକୁ କୋଟ୍ ଖୋଲି କରି ରଖିଦେଲି । ଏତିକିବେଳେ ଦ୍ୱାରପାଳିକା ଉଚ୍ଚକପାଳୀ ଝିଅଟି ପାଖକୁ ଆସି ତା'ର ମିଠା ହସ ସାଙ୍ଗରେ ପେନ୍‌ସିଲ୍‌ରେ ଲେଖା ମେନୁ କାର୍ଡ଼ ଦେଖାଇଲା । କଣ ଦରକାର ? କମଳା ରସ, ଲେମ୍ବୁପାଣି, ଆପ୍‌ଲରସ୍, ଗ୍ରେପ୍ ବେରି— । ଏହିରି ପ୍ରାଚୁର୍ଯ୍ୟ କିନ୍ତୁ ହୁଇସ୍କି ଓ୍ୱାଇନ୍ ଆଦି ଜିନିଷ କିଛି ନାହିଁ । ହଁ, କୁକିଜ୍ (ବିସ୍କୁଟ୍) ମିଳିବ ।

"ଯାହାହେଉ ଫଳରସ ଟିକିଏ ଖାଇ ମୁଁ ଗିଟାର୍ ଗୀତ ଶୁଣିବାରେ ମନ ଦେଲି । କିଛି ବୁଝି ପାରିଲି ନାହିଁ । କାରଣ ଗୀତ ବେଳେ ବେଳେ ବକ୍ତୃତା ପରି ଲାଗୁଥାଏ, ବେଳେ ବେଳେ ମନ୍ତ୍ର ପରି, ଆଉ ବେଳେ ବେଳେ ଯୁଦ୍ଧର ଆହ୍ୱାନ ପରି । କିନ୍ତୁ ସେହି ହାସ୍ୟମୟୀ ବାଳିକା ଓ ତା'ର ଆଉ ଜଣେ ସଙ୍ଗିନୀ ଆପ୍ୟାୟିତ ହେବାର ଭାବ ଦେଖାଇ ହାତଟେକି ଆନନ୍ଦଧ୍ୱନି କରୁଥାଆନ୍ତି ଓ ମଝିରେ ମଝିରେ ସିଡ଼ି ଚଢ଼ି ଫଳରସ ଗିଲାସେ ଗାୟକ ହାତରେ ଦେଇ ଆସୁଥାଆନ୍ତି ।

"କାନ୍ଥକୁ ଆଉଜି ହେଉ ନାହିଁ । ଦେହରୁ ଝାଳ ବହି ଗଲାଣି । ମୁଁ ଅନ୍ୟ ଶ୍ରୋତାଦର୍ଶକମାନଙ୍କୁ ଅନାଇଲି, ଗଣିଲି । ମୋତେ ଛାଡ଼ି ଆଠ ଜଣ,—ଦୁଇ ଦଳ ପୁରୁଷ-ସ୍ତ୍ରୀ ଓ ଚାରିଜଣ ବିଭିନ୍ନ ସ୍ଥାନରେ ବସିଥିବା ଯୁବକ । ଯାହାଙ୍କର ମୁହଁରେ

ତୃପ୍ତିର ଚହ୍ନ ଦେଖୁନାହିଁ । ଗୋଟିଏ ଯୁବକ ପୃଥିବୀର ଦୁଃଖରେ ଅଭିଭୂତ ହେଲା ପରି ଲାଗୁଛି, କିମ୍ବା ହୁଏତ ବର୍ତ୍ତମାନ ସଙ୍ଗୀତର ବିଷାଦରେ ମଗ୍ନ ହୋଇଯାଇଛି ।

"ପ୍ରଥମେ ପୁରୁଷ-ସ୍ତ୍ରୀ ଏକ ମୂର୍ତ୍ତି ଉଠି ଚାଲିଗଲେ । ଗଲାବେଳକୁ ଭଦ୍ରଲୋକ ପରିଚାରିକା ଜଣକ ହାତରେ ଡଲାର୍-ନୋଟ୍ କି କଣ ବଢ଼ାଇଦେଲେ । ପରେ ପରେ ଆଉ ଦୁଇଜଣ ଯୁବକ ଠିକ୍ ସେହିପରି ପ୍ରସ୍ଥାନ କଲେ ।

"କିନ୍ତୁ ସଙ୍ଗୀତର ଉତ୍‌ଥାନ ପତନ ବଢ଼ି ଚାଲିଛି । ଗାୟକ ବେଶି ଜୋର୍‌ରେ ମୁଣ୍ଡ ହଲାଉଛି । ପରିଚାରିକା ଜଣେ ମୋ ପାଖକୁ ଆସି ପଚାରିଲା,—ସାର୍—ଆପଣଙ୍କ ପ୍ରିୟ ଗୀତ କଣ ଅଛି ବର୍ଦ୍ଦ୍ ଦିଅନ୍ତୁ । ଫିକା ହସ ହସି ନାସ୍ତିର ଧନ୍ୟବାଦ ଦେବା ଛଡ଼ା ମୋର ଅନ୍ୟ ଉପାୟ ନ ଥିଲା ।

"ଗରମ ବେଶି ବାଧିଲାଣି । ଦେଖିଲି ଆଉ ଜଣେ ଯୁବକ ଅଧିଆ ଫେରି ଗଲେଣି । କିନ୍ତୁ ଦୁଃଖୀ ଯୁବକ ଜଣକ ମୃଦୁ ମୃଦୁ ହସୁଛନ୍ତି, ସ୍ମୃତିର ମଧୁର ସ୍ୱାଦ କିଛି ପାଇଲା ପରି ।

"ଉଠିବାକୁ ବସିଛି ଏହି ସମୟରେ ହଠାତ୍ ସେହି ଦୁଃଖୀ ଯୁବକ ଛିଡ଼ା ହୋଇ ଯାଇ ଘର ମଝିକୁ ଆଗେଇ ଗଲେ ଓ ସର୍ବସମ୍ମୁଖରେ ଉଚ୍ଚ କପାଳୀ ଝିଅଟିକୁ କୁଣ୍ଢାଇ ଧରି ଚୁମ୍ବନ ଦେଲେ ।

ରମଣୀବାବୁ ଅଟିଗଲେ । ତାଙ୍କ ଚାହାଣୀରେ ପ୍ରଶ୍ନ,—କ'ଣ ହେଲା ? କାହିଁକି ସେମାନେ ଚୁମ୍ବନ ଦେଲେ ?

ମୁଁ ଭାବିଲି ତା'ର ଉତ୍ତର ଦେବି । କିନ୍ତୁ ରମଣୀବାବୁ କହୁଛନ୍ତି, "ଅଦ୍ଭୁତ ଚୁମ୍ବନ । ମୁଁ ବୁଝିଲି ଯେ ସେ ଯୁବକ କାଫେକୁ କେବଳ ଗୀତ ଶୁଣିବା ପାଇଁ ଆସି ନ ଥିଲା, ସେ ତା'ର ପ୍ରେମିକାକୁ ଦେଖିବାକୁ ଆସିଥିଲା । କିନ୍ତୁ ସେହି ଅନ୍ଧାରିଆ କାଫେ ଭିତରେ, ଦାରୁଣ ଗରମ ଓ ଗର୍ଜିଲା ଗୀତ ସାଙ୍ଗରେ ହଠାତ୍ ଏହି ଚୁମ୍ବନର ପ୍ରବୃତ୍ତି ଜାଗିଲା କାହିଁକି ?"

କହିବା ପାଇଁ ମୋ' ପାଟି ଖଜବଜ ହେଉଥିଲା । କାରଣ ଅଉ କିଛି ନୁହେଁ, —ଆଟ୍‌ମସ୍‌ଫିଅର୍ ! ସେ ଦୁଇଜଣ ପ୍ରଣୟୀ ନୁହନ୍ତି, କିନ୍ତୁ ସେମାନେ ପ୍ରଣୟର ଅଭିନବ ଆଟ୍‌ମସ୍‌ଫିଅର୍ ତିଆରି କଲେ, ରମଣୀବାବୁ ଓ ଅନ୍ୟ ଦର୍ଶକମାନଙ୍କ ପାଇଁ । ଗୁମ୍ପା ଗୀତର ପରିବେଶ ମାତ୍ରା ପଡ଼ିଯାଉଥିଲା, ସ୍ୱାଚ୍ଛନ୍ଦ୍ୟହୀନତାର ଉପଦ୍ରେଗ ସୀମା ଟପି ଯାଇଥିଲା, ତେଣୁ ଏହି ହଠାତ୍-ଚୁମ୍ବନର ଅଭିନୟ କରାଗଲା । ଗ୍ରୀନ୍‌ଉଇଚ୍ ଭିଲେଜ୍‌ରେ ଏମିତି ହୁଏ ।

ରମଣୀବାବୁ ନିଜେ ସେହି ଚୁମ୍ବନର ଯଥାର୍ଥତା ପ୍ରତିପାଦନ କଲେ । କହିଲେ, "ମୁଁ ଆଉ କିଛି ସମୟ ସେଠି ରହିଲି । ଆଉ ଗିଲାସେ ଫଳରସ ଖାଇଲି । ଶାସ୍ତ୍ରିକର ଉତ୍ତରବ୍ରେଓରର ଦମ୍ପତିଙ୍କ ପାଇଁ ଗୋଟିଏ ଡଲାର ଦେଲି । ଫେରିଲା ବେଳକୁ ସେ ଚୁମ୍ବିତା ବାଳିକା ସହାସ୍ୟ ଗୁଡ୍‌ନାଇଟ୍ କହିଲା—ତା'ର ହସ ମୋତେ ସ୍ୱଚ୍ଛ ଭଲ ଦେଖା ଯାଉଥାଏ ।"

ରମଣୀବାବୁ ବିଶ୍ରାମ ନେଲେ । ଏଥର ବୋଧହୁଏ ପୂର୍ଣ୍ଣଚ୍ଛେଦ । ଆମ ଭିତରୁ କେତେକ ଘରକୁ ଫେରିବାକଥା ଉଠାଇଲେଣି । ପୁଣି ଥରେ ଗିଲାସ ଭରିବାର ପ୍ରସ୍ତାବ ପ୍ରାପ୍ୟ କାହାର ନାହିଁ । ଏହି ସମୟରେ ଜଣେ ଶ୍ରୋତା ରମଣୀବାବୁଙ୍କ ବିଶ୍ରାମରେ ବ୍ୟାଘାତ ଆଣିଲେ । ପ୍ରଶ୍ନ କଲେ, "ଆପଣ ଝଗ୍ରେଦନେ ଦନବେଲେ ବିଚକୁ ଯାଇଛନ୍ତି-ମାନେ ଆମେରିକାର ବିଚ୍, ଫ୍ଲୋରିଡ଼ା, ସାନଫ୍ରାନ୍‌ସିସ୍କୋ, କିମ୍ବା ନିଉୟର୍କ ?" ଜିଜ୍ଞାସାର ସୂଚନା ସ୍ପଷ୍ଟ । ରମଣୀବାବୁ କଣ ଏହି ହାତପାହାନ୍ତା ସର୍ବସାଧାରଣ ଦୃଶ୍ୟ ଭୂମିକୁ ଗ୍ଲାଡିଗଲେ ?

ରମଣୀବାବୁ ଆମୋଦିତ ଦୃଷ୍ଟିରେ ପ୍ରଶ୍ନକର୍ତ୍ତାଙ୍କୁ ଅନାଇଲେ ଓ ତା' ପରେ ଗମ୍ଭୀର ହୋଇଗଲେ । କହିଲେ, "ଯାଇଛି, ଅନେକ ଥର ଯାଇଛି, କିନ୍ତୁ— । କିନ୍ତୁ ମୋତେ ଭଲ ଲାଗିଲା ନାହିଁ ।"

ତାଙ୍କ କଥାର ଅର୍ଥ ଅବୁଝା ରହିଲା । କିନ୍ତୁ ମୋର ମନେ ହେଲା ରମଣୀବାବୁ କଣ ଭାବୁଛନ୍ତି । ଭାବୁଛନ୍ତି କେମିତି ନିଜକୁ ବୁଝାଇବେ ।

ଶେଷକୁ ଭାବନାଚ୍ଛନ୍ନ ଦୃଷ୍ଟିରେ ସେ କହିଲେ, "ଚୁମ୍ବନ ପ୍ରେମର ସୂଖ । କିନ୍ତୁ ବେଳେ ବେଳେ ତାହା ଅପ୍ରେମର ସ୍ୱାଗ ପରି ଦେଖାଯାଏ । ସେତେବେଳେ ତାକୁ କଣ କହିବ ?"

"କହନ୍ତି ଯେ କାମୁଡ଼ା, ଚମୁଟା ଓ ମାଡ଼ମାରି ଭିତରେ ମଧ୍ୟ ପ୍ରେମ ଥାଇ-ପାରେ । ସେହିପରି ଚୁମ୍ବନ ଭିତରେ ମଧ୍ୟ ରାଗିବାର, କଷ୍ଟ ଦେବାର ପ୍ରବୃତ୍ତି ଥାଇପାରେ । କିନ୍ତୁ ମୁଁ କେମିତି ତାକୁ ସମ୍ମାନ ଦେବି ? ସେ ଚୁମ୍ବନର ମଣିଷ ମୋ' ସାଙ୍ଗ ନୁହନ୍ତି । ମୁଁ ତାଙ୍କୁ ଚିହ୍ନେ ନାହିଁ ।

"ଉପରେ ଉଦ୍ଦୀପ୍ତ ସୂର୍ଯ୍ୟ ତଳେ ତତଲା ବାଲି । ବାଲି ଉପରେ ଗୋରାକଳା ମାଂସର ଦେହ ଗୁଡ଼ିଏ ଗୁଡ଼ାଇଗୁଡ଼େଇ ଲଟେପଟେଇ ହେଉଛନ୍ତି । ଜଣେ ଜଣକୁ ମାଡ଼ି ବସି ଚୁମ୍ବନ ଦେଉଛି । ଆଉ ଜଣେ ପ୍ରେମିକାର ମୁଣ୍ଡବାଳକୁ ମୁଠାଇ ଓଲଟାଇ ଦେଇ ତା'ର ଲମ୍ବା ନାଲି ମୁହଁରେ ମୁହଁ ଦେଉଛି । ଉପରେ ଥିବା ଛତା କେବେଠୁଁ

ଖସି ପଡ଼ିଲାଣି । ଦେହ ଉପରେ ପତଆରି ରୂପେ ପଡ଼ିଥିବା ଗୃହର ମୋକଗୃମୋକଚ ହୋଇ ପଡ଼ିଲାଣି କୁଆଡ଼େ ।

"ଏମାନେ କଣ ପ୍ରେମ କରୁଛନ୍ତି ? ନା ଘିଗିମାଗି ପ୍ରେମକୁ ଜାଳିପୋଡ଼ି ଧ୍ୱଂସ କରୁଛନ୍ତି ? ମୋର ମନେ ହେଲା ଜଣେ ଜଣକୁ କହୁଛି,—ମୁଁ ତୋତେ ଗୃହେଁ ନାହିଁ, ମୁଁ ତୋତେ ଆଉଁସି ଦେବ ନାହିଁ, ଗେହ୍ଲା କରିବ ନାହିଁ । କେବେ କେଉଁ ବସନ୍ତରେ ତୋତେ ଭଲ ପାଇଥିଲି, ଆଜି ତାକୁହିଁ ନଷ୍ଟ କରି ଦେବାକୁ ଯାଉଛି । ଯେପରିକି ସେ ଭଲପାଇବା ପୁଣି ଥରେ ଆସି ମୋତେ ହଇରାଣ କରିବ ନାହିଁ ।

"ସେମାନଙ୍କ ଯୌବନରେ ଆଉ କିଛି ଥିଲା ପରି ଲାଗୁ ନ ଥିଲା,—କେବଳ ଶକ୍ତି, ଦେହର ଶକ୍ତି, ଦେହର ଅଧିକାର । ସେମାନଙ୍କ ଉଚ୍ଚ ହସ ମୋତେ ଶୁଭୁଥିଲା । ମୋର ମନେ ହେଉଥିଲା ତାଙ୍କ ଅତ୍ୟାଗୃରିତ ଦେହରେ ଯନ୍ତ୍ରଣା ମଧ୍ୟ ମୋତେ ଶୁଭି-ଯାଉଛି । ସେ ହସ ଓ ଯନ୍ତ୍ରଣା ଏକାଠି ହୋଇ କହୁଛନ୍ତି,—ଆମକୁ ଜାଣିଛ ? ଆମେ ହେଉଛୁ ପ୍ରେମର ସମ୍ପୂର୍ଣ୍ଣ ଯଜ୍ଞ; ଏହା ପରେ ଆଉ କିଛି ନାହିଁ ।"

ତାଙ୍କ କଥା ଶୁଣି ମୋର ମଧ୍ୟ ଉଚ୍ଚସ୍ୱରରେ ହସିବାକୁ ଇଚ୍ଛା ହେଲା । ରମଣୀବାବୁ କଣ ଆଜିଯାଏଁ ବଡ଼ ହୋଇ ନାହାନ୍ତି ? ବୟସ ସେକ୍‌ସର ରୂପ ଦେଖି ନାହାନ୍ତି ? ମୁଁ ହସିଲି ନାହିଁ, କିନ୍ତୁ କହିଲି, "ଏଇତ ହେଉଛି ସେକ୍‌ସ୍-ଚମ୍ବନ ! ଆପଣ ପରା ନିଜେ କହୁଥିଲେ ଯେ ଚୁମ୍ବନରେ ଦୁଇ ପ୍ରକାର ରୂପ ଥାଏ ?"

ରମଣୀବାବୁ ମାନିଲେ ନାହିଁ । କହିଲେ, "ହଁ କହୁଥିଲି । କିନ୍ତୁ ସେକ୍‌ସ ଯେପରି ଯାହା ହେଲେ ମଧ୍ୟ ଜୀବନର ଉପଭୋଗ । ସେଥିରେ ଏତେ ନିଷ୍ଠୁରତା ଆସିବ କେମିତି ?"

ଭାବିଲି,—ନା, ରମଣୀବାବୁ ପ୍ରକୃତରେ ବଡ଼ ହୋଇ ନାହାନ୍ତି । ସେ ଜୀବନମରଣକୁ ପିଲାର ଆଖିରେ ଦେଖିଛନ୍ତି, ଯେ ଜୀବନ ହେଉଛି ଆଲୁଅର ଆନନ୍ଦ ଓ ମରଣ ହେଉଛି ଅନ୍ଧାରଭୂତ । ଅନ୍ଧାରଭୂତକୁ ସବୁବେଳେ ଡରି ରହି ସେ ତା'ର ମଜା ପାଇ ନାହାନ୍ତି । ତାଙ୍କ ଶିଶୁ-ରସନା ପିତା-ଖଟାର୍ ସ୍ୱାଦୁ ପାଇନାହିଁ ।

ରମଣୀବାବୁ ମୋ ମନ କଥା ଓଟାରି ନେଲା ପରି କହିଲେ, "ମୃତ୍ୟୁ ଓ ସେକସ୍ । ଏ ଦୁଇଟି ମଧ୍ୟରେ କଣ କିଛି ସମ୍ବନ୍ଧ ଅଛି ? ମୁଁ ରୋଗବଇରାଗରେ ବା ବୁଢ଼ା ହୋଇ ମରିଯିବା କଥା କହୁନାହିଁ । ମୁଁ କହୁଛି ଯେଉଁଥିରେ ଜୀବନକୁ ମାରି ଦେବାର ଦୃଶ୍ୟ ଦେଖାଯାଏ, ଯେଉଁଥିରେ ଜୀବନ କଷ୍ଟ ପାଏ ଓ ଲହୁଲୁହ ଉଦ୍‌ଗାର ନିଶ୍ଚିହ୍ନ ହୋଇଯାଏ ।"

କଣ କହୁଛନ୍ତି ସେ ?

"ଆପଣମାନେ ମେକ୍ସିକୋ ଯାଇଛନ୍ତି ? ମେକ୍ସିକୋ ସହର ମୋତେ କଲିକତା ପରି ଲାଗେ । ବଡ଼ କୋଠା, ଦରିଦ୍ରତା ଧୂଳିଧୂଆଁ, ଗରମ ଓ ପୁରାତନ ସଭ୍ୟତାର ଆଡ଼ମ୍ବର । ଆମେରିକାନ୍ ଟୁରିଷ୍ଟମାନେ ତଥାପି ତାକୁ ଏତେ ଭଲ ପାଆନ୍ତି, କାହିଁକିନା ପାଶ୍ଚାତ୍ୟ ସଭ୍ୟତାର ଏତେ ପାଖରେ ଥାଇ ମଧ୍ୟ ସେ ଏତେ ଅଲଗା ଏତେ ରଙ୍ଗିନ୍ ।

"ତା'ର ସେହି ରଙ୍ଗିନ୍ ଦୃଶ୍ୟାବଳୀର ପ୍ରଧାନ ଦୃଶ୍ୟ ବୁଲ୍ଫାଇଟ୍ (bull fight), ସ୍ପାନିଶ୍ ମଧ୍ୟଯୁଗ ସଭ୍ୟତାର ଅବଦାନ ।

"ମୋର ବୁଲଫାଇଟ ନ ଦେଖିବାର ଗୃହ ନ ଥିଲା । ମେକ୍ସିକୋର ଏହି ଜାତୀୟ ଉତ୍ସବ, ରବିବାର ଛୁଟିର ପ୍ରଧାନ ଆକର୍ଷଣକୁ କେମିତି ଏଡ଼େଇ ଦେବି ?

"ପ୍ଲାଜା ମେକ୍ସିକୋ ନାମକ ଷ୍ଟେଡ଼ିୟମରେ ଏହି ଖେଳ ଅଥବା ନାଟକ ହୁଏ । ଏ କୁଆଡ଼େ ବୁଲ୍ଫାଇଟ୍ ପାଇଁ ପୃଥିବୀର ସବୁଠାରୁ ବଡ଼ ଷ୍ଟେଡ଼ିୟମ । ତା'ର ପାଚେରୀର ବିଭିନ୍ନ କୋଣରେ ଇତିହାସର ସୁବିଖ୍ୟାତ ମାଟାଦୋର୍ (Mat dor) ମାନଙ୍କର ପଥର ମୂର୍ତ୍ତି । ମୋର ଗାଇଡ଼ ସମ୍ମାନରେ ସେମାନଙ୍କୁ ଚହ୍ନାଇ ଦେଲେ ଓ କହିଲେ,—ସେ ଯୁଗ ଗଲାଣି, ଆଜିକାଲିକା ଟୋକାଙ୍କର ସାହସ ନାହିଁ, ଦମ୍ ନାହିଁ ।

"ପରୋକ୍ଷରେ ଯୁଦ୍ଧର ଉତ୍ସାହ ଓ ବୀରତ୍ୱ ଭାବ ନେଇ ମୁଁ ଷ୍ଟେଡ଼ିୟମ୍ର ଲମ୍ବା ସୁଡ଼ଙ୍ଗ ଭିତରେ ପଶିଲି । ମୋଟାମୋଟି ମୋର ଧାରଣା ଥିଲା ଯେ ଅଜି ମୁଁ ଗୋଟିଏ ହିଂସ୍ରଜନ୍ତୁ ଓ ମଣିଷର ବଳ କଷାକଷି ଦେଖିବି ।

"ଗ୍ୟାଲେରୀରେ ମଣିଷଙ୍କ ଭିଡ଼, ବୁଲ ବିକାଳିଙ୍କ ଚିତ୍କାର ଓ ବଡ଼ ବଡ଼ ପୋଷ୍ଟର ବିଜ୍ଞାପନ,—ନାମଜାଦା ଫୁଟବଲ୍ ବା କ୍ରିକେଟ୍ ମ୍ୟାଚ୍ରେ ଯେମିତି ଦେଖିବାକୁ ମିଳେ । ତେବେ ମେକ୍ସିକାନ୍ର ଲମ୍ବା ଚଉଡ଼ାଧାର ବାଉଁଶ ଟୋପି ଓ ବିଚିତ୍ର ବେଶଭୂଷା ସେହି ବାତାବରଣରେ କିଛି ନୂତନତ୍ୱ ଆଣୁଥିଲା ।

"ଖେଳ ଆରମ୍ଭ ହେଲା । ଗୋଟିଏ ନିର୍ଦ୍ଦିଷ୍ଟ ଫାଟକରୁ ବୁଲ୍କୁ ଛାଡ଼ି ଦିଆ ହେଲା ପ୍ରାଙ୍ଗଣ ଭିତରକୁ ।

ସେ ଆସି ଖେଦିଗଲା ଚାରିଆଡ଼େ,—କଞ୍ଚିରେ ବନ୍ଧା ହୋଇଥିବା କୁକୁର ମୁକୁଳି ଆସିଲେ ଯେମିତି ହୁଏ । ମାଠି ମୁଠି ହୋଇ କଳାମଚମଚ ଭାରି ଦେହ, ଛୋଟ ମୁଣ୍ଡ, ଚଞ୍ଚଳ ଗୋଡ଼ । ସେ ଏତେ କୁଦୁଛି ଖେଳୁଛି, ଖୁସି ହେଉଛି କାହିଁକି ?

"ତା' ପରକଥା । ଗୋଟି ଗୋଟି କରି କହିବାକୁ ମନ ବଳୁ ନାହିଁ । କିନ୍ତୁ ନ କହିଲେ ଆପଣ ସେହି ଉତ୍ସବର ଭାବ ମନକୁ ଆଣି ପାରିବେ ନାହିଁ । ପ୍ରଥମରୁ କହି ରଖୁଛୁ ଯେ ହିଂସ୍ର ଜନ୍ତୁ ନୁହେଁ;—ନିର୍ବୋଧ ପଶୁ, ଗୋଟାଏ ମୋଟା ହୃଷ୍ଟ ପ୍ରାଣୀ ସେ ଆନନ୍ଦରେ ନାଚୁଥିଲା । ତାକୁ ସେମାନେ ରଗାଇଲେ ଓ ତା' ରାଗ ସାଙ୍ଗରେ ଖେଳି ଖେଳି ତା'କୁ ମାରିଦେଲେ । ଏକାଥରକେ ନୁହେଁ, ତିଳ ତିଳ କରି ମାରି ଦେଲେ । ପ୍ରଥମେ ଘୋଡ଼ା ଉପରେ ଜଣେ ଆସି ବର୍ଚ୍ଛା ଭୁଷିଦେଲା । ବୁଲ୍ ଆଶ୍ଚର୍ଯ୍ୟ ହୋଇ ରାଗି କରି ବୁଲି ପଡ଼ିଲାବେଳକୁ ଲୋକ ପଳାଇଗଲାଣି । ହେଉଁ ସେ ପାଗଳଙ୍କ ପରି ଏଣେତେଣେ ଦୌଡ଼ିଲା । ନାଲି ରକ୍ତ କଳା ଦେହରେ ଧାରି ଧାରି ହୋଇ ବହି ଯାଉଥାଏ । କିଛି ସମୟ ପରେ ସେ ଧାଇଁ ଧାଇଁ ଟିକିଏ ଥକି ଗଲାରୁ ଆଉ ଗୋଟିଏ ବର୍ଚ୍ଛା । ଦେହର ଆଉ ଗୋଟିଏ ଜାଗାରେ ରକ୍ତ ବୁହାଇ ଚାଲିଗଲା । ବୁଲ୍ ଅଜଣା ଶତ୍ରୁକୁ ଖୋଜିବାକୁ ଯାଇ ପ୍ରାଙ୍ଗଣର କାନ୍ଥରେ ମୁଣ୍ଡ ବାଡ଼େଇଲା, ସୁଁ ସୁଁ ହୋଇ ପଡ଼ିଆରେ ମୁଣ୍ଡ ଘଷିଲା । କିନ୍ତୁ ବେଳ ଉଣ୍ତି ଜଣକ ପରେ ଜଣେ ପଦାତିକ ବୀର ଆସି ଶ୍ରେଷ୍ଠ ଶ୍ରେଷ୍ଠ ତୀର ତା' ଦେହରେ ଗେଞ୍ଜି ଦେଇ ଗଲେ । ତୀରଗୁଡ଼ିକ ଦେହରେ ଲାଗି କରି ରହିଥାଏ, କାଢ଼ିନେବାର ଉପାୟ ନାହିଁ ।

"ବୁଲ୍ କଣ କରିବ ? ସେ ଆହୁରି ରାଗିଲା, ବାଡ଼େଇ ପିଟି ହେଲା । ହେଲେ ରାଗ ବଢ଼ିବା ସାଙ୍ଗରେ ତା'ର ଶକ୍ତି କମି ଯାଉଥାଏ । ସେ କିଛି ସମୟ ଦୌଡ଼ି ହାଲିଆ ହୋଇ ଛିଡ଼ା ହୋଇ ଯାଉଥାଏ, ଗ୍ୟାଲେରିର ଲୋକମାନଙ୍କୁ ଅନାଉଥାଏ । ତା'ର ଚାହାଣୀରେ ଅସହାୟ ରାଗ । କାହିଁ ମୋ ଶତ୍ରୁ ।

"ଏହି ସମୟରେ ମାଟାଡୋର୍‌ଙ୍କ ଆବିର୍ଭାବ । ଯୋଦ୍ଧାର ପୋଷାକ, ହାତରେ ଖଣ୍ଡେ ନାଲି କନା ଓ ଚକ୍ ଚକ୍ ଛୁରୀ । ସେ ସାହସରେ ପଡ଼ିଆ ମଝିକୁ ବାହାରିଲେ, ବୁଲ୍ ସାଙ୍ଗରେ ଖେଳିବେ ବୋଲି । ଖେଳର ପ୍ରଣାଳୀ ହେଲା ନାଲି କନାଟି ଦେଖାଇ ବୁଲ୍‌କୁ ରଗାଇ ସେ ମୁଣ୍ଡ ଦେଖାଇ ମାଡ଼ି ଆସିଲାବେଳକୁ ଚଟକରି ପାଖେଇ ଯିବା । ଏହିପରି ଯେ ଯେତେ ସମୟ ବୁଲ୍ ସାଙ୍ଗରେ ଖେଳି ପାରିଲା ତା'ର ସେତିକି ବାହାଦୁରୀ । ଖେଳୁ ଖେଳୁ ମଝିରେ ଛୁରୀ ଟିକିଏ ଗେଞ୍ଜି ଦିଅ । ବେଶି ନୁହେଁ, ନ ହେଲେ ବୁଲ୍ ମରିଯିବ, ଖେଳ ସରି ଯିବ ।

"କିନ୍ତୁ ବୁଲ୍ ଆଉ ଖେଳି ପାରୁନାହିଁ, ଖେଳିବାକୁ ଚାହେଁ ନାହିଁ । ତଥାପି ତା' ରାଗକୁ ତେଜାଇଦିଅ, ପୁଣି ଟିକିଏ ନାଲି ପତାକା, ପୁଣି ଟିକିଏ ଛୁରୀ,—ସେ ଏତେ ସହଜରେ ଠକି ଦେଇ ଚାଲିଯିବ ନାହିଁ ।

"ଶେଷକୁ ବୁଲ୍ ଧଢ଼କେଇଲା । ତା'ର ପାଟିରୁ ନାଲ ରକ୍ତ ଗଡ଼ୁଥାଏ, ମନେ ହେଉଥାଏ, ସେ କିଛି ଦେଖିପାରୁ ନାହିଁ । କିନ୍ତୁ ତାକୁ ନିଜ ଇଚ୍ଛାରେ ମରିବାକୁ ଛଢ଼ାଯିବ ନାହିଁ । ତେଣୁ ଶେଷକ୍ରିୟା ସମ୍ପାଦନ କରିବା ପାଇଁ ମାଟାଦୋର୍‌ଙ୍କ ଜଣେ ସଙ୍ଗୀ ବାହାର ଆସିଲେ । ସେ ତାଙ୍କର ବିଶିଷ୍ଟ ଛୁରୀକୁ ତା' ମୁଣ୍ଡର ଯଥା-ସ୍ଥାନରେ ଭୁସିଦେଲେ । ବୁଲ୍ ବସି ପଡ଼ିଲା ମରିବ ବୋଲି । ଖେଳ ଶେଷ ।

"ମୁହୂର୍ତ୍ତିକ ପରେ ଯୋଡ଼ାଏ ଘୋଡ଼ା ତା' ଦେହକୁ ଟାଣି ଟାଣି ଘୋଷାରି ନେଇଗଲେ । ଆଉ ଗୋଟିଏ ବୁଲ୍ ଆସିବ ।"

ରମଣୀବାବୁ କଥା ଶେଷ କଲେ । ସମସ୍ତେ ନିସ୍ତବ୍ଧ । କିନ୍ତୁ ମୋ ମନରେ ଗୋଟାଏ ଆଶଙ୍କା ଆସୁଥାଏ । ମୋର ଇଚ୍ଛା ହେଉଥାଏ ଉଠିଯାଇ ତାଙ୍କ ମୁହଁ ବନ୍ଦ କରି ଦେବି, ଆଉ କିଛି କହିବାକୁ ଦେବି ନାହିଁ ।

କିନ୍ତୁ ସେ କହିଲେ । "ଏହା ସାଙ୍ଗରେ ଚୁମ୍ବନ କେମିତି ଲଗେ ? ମୋ କଥା ଶୁଣିଯାଅ । ମୁଁ ଗୋଟିଏ ଝିଅରୁ ଗୁଇତାଲିଆ ଜବ, ମୁଁ ସେ ବୁଲ୍ ସାଙ୍ଗରେ ବସୁଥିଲି, କାନ୍ଦୁଥିଲି । ସର୍ବସାଧାରଣ ଦର୍ଶକ ଯେମିତି ଲୁହନ୍ତି, ତାଙ୍କର ସେ ତରଳ ଭାବପ୍ରବଣତା ନାହିଁ । ସେମାନେ ତାଳି ମାରୁଥିଲେ, ଖେଳର ପ୍ରତିପଦରେ 'ହୋଏ—ଲ୍' 'ହୋଏ—ଲ୍' ପାଟି କରୁଥିଲେ । ସେଥିରେ ଟୀପ୍ପଣୀ ଦେବାର କିଛି ନାହିଁ । ମୁଁ କେବଳ ଦୁଇଜଣଙ୍କୁ ଦେଖିଲି,—ସେମାନେ ପ୍ରେମ କରୁଥିଲେ । ବାହାର ଦୃଶ୍ୟରୁ ଅଲଗା ହୋଇଯାଇ ଆପଣା ସଂସାରର ସୁଖ କରୁ ନଥିଲେ । କାରଣ ମୁଁ ଦେଖିଲି ସେମାନେ ମଧ୍ୟ ତାଳି ମାରୁଛନ୍ତି, ମାଟାଦୋର୍‌କୁ ବାହାବା କରୁଛନ୍ତି । କିନ୍ତୁ ତା'ରି ସାଙ୍ଗରେ ଦୁଇଜଣଯାକ ପରସ୍ପରକୁ କୁଣ୍ଢାଇ ଧରି ଚୁମ୍ବନ ଦେଉଥାଆନ୍ତି,—ପ୍ରେରଣାର ବିଜୁଳି ଲଗିଲା ପରି, ଅଧୀର ଆନନ୍ଦର ତାଡ଼ନା ସହି ନ ପାରିଲା ପରି । ମୁଁ ଥରେ ଦେଖିଲି ପ୍ରଥମ ବର୍ଛାର ଗଭୀରିଆ ଆଘାତ ପରେ, ଯେତେବେଳେ ରକ୍ତ ପ୍ରଥମେ ବୁଲ୍‌ର ଦେହ ଫୁଟାଇ ବାହାରିଲା— ।"

ଶ୍ରୋତାମାନଙ୍କ ଭିତରୁ ଜଣେ ପାଟି କରି ଉଠିଲେ, "ବନ୍ଦ କର ।"

କିନ୍ତୁ ରମଣୀବାବୁ ବନ୍ଦ ହେଲେ ନାହିଁ । କହିଲେ, "ମରିବା ମାରିବାର ଆନନ୍ଦ ନେଇ ସେମାନେ ଚୁମ୍ବନ ଦେଉଥିଲେ । ତା'କୁ ପ୍ରେମ କହିହେବ ନାହିଁ । ସେକ୍‌ସ ? ହୁଏତ ପାଖରେ ଏତେ ଲୋକବାକ ନ ଥିଲେ ସେମାନେ ଆଉ କେତେଦୂର ଆଗେଇ ଥାଆନ୍ତେ, ସମ୍ପୂର୍ଣ୍ଣ ସେକ୍‌ସର ସୁଖ ପାଉଥାଆନ୍ତେ ।"

ଜଣେ କେହି ହସିଲେ । ରମଣୀବାବୁ ତାଙ୍କୁ ତିରସ୍କାର ଦୃଷ୍ଟିରେ ଚାହିଁଲେ, ଓ କହିଲେ, "ଆପଣଙ୍କୁ ଖୁବ୍ ମଜା ଲଗୁଛି—ନା ?"

ଏହାପରେ ଆମେ ସମସ୍ତେ ଲଜ୍ଜାରେ ମ୍ରିୟମାଣ ହୋଇଗଲୁ,—ନିଜପାଇଁ ଓ ମଣିଷ ସମାଜ ପାଇଁ । ମୋର ମନେ ହେଲ ଯେ ମେକ୍ସିକୋରେ ଯାହା ଘଟିଲ, ରମଣୀବାବୁ ଯାହା ଦେଖିଲେ ତାହା ଆମର ଭିତରେ ଘଟି ପାରିବ । ପ୍ରେମ ଏମିତି ହୋଇପାରେ, ସେକ୍ସ ଏମିତି ହୋଇପାରେ । ମଣିଷର ବିଶିଷ୍ଟ ବିଚିତ୍ର ମନ,—ପଶୁପର ନୁହେଁ ।

କିନ୍ତୁ କାହିଁକି ଏମିତି ହେବ ? ଏହି ଭାବର ଅସ୍ୱସ୍ତି ନେଇ ମୁଁ ରମଣୀବାବୁଙ୍କୁ ଅନାଇଲି । ଆତ୍ମ-ଗ୍ଲାନିକୁ ସହଜ କରିଦେବା ପାଇଁ ତାଙ୍କ ଦୁଃଖରେ ସହାନୁଭୂତି ଦେଲି । ବିଚରା ରୋମାଣ୍ଟିକ୍ ରମଣୀବାବୁ, ତାଙ୍କୁହିଁ ଏତେ ଭୋଗିବାକୁ ହୁଏ !

·········ଫେରିବା ବେଳକୁ ମୁଁ ତାଙ୍କର ପ୍ରଚ୍ଛନ୍ନ ସ୍ମିତହାସ ଦେଖିଲି, କମ୍ପା ହୁଏଚ ଚୁମ୍ବନର ସୁନାମ ଉଦ୍ଧାର କରିବା ପାଇଁ ଠିକ୍ କରି ନେଲି । ଭାବିଲି,—ରମଣୀବାବୁ କଳାକାର । ଟିକିଏ ମିଛ କହୁ ନ ଥିବେ ବୋଲି କିଏ କହିବ ?



# ଚୁମ୍ବନ

ରମଣୀବାବୁ ମିଛ କହୁ ନ ଥିଲେ । ସେ ନିଜେ ସତ ନ ହୁଅନ୍ତୁ ପଛକେ ତାଙ୍କର ଦେଖିଥିବା ଦୃଶ୍ୟଗୁଡ଼ିକ ପୂରାପୂରି ସତ, ଅନୁଭୂତ । ଭାବଭାବନାରେ ଉତ୍ତପ୍ତ, ଦଗ୍ଧ, ଭସ୍ମୀଭୂତ । ମୋହିତ ପର୍ଯ୍ୟନ୍ତ ।

ଆମେରିକା ରହଣି ବେଳେ ମୋର ହେଡ୍‌କ୍ୱାର୍ଟର୍ସ୍ ଥିଲା ୱାଶିଂଗ୍‌ଟନ୍ ଡି. ସି. । କିନ୍ତୁ ମୋର କର୍ମକ୍ଷେତ୍ର ସମଗ୍ର ମାର୍କିନ୍ ଭୂଖଣ୍ଡ, ଅର୍ଥାତ୍ ଯୁକ୍ତରାଷ୍ଟ୍ର, କାନେଡ଼ା, ଦକ୍ଷିଣ ଆମେରିକା ଏବଂ ୱେଷ୍ଟ୍ ଇଣ୍ଡିଜ୍‌କୁ ବ୍ୟାପିଥିଲା । ସେଥି ମଧ୍ୟରେ ଥିବା ସମସ୍ତ ଦେଶରେ ଭାରତୀୟ ଦୂତବାସ ଜରିଆରେ ହେଉଥିବା ଅର୍ଥ-ବିନିଯୋଗର ସମୀକ୍ଷା ମୋର କାର୍ଯ୍ୟାଧୀନ ଥିଲା । ଏହେତୁ ୱାଶିଂଟନ୍, ନିଉୟର୍କ ବାଦେ ରିଓ-ଡି-ଜେନେରୋ, ସାନ୍‌ଟିଆଗୋ, ମେକ୍‌ସିକୋ ଓଗେର । ଏବଂ ବିଭିନ୍ନ ଅଭିନବ ଚୁମ୍ବନ ।

ଗଳ୍ପ ନୁହେଁ, ଗଳ୍ପଛଳରେ ରୂପାୟିତ ଭ୍ରମଣ କାହାଣୀ । ଚୁମ୍ବନରେ ଗୁନ୍ଥା । କିଛି ନ ହେଲେ ଅନ୍ତତଃ ସେଇଥିପାଇଁ ଆପଣଙ୍କୁ ଭଲ ଲାଗିବ ବୋଲି ମୋର ବିଶ୍ୱାସ । ଚୁମ୍ବନ-ମାଳିକାରେ କେଉଁ ଫୁଲଟି ଆପଣଙ୍କୁ ବିଶେଷ ଭାବରେ ଛୁଇଁବ, ସୁଖ ଆଣିଦେବ ଜାଣେ ନାହିଁ । କିନ୍ତୁ ମୋର ଆଶା ଯେ ମେକ୍‌ସିକୋର ସେଇ ଫୁଲଟା ନୁହେଁ—ମାରିବା-ମରିବାର ରକ୍ତରେ ବୁଡ଼ୁ ବୁଡ଼ୁ ଜବା ।

ଶହ ଶହ ଦର୍ଶକ ଯାହାକୁ ଉପଭୋଗ କରୁଥିଲେ, ପ୍ରତି ରକ୍ତସ୍ରାବରେ ନାଚି ଉଠି ତାଳି ମାରୁଥିଲେ, ରମଣୀବାବୁ ତା'କୁ ଦେଖି ହାରିଗଲେ କାହିଁକି ? ସେ କଣ ସତରେ ରୋମାଣ୍ଟିକ୍

ଅର୍ଥାତ୍ ମାଇଚିଆ ? ସେକ୍ସର ପୌରୁଷ ଅବା ପୌରୁଷର ସେକ୍ସରୁ ବଞ୍ଚିତ ? ଏହି ପ୍ରଶ୍ନ ସେ କେତେଥର ପଚାରିଛନ୍ତି ନିଜକୁ, କିନ୍ତୁ ତାର ଯଥାଯଥ ଉତ୍ତର ପାଇନାହାନ୍ତି । ବେଳେ ବେଳେ ତାଙ୍କର ମନେ ହୋଇଛି ଯେ ସେ ପ୍ରକୃତରେ ମାଇଚିଆ ନୁହନ୍ତି; ଭାରତୀୟ । ଅହିଂସ ଶାନ୍ତିପ୍ରିୟ ଜୀବ, ଯେ ଯେତେଦୂର ସମ୍ଭବ ବଞ୍ଚିବାକୁ ଚାହେଁ, ଏବଂ ସେଇଥିପାଇଁ ବିଦେଶୀ ଶତ୍ରୁ ଦ୍ୱାରା ଧର୍ଷିତ ମଥିତ ହେଉ ପଛେ ଅନ୍ୟାନ୍ୟ ଅନେକ ପୁରାଣ ଜାତି ପରି ମୂଳପୋଛ ହୋଇଯାଇ ନାହିଁ । ତଥାପି ବଞ୍ଚିଛି । କିନ୍ତୁ ସେ ପରମୁହୂର୍ତ୍ତରେ ହସନ୍ତି । ଇଏ କଣ ଅହିଂସାର ଲକ୍ଷଣ ନା ନିଉଛୁଣା ସୁବିଧାବାଦ ? ସେ ନୀରବ ଚୌଧୁରୀଙ୍କ ଦ୍ୱାରା ଉଦ୍ଧୃତ ଏକ ନର୍ମ୍ମ-ସୁନ୍ଦର ସଂସ୍କୃତ କାବ୍ୟକୃତିକୁ ସ୍ମରଣ କରନ୍ତି ଯେଉଁଥିରେ ଆମ ରାଜା ନିହତ ଶତ୍ରୁରାଜାଙ୍କ ବିଧବାର ପୀନପୟୋଧର ଉପରେ ପଡ଼ୁଥିବା ଲୋତକର ଅପ୍-ଅପ୍-ଅପ୍‌ରେ ଉଲ୍ଲସିତ ହୋଇ ଉଠନ୍ତି ।

ଆଃ । ହିଂସା ଓ ସେକ୍ସ କଣ ତା'ହେଲେ ପରସ୍ପର ସହିତ ଜଡ଼ିତ, ଗହନରେ ଗୋପନରେ, କାରଣ ଦୁହିଁଙ୍କର ଇତିକଥା ଉଲ୍ଲାସ ? ଏକ୍‌ଷ୍ଟାସି ? ମାରିବା-ମରିବାର ପ୍ରବୃତ୍ତି, ବିଶେଷତଃ ତା'ର ନିଷ୍ଠୁରତା ( sado masochesm ) କଣ ହେକ୍ସର ଏକାଂଗୀଭୂତ, ଯାହା ଫ୍ରଏଡ୍ ବୁଝେଇବାକୁ ଚେଷ୍ଟା କରିଛନ୍ତି ? ଆଶ୍ଚର୍ଯ୍ୟ, ଜୀବନର ଜନକ ସେକ୍ସ ମୃତ୍ୟୁମୁଖୀ ହେବ କେମିତି ?

କେବଳ ଆଶ୍ଚର୍ଯ୍ୟ ହେବା ଛଡ଼ା ଅନ୍ୟଗତି ନାହିଁ । ରମଣୀବାବୁ ନିଜ ଆଖିରେ ଦେଖିଛନ୍ତି କେମିତି ଉଲ୍ଲସିତ ଦର୍ଶକମାନଙ୍କ ମଧ୍ୟରେ ସେହି ଦୁଇଜଣ ମଧ୍ୟ ଥିଲେ, ଯେଉଁମାନେ କେବଳ ତାଳି ମାରୁ ନ ଥାଆନ୍ତି, ଚୁମ୍ବନରେ ଜୀବନକୁ ଶୋଷି ନେଉ ଥାଆନ୍ତି । ତାଙ୍କର ରକ୍ତବୋଳା ଓଠ କଣ କେବଳ ତାଙ୍କର, ଆମ ଭିତରେ ଦାନ୍ତ ଦେଖେଇ ହସୁଥିବା ଦାନବର ନୁହେଁ ?

ଦାନବକୁ ନାଶ କରିବାକୁ ହେଲେ କଣ ଭିନ୍ନ ଧରଣର ଏକ୍‌ଷ୍ଟାସି ଲୋଡ଼ିବାକୁ ହେବ ? ଭବଗତ ବିହ୍ୱଳତା, ତନ୍ମୟତା,

ଯାହାକୁ ଆଧ୍ୟାତ୍ମିକ ବୋଲି କୁହାଯାଏ ? ନା ତା'ଠାରୁ ଭଲ ହେଉଛି ନବୃତ୍ତି, ରକ୍ତମାଂସର ରସକୁ ଶୁଖେଇଦେବାର ପଣ ? ଦୁଃଖର ବିଷୟ ରମଣୀବାବୁଙ୍କ ପାଇଁ ଦୁଇଟିଯାକ ଦୁଃସାଧ୍ୟ, ତେଣୁ ସେ ତୃତୀୟ ପନ୍ଥାର ଅପେକ୍ଷାରେ ଅଛନ୍ତି । ଭଗବାନ ତାଙ୍କର ମଙ୍ଗଳ କରନ୍ତୁ ।

ଭୁବନେଶ୍ୱର

ଅଗଷ୍ଟ ୮, ୧୯୮୬



# ସାଏଗନ୍‌ରେ ସୁଖ

ସ୍ଥାନ—ସାଏଗନ୍, ଦକ୍ଷିଣ ଭିଏତ୍‌ନାମ୍‌ର ରାଜଧାନୀ । ତାରିଖ—ଅଗଷ୍ଟ ପନ୍ଦର, ଭାରତର ସ୍ୱାଧୀନତା ଦିବସ । କେତେବର୍ଷ ତଳର କଥା, ଯେତେବେଳକୁ ଋଷୀୟ ଯୁଦ୍ଧ ଲାଗି ନ ଥାଏ ।

ସକାଳୁ ରସାଳ ଲେମ୍ବୁ ପାଚିଲା ଅମୃତଭଣ୍ଡା ଓ ବାମ୍ଫୁଆ କଳା କଫି ବିଶିଷ୍ଟ ବ୍ରେକ୍‌ଫାଷ୍ଟ୍ ଖାଇସାରି ସିଗାରେଟ୍ ଲଗାଇ ମୁଁ ହୋଟେଲ୍ ବାରଣ୍ଡାରୁ ଅନାଇ ରହିଥିଲି ରାସ୍ତାରେ ବୁଲୁଥିବା ସାଏଗନ୍ ବାସୀମାନଙ୍କୁ । ଉଦାରତାରେ ମନ ଭରି ଯାଇଥିଲା, ଆଜି ଭାରତର ସ୍ୱାଧୀନତା ଦିବସ । ମନେ ହେଉଥିଲା ଭାରତର ସ୍ୱାଧୀନତା ଯାହିଁ କେଉଁ ଯୁଗର । ଆଉ ଏମାନେ ବିଚରା ନୂଆ କରି ସ୍ୱାଧୀନତା ପାଇଛନ୍ତି, ତାକୁ ନେଇ କଣ କରିବେ ବୋଲି ଧନ୍ଦାଳି ହେଉଛନ୍ତି । ରାସ୍ତାରେ ଧଳା ସିଲକ ର ଲମ୍ବା ପୋଷାକ ପିନ୍ଧି ଝିଅମାନେ ତରତର ହୋଇ ଚାଲିଛନ୍ତି ଆଗକୁ । ହଳଦିଆ-ଗୋରା ଚିକ୍‌କଣ ମୁହଁରେ ନରମପଣ ଅଛି, ଦମ୍ଭ ନାହିଁ,—ଆସିବ କେଉଁଠୁ ? ମୁହଁରେ ସବୁବେଳେ ହସଖୁସି ଭାବ, ଯିତେ ଯେପରି ଜୀବନ ନିବାହର ପ୍ରତି ପଦରେ ଆମୋଦ ଭରି ରହିଛି । ହୁଁଃ ! ହସି ନ ପାରିବାର ମହତ୍ତ୍ୱ ଏମାନେ ବୁଝିବେ କିପରି ? କାହିଁ ଏମାନଙ୍କର ବୋଧିଦ୍ରୁମ, ଚାରିହଜାର ବର୍ଷର ଚିନ୍ତା, ଅନୁଧ୍ୟାନ ଅନୁଶୀଳନ ? ଭାରତୀୟ ବୁଦ୍ଧ ବର୍ତ୍ତମାନ ଆସିଲେ ଦେଖନ୍ତେ ଯେ ତାଙ୍କର ଓ ତାଙ୍କ ଶିଷ୍ୟଙ୍କର ସବୁ ପରିଶ୍ରମ ଏଠି ବିଫଳ ହୋଇଯାଇଛି । ଏମାନେ ତଥାପି ହସୁଛନ୍ତି । 'ଜୀବନ ଦୁଃଖମୟ'ର ମୂଳକଥା ବୁଝିପାରି ନାହାନ୍ତି ।

ରୁହ, ଏମାନେ ବୁଝିବେ, ଏମାନଙ୍କୁ ବୁଝାଇବାକୁ ହେବ ! ଆମର ପୁରୁଣା ଦେଶରେ ଆଜି ତ୍ରିରଙ୍ଗ ପତାକା ଉଡ଼ୁଛି ବିଜୟ ଗର୍ବରେ । ସ୍ୱାଧୀନତା ! ମୁହଁରେ ହସ ନାହିଁ,—ଆମେ କଣ ପିଲା ହୋଇଛୁ ହସିବୁ, ହାତ ଗୋଡ଼ ଛାଟି ପାଟି କରିବୁ ? ଆଜିର ଏ ସ୍ୱାଧୀନତା ଦାୟିତ୍ୱ ବହନ କରିବାର ଦୁଃଖ ସହିପାରିବାର ସ୍ୱାଧୀନତା । ମୁଣ୍ଡ ନଇଁ ଆସୁଛି ବିଶାଳ ସୁମହାନ୍ ଅତୀତ ଓ ଉତ୍ତୁଙ୍ଗ ବିରାଟ ଭବିଷ୍ୟତର କଳ୍ପନାରେ । ମହୋଦଧି···ମହାମେରୁ···ମହାଭାରତ··· ।

"ହ୍ୟାଲୋ ମିଷ୍ଟର ଦାସ, ଭାବନାରେ ଡୁବିଯାଇଛନ୍ତି ଏକାବେଳକେ ! ବାହାରକୁ ବାହାରିବେ ନାହିଁ ?" ଭାବନା ଭାଙ୍ଗିଗଲା । ଦେଖେ ମେଜର୍ ରାୟ ତାଙ୍କ ଗୋଲ ଜହ୍ନ ମୁହଁରେ ପ୍ରଶସ୍ତ ହସ ଆଙ୍କି ଚାହିଁଛନ୍ତି ମୋ ଆଡ଼କୁ । ସେ ହସରେ ଭାବ ନାହିଁ, ବୁଦ୍ଧି ନାହିଁ, ଇଙ୍ଗିତ ନାହିଁ,—ଖାଲି ହସିବା, ମାଂସପେଶୀର ଗୋଟିଏ ପ୍ରକ୍ରିୟା ଯେଉଁଥିରେ ତାଙ୍କ ଧଳା ଚକ୍ ଚକ୍ ଦାନ୍ତ ଦି'ପାଟି ଦେଖାଯାଏ, ଆଖି ଦୁଇଟି ମିଞ୍ଚି ମିଞ୍ଚି ହୋଇଯାଏ ଓ ଗୋରା ମାଂସଳ ମୁହଁ ଆହୁରି ଲାଲଚିଆ ହୋଇ ଉଠେ ।

ମନ ଭିତରୁ କଥା ଉଠୁଥାଏ,—ହାୟ ମହାଭାରତ ! ମେଜର୍ ରାୟ, ଏ ମଧ୍ୟ ଭାରତମାତାର ସନ୍ତାନ !

"ଆଜି ଅଗଷ୍ଟ ପନ୍ଦର, ମନେ ଅଛି ନା ? ଆଜି ଆମ ମେସ୍‌ରେ ଇଣ୍ଡିପେଣ୍ଡେନ୍‌ସ ଲଞ୍ଚ, ନିଶ୍ଚୟ ଆସିବେ । ମୁଁ ସେଇଥିପାଇଁ କହିବାକୁ ଆସିଥିଲି ।"

ମୁଁ ଅଳ୍ପ ହସି ନିମନ୍ତ୍ରଣ ସ୍ୱୀକାର କଲି, କହିଲି, "ନିଶ୍ଚୟ ଆସିବି ।" ମେଜର୍ ରାୟ ପୁଣି ହସିଲେ ଏ କୂଳରୁ ସେ କୂଳ ଓ କହିଲେ, "ମୁଁ କେତେଥର ଭାବିଲିଣି ଆସିବି ଇଆଡ଼େ, କିନ୍ତୁ ଆସିପାରୁ ନାହିଁ । ଆମ କାମ ତ ଜାଣିଛନ୍ତି, କୁଆଡ଼ୁ କିଛି ନା କିଛି ପହୁଞ୍ଚି ଯାଉଛି । ଆଚ୍ଛା ତାହାହେଲେ ମୁଁ ଆସୁଛି ଭାଇ । ଶୀଘ୍ର ଆସିବେ । ଲଞ୍ଚ୍ ଆଗରୁ ଟିକିଏ ଏକାଠି ହେବା, ମିଳାମିଶା, କଥାବାର୍ତ୍ତା,—ନା କଅଣ ? କର୍ଣ୍ଣେଲ୍ ଭୋପଟ୍‌କର୍ ମଧ୍ୟ ଆସୁଛନ୍ତି, ବାକିସବୁ ଆମ ଦଳିଆ, ବେଶ୍ ଜମିବ । ହଁ କ୍ୟାପ୍‌ଟେନ ଚକ୍ରବର୍ତ୍ତୀଙ୍କୁ ମଧ୍ୟ ସାଙ୍ଗରେ ନେଇଆସିବେ । ବାଏ—ବାଏ ।"

ମେଜର୍ ରାୟ ଏ କଥାଗୁଡ଼ା ଛିଡ଼ା ହୋଇ ଓ ଫେରି ଯାଉ ଯାଉ ଠାଏ ଠାଏ ବୁଲିପଡ଼ି କହିପାରିଥିଲେ । କଥା ସରିଲା ବେଳକୁ ସେ ତାଙ୍କ କ୍ୟାପ୍ ପାଖରେ, 'ବାଏ, ବାଏ'ଟି ଗୁଡ଼େଇଦେଲେ କ୍ୟାପ୍ ଭିତରକୁ, ଆଉ ଚମଡ଼ାଲଗା ହାତଧରା ବାଡ଼ିଟିଏ ମୋ ଉଦ୍ଦେଶ୍ୟରେ ହଲାଇଦେଲେ ଥରେ ଖଣ୍ଡେ ।

କ୍ୟାପ୍ ଗୁଡ଼େଇଦେଲା ବେଳକୁ ମୋର ଇଚ୍ଛା ହେଲା ଯେ ମୁଁ ହେବି ଚଉକିକୁ ଲାଗି ରହି ବସନ୍ତ ଦାସଙ୍କ ଓ ମେଜର୍ ରାୟମାନଙ୍କୁ ଗୁଡ଼େଇଦିଅନ୍ତି ସ୍ୱାଧୀନତା-ଲଞ୍ଚ୍‌ର ସମ୍ପୂର୍ଣ୍ଣ ଉପଭୋଗ ପାଇଁ । ମୁଁ ସେ ଦଳର ନୁହେଁ । କିନ୍ତୁ ତା'ପରେ ଦୁଃଖର ସହିତ ନିଜକୁ କହିଲି ଯେ ତା' ହୋଇପାରିବ ନାହିଁ, ଉଚିତ ହେବନାହିଁ । ଅନ୍ତତଃ ଆଜିକା ଦିନରେ ଉଚିତ ହେବ ନାହିଁ । ଅତଏବ ନିଃଶ୍ୱାସଟିଏ ମାରି ମୁଁ ପୁଣି ମୋର ସ୍ୱାଧୀନତା ଦିବସର ଭାବନାଗୁଡ଼ିକୁ ଡାକି ଆଣିଲି । ଧୀରେ ଧୀରେ ସାଏଗନ୍‌ର ସକାଳୁଆ ହାଲୁକା ପବନରେ ଆଖି ବୁଜି ଆସିଲା । ଅଧାଚେତାରେ ଦେଖିଲି ଜଣେ ବିଦେଶୀନୀ ନେଳିଆ ସିଲ୍‌କ ଓ ଗୋରା ଦେହର ନମୁନା ଦେଖାଇ ମୋ ଟେବୁଲ୍ ପାଖ

ଦେଇ ଗ୍ଭଲଗଲେ ଓ କାନରେ ପଡ଼ିଲା ହୋଟେଲ୍ ରେଡ଼ିଓରୁ ବାଜିବାକୁଲାଗିଥିବା ଆମେରିକାର ‘ଜାଜ୍’ର ଧୂନ୍ । ଆଖିପତା ଆହୁରି ଟାଣ୍ ହୋଇଗଲା, ସ୍ୱାଧୀନତାର ପବିତ୍ର ଦିବସରେ ଏ ସବୁକୁ ତ୍ୟାଜ୍ୟ କରିଦେବା ପାଇଁ ।

ହେଲେ ଶୁଭଚିନ୍ତନ ଓ ସୁନିଦ୍ରା ସେଦିନ ମୋ କପାଳରେ ନ ଥିଲା । କିଛି ସମୟ ନ ଯାଉଣୁ ମୋ ପିଠିରେ ଗୋଟିଏ ପ୍ରବଳ ଆଘାତ ହେଲା । ଆଖି ଖୋଲି ଦେଖେ ଯେ ପୁଣି ଗୋଟିଏ ଅଲିଭ୍ ରଙ୍ଗର ଖାକି ପୋଷାକ । ଏମାନେ ମଣିଷକୁ କଣ ଟିକିଏ ଶାନ୍ତିରେ ରହିବାକୁ ଦେବେ ନାହିଁ ? ବିରକ୍ତ ହୋଇ ବିରକ୍ତିମିଶା ଭଦ୍ରତାର ମୁଖା ପିନ୍ଧିବାକୁ ଯାଉଛି, ଏହି ସମୟରେ ଦେଖିଲି ଯେ ଏ ଖାକି ପୋଷାକକୁ ଏଡ଼ାଇ ଦେଇ ହେବ ନାହିଁ, ଏଡ଼ାଇ ଦେବାର ପ୍ରଶ୍ନ ଉଠୁ ନାହିଁ । କାରଣ ଏ ହେଉଛନ୍ତି ମୋର ‘ପରମବନ୍ଧୁ’ କ୍ୟାପ୍ଟେନ୍ ଚକ୍ରବର୍ତ୍ତୀ । ସେ ସେହି ହୋଟେଲ୍‌ରେ ଥାଆନ୍ତି । ସାଏଗନ୍‌ରେ ପହଞ୍ଚିବାର ଦିନେ ଦୁଇଦିନ ନ ଯାଉଣୁ ସେ ମୋତେ ତାଙ୍କ ବନ୍ଧୁତାର ଗୌରବ ଆଣି ଦେଇଛନ୍ତି ଓ ତା ସହିତ ଦେଇଛନ୍ତି ସାଏଗନ୍‌ରେ ଚଳିବା ପାଇଁ କେତେ ପରାମର୍ଶ, ଉପଦେଶ ଓ ଆତ୍ମ-ଚରିତାମୃତ । ସବୁବେଳେ ସେ ମୋତେ ମନେ ପକାଇବାକୁ ସୁବିଧା ଦିଅନ୍ତି ଯେ କ୍ୟାପ୍ଟେନ୍ ଚକ୍ରବର୍ତ୍ତୀ ନ ଥିଲେ ମୋର ଏ ସାଏଗନ୍‌ରହଣି ଅନ୍ୟରକମର ହୋଇଥାଆନ୍ତା,— ନୀରସ୍ଥାନ, ଶୁଷ୍କସ୍ଥାନ, ଅତି ସାଧାରଣ, ହୁଏତ ମେଜର ସିଂହଙ୍କ ପରି, କିମ୍ବା କ୍ୟାପ୍ଟେନ୍ ସହାୟ... । ଭାବିଲା ବେଳକୁ ଦେହ ଶୀତେଇ ଉଠେ, ଭଗବାନଙ୍କର ଦୟା ମୁଁ କ୍ୟାପ୍ଟେନ୍ ଚକ୍ରବର୍ତ୍ତୀଙ୍କ ପରି ବନ୍ଧୁ ପାଇଛି । ସେ ଆନନ୍ଦ ନ ଦିଅନ୍ତୁ ପଛେ ନିତ ଉପଭୋଗର ନିରାନନ୍ଦରୁ ମୋତେ ରକ୍ଷା କରି ପାରିଛନ୍ତି । ଗଳମୁଣ୍ଡ ହୋଟେଲ୍‌ର ତେଲସରସର ମାଛଭଣଭଣ ଖାଦ୍ୟ ମନେ ପଡ଼ିଲେ ଘରଣୀହାତରନ୍ଧା ଅଲଣା ଅଣ-ହଳଦିଆ ତୁଣର ସୁଆଦ ଯେମିତି ବଢ଼ିଯାଏ, ସେମିତି କ୍ୟାପ୍ଟେନ୍ ସହାୟଙ୍କ କଥା ମନକୁ ଆସିଲେ କ୍ୟାପ୍ଟେନ୍ ଚକ୍ରବର୍ତ୍ତୀଙ୍କ ସାହଚର୍ଯ୍ୟ ଅମୂଲ୍ୟମୂଲ୍ୟରେ ଝଲି ଉଠେ, ଓ ମୁଁ ତାଙ୍କ ପାଖକୁ ଆହୁରି ଲାଗି ଆସେ, ଗ୍ଭଇ ପରି । ସେତେବେଳେ ସେ ଯଦି କହନ୍ତି ଯେ ଆଜି ଡିନର୍‌ରେ ଖାଇବା ଯୋଗ୍ୟ କିଛି ନାହିଁ, ଅତଏବ ଖାଲି ‘ଭିଚୋଣି’ (Vichy water) ପିଇ ଶୋଇପଡ଼ିବା ଭଲ, ମୁଁ ତାଙ୍କ କଥାରେ ହଁ ଭରିଦିଏ, କହେ,—ହଁ, ମୁଁ ବି’ ଠିକ୍ ସେଇୟା ଭାବୁଥିଲି ।

କ୍ୟାପ୍ଟେନ୍ ଚକ୍ରବର୍ତ୍ତୀ ପାଖ ଚଉକିରେ ବସି ପଡ଼ିଲେ । ମୋର ନିଦ ଭାଙ୍ଗି ଯିବାର ଦୂରବସ୍ଥା ଦେଖି ମୃଦୁ ହସ ହସିବାକୁ ଲାଗିଲେ, ସହାନୁଭୂତିର ହସ । ସେ ହସ ଚେତାଇ ଦେଉଥିଲା ତାଙ୍କର ଉପଦେଶବାଣୀ,—ପ୍ରାତଃଭ୍ରମଣ ଏକ ମାଇଲ୍, ଦି’ପହରେ ତିରିଶମିନଟ୍ ବିଶ୍ରାମ, ସାନ୍ଧ୍ୟଭ୍ରମଣ ଏକ ମାଇଲ, ଓ ପୁଣି ଡିନର୍ ପରେ ଅଳସ ସ୍ୱଚ୍ଛନ୍ଦ ଭ୍ରମଣ ଏକମାଇଲ ।

ସେ ଆଖିରୁ ଚଷମା କାଢ଼ି ରଗଡ଼ିଲେ, ଖୁବ୍ ଜୋର୍‌ରେ । ଆରମ୍ଭ କଲେ, "ମେଜର୍ ରାୟ ଆସିଥିଲ—ନା ? ମୁଁ ଦେଖିଲି ସେ ଆସୁଛି, ସେଇଲାଗି ପଛରେ ରହିଗଲି । କଅଣ ଗପୁଥିଲି ?" ସେ କହିଲେ ଅବହେଳାର ଭଙ୍ଗୀରେ, କିନ୍ତୁ ଆଖିରେ ଉତ୍ସୁକତା ଥିଲା । କାହିଁକି ? ଆଶ୍ଚର୍ଯ୍ୟ ହେଲି । କ୍ୟାପ୍‌ଟେନ୍ କ'ଣ ତାଙ୍କ ସହକର୍ମୀମାନଙ୍କୁ ଜାଣନ୍ତି ନାହିଁ ? ମେଜର୍ ରାୟଙ୍କ ପରି ଲୋକ, ତାଙ୍କଠି ନୂତନତ୍ୱ ଖୋଜିବା ବୃଥା । କାରଣ ସେମାନେ କିଛି ଭାବନ୍ତି ନାହିଁ । ଭାବିଲେ ସିନା ଭାବନାର କେତେ କନ୍ଦଳ କେତେ ଉଠାପଡ଼ା ନେଇ ମନର ରଙ୍ଗ ବଦଳିବ—କେତେବେଳେ ଦେବତା, କେତେବେଳେ ଦାନବ, କେତେବେଳେ ମଣିଷ ଓ କେତେବେଳେ ପଶୁ । କିନ୍ତୁ ନ ଭାବିବାର ସ୍ୱର୍ଗରେ ସେ ତ ସବୁବେଳେ ସେମିତି ହୋଇ ରହିବେ—ଚିରଦିନ ଚିରଞ୍ଜିବୀ ମେଜର୍ ରାୟ, ହସନ୍ତି ଓ ଉଠନ୍ତି ବସନ୍ତି ।

କିମ୍ବା ଧର କ୍ୟାପଟେନ୍ ସହାୟ । ସେ ହୁଏତ ଭାବି ପାରନ୍ତି । ତାଙ୍କର ସେହି ବଡ଼ ବଡ଼ ଆଖିରେ ବେଳେବେଳେ ବୁଦ୍ଧିର ଆଭାସ ମିଳେ । କିନ୍ତୁ ସେ ତାଙ୍କ ଭାବନାକୁ କେବେଠୁଁ ଲୁହା ଶିକୁଳିରେ ଯୋଡ଼ି ଦେଇ ସାରିଲେଣି ସହଜ ପ୍ରବୃତ୍ତି ସାଙ୍ଗରେ । ଧନସାକ ହୁଇସ୍କି ବିଅର୍ ଇତ୍ୟାଦି ଓ ରାତିହେଲେ ତଦୁପରି ନାରୀସଙ୍ଗ । ଲଗାମ୍ ଛାଡ଼ିଦେଇଛନ୍ତି ପହଞ୍ଚିଲେଣି ଯାଇ କେଉଁଠି । ତାଙ୍କଠାରେ ଆଉ ନୂଆ ଖୋଜିବ କଅଣ ? ସେ ନିର୍ଦ୍ଦିଷ୍ଟ ବ୍ୟକ୍ତି ହୋଇ ନାହାନ୍ତି, ଗୋଟାଏ 'ଟାଇପ୍', ଗ୍ରୁପ୍ ହୋଇ ଗଲେଣି ।

ସେମିତି ଅନ୍ୟମାନେ, ଯେତେକ ଭାରତୀୟ ଅଛନ୍ତି ଏଠି ଯେଉଁମାନଙ୍କୁ ମୁଁ ଜାଣିଛି, ସମସ୍ତେ ଏକା ପରି । ଏକରୁ ଆନ ବଳୀୟାନ,—ସ୍ରଷ୍ଟାର ଉପହାସ, ଲେଖକର ନିରାଶା ।

କେବଳ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ । କେବଳ ତାଙ୍କର ଅଛି ବ୍ୟକ୍ତିତ୍ୱ, ନିଜତ୍ୱ, ଓ ମହତ୍ତ୍ୱ । ସିଡ଼ିର ଗୋଟାଏ ମୁଣ୍ଡରେ କ୍ୟାପ୍‌ଟେନ୍ ସହାୟ ହେଲେ ଆରମୁଣ୍ଡରେ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ । ନିଜକୁ ଭାଙ୍ଗିବାକୁ ଦେବେ ନାହିଁ, ଖସିବାକୁ ଦେବେ ନାହିଁ । ଯାହା ହେଉ ପଛେ ଆପଣା ହାତରେ ଚଉଦ ପା', କେହି ବୁଝନ୍ତୁ ନ ବୁଝନ୍ତୁ । କିନ୍ତୁ ଗୋଟିଏ କଥା, ସେ ନୀରସ । ତାଙ୍କୁ ନେଇ ରସର ସଞ୍ଚାର କାବ୍ୟରଚନା ହୋଇପାରିବ ନାହିଁ; ଅସମ୍ଭବ ।

ଏହି ହେଲା ଏଠିକାର ଚରିତ୍ରବର୍ଗ,—ଲେଖକ ବିଚରା କଣ କରିବ ଏଥିରେ !

କ୍ୟାପଟେନ୍ ଚକ୍ରବର୍ତ୍ତୀ ଉତ୍ତର ପାଇଁ ଅନେଇ ରହିଛନ୍ତି । ମୁଁ ତାଙ୍କୁ ମେଜର୍ ରାୟଙ୍କ ନିମନ୍ତ୍ରଣ କଥା କହିଲି, ଓ କହିଲି ଯେ ଏକାଠି ଯିବା, ଆଜିକାର

ଉପଲକ୍ଷ୍ୟରେ ହେଉଛି ଯେତେବେଳେ, ଏତେ ଲୋକ ଆସୁଛନ୍ତି, ଇତ୍ୟାଦି ଇତ୍ୟାଦି ।

ସେ ହସି ଉଠିଲେ, ବୋଧହୁଏ ମୋର ଉତ୍ସାହ ଦେଖି, ଓ କହିଲେ "ହଁ, ହଁ, ନିଶ୍ଚୟ ଯିବା ।" ତା'ପରେ କିଛି ସମୟ ରହିଯାଇ ଭାବିଲା ପରି ହୋଇ କହିଲେ, "ମେଜର୍ ରାୟ ଲୋକଟା ଭଲ, ମୁଣ୍ଡରେ କିଛି ନାହିଁ, ସବୁ କଥାରେ ଭାସିଯାଏ, ସମସ୍ତଙ୍କ ବୋଲ କରେ,—କିନ୍ତୁ ଅନ୍ୟମାନଙ୍କ ପରି ନୁହେଁ । ତାକୁ ଆପଣ ଏ ଅଡ୍ଡାକୁ ଡାକୁନାହାନ୍ତି ମଝିରେ ମଝିରେ ? ମୁଁ ଡାକିଲେ ଆସିବ ନାହିଁ, ଆପଣ ଡାକିଲେ ଆସିବ । ସେ ଆପଣଙ୍କ ଅଞ୍ଚଳର ଲୋକ ପରା ? ଆପଣ ତାଙ୍କ ବାପ ଭାଇମାନଙ୍କୁ ଜାଣନ୍ତି ନା କଣ କହୁଥିଲେ ?"

ମୁଁ କହିଲି "ହଁ, ମୁଁ ସେମାନଙ୍କୁ ଜାଣେ । କିନ୍ତୁ ସେ ଦୃଷ୍ଟିରୁ କିଛି ଅଧିକା ହେଲା ପରି ଲାଗୁନାହିଁ ।"

ସେ ଆଉ କିଛି ପଚାରିଲେ ନାହିଁ । କିନ୍ତୁ ମୋର ଆଖିରେ ନାଚିଗଲା ମେଜର୍ ରାୟଙ୍କ ପରିବାର । ତାଙ୍କ ବାପା ଆମ ଅଞ୍ଚଳର ଜଣେ ଜଣାଶୁଣା, ରୁଚିସମ୍ପନ୍ନ, ମର୍ଯ୍ୟାଦାବାନ୍ ଲୋକ, ଏକାଧାରେ ବ୍ୟବସାୟୀ ଓ ନେତା, ଧନ ଓ ମାନରେ ବଡ଼ଲୋକ । ଏବଂ ସେହି ମର୍ଯ୍ୟାଦା ଓ ଧନରେ ଲାଳିତପାଳିତ ହୋଇ ତାଙ୍କର ପୁତ୍ରକନ୍ୟାମାନେ ଗୋଟିଏ ଢଗରେ ଲାଗି ପଡ଼ିଛନ୍ତି,—ସେ ହେଉଛି 'କଲ୍‌ଚର୍' । ସମସ୍ତେ ଉଚ୍ଚ ଶିକ୍ଷିତ, କେବଳ ମେଜର୍ ରାୟଙ୍କ ଛଡ଼ା, ଓ ସେହି ଶିକ୍ଷାକୁ ନିଜାୟିତ କରିବାର ପ୍ରକୃଷ୍ଟ ଉପାୟ ସେମାନଙ୍କୁ ଜଣା ।

ମୁଁ ଥରେ ଅଧେ ଯାଇଛି ତାଙ୍କ ଘରକୁ, ତାଙ୍କ ବୈଠକ୍‌ଖାନାରେ ବସିବାର ସୌଭାଗ୍ୟ ପାଇଛି । ସେମାନେ ଆସିଛନ୍ତି ଯାଇଛନ୍ତି, ସୌଖୀନ ପୋଷାକରୁ ଧୂଳିକଣା ଝାଡ଼ିଛନ୍ତି, ଦାନ୍ତଚିପି ଧୀରେ ଧୀରେ କଥା କହିଛନ୍ତି, ଓ ତାଙ୍କ ଜ୍ଞାନର ଶାଣମାରେ ମୋତେ ଝଲସାଇ ଦେଇଛନ୍ତି । ସେମାନେ ଯୁକ୍ତି କରନ୍ତି ନାହିଁ, ପରସ୍ପର ମୁହାଁମୁହିଁ କଥା କହନ୍ତି ନାହିଁ, କାନ୍ଥଆଡ଼କୁ ଚାହିଁ କମ୍ବା ଛାତକୁ ଅନେଇ କଥାପଦେ ଛାଡ଼ିଦିଅନ୍ତି । କିନ୍ତୁ କହନ୍ତି ବଡ଼ କଥା, ଗମ୍ଭୀରଆ କଥା, ବିଶ୍ୱଚିକିଶ୍ୱ ଉଦ୍ଦେଶ୍ୟରେ କହିଲି ପରି ।

ସେହି ବଂଶର ମେଜର୍ ରାୟ । କେଉଁଠୁ ସେ ନିର୍ବୋଧ ହସ, ନିର୍ବୋଧ ଉତ୍ସାହ ପାଇଛନ୍ତି କେଜାଣି ! ଶୁଣିଛି ତାଙ୍କ ବାପା ତାଙ୍କ କଥା ପଡ଼ିଲେ ଆଡ଼େଇ ଦିଅନ୍ତି, କହନ୍ତି,—ଛାଡ଼ ତା' କଥା । ଆଉ ଭାଇ ଭଉଣୀମାନେ ଅବହେଳାର ହସଟିଏ ଦେଇ ଦିଅନ୍ତି । ଏବେ ସେହି ଅବହେଳିତ ମେଜର୍ ରାୟ ଚାଲିଆସିଛନ୍ତି ବୈଠକଖାନାର ପସାରରୁ, ଖାଲି ହସୁଛନ୍ତି ଓ ଉଚ୍ଛୁଳି କରୁଛନ୍ତି ।

କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ଗୃହିଁଙ୍କୁ ତାଙ୍କୁ ପାଖକୁ ଆଣିବେ, ବଦଳାଇବେ । ରାମକୃଷ୍ଣ ପରମହଂସଙ୍କ କଥା କହିବେ, 'ଭିଡ ପାଣି' ଅଭ୍ୟାସ କରାଇବେ । ଦରକାର ? ଉଚିତ ?

ମୋ ମନ ଭିତରୁ ପ୍ରାର୍ଥନା ଉଠିଲା—ଥାଉ । ଭାରତ ଭାଗ୍ୟବିଧାତା ତାଙ୍କୁ ଏମିତି ରଖିଥାଆନ୍ତୁ । ସାଏଗନ୍‌ରେ ତାଙ୍କ ସ୍ୱାଭାବିକ ରୂପ ଫୁଟି ଉଠିଛି, ଆନନ୍ଦ ଦେଉଛି,—ଥାଉ ଏମିତି ଅମଳିନ ହୋଇ । ସ୍ୱାଧୀନତାର ଜୟ ହେଉ !

ସ୍ୱାଧୀନତା । ସ୍ୱାଧୀନତାର ଏହି ରୂପକୁ ଶ୍ରଦ୍ଧା କରି ହେବ ନାହିଁ, ସମ୍ମାନ ଦେଇ ହେବ ନାହିଁ । ତଥାପି କଳାକାରର ଦୃଷ୍ଟିରୁ ଭାବିଲି ଯେ ଏହି ବୈଚିତ୍ର୍ୟଟିକୁ ଭାର୍ଗ ଦେବା ଉଚିତ ହେବ ନାହିଁ । ସ୍ୱାଧୀନତାର ଇନ୍ଦ୍ରଧନୁ କାହାକୁ କେଉଁପରି ରଙ୍ଗ ଆଣି ଦେଉଛି,—ଦେଖିବାକୁ ଖୁସି ଲାଗିବ ନାହିଁ ? ନିଜକୁ କହିଲି ଯେ ନା, ଏମାନେ ଲେଖକର ନିରାଶା ନୁହନ୍ତି । ଏହି ହେଉଛି ନୂଆ ଢଙ୍ଗ, ସାଏଗନ୍‌ରେ ଏମାନଙ୍କର ସ୍ୱାଧୀନତା-ସୁଖ । ନିଜର ଦେଶ, ସମାଜ, ପରିବାରର ବେଷ୍ଟନୀରୁ ଚାଲିଆସି ସେଥିର 'ନାହିଁ', ସେଥିର ଦାରିଦ୍ର୍ୟ, ସେଥିର ଅପୂରଣକୁ ଭୁଲିଯିବାର ଓଲଟାଇ ଦେବାର ସାହସ ଓ ଆନନ୍ଦ ।

ଲଞ୍ଚ୍‌କୁ ଯିବା ଆଗରୁ ସେହି ଭାବନା ମୋର ମନରେ ଖେଳୁଥାଏ । ଏମାନେ ସ୍ୱାଧୀନତା ପାଇଛନ୍ତି ଏଠି । ଏମାନେ ଯାହା ଯେମିତି କରୁଛନ୍ତି, ଯେପରି ଭାବରେ ସମୟ ବିତାଉଛନ୍ତି, ସବୁର ମୂଳରେ ସେହି ଗୋଟିଏ କଥା ଅଛି,—ମୁଁ ଖସି ଆସିଛି ! ଭାରତମାତାର ପ୍ରଶସ୍ତ ସ୍ନେହମୟ କୋଳରୁ ଚାଲିଆସି ଖୁସି ହେଉଛନ୍ତି, ପଘା ଛିଣ୍ଡାଇ ଆସିଲା ପରି । କି ପିଲାଳିଆମି, କି ବାତୁଳତା ! ଦୟା, ସହାନୁଭୂତି ଓ ଆମୋଦର ମିଶାମିଶି ଭାବ ମୋ ମନରେ ଆସୁଥାଏ, ଓ ମୋଟ ଉପରେ ମୋତେ ଭଲ ଲାଗୁଥାଏ ଯେ ମୁଁ ମୋର ଲେଖାପାଇଁ ଗୋଟିଏ ନୂଆ ଆଧାର ପାଇଛି ।

...ମୁଁ ଓ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ପହଞ୍ଚିଲାବେଳକୁ ପ୍ରାୟ ସମସ୍ତେ ଆସିଗଲେଣି । ମେଜର୍ ରାୟ ଘରର ଗୋଟାଏ ମୁଣ୍ଡରେ ଥିବା ଟେବୁଲ ପାଖରେ ଛିଡ଼ା ହୋଇ କୁହାଟ ଛାଡ଼ିଲେ, "ଆସନ୍ତୁ, ଆସନ୍ତୁ ମିଷ୍ଟର୍ ଦାସ, କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ । ମିଷ୍ଟର୍ ଦାସ, କଣ ଆଣିବି ? ହାଲୁକା ନା ଭାରି ? ଧଳା ନା ହଳଦିଆ ? କୁହନ୍ତୁ ଶୀଘ୍ର । ନା,—ଆପଣ କହିବେ ନାହିଁ ଜାଣେ, ନିଜେ ଦେବାକୁ ପଡ଼ିବ । ଅତଏବ ନିଅନ୍ତୁ ଏଇ— ।"

ଏ ବାଗ୍ମୀତାର ସ୍ରୋତ ରୋଧିବ କିଏ ? ପରିବେପଣ ସଫଳ ହେଉ । ମୁଁ ହାତ ବଢ଼ାଇଲି । କାଚରେ କାଚ ଝଣ୍ଝଣେଇଲା ଓ ଯୁଗପତ୍ ଦଶପନ୍ଦରଟି ଗ୍ଲାସ୍

ଉଣ୍ଣତ୍ ଉପରକୁ ଉଠିଲା ମୋର ସ୍ୱାସ୍ଥ୍ୟପାନ କରିବା ପାଇଁ । ବଲିହାରି ସ୍ୱାଧୀନତା । ଭାରତର କେଉଁ କୋଣରେ ସ୍ୱାଧୀନତା ଦିବସର ସମ୍ମାନ ଦିଆହେଉଥିବ ଏମିତ ?

ଜାଣିଥିଲେ ମଧ୍ୟ ଅନାଇଲି କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କ ଆଡ଼କୁ । ତାଙ୍କ ହାତରେ ଗିଲାସ ନାହିଁ, ତାଙ୍କୁ କେହି ଯାଚନାହାନ୍ତି କି ସେ ମାଗିନାହାନ୍ତି । ପାଞ୍ଚ ବର୍ଷ ହେଲାଣି ସେ ଏହି ଉପଭୋଗରୁ ନିଜକୁ ବଞ୍ଚିତ କରିଛନ୍ତି । ପାଞ୍ଚବର୍ଷ ତଳେ, ଯେତେବେଳେ ତାଙ୍କର ନବବିବାହିତା ସ୍ତ୍ରୀ ତାଙ୍କୁ ଛାଡ଼ିଦେଇ ଚାଲିଗଲେ ଚିରଦିନ ପାଇଁ । ସେହିଦିନୁ ଅର୍ଥାତ୍ ସ୍ତ୍ରୀଙ୍କ ମୃତ୍ୟୁ ପରେ ସେ ଅନେକ କିଛି ଛାଡ଼ିଛନ୍ତି, ତା' ଭିତରୁ ଏ ଗୋଟିଏ ।

କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କ ଆଖିରେ ମିଟିମିଟିକା ତାରିଟିଏ ଥିଲା, କେବଳ ମୋର ବୁଝିବା ପାଇଁ । ମିଷ୍ଟର୍ ଦାସ୍ ଏ ଦଳକୁ ସ୍ୱୀକାର କରି ନେଇଛନ୍ତି ତାହାହେଲେ, ହଁ, ଯେତେହେଲେ ଅଳ୍ପବୟସ ! ମୁଁ ହସିଲି ତାଙ୍କର ଏହି ଅନୁମାନରେ, ଟିକିଏ ଲାଜ ଲାଗିଲା । କିନ୍ତୁ ନିଜକୁ କହିଲି ଯେ ମୁଁ ମିଶାଇନାହିଁ ଆପଣାକୁ, ମିଶାଇବାର ଛଳନା କରିଛି ଏମାନଙ୍କୁ ଭଲ ଭାବରେ ଜାଣିବା ପାଇଁ, ଏମାନଙ୍କର ରୂପରଙ୍ଗ ଆହୁରି ପାଖରେ ଦେଖିବା ପାଇଁ । କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ କେଉଁଠୁ ଜାଣିବେ ଲେଖକର ସନ୍ଧାନୀ ମନ କେଉଁ ଧାତୁରେ ଗଢ଼ା ?

ଉଲ୍ଲାସ ଫାଟି ପଡ଼ୁଛି । କାହା କଥା କାହାକୁ ଶୁଭୁନାହିଁ, କି କେହି ଶୁଣିବାର ପ୍ରୟୋଜନ ମନେ କରୁ ନାହାନ୍ତି । ମୋ ପାଖରେ ବସିଥିବା ଯୁବକ ସିନ୍ଧି ବ୍ୟବସାୟୀ ଜଣକ,—ମିଷ୍ଟର୍ ମିର୍‌ଚାନି, ଯେ କି 'କମିଶନ୍'ର ଅଫିସର୍ ମହଲରେ ସୁପରିଚିତ—, କଣ କହିଲେ ମୋ କାନରେ ଫୁସ୍ ଫୁସ୍ ହୋଇ, ମୁଁ ମୁଣ୍ଡ ଟିଙ୍ଗାରିଲି । ସୁନା ଦାନ୍ତ ଲଗାଇଥିବା ସ୍ୱାସ୍ଥ୍ୟବାନ୍ ମଧ୍ୟବୟସ୍କ ଡାକ୍ତର ମେହ୍‌ରା ଅଭିଯୋଗ କଲେ ଯେ ମେଜର୍ ରାୟ୍ ସମସ୍ତଙ୍କ ଖାଲି ଗ୍ଲାସ୍ ଭରି ଚାଲିଛନ୍ତି, କିନ୍ତୁ ନିଜର ଗ୍ଲାସ୍ ପୂରା ରହିଛି ସେମିତି । ମେଜର୍ ରାୟ୍ ତାଙ୍କ କଥାରେ ହସିଲେ ଓ ଗ୍ଲାସ୍‌କୁ ଉପରକୁ ଟେକି ଜୋର୍‌ରେ ଚୋକ ଦେଲେ । କିନ୍ତୁ ମୁଁ ଜାଣେ ଯେ ତାଙ୍କର ଗ୍ଲାସ୍ ଆଜି ସରିବ ନାହିଁ । ମେଜର୍ ରାୟ୍ ଉପଭୋଗ ବାଣ୍ଟି ପାରନ୍ତି, ନିଜେ କେବଳ ନିମିତ୍ତ ମାତ୍ର,— ସେଇଥିରେ ତାଙ୍କର ଆନନ୍ଦ ।

କୋଳାହଳ ଭିତରେ ହଠାତ୍ ଗୋଟାଏ ଧାରୁଆ ଚିତ୍କାର ଶୁଣାଗଲା,— "ଡ୍ୟାମ୍ ହୋପଲେସ୍, ଏ ଗୁଡ଼ାକ ମଣିଷ ପିଅନ୍ତି ! ମେଜର୍ ରାୟ୍‌କୁ ଛାଡ଼ିଆ ପଟେରେ ଦିଅ ।" ଦେଖିଲି କର୍ଣ୍ଣେଲ ଭୋପତ୍‌କର୍ କହୁଛନ୍ତି, ଖାଲି ଗ୍ଲାସ୍ ଟେବୁଲ୍ ଉପରେ କଚାଡ଼ି ଦେଇ । ମୋର ଯେତେଦୂର ଅନୁମାନ ସେତେବେଳକୁ ତାଙ୍କର ଛଅଗ୍ଲାସ

ପେଗ୍ ସରିଗଲାଣି । ତା'ପରେ ଦେଖିଲି ମେଜର୍ ରାୟ ସିଂହାସନଟିଏ ଦେଇ ଆଖି ଠାରୁଛନ୍ତି ଡକ୍ଟର ଗୁପ୍ତାଙ୍କ ଆଡ଼େ । ଡକ୍ଟର ଗୁପ୍ତା କ୍ୟାପ୍‌ଟେନ୍ ସହାୟଙ୍କ ଆଡ଼େ ଗୃହିଁ ହସୁଛନ୍ତି । ଆଉ କ୍ୟାପ୍‌ଟେନ୍ ସହାୟ ନଡୁଆ ଢୁଳୁଢୁଳୁ ଆଖିରେ ସମ୍ମତି ଜଣାଉଛନ୍ତି, ହସିବା ପାଇଁ ଶକ୍ତି ନ ଥିଲା ପରି । ମନେହେଲା ଯେ ସମସ୍ତେ କଣ୍ଟ୍ରୋଲ୍ ଷ୍ଟୋରକୀପରଙ୍କର ଜନିତ ଆମୋଦ୍‌ଟିକୁ ଉପଭୋଗ କରୁଛନ୍ତି, ପାନୀୟ ଆହୁରି ମଧୁର ହୋଇ ଉଠୁଛି ।

ଏତିକିବେଳେ ମେଜର୍ ରାୟ ପାଟି କଲେ "ବର୍ତ୍ତମାନ ଲଞ୍ଚ୍ ପୂର୍ବରୁ ଶେଷ ଆଇଟେମ୍ ।" କଣ ସବୁ ଆଇଟେମ୍ ଗଲାଣି ଏହା ଭିତରେ ମୁଁ ଜାଣି ପାରିଲି ନାହିଁ । "ବର୍ତ୍ତମାନ ଆପଣମାନଙ୍କୁ ଖଣ୍ଡେ ଖଣ୍ଡେ କାଗଜ ଦିଆଯିବ । ସେଥିରେ ଆପଣମାନେ ନିଜର ମତ ଅନୁଯାୟୀ ଏହି ରୁମରେ ଥିବା ସବୁଠାରୁ ସୁନ୍ଦର ଭଦ୍ରବ୍ୟକ୍ତିଙ୍କର ନାଁ ଲେଖିଦେବେ । ଯେ ସବୁଠାରୁ ବେଶି ଭୋଟ ପାଇବେ ତାଙ୍କୁ ସମସ୍ତଙ୍କ ତରଫରୁ ସ୍ୱାଧୀନତା ଦିବସର ବିଶିଷ୍ଟ ଉପହାର ଦିଆଯିବ ।" 'ହିଅର୍ ହିଅର୍', ଧ୍ୱନି ଓ କରତାଳି ଘୋଷଣାର ସମର୍ଥନ କଲା । ଯଥାକ୍ରମେ ମୁଁ ଖଣ୍ଡେ କାଗଜ ପାଇଲି ଓ ମିଷ୍ଟର୍ ମିଶ୍ରାଙ୍କଠାରୁ ମେଜର୍ ରାୟଙ୍କ ଆଡ଼େ ଗୃହିଁଲି । କାହାକୁ ଭୋଟ ଦେବି ? ମିଶ୍ରାଙ୍କର ଗୋରା ଛନଛନିଆ ଚେହେରା, ହେଲେ ଟିକିଏ ନାଟା ସୁଲଭ,— ମେଜର୍ ରାୟଙ୍କର ଗୋଲ୍‌ଗାଲ୍ ମଫାଚୁପା ଚେହେରା କିନ୍ତୁ ନିହାତି ସାଧାରଣ,— କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ, ସାବନା ରଙ୍ଗ କିନ୍ତୁ ରୁକ୍ଷ ଭାବୁକ ଭଙ୍ଗୀ,··· । ଭାବୁଛି, ଏହି ସମୟରେ ଡକ୍ଟର୍ ଗୁପ୍ତା ମୋ କାନରେ କଣ କହିଲେ । ପ୍ରଥମେ ବୁଝିପାରିଲି ନାହିଁ, କିନ୍ତୁ ତା'ପରେ ତାଙ୍କ ମୁହଁର ହସ ଓ ଜାଣିଲା ଭାବ ଦେଖି ବୁଝିଲି ଜନତାର ଉଦ୍ଦେଶ୍ୟ କଅଣ । ଆଶ୍ଚର୍ଯ୍ୟ ହେବାକୁ ସମୟ ପାଇଲି ନାହିଁ ଓ ଜନତାର ହୁକୁମ ତାମିଲ୍ କଲି ।

ଭୋଟଗଣତି ହେଲା । ଭୋଟ କାଗଜ ଗଣି ସାର ହାତଟେକି ଆହ୍ଲାଦସୂଚକ ଧ୍ୱନି ଦେଇ ମେଜର ରାୟ ପ୍ରକାଶିଲେ, "ଭୋଟ୍‌ର ଫଳ । ସର୍ବ ସମ୍ମତିକ୍ରମେ ସବୁଠାରୁ ସୁନ୍ଦର ସୁପୁରୁଷ ବୋଲି ବିବେଚିତ ହୋଇଛନ୍ତି କଣ୍ଟ୍ରୋଲ୍ ଷ୍ଟୋରକୀପର୍ । ଥ୍ରି ଚିଅର୍‌ସ୍ ଫର୍··· ।" ଘନ ଘନ କରତାଳି ସାଙ୍ଗରେ ଯାଦୁମୁଣିରୁ ବାହାର କଲା ପରି ମେଜର୍ ରାୟ କେଉଁଠୁ କାଢ଼ି ଆଣିଲେ ସାଂପେନ୍ ବୋତଲଟିଏ ଓ ଟେବୁଲ୍ ଉପରେ ରଖି କହିଲେ, "ଏଇ ହେଉଛି ସ୍ପେଶାଲ୍ ଉପହାର, ନାଁ କଣ୍ଟ୍ରୋଲ୍‌ସ୍ ସ୍ପେଶାଲ୍, କେବଳ କଣ୍ଟ୍ରୋଲ ଷ୍ଟୋରକୀପରଙ୍କ ପାଇଁ ।" ପୁଣି ଘନ ଘନ କରତାଳି ଓ ସମସ୍ତଙ୍କ ଦୃଷ୍ଟି କଣ୍ଟ୍ରୋଲ୍ ଷ୍ଟୋରକୀପରଙ୍କ ଆଡ଼େ ।

କର୍ଣ୍ଣେଲ୍ ଭୋପତ୍କର୍ ଏହି ଚପଳତାକୁ ଉପହାସ ମନେ କରି ରାଗିଲେ ନାହିଁ, କିନ୍ତୁ ହସିଲେ କି ନାହିଁ ବୁଝାଗଲା ନାହିଁ । ବେତଚଉକିରେ ଡଳେଇ କରି ବସିଥାନ୍ତି ସେମିତି, ଫଳାଫଳ ଶୁଣି ଓଠର ଗାଢ଼ରେଖା ଗୋଟାଏ ପାଟକୁ ବେଶି ନେସେଡ଼ ହୋଇଗଲା ।

କର୍ଣ୍ଣେଲ୍ ଭୋପତ୍କର ଦରବୁଢ଼ା । ତାଙ୍କୁ ଦେଖିଲେ ମନେହେବ ଯେ ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ତାଙ୍କର ଧନୁର୍ଗୁଣ ଟାଂକ ହୋଇଯାଇଛି, ଅହୁରି ଦୂରକୁ, ଆହୁରି ପଛକୁ । ଏହିଥର ବୋଧହୁଏ ସେ ଶର ପେଷିବେ । ତାଙ୍କର ଟାକୁଆ ଗାଲ, କ୍ରମବର୍ଦ୍ଧିଷ୍ଣୁ କପାଳ ସହିତ ପ୍ରସାରଣଶୀଳ ଚିବୁକ, ଗ୍ରେଟିଆ ଆଖିର ଅହଂକାର, ପାତଳା ଓଠର ଧାର, ହାତ ଓ ଶରୀରର ବହୁଳତା ଏହି ଭାବର ସୂଚନା ଦିଏ ।

ସେ ଭାରତ ଛାଡ଼ିଲେଣି ବହୁତ ଦିନୁ । ଯାଏଗନ୍ ଆସିବା ଆଗରୁ ସେ ଅନ୍ୟାନ୍ୟ ବିଦେଶ ଭୂମିରେ କାମ କରିଛନ୍ତି । ଭାରତ ଯିବା କଥା ପଡ଼ିଲେ କହନ୍ତି, —"ଧନ୍ୟବାଦ, ମୁଁ ଏଠି ଖୁବ୍ ଭଲ ଅଛି । ମୋର ପ୍ରିୟ ଜନ୍ମଭୂମିକୁ ମୋର ନମସ୍କାର ଜଣାଇଦେବେ ।" ଥରେ ଜଣେ ଭଦ୍ରବ୍ୟକ୍ତି ଚତୁରତାର ଭଙ୍ଗୀରେ କହିଲେ, "ସେ କାହିଁକି ଯିବାକୁ ଚାହାନ୍ତି ନାହିଁ ଜାଣନ୍ତି ? ତା'ର କାରଣ ଭାରତରେ ଭାରତୀୟା ନାରୀ ଅଛନ୍ତି !" ମୋ ଛଡ଼ା ଅନ୍ୟମାନେ ହୋ' ହୋ' ହୋଇ ହସି ଉଠିଲେ, କଥାର ଗୂଢ଼ ଇଙ୍ଗିତ ବୁଝିଲା ପରି ।

ପରେ ମୁଁ ଯାହା ଜାଣିଲି ଘଟଣା ଭିତରେ ଏତିକି ଯେ, କର୍ଣ୍ଣେଲ୍ ଭୋପତ୍କରଙ୍କୁ ତାଙ୍କ ସ୍ତ୍ରୀ ଛାଡ଼ି ଦେଇ ଚାଲି ଯାଇଛନ୍ତି,—ପ୍ରାୟ ଦଶ ପନ୍ଦର ବର୍ଷ ହୋଇଗଲାଣି । ପୁଣି ଶୁଣାଯାଏ ଯେ, ସେ ଆଉ ଜଣେ ସାଧାରଣ ଲୋକକୁ ବାହା ହୋଇ ଘର ସଂସାର କରି ଅଛନ୍ତି । ହେଲା, ତେବେ ସେଥିପାଇଁ କର୍ଣ୍ଣେଲ୍ ଭାରତ ଫେରିଯିବାକୁ ଚାହିଁବେ ନାହିଁ କାହିଁକି ? ଲଜ୍ଜା ? ଅପମାନ ? ବିଫଳ ପ୍ରେମର ଗ୍ଲାନି ? ? ନା ଆଉ କଅଣ ?

ଭୋପତ୍କରଙ୍କ ଆଡ଼େ ଅନେଇଲି । ଆଖି ଦରବୁଜା ହୋଇ ଆସିଛି । ଲମ୍ବା ନାକରେ ସରୁ ନାକପୁଡ଼ା ଚଞ୍ଚଳ ହୋଇ ଉଠୁଛି । ଓଠ ପୁଣି ବଢ଼ିଯାଇଛି ଆଗପରି, ବଙ୍କୁ ପରି ଭଙ୍ଗୀରେ । ହଠାତ୍ ମନରେ ପ୍ରଶ୍ନ ଉଠିଲା,—ସାପ କଣ କେବେ ପ୍ରେମ କରିପାରେ ? ଯେ ଦଂଶିବା ପାଇଁ ଜନ୍ମ ହୋଇଛି, ଦଂଶିବାରେ ଯାହାର ଚରମ ଉପଭୋଗ ତା'ର ଚୁମ୍ବନରେ କଣ ଥିବ ? ନିର୍ଦ୍ଦୟ ବିଷ ଚୁମ୍ବନ । ତଥାପି ସେ ହୋଇଥିବ ନିବଡ଼, ନିଗିଡ଼ା ଅନୁଭୂତି ଦିଆ ଓ ଖାଲି ନିଜପାଇଁ, ନିଜକୁ ନେଇ । ମିସେସ୍ ଭୋପତ୍କର ତାକୁ ବୁଝିପାରିଲେ ନାହିଁ, ସମ୍ଭାଳି ପାରିଲେ ନାହିଁ,—ଦୋଷ

କଣ କର୍ଣ୍ଣେଲ୍‌ଙ୍କର ? ଆଜି ସେହି ପୂର୍ବତନ ମିସେସ୍ ଖେପଡ୍‌କର୍‌ଙ୍କୁ ପ୍ରେମ ଦେଇ ଚୁମ୍ବନ କରୁଛି ଆଉ ଜଣେ କିଏ । କର୍ଣ୍ଣେଲ୍ ଖେପଡ୍‌କର୍ କଣ କରନ୍ତେ ତା' ଦେଖିଲେ ? ଭାରତ ଫେରିଯାଆନ୍ତେ ? ନା,—ଏଇ ଭଲ, ବିଦେଶଭୂଇଁରେ ଶାସନ ଉପଭୋଗ, ନିଃସଙ୍ଗ ଆପଣା-ଭିତ୍ତି ରାଜତ୍ୱ । ତା' ଛଡ଼ା ଏଠି ଭାରତୀୟା ନାରୀ ନାହାନ୍ତି । ସ୍ତ୍ରୀ ଜାତିକୁ ଘୃଣା କରି ବଞ୍ଚିହେବ ଏଠି, ସ୍ୱଚ୍ଛନ୍ଦରେ ରହିହେବ ।

ହାୟ ! ସେଇଠି ଦେଖି କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କୁ । ସେ ମଧ୍ୟ ସ୍ତ୍ରୀ-ପରିବାର ସୁଖରୁ ବଞ୍ଚିତ । ସେ ମଧ୍ୟ ନାରୀସଙ୍ଗ ବିମୁଖ । କିନ୍ତୁ ନାରୀଜାତି ବିଶେଷତଃ ଭାରତୀୟା ନାରୀ ପ୍ରତି ତାଙ୍କର କି ଗଭୀର ଶ୍ରଦ୍ଧା ଓ ସମ୍ମାନ ! ଏହି ଯେଉଁ ମିଷ୍ଟର ଓ ମିସେସ୍ ପ୍ରସାଦ ବ୍ୟବସାୟ ସଂକ୍ରାନ୍ତରେ ସାଏଗନ୍‌କୁ ଆସିଛନ୍ତି କେତେଦିନ ହେଲା, ତାଙ୍କ ସାଙ୍ଗରେ କିଛିଦିନ ଦେଖାସାକ୍ଷାତ ହୋଇ ସାରିଲାପରେ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ମିସେସ୍ ପ୍ରସାଦ୍‌ଙ୍କର ବ୍ୟବହାରରେ ମୁଗ୍ଧ ହୋଇଯାଇଛନ୍ତି । କେତେଥର ମୋତେ ତାଙ୍କ ବସାକୁ ନେଇଛନ୍ତି ଓ ମିସେସ୍ ପ୍ରସାଦଙ୍କର ଅତିଥିସତ୍କାର, ତାଙ୍କର ରୁଚି, ତାଙ୍କର ସଂଭ୍ରମ ଓ ଶୀଳତାକୁ ପ୍ରତିପଦରେ ଲକ୍ଷ୍ୟ କରିବାକୁ କହିଛନ୍ତି । କଥାରେ, ଇଙ୍ଗିତରେ ମୋତେ ବୁଝିବାକୁ କହିଛନ୍ତି ଯେ, ଏହି ହେଉଛି ଆଦର୍ଶ ଭାରତୀୟା ନାରୀ, ସ୍ୱଗୁଣରେ ବିଶ୍ୱଜଗତକୁ ଜୟ କରିପାରେ । ମୁଁ ବି ଭାବିଛି ଓ କେଜାଣି କାହିଁକି ମୋର ମନେ ପଡ଼ିଯାଇଛି ସରସ୍ୱତୀ ବନ୍ଦନା,—'କଜ୍ଜ୍ୱଳପୂରିତ ଲୋଚନ ଧାରେ, ବକ୍ଷ ସୁଶୋଭିତା ମୁକୁତା ହାରେ··· ।' ମିସେସ ପ୍ରସାଦ,—ବିପୁଳତା, ସମୁନ୍ନତା ଓ ସମ୍ପୂର୍ଣ୍ଣତାର ପ୍ରତୀକ । କେଉଁଠି କିଛି ଅଧିକ ପାଇବାର ନାହିଁ । ପ୍ରତିଷ୍ଠା ଓ ଗରିମା ଫୁଟିଉଠୁଛି ତାଙ୍କ ଦୀର୍ଘ ଉଜ୍ଜ୍ୱଳ ଦେହରେ, ତାଙ୍କ ବସନଭୂଷଣରେ ଓ ତାଙ୍କର ସୁନିର୍ଦ୍ଦିଷ୍ଟ ଉଦାର ଭଙ୍ଗୀରେ । ମନେହୁଏ ଯେ, ସେ ସହସ୍ର ଭୋକିଲା ପ୍ରାଣୀଙ୍କର ଥାଳି ଭରି ଦେଇପାରନ୍ତି; ଅଥଚ ସେ ଥରେ କହିଲେ ଆମ ଆଡ଼କୁ ଚାହିଁ,—'ବୁଝିଲେ ନା କ୍ୟାପ୍‌ଟେନ୍, ମୁଁ ନିଜପାଇଁ କିଛି ଚାହେଁ ନାହିଁ, କେବେହେଲେ ଚାହିଁ ନାହିଁ । କେବଳ ଏତିକି ଚାହେଁ ଯେ ସ୍ୱାମୀ ପିଲାଙ୍କ ଆଗରେ ମୁଁ ଚାଲିଯାଏ ଯେମିତି ।' ସେହି କରୁଣାରେ ଅବନତ ଯାଚନାଭରା ଚାହାଣୀ,—ଯେତେ ଯେପରି ଅନ୍ନପୂର୍ଣ୍ଣା ନିଜେ ଦୁଃଖିନୀ ହୋଇ ହାତ ପତାଉଛନ୍ତି ଜନତାକୁ !

କଳ୍ପନା ତୁଟିଗଲା ପ୍ରବଳ ପାଟିତୁଣ୍ଡରେ । ଦେଖେ ସମସ୍ତେ ଉଠିପଡ଼ି ମୁହାଁଇଛନ୍ତି ଡାଇନିଂରୁମ୍ ଆଡ଼କୁ । ପାଖରେ, ଅତିପାଖରେ କର୍ଣ୍ଣେଲ ଖେପଡ୍‌କର୍, —ଓଠର ରେଖା ଯେମିତି ବିକୃତ, ଅନେଇଛନ୍ତି ମୋ ଆଡ଼େ । ମନେହେଲା ସେ ମୋର କଳ୍ପନାକୁ ଘୃଣା କରି ତାଚ୍ଛଲ୍ୟରେ ମୁହଁ କରିଛନ୍ତି ଯେମିତି ।

...ଲଞ୍ଚ୍ । ସ୍ୱାଧୀନତା ଦିବସର ଆହାର-ଉତ୍ସବ । ବିବିଧ ସାମଗ୍ରୀ ସଜା-ହୋଇ ରଖା ହୋଇଛି ଟେବୁଲ୍ ଉପରେ । ଖାଦ୍ୟପେୟର ବିଭିନ୍ନତା ଭାରତର ଅନ୍ତର୍ନିହିତ ଏକତା ପ୍ରଚାର କରୁଛି । ଏଠି ଅଛି ପଞ୍ଜାବ ବିରିଆନି, ମୋଗଲାଇ ରୋଗନ୍—ଜୋସ୍, ମାନ୍ଦ୍ରାଜୀ ସମ୍ବାର ଓ ସବୁରି ଉପରେ ପାଶ୍ଚାତ୍ୟ ପୁଡିଙ୍ଗ୍ । ମେଜର୍ ରାୟ ଘୂରିବୁଲୁଛନ୍ତି ଏ ପାଖରୁ ସେ ପାଖ, ଏଇଟା ନିଅନ୍ତୁ ସେଇଟା ନିଅନ୍ତୁ କହି ବ୍ୟତିବ୍ୟସ୍ତ କରିଦେଉଛନ୍ତି । ଯେଉଁମାନେ ନୀରବରେ ବେଶି ନେବାକୁ ଚାହୁଁଛନ୍ତି ନେଇ ପାରୁ-ନାହାନ୍ତି ତାଙ୍କ ଅନୁରୋଧର ତାଡ଼ନାରେ ।

କଥାର କୋଳାହଳ ମୁଣ୍ଡପିଟାପିଟି ହେଉଥାଏ ଟିକିଏ । ଏବେ କଥା ହାବୁଡ଼ା ଖାଇ ଉଠୁଥାଏ ମଝିରେ ମଝିରେ,—ମେଜର୍ ରାୟଙ୍କର ହଠାତ୍ ଅନୁରୋଧ, କର୍ଣ୍ଣେଲ ଭୋପତ୍‌କର୍‌ଙ୍କର ପାଣିପାଗ ଉପରେ ହଠାତ୍ ଅଭିଯୋଗ, ଡକ୍ଟର ଗୁପ୍ତାଙ୍କର ଅବାଞ୍ଛିତ ଅକାରଣ ଆନନ୍ଦଧ୍ୱନି, ଇତ୍ୟାଦି । ବେଶ୍ କିଛି ସମୟ କେବଳ ଖାଇବାର ଶବ୍ଦ ଶୁଣାଯାଉଥାଏ ଓ ଉପରେ ଘୂରୁଥିବା ପଙ୍ଖା କିଛି କହିବାକୁ ସମୟ ପାଇଲା ପରି ଜୋର୍‌ରେ ଘର୍‌ର୍ ଘର୍‌ର୍ କରି ଉଠୁଥାଏ ।

ମୋ ଆଖି ଆଗରେ ଥିଲା ବଡ଼ ଝରକା । ରେଲିଂରେ ନୂଆ ଧଳାରଙ୍ଗ ଲଗିଛି, ଚକ୍ ଚକ୍ କରୁଛି—ତା'ର ଭିତର ପ୍ରଗଲ୍‌ଭତା ଦେଖାଇ ହେଉଛି ସେନା-ଅଧିକାରୀଙ୍କ ବ୍ୟାଜ୍ ପରି । ଇଚ୍ଛା ହେଲା ନୟନମନକୁ ଦୂରକୁ, ଅନ୍ତର ଦୂରକୁ ନେଇଯିବା ପାଇଁ, ଯେଉଁଠି ଶାନ୍ତି ମିଳିବ; କିନ୍ତୁ ଗୃହସ୍ୱାମୀ କମିସନର ପାଚିରୀସହିତ ଓ ଓ ତରବାଡ଼ରେ ଧକ୍‌କା ଖାଇ ଫେରି ଅସୁଥାଏ । ଛଟପଟ ଲାଗିଲା । ଇଚ୍ଛା ହେଲା ଖରାକୁ ମୁଣ୍ଡ ଦେଖାଇ ସାଏଗନ୍‌ର ରାସ୍ତାରେ ବୁଲୁଥାନ୍ତି । କାନ୍ଧରେ ଭାର ମୁଣ୍ଡାଇ ଯାଉଥିବା କଳା ପାଇଜାମା—ଧଳାବ୍ଲାଉସ୍ ପିନ୍ଧା କୌଣସି ଝିଅବକାଳ ହାତରୁ ମାଛଝୋଟା ପାଣି (f sh sauce) ଦିଆ ପୋଡ଼ା ମାଛ ପୋଡ଼ା କଙ୍କଡ଼ା ଖାଆନ୍ତି । ସୁଆଦ ଲାଗିବ ନାହିଁ ? କିଏ ପଚାରୁଛି ? ଭଲ ଲାଗନ୍ତା ଭାଷା ନ ବୁଝି ପାରିବାରେ ତା'ର ସେହି ଆତ୍ମୀୟ, ପରଷିବାରେ ଆନନ୍ଦ ଓ କୃତକୃତ୍ୟ ଭାବ,—ଯେଉଁ ଯେପରି ସେ କେବଳ ମୋରି ପାଇଁ ଆସିଥିଲା ପସରା ମୁଣ୍ଡାଇ । ସେଠି ନ ଥାନ୍ତା କୃତ୍ରିମତା, ଆନନ୍ଦ ଦେଖାଇ କରିବାର ପ୍ରୟାସ, ପଳାୟନର ଉଦ୍ଧତ ଉଚ୍ଛ୍ୱାସ । ନା, ମୋତେ ଏ ଭଲ ଲାଗୁନାହିଁ, ମୁଁ ଭୁଲ୍ କରିଛି ଏଠିକି ଆସି । ଚୁଲିକୁ ଯାଉ ଲେଖକର ସମ୍ମାନ ! ଏ ହାଉଆ ମୋ ଧାତୁରେ ଯିବ ନାହିଁ ।

ଏତିକିବେଳେ ମୋ ଆଖିରେ ପଡ଼ିବାକୁ ଥିଲା ଯେ ମୋର ଡାହାଣ ପାଖରେ ବସିଛନ୍ତି ସ୍ୱନାମଧନ୍ୟ ସ୍ୱୟଂ କ୍ୟାପ୍‌ଟେନ୍ ସହାୟ । ହାୟ ଭଗବାନ୍ ! ଆଉ କେହି ହେଲେ ବସି ପାରିଥାଆନ୍ତେ,—ମେଜର୍ ରାୟ, ମିଷ୍ଟର୍ ମିଶ୍ରା, ଏପରିକି କର୍ଣ୍ଣେଲ୍

ଷ୍ଟେପତ୍‌କର,—କିନ୍ତୁ କ୍ୟାପ୍‌ଟେନ୍ ସହାୟ କାହିଁକି ? କର୍ଣ୍ଣେଲ ଷ୍ଟେପତ୍‌କରଙ୍କ କଠୋର ଶକ୍ତିର ଛାଇରେ ବସିହୁଅନ୍ତା, ଅନ୍ୟମାନଙ୍କ ଅନାଗ୍ରହରେ ଆଡ଼େଇ ଦେଇ ହୁଅନ୍ତା । କିନ୍ତୁ ଏ ଲୋକଟିକୁ ନେଇ କଣ କରାଯିବ ? ଏହାର ସାନ୍ନିଧ୍ୟ ଅସହ୍ୟ ! ଏ ନିଜଙ୍କ ଭାବରେ ନିଜର ଲମ୍ପଟପଣିଆ ଦେଖାଇ ହୁଏ,—କେମିତି ସେ କେଉଁ ବିଦେଶିନୀ, କେଉଁ ସାଏଗନ୍ ବାସିନୀକୁ ବଶ କଲା, ତା'ର ହୃଦୟ କିଣିନେଲା, ତା'କୁ ନୂତନ ପ୍ରଣାଳୀର ପ୍ରେମ ଶିଖାଇଲା, ଇତ୍ୟାଦି । ଯେପରିକି ସେ ଜଣେ ବିଶିଷ୍ଟ, ବିରାଟ ପ୍ରେମିକ । ପାପର ପ୍ରଗଲ୍‌ଭତା ଦେଖିବାକୁ ଇଚ୍ଛା ଥିଲେ ଧାଙ୍କୁ ଆସି ଦେଖିପାର ।

ଯାହାହେଉ, ଲଞ୍ଚ୍ ଆଡ଼େ ମନ ଦେଲି । ଅନ୍ୟମାନଙ୍କ କଥାକୁ କାନେଇଲି । ଲଞ୍ଚ୍ ସରିଆସିଲାଣି । ଶୁଣିଲି କର୍ଣ୍ଣେଲ୍ ଷ୍ଟେପତ୍‌କର କଣ ଗୋଟାଏ କୋର୍ଟ-ମାର୍ସିଆଲର ଗପ ଶୁଣାଉଛନ୍ତି ପାଖରେ ବସିଥିବା ମେଜର୍ ରାୟ ଓ କ୍ୟାପ୍‌ଟେନ୍ ମଣିଙ୍କୁ । ଆଖି ଜଳଉଠୁଛି ଓ ଓଠକୁ ଭିଡ଼ୁଛନ୍ତି ମଝିରେ ମଝିରେ । ମିଷ୍ଟର୍ ମିରାନୀ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କୁ ସାଏଗନ୍‌ରେ ଭାରତୀୟ ବ୍ୟବସାୟୀର ଦୂରବସ୍ଥା ବୁଝାଉଛନ୍ତି, କିପରି ଭିଏତ୍‌ନାମିଜ୍‌ମାନେ ଅହେତୁ କରି ନୂଆ ସିଲକ୍-ବ୍ୟବସାୟ ଆରମ୍ଭ କଲେଣି ଓ ଲୋକେ ତାଙ୍କଠୁଁ କିଣୁଛନ୍ତି ବେଶି । ଡକ୍ଟର ଗୁପ୍ତା ଆଫ୍ରିକାର 'ବାଣ୍ଟୁ'ମାନଙ୍କ ବିବାହ ପ୍ରଥା ବୁଝାଉଛନ୍ତି । (ଡକ୍ଟର ଦେଶ ବିଦେଶ ବୁଲିଛନ୍ତି ବହୁତ ।) ତେବେ ମନେହେଉଛି ଯେ କଥାରେ ଉତ୍ସାହ ନାହିଁ । ଆରମ୍ଭ କରି ଶେଷ ନ କଲେ ଗତି ନାହିଁ ଏହି ଭାବ । ଶ୍ରୋତା ମାତ୍ର ଜଣେ କ୍ୟାପ୍‌ଟେନ୍ ସହାୟ, ନ ଶୁଣିଲା ପରି ମନେ ହେଉଛନ୍ତି ।

କ୍ୟାପ୍‌ଟେନ୍ ସହାୟ ଶୁଣୁନାହାନ୍ତି । କାହିଁକି ? ଦେଖିଲି ସେ ଝଣ୍ଡେ କାଗଜ,—ଚିଠି ହେବ ପରା—, ମନୋଯୋଗ ସହକାରେ ପଢ଼ୁଛନ୍ତି । ପଢ଼ି ଦେଇ ପକେଟ୍‌ରେ ରଖିଲେ । କିନ୍ତୁ ଏ କ'ଣ ? ସେ ପୁଣି କାଢ଼ି ଦେଖୁଛନ୍ତି ତାକୁ । କୌତୂହଳ ଆସିଲା,—କଣ ସେହି ଜରୁରୀ ମୂଲ୍ୟବାନ୍ ଚିଠି ? ନୂଆ ଶିକାର ? ନୂଆ ଷଡ଼ଯନ୍ତ୍ର ? ହେଲେ ସେ ଗୃହାଣୀ ଦମ୍ଭିଲା ନୁହେଁ, ଉତ୍ତେଜନା ନାହିଁ ସେଥିରେ, ବରଂ ଭାବନାଗ୍ରସ୍ତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଘରୁ ଚିଠି ଆସିଛି ପରା । ହୋଇଥିବ, କିନ୍ତୁ ସେଥିରେ କ୍ୟାପ୍‌ଟେନ୍ ଏତେ ମଜ୍ଜି ଯାଇ ପାରନ୍ତେ ନାହିଁ । ଶୁଣିଛି ତାଙ୍କ ଘରେ ତାଙ୍କର ଜଣେ କାଳୀ ଅସୁନ୍ଦରୀ ସ୍ତ୍ରୀ ରହିଛି (କ୍ୟାପ୍‌ଟେନ୍ ବନ୍ଧୁମାନଙ୍କ ଆଗରେ ସେକଥା କହିବାକୁ ଭୁଲନ୍ତି ନାହିଁ) ଯେ ନିୟମିତଭାବରେ ଚିଠି ଲେଖେ । ଅଫିସର ମହଲର ଆମେଚର ମନସ୍ତତ୍ତ୍ୱବିଦ୍-ମାନେ କହନ୍ତି ଯେ କ୍ୟାପ୍‌ଟେନ୍ ସେଇଥିପାଇଁ ଏପରି ନିଶାରେ ଛିଙ୍ଗ ଧରିଛନ୍ତି,—ସାଏଗନ୍‌ରେ ମିଳିଯାଇଛି ପ୍ରଚୁର ସୁବିଧା, ପ୍ରଶସ୍ତ କ୍ଷେତ୍ର । ତେବେ ମୁଁ ସେଥିରେ

ବିଶ୍ୱାସ କରେ ନାହିଁ । କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ଏହି ଅବସ୍ଥାରେ ଥିଲେ କଣ କରନ୍ତେ ?

ମେଜର୍ ରାସ୍ ହଠାତ୍ ଚଉକି ଛାଡ଼ି ଉଠିଲେ । ପୁଣି ଗୋଟାଏ ଘୋଷଣା ନା କଅଣ ? ଯାହାହେଉ ଭାବି ଖୁସି ହେଲି ଯେ ଲଞ୍ଚ୍ ସରିଗଲାଣି, ଏହି ହେବ ଶେଷ ଘୋଷଣା । ମେଜର୍ ତଣ୍ଟି ସଫା କରି କହି ଚାଲିଲେ,—ସ୍ୱାଧୀନତାର ଜୟ, ସ୍ୱାଧୀନତା ଉତ୍ସବରେ ଭାରତୀୟ ଭାଇମାନଙ୍କୁ ଅଭିବାଦନ, ଉପସ୍ଥିତ ବନ୍ଧୁମାନଙ୍କୁ ଧନ୍ୟବାଦ ଇତ୍ୟାଦି । ତା ପରେ ଟିକିଏ ରହିଯାଇ ଗୋଟିଏ ନୂଆ କଥାର କୌତୂହଳ ବଢ଼ାଇଲା ପରି କୃତ୍ରିମ ଗମ୍ଭୀରତାରେ ଆରମ୍ଭ କଲେ, "ହଁ ଉତ୍ସବ ସରିନାହିଁ । ଦିନ ପଡ଼ିଛି ରାତିଯାଏଁ । ତେଣୁ ମୋର ଭାଇମାନଙ୍କୁ ଅନୁରୋଧ ଓ ସ୍ୱାଗତ ରାତିର ଉତ୍ସବ ପାଳିବା ପାଇଁ । ଉତ୍ସବ ସମବେତ ନୁହେଁ, ଦଳଗତ । କର୍ଣ୍ଣେଲ ଭୋପତ୍‌କର୍ ତାଙ୍କ ବଙ୍ଗଳାରେ ଫିଲ୍ମ ଶୋ' ଦେଖାଇବେ ଓ ତାଙ୍କ ଦୀର୍ଘ ଜୀବନର ବିଚିତ୍ର ଅଭିଜ୍ଞତା ଶୁଣାଇବେ, ମିଷ୍ଟର ମିରାନୀ ତାଙ୍କ ଘରେ ନାଚଗୀତର ଆୟୋଜନ କରିଛନ୍ତି ଓ ତା' ସାଙ୍ଗକୁ ସିନ୍ଧୀ ଡିନର୍, ଡାକ୍ତର ରେଡ୍ଡିଙ୍କ ଘରେ ବ୍ରିଜ୍ ପାର୍ଟି, ଓ କ୍ୟାପ୍‌ଟେନ୍ ସହାୟଙ୍କ ସହଯୋଗରେ କିଛି ନୂଆ ଅଭିଯାନ, "ଏ" କ୍ଲାସ୍, ଆପଣମାନେ ବୁଝି ପାରୁଥିବେ ।

ବିପୁଳ ଲୋଭନୀୟ ନିମନ୍ତ୍ରଣ । ଗହଣରେ ଦ୍ୱିଧା ନାହିଁ, କୁଣ୍ଠା ନାହିଁ କାହାର । ଜଣକପରେ ଜଣେ ଆଗଭର ହୋଇ ନିଜନିଜର ସମ୍ମତି ଓ ଉଦ୍ଦେଶ୍ୟ ଜଣାଇଲେ,—କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କ ଛଡ଼ା । ଦୁର୍ଭାଗ୍ୟ ! ମେଜର୍ ରାସ୍‌ଙ୍କ ଆଖି ପଡ଼ିଲା ମୋ ଉପରେ ଓ ସେ ପଚାରିଲେ, "ମିଷ୍ଟର ଦାସ୍, ଆପଣଙ୍କର ପ୍ଲାନ୍ କେଉଁ ଯାଏଁ ? ଆପଣଙ୍କୁ ଏକୁଟିଆ ହୋଟେଲରେ ବସି ସିଗାରେଟ୍ ଟାଣିବାକୁ ଦିଆଯିବ ନାହିଁ । ଶୀଘ୍ର ଭାବିକରି କୁହନ୍ତୁ ।"

କିଛି ନ କହି ରହିବା ନାହିଁ । ଲକ୍ଷ ଯୋଡ଼ା ଆଖି ମୋ ଆଡ଼କୁ ଚାହିଁଛି ଜଳଜଳ ହୋଇ, ଉତ୍ତର ଶୁଣିବା ପାଇଁ । ଉତ୍ସୁକତା,—ଏ ଲୋକଟି କେଉଁ ପଟରେ ?

ମୁଁ ଜାଣେ ନାହିଁ ମୋ ମନରେ ଏହି ବିପରୀତଭାବ କେଉଁଠୁ ଆସିଲା । ତାହା ମୋର ଅନ୍ତର୍ନିହିତ ପାପର ଲାଳସା, ଗୋଟାଏ କ୍ଷଣିକ ବେପରୁଆ ଦେଖାଇ ହେବା ପଣ, ନା ଆଉ କଅଣ ଜାଣେ ନାହିଁ; ତେବେ ମୁଁ କହିଲି ଯେ ମୁଁ କ୍ୟାପ୍‌ଟେନ୍ ସହାୟଙ୍କ ନିମନ୍ତ୍ରଣ ସ୍ୱୀକାର କରୁଛି ।

ମେଜର୍ ରାସ୍ ଜୋରରେ ପାଟି କରି ଉଠିଲେ, "ହିଅର୍ ହିଅର୍ ।" ଆଉ କେତେ ଆଡ଼ୁ କେତେ ତାଳି ବାଜିଲା । ମୁଁ ଅନାଇଲି କ୍ୟାପ୍‌ଟେନ୍ ସହାୟଙ୍କୁ

ଆଡ଼କୁ, ଦେଖିଲି ସେ ମଧ୍ୟ ମୋ ଆଡ଼କୁ ଚାହିଁଛନ୍ତି । ଆଖିରୁ ସବୁ ଜଦୁଆ ଭାବ ଚାଲିଯାଇଛି, ପାଟି ଅଳ୍ପ ମେଲା ହୋଇଯାଇଛି, —ଆବିଷ୍କାରର ଆନନ୍ଦ ଓ ଆଶ୍ଚର୍ଯ୍ୟ । ତା'ପରେ ସେ ପାଖକୁ ମୁହଁ ଆଣି କହିଲେ, "ମିଷ୍ଟର ଦାସ, ସତରେ ଆପଣ—ମାନେ —ସିରିୟସ୍ ?"

ଉଦାର ଭଙ୍ଗୀରେ ସ୍ମିତହାସ ଦେଇ ମୁଁ କହିଲି, "ହଁ—ଆପଣଙ୍କର ଆପତ୍ତି ନାହିଁ ତ ?"

"ନା—ନା—କଅଣ କହୁଛନ୍ତି ଆପଣ", କ୍ୟାପ୍‌ଟେନ୍ ଖୁବ୍ ଜୋର୍ ଦେଇ କହିଲେ । କିନ୍ତୁ ମୋର ମନେହେଲା ସେ ମୋର ଉତ୍ସାହ ବୁଝି ପାରୁ ନାହାନ୍ତି, ଭାବୁଛନ୍ତି କେଉଁଠି କଣ ରହିଗଲା ।

ହଁ, ମୋର ମନେ ପଡ଼ିଥିଲା କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କ କଥା । ମୁଁ ତାଙ୍କ ମୁହଁକୁ ଭରସି ଚାହିଁ ପାରି ନାହିଁ । ଅଜ ତାଙ୍କର ପୂରା ବିଶ୍ୱାସ ହୋଇଯିବ ଯେ ମୁଁ ଏମାନଙ୍କ ପରି ସହଜ ନୀଚ ବିଳାସୀପସନ୍ଦ କରେ । ଯେ ମୁଁ ସାଏଗନ୍‌ର ହାଓ୍ୱାରେ ଉଡ଼ିଯାଇଛି, ନିଜକୁ ରୋକିବାର ଶକ୍ତି ନାହିଁ, ସାହସ ନାହିଁ ।

ପୁଣି ମୋର ମନେ ପଡ଼ିଥିଲା ଯେ ଆଜି କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କ ନିମନ୍ତ୍ରଣ ଥିଲା । ସେ ଜଣାଇଥିଲେ ଯେ, ସେ ଆଜି "ଆର୍‌କାନ୍‌ସିଆ" (ଅର୍ଥ, ସ୍ୱର୍ଗରୁ ଫାଳେ) ହୋଟେଲକୁ ଯିବେ, ମିଷ୍ଟର ଓ ମିସେସ୍ ପ୍ରସାଦ ତାଙ୍କ ସହିତ ଯୋଗ ଦେବାକୁ ରାଜି ହୋଇଛନ୍ତି । ସେ ଧରି ନେଇଥିଲେ ଯେ ମୁଁ ମଧ୍ୟ ସବୁଥର ପରି ତାଙ୍କ ପିଚ୍ଛା ଧରିବି ଓ ନିଜକୁ ଏହି ଅପୂର୍ବ ଆନନ୍ଦରୁ ବଞ୍ଚିତ କରିବି ନାହିଁ । ସୁନ୍ଦର ସୌଖୀନ ଆର୍‌କାନ୍‌ସିଆ, ନରମ ଆଲୁଅ, ଓରିଏଣ୍ଟାଲ୍ ବାଦ୍ୟ ସଙ୍ଗୀତ, ପ୍ରତି ଟେବୁଲ ପାଇଁ ସ୍ପେଶାଲ ସର୍ଭିସ୍ । କେବଳ ଉଚ୍ଚ ଶ୍ରେଣୀର ଚାଇନିଜ୍ ଓ ଭିଏତ୍‌ନାମିଜ୍‌ମାନେ ସେଠାକୁ ଯାଆନ୍ତି । କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ସ୍ପଷ୍ଟଭାବରେ କହିଲେ ଯେ ଆମେ ଭାରତୀୟ ଭାଇମାନେ ସେଠି ଆସି ପହଞ୍ଚିବାର କୌଣସି ଆଶଙ୍କା ନାହିଁ । କେବଳ ଆମେ ଚାରିଜଣ । କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ କହିବେ, ମିସେସ୍ ପ୍ରସାଦ ଶୁଣିବେ । ମିସେସ୍ ପ୍ରସାଦ କହିବେ, କ୍ୟାପ୍‌ଟେନ୍ ଶୁଣିବେ । ପୃଥିବୀର କଥା, ଜନସମାଜର କଥା, ଭିଏତ୍‌ନାମ୍‌ର ଭବିଷ୍ୟତ କଥା, ଜୀବନମରଣର କଥା । ଏହି ଉଚାଙ୍ଗ ପରିବେଶ ଛାଡ଼ି ମୁଁ ଯାଉଛି କୁଆଡ଼େ ନା କ୍ୟାପ୍‌ଟେନ୍ ସହାୟଙ୍କ ସାଙ୍ଗରେ ରାତିର ଉତ୍ସବ ମନାଇବାକୁ ! ଯାହାହେଉ ମୁଁ ନିଜକୁ ବୁଝାଇ କହିଲି ଯେ ମୁଁ ଯାଉଛି କେବଳ କ୍ୟାପ୍‌ଟେନ୍ ସହାୟଙ୍କ ପାଖକୁ । ସେ ଗୋଟାଏ ଖିଆଲ୍ । ମୁଁ ତାକୁ ଆଗକୁ ବଢ଼ିବାକୁ ଦେବିନାହିଁ ।

…ସନ୍ଧ୍ୟାବେଳେ (କିମ୍ବା ତା' ଆଗରୁ) ମୁଁ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କ ପାଖକୁ ଯାଇନାହିଁ କି ସେ ମୋ ପାଖକୁ ଆସିନାହାନ୍ତି । ଗାର୍ସୋଁକୁ, ଫରାସୀ ଭାଷାରେ ବେଅରର୍‌କୁ ଗାର୍ସୋ କହନ୍ତି—, ପଚାରି ବୁଝିଲି ଯେ ସେ ହେଡ୍‌କ୍ୱାର୍ଟର୍ସ୍ ପାଖକୁ ଯାଇଛନ୍ତି, କହିଛନ୍ତି ଡେରିରେ ଫେରିବେ, ରାତିରେ ଡିନର୍ ବନ୍ଦ ।

…ରାତି ହେଲରୁ ମୁଁ ବାହାରିଲି କ୍ୟାପ୍‌ଟେନ୍ ମହାଶୟଙ୍କ ହୋଟେଲ୍‌କୁ । ସେତେବେଳକୁ କେଜାଣି କାହିଁକି ମୋତେ ଭାରି ହାଲୁକା ଲାଗୁଥାଏ । ମନେ ହେଉଥାଏ ଯେ ସ୍ୱାଧୀନତା ଭୂତ ମୋତେ ବି ଧରିଲାଣି ଆସି । 'ପ୍ରାଚୀର ପାରିସ୍' ସାଏଗନ୍‌ରେ ଉପଭୋଗର ସ୍ୱାଧୀନତା, କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀଙ୍କର କଠୋର ନୀତିବାଦରୁ ଖସି ପଳାଇ ଆସିବାର ସ୍ୱାଧୀନତା । ମଜା ଲାଗୁଥାଏ ସେମିତି ଭାବିବାକୁ, ନିଜକୁ ଅଣ୍ଠା କରି ନିଜର ଅବଗୁଣ ଦେଖିବାକୁ, ସତେ ଯେପରି ମୁଁ ପ୍ରକୃତରେ… ।

ବଡ଼ ସୁରତାଲ ହୋଟେଲ୍ । କୋଠରୀଗୁଡ଼ିକ ଶ୍ରେଷ୍ଠ । କ୍ୟାପ୍‌ଟେନ୍ ଥାଆନ୍ତି ଉପରମହଲର ଗୋଟିଏ କୋଠରୀରେ । ଅନ୍ୟମାନେ କହନ୍ତି ଯେ ସେ ଏହି ରୁମ୍‌ଟିକୁ ବାଛି କରି ନେଇଛନ୍ତି, ନିରୋଳା ହେବ ବୋଲି ।

ମୁଁ ପହଞ୍ଚିଲାବେଳକୁ କ୍ୟାପ୍‌ଟେନ୍ ବେତଚଉକିଟିରେ ବସିଛନ୍ତି, ଟେବୁଲ୍ ଉପରକୁ ଗୋଡ଼ ଲମ୍ବେଇ ଦେଇ । ଟେବୁଲ୍ ଉପରେ ଥୁଆହୋଇଛି ତାଙ୍କର ସବୁ ସନ୍ଧ୍ୟାର ସାଥୀ,—ବୋତଲ ଓ ଗ୍ଲାସ୍ । କ୍ୟାପ୍‌ଟେନ୍ ଛାତକୁ ଅନାଇ ଧୂଆଁ ଛାଡ଼ୁଛନ୍ତି ।

ଗୋଟାଏ ପାଖ ଝରକା ଖୋଲା ହୋଇଛି ! ସ୍ୱାଗତ ସମ୍ଭାଷଣ ପରେ କ୍ୟାପ୍‌ଟେନ୍ ବେଶ୍ କିଛି ସମୟ ଝରକା ବାଟେ ଦୂରକୁ ଅନାଇଲେ ଓ ମୁଁ ମଧ୍ୟ ତାଙ୍କର ଦୃଷ୍ଟିର ଅନୁସରଣ କଲି ।

ପାଣିର ଲମ୍ବା କଳା ସୂତାର ପରସ୍ତେ, 'ସାଏଗନ୍' ନଈ । ସେଥିରେ ବିଶ୍ରାମ ନେଉଛି ଗୋଟିଏ ବିଦେଶୀ ଜାହାଜ, କେତେ ରଙ୍ଗର କେତେ ଆଲୁଅ ଝଙ୍କି ମାରୁଛି । ଆକାଶରେ ଜହ୍ନ, ଆଲୁଅ ଗୋଳେଇ ହୋଇଯାଇଛି ମେଘ ସାଙ୍ଗରେ । ପବନ ଝାଳ ଜଣାଇ ଦେଉଛି ସେ ଅଛି ବୋଲି । …କେଜାଣି କାହିଁକି ମୋର ଇଚ୍ଛା ହେଲା ଯେ ଜହ୍ନ ଫୁଟି ଉଠନ୍ତା ଆଲୁଅ ଉଚ୍ଛୁଳେଇ ଦେଇ, ପବନ ଝେଲି ବହନ୍ତା, ଜାହାଜ ସୁସୁର ବଜାନ୍ତା ଦୂରକୁ ଯିବ ବୋଲି, ଏବଂ କ୍ୟାପ୍‌ଟେନ୍ ମହାଶୟ ଉଠି ଛିଡ଼ା ହୁଅନ୍ତେ ଯୋଦ୍ଧା ବେଶରେ । ମୋର ଇଚ୍ଛାହେଲା କ୍ୟାପଟେନ୍ ମହାଶୟଙ୍କୁ ସେହି ଅନ୍ୟ ରୂପରେ ଦେଖିବା ପାଇଁ—ସେହି ତାଙ୍କର ସ୍ୱାଭାବିକ ରୂପ । ହଠ, ଗୁଳି, ମାଡ, ହାଡ ଖେଳେଇ ଦିଅ, ବୋତଲ ସରିଗଲାତ ଆସୁ ଆଉ ଗୋଟାଏ । ସେ ନିଷ୍ଠୁର ଭଳି ସେମିତି ଥିଲେ ।

ଲମ୍ବା ଚଉଡ଼ା ଚେହେରା, ଠାଣି ଅଛି, କଦମଣ ଅଛି ଦେଖିରେ; କିନ୍ତୁ କର୍ଣ୍ଣେଲ ଷ୍ଟେପଲ୍ଟନଙ୍କ ପରି ଲୁହେଁ, ରୁକ୍ଷତା ନାହିଁ । ସେ ହସି ହସି ଆଦେଶ ଦେଇ ପାରିବେ, ଉପଦେଶ କରି ପାରିବେ, ଚାଆଡ କରି ଭାଙ୍ଗି ଦେଇ ପାରିବେ । ଆଜି କିନ୍ତୁ ସେହି ପୁରୁଷକାର ଫୁଟି ଉଠୁ ନାହିଁ । ଉପଦେଶ ଅଲସୁଆ ହୋଇଯାଇଛି, ଗୋଟାଏ ବୋତଲ ଯୁଟେ ଲଗୁଚି, ଦରକାର ନ ହେଲେ ଆଖି ବୁଜି ହୋଇ ରହିବାକୁ ଚାହୁଁଛି । ନା, ଏହି କ୍ୟାପଟେନ୍ ସହାୟଙ୍କୁ ଚେଇଁବାକୁ ପଡ଼ିବ, ଉଠିବାକୁ ପଡ଼ିବ, ପାପ ପାଇଁ ହେଉ ବା ପୁଣ୍ୟ ପାଇଁ । ମୋର ମନେହେଲା ମୁଁ ଆସିଛି ତାଙ୍କୁ ପ୍ରେରଣା ଦେବା ପାଇଁ ।

ହଠାତ୍ କ୍ୟାପଟେନ୍ ଉହୁଙ୍କି ଆସି ଜରୁରୀ ପ୍ରଶ୍ନ ବାଛିଲା ପରି ପଚାରିଲେ, "ମିଷ୍ଟର୍ ଦାସ, ଆପଣ ବିହାର ଯାଇଛନ୍ତି ?"

"ବିହାର ? ମାନେ ବିହାର ପ୍ରଦେଶ ? ପାଟଣା, ମୁଜାଫରପୁର— ?"

କ୍ୟାପଟେନ୍ ହସିକରି ମୁଣ୍ଡ ଟୁଙ୍ଗାରିଲେ । ମୁଁ କହିଲି, "ହଁ ଯାଇଛି । ମୁଁ ପାଟଣାରେ ପାଠ ପଢ଼ିଛି, ରାଞ୍ଚିରେ ଚାକିରି କରିଛି, ଛୋଟନାଗପୁର ଜଙ୍ଗଲ ବୁଲିଛି··· ।"

କ୍ୟାପ୍ଟେନ୍ ଖୁସିହେଲା ପରି ଜଣା ପଡ଼ିଲେ, ଆଗ୍ରହଭରା ସ୍ୱରରେ ପଚାରିଲେ "ଶାହାବାଦ ଜିଲ୍ଲା ଦେଖିଥିବେ ତାହାହେଲେ ? ଆରା, ଶାହାବାଦ ?"

ତାଙ୍କୁ ନିରାଶ କରିବାକୁ ଇଚ୍ଛା ନ ଥିଲେ ମଧ୍ୟ ବାଧ୍ୟହୋଇ କହିଲି, "ନା, ସେ ଆଡ଼କୁ ଯିବାର ସୁଯୋଗ ପାଇ ନାହିଁ ।"

"ଆଃ,—ଆପଣ କିଛି ଦେଖିନାହାନ୍ତି ତାହାହେଲେ । କ୍ୟାପଟେନ୍ ଚଉକିରେ ଆଉଜିଗଲେ, ସେଇଠୁ କଥା ସରିଗଲା ପରି । କିନ୍ତୁ କ୍ଷଣକ ପରେ ପୁଣି ଆରମ୍ଭ କଲେ, "ଜାଣନ୍ତି ? ପଞ୍ଜାବକୁ ଛାଡ଼ିଦେଲେ ଭାରତର ଅଧିକାଂଶ ଜବାନ୍ ଏହି ଅଞ୍ଚଳରୁ ଆସିଛନ୍ତି । ମୁଁ ବଢ଼େଇ କହୁନାହିଁ, ବୀରଭୂମି ଯଦି କାହାକୁ କୁହାଯାଏ— । ୧୮୫୭ ଠାରୁ ଆରମ୍ଭ କରି ୧୯୪୨ ପର୍ଯ୍ୟନ୍ତ ଏଠିକାର ଲୋକେ ଆଗୁଆ ହୋଇ ବାହାରିଛନ୍ତି, ଶତ୍ରୁ ସାଙ୍ଗରେ ମୁହାଁମୁହିଁ ଲଢ଼ିଛନ୍ତି··· ।"

କ୍ୟାପଟେନ୍ ସହାୟଙ୍କର ଏହି ଉତ୍ସାହ ଦେଖିବାକୁ ଭଲ ଲାଗିଲା, କିନ୍ତୁ କାରଣ ବୁଝିପାରିଲି ନାହିଁ । ଶାହାବାଦ ଜିଲ୍ଲାରେ ତାଙ୍କ ଘର ନିଶ୍ଚୟ,—ତେବେ ହଠାତ୍ ଏହି ମମତାର ଆବେଗ କାହିଁକି ? ଶାହାବାଦ ସାଙ୍ଗରେ ମୋର ଖାଲି ମନରେ ଆସୁଥାଏ ଶାହାବାଦୀ ଠେଙ୍ଗା, —ଟାଣୁଆ ମୋଟା ଠେଙ୍ଗା, ମୋଟା ବୁଦ୍ଧି ।

ମୋର ଭାବନା ବୁଝିପାରିଲା ପରି ସେ କହିଲେ, "ପାଟଣାର ସହରବାବୁମାନେ ଆମକୁ କହନ୍ତି ମଫସଲି, ବୁଝ୍‌ । କାହିଁକି ନା ଆମର ବାହାର ଚକମକ ନାହିଁ, ଆମର ମୁହଁରେ ଗୋଟିଏ କଥା ପେଟରେ ଗୋଟିଏ କଥା ନାହିଁ । ଯାହା କହୁ ଷ୍ଟ୍ରେଟ୍‌ଟୋକ୍‌ କଥା । କଲ୍‌ ଏ ସ୍ପେଡ୍‌ ଏ ସ୍ପେଡ୍‌ । ଆମେ ବଡ଼ ବଡ଼ କଥା କହୁନାହିଁ, ସେଣ୍ଟିମେଣ୍ଟ୍‌ ଦେଖାଇ ହେଉ ନାହିଁ । ଅମେ ଯାହା ସେଇୟା କରୁ, ସେଇୟା କହୁଁ ।"

କ୍ୟାପଟେନ୍‌ କହିଚାଲିଲେ, "ମୋର ସାଏଗନ୍‌ ଆସିବାର ପ୍ରାୟ ବର୍ଷେ ହୋଇଗଲା । ମୋର ଏଠିକା କାରବାର ସମସ୍ତେ ଜାଣନ୍ତି, ମୁଁ କାହାକୁ ଲୁଚାଇ ନାହିଁ । ମୋତେ ଯାହା ଭଲ ଲଗେ ସେଇୟା କରୁଛି, ସମସ୍ତଙ୍କୁ ଜଣାଇ ପାଟିକରି କହୁଛି । ମୁଁ ସୁଖ କରୁଛି, କାଳୁ ଚୋରଙ୍କ ପରି ନୁହେଁ । ଅନ୍ୟମାନେ ସେଇୟା କରିବେ, କିନ୍ତୁ ଢଙ୍ଗ କରିବେ ମୋଠୁଁ ନୂଆ କଥା ଶିଖିଲା ପରି, ଅଉ ଆଙ୍ଗୁଳି ଦେଖାଇବେ ମୋରି ଆଡ଼େ । ଭଦ୍ରଚୋର ସବୁ, ହିପକ୍ରିଟ··· ।"

ଏହି ଧାରରେ କିଛି ସମୟ କହି ସାରିଲା ପରେ ସେ ଗ୍ଲାସ୍‌ରେ ଟିକିଏ ଚୁମୁକ ଦେଇ ବିଶ୍ରାମ ନେଲେ । ମୁଁ ଟେବୁଲ ଉପରେ ରଖା ହୋଇଥିବା ଟାଇମ୍‌-ପିସ୍‌ ଆଡ଼କୁ ଅନେଇଲି । ଡକ୍ଟର ଗ୍ରେପ୍ରାଙ୍କ ବ୍ରିଜ୍‌ପାର୍ଟି ଜମି ଆସିଥିବ । ମିଷ୍ଟର୍‌ ମିତ୍ରଙ୍କ ଘରେ ଭରତନାଟ୍ୟ ନୃତ୍ୟର ତାଳେ ତାଳେ କେତେ ରସରସିଆ କଥା ପଡ଼ୁଥିବ । କର୍ଣ୍ଣେଲ ଭୋପତ୍‌କର୍‌ ଟେବୁଲରେ ହାତ ବାଡ଼େଇ କଥା ଛିଣ୍ଡାଉ ଥିବେ,—ଜଣେ କାହାର ହାରିବାର, ଛଟେଇ ହେବାର, ଅପମାନ ପାଇବାର କଥା । ଭୋପତ୍‌କର୍‌ ତା'କୁ ପାନେ ଦେଇଛନ୍ତି, ଟେକ୍‌ ଶିଖାଇଛନ୍ତି, ତା' ଗୃନ୍ଥିର ବେକ ମୋଡ଼ି ଦେଇଛନ୍ତି ଏବଂ କ୍ୟାପ୍‌ଟେନ୍‌ ଚକ୍ରବର୍ତ୍ତୀ···ଆର୍କାନ୍‌ସିଆ ହୋଟେଲ୍‌···ମିସେସ୍‌ ପ୍ରସାଦ୍‌ । ଗୁଡ଼, ତାର ମୂଲ୍ୟ ନଥାଏ । ମୁଁ ଟିକିଏ ବ୍ୟସ୍ତ ହେଲାପରି ହେଲି,— କ୍ୟାପ୍‌ଟେନ୍‌ଙ୍କୁ ଜଣାଇଦେବା ପାଇଁ ଯେ ମୋ'ତ ଏ ଉପକ୍ରମଣିକା, ତାଙ୍କର ଏହି ଅଯଥା ସଫେଇ ଭଲ ଲାଗୁନାହିଁ, ମୁଁ ଏଇଥିପାଇଁ ଆସି ନ ଥିଲି ।

ସେ ମୋର ବ୍ୟସ୍ତତା ଦେଖିଲେ, କହିଲେ, "କଣ ବିଶେଷ ଡେରି ହୋଇ-ଗଲାଣି,—ନାହିଁ ତ ?" ତା'ପରେ ଗୋଟାଏ ବିରାଟ ହସ ଦେଇ କହିଲେ, "ମିଷ୍ଟର୍‌ ଦାସ, ମୁଁ ଜାଣି ନ ଥିଲି ଯେ ଆପଣଙ୍କର ଏ ଆଡ଼େ ଝୁଙ୍କ୍‌ ଅଛି । ଭାବିଥିଲି କ୍ୟାପଟେନ୍‌ ଚକ୍ରବର୍ତ୍ତୀର ପଣତକାନରେ ବନ୍ଧା ହୋଇଥିବେ ସବୁଦିନେ । କ୍ୟାପଟେନ୍‌ ଚ-କ-ର୍‌-ବରତ । ହମ୍‌ବଗ୍‌ ! ଭାବୁଛି ତା' ସ୍ତ୍ରୀ ମରିଯାଇଛି ବୋଲି କିଛି ଗୋଟାଏ ବଡ଼ କଥା କରିଛି ।" ତା'ପରେ ପୁଣି ହସ ।

ମୋତେ ରାଗ ଲାଗିଲା । କାହିଁକି ଏହି ଅଭଦ୍ର ଅଶ୍ଳୀଳ ଲୋକଟା ପାଖକୁ ଆସିଥିଲି ? ଭାବିଲି ଶୀଘ୍ର ମାନ ବଞ୍ଚାଇ ଖସିଯିବା ଭଲ ।

କ୍ୟାପଟେନ୍‌ଙ୍କ ମୁହଁରେ ହସ ସର ନାହିଁ । ହସିଲ ମୁହଁରେ ମୋ ଆଡ଼କୁ ସିଧା ଚାହିଁ ସେ କହିଲେ, "ଜାଣନ୍ତି, ମୋର ସ୍ତ୍ରୀ ମରିଗଲେ କଣ କରନ୍ତି ? ହୁଏ ନ ଯାଉଣୁ ଆଉ ଗୋଟିଏ ସ୍ତ୍ରୀ ଖୋଜି ବସନ୍ତି, ଯେ ଆହୁରି ସୁନ୍ଦରୀ ହୋଇଥିବ, ଅହୁରି ମନ ନେଇ ପାରୁଥିବ । ଆଉ ପୋଷିବାର କ୍ଷମତା ନ ଥିଲେ ଏକୁଟିଆ ଫୁର୍ତ୍ତି କରି ବୁଲନ୍ତି । କିଓ, ଏଥିରେ ଲୋକ ଦେଖାଣିଆ ସେଣ୍ଟିମେଣ୍ଟ୍ କାହିଁକି ? ଭଗବାନ ସେଣ୍ଟିମେଣ୍ଟ୍ ତିଆରି କରିଛନ୍ତି ସୁଖକୁ ବଢ଼ାଇବା ଲାଗି, କମେଇବା ପାଇଁ ନୁହେଁ ।"

କ୍ୟାପଟେନ୍ ସହାନ୍ଧୁଙ୍କର ଜୀବନ ଦର୍ଶନ । ଲଙ୍କାରେ ହରିନାମ । ନା, ଏଥର ଉଠିବାକୁ ପଡ଼ିବ । ମୁଁ ଉଠି ଛିଡ଼ା ହେଲି, ଶୁଷ୍କ ଭଦ୍ର ଭଙ୍ଗୀରେ କହିଲି, "ଆଚ୍ଛା, ମୁଁ ତାହାହେଲେ ଆସୁଛି, ମୋର ଟିକିଏ କାମ ଅଛି, ପୁଣି ଆସିବି କେବେ ।" ସତେ ଯେପରି ମୁଁ ଆସିଥିଲି ଖାଲି ଆଳାପ ପରିଚୟ ପାଇଁ ।

"ଏଁ, ଏ କଣ କହୁଛନ୍ତି ?" ଅପ୍ରସ୍ତୁତ ହୋଇଗଲା ପରି କ୍ୟାପଟେନ୍ ଉଠି ପଡ଼ିଲେ ଓ ମୋ ହାତକୁ ଧରି ଚଉକିରେ ବସାଇ ଦେବାର ଉଦ୍ୟମ କଲେ, "ଏ ଗୋଟାଏ କଥା ? କ୍ୟାପଟେନ୍ ସହାନ୍ଧୁ ପାଖକୁ ଆସି ଏମିତି ଫେରିଯିବେ, ପୁଣି ଆଜିପରି ଦିନରେ ? ଅସମ୍ଭବ ।"

ମୁଁ ବାଧ୍ୟ ହୋଇ ବସି ପଡ଼ିଲି । ମୋତେ କଥା କହିବାକୁ ସମୟ ନ ଦେଇ ସେ କହି ଚାଲିଲେ, "ଶୁଣନ୍ତୁ, ଆଜି ଡ୍ରଇଂରୁମ୍‌ରେ ସ୍ପେଶାଲ୍ ପ୍ରୋଗ୍ରାମ୍ ଅଛି । ମିସ୍ ସିସିଲିଆ, ନାଁ ଶୁଣିନାହାନ୍ତି ବୋଧହୁଏ (ଅଳୁଚ ହସ) । ଇଉରୋପିଆନ୍ ନାଁ, କିନ୍ତୁ କାମ୍ବୋଡ଼ିଆର ଝିଅ । ବାପା ଫ୍ରେଞ୍ଚ୍, ମା କାମ୍ବୋଡ଼ିଆନ୍,—ରାଜବଂଶୀୟ, ହୋଟେଲ୍‌ର ପ୍ରସିଦ୍ଧ ଅତର ଟଏଲେଟ୍ ଦୋକାନର କର୍ତ୍ତ୍ରୀ । ... ସିସିଲିଆ ଏଠିକାର ସାଧାରଣ ଝିଅଙ୍କ ପରି ନୁହେଁ । କାମ୍ବୋଡ଼ିଆର ଝିଅମାନଙ୍କ ପରି ଚଉଡ଼ା ଫୁଲଧଡ଼ିଦିଆ ସାରଙ୍ଗ ପିନ୍ଧେ, ଗୁଡ଼ି ଉପରକୁ ବନ୍ଧା ହୋଇଥାଏ, ମୁଣ୍ଡବାଳ ଅନାବନା ହୋଇ ଉପରକୁ ପଡ଼ିଥାଏ ଫ୍ରେଞ୍ଚ ଗାର୍ଲଙ୍କ ପରି । ଆଉ ତା' ହସ, ତା' କଥା,—କଅଣ କହିବି । ମୁନିଋଷିଙ୍କୁ ପାଗଳ କରିଦେବ । ଝିଅଟାର ଠାଣି ଅଛି, ସ୍ପିରିଟ୍ ଅଛି, ଏମିତି ସାଧାରଣ ଲୋକଙ୍କୁ ପାଖରେ ପୂରାଏ ନାହିଁ... ।"

ମୁଁ ଶୁଣି ଯାଉଥାଏ । ଭାବୁଥାଏ ଯେ ଏଥର କିଛି ହେଲା । ମୋର ଜିଜ୍ଞାସା ଭେଙ୍କିଲା ରହିବ ନାହିଁ । ମୁଁ ଦେଖିବାକୁ ଅପେକ୍ଷା କଲି ଯେ ସେ ସେହି ଝିଅ ସାଙ୍ଗରେ କେମିତି କଥା କହିବେ, କେଉଁ ଢଙ୍ଗ କେଉଁ ଚାତୁରୀରେ ଉପଭୋଗକୁ ଆଗେଇବେ । ଦେଖିବା ସେ କଣ ନେଇ ନିଜକୁ, ନିଜର ପାପକୁ ଦେଖାଇ ହୁଅନ୍ତି, ସେଥିରେ ଅଛି କେଉଁ ଆର୍ଟ କେଉଁ ସୁନ୍ଦର ପଣ !

"…ସେ ସାଧାରଣ ଝିଅ ନୁହେଁ । ତାକୁ ଟଙ୍କା ଦେଇ କିଣି ହେବ ନାହିଁ; କିନ୍ତୁ ସେ ଯାହାକୁ ପସନ୍ଦ କରେ ତା'ର ଗୋଟିପଣେ ହୋଇଯାଏ । ମୁଁ ଜାଣେ ସେ ଆପଣଙ୍କୁ ପସନ୍ଦ କରିବ । ତା'ର ହସ ତା'ର ପିଲାଳିଆମି ଆପଣଙ୍କର ଗମ୍ଭୀରତାକୁ ଉଡ଼େଇଦେବ, ତା' ସାଙ୍ଗରେ ଲୁଚକାଳି ଖେଳିବ ।

ମୁଁ ଜାଣେ ସେ ଆପଣଙ୍କୁ ପସନ୍ଦ କରିବ । ମୁଁ ଖଣ୍ଡେ ଚିଠି ଲେଖି ଦେଉଛି, ମୋର ବନ୍ଧୁ ବୋଲି ପରିଚୟ କରାଇ ଦେଉଛି । ତା'ପରେ ଆପଣ ଯିବେ, ତା'ର ଠିକଣା ହେଉଛି,—"

କଥାର ସୂଅରେ ମୁଁ ହଠାତ୍ ଧରିପାରିଲି ନାହିଁ ଯେ ସେ କଣ କହୁଛନ୍ତି । ତା'ପରେ ବୁଝିକରି ମଧ୍ୟ ବୁଝିପାରିଲି ନାହିଁ । କଣ କହୁଛନ୍ତି ସେ ? ମୁଁ ଠିକଣା ନେଇକରି ଯିବି, ଏକୁଟିଆ ? ମୋତେ ପରୀକ୍ଷା କରୁଛନ୍ତି ? କଣ ବୋଲି ଭାବୁଛନ୍ତି ମୋତେ ?

ମୋର ବିରକ୍ତି ଓ ବିମୂଢ଼ଭାବ ତାଙ୍କ ଆଖିରେ ପଡ଼ିଲା ନିଶ୍ଚୟ । ପିଲାର ଡର ଭାଙ୍ଗିଲା ପରି ସେ ଗୋଟିଏ ପୁରୁଖା ହସ ହସିଦେଇ କହିଲେ, "ଆପଣଙ୍କର ବ୍ୟସ୍ତ ହେବାର କିଛି ନାହିଁ । ସେ ଭାରି ଭଲ ଝିଅ । ମୋର ପୂର୍ଣ୍ଣ ଧାରଣା ଯେ ସେ ଆପଣଙ୍କୁ ନିଜର କରି ନେବ ।"

"କିନ୍ତୁ ଆପଣ,—ମାନେ,—ଆପଣ ଯିବେ ନାହିଁ ମୋ ସାଙ୍ଗରେ ?" ମୁଁ ବାଧ୍ୟ ହୋଇ ପଚାରିଲି ।

"ନା, ମୁଁ ଯାଏ ନାହିଁ ।" ସେ କହିଲେ ସହଜ ଅଥଚ ଦୃଢ଼ ସ୍ୱରରେ ।

"କାହିଁକି ?"

"ଏମିତି । ସବୁଦିନେ କଣ ସବୁକଥା ଭଲଲାଗେ ? ଇଚ୍ଛା ନାହିଁ । ଆଜି ଆପଣଙ୍କର ଦିନ ।"

ମୋତେ ଭଲ ଲାଗିଲା ନାହିଁ । ତାଙ୍କ କଥାରେ ସବୁ ସତ ଥିଲା ପରି ଲାଗିଲା ନାହିଁ । ଯାହାହେଉ ନିଜକଥା ପରିଷ୍କାର କରିଦିଏ । କହିଲି, "କ୍ୟାପଟେନ୍, ମୁଁ ଆପଣଙ୍କ ପାଖକୁ ଆସିଥିଲି, ଆପଣଙ୍କ ସାଙ୍ଗରେ ଘଣ୍ଟେ ବିତାଇବାକୁ,—ସିସିଲିଆ ସାଙ୍ଗରେ ନୁହେଁ । ମୁଁ ଆପଣଙ୍କ ପାଖକୁ ଆସିଥିଲି । ଆପଣଙ୍କ ପାଖରୁ ଫେରିଗଲେ ମୋ ହୋଟେଲ୍‌କୁ ଯିବି, ଅଥଚ ଆପଣ କହିଲେ ଏଇଠି ଆହୁରି ବସିରହିବ କିଛି ସମୟ ।"

କ୍ୟାପଟେନ୍ ଆଶ୍ଚର୍ଯ୍ୟ ହେଲା ପରି ଚାହିଁଲେ ମୋ ଆଡ଼େ । ତାଙ୍କ ଓଠରେ ମୃଦୁ ହସଟିଏ ପ୍ରସାରିତ ହେଲା; କିନ୍ତୁ ସେ କିଛି କହୁନାହାନ୍ତି । ମନେହେଲା ସେ

କିଛି କହିପାରୁ ନାହାନ୍ତି, ଲଜସ୍ ହୋଇ ଯାଉଛନ୍ତି, ମୁଁ କେବଳ ତାଙ୍କ ପାଖରେ ବସି ରହି ସମୟ ବିତେଇବାକୁ ଚାହେଁ ଏହି ନୂଆ କଥାଟି ବୁଝିପାରୁ ନାହାନ୍ତି ।

କିଛି ସମୟ ହସିଲା ମୁହଁରେ ସେମିତି ଅନେଇ ରହି ସେ କହିଲେ, "ୱେଲ୍—ୱେଲ୍—" ଓ ଚଉକିକୁ ଆଉଜିଗଲେ ।

ତା'ପରେ ନୀରବତା ।

ମୋତେ ଅସ୍ୱସ୍ତି ଲାଗିଲା । କ୍ୟାପ୍‌ଟେନ କିଛି କହୁନାହାନ୍ତି କାହିଁକି ? କଥାର ଧାରା ବୋଧହୁଏ ବଦଳିଯାଇଛି, ଆଉ କଅଣ କହିବାକୁ ହେବ ବୁଝିପାରୁ ନାହାନ୍ତି,—ନା କଅଣ ? ଶେଷକୁ କିଛି ହେଲେ କହିବାକୁ ହେବ ଭାବି ମୁଁ ଆରମ୍ଭ କଲି, "ଇଣ୍ଡିଆକୁ ଫେରିଗଲେ ମୋର ବୋଧହୁଏ ପାଟଣାକୁ ବଦଳି ହେବ । ଅଧା-ସତ ଅଧା-ମିଛ ଗୋଟାଏ ଶୁଣା ଖବର କହି ପକାଇଲି । ବୋଧହୁଏ ସେ ଏହି ଖିଅ ଧରି ପୁଣି କିଛି ବଖାଣିବେ ନିଜ ଘରକଥା, ନିଜ କଥା ।

ମୋର ଅନୁମାନ ଭୁଲ୍ ନ ଥିଲା; କିନ୍ତୁ ମୁଁ ଭାବି ନ ଥିଲି କ୍ୟାପ୍‌ଟେନ୍ କ୍ୟାପଟେନ୍ ଏମିତି ଚେଇଁ ଉଠିବେ ବୋଲି । ସେ ହଠାତ୍ ଚଉକିରେ ସିଧା ହୋଇ ବସି କହିଲେ, "ସତରେ ? ଗୁଡ୍ ! ୱାଣ୍ଡରଫୁଲ୍ ! ତାହାହେଲେ ଆପଣ ନିଶ୍ଚୟ ଆସିବେ ଆମ ଘରକୁ । ବେଶି ଦୂର ନୁହେଁ, କିଛି ଅସୁବିଧା ନାହିଁ । ରୁହନ୍ତୁ ଆପଣଙ୍କୁ କହୁଛି କେମିତି ଆସିବେ—"

ସେଇଠୁ ସେ କହି ଚାଲିଲେ ତାଙ୍କ ଘରକୁ ଯିବାକୁ ହେଲେ କେଉଁ ବାଟେ ଯିବାକୁ ହେବ । ଟ୍ରେନ୍, ବସ୍, ଷ୍ଟିମର୍ ଦ୍ୱାରା ପ୍ରାୟ ଶହେ ମାଇଲ୍ ଗଲେ ପଡ଼ିବ ତାଙ୍କର ଗାଆଁ, କ୍ୟାପଟେନ୍ ମହାଶୟଙ୍କର ଜନ୍ମସ୍ଥଳୀ । ଗାଁର ନାଆଁ ହେଗଲ୍ ।

ସେ ନାଆଁରେ କବିତା ନ ଥିଲା, କି ସେଠିକି ଯିବା ବାଟର ବର୍ଣ୍ଣନାରେ ଉପଭୋଗ୍ୟ ବସ୍ତୁ କିଛି ନ ଥିଲା; କିନ୍ତୁ କ୍ୟାପ୍‌ଟେନ୍ ମହାଶୟଙ୍କର ଉତ୍ସାହକୁ ଅବହେଳା କରି ହୋଇ ନ ଥାଆନ୍ତା । ମୁଁ କହିଲି, "ହଁ ମୁଁ ଯିବି, ନିଶ୍ଚୟ ଯିବି । ମୋର ସେ ଆଡ଼େ ଟୁର୍ ପଡ଼ିବାର ସମ୍ଭାବନା ଅଛି ।"

"ସେ ଏମିତି କିଛି ବଡ଼ ଗାଆଁ ନୁହେଁ । ବଡ଼ କୋଠା ନାହିଁ, ସିନେମା ନାହିଁ, ବଜାର ନାହିଁ । ହେଲେ ସେ ଠାଆଁ ଭଲଆ ଗାଆଁ । ଗଛ ଅଛି । ପୋଖରୀ ଅଛି । ଆଉ ପାଣି ଅଛି, ପବନ ଅଛି, ହାଃ, ହାଃ, ବୁଝିଲେ ?" ତାଙ୍କ କହିବାର ଭଙ୍ଗୀରେ ଥିଲା ଯେ ସେ କିଛି ବଢ଼େଇ କରିବାକୁ ଯାଉନାହାନ୍ତି । କଲ୍ ଏ ସ୍ପେଡ୍ ଏ ସ୍ପେଡ୍ ।

ଅବହେଳିତ ପାନୀୟ ଗ୍ଲାସରେ ଥରେ ଚୁମୁକ ଦେଇ ସେ ଆଖି ବୁଜି ଆଣିଲେ । ଅଧ ମିନିଟିଏ ତା'ପରେ ପୁଣି ଆରମ୍ଭ କଲେ—

ଆପଣ କେବେ ଆସିବେ ? ଖରାଦିନ ଆଗରୁ ନୁହେଁ ବୋଧହୁଏ । ଯାହାହେଉ ହେମନ୍ତକବେଳକୁ ଆସନ୍ତୁ । ଭୋଗଲ୍‌ର ସ୍ବାଦ ପାଇବେ, ଆଉ ଥଣ୍ଡା ପବନ । ମିଛ କହୁନାହିଁ, ଭାରି ଭଲ ଲାଗିବ । କେତେ ଜାତିର ଆମ୍ବ ପାଇବେ,—ପ୍ରଚୁର—ସକାଳୁ ସଞ୍ଜ ଯାଏ ଖାଇଲେ ସରିବ ନାହିଁ ।

ଟିକିଏ ରହି,—“ଆଃ ! ଆମର ସେ ଗାଆଁ ପୋଖରୀ । ସେ ପାଣିରେ ବୁଡ଼ି ପଡ଼ିଲେ ସବୁ ଭୁଲିଯିବେ । ଖରାବେଳେ ଗାଧୋଇ କରି ଆସିବେ । ଆଉ ତା' ପରେ ମଧ୍ୟାହ୍ନ ଭୋଜନରେ ବସିଯିବେ,—ଲଞ୍ଚ୍‌—ବୁଝିଲେ ନା, ବଢ଼ିଆ ବୁଟ ଛତୁ, ପୋଖରୀରୁ ଧରା ହୋଇଥିବା ତାଜା ମାଛଭଜା ହୋଇଥିବ, ଆଉ ଆମ ଦେଶୀ ପାନୀୟ,—ଖାହାବାହା, ପୂରା ସ୍ବଦେଶୀ । ପୁଣି ତା' ସାଙ୍ଗକୁ ଅଚାର, ସେ ନିଜ ହାତରେ କରିଥିବ । ରାଜେଶ୍ବରୀ । ବୁଝିଲେ ନା—”

ଛତୁ···ମାଛ···ତାଡ଼ି···ଆଚାର । ପାଟିରୁ ଲାଳ ବୋହିଲା ନାହିଁ, କିନ୍ତୁ ହସି ପାରିଲି ନାହିଁ । ଏ ମଧ୍ୟ ଗୋଟାଏ ଧରଣର ଉପଭୋଗ, କ୍ୟାପ୍‌ଟେନ୍‌ ମହାଶୟଙ୍କ ପସନ୍ଦ । ରାଜେଶ୍ବରୀ ତା' ନିଜ ହାତରେ କରିଥିବ । ରାଜେଶ୍ବରୀ କିଏ,—ମିସେସ୍‌ ମହାଶୟ ? କ୍ୟାପ୍‌ଟେନ୍‌ ମହାଶୟଙ୍କର କାଳୀ ଅସୁନ୍ଦରୀ ଧର୍ମପତ୍ନୀ ? ମୋର କଳ୍ପନାରେ କିଛି ଖାପ୍‌ଛଡ଼ା ଲାଗିଲା ନାହିଁ, ସବୁ ଏକାଠି ମିଶିଗଲେ,—କାଳୀ··ପଙ୍କୁଆ ପୋଖରୀ···ସଜ ମାଛ, ଆଇଁଷ କାଢ଼ି ଚକ୍‌ ଚକ୍‌ କରୁଛି···ଆଉ ମାଟି ଗ୍ଲାସରେ ଭୁଟୁଭୁଟୁକା ଫେଣୁଆ ଦେଶୀ ମଦ । ତମସାର ମହୋତ୍ସବ ।

କ୍ୟାପଟେନ୍‌ ଟିକିଏ ଉପରକୁ ଅନାଇ କିଛି ଉଠି ସ୍ମୃତିରୁ ଆନନ୍ଦ ପାଇଲା ପରି, “ରାଜେଶ୍ବରୀ କିଏ ଜାଣନ୍ତି ? ମୋ ସ୍ତ୍ରୀ ।” କହି ହସି କରି ଅନେଇଲେ ମୋ ମୁହଁକୁ । କଣ ହେଲା ? କ୍ୟାପଟେନ୍‌ ମହାଶୟଙ୍କର ଗୋଟିଏ ସ୍ତ୍ରୀ ଅଛି, ନାଁ ତାର ରାଜେଶ୍ବରୀ । କଣ ହେଲା ସେଇଠୁ ? ସେଥିରୁ କେଉଁ ନୂଆ ରସର ସଞ୍ଚାର ହେଲା ?

କ୍ୟାପ୍‌ଟେନ୍‌ ସେହି ଆବିଷ୍ଟ ଗୃହାଣୀରେ କହିଲେ, “ମୋ ସ୍ତ୍ରୀଙ୍କୁ ଦେଖିବେ ଆପଣ । ମୋଟେ ସୁନ୍ଦର ନୁହେଁ,—ବୁଝିଲେ ?” ମନେ ହେଲା ସେ ପୁଣି ତାଙ୍କର ମତବାଦକୁ ଘୋଷଣା କରୁଛନ୍ତି,—କାଲ ଏ ସ୍ପେଡ୍‌ ଏ ସ୍ପେଡ୍‌ ।

“ମୋଟେ ସୁନ୍ଦର ନୁହେଁ । ମୋଠୁ କଳା ଆଉ ମୋଟା ଆଉ ଭାରି ରାଗୀ । ତା' ଚେହେରା ନେଇ କହିଲେ ସେ ଚଣ୍ଡୀରୂପ ଧାରଣ କରେ । ହେଲେ ମୋ ସାଙ୍ଗରେ କଜିଆ ଆରମ୍ଭ କଲେ ମୁଁ ସେହି କଥାଟିକୁ ଦୁଗୁଣେଇ ହୋଇ କୁହେ ।”

ସେ ତାଙ୍କ ହସକୁ ବଢ଼ାଇଲେ । କହିଲେ, କ୍ଷମା କରିବେ । ମୁଁ ମୋ ସ୍ତ୍ରୀକୁ ଅପମାନ ଦେବାକୁ ଯାଉନାହିଁ । ସବୁ ସ୍ତ୍ରୀ ଊଣା ଅଧିକେ ସେଇଯା, ଟିକିଏକରେ ତାଙ୍କ ଦେହରେ ଲଗିଯାଏ, ବିଶେଷତ ନିଜ ରୂପଗୁଣ ବିଷୟରେ କିଛି ଏଣୁ ତେଣୁ କଥା— । ନୁହେଁ ?

ହେଲେ ସେ ଭଲ ରାନ୍ଧେ । ଆପଣଙ୍କୁ ବେଶ୍ ଚର୍ଚ୍ଚା କରିବ । ମୁଁ ପରି ତାକୁ କହେ,—"ତୋ ହାତରେ ମିଠା ଅଛି, ଆଉ କେଉଁଠି ଥାଉ ନ ଥାଉ······।"

ମୁଁ କଳ୍ପନାରେ ଦେଖିଲି ରାଜେଶ୍ୱରୀ କ୍ୟାପ୍‌ଟେନ୍‌ଙ୍କ ଥାଳୀରେ ମାଛଭଜା ଆଗ୍ରହ ଆଦି ବାଢ଼ି ଦେଉଛନ୍ତି । କଳଆର ଗୋଟାଏ ଅଧ୍ୟାୟ ସରି ଯାଇଛି । ରାଜେଶ୍ୱରୀ କଥା କହୁନାହାନ୍ତି । ମୁହଁ ଫୁଲାଇ ବସିଛନ୍ତି, ପାଖରେ ବସି ପଙ୍ଖା କରୁଛନ୍ତି । କ୍ୟାପ୍‌ଟେନ୍ ହଠାତ୍ ନିଜର ଉପଭୋଗ—ଆପ୍ଲୁତ ମୁହଁକୁ ଟେକି କହୁଛନ୍ତି, "ତୋ ହାତରେ ମିଠା ଅଛି ସତରେ— ।" ରାଜେଶ୍ୱରୀ ଲାଜରି ହୋଇ ହସି ଦେଉଛନ୍ତି ।

ରୋମାଣ୍ଟିକ୍ କଳ୍ପନା । କ୍ୟାପ୍‌ଟେନ୍ ମହାଶୟ ଜାଣିପାରିଲେ ହସି ହସି ଗଡ଼ିଯିବେ । ତଥାପି ମୁଁ ତାଙ୍କର କଥାକୁହା ମୁହଁକୁ ଅନେଇଲି । କଳ୍ପନାର ଦୃଶ୍ୟକୁ ଯୋଖିଲି ତାଙ୍କ ସାଙ୍ଗରେ । ରାଜେଶ୍ୱରୀ କାଳୀ, ଅସୁନ୍ଦରୀ । ତେବେ ସେମିତି ଲାଜରି ହୋଇ ହସିଲାବେଳେ କଣ କିଛି ସୁନ୍ଦର ନ ଥିବ ତାଙ୍କଠି ? କ୍ୟାପ୍‌ଟେନ କଣ ସେହି ରୂପର ସ୍ମରଣ କରୁନାହାନ୍ତି ? କିନ୍ତୁ ମୁଁ ତାଙ୍କ ମୁହଁରୁ କିଛି ପାଇଲି ନାହିଁ । ସେ ଗପୁଛନ୍ତି । ଏହିକ୍ଷଣି କଥା ପଡ଼ିଛି କଣ ନା ରାଜେଶ୍ୱରୀ କେମିତି ଗାଈ ବାଛୁରିଙ୍କର ଯତ୍ନ ନିଏ, ନିଜ ହାତରେ କୁଣ୍ଡା ଖୁଆଏ, ତାଙ୍କ ପିଠି ଆଉଁସି ଦିଏ ଓ ସେମାନେ କେମିତି ତାଙ୍କ ବୋଲ ମାନନ୍ତି !

ତା'ପରେ କଥାର ଗତି ଯାହା ହେଲା ସେଥିରେ ମୋର ରୋମାନ୍‌ସ—ରଚନା ନଷ୍ଟ ହୋଇଗଲା । ରାଜେଶ୍ୱରୀଙ୍କୁ କୁଆଡ଼େ ବାତଜର ହୁଏ ମାସେ ଦି' ମାସରେ । ସେତେବେଳେ ସେ ଭାରି ଛଟପଟ ହୁଅନ୍ତି, କାହାକୁ ପାଖରେ ପୂରାନ୍ତି ନାହିଁ କେବଳ କ୍ୟାପ୍‌ଟେନ ମହାଶୟଙ୍କ ଛଡ଼ା । ହେଲେ ତାଙ୍କୁ ବି' ଗାଳି ଦିଅନ୍ତି, କଟା ସମ୍ପା କରନ୍ତି, କିନ୍ତୁ ଜର ଛାଡ଼ିଗଲେ ସେ କିଛିଦିନ ଅନ୍ୟ ରକମର ହୋଇଯାଆନ୍ତି । ସେତେବେଳେ ଯେଉଁ କଟା ସମ୍ପା ଗୁଳେ ସେ ଖାଲି ନିଜ ଉପରେ ।······ରାଜେଶ୍ୱରୀ ଭଲ ରାନ୍ଧନ୍ତି, ଭଲ ଲଡ଼ୁ ଗଢ଼ି ପାରନ୍ତି । ସେହି କଥାର ପୁନରାବୃତ୍ତି ।······ରାଜେଶ୍ୱରୀଙ୍କୁ ସବୁ ଜନ୍ତୁଜନ୍ତୁ ଭଲ ପାଆନ୍ତି । ଗାଆଁର ଯେତେକ ଖଣ୍ଡି କୁକୁର, ଓଟଲାଇ ବିଲେଇ ସମସ୍ତେ ତାଙ୍କ ବାହୁଛାୟା ତଳେ ଜୀବନ ବିତାନ୍ତି ।···ତାଙ୍କ ହାତରେ କଖାରୁଲଟା ସହଲ ସହଲ ମାଡ଼ିଯାଏ ।···

ରାଜେଶ୍ୱରୀ ବଡ଼ ଘର ଝିଅ । ପିଲାଦିନେ ଜ୍ୟୋତିଷ ହାତ ଦେଖି କହିଥିଲା ଯେ, ସେ କୁଆଡ଼େ ରାଣୀ ହେବ, ସେଇଥିପାଇଁ ତାଙ୍କ ନାଆଁ ଦିଆଗଲା ରାଜେଶ୍ୱରୀ— । ଶେଷୋକ୍ତ କଥା ପରେ ଦୁର୍ଦ୍ଦାନ୍ତ ହସ ।

ଆଉ କେତେ ଶୁଣିବି ସେଇ କଥା ? ଏଥର ଯିବାକୁ ହେବ । କିନ୍ତୁ କ୍ୟାପ୍‌ଟେନ୍ ଗପି ଚାଲିଛନ୍ତି । ପୁଣି ଥରେ ପଡ଼ିଲାଣି ଗାଆଁର ମହାତ୍ମ୍ୟ । ଗାଆଁରେ ଖାଲି ଆମ୍ବ ଗଛ ନାହିଁ, ନଡ଼ିଆ ଗଛ ଅଛି । ଆଉ ଅଛି ପୁରୁଣା ହନୁମାନ ମନ୍ଦିର, ଭାରି ନାଁ ଡାକ । ଗାଁ । ମାଇପଙ୍କ ଭାରି ବିଶ୍ୱାସ, କୁଆଡ଼େ ଭାରି ପ୍ରତ୍ୟକ୍ଷ ଦେବତା । ରାଜେଶ୍ୱରୀ ମଧ୍ୟ ଜଣେ ବଡ଼ ଭକ୍ତ, ମଙ୍ଗଳବାର ଓପାସ କରନ୍ତି । ତା'ପରେ ହେହି ହସ, ମରଦପଣିଆର ହସ, ବାଜେକଥା ନନ୍‌ସେନସ୍‌କୁ ଉଡ଼ାଇ ଦେବାର ହସ ।

ଉଠ ଉଠ ହେଉଚି ଏତିକିବେଳେ ହଠାତ୍ ମନକୁ ଆସିଲା, ପଚାରି ବସିଲି, "କ୍ୟାପ୍‌ଟେନ୍ , ମୋର ଆପଣଙ୍କ ଗାଁକୁ ଯିବାର ଇଚ୍ଛା ନିଶ୍ଚୟ ଅଛି; କିନ୍ତୁ ଆପଣ ତ ନଥିବେ ସେଠି, ମାନେ ମିସେସ୍ ସହାୟ୍ଯ ଚର୍ଚ୍ଚା କଲେ ମଧ୍ୟ—।"

କ୍ୟାପ୍‌ଟେନ୍ ମୋ ଆଡ଼କୁ ଏପରି ଭାବରେ ଚାହିଁଲେ ଯେ ମୁଁ ଭାବିଲି ମୁଁ ଗୋଟାଏ ଅତି ନିର୍ବୋଧ ପ୍ରଶ୍ନ ପଚାରିଦେଲି, ମୋର କାଣ୍ଡଜ୍ଞାନ ନାହିଁ । କିନ୍ତୁ କ୍ଷଣକରେ ସେ ପିଲାକୁ ଆଶ୍ୱସନା ଦେଲା ପରି ଉଦାର ଭଙ୍ଗୀରେ କହିଲେ, "ନେଭର୍ ମାଇଣ୍ଡ୍ । ମୁଁ ସେଇଠି ଥିବି ।"

"ଛୁଟିରେ ଥିବେ ?" ପଚାରିଲି ।

"ନା ସବୁଦିନ ପାଇଁ ଥିବି । ମୁଁ ଚାକିରି ଛାଡ଼ି ଦେଉଛି ।"

ମୁଁ ଆକାଶରୁ ଖସିଲି । କ୍ୟାପ୍‌ଟେନ୍‌ଙ୍କ ମୁହଁକୁ କଟମଟ ହୋଇ ଚାହିଁଲି;— ନିଶାର ଜୋର୍ କଣ ଟିକିଏ ବେଶି ହୋଇଗଲା କି ?

କିନ୍ତୁ ନା, ତାଙ୍କ ମୁହଁକୁ ନିରେଖି ଦେଖିଲି ଯେ ସତ କହୁଛନ୍ତି ଓ କହି ସାରି ନିଜକୁ ବାହାବା ଦେଉଛନ୍ତି ମନେ ମନେ । କ୍ୟାପ୍‌ଟେନ୍ ସହାୟ୍ଯ ସତ କଥା କୁହେ, ଖାସ କଥା କୁହେ ସେଣ୍ଟିମେଣ୍ଟ୍‌ର ପାଖ ଦେଇ ଯାଇ ନାହିଁ ।

ଫେରିବା ବାଟରେ ଦେଖିଲି ସାଏଗନ୍‌ର ରାତି ତାର ସବୁ ପାଖୁଡ଼ା ନେଇ ଫୁଟି ଉଠିଲାଣି । ସାଏଗନ୍ ନଈରେ ନୌକା ବିହାର ଚାଲିଛି । ବାର୍ ପରେ ବାର୍ ଜମି ଉଠିଛି । ବିଦେଶୀ ଜାହାଜରୁ ଓହ୍ଲାଇଥିବା ସେଲରମାନେ ବାର୍ ସାମନାରେ ବସି ପେଷାଦାରୀ 'ସାକୀ'ମାନଙ୍କୁ ଧରି ହସୁଛନ୍ତି, କ୍ଷଣସ୍ଥାୟୀ ଜୀବନର ଜୟଗାନ କରୁଚନ୍ତି । ନାଚ ହଲ୍‌ରୁ ଗୀତବାଜାର ଖଣ୍ଡେ ଅଧେ ଶୁଭୁଯାଉଛି । ସ୍ଟ୍ରିଟର ପରେ

ସ୍କୁଟର ଛୁଟି ଚାଲିଛି, ପଛସିଟ୍‌ରେ ଆଉ ଜଣେ,—ସାଙ୍ଗ କିମ୍ବା ସଙ୍ଗିନୀ । ସିଲ୍‌କ ଦୋକାନରେ ଅଳ୍ପ ବୟସୀ ଛିଡ଼ା ହୋଇଛି, ଆଲୁଅରେ ତା'ର ରେଶମ ଦେହ ଝଲି ଉଠୁଛି, ପିନ୍ଧିଲା ରେଶମ କନା ତଳେ ଲେଟୁଛି ।

ଏହି ସବୁକୁ କ୍ୟାପ୍‌ଟେନ୍‌ ସହାସ୍ୟ ଭଲ ପାଆନ୍ତି । ଅତି ନୀଚ ପ୍ରପଞ୍ଚ ଭାବରେ ଭଲ ପାଆନ୍ତି । ଦେହର ସୌରଭକୁ ଆଡ଼େଇ ଦେଇ ଦେହକୁ, ମାଟିକୁ, ଭଲ ପାଆନ୍ତି । ଆଜି ସେ ଫେରିଯାଉଛନ୍ତି ଆଉ ଗୋଟିଏ ମାଟିକୁ କାମୁଡ଼ି ଧରିବେ କିମ୍ବା ଥେଇ ଥେଇ ହୋଇ ନାଚିବେ; ନୂତନ ଉତ୍ସାହରେ ଲଳିଆଣ୍ଟାନ୍ ହେବେ । ଛତୁ··· ଗାଡ଼ି···ମାଛଭଜା । ଗୋବର ମାଟି ଓ ମାଟି ପରି ଦେହ,—କଳା ଅସୁନ୍ଦର, କିନ୍ତୁ ପୁରୁଣା, ଛୁଇଁଲେ ଜାଣି ହୁଏ, ହାତକୁ ଅଣ୍ଡା ଲାଗେ ।

ଧ୍ୟାତ୍—। ମୁଁ ଭାବିବାକୁ ଚାହିଁଲି ଯେ କ୍ୟାପ୍‌ଟେନ୍‌ଙ୍କର ଏହି ଗୃହମୁଖୀ-ନତାରେ ସରସ-ସୁନ୍ଦର ବୋଲି କିଛି ହେଲେ ଅଛି, ଗୌରବର କାଣିଚାଏ । ନିଜକୁ କହିଲି ଯେ ରାଜେଶ୍ୱରୀଙ୍କ ଠାରେ ପ୍ରେମ ନାହିଁ ବୋଲି ନୁହେଁ, ଯେ ତାଙ୍କର ସ୍ମିତହାସ ଅତୁଳନୀୟ ନ ହେଲେ ମଧ୍ୟ ପ୍ରୀତିକର ହୋଇଥିବ; କିନ୍ତୁ ସଙ୍ଗେ ସଙ୍ଗେ ମୋର ମନେ ପଡ଼ିଲା କ୍ୟାପ୍‌ଟେନ୍‌ଙ୍କର ସେହି ଉଦ୍ଧତ ଘୋଷଣା,—ମୋ ସ୍ତ୍ରୀ ମରିଗଲେ···ପଶୁ! ପଶୁ!

ହୋଟେଲ ପାଖରେ ପହଞ୍ଚିଲାବେଳକୁ ମନେ ପଡ଼ିଲା କ୍ୟାପ୍‌ଟେନ୍‌ ଚକ୍ରବର୍ତ୍ତୀଙ୍କ କଥା । ସେ ଏତେବେଳକୁ ଶୋଇ ପଡ଼ିଲେଣି । ସେ ସବୁଦିନେ ଠିକ୍ ଟାଇମ୍‌ରେ ଶୁଅନ୍ତି, ରାମକୃଷ୍ଣ ପରମହଂସ କିମ୍ବା ବିବେକାନନ୍ଦଙ୍କର ଦୁଇ ପୃଷ୍ଠା ପଢ଼ି । କେତେଥର ମୋତେ କହିଛନ୍ତି,—ଏହି ବିବେକାନନ୍ଦ ପରମହଂସଙ୍କ ଉପଦେଶ ମୋତେ ବଞ୍ଚାଇ ରଖିଛି । ଏମିତିକା ଚାକିରି, ଏମିତିକା ଲୋକମାନଙ୍କ ସାଙ୍ଗରେ ରହି ମଧ୍ୟ ମୁଁ ନିଜକୁ ବଞ୍ଚାଇ ରଖି ପାରିଛି । ଆଃ ! କି ଗମ୍ଭୀର, କି ମହତ୍ତ୍ୱ ଦର୍ଶନ ! ଜାଣନ୍ତି ବିବେକାନନ୍ଦ ଚିକାଗୋରେ କଣ କହିଥିଲେ···?

କ୍ୟାପ୍‌ଟେନ୍‌ ଚକ୍ରବର୍ତ୍ତୀ ଶୋଇ ପଡ଼ିବେଣି । ସାର୍ଥକ ଜୀବନ । ତେଣେ ମିଷ୍ଟର ଓ ମିସେସ୍ ପ୍ରସାଦ୍ ଫେରିବେଣି 'ଆଇକୋନ୍‌ସିଆ' ଓ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ-ଙ୍କର ସ୍ମୃତି ନେଇ । ମିସେସ୍ ପ୍ରସାଦ ଓ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ,— ଉଚ୍ଚକୋଟୀର ବନ୍ଧୁ ଦୁଇଜଣ । ସଭ୍ୟତା ଓ ପବିତ୍ରତା— ଦୁହେଁ ଦୁହିଁଙ୍କର ପରିପୂରକ ।

ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ଯେତେବେଳେ ଦେଖିଲି ଯେ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ନ ଶୋଇ ହୋଟେଲ୍‌ର 'ଲାଉଞ୍ଜ' (Lounge)ରେ ବସି ରହିଛନ୍ତି । ମୋତେ ଦେଖିଲା ମାତ୍ରେ ଛିଡ଼ା ହୋଇ ଗଲେ, ମୁହଁରେ ବ୍ୟଗ୍ରତା, ମୋ

ପାଖକୁ ଚାଲି ଆସି କହିଲେ, "ମିଷ୍ଟର୍ ଦାସ୍, ମୁଁ ଆପଣଙ୍କୁ ଅପେକ୍ଷା କରିଥିଲି, ଜରୁରୀ ଦରକାର ଥିଲା, ମାନେ କାଲି ସକାଳ ଭିତରେ—।"

ମୁଁ କିଛି ବୋଲି ପଚାରିବାକୁ ସମୟ ପାଇଲି ନାହିଁ। ହୋଟେଲ୍‌ର ଚାଇନିଜ୍ ନାଇଟ୍ ତତ୍ତ୍ୱାବଧାରକ ଜଣଙ୍କ ଡେସ୍କ ପଛରେ ସିଧା ହୋଇ ବସିଛନ୍ତି ଓ ଅନେଇଛନ୍ତି ଆମ ଆଡ଼କୁ, ଯେପରିକି ଆମେ କୌଣସି ଷଡ଼ଯନ୍ତ୍ରରେ ଜଡ଼ିତ ଅଛୁ। ହୋଟେଲ ଶୁନ୍‌ଶାନ୍, ଯେଝାର ଯେଝା ଶୋଇ ପଡ଼ିଲେଣି କମ୍ବା ବାହାରେ ସମୟ କାଟୁଛନ୍ତି।

କ୍ୟାପ୍‌ଟେନ୍‌ଙ୍କ କଣ୍ଠସ୍ୱର ଅଧିକତର ଜରୁରୀ ହୋଇ ଆସିଲା ପରି ମନେ ହେଲା ! ତାଙ୍କ ଫୁସ୍‌ଫୁସ୍ କଥାର ପ୍ରତି ପଦ ନିଜ ଓଜନରେ ଫାଟି ପଡ଼ିଲା ପରି ଲାଗିଲା। ସେ ମୋ ହାତ ଧରି ପକାଇ କହିଲେ, "ମାନେ କଥା କିଛି କି,—ଅଉ କେତେଟା ଦିନ ଯାଇଥିଲେ ଆପଣଙ୍କୁ କଷ୍ଟ ଦେଇ ନ ଥାଆନ୍ତି,—କିନ୍ତୁ ସେ ଚାଲି-ଯାଉଛନ୍ତି ଦିନ ଦିନ ପରେ। ପୁଣି ମିଷ୍ଟର ପ୍ରସାଦଙ୍କର କାମ ଭିଡ଼, ସାଙ୍ଗରେ ଆସି ପାରିବେ ନାହିଁ। ଅଉ ସାଇଗନ୍‌କୁ ଆସି ଦାଲାତ୍ ନ ଦେଖିବା ନିହାତି ଅସୁନ୍ଦର କଥା,—ନୁହେଁ ? ସେଇଥିଲାଗି ମୁଁ କହିଲି ଯେ କିଛି ଭାବିବାର ନାହିଁ, ଆମେ ଯେତେ-ବେଳେ ଅଛୁଁ, ମାନେ ମୁଁ ଓ ଆପଣ ଥାଉଁ ଥାଉଁ···।"

ମୁଁ ସୁବିଧା ଦେଖି ହାତ ଖସେଇ ନେଇ ସୋଫା ଉପରେ ବସି ପଡ଼ିଲି। କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ମୋ ପାଖରେ ବସି କହି ଚାଲିଲେ। "···ଆମର ତ ଗୋଟାଏ କର୍ତ୍ତବ୍ୟ ଅଛି,—ନା କିଣ କହୁଛନ୍ତି ? ଆଉ କେହି ହୋଇଥିଲେ ଚୁପ୍ ହୋଇ ରହି ଯାଇଥାଆନ୍ତି; କିନ୍ତୁ ମିସେସ୍ ପ୍ରସାଦଙ୍କ ପରି ଲୋକ। କିଛି ନ ହେଲେ ତ ଜଣେ ଭାରତୀୟା ଭଦ୍ରମହିଳା, ଏତେ ଦୂରକୁ ଆସିଛନ୍ତି, ଏତିକି ସୁବିଧା ଯଦି ଆମେ ତାଙ୍କ ପାଇଁ ନ କରି ପାରିବା ତାହାହେଲେ ନିଜକୁ ଲଜ୍ଜା ହେବ। ନୁହେଁ ?"

ଏତେବେଳକୁ ଟିକିଏ ବୁଝିହେଲା ଯେ କଥାର ଗତି କୁଆଡ଼େ। ବେଶି ସମୟ ଅନୁମାନ କରିବାକୁ ପଡ଼ିଲା ନାହିଁ। କ୍ୟାପ୍‌ଟେନ୍ ଆଗେଇ ଗଲେ, କଥାର ମୁଣ୍ଡି ଦେବାକୁ। କହିଲେ, "ମୁଁ କାର୍ ଯୋଗାଡ଼ କରି ସାରିଛି। କାଲି ସକାଳେ ବାହାରିବାକୁ ହେବ। ଯିବା ଆସିବା ପାଇଁ ଅନ୍ତତଃ ହଜାରେ ଦୁଇହଜାର ପିଆଷ୍ଟର୍ (ଶହେ ଦୁଇଶହ ଟଙ୍କା) ଦରକାର, ଏଇକ୍ଷଣି ମାସ ଶେଷ, ସେଇଥିଲାଗି—। ଭାବିଲି ଆଉ କାହା ପାଖକୁ ଯିବି, ଏମାନେ ତ ସହଜେ ବିଦେଶୀ, ବାକି ଆମ ଇଣ୍ଡିଆନ୍ ଭାଇମାନଙ୍କ କଥା ତ ଜାଣନ୍ତି—"

କଥା ରହିଗଲା ଏବଂ ସେ ମୋ ଆଡ଼କୁ ଅନେଇଲେ ଅପଲକ ନୟନରେ। ବୋଧହୁଏ ମନେ ପଡ଼ିଗଲା ଯେ ସେ ଖାଲି ନିଜପାଇଁ କହି ଯାଉଛନ୍ତି,—ଏ.ଟ୍ ଜଣକ ବୁଝୁଛି ତ, ଜାଣୁଛି ତ ? ଆଖିରେ ଟିକିଟିଆ ସନ୍ଦେହ, ଆକୁଳତା।

ମୁଁ ଅବିଶ୍ୱାସ କରୁ ନ ଥିଲି କିମ୍ବା ବିଦ୍ରୂପ କରିବାକୁ ଯାଉ ନ ଥିଲି । କ୍ୟାପ୍‌ଟେନ୍‌ ଚକ୍ରବର୍ତ୍ତୀଙ୍କୁ ବିଦ୍ରୂପ କରିବି କେଉଁ ସାହସରେ ? ତେବେ କେଜାଣି କାହିଁକି ମୋର ଇଚ୍ଛା ହେଲା ଯେ ମୁଁ ଚୁପ୍‌ ରହିବି, କିଛି କହିବି ନାହିଁ, ଦେଖାଯାଉ ସେ କେତେ ଦୂରକୁ ଯାଉଛନ୍ତି ।

ମନେହେଲା ଯେ ତାଙ୍କ ଆଖିରେ ସନ୍ଦେହ ଘନେଇ ଆସୁଛି ଏବଂ ସେହି ଆକୁଳତା କରୁଣତାକୁ ଲଗି ଲଗି ଆସୁଛି—ମିଳିବ ନାହିଁ, ମିଳିବ ନାହିଁ ତା' ହେଲେ !

ମୁଁ ଆଉ ପାରିଲି ନାହିଁ । ସେହି ଗୃହିଣୀର ତାଡ଼ନା ସହି ପାରିଲି ନାହିଁ । ମୋ ହାତ ଯନ୍ତ୍ର ଚାଳିତ ପରି ପକେଟ୍‌ରୁ ସିଠର ଅଭିଯାନ ପାଇଁ ରଖା ହୋଇଥିବା ନୋଟ୍ ବିଡାକୁ କାଢ଼ି ଆଣିଲା । ମୁଁ କହିଲି, "ବ୍ୟସ୍ତ ହୁଅନ୍ତୁ ନାହିଁ, ଏଇ ଯାହା ଅଛି ଦେଖନ୍ତୁ, ବୋଧହୁଏ ହୋଇଯିବ ।"

ତା' ପରେ ମୁଁ ସେଠୁ ତରବର ହୋଇ ଚାଲି ଆସିଲି । ଯେପରିକି କ୍ୟାପ୍‌ଟେନ୍‌ଙ୍କ ପ୍ରାପ୍ତି-ସ୍ୱୀକାର ଶୁଣିଲେ ମୁଁ ନିଜେ ଅପ୍ରତିଭ ହୋଇଯିବି ।

ସିଠ ପାହାଚରେ ଉଠୁ ଉଠୁ ଆଖିଆଗରେ ନାଚିଗଲା ଦାଲହୌସିର ଦୃଶ୍ୟ । ଦକ୍ଷିଣ ଭିଏତ୍‌ନାମ୍‌ର ପ୍ରସିଦ୍ଧ ହିଲ୍‌ ଷ୍ଟେସନ୍‌, ଟୁରିଷ୍ଟମାନଙ୍କ ସ୍ୱର୍ଗ । ଘନ ସବୁଜ ପାହାଡ଼······ଲେକ୍‌ର ଗହିରିଆ ନେଳିଆ ପାଣି···ହାଲୁକା ଥଣ୍ଡା ପବନ···ନିସ୍ତେଲା ଅସରନ୍ତି ସମୟ । ସବୁ ଫୁଟି ଉଠେ ସେଠି,—ସକାଳ ଓ ସନ୍ଧ୍ୟାର ନିଜତ୍ୱ, ଭିଏତ୍‌ନାମିଜ୍‌ ପଥର-ଗୃହାର ରଙ୍ଗ ଓ ବାସ୍ନା, ଅଦେଖା ପାହାଡ଼ିଆ ଚଢ଼େଇର ଆପଣାଭୋଳା କଥା ପଦୁଟିଏ, ତୋଫା ନାଲି ଡାଳିଆ ଫୁଲର ଆଉ ଗୋଟିକ ଢାଙ୍ଗରେ ଛୁଆଁ ଛୁଇଁ, ଖୁସ୍‌ଖାସ୍ । ସେଇଠି ଫୁଟି ଉଠିବ ଭାବମୟୀ ବାଣୀ, ସ୍ୱଚ୍ଛ ସୁନ୍ଦର, ସେହି ଅମଳିନ ପାଣି ପବନ ପରି । କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ, ମିସେସ୍ ପ୍ରସାଦ । ଗୋଟିଏ ଦିନ ଭାବ ଛାଳିବେ ଦୁହିଁଙ୍କୁ ଦୁହେଁ—କଥାରେ, ଭଙ୍ଗୀରେ, ଫୁଲକୁ ଆଉଁସିବାରେ, ଲେକ୍‌ର ପାଣିକୁ ଚହଲାଇବାରେ, କପ୍‌ରେ କପ୍ ଛୁଇଁ ସଙ୍ଗୀତ ଆଣିବାରେ । ଅତି ସୁନ୍ଦର, ଅତି ମନୋରମ । ଦୁଇହଜାର ପିଆସ୍ତର୍ କଅଣ, ପାଞ୍ଚ ହଜାର ମାଗିଥିଲେ ମଧ୍ୟ ଦେଇ-ଥାଆନ୍ତି, ଦେବାର ଉଚିତ ।

ସିଠ ମୁଣ୍ଡରେ ପହଁଞ୍ଚିଲାବେଳକୁ କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ମଧ୍ୟ ଆସିଗଲେ । ବୋଧହୁଏ ନୋଟ୍ ଗଣି ସାରି ଦାଲହୌସିର କଳ୍ପନା ସଜାଡ଼ି ସାରିଲେଣି । ପଛରୁ ଡାକି କହିଲେ, 'ଆଉ [illegible]କମିତ ବିତିଲା କ୍ୟାପ୍‌ଟେନ୍ ସହାୟୁ ଢାଙ୍ଗରେ ?"

ମୁଁ ମୁହଁ ନ ଫେରାଇ କହିଲି, "ବେଶ୍ ଭଲ ଲାଗିଲା । ମୋତେ ନିମନ୍ତ୍ରଣ କରିଛନ୍ତି ତାଙ୍କ ଗାଆଁକୁ ଯିବାକୁ । ସେଠି ମୋତେ ତାଡ଼ି, ମାଛଭଜା ଓ କୁକୁଡ଼ା ଖୁଆଇବେ, ତାଙ୍କ ସ୍ତ୍ରୀଙ୍କ ହାତରେ ।"

କ୍ୟାପ୍ଟେନ୍ ଚକ୍ରବର୍ତ୍ତୀଙ୍କ ଉଚ୍ଚ ଊର୍ଦ୍ଧ୍ୱମୁଖୀ ହସ ଶୁଣିବାକୁ ଡର ନଥିଲା । ମୁଁ ସେତେବେଳକୁ ମୋ ରୁମ୍‌ର କବାଟ ବନ୍ଦ କରି ସାରିଥିଲି ।

ଶୋଇବାକୁ ଯିବା ଆଗରୁ ଟିକିଏ ମନେ ପଡ଼ିଥିଲା କ୍ୟାପ୍ଟେନ୍ ସହାୟଙ୍କ କଥା । ବିଚରା, ସ୍ୱାଧୀନତା ସୁଖ ତା' କପାଳରେ ନାହିଁ ।



# ସାଏଗନ୍‌ରେ ସୁଖ

ବନ୍ଧନ-ସ୍ୱାଧୀନତା । ଏଇ ଦ୍ୱୈତଭାବକୁ ନେଇ ଯେତେକ ଗଣ୍ଡଗୋଳ । ହେ ଭଗବାନ୍, ଯଦି ଅଭିଶପ୍ତ ଗନ୍ଧର୍ବଙ୍କୁ ପଠେଇଲ ପୃଥିବୀକୁ, ଗୋଟିଏ ଜୀବନର ସୁଖଦୁଃଖରେ ବାନ୍ଧି ହୋଇ ଯଥା ସମୟରେ ଘରକୁ ଫେରି ଆସିବା ପାଇଁ, ତା' ହେଲେ ସେଇ ସମୟତକ ତା'ର ବନ୍ଧନକୁ ସଫଳ କରି ପାରନ୍ତ ନାହିଁ ? ତା'ର ଭିତରେ ସେ କାହିଁକି କେଉଁ ଧାଁ'ଧାଁନିଆ ଘରୁ, ଘରଣୀ ପାଖରୁ, ଦେଶରୁ, ନୀତିନିୟମରୁ ଖସି ପଳେଇବା ପାଇଁ ଛଟପଟ ହୁଏ । କ'ଣ ବା ସେ ଛଟପଟର ମୂଲ୍ୟ, ଯଦି ସବୁ ଛାଡ଼ିଛୁଡ଼ି ତୁମର ଶୂନ୍ୟତାକୁ ଅବା ପୂର୍ଣ୍ଣତାକୁ ଫେରିଯିବାହିଁ ତା'ର ଧର୍ମ ଏବଂ ତୁମର ଆଦେଶ ?

କିନ୍ତୁ ସେମିତି ହୁଏ ନାହିଁ । ଏଣେ ମଣିଷ ଦୁଇ ନାଆରେ ଗୋଡ଼ ଦେଇ ଟଳଟଳ ହୁଏ, ତେଣେ ମୁନି ଦାର୍ଶନିକମାନେ ତା'କୁ ବୁଝେଇବାକୁ ଚେଷ୍ଟା କରନ୍ତି ଯେ ମୁକ୍ତି ଓ ବନ୍ଧନ ଗୋଟିଏ ଧାତୁରେ ଗଢ଼ା, ତେଣୁ ଅସ୍ଥିର ହେବାର କୌଣସି କାରଣ ନାହିଁ । କୁହନ୍ତି ଯେ ଛୋଟକୁ ଛାଡ଼ିଲେ ବଡ଼କୁ ପାଇବ । ପାଇଲାରୁ ଏମିତି ବାନ୍ଧି ହୋଇଯିବ ଯେ ପୁଣି ପଳେଇବାକୁ ଚାହିଁବ ନାହିଁ । କିନ୍ତୁ କେଉଁ ଛାର ବସ୍ତୁମାନଙ୍କୁ ତେଜିବାକୁ ହେବ, ସେମାନଙ୍କର ଗରିଷ୍ଠ ସାଧାରଣ ଗୁଣନୀୟକ କିଅଣ ? ବାପା ଯାହା କହିଛନ୍ତି, ଶାସ୍ତ୍ର ଯାହା ବତେଇଛନ୍ତି, ଆଇନ୍‌ରେ ଯାହା ଲେଖା ଅଛି, ଇତ୍ୟାଦି ତଥାକଥିତ କର୍ତ୍ତବ୍ୟର ପରି-

ପୋଷାକ ? ତା'କୁ ଗୁଡ଼ି ଦେଇ ପାରିଲେ ନିଜକୁ ନିଜେ ଉଲ୍ଲଂଗ ହୋଇ ଥିର ଉଠିବାର, ତହୁଁ ନିଜକୁ ଜାଣିବାର ସ୍ୱାଧିନତା ହାତକୁ ଆସିଯିବ ? ସ୍ଥିତିବାଦୀମାନେ ଏଇ କଥା ଶିଖଉଛନ୍ତି ଆମକୁ । କିନ୍ତୁ ଶୀତରେ ଥରିଲା ଉତ୍ତାରୁ ପୁଣି କେମିତିକା କପଡ଼ା ମଗେଇବାକୁ ପଡ଼ିବ ବାନ୍ଧି ହେବା ପାଇଁ, ବଞ୍ଚିବାର ଉଷୁମ ପାଇବା ପାଇଁ, ତା'ର ସମ୍ପୂର୍ଣ୍ଣ ଉତ୍ତର ଦେଇ ପାରି ନାହାନ୍ତି । ବିବେକାନନ୍ଦ କହିଲେ ଯେ ମଣିଷ ନିଜ ଦୋଷରୁ ତା'ର ସ୍ୱାଧିନତା ହରେଇ ବସିଛି, ବୋକାଙ୍କ ପରି ଅହଂରେ ଗୁଟେଇ ତୁଡ଼େଇ ହେଉଛି—ନହେଲେ ତା'କୁ ଅର୍ଥାତ୍ ତା'ର ଆତ୍ମନ୍‌କୁ ବାନ୍ଧି ରଖିବ କିଏ ? ଅଷ୍ଟବକ୍ର ଗୀତା କୁହେ ଭାବିଲେ ସ୍ୱାଧିନ, ଭାବିଲେ ପରାଧିନ । ମୁକ୍ତାଭିମାନୀ ମୁକ୍ତୋହି ବଦ୍ଧୋ ବଦ୍ଧାଭିମାନ୍ୟପି । କିନ୍ତୁ ସାଧାରଣ ମଣିଷ ବୁଝିବାକୁ ଅକ୍ଷମ ଯେ ମୂଳରୁ ମୋତେ ମଣିଷ ବୋଲି ଗଢ଼ିଲି କାହିଁକି, ସଂସାରକୁ ଠେଲି ଦେଲି କାହିଁକି, ଏଣେ କହୁଛି ପଳେଇ ଆ'ରେ ପଳେଇ ଆ' । କୁଆଡ଼େ ପଳେଇବ ? କେମିତି ପଳେଇବ ?

ସାଧାରଣ ମଣିଷ ହେଉଛନ୍ତି କ୍ୟାପ୍‌ଟେନ୍ ସହାୟ, ମେଜର୍ ରାଏ, କର୍ଣ୍ଣେଲ୍ ରେପଡ଼କର, କ୍ୟାପ୍‌ଟେନ୍ ଚକ୍ରବର୍ତ୍ତୀ ଓଗେର, ଏବଂ ଲେଖକ । ଆମେ ମାଣ ଦୁଇ-ତିନମାସ ପାଇଁ 'ବନ୍ଦୀ' ହେବାର ସୁଯୋଗ ପାଇଥିଲୁ । ସାଏଗନ୍‌ରେ ମୋର ସରକାରୀ କାମଥିଲା ('ପୁଅ କାନ୍ଦୁଛି'ରେ ମୋର ଆଳାପ ପଢ଼ିବେ ), ଏବଂ ସେମାନେ ଥିଲେ ଭାରତ ପକ୍ଷରୁ ଅନ୍ତର୍ଜାତୀୟ ଯୁଦ୍ଧବିରତି ଆୟୋଗରେ ନିଯୁକ୍ତ କେତେଜଣ ସାମରିକ କର୍ମଚାରୀ । ଆମକୁ ବନ୍ଦୀ ହେବାକୁ ପଡ଼ିଲା, କାରଣ ମୋଟାମୋଟି ଆମେ'ଇ ଥିଲୁ ସେଠିକାର ବିଦେଶୀ ଭାରତୀୟ । ଆପଣ ସ୍ୱୀପିଲାଙ୍କୁ ପାଖକୁ ଆଣିବା ମନା, ତେଣୁ ପରସ୍ପର ସହିତ ବାନ୍ଧି ହେବା ଛଡ଼ା···ଓଃ, ପୁଣି ସେଇ ବାନ୍ଧି ହେବାର ପ୍ରଶ୍ନ ! ଯାହାହେଉ ଆମେ କେତେ-ଦୂର ବାନ୍ଧି ହୋଇ ପାରିଲୁ, ଏକାଠି ହୋଇ ବନ୍ଧନମୁକ୍ତିର ସ୍ୱାଦୁ ଚାଖି ପାରିଲୁ, ଭାରତୀୟ ସ୍ୱାଧିନତା ଦିବସର ଉପଲକ୍ଷ୍ୟରେ ତା'ର ଗୋଟିଏ ଦୟନୀୟ ଦୃଶ୍ୟ ଦେଖାଇବାକୁ ଚାହିଁଲି ଏଇ ଗପରେ । ଆପଣ କାହା ପ୍ରତି ଅଧିକ ଦୟା ଦେଖାଇବେ,—

କ୍ୟାପ୍‌ଟେନ୍‌ ହବ୍‌ହାଉସ୍‌, କ୍ୟାପ୍‌ଟେନ୍‌ ଚକ୍ରବର୍ତ୍ତୀ, ନା ଏଇ ଅଧମ ଲେଖକ ଉପରେ ଯେ କେବଳ ଦେଖିଲା ହୁଏତ ଶିଖିଲା, କିନ୍ତୁ ନିଜେ କିଛୁ ଉପଭୋଗ କରିପାରିଲା ନାହିଁ, ତା'ର ସ୍ୱାଧୀନତା ଆପଣଙ୍କର ।



କଟକ

୧୦ ଅଗଷ୍ଟ ୧୯୮୬

# ଭଗବାନଙ୍କ ଛନ୍ଦ

ଏପ୍ରିଲ୍ ୨୭ ତାରିଖ ବୁଧବାର । ସିମ୍ପ୍‌ସନଙ୍କ ଘରେ ଡିନର୍ ।

ମୁଁ ଏହି ଖବରରେ ଆମର ଘରୋଇ ଏନ୍‌ଗେଜ୍‌ମେଣ୍ଟ ଡାଏରୀରେ ଲେଖି ରଖିଥିଲି । ପରେ ଦେଖିଲି ଯେ ତା' ପାଖରେ ବନ୍ଧନୀ ମଧ୍ୟରେ ଲେଖା ହୋଇଛି "ଜେନ୍", ଓ ତା ତଳେ ଗୋଟାଏ ମୋଟା ଗାର ଟଣା ହୋଇଛି । ଅର୍ଥ,—ଏ ସାଧାରଣ ଗତାନୁଗତିକ ଡିନର ନୁହେଁ ଏ ଜେନ୍‌ର ଡିନର୍ । ଶ୍ରୀମତୀଙ୍କ ହାତଲେଖା । ଲେଖିବାର କାରଣ ମଧ୍ୟ ମୋର ଅଜଣା ନୁହେଁ । ଶ୍ରୀମତୀ ସବୁବେଳେ କହି ଆସିଛନ୍ତି ଯେ, ଜେନ୍ ତାଙ୍କର ପରମ ବନ୍ଧୁ, କକ୍‌ଟେଲ୍ ବନ୍ଧୁ ନୁହେଁ, ପୋଷାକ ବନ୍ଧୁ ନୁହେଁ, ଅଫିସର ବନ୍ଧୁ ନୁହେଁ । ବିନା ଦ୍ୱିଧାରେ କହିଛନ୍ତି ଯେ ତାଙ୍କର ଆମେରିକା ଆସିବା ସାର୍ଥକ ହୋଇଛି କେବଳ ଜେନ୍‌ର ବନ୍ଧୁତା ଲାଭ କରି । ଯେ ବାକିସବୁ ଦ'ଦିନିଆ, ଭାରତକୁ ଫେରିଗଲେ ଭୁଲି ହୋଇଯିବ ।

ମିସେସ୍ ସିମ୍ପ୍‌ସନ୍ ସାଧାରଣ ଆମେରିକାନ୍ ସ୍ତ୍ରୀମାନଙ୍କ ପରି ବେଶୀ ଗୁଡ଼ାଏ କଥା କହନ୍ତି ନାହିଁ, ଉଚ୍ଚ ସ୍ୱରରେ ହସନ୍ତି ନାହିଁ । ପୁଣି ସେ ସିଗାରେଟ୍ ଖାଆନ୍ତି ନାହିଁ, ଓ୍ୱାଇନ୍ ବ୍ୟତୀତ କୌଣସି ସୁରାଦ୍ରବ୍ୟ ଗ୍ରହଣ କରନ୍ତି ନାହିଁ । ଆଶ୍ଚର୍ଯ୍ୟ କଥା, ତାଙ୍କ ପରିବାରରେ ମାଛ ମାଂସ ମଧ୍ୟ ବିଶେଷ ଚଳେ ନାହିଁ ; କିନ୍ତୁ କେବଳ ଏହିସବୁ ଅଭ୍ୟାସଗୁଣ ନେଇ ଯେ ସେ ଶ୍ରୀମତୀଙ୍କର ଏତେ ପ୍ରିୟପାତ୍ର ହୋଇଥିଲେ ତାହା ନୁହେଁ, ହୋଇପାରେ ନାହିଁ । ଶ୍ରୀମତୀ କହନ୍ତି ଯେ ତାଙ୍କ ଚରିତ୍ରରେ ଗୋଟିଏ ଅସାଧାରଣ ଗଭୀରତା ଓ ଆନ୍ତରିକତା ଅଛି, ଯାହାର ସଂସ୍ପର୍ଶରେ ମଣିଷ ଭଗବାନଙ୍କ ନିକଟକୁ ଯାଇ ପାରିବ । ମୁଁ ତା'ର ସତ୍ତା କିଛି ପାଏ ନାହିଁ । ତେବେ ମୁଁ ତାଙ୍କ ଧାରଣାକୁ ଅବହେଳା କରେ ନାହିଁ । ସେ ଦୁଇ ନାରୀବନ୍ଧୁଙ୍କ ମଧ୍ୟରେ ନିଶ୍ଚୟ ସୂକ୍ଷ୍ମଭାବର ଦିଆନିଆ ହୋଇଥିବ; ପୁରୁଷର ବିଶ୍ଳେଷଣ ତା'ର ସୀମା ଛୁଇଁ ପାରିବ ନାହିଁ ।

ମିସେସ୍ ସିମ୍ପ୍‌ସନଙ୍କ ପ୍ରକୃତି ଦେଖାଣିଆ ନ ଥିଲା । କିନ୍ତୁ ସେ ଯେ ଶ୍ରୀମତୀଙ୍କୁ ଖୁବ୍ ଭଲ ପାଉଥିଲେ ତାହା ସେ ଲୋକସମ୍ମୁଖରେ ଜଣାଇବା ପାଇଁ କୁଣ୍ଠାବୋଧ

କରୁ ନ ଥିଲେ । ଯଥା,—ଗାଲରେ ଓଠ ଲଗାଇ ଦସ୍ତୁରମତ ଗେହ୍ଲା କରିବା, ବିଦାୟ ନେଲବେଳେ ଉଚିତରୁ ଅଧିକ ସମୟ ହାତରେ ହାତ ରଖିବା, ଏକାନ୍ତରେ କ'ଣ ଟିକିଏ କହି ହସିଦେବା, ଇତ୍ୟାଦି । ସେତେବେଳେ ଶ୍ରୀମତୀଙ୍କୁ ଦେଖିଲେ ମନେହୁଏ ଯେ ସେ କେବଳ ଲଜେଇ ଯାଉ ନାହାନ୍ତି, ସେ କିଛି ଅମୂଲ୍ୟବସ୍ତୁ ପାଇଲା ପରି ଗଦ୍‌ଗଦ ହୋଇ ଉଠୁଛନ୍ତି,—ତା'ର ପ୍ରତିଦାନ ଦେବାର ଶକ୍ତି ତାଙ୍କର ନାହିଁ ।

ମୋଟ ଉପରେ ସେ ଦୁଇଜଣଙ୍କ ଭଲ ପାଇବାରେ କେବଳ ଦାଥୀଭାବ ନ ଥିଲା, ଦାତାଗ୍ରହୀତାର ସମ୍ପର୍କ ଥିଲା । ଶ୍ରୀମତୀ ତଳ ପାହାଚରେ ଥିଲେ ଓ ମିସେସ୍ ସିମ୍ପ୍‌ସନ୍ ଉପର ପାହାଚରେ । ମିସେସ୍ ସିମ୍ପ୍‌ସନ୍ ବୟସରେ ଯଥେଷ୍ଟ ବଡ଼, ସେଥିପାଇଁ ନୁହେଁ । ଶ୍ରୀମତୀ କହନ୍ତି ଯେ ସେ ଜେନ୍‌କୁ ମାଆ କିମ୍ବା ବଡ଼ଭଉଣୀ ପରି ଭାବନ୍ତି ନାହିଁ, ସେଥିରେ ବନ୍ଧୁତାର ମୁକ୍ତ ଆନନ୍ଦ ରହିବ ନାହିଁ । ତା' ଛଡ଼ା ସେ ଧନମାନ ସମ୍ପନ୍ନା ନୁହଁନ୍ତି, ସେ ଜଣେ ସାଧାରଣ ମଧ୍ୟବିତ୍ତ ଶ୍ରେଣୀର ମହିଳା । ତେଣୁ ମୁଁ ଅଗତ୍ୟା ଭାବିବାକୁ ବାଧ୍ୟ ହେଉଥିଲି ଯେ ମିସେସ୍ ସିମ୍ପ୍‌ସନ୍ କୌଣସି ଅନିର୍ଦ୍ଦିଷ୍ଟ ଭାବରେ "ବଡ" । ସେ ବଡ଼ପଣର ଆଖ୍ୟା ଦେଇ ହେବ ନାହିଁ ଏବଂ କେବଳ ଶ୍ରୀମତୀ ତା'ର ଅନୁଭବ କରି ପାରିଛନ୍ତି ।

…"ଜେନ ମୋ' ପାଇଁ ନୂଆ ରେସିପେ (ରନ୍ଧନ ପ୍ରଣାଳୀ) ପଠାଇଛି, ଦେଖିଛ ? ଏ ହେଉଛି ଆପ୍‌ଲ୍ ଟର୍ଣ୍ଣଓଭର କେକ୍, ନୂଆ ରକମର ଜିନିଷ, ଜେନ୍‌ର ସ୍ୱାମୀ ଭାରି ଭଲ ପାଆନ୍ତି ।"

—"ଜେନ୍ ଭାରି ଡରକୁଳୀ । ଆମ ଘରକୁ ଆସିବା ପାଇଁ ଲେଫ୍‌ଟ୍ ଟର୍ଣ୍ଣ ନେବାକୁ ହେବ ବୋଲି ସେ ତା' କାର୍‌କୁ ଅଧମାଇଲ୍ ଦୂରରେ ରଖି ଦେଇ ଆସେ । ତା'ର ସ୍ୱାମୀ କୁଆଡ଼େ କହନ୍ତି ଯେ ଅକାରଣ ଆଡ଼ଭେଞ୍ଚର୍‌ରେ ମଣିଷ ମରେ, ଭଗବାନ ଖୁସି ହୁଅନ୍ତି ନାହିଁ ।"

…"ଜେନ୍ ହାତରେ ଗୋଟିଏ ଗ୍ରେଟ କାର୍ପେଟ୍ ବୁଣିଛି, ଦେଖିବ । ଭାରି ସୁନ୍ଦର । ସେ କହୁଥିଲା ଯେ ଫାଦର (ମିସେସ୍ ସମ୍ପ୍‌ସନ୍ ତାଙ୍କ ସ୍ୱାମୀଙ୍କୁ ଫାଦର ବୋଲି ଡାକନ୍ତି । ପିଲାଛୁଆଙ୍କ ବାପା ହିସାବରେ ସ୍ୱାମୀକୁ ଏପରି ସମ୍ବୋଧନ କରିବା ଅସ୍ୱାଭାବିକ ନୁହେଁ) ବୁଢ଼ାଟିଏ ହେଲେଣି, କିନ୍ତୁ ତାଙ୍କର ବଦଭ୍ୟାସ ଯାଇନାହିଁ । ଯେ କେହି ସାଙ୍ଗପଡ଼ିଶା ଘରକୁ ଆସିଲେ ସେ ଏହି କାର୍ପେଟକୁ ଦେଖାନ୍ତି, କହନ୍ତି,— କେମିତି ହୋଇଛି କହିଲ ? ଜେନ୍ ବୁଣିଛି ।"

…"ମୁଁ ଜାଣି ନ ଥିଲି, ଆଜ ଶୁଣି ଭାରି ଖରାପ ଲଗିଲା । ଜେନ୍‌ର ଗୋଟିଏ ଝିଅ ସାତବର୍ଷ ବୟସରେ ମରିଯାଇଛି । ତା' ନାଁ ଥିଲା ଅଞ୍ଜେଲା । ସେଇଥି-ପାଇଁ ବୋଧହୁଏ ସେ ଭଗବାନଙ୍କ ପାଖକୁ ତରତରରେ ଚାଲିଗଲା । ସବୁଦିନେ ମିଷ୍ଟର୍ ସିମ୍ପସନ୍ ତା' ପାଇଁ ସ୍ପେଶାଲ୍ ପ୍ରେୟାର୍ କରନ୍ତି ।"

…"ଜେନ୍‌ର ନାତି ଆଜ ମୋତେ ଦେଖି କହିଲା ଯେ ମୁଁ କୁଆଡ଼େ ତା ଆଣ୍ଟି ଜିଲଆ ପରି ଦେଖାଯାଉଛି । ମିଷ୍ଟର୍ ସିମ୍ପସନ୍ ବି ତା' କଥାରେ ମୁଣ୍ଡ ଟୁଙ୍ଗାରିଲେ । କି ଅସମ୍ଭବ କଥା କହିଲା !"

ମିସେସ୍ ସିମ୍ପସନ୍‌ଙ୍କ ବିଷୟରେ ଏହି ପ୍ରକାର ବାର୍ତ୍ତା ମଝିରେ ମଝିରେ ଶ୍ରୀମତୀଙ୍କ ଠାରୁ ଶୁଣିବାକୁ ମିଳେ । ସେଥିରେ ମୁଁ ତାଙ୍କର କର୍ମକୁଶଳତା, ନାରୀସୁଲଭ କୋମଳତା ଓ ସ୍ନେହର ପରିଚୟ ପାଏ, କିନ୍ତୁ ତାଙ୍କର ବିଶିଷ୍ଟ ଗୁଣର ସନ୍ଧାନ ପାଏ ନାହିଁ । ମୁଁ ମନେ ମନେ ତାଙ୍କୁ ତୁଳନା କରେ ମୋର ଅମୁକ ଭଉଣୀ, ଅମୁକ ପିଉସୀ କିମ୍ବା ଅମୁକ ମିସେସ୍‌ଙ୍କ ସାଙ୍ଗରେ । ହେଲେ ମନ ମାନେ ନାହିଁ । ସେମାନେ କିନ୍ତୁ ସାଧାରଣ ।

କ୍ରମଶଃ ସବୁକଥା ଭିତରେ ମୁଁ ଗୋଟିଏ ସୂଚନା ପାଇଲି ଯେ ମିସେସ୍ ସିମ୍ପସନ୍‌ଙ୍କର ବିଶିଷ୍ଟତା କେବଳ ତାଙ୍କୁ ହିଁ ନେଇ ଗଢ଼ା ନୁହେଁ । ସେଥିରେ ମିଷ୍ଟର୍ ସିମ୍ପସନଙ୍କର ହାତ ଅଛି । ସେ କେବଳ ପୃଷ୍ଠଭୂମିରେ ନାହାନ୍ତି, ପାଖରେ ଅଛନ୍ତି । ଜେନ୍‌ର ପିଠିରେ ହାତ ଆପୁଡ଼େଇ ଆଗେଇବାକୁ କହୁଛନ୍ତି, ଜେନ୍‌ର ମାଇପି ସଂସାରରେ ତାଙ୍କର ଭଲପାଇବା ମାଖି ଦେଉଛନ୍ତି । ବୋଧହୁଏ ତାଙ୍କର ସକ୍ରିୟ ଉପସ୍ଥିତି ନ ଥିଲେ ମିସେସ୍ ସିମ୍ପସନ୍ ଅନ୍ୟ ପ୍ରକାର ହୋଇ ଥାଆନ୍ତେ, ତାଙ୍କର ସ୍ୱଗୁଣ ଏପରି ଝଲି ଉଠନ୍ତା ନାହିଁ । ତେଣୁ ମୁଁ ଭାବିଲି ଯେ ମିସେସ୍ ସିମ୍ପସନ୍ ଉତ୍ତମରୂପେ ଜାଣିବାକୁ ହେଲେ ମିଷ୍ଟର୍ ସିମ୍ପସନଙ୍କର ପରିଚୟ ଆବଶ୍ୟକ ।

ସେହି ଦୃଷ୍ଟିରୁ ମୁଁ ଦିନେ ଶ୍ରୀମତୀଙ୍କୁ ପଚାରିଲି, "ମିଷ୍ଟର୍ ସିମ୍ପସନ୍ ଲୋକଟି କେମିତି ?"

ଶ୍ରୀମତୀ ମୋର ପ୍ରଶ୍ନକୁ ସାମାନ୍ୟ କୌତୂହଳ ବୋଲି ମନେ କଲେ । କହିଲେ, "ମନ୍ଦ ନୁହେଁ । ମୋ ସାଙ୍ଗରେ ଦୁଇତିନିଥର ଦେଖା ହୋଇଛି, ଜେନ୍‌ର ଘରେ । ଟିକିଏ ଗମ୍ଭୀର ପ୍ରକୃତିର ବୋଲି ମନେ ହେଲା; କିନ୍ତୁ ସେ ଜେନ୍‌କୁ ଭାରି ଭଲ ପାଆନ୍ତି । ଜେନ୍ କହୁଥିଲା—।"

ସେ ପୁଣି କିଛି ଭଲ ପାଇବାର ଦୃଷ୍ଟାନ୍ତ ଦେଲେ । ହେଲେ ମୋ ପ୍ରଶ୍ନର ଉଚିତ ଉତ୍ତର ମିଳିଲ ନାହିଁ । ପୃଥିବୀରେ ଗଭୀର ପ୍ରକୃତିର ସ୍ନେହୀ ସ୍ୱାମୀ ଅନେକ ଅଛନ୍ତି ।

ଏପ୍ରିଲ୍ ୨୭ ତାରିଖ ଉପରବେଳା । ବର୍ଷା ପଡ଼ିବାକୁ ଆରମ୍ଭ କଲଣି । ଏପ୍ରିଲ୍ ମାସରେ ବର୍ଷା ହେବାର କଥା ବୋଲି କୁହାଯାଏ,—କିନ୍ତୁ ଆଜି ଦିନଟା ବର୍ଷା ହୋଇ ନ ଥିଲେ କଣ ଚଳି ନ ଥାଆନ୍ତା ? ଓ୍ୱାଶିଙ୍ଗ୍‌ଟନର ସୀମା ବାହାରେ ଭର୍ଜିନିଆରେ ସେମାନଙ୍କର ଘର । ଦୂର ବାଟ, ପାହାଡ଼ିଆ ରାସ୍ତା । ତା’ ଛଡ଼ା ମୁଁ କେବେହେଲେ ତାଙ୍କ ଘରକୁ ଯାଇନାହିଁ, ରାତିରେ ଶ୍ରୀମତୀ ଠିକ୍ ଭାବରେ ଦିଗନିର୍ଣ୍ଣୟ କରିପାରିବେ କି ନାହିଁ ସନ୍ଦେହ ।

ଶ୍ରୀମତୀ କହିଲେ ଯେ ନ ଯିବାର ପ୍ରଶ୍ନ ଉଠୁ ନାହିଁ । ମୁଁ ମଧ୍ୟ ଭାବିଲି ଯେ ଯିବା ଉଚିତ । ମିସେସ୍ ସିମ୍ପ୍‌ସନ୍ ଓ ଶ୍ରୀମତୀଙ୍କର ପ୍ରଗାଢ଼ ବନ୍ଧୁତା ସତ୍ତ୍ୱେ ମୋର ମିଷ୍ଟର୍ ସିମ୍ପ୍‌ସନ୍‌ଙ୍କ ସହିତ ଆଜିଯାଏଁ ଦେଖା ହୋଇ ନାହିଁ,—ଅନ୍ତତଃ ଏଇଥିପାଇଁ ଯିବା ଉଚିତ । ସେ ଦୁଇଜଣ ନାରୀ ଅନୁଷ୍ଠାନ ଜରିଆରେ ଏକାଠି ହୋଇଛନ୍ତି, ତେଣୁ ସ୍ୱାମୀମାନେ ଦୂରେଇ ହୋଇ ରହିଛନ୍ତି । ଆଜି ସ୍ୱାମୀମାନେ ପରସ୍ପରକୁ ଚିହ୍ନିବେ । ଆଜି ମୁଁ ସେହି ଭଦ୍ରଲୋକଙ୍କୁ ଦେଖିବି । ଶ୍ରୀମତୀ କହିଛନ୍ତି ଯେ ଆଉ କାହାକୁ ଡକା ହୋଇ ନାହିଁ, ହୁଏତ ତାଙ୍କର ଝିଅଜ୍ୱାଇଁ ପରେ ଆସି ପାରନ୍ତି । ଉତ୍ତମ । ସମାବେଶ ଏକାନ୍ତ ଓ ଘରୋଇ ହେବ । ମୁଁ ମିସେସ୍ ସିମ୍ପ୍‌ସନ୍‌ଙ୍କୁ ରାନ୍ଧିବାର, ପରଶିବାର ଦେଖିବି ଓ ଦେଖିବି ମିଷ୍ଟର୍ ସିମ୍ପ୍‌ସନ୍ କିପରି ଉପଯୋଗୀ ଭାଷା ଓ ଭଙ୍ଗୀଦ୍ୱାରା ଜେନ୍‌ର ମାହାତ୍ମ୍ୟ ବଢ଼ାଉଛନ୍ତି । ସମ୍ଭବତଃ ମୁଁ ମିସେସ୍ ସିମ୍ପ୍‌ସନ୍‌ଙ୍କ ବଡ଼ପଣରେ ଆଭାସ କିଛି ପାଇବି ନାହିଁ । ବୁଝିପାରିବି ନାହିଁ ଯେ ତାଙ୍କ ସଂସ୍ପର୍ଶରେ ଆସିଲେ ମଣିଷ କାହିଁକି ଭଗବାନଙ୍କ ନିକଟକୁ ଆସିବାର କଥା ଭାବିବ । କିନ୍ତୁ ମୁଁ ଆମେରିକାର ଗୋଟିଏ ସୁଖୀ ପରିବାରର ନିକଟଚିତ୍ର ଦେଖିବି; ସେ ଅନୁଭୂତି ଦୁର୍ଲ୍ଲଭ ।

ଆମେ ଟିକିଏ ଡେରିରେ ବାହାରିଲୁ । ସେତେବେଳକୁ ବର୍ଷା ପ୍ରାୟ ଛାଡ଼ି ଯାଇଥାଏ; କିନ୍ତୁ ଶ୍ରୀମତୀ ମନ ଦୁଃଖରେ କହିଲେ, “ଦିନ-ଥାଉଁ ଥାଉଁ ପହଞ୍ଚିଗଲେ ଭଲ ହୋଇ ଥାଆନ୍ତା । ଜେନ୍ କହିଥିଲା ସେ ଆମକୁ ତା’ ବଗିଚାରେ କିଛି ସମୟ ବୁଲାଇ ଫୁଲଗଛସବୁ ଦେଖାଇ ଥାଆନ୍ତା । ତା’ ବଗିଚାରେ ଧଳା ଓ ହଳଦିଆ ଗୋଲାପ ଫୁଲ କେଜାଣି କେତେ । ଏହିକ୍ଷଣି ଅବଶ୍ୟ ଗୋଲାପର ସିଜନ୍ ନୁହେଁ—।”

ପୁଣି ସେ କହିଲେ, “ତା ଲିଭିଙ୍ଗ୍ ରୁମ୍ ଭାରି ଛୋଟ । ଯୋଡ଼ିଏ ତିନୋଟି ଫ୍ୟାମିଲିଙ୍କଠାରୁ ବେଶି ବସିବାକୁ ଜାଗା ନାହିଁ । ସଜାସଜିର ଆଡ଼ମ୍ବର ମଧ୍ୟ କିଛି ନାହିଁ; କିନ୍ତୁ ଜେନ୍‌ର କେତେଗୁଡ଼ିଏ ନିଜ ହାତର ପେଣ୍ଟିଙ୍ଗ୍ ଅଛି, ଆଉ ଗୋଟିଏ

ସୁନ୍ଦର 'ମ୍ୟାଡୋନା ଏଣ୍ଡ୍ ଦ ଚାଇଲ୍ଡ୍'ର ଛବି ଅଛି । ହଁ, ତାଙ୍କର ଗେହ୍ଲା କୁକୁର ରବର୍ର ଗୋଟାଏ ଫଟୋ ଅଛି, ସେ ଯେତେବେଳେ ପିଲା ଥିଲା । ମସ୍ତବଡ଼ ଆଲ୍‌ସେସିଆନ୍ କୁକୁର, ଭାରି କାମିକା ଓ ବୁଦ୍ଧିଆ ।"

ଗାଡ଼ି ଚଳାଇବା ଭିତରେ ଏହିପରି ମୁଁ ସିମ୍ପସନ୍‌ଙ୍କର ଲିଭିଙ୍ଗ୍ ରୁମ୍, ବେଡ୍‌ରୁମ୍, ଗାର୍ଡେନ୍ ଇତ୍ୟାଦିର ପୂର୍ବାଭାସ ପାଇଲି ଏବଂ ମୁଁ ବୁଝିପାରିଲି ଯେ ଶ୍ରୀମତୀ ସେମାନଙ୍କୁ ଜାଣିଛନ୍ତି, ସେମାନଙ୍କର ସମ୍ପୂର୍ଣ୍ଣ ପରିପାର୍ଶ୍ୱ ଭିତରେ ସେ ଜେନ୍‌କୁ ପାଇଛନ୍ତି । ତାଙ୍କର ଯଦି କିଛି ଭୁଲ୍ ଧାରଣା ହୋଇଥାଏ ସେଥିପାଇଁ ମିସେସ୍ ସିମ୍ପ୍‌ସନ୍ ଦାୟୀ ନୁହନ୍ତି ।

ହଠାତ୍ ତାଙ୍କ କଥା ମଝିରେ ମୁଁ ପଚାରିଲି, "ସିମ୍ପ୍‌ସନଙ୍କ ପୁରା ନାଁ କଅଣ ?"

"ଉଇଲିୟମ୍ ସିମ୍ପ୍‌ସନ୍ । ତେବେ ଜେନ୍ ତାଙ୍କୁ ନାଁ ଧରି ଡାକେ ନାହିଁ, ପ୍ରାୟ ଫାଦର ବୋଲି ଡାକେ । କାହିଁକି ?"

"ନା, ଏମିତି ପଚାରିଲି । ସେ ପାଇପ୍ ଖାଆନ୍ତି ?"

"ବୋଧହୁଏ ନୁହେଁ । ଜେନ୍ କହୁଥିଲା ଯେ ସେ ଆଗେ ବହୁତ ସିଗାରେଟ୍ ଖାଉଥିଲେ, ଆଜିକାଲି ଛାଡ଼ି ଦେଇଛନ୍ତି । କିନ୍ତୁ ତାଙ୍କର ପାଇପ୍ ଖାଇବା କଥା କାହିଁକି ତୁମ ମୁଣ୍ଡରେ ପଶିଲା ?"

ମୁଁ ହସିଲି । କିଛି ଉତ୍ତର ଦେଲି ନାହିଁ । କେମିତି କହିବି ଯେ ମୁଁ ଭାବିଥିଲି ମିଷ୍ଟର୍ ସିମ୍ପ୍‌ସନ୍‌ଙ୍କ ନାଁ ହୋଇଥିବ ଥିଓଡ଼ର୍ ସିମ୍ପ୍‌ସନ୍, କିମ୍ବା ସେହିପରି ବିଶିଷ୍ଟ ବିଜାତୀୟ ଧରଣର କିଛି ? ଯେ ତାଙ୍କର ପ୍ରଶସ୍ତ କପାଳ ଥିବ, ଓ ମୁଣ୍ଡରେ କେଉଁ କେଉଁ ଶୁଭ୍ରକେଶ ସଗର୍ବରେ ଶୋଭା ପାଉଥିବ । ତାଙ୍କୁ ଏପରି ସଜ୍ଜା ଓ ଚେହେରାରେ ଦେଖିବାକୁ କାହିଁକି ଇଚ୍ଛା ହେଲା କେମିତି କହିବି ?

ଗାଡ଼ି ଚଲାଇବାର ପ୍ରାୟ ଅଧଘଣ୍ଟାଏ ହୋଇଗଲାଣି । ଓ୍ୱାଶିଙ୍ଗ୍‌ଟନ୍ ସହର କେତେବେଳଠୁଁ ପାର ହୋଇ ଆସିଲୁଣି, ପାହାଡ଼ଜଙ୍ଗଲ ସରୁ ନାହିଁ । ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଲି । ମିସେସ୍ ସିମ୍ପ୍‌ସନ୍ ଓ୍ୱାଶିଙ୍ଗ୍‌ଟନର ଗୋଟିଏ ହସପିଟାଲ୍‌ରେ କାମ କରନ୍ତି, ନାନାଦି ସଭା ସମିତିରେ ଯୋଗ ଦିଅନ୍ତି । ମିଷ୍ଟର୍ ସିମ୍ପ୍‌ସନ୍ ମଧ୍ୟ ଓ୍ୱାଶିଙ୍ଗ୍‌ଟନର ଗୋଟିଏ ପବ୍‌ଲିକ୍ ଲାଇବ୍ରେରୀ ଓ କେତୋଟି ଷ୍ଟୋରରେ ପାର୍ଟ୍-ଟାଇମ୍ କାମ କରନ୍ତି । ସେମାନେ ବନସ୍ତ ପାର ହୋଇ ଏତେ ଦୂରରେ ଅଛନ୍ତି କାହିଁକି ? ଅବଶ୍ୟ ଆମେରିକାରେ ଏ ଦୂରତା ବିଶେଷ କିଛି ନୁହେଁ । ତା' ଛଡ଼ା

ସହରର ଜନଗହଳ ବର୍ଜ୍ଜନ କରି ଦବର୍ବ୍‌ର ମଣିଷସମାଜ ବା କମ୍ୟୁନିଟି ଭିତରେ ରହିବା ରୁଚିର ପରିଚାୟକ । କିନ୍ତୁ ସିମ୍ପ୍‌ସନ୍ ପରିବାର ଧନୀ ନୁହନ୍ତି, ତାଙ୍କର ଯୋଡ଼ାଏ କାର୍ ନାହିଁ, ନୂଆ ମଡେଲ୍‌ର କାର୍ ନାହିଁ । ମିସେସ୍ ସିମ୍ପ୍‌ସନ୍ ପ୍ରାୟ ସେଲ୍‌ରେ ଜିନିଷ କିଣିବାର ଶୁଣିଛି । ଏତେ ଦୂରରେ ରହି ସେମାନଙ୍କୁ ବାଧୁ ନାହିଁ ?

ମୁଁ ଶ୍ରୀମତୀଙ୍କୁ ପଚାରିଲି । ସେ କହିଲେ, "ଓ୍ୱେଲ୍ । ସେମାନେ କେତେବର୍ଷ ତଳେ ଓ୍ୱାସିଂଟନ୍‌ରେ ଥିଲେ, କିନ୍ତୁ ଜେନ୍ କହୁଥିଲା ଯେ ଓ୍ୱାଶିଙ୍ଗ୍‌ଟନ୍‌ର ବାତାବରଣ ତାଙ୍କୁ ସୁହାଇଲା ନାହିଁ ।" ଏହାପରେ ମୋର ଆଉ କିଛି କହିବାର ନ ଥିଲା ।

ଯାହାହେଉ କ୍ରମଶଃ ଆମେ ସମତଳ ଭୂଇଁକୁ ଖସି ଆସିଲୁ । ଛୋଟ ଛୋଟ ସହର ଦେଖାଗଲା । ଡ୍ରଗ୍‌ଷ୍ଟୋର୍ସ, ସୁପର୍‌ମାର୍କେଟ୍, ଗ୍ୟାସ୍ ଷ୍ଟେସନ୍ ଇତ୍ୟାଦିର ପୁନରାବିର୍ଭାବ ହେଲା । ଶ୍ରୀମତୀ ଗୋଟାଏ ଜାଗାରେ ମଲ୍‌ବେରି ଲେନ୍ ନାମକ ଗୋଟିଏ ଗଳି ଭିତରକୁ ମୁହାଁଇବାର ନିର୍ଦ୍ଦେଶ ଦେଲେ ଓ କହିଲେ,—ଆଉ ବେଶି ଦୂର ନୁହେଁ ।

ଆମ କାର୍ ପହଞ୍ଚିବାମାତ୍ରେ ମିସେସ୍ ସିମ୍ପସନ୍ ଦାଣ୍ଡକବାଟ ଖୋଲି ମୁହଁ ଦେଖାଇଲେ ଓ ପଦାକୁ ବାହାରି ଆସିଲେ । ଦାଣ୍ଡ ଲନ୍‌ର ମଝିରେ ଦୁଇବନ୍ଧୁ କିଛିକ୍ଷଣ ଧରି କୋଳାକୋଳି ହେଲେ । ଇତ୍ୟବସରରେ ମୁଁ ଲକ୍ଷ୍ୟ କରି ପାରିଲି ଯେ ତାଙ୍କର ଧଳା କୋଠାଟି ଛୋଟିଆ, କିନ୍ତୁ ନୂତନ ନୁହେଁ ଏବଂ ତାଙ୍କ ଲନ୍‌ର ଘାସ ଉତ୍କୃଷ୍ଟ ଶ୍ରେଣୀର, ଘନ ଓ ନରମ ।

ଲିଭିଙ୍ଗ୍‌ରୁମ୍‌ର ଦୁଆର ପାଖକୁ ଆସିଲାରୁ ଜଣେ ଭଦ୍ରଲୋକ ବସିବା ଚେୟାର୍‌ରୁ ଉଠି ଆସିଲେ । ମିସେସ୍ ସିମ୍ପ୍‌ସନ୍ ପ୍ରସାରିତ ହସ ଓ ଅତିରଞ୍ଜିତ କାଇଦାର ଭଙ୍ଗୀରେ କହିଲେ,— ମିଟ୍ ମାଇ ହଜ୍‌ବ୍ୟାଣ୍ଡ୍ ( ମୋ ସ୍ୱାମୀଙ୍କ ସାଙ୍ଗରେ ଦେଖା କର ) । ମନେହେଲା ଯେ ସେ ତାଙ୍କ ଅଧିକ ଆନନ୍ଦକୁ ଆମୋଦର ଛଳନା କରି ଖେଳାଇ ଦେଉଛନ୍ତି ।

ମିଷ୍ଟର୍ ସିମ୍ପ୍‌ସନ୍ ଯଥାରୀତି କରମର୍ଦ୍ଦନ ଓ କୁଶଳ ସମ୍ଭାଷଣ କଲେ । ସେ ଗୋଟିଏ ସ୍ମିତହାସ ଦେଇଥିଲେ । ମୁଁ ସେ କଥା ଟିକିଏ ପରେ କହୁଛି ।

ଉଇଲିୟମ୍ ସିମ୍ପ୍‌ସନଙ୍କ ମୁହଁରେ ପାଇପ୍ ନାହିଁ, ତାଙ୍କ ମୁଣ୍ଡରେ ଧଳା ବାଳ ଶୋଭା ପାଉ ନାହିଁ । ସେ ଅପେକ୍ଷାକୃତ ଡେଙ୍ଗା, କିନ୍ତୁ ଚେହେରାରେ ଆଉ କିଛି ବୈଶିଷ୍ଟ୍ୟ ନାହିଁ । ପ୍ରଥମ ଦେଖାରେ ମୋର ମନେହେଲା ଯେ ସେ କୁମ୍ଭାରଚକରେ ଗଢ଼ା ସାଧାରଣ ମଣିଷଟିଏ । ତାଙ୍କଠାରେ ଅସାଧାରଣତ୍ୱ ଆରୋପିବା ବିଶୁଦ୍ଧ କଳ୍ପନାର ଖେଳ ଛଡ଼ା ଆଉ କିଛି ହୋଇପାରେ ନାହିଁ ।

କିନ୍ତୁ ସେ ହସିଥିଲେ । ସ୍ୱାଗତର କ୍ଷଣିକ ସ୍ମିତହାସ, ହେଲେ ସେତକ ମୋର ଦୃଷ୍ଟି ଆକର୍ଷଣ କଲା । ଯେ ହସରେ ଆନନ୍ଦ ଥିଲା ନିଶ୍ଚୟ, କିନ୍ତୁ ବୋଧହୁଏ କିଛି ବିଷାଦର ମାତ୍ରା ଥିଲା । ସତେ ଯେପରି ସେ ଏହି ମୁହୂର୍ତ୍ତର ଖୁସିକୁ ଅତ୍ୟଧିକ ପ୍ରାଧାନ୍ୟ ଦେବାକୁ ଚାହୁଁନାହାଁନ୍ତି, ଯେହେତୁ ଏ ମୁହୂର୍ତ୍ତ ପଛରେ ଜୀବନ ଅଛି, ଜୀବନ ଏକ ବିଷାଦ-ଭୂମି ।

ହସିଲା ମୁହଁରେ ସେ କହିଲେ, "ମୁଁ ତୁମ କଥା କେନ୍‌ଠାରୁ ବହୁତ ଶୁଣିଛି, ସେ ତୁମମାନଙ୍କୁ ଭାରି ଭଲ ପାଏ ।"

"ବିଶେଷତଃ ମୋ ସ୍ତ୍ରୀଙ୍କୁ ।"

"ବିଶେଷତଃ—" କହି ସେ ନାରାୟଣୀଙ୍କ ଆଡ଼କୁ ଅନାଇଲେ । ଆଦର ଜମି ଆସିଲା ।

ମିଷ୍ଟର୍ ସିମ୍ପସନ୍ ପ୍ରଶ୍ନ କଲେ ଥଣ୍ଡା ଲାଗୁଛି କି ନାହିଁ, ହିଟିଙ୍ଗ୍ ବଢ଼ାଇ ଦେବା ଉଚିତ ହେବ କି । ମୁଁ ମନାକଲାରୁ ସେ ପ୍ରସ୍ତାବ କଲେ ଯେ ଫାୟାର୍‌ପ୍ଲେସ୍‌ରେ ଧୀର ନିଆଁ ଜଳାଇଲେ ଭଲ ହେବ, ଓ ଯାଙ୍ଗେ ଯାଙ୍ଗେ ଉଠିଗଲେ ଫାୟାର୍‌ପ୍ଲେସ୍ ପାଖକୁ ଏବଂ ଅଗ୍ନିସଂଯୋଗ କରୁ କରୁ କହିଲେ, "ମୁଁ ବୋଧହୁଏ ପୁରୁଣାକାଳିଆ । ସେଣ୍ଟ୍ରାଲ୍ ହିଟିଙ୍ଗ୍‌ଠାରୁ ମୋତେ ବେଶି ଭଲ ଲାଗେ ଫାୟାର୍‌ପ୍ଲେସ୍‌ର ଉଷ୍ମ—।"

"—ଶାନ୍ତ ଲାଗେ" କହି ସେ ମନ୍ତବ୍ୟ ଶେଷ କଲେ । ତା'ପରେ ଆମେ ଦୁହେଁ ଯୋଡ଼ିଏ ଚଉକି ଟାଣି ଫାୟାର୍‌ପ୍ଲେସ୍ ପାଖରେ ବସିଲୁ । ଇତିମଧ୍ୟରେ ମିସେସ୍ ସିମ୍ପସନ୍ ଶ୍ରୀମତୀଙ୍କୁ ରୋଷେଇଘରକୁ ନେଇ ଗଲେଣି । ସେ କହିଲେ ଯେ, ସେ ଶ୍ରୀମତୀଙ୍କ ଆସିବା ପାଇଁ ଅପେକ୍ଷା କରିଥିଲେ, ଦୁହେଁ ଏକାଠି ମିଶି ରାନ୍ଧିବେ ବୋଲି ।

ତେଣୁ ନିଆଁ ପାଖରେ ଗପ କରିବାକୁ ରହିଲୁ କେବଳ ଆମେ ଦୁଇଜଣ, ମୁଁ ଓ ମିଷ୍ଟର୍ ସିମ୍ପସନ୍ ।

ତାଙ୍କ କଥା ଶୁଣିବାକୁ ଭଲ ଲାଗୁଥାଏ, କାରଣ ସେ ଧୀରେ ଧୀରେ ଉଚିତ ପରିମିତ କଥାଗୁଡ଼ିକ କହୁଥାଆନ୍ତି, ଓ ମୁଁ କିଛି କହିଲେ ମନଦେଇ ଶୁଣୁଥାଆନ୍ତି । ଏବଂ ଭଲ ଲାଗୁଥାଏ ତାଙ୍କର ସ୍ମିତହାସ । ମୁଁ ପୁଣି ଥରେ ତା'ର ଅବତାରଣା କରୁଛି, ଯେହେତୁ ସେ ହସକୁ କାଢ଼ିଦେଲେ ତାଙ୍କଠାରେ ଆଉ କିଛି ରହୁ ନାହିଁ, ମନେହେବ ଯେ ସେ ଅନ୍ୟତମ ଗପୁଡ଼ା ପ୍ରୌଢ଼ ଭଦ୍ରଲୋକଟିଏ । ସେହି ହସକୁ ବିଷାଦଭରା ବୋଲି କହିଲେ ଯଥେଷ୍ଟ ହେବ ନାହିଁ । ବିଷାଦରେ କରୁଣତା ଥାଏ, ଦୁଃଖୀ ସହାନୁଭୂତି ଖୋଜେ; କିନ୍ତୁ ମିଷ୍ଟର୍ ସିମ୍ପସନଙ୍କ ହସରେ

କରୁଣତା ନାହିଁ । ସେ ଯେପରିକି ଅନ୍ୟମାନଙ୍କ ଦୟା ଦେଖାଉଛନ୍ତି, ତାଙ୍କ ନିଜର ସହାନୁଭୂତି ବିଷାଦରୂପ ଧାରଣ କରିଛି । ପୁଣି ସେଥିରେ କିଛି ପ୍ରଚ୍ଛନ୍ନ ଗୌରବ ଥିଲା ପରି ଲାଗୁଛି, ଯେତେ ଯେପରି ମଲ୍‌ବେରି ଲେନ୍‌ର ଗୋଟିଏ ଲିଭିଙ୍ଗ୍‌ରୁମ୍‌ର ଫାୟାର୍‌ପ୍ଲେସ୍ ପାଖରେ ବସି ସେ ଅନ୍ୟମାନଙ୍କୁ, ପୃଥିବୀର ଅନ୍ୟମାନଙ୍କୁ, ଯଥାସମ୍ଭବ ଦେଇପାରୁଛନ୍ତି ।

ଆମ କଥାବାର୍ତ୍ତା ଆରମ୍ଭ ହେଲା ପାଣିପାଗଠାରୁ, ପ୍ରାୟ ଯେପରି ହୋଇଥାଏ । ମୁଁ କହିଲି 'ଯେ ଏପ୍ରିଲ୍ ମାସରେ ଏତେ ବେଶି ବର୍ଷା ଓ ଶୀତ ହେବା ଉଚିତ ନୁହେଁ । ଏଠିକାର ଦିନେ ଗରମ ଦିନେ ଥଣ୍ଡା ଆମକୁ ବଡ଼ ବିଚିତ୍ର ଲାଗୁଛି, ଆମ ଦେହରେ ସାଉନାହିଁ । ସେ ସେଥିରେ ଏକମତ ହେଲେ ଓ ଆମ ଦେଶରେ ପାଣିପାଗ କଥା ପଚାରିଲେ । ମୁଁ ଯେତେବେଳେ କହିଲି ଯେ ଆମ ଦେଶରେ ଚାରିମାସିଆ ପାଗ ହୁଏ, —ଅନବରତ ଖରା, ବର୍ଷା ଓ ଶୀତ—, ସେ ଟିକିଏ ଆମୋଦିତ ହେଲାପରି ଲାଗିଲେ ଓ କହିଲେ, "ବେଶ୍ ଭଲ ତ । ତେବେ ଅନିଶ୍ଚିତ ଜଳବାୟୁରେ ଗୋଟାଏ ଚ୍ୟାଲେଂଜ୍ ଅଛି, ମଣିଷକୁ ସବୁବେଳେ ସବୁଥିପାଇଁ ପ୍ରସ୍ତୁତ ହେବାକୁ ପଡ଼େ ।" ମୁଁ ଭାବିଲି ଯେ ଜଣେ ଉଚିତ ଆମେରିକାନ୍ "ପିଲ୍‌ଗ୍ରିମ୍ ଫାଦର୍‌ସ୍‌ଙ୍କର ବଂଶଧର କଥା କହୁଛି,— ଯେ ଶୀତଦିନେ ଗଦାଗଦା ବରଫ ନିଜ ହାତରେ ସଫା କରେ ଓ ବରଫ ଚଟାଣ ଉପରେ ଖେଳେ, ସ୍ପ୍ରିଙ୍ଗ୍‌ରେ ଫୁଲଘାସର ଶୋଭା ଉପଭୋଗ କରେ, ଖରାଦିନେ ପାଣି ଓ ପବନକୁ ଆକ୍ରମଣ କରି ଡେଣା ଲଗାଇ ଉଡ଼େ । ଏହି ସାଧାରଣ ଲୋକଟି ଦରକାର ହେଲେ ସବୁ କରିପାରେ, ଓ କାଲିବେଳେ କହିବ, ମୋତେ ଖୁସି ଲାଗୁଛି ।

କିନ୍ତୁ ମୋ ଆଖି ଆଗରେ ଦିଶିଗଲା ଯେ ଏ ମଲ୍‌ବେରି ଲେନ୍‌ରେ ଅତର୍କିତରେ ବରଫ ଜମା ହୋଇଯାଉଛି, ପାହାଡ଼ ରାସ୍ତା ପିଚ୍ଛିଳ ଘାତକ ହୋଇ ଉଠିଛି ଓ ଓ୍ୱାଶିଙ୍ଗ୍‌ଟନକୁ ଯିବାର ରାସ୍ତାରେ ବୟସ୍କ ସ୍ୱାମୀ ସ୍ତ୍ରୀ କାର୍ ଚଳାଉଛନ୍ତି ଗୋଟିଏ ମୁହୂର୍ତ୍ତରୁ ଆଉ ଗୋଟିଏ ମୁହୂର୍ତ୍ତିଯାଏଁ । ଅଯଥା ଏ ବିପଦ୍ କାହିଁକି ? ମୁଁ ପୂର୍ବର ପ୍ରଶ୍ନକୁ ସ୍ମରଣ କରି ପଚାରି ବସିଲି, "ଆପଣଙ୍କର ଏତେ ଦୂରରେ ରହି କିଛି ଅସୁବିଧା ହୁଏ ନାହିଁ ? ବିଶେଷତଃ ଶୀତ ଦିନେ— । ଓ୍ୱାଶିଙ୍ଗ୍‌ଟନର ପାଖାପାଖି ରହିଲେ ଭଲ ହୁଅନ୍ତା ନାହିଁ ?"

ହେଉଁ ସେ ହସିଲେ । କହିଲେ, "ମୁଁ ଓ୍ୱାସିଙ୍ଗ୍‌ଟନ୍‌କୁ ଭଲ ପାଏ ।" ଏହି ସମୟରେ ଜେନ୍ ସିମ୍‌ସନ୍ ଯୋଡ଼ିଏ ଓ୍ୱାଇନ୍ ଗ୍ଲାସ୍ ଧରି ପହଞ୍ଚିଲେ ଓ ଦୁଃଖ ପ୍ରକାଶ କଲେ ଯେ ତାଙ୍କ ପାଖରେ ହୁଇସ୍କି ନାହିଁ । ମୁଁ ଜଣାଇଲି ଯେ ମୁଁ ଓ୍ୱାଇନ୍ ଭଲ ପାଏ । ପ୍ରକୃତରେ ମୁଁ ଭାବିଲି ଯେ ଏହି ନରମ ସୁନ୍ଦର ପରିବେଶରେ କେବଳ ଓ୍ୱାଇନ୍ ଶୋଭା ପାଇବ, ହୁଇସ୍କି ଜିନ୍ ଆଦି ଅଶ୍ଲୀଳ ବୋଲି ମନେ ହେବ ।

ମିଷ୍ଟର ସିମ୍ସନ୍ ପାନାଧାରରେ ଚୁମୁକ ଦେଇ ଆଉ ଥରେ କହିଲେ, "ମୁଁ ଓ୍ୱାଶିଙ୍ଗ୍‌ଟନ୍‌କୁ ଭଲ ପାଏ । ମୋ ପିଲାଦିନଟାକ ସେଇଠି କଟିଛି । ମୁଁ ଘଣ୍ଟା ଘଣ୍ଟା ଧରି ପୋଟୋମାକ୍ ନଈକୂଳରେ ବସି ବହି ପଢ଼ୁଥିଲି । ବାହା ପରେ ପରେ ଜର୍ଜ ଟାଉନରେ ଗୋଟିଏ ପୁରୁଣା ଘର କିଣିଲି । ସେହି ଘରେ ଦାମ୍ ବର୍ତ୍ତମାନ ଗୁରୁଗୁରୁ ହେବ । ଆମର ଓ ପିଲାମାନଙ୍କର କେତେ ସାଙ୍ଗସାଥୀ ହୋଇଥିଲେ । ବହୁତ ଭାବିଥିଲି ସେଇଠି ରହିଯିବି ବୋଲି । ... କିନ୍ତୁ ଭଗବାନଙ୍କର ଇଚ୍ଛା ଅନ୍ୟପ୍ରକାର ହେଲା । ଓ୍ୱାଶିଙ୍ଗ୍‌ଟନ୍ ବଦଳିଗଲା, ଏପରିକି ଜର୍ଜ୍‌ଟାଉନ୍‌ର ରୂପ ବିକୃତ ହୋଇ ଆସିଲା । ମୁଁ ଭାବିଲି ମୋର ଶେଷଜୀବନ ସେଠି ଶାନ୍ତିରେ କଟାଇ ପାରିବି ନାହିଁ । ମୁଁ ଦୂରରେ ରହି ଓ୍ୱାଶିଙ୍ଗ୍‌ଟନ୍‌କୁ ଭଲ ପାଇ ପାରିବି, ତା'ର ସେବା କରି ପାରିବି । ଭଗବାନ୍ ତାହାହିଁ ଚାହାନ୍ତି ।"

ଓ୍ୱାଶିଙ୍ଗ୍‌ଟନ୍‌ରୁ ଚାଲି ଆସିବାର କାରଣ ସୁସ୍ପଷ୍ଟ ହେଲା ନାହିଁ; କିନ୍ତୁ ମୋର ମନେହେଲା ଯେ ତାଙ୍କୁ ପ୍ରକୃତରେ ବାଧିଛି, ଯଦ୍ୟପି ସେ ସେହି ଦୁଃଖକୁ ବରି ନେଇଛନ୍ତି ।

ଏହାପରେ ମୁଁ ଜାଣିଶୁଣି ଅନ୍ୟକଥା ପକାଇଲି । ଯଥା—ତାଙ୍କ ଲନ୍‌ର ନରମ ଘାସ । ସେ କହିଲେ ଯେ, ସେ ସ୍ପେଶାଲ୍ ଘାସମଞ୍ଜି ଆଣି ଲଗାଇଛନ୍ତି । ତାଙ୍କ ପିଲାମାନଙ୍କ ଖବର ବୁଝିଲି ଯେ, ତାଙ୍କର ଦୁଇ ପୁଅ ଦୁଇ ଝିଅ ବାହାଘାହା ହୋଇ ଘରଦ୍ୱାର କରି ଅଛନ୍ତି, ଯାନ ଝିଅଜ୍ୱାଇଁ ଏହି ପାଖରେ ଅଛନ୍ତି, ନାତିଟି ଅନେକ ସମୟରେ ଏଠି ଆସି ଖେଳେ । କୁକୁର ରବ୍‌ର ବୁଦ୍ଧି-କରାମତି କଥା । ସେ ବିଷୟରେ ସନ୍ତୋଷ କହିଲେ ଯେ, ସେ ତାକୁ ଯଥାସାଧ୍ୟ ଟ୍ରେନିଙ୍ଗ୍ ଦେଇଛନ୍ତି, କୁକୁର ହେଲେ ମଧ୍ୟ ରବ୍ ଅନେକ କିଛି ଶିଖି ପାରିଛି । ମିସେସ୍ ସିମ୍ସନଙ୍କର କାର୍ପେଟ୍ । ଉତ୍ତରରେ ନୀରବ ଅଙ୍ଗୀକାର ।

ଆଳାପର ଅବସର ଭିତରେ ମୁଁ ଯେ କେବଳ ମିସେସ୍ ସିମ୍ସନଙ୍କ କାର୍ପେଟ୍ ଦେଖିଥିଲି ତାହା ନୁହେଁ, ଲିଭିଙ୍ଗ୍‌ରୁମ୍‌ର ଅନ୍ୟାନ୍ୟ କେତେକ ବସ୍ତୁ ମୋ ଆଖିରେ ପଡ଼ିଥିଲା । ସେ ସବୁ ବୋଧହୁଏ ଶ୍ରୀମତୀ ଦେଖି ନ ଥିଲେ କିମ୍ବା ବର୍ଣ୍ଣନା କରିବାକୁ ଭୁଲି ଯାଇଥିଲେ ।

ଥାକରେ ଅନେକ ବହି । କେତେଗୁଡ଼ିଏ ଅଦମାନ ଓ ଅସଜଡ଼ା ହୋଇ ରହି ଥାଏ । ସେଥିରୁ ବ୍ୟବହାରର ପରିଚୟ ମିଳୁଥାଏ । ମୁଁ ନିରୀକ୍ଷଣ କରି ଦେଖିଲି ଯେ ବିଭିନ୍ନ ଜ୍ଞାନକୋଷ ଧରଣର ବହି ଛାଡ଼ି ଦେଲେ ବାକିସବୁ ଧର୍ମ ଓ କୃଷି ସମ୍ବନ୍ଧୀୟ । ମୁଁ ପରେ ଶ୍ରୀମତୀଙ୍କଠାରୁ ଜାଣିଲି ଯେ ମିଷ୍ଟର୍ ସିମ୍ସନ୍ କୃଷିରେ ମନ ବଳାଇଛନ୍ତି, ଅଦୂରଭବିଷ୍ୟତରେ ସେ ଜଣେ ରୀତିମତ ଫାର୍ମର୍ ହୋଇ ଯାଇପାରନ୍ତି ।

କିନ୍ତୁ ବର୍ତ୍ତମାନ ଧର୍ମପୁସ୍ତକ ଗୁଡ଼ିକ ମୋର ବିଶେଷ ଦୃଷ୍ଟି ଆକର୍ଷଣ କଲା । ସେ ବହିସବୁ ଏତେ କାହିଁକି ଅଛି ? ମିଷ୍ଟର ସିମ୍ପସନ୍ ଧର୍ମଯାଜକ, ଥିଓଲଜିର ଶିକ୍ଷକ ବା ଏମିତି କିଛି ନୁହନ୍ତି । ତେଣୁ ମୁଁ ଭାବିଲି ଯେ ସେ ନିଜର ଆନନ୍ଦ ପାଇଁ ଏ ବହିସବୁ ପଢ଼ନ୍ତି । ସେ ଧର୍ମର ଆଗ୍ରହୀ । କଥାକଥାକେ ଭଗବାନଙ୍କ ନାମ ନେବା ତାଙ୍କର ଗୋଟାଏ ଢଙ୍ଗ ବା ଅଭ୍ୟାସ ନୁହେଁ, ଧର୍ମ ତାଙ୍କର ଜ୍ଞାନ ଓ ଚିନ୍ତାକୁ ଘେରି ରହିଛି । ବହିଥାକ ଉପରେ ମ୍ୟାଡୋନା ଏଣ୍ଡ ଦ ଗ୍ରିଲାର୍ଡ଼'ର ଛବି, ରାଫେଲଙ୍କର ଗୋଟିଏ ପ୍ରସିଦ୍ଧ ଚିତ୍ରର ପ୍ରତିକୃତି । କପାଳରେ ସିନ୍ଦୂର ଟୋପା ପରି ସେ ସେହି ବହିଥାକର ମହିମା ଆଣି ଦେଉଛି, ତା'ର ସ୍ୱରୂପ ଚିହ୍ନାଇ ଦେଉଛି ।

ଶୋଭା ଓ ବ୍ୟବହାରର ଅନ୍ୟ ସାମଗ୍ରୀମାନଙ୍କ କଥା ପଦେ ଅଧେ କହୁଛି । ବିଭିନ୍ନ ଧାତୁ ଓ ଆକୃତିର ଫୁଲଦାନୀ,—ସେଥିରେ ଥିବା ପ୍ଲାଷ୍ଟିକ୍ ଫୁଲରେ ଉତ୍କୃଷ୍ଟ ରୁଚିର ପରିଚୟ ମିଳୁ ନ ଥିଲା । ମିସେସ୍ ସିମ୍ପସନଙ୍କ ହାତର ପେଣ୍ଟିଙ୍ଗ୍ ଦେଖିଲି, ଗୋଟିଏ ସମୁଦ୍ରର ଛବି ଅନ୍ୟଟି ... ଲର । ଦେଖିଲାମାତ୍ରେ ମନେ ହେଉଥିଲା ଯେ ଶିଳ୍ପୀ ପ୍ରକୃତିକୁ ଭଲ ପାଆନ୍ତି, ତେଣୁ ସେ ତା'ର ଉଚିତ୍-ସୁନ୍ଦର ରୂପ ଅଙ୍କିଛନ୍ତି । ନିଜର ଭାବନା ଦୁର୍ଭାବନା ଦେଇ ଅଧିକ କିଛି ଗଢ଼ିବାର ପ୍ରୟାସ କରି ନାହାନ୍ତି । ବାକି କେତୋଟି ଛବି, ଫଟୋ, ଲ୍ୟାମ୍ପସେଡ଼, ଟେବୁଲ ଚେୟାର୍‌ର ବହୁଳତା ଭିତରେ ଉଲ୍ଲେଖଯୋଗ୍ୟ କିଛି ନ ଥିଲା । କେବଳ ଗୋଟିଏ ଛୋଟ ଷ୍ଟୁଲ ଚଉକି ଓ ତା' ଉପରେ ପଡ଼ିଥିବା ଟେଡ଼ି ବିଅର୍ କଣ୍ଢେଇ ଜଣାଇ ଦେଉଥିଲା ଯେ, ଏ ଘରେ ଗୋଟିଏ ଛୋଟ ପିଲା ଆସି ଖେଳେ । ସିମ୍ପସନଙ୍କର ନାତି ହୋଇଥିବ ନିଶ୍ଚୟ ଏବଂ କାନ୍ଥକୋଣରେ ଗୋଟିଏ ବିରାଟ କଣ୍ଢାକିଆ ଠେଙ୍ଗାକାଠିଆ ଜିନିଷ ଥିଲା । ତା'ର ଉଦ୍ଦେଶ୍ୟ କ'ଣ ମୁଁ ବୁଝି ପାରିଲି ନାହିଁ ।

ସବୁ ଜିନିଷ ଦେଖିସାରି ଫାୟାର୍-ସାଇଡ଼୍ ଡିଭାନରେ ଆରାମ ନେଇ ମୁଁ ଭାବିଲି ଯେ ଏ ଘରସଜାରେ ହୁଏତ ଐଶ୍ୱର୍ଯ୍ୟର ଦୀପ୍ତି ନାହିଁ, ଉଚ୍ଚାଙ୍ଗ ରୁଚିର ଅଭାବ ପରିଲକ୍ଷିତ ହେଉଛି, କିନ୍ତୁ ଏଠି ରହିବା ଗୁଣ ଅଛି । ଏଠି ଦୁଇଟି ପ୍ରାଣୀ ସ୍ୱଧର୍ମ ପାଳନ କରି ପଢ଼ିବା, ଏକାଠି ବସିବା, ପିଲା ଖେଳାଇବା, ଛବି ଆଙ୍କିବା ଓ ପ୍ରାର୍ଥନା କରିବାର ଆନନ୍ଦ ପାଆନ୍ତି ଏବଂ ଏଠି ଅଛି ବନ୍ଧୁତାର ପ୍ରୀତି ଓ ଆଶ୍ୱାସନା । ଏହି ଫାୟାର୍‌ସାଇଡ଼ ପାଖରେ ଏମିତି କେତେ ଅତିଥି ଆସି ବସିଥିବେ ମିଷ୍ଟର୍ ସିମ୍ପସନଙ୍କର କଥା ଶୁଣିଥିବେ, ଓ ମୋରି ପରି ଭାବିଥିବେ । ହୁଏତ ମିସେସ୍ ସିମ୍ପସନ୍‌ଙ୍କର କିଚେନ୍‌ରେ ଶ୍ରୀମତୀଙ୍କ ପରି ଆଉ କେତେ ବନ୍ଧୁ ଆସି ଏକାଠି ରାନ୍ଧିଥିବେ, ଘରଣୀପଣର ପରାକାଷ୍ଠା ଦେଖାଇଥିବେ । ଏ ଘରେ ନିମନ୍ତ୍ରଣର ମୂଲ୍ୟ ଅଛି ।

ତାଙ୍କର ବନ୍ଧୁ ହେବା ପୂର୍ବରୁ ଆମର କଥାବାର୍ତ୍ତା ପୃଥିବୀର ରାଜନୀତି ଆଡ଼କୁ ଗତି କରିଥିଲା । ମୋର ମନେହେଲା ଯେ ମିଷ୍ଟର ସିମ୍‌ସନ ରାଜନୀତି ବିଶାରଦ ନୁହନ୍ତି, କିନ୍ତୁ ସେ ରାଜନୀତିକୁ କେବଳ ସକାଳର କଫି ଓ ଖବରକାଗଜର ଗୁଣ ବୋଲି ଭାବନ୍ତି ନାହିଁ । ସେ ସମ୍ବାଦର ମଣିଷମାନଙ୍କ ପାଇଁ ଭାବନ୍ତି । ହେଡ୍‌ଲାଇନ୍ ପଛରେ ଥିବା ରାଜା, ପ୍ରଧାନମନ୍ତ୍ରୀ ଓ ଲୋକମାନଙ୍କର କଳହ, ହିଂସା, ଉଦ୍ୟମ, ଅନୁରାଗ ତାଙ୍କ ମନକୁ ଛୁଏଁ । ସାଇପ୍ରସ୍‌ରେ ଗ୍ରୀକ୍ ଓ ତୁର୍କ୍‌ମାନେ କାହିଁକି କଳି କରୁଛନ୍ତି ? — ଯେ ପ୍ରଶ୍ନ ସେ ମୋତେ ଓ ନିଜକୁ ପଚାରିଲେ । ସଂଘର୍ଷର କାରଣ ଅବଶ୍ୟ ତାଙ୍କୁ ଅଜଣା ନାହିଁ । କିନ୍ତୁ ତାଙ୍କର ପ୍ରଶ୍ନ ହେଉଛି ଯେ ଏ ହିଂସା, ଏ ରକ୍ତପାତର ଶେଷ କେଉଁଠି । ସେମାନେ କ'ଣ ଜାଣନ୍ତି ନାହିଁ ଯେ ଶତଶତ ନିର୍ଦ୍ଦୋଷ ଲୋକ ସ୍ତ୍ରୀ ପିଲାଙ୍କ ଜୀବନ ଅକାରଣରେ ଲୋପ ପାଇଯାଉଛି ? ଯେ ଭଗବାନଙ୍କ ଉଦ୍ଦେଶ୍ୟ ନ ଥିଲା ସେହି ଜୀବନଗୁଡ଼ିକ ଏମିତି ଆସି ଚାଲିଯିବ ବୋଲି ? ବିବାଦର ସମାଧାନ ହେବ ନିଶ୍ଚୟ, କିନ୍ତୁ ସେ ପ୍ରାଣୀଗୁଡ଼ିକ ପୁଣି ବଞ୍ଚିଉଠିବେ ନାହିଁ । ମିଷ୍ଟର ସିମ୍‌ସନଙ୍କ କଣ୍ଠରେ ବ୍ୟଥା ଥିଲା ।

ମୁଁ ତାଙ୍କ ସହିତ ଏକମତ ହେଲି, କିନ୍ତୁ କହିଲି ଯେ ପୃଥିବୀରେ ଏହିପରି ସବୁବେଳେ ଘଟି ଆସିଛି । ମଣିଷର ମନ ଓ ହୃଦୟ ଯଥାର୍ଥରେ ବଦଳି ନାହିଁ, ପୂର୍ବର ସେହି ଜନ୍ତୁସ୍ତରରେ ଅଛି ।

ସେ ସ୍ମିତହାସ ଦେଇ କହିଲେ, "ମଣିଷ ଜନ୍ତୁ ନୁହେଁ । ଆମେ ସମସ୍ତେ ଭଗବାନଙ୍କ ପିଲା, କିନ୍ତୁ ଭଗବାନଙ୍କର ଆଶୀର୍ବାଦ ଆମେ ସମାନ ଭାବରେ ପାଇ ନାହୁଁ । ଆମେ ସମସ୍ତଙ୍କର ଦୋଷ-ଗୁଣ ପାପ-ପୁଣ୍ୟ ସମାନ ନୁହେଁ । ସେଇଥିପାଇଁ କିଏ ସୁଖୀ, କିଏ ଅସୁଖୀ । ଏହି ସହଜ କଥାଟିକି ବୁଝି ନ ପାରିବାରୁ ଏତେ କଜିଆ ଲାଗିଛି, ଆମ ଲୋକେ ଏତେ ଅବଚ୍ଛା ହେଉଛନ୍ତି ।"

ସାଇପ୍ରସ୍ ସମସ୍ୟା ସହିତ ଏହି ଯୁକ୍ତିର ସମ୍ପର୍କ କ'ଣ ମୁଁ ଜାଣି ପାରିଲି ନାହିଁ । ତେବେ ମୋଟାମୋଟି କଥାଟା ସତ ବୋଲି ମୁଣ୍ଡ ହଲାଇଲି । ମୋର ମନେ ହେଲା ଯେ ସେ ଉପସ୍ଥିତ ବିଷୟ ନେଇ ତାଙ୍କର ସବୁ କଥା, ସବୁ ମତାମତ ସାରିଦେଇ ନାହାନ୍ତି । ସେ ମୋତେ ହୃଦୟଙ୍ଗମ କରିବାକୁ ସମୟ ଦେଉଛନ୍ତି ।

ମୋର ଧାରଣା ଠିକ୍ ଥିଲା । କିଛି ସମୟର ନୀରବତା ପରେ ସେ କହିଲେ, "ଆମେ ଦେଶରେ ଏବେ କଣ ହେଉଛି ? ଏତେ ବଡ଼ ଦେଶ । ଭଗବାନଙ୍କ ରାଜ୍ୟରେ ତା'ର ବିଶେଷ ସ୍ଥାନ ଅଛି, ସୁଖ୍ୟାତି ଅଛି; କିନ୍ତୁ ଥୋକେ ତା'ର ମହିମା ନଷ୍ଟ କରି ଦେଉଛନ୍ତି । ସେହି ଅବୁଝାମଣା, ଅଜ୍ଞତା— ।"

ଆମ କଥାବାର୍ତ୍ତାର କିଛି ଅଂଶ ବୋଧହୁଏ କିଚେନ୍‌ରେ ପହଞ୍ଚୁଥିଲା । କାରଣ ମିସେସ୍ ସିମ୍ପ୍‌ସନ୍ ଦୁଆର ମୁହଁକୁ ଚାଲିଆସି କହିଲେ, "କଣ ପଲିଟିକ୍ସ୍ ଗପ ସରିବ ନାହିଁ ? ଆମକୁ ଖାଇ ଦେଉ ନାହିଁ, ଖାଇବା ଥଣ୍ଡା ହେଲାଣି ।" ତା'ପରେ ସେ ମୋ ଆଡ଼କୁ ଚାହିଁ କହିଲେ, "ମୁଁ ଡେଜାର୍ଟ୍ ପାଇଁ ରାଇସ୍‌ପୁଡ଼ିଙ୍ଗ୍ କରିଛି ତୁମ ପାଇଁ । ମୁଁ ପଚାରିଲି ପୁଡ଼ିଙ୍ଗ୍ କଲେ ଭଲ ହେବ ନା ଆଇସ୍‌କ୍ରିମ୍ । ତୁମ ସ୍ତ୍ରୀ କହିଲେ ଯେ ତୁମେ କୁଆଡ଼େ ପୁଡ଼ିଙ୍ଗ୍ ଭଲ ପାଅ, ବିଶେଷତଃ ରାଇସ୍ ପୁଡ଼ିଙ୍ଗ୍ ।"

ମୁଁ ତାଙ୍କୁ ଓ ଶ୍ରୀମତୀଙ୍କୁ ସମର୍ଥନ କଲି । ମିଷ୍ଟର୍ ସିମ୍ପ୍‌ସନ୍ ସ୍ତ୍ରୀଙ୍କ ଆଡ଼କୁ ଟିକିଏ ଚାହିଁଦେଇ ଥଟ୍ଟା କଲାପରି କହିଲେ, "ଜେନ୍ ଭାରି ଚାଲାକ୍ । ଅତିଥିଙ୍କୁ କେମିତି ଖୁସି କରିବାକୁ ହୁଏ ତା'ର ଉପାୟ ସେ ଜାଣେ ।" ମିସେସ୍ ସିମ୍ପ୍‌ସନ୍ ଆଦରବୋଳା ପ୍ରତ୍ୟୁତ୍ତର ଦେଲେ, "ସତେ ? ତୁମେ ଯେମିତି ପୁଡ଼ିଙ୍ଗ୍ ଭଲ ପାଅ ନାହିଁ !" ଶ୍ରୀମତୀ ଏଥିମଧ୍ୟରେ ବନ୍ଧୁଙ୍କ ପାଖରେ ପହଞ୍ଚି ଏହି ଦୁଇଟିର ଉପଭୋଗ କରୁଥିଲେ, ପୁଚୁକି ଓ ଖାଦ୍ୟ ।

ଆମେରିକାର ଦୁର୍ଦ୍ଦଶାପ୍ରସଙ୍ଗ ଆଉ ଆଗେଇ ପାରିଲା ନାହିଁ । ସେମାନେ ଦୁଇଜଣ ଆସି ଆମ ପାଖରେ ବସିଲେ ଓ ଯାବତୀୟ ଘରୋଇ କଥା ଚାଲିଲା । କିଛି ସମୟ ପରେ ମିସେସ୍ ସିମ୍ପ୍‌ସନ ହାତଘଡ଼ି ଦେଖି କହିଲେ, "ଆଚ୍ଛା ବାଜିବ । ସୁସି ଓ ରିକଙ୍କ ପାଇଁ ଆଉ ଅପେକ୍ଷା କରି ଲାଭ ନାହିଁ । ସୁସି କହୁଥିଲା ତାଙ୍କର ହୁଏତ ଡେରି ହୋଇପାରେ, ସ୍କୁଲ୍‌ର ପି. ଟି. ଏ. ମିଟିଂ ସାରି ଆସିବେ ।"

ଶ୍ରୀମତୀ ଓ ମୁଁ ଆପତ୍ତି କଲୁ, କିନ୍ତୁ ଆମର ଅପତ୍ତି ନ ମାନି ଡିନର୍‌ର ବନ୍ଦୋବସ୍ତ କରାଗଲା ।

ଡିନର୍ ଟେବୁଲ୍‌କୁ ବର୍ଣ୍ଣନା କରିବାର କିଛି ନାହିଁ । ଖାଦ୍ୟ ସରଞ୍ଜାମ ଅଳ୍ପ ସଜାସଜିର ଚେଷ୍ଟା ପ୍ରାୟ ହୋଇନାହିଁ କହିଲେ ଚଳେ । କିନ୍ତୁ ଶ୍ରୀମତୀଙ୍କଠାରୁ ଶୁଣିଛି ଯେ ମିସେସ୍ ସିମ୍ପ୍‌ସନ୍ ଭଲ ରାନ୍ଧନ୍ତି । ତେଣୁ ମୁଁ ଆଗ୍ରହରେ ସ୍ୱାଦୁର ଅପେକ୍ଷାରେ ରହିଲି ।

ମୋତେ କିଛି ସମୟ ଅପେକ୍ଷା କରିବାକୁ ପଡ଼ିଲା । କାହିଁକିନା ଖାଇବାପୂର୍ବରୁ ହଠାତ୍ କଥାବାର୍ତ୍ତା ବନ୍ଦ ହୋଇଗଲା । ମିସେସ୍ ସିମ୍ପ୍‌ସନ୍ ସ୍ୱାମୀଙ୍କ ଅଡ଼କୁ ଅନାଇ କହିଲେ, ଫାଦର୍ ଆରମ୍ଭ କରନ୍ତେ । ମିଷ୍ଟର୍ ସିମ୍ପ୍‌ସନ୍ ଶାନ୍ତଗମ୍ଭୀର ମୁଦ୍ରାରେ ଆରମ୍ଭ କଲେ, ହେ ସର୍ବଶକ୍ତିମାନ୍ ପିତା··· ।

ପ୍ରାର୍ଥନାର ପଦଗୁଡ଼ିକ ଜଣାଶୁଣା,—ଖାଇବା ପାଇଁ ଓ ବଞ୍ଚିବା ପାଇଁ

ଯେ ଭଗବାନ୍ ଭାରତରୁ ଆସିଥିବା ଏହି ପ୍ରିୟ ବନ୍ଧୁ ଓ ଅତିଥିଙ୍କର ମଙ୍ଗଳ କରନ୍ତୁ, ଦୁଇ ପରିବାରର ବନ୍ଧୁତା ଉତ୍ତରୋତ୍ତର ବୃଦ୍ଧି ପାଉ । ଆଉ ଗୋଟିଏ ବିଶେଷ କିନ୍ତୁ ସବୁଦିନିଆ ଧାଡ଼ି ଆଞ୍ଜେଲା ପାଇଁ,—ପ୍ରିୟ ଆଞ୍ଜେଲାର ଆତ୍ମା ଶାନ୍ତିରେ ରହୁ । ତାହାର ପରେ ସ୍ତୁତି ବାଣୀ, ଆମେନ୍ । ମିଷ୍ଟର୍ ସିମ୍ପ୍ସନ ସମ୍ମୁଖ ଦୃଷ୍ଟି ଦେଲେ ଓ ଆମେ ଖାଇବା ଆରମ୍ଭ କଲୁ ।

ରନ୍ଧା ବେଶ୍ ଭଲ ହୋଇଥାଏ । ସବୁଠାରୁ ଭଲ ଲାଗୁଥାଏ ମିସେସ୍ ସିମ୍ପ୍ସନଙ୍କର ଅତିଥିପରାୟଣତା । ସେ ଗପରେ ଭାସିଯାଉ ନ ଥାଆନ୍ତି କିମ୍ବା ପ୍ରତି-ମୁହୂର୍ତ୍ତରେ ଅମୁକଟା ଖାଅ, ଅମୁକଟା ଭଲ ହୋଇଛି ଇତ୍ୟାଦି କହି ବ୍ୟସ୍ତ କରି ଦେଉ ନ ଥାଆନ୍ତି । ସେ ନିଜର ଶାନ୍ତ ଦେଇ ଆମକୁ ଶାନ୍ତିରେ ଖାଇବାକୁ ଦେଉ ଥାଆନ୍ତି । ମଝିରେ ମଝିରେ ଆଗ୍ରହ ଦେଖାଇ ବ୍ୟଞ୍ଜନ ବିଶେଷ ନିଜ ଆଡ଼କୁ ବଢ଼ାଇ ଦେବାକୁ କହି ଧୀରୁ କଣ୍ଠରେ ପଚାରୁଥାଆନ୍ତି,—ଆଉ ତୁମେ ? ତୁମକୁ ଟିକିଏ ଦିଏ ? ତାଙ୍କ ତତ୍ପରତାରେ ଧାର ନ ଥିଲା । ତାଙ୍କ ପ୍ରସନ୍ନତାରେ ନିର୍ମଳ ଆକାଶର ଗୁଣ ଥିଲା, ଯାହାର ବ୍ୟାପକତା ମାଡ଼ି ପଡ଼େ ନାହିଁ, କିନ୍ତୁ ଚେତନାକୁ ସମଗ୍ର ଭାବରେ ଛୁଇଁ ପାରେ ।

ଆକାର ପ୍ରକାରରେ ଜେନ୍ ସିମ୍ପ୍ସନ୍ ତାଙ୍କ ସ୍ୱାମୀଙ୍କଠାରୁ ଯଥେଷ୍ଟ ଭିନ୍ନ । ଅଳ୍ପ ଉଚ୍ଚ, ଅବୟବରେ ସମତା ଅଛି, ବୟସକୁ ଚୁହିଁ ଦେହର ମସୃଣତା ପ୍ରଶଂସା-ଯୋଗ୍ୟ । ଗ୍ରେଷ୍ଠ ପାଟି, ବଡ଼ ଆଖି, ଆଖିତୋଳା ମୃଦୁ ନୀଳ । ହଠାତ୍ ଆବିଷ୍କାର କଲା ପରି ମୋର ମନେହେଲା ଯେ ତାଙ୍କ ଯୌବନର ସୌନ୍ଦର୍ଯ୍ୟ ଲୋଭନୀୟ ଥିଲା । ସେହି ଗ୍ରେଷ୍ଠ ପାଟିରେ କେତେ ଅବ୍ୟକ୍ତ ଅଳି ଓ ନିମନ୍ତ୍ରଣ ଥିବ, ସେହି ବଡ଼ ଆଖିର ଚାହାଣୀରେ ଉତ୍ସୁକତା ଭରିଥିବ, ଉଚ୍ଛୁଳି ଆସିଲା ପରି । ସେ ଅସଂଯତ ହସ ହସୁଥିବେ,—ପ୍ରକୃତିର ବାଳିକାର ହସ, ଅଶାନ୍ତ ଆନନ୍ଦର ହସ ।

ହୁଏତ ମୋର ଭ୍ରମ ହୋଇପାରେ । ଜେନ୍ ସିମ୍ପ୍ସନ୍ ଅତୀତରେ କିପରି ଥିଲେ ତାହା ଜାଣିବାର ଶକ୍ତି ମୋର ନାହିଁ; କିନ୍ତୁ ମୁଁ ଭାବିଲି ଯେ ମୋର ଧାରଣାରେ ସଙ୍ଗତି ଅଛି, ଯୁକ୍ତି ଅଛି । ଶ୍ରୀମତୀ ଜେନ୍‌ଠାରେ ପାଇଛନ୍ତି ଗମ୍ଭୀରତାର ସ୍ପର୍ଶ, ମୁଁ ଦେଖୁଛି ପ୍ରସନ୍ନତାର ରୂପ । ଏହି ଭାବର ଗରିମା ଏତେ ନିଖୁଣ ଯେ ସହଜାତ ବୋଲି ମନେ ହେଉନାହିଁ । ନା । ସୈକତଭୂମିର ଏହି ସ୍ୱର୍ଗୀୟତା ପଛରେ ନିଶ୍ଚୟ ଥିଲା ସ୍ରୋତସ୍ୱତୀର ଆବେଗ । ମିସେସ୍ ସିମ୍ପ୍ସନ୍ ସବୁଦିନେ ଏମିତି ନ ଥିଲେ । ସେ ତାଙ୍କର ସୌନ୍ଦର୍ଯ୍ୟ-ଆବେଗ ନେଇ ପୃଥିବୀ ସାଙ୍ଗରେ ଖେଳୁ ଖେଳୁ କିଛି ଗୋଟାଏ ବଡ଼ ଜିନିଷ ପାଇଗଲେ ଓ ତାକୁ ନିଜ ଭିତରେ ମିଶାଇ ଦେଇ ପାରିଲେ ।

"—ଫାଦର ପିଆଜ ଭଲ ପାଆନ୍ତି ନାହିଁ, ନ ହେଲେ ଏ କାସେରୋଲ୍‌ ମୁଁ ବେଶି ପିଆଜ ଦେଇ କରିଥାଆନ୍ତି । ତୁମକୁ ବୋଧହୁଏ ଭଲ ଲଗି ଥାଆନ୍ତା,—ନୁହେଁ ?···" ଏହି ମର୍ମରେ ମିସେସ୍ ସିମ୍ପ୍‌ସନ୍‌ କଣ କହୁଥାଆନ୍ତି ଆମକୁ ।

ମୋର ଭାବନାର ଗତି ବ୍ୟାହତ ହେବ ନାହିଁ । ମିସେସ୍ ସିମ୍ପ୍‌ସନ୍‌ କଣ ପାଇଛନ୍ତି ? ଶ୍ରୀମତୀଙ୍କ କଥା ମନେ ପଡ଼ିଲା, ଯେ ଜେନ୍‌ର ସଂସ୍ପର୍ଶରେ ଆସିଲେ ମଣିଷ ଭଗବାନଙ୍କ ନିକଟକୁ ଯାଇପାରିବ । ଶ୍ରୀମତୀଙ୍କ ଅନୁଭୂତି ତାଙ୍କ ନିଜର, ସେ ବିଷୟରେ ମୁଁ କହି ପାରିବି ନାହିଁ । କିନ୍ତୁ ଜେନ୍ ସିମ୍ପ୍‌ସନ୍‌ କେଉଁ ଅନୁପ୍ରେରଣା ପାଇ ଶ୍ରୀମତୀଙ୍କୁ ଦେଇ ପାରିଲେ ? କିଏ ତାଙ୍କ ଭଗବାନ୍ ? ଫାଦର-ସ୍ୱାମୀ ଉଇଲିୟମ୍ ସିମ୍ପ୍‌ସନ୍‌ ?

କଳ୍ପନାର ଅନ୍ତରୀକ୍ଷରୁ ଫେରି ଆସି ମୁଁ ଭୁଲିଯାଇଥିବା ସାଲଡ୍‌ ପ୍ଲେଟ୍‌ରେ ମନ ଦେଲି । ସାଧାରଣ ମଧ୍ୟବିତ୍ତ ସ୍ୱାମୀ-ସ୍ତ୍ରୀ ଦୁଇଟି, ପରସ୍ପରକୁ ଭଲ ପାଆନ୍ତି । ଏଥିରେ ଏତେ ବଡ଼େଇ ବା ବିଦ୍ରୂପ କରିବାର କଅଣ ଅଛି ? ଜଣେ ମୂର୍ତ୍ତିମୟୀ ପ୍ରଫୁଲ୍ଲତା, ଅନ୍ୟଜଣଙ୍କ ବିଷାଦର ନୂତନତମ ସଂସ୍କରଣ । ଏକ ଅପରର ପରିପୂରକ । ଏମାନଙ୍କୁ ଦେଖି ଭଲ ଲାଗୁଛି, ଆଉ କ'ଣ ଦରକାର ?

ଶ୍ରୀମତୀ ଓ ମିସେସ୍ ସିମ୍ପ୍‌ସନ ଘରକରଣାର ଗପ କରି ଚାଲିଥାଆନ୍ତି । ବର୍ତ୍ତମାନ କଥା ପଡ଼ିଥାଏ, ମହୁ ଫେଣାରେ ମହମବତୀ କେମିତି ତିଆରି କରିବାକୁ ହୁଏ ସେଥିର ବିଶେଷଜ୍ଞ କଅଣ । ମିଷ୍ଟର ସିମ୍ପ୍‌ସନ୍‌ ମନୋଯୋଗ ସହ ଶୁଣିଲା ପରି ଲାଗୁଥାଆନ୍ତି । ଭାବିଲି ଯେ ଯେତେ ଯାହାହେଉ ସେ ଘରୋଇ ସ୍ୱାମୀଟିଏ; ତାଙ୍କର ବିଜ୍ଞତା ଓ ଧର୍ମ୍ମଦର୍ଶନର ଆଳରେ ଆକାଶରେ ଉଡ଼ୁ ନାହାନ୍ତି, ଅନ୍ୟମନସ୍କତାର ବାହାଦୁରୀ ଦେଖାଉ ନାହାନ୍ତି ।

ଶେଷକୁ ରାଇସ୍-ପୁଡ଼ିଙ୍ଗ୍ ଆସିଲା । କ୍ଷୀରିପରି ସୁସ୍ୱାଦୁ ନ ହୋଇଥିଲେ ମଧ୍ୟ ମନ୍ଦ ଲାଗୁ ନ ଥାଏ । ମୋତେ ବେଶି ଖାଇବାକୁ ପଡ଼ିଲା, କାରଣ ଲୋକମୁଖରେ ଜଣା ଯେ ମୁଁ ରାଇସ୍-ପୁଡ଼ିଙ୍ଗ୍ ଭଲ ପାଏ ।

ଡିନର୍ ପରେ ଆମେ ସମସ୍ତେ ଲିଭିଙ୍ଗ୍-ରୁମ୍‌ରେ ଏକାଠି ହେଲୁ । କଫି ଆସିବା ପୂର୍ବରୁ ମିଷ୍ଟର ସିମ୍ପ୍‌ସନ୍‌ କୁକୁର ରବ୍‌ର କ୍ରିୟାକଳାପ ଦେଖାଇଲେ,—ସେ କିପରି କଥା ମାନେ, ଖାଇବାକୁ କହିଲେ ଖାଏ, ଶୋଇବାକୁ କହିଲେ ଶୋଇଯାଏ, ଇତ୍ୟାଦି । ମିସେସ୍ ସିମ୍ପ୍‌ସନ୍‌ ବତାଇଦେଲେ ଯେ ସେ ଫାଦରଙ୍କ କଥା ଯେମିତି ମାନେ, ଆଉ କାହା କଥା ସେମିତି ମାନେ ନାହିଁ ।

କଫି ପିଇ ସାରିଲା ପରେ ମୁଁ ଫେରିବାର ଅନୁମତି ମାଗିଲି; କିନ୍ତୁ ମିଷ୍ଟର୍ ସିମ୍ପ୍‌ସନ୍‌ ଅଟକାଇଲେ । କହିଲେ ଯେ ହୁଏତ ରିକ ଓ ସୁସି ଆସିପାରନ୍ତି, ତା'ଛଡ଼ା

ଘଡ଼ି ବେଶି ଡେରି ହୋଇନାହିଁ, ଆକାଶ ସଫା ହୋଇଗଲଣି, ଗାଡ଼ି ଚଳାଇବାରେ କିଛି ଅସୁବିଧା ହେବ ନାହିଁ । ମୁଁ ଯାହା ଟିକିଏ ଜୋର୍ ଦେଇଥାଆନ୍ତି, ଦେଖିଲି ଯେ ଶ୍ରୀମତୀ ସିନ୍ଦାଙ୍କୁ ଆଗଭଳି ହେଉ ନାହାନ୍ତି । ଜେନ୍ ସିମ୍ପସନ୍ ତାଙ୍କର ଗୋଟିଏ ହାତକୁ ମୁଠାଇ ଧରିଛନ୍ତି ଓ ସେ ମୋ ଆଡ଼କୁ ଗୁହିଁ ଅସହାୟତାର ଭାବ ଦେଖାଉଛନ୍ତି ।

ହେଉ ମିଷ୍ଟର୍ ସିମ୍ପସନଙ୍କ ଇଚ୍ଛା ଅନୁଯାୟୀ ଆମେ ପୁଣି ଫାୟାର ସାଇଡ଼୍ ପାଖରେ ବସିଲୁ । ଫାୟାର୍ ପ୍ଲେସ୍‌ର ନିଆଁ ପୁଣି ଉତ୍ତମରୂପେ ଜଳି ଉଠିଲା । ସନ୍ଧ୍ୟାର ଦ୍ୱିତୀୟ ପର୍ବ ଆରମ୍ଭ ହେଲା ପରି ଲାଗିଲା ଓ ଆମେ ସମସ୍ତେ କିଛି ନୂଆ କଥା ପଡ଼ିବାର ଅପେକ୍ଷାରେ ରହିଲୁ ।

କଥା କେଉଁଆଡ଼ୁ ଆରମ୍ଭ ହୋଇଥାନ୍ତା କେଜାଣି, କିନ୍ତୁ ମୁଁ କିଛି ନ ଭାବି ନ ଚିନ୍ତି ମୋର ପୁନର୍ବାର ବଢ଼ି କୌତୂହଳକୁ ଦବାଇ ନପାରି ପଚାରିଲି, "ସେ ଠେଙ୍ଗାଟି କଅଣ ?"

ମିଷ୍ଟର୍ ସିମ୍ପସନ୍ କହିଲେ, "ମୁଁ ଭାବୁଥିଲି ତୁମେ କେତେବେଳେ ସେ ପ୍ରଶ୍ନ ପଚାରିବ । ତୁମର କୌତୂହଳ ସ୍ୱାଭାବିକ, ଠେଙ୍ଗାଟି ସାଧାରଣ ନୁହେଁ ।"

ତା' ପରେ ସେ ସେହି ଠେଙ୍ଗା ଆଡ଼କୁ ସ୍ନେହ ଓ ଗର୍ବଭରା ଗୁହାଣୀ ଦେଇ କହିଲେ, "ଏ ହେଉଛି ଶାସନଦଣ୍ଡ, ଆଫ୍ରିକାରୁ ଆସିଛି । ମୋର ଜଣେ ବନ୍ଧୁ ଆଫ୍ରିକାରେ ମିସନାରୀ ଥିଲେ, ସେ ଏଥିରୁ ଯୋଡ଼ିଏ ପାଇଥିଲେ, ମୋତେ ଗୋଟିଏ ଦେଇଛନ୍ତି । ତାଙ୍କୁ ଜଣେ ଟ୍ରାଇବଲ୍ ଚିଫ୍ କୃତଜ୍ଞତାର ଭେଟି ସ୍ୱରୂପ ଏହାକୁ ଦେଇଥିଲେ, ଯେତେବେଳେ ସେ ଭଗବଦ୍ ଜ୍ଞାନ ପାଇଲେ, ବୁଝିଲେ ଯେ ରାଜରାଜେଶ୍ୱରଙ୍କ ପାଖରେ ଏହାର କର୍ତ୍ତୃତ୍ୱ କିଛି ନାହିଁ ।"

କଣ୍ଟକିତ ଗଦାତୁଲ୍ୟ ଠେଙ୍ଗା ନିଷ୍କ୍ରିୟ ହୋଇ ପଡ଼ି ରହିଛି, ତା'ର କାମ ସରି ଯାଇଛି, କିନ୍ତୁ ଦିନେ ସେ ଥିଲା ମହାପ୍ରତାପୀର ଶକ୍ତି ଓ ପ୍ରତୀକ । ମିସନାରୀ ଭଦ୍ରଲୋକଙ୍କ କୃତିତ୍ୱ ନଗଣ୍ୟ ନୁହେଁ ।

ମିଷ୍ଟର ସିମ୍ପସନ୍ ମୋର ଭାବନା ବୁଝିଲା ପରି କହିଲେ, "କଳା ଲୋକମାନେ କିଛି ଖରାପ ନୁହନ୍ତି, ସେମାନେ ମଧ୍ୟ ଭଗବାନଙ୍କ ସନ୍ତାନ ।"

ସେ ବୋଧହୁଏ ମୋର ମନୋଭାବ ଦେଖିଲେ ଓ ମୋଠାରୁ ସମ୍ମତି ବା ଉତ୍ତରର ଅପେକ୍ଷା ନ କରି କହି ଚାଲିଲେ—

"ମୁଁ ଯେତେବେଳେ କହୁ ନ ଥିଲି ଆମ ଦେଶ କଥା ? ଏ ଦେଶରେ କାହିଁକି ଏତେ ଅନାଚାର ଘଟୁଛି ? କାହିଁକି ଓ୍ୱାଶିଙ୍ଗ୍‌ଟନ୍ ପରି ସହରକୁ ସବୁ ଭଲ ଲୋକ

ଛାଡ଼ି ଚାଲି ଯାଉଛନ୍ତି, କେହି ଘର ବାନ୍ଧି ରହିବାକୁ ଚାହୁଁ ନାହାଁନ୍ତି । ଆଲ୍‌ବାମା ଜର୍ଜିଆରେ କାହିଁକି ଏତେସବୁ ଘଟଣା ଘଟିଲା, ଘଟୁଛି ? କାହିଁକି ?

—ଆମେ ସମସ୍ତେ ତାଙ୍କ ମୁହଁକୁ ଚାହୁଁଛୁ । ପ୍ରତ୍ୟେକ ହୁଏତ କିଛି ନା କିଛି ଉତ୍ତର ଯୋଗାଇ ପାରି ଥାଆନ୍ତେ, କିନ୍ତୁ କେହି ଦେଇ ପାରିଲୁ ନାହିଁ । ଉତ୍ତର ତାଙ୍କ ମୁହଁରେ ଶୋଭା ପାଇବ ।

"କାହିଁକି ନା ଏ ଧଳା କଳାଲୋକମାନଙ୍କୁ ମିଛ କଥା କହି ମତାଇ ଦିଆହେଉଛି । ତାଙ୍କୁ ବୁଝାହେଉଛି ଯେ, ଏମିତି ପାଟିତୁଣ୍ଡ ଦଙ୍ଗାହାଙ୍ଗାମ କଲେ ସେମାନଙ୍କୁ ସମାନ ଅଧିକାର ଦିଆହେବ, ସେମାନେ ବଡ଼ ହେବେ ।"

ସେ ଉଦାରତାର ଭଙ୍ଗୀରେ ମୁଣ୍ଡ ହଲାଇଲେ ଓ କହିଲେ, "କି ନିର୍ବୋଧତା । ମଣିଷ କ'ଣ ଏମିତି ବଡ଼ ହୁଏ ? ବଡ଼ପଣ ନିଜ ଭିତରୁ ଆସେ । ସେଥିପାଇଁ ଚେଷ୍ଟା କରିବାକୁ ହେବ, ଭଗବାନଙ୍କ ଆଶୀର୍ବାଦ ମାଗିବାକୁ ହେବ । ଅଯଥା କଳହ, ହିଂସା, ରକ୍ତପାତରେ କିଛି ଲାଭ ନାହିଁ ।"

"ମୋ ବନ୍ଧୁ କହୁଥିଲେ ଯେ ଏହି ଠେଙ୍ଗାର ମାଲିକ ଜଣେ ପ୍ରସିଦ୍ଧ ଦଳପତି ଥିଲେ, ତାଙ୍କ ନାଁ ଶୁଣିଲେ ଶତ୍ରୁମାନେ ଥରୁଥିଲେ । ସେ କେତେ ହତ୍ୟା କରିଛନ୍ତି, କେତେ ଘର ପୋଡ଼ିଛନ୍ତି; କିନ୍ତୁ ଶେଷକୁ ସେ ବୁଝିଲେ ଯେ, ବଡ଼ ହେବାର ଉପାୟ ଏ ନୁହେଁ । ଜୀବନ ଦୁଇଦିନିଆ,...ତା' ପରେ ?"

ମୋ' ପାଟିରୁ ବାହାରି ପଡ଼ିଲା, "ବାସ୍ତବିକ୍" ।

ସେ ପୁଣି କହିଲେ, "ଜାଣିଛ ? ଐତିହାସିକ ପ୍ରମାଣ ଅଛି,—ସେ ସବୁର ସମ୍ପୂର୍ଣ୍ଣ ଗବେଷଣା ହୋଇନାହିଁ—,ଯେ ଆଫ୍ରିକାର ଅଞ୍ଚଳଗୁଡ଼ିକ ଦିନେ ସଭ୍ୟତାର ଶୀର୍ଷ ଥିଲା । ଧନସମ୍ପଦର କେତେ ଜିନିଷ ଏବେ ମାଟିତଳୁ ମିଳୁଛି; କିନ୍ତୁ ଆଜି ଆଫ୍ରିକା ଅନ୍ଧାର ମୁଲକ । କାହିଁକି ଏମିତି ହେଲା ? କାହିଁକି ନା ସେମାନେ ଭଗବାନଙ୍କୁ ଭୁଲି ଗଲେ, ପର ଜୀବନ କଥା ଭାବିଲେ ନାହିଁ ।"

ପ୍ରାର୍ଥନା ଆହରଣ କଲା ପରି ସେ କିଛିକ୍ଷଣ ନୀରବ ରହିଲେ । ତା'ପରେ—

"ଧନ ଦଉଲତ କିଛି ନୁହେଁ । ବେଶି ଟଙ୍କା ରୋଜଗାର କଲେ ନିଜର ସ୍ୱଭାବ ପ୍ରକୃତି ବଦଳି ଯାଏ ନାହିଁ । ମୁଁ ନିଜର ଆଖିଦେଖା କଥା କହୁଛି । ମୁଁ କେତେ ବର୍ଷ ତଳେ ଦକ୍ଷିଣର ଗୋଟିଏ ସହରରେ ତିନି ଚାରି ମାସ ଥିଲି, ମୋର ଜଣେ ବନ୍ଧୁଙ୍କ ଘରେ । ବେଶ ଭଦ୍ରପଡ଼ା; କିନ୍ତୁ ଆମ ପାଖ ଘରକୁ ଜଣେ ନିଗ୍ରୋ କିଣି ନେଇଥାଏ । ସେ ଆମଦାନୀ ରପ୍ତାନି ବ୍ୟବସାୟରେ ବେଶ୍ ବଡ଼ଲୋକ ହୋଇ ଯାଇଛି ବୋଲି

ଶୁଣାଯାଏ । ତଥାପି ସେ ଯସ୍ତ ହେଲେ କ'ଣ କରେ ଜାଣ ? ଆମ ସମସ୍ତେ ଯେତେବେଳେ କାର୍ ଧରି କ୍ଲବ, ଥିଏଟର୍ ବା କନ୍‌ସର୍ଟକୁ ଯାଉ, ସେ ନିଗ୍ରୋପଡ଼ାକୁ ଯାଇ ତା'ର ପୁରୁଣା ସାଥୀଙ୍କୁ ଧରି କେଉଁ ଶସ୍ତା ବାର୍‌ରେ ମଦ ଖାଏ । ଯେତେ ରକମର କୁତ୍ସିତ କଥା, କୁତ୍ସିତ କାରବାର ସବୁ ହୁଏ ସେଠି ।"

ମୁଁ ଏହି ସମୟରେ କିଛି କହିବା ସମୀଚୀନ ମନେ କଲି । କହିଲି, "କିନ୍ତୁ ଯେତେ ଭଲ ଥିଏଟର୍ ରେସ୍ତୋରାଁ ଇତ୍ୟାଦି, ସବୁ ତ ଗୋରାମାନଙ୍କ ପାଇଁ ଥିବ । ସେଠିକୁ କଣ ସେ ଇଚ୍ଛା କଲେ ମଧ୍ୟ ଯାଇ ପାରିବ ?"

"ନାହିଁ", ମିଷ୍ଟର୍ ସିମ୍‌ସନ୍ ଦୃଢ଼ସ୍ୱରରେ କହିଲେ । "ତା'ର କାରଣ ସେ ନିଜକୁ ଗ୍ରହଣଯୋଗ୍ୟ କରିପାରି ନାହିଁ । ମୁଁ ସେହି କଥା କହୁଛି ପରା । ଏତେ ଧନସମ୍ପତ୍ତି ଥିଲେ କଣ ହେବ; ସେ ନିଜକୁ ଭଗବାନ୍ ଅଥବା ମଣିଷର ଯୋଗ୍ୟ କରି ପାରିଲା ନାହିଁ । ସେ ଦିଗରେ ଚେଷ୍ଟା ମଧ୍ୟ କଲା ନାହିଁ ।"

ସେ କଥାର ଉପସଂହାର ଜଣାଇଲେ, "ଶେଷକୁ ସେ ସେହି ପଡ଼ାରେ ରହି ପାରିଲା **ନାହିଁ**, ଘର ବିକି ଦେଇ ଚାଲିଗଲା କୁଆଡ଼େ ।"

"ଦୁର୍ଭାଗ୍ୟ !" କହି ମିଷ୍ଟର୍ ସିମ୍‌ସନ୍ ଫାୟାରପ୍ଲେସ୍‌ର ନିଆଁ ଅଙ୍ଗାରକୁ ଅନାଇ ରହିଲେ । ମୋର ମନେ ହେଲା ସେ ତାଙ୍କର ଅନୁଶୋଚନାର ଚିନ୍ତାଧାରା ତଳେ ସମସ୍ତଙ୍କୁ ଆଣିଲେ—ଭଦ୍ରପଡ଼ାର ସେହି ନିଗ୍ରୋ, ତା'ର ସାଙ୍ଗସାଥୀ ତା'ର ପ୍ରତିବେଶୀ ଓ ଆମେରିକା ।

ଦାଣ୍ଡଦୁଆରରେ ଘଣ୍ଟି ବାଜିଲା । ମିସେସ୍ ସିମ୍‌ସନ୍ ଉଠିଯାଇ କବାଟ ଖୋଲି ଦେଲେ । ଏକାଠି ଯୋଡ଼ାଏ ତରୁଣତରୁଣୀ ହସ ଓ କଥାର ଆଲୋଡ଼ନ ସୃଷ୍ଟି କରି ଘର ଭିତରକୁ ପଶି ଆସିଲେ, ନିଶ୍ଚୟ ସିମ୍‌ସନଙ୍କର ଝିଅଜ୍ୱାଇଁ । ଝିଅଟି ମିସେସ୍ ସିମ୍‌ସନଙ୍କୁ ଗେହ୍ଲା କଲା, ଓ ପୁଅଜଣକ କଣ ଅନବରତ କହି ଚାଲିଥାଏ ।

ସେମାନେ ଆମ ପାଖକୁ ଆସିଲେ । ପରିଚୟର ପଦ୍ଧତି ପାଳନ କରାଗଲା । ଆମେରିକାର ସର୍ବସାଧାରଣ ତରୁଣ ଦମ୍ପତିଙ୍କ ପରି ଝିଅଟି ପରିପୂର୍ଣ୍ଣା ଓ ପୁଅଟି ଅପରିପକ୍ୱ ଦେଖାଯାଉଥାଏ । ଝିଅ ପଦେ କଥା କହିଲାବେଳକୁ ପୁଅ ଛଅପଦ କହୁଥାଏ । ମିସେସ୍ ସିମ୍‌ସନ୍ ନିରନ୍ତର ମୁଣ୍ଡ ଝୁଙ୍ଗାଉଥାଆନ୍ତି ଓ ମିଷ୍ଟର୍ ସିମ୍‌ସନ୍ ଆମୋଦିତ ହେଲା ପରି ଦେଖୁଥାଆନ୍ତି ଦୁଇଜଣଙ୍କୁ ।

ସେମାନଙ୍କର ଏତେ କଥା କହିବା ମୂଳରେ ଥିଲା ଡେରିର କୈଫିୟତ ଦେବା । ଅସଂଲଗ୍ନ କଥା ଓ ହସ ଭିତରେ କ୍ରମଶଃ ଯୋଡ଼ାଏ କାରଣ ଜଣା ପଡ଼ିଲା ।

ପ୍ରଥମତଃ ସାନପୁଅ ଜନ୍ ପାଇଁ ବେବି-ସିଟର୍ ଯୋଗାଡ଼ କରିବାରେ ଡେରି ହେଲା । ଦ୍ୱିତୀୟତଃ ପି:ଟି:ଏ: (ପେରେଣ୍ଟ୍ସ୍ ଟିଚର୍ସ୍ ଆସୋସିଏସନ୍) ମିଟିଂ ସରୁ ସରୁ ଅନେକ ସମୟ ଲଗିଲା ।

ସେମାନେ ଡିନର୍ ଖାଇବେ ନାହିଁ ବୋଲି କହିଲେ । ତେଣୁ ସେମାନେ ଆମ ଆସରର ଶେଷ ପର୍ଯ୍ୟାୟରେ ଯୋଗ ଦେଲେ ।

ସୁସ୍ଥ ହୋଇ ଦୁଇମିନଟ୍ ବସି ସାରିଲା ପରେ ସୁସି ପୁଣି ପି: ଟି: ଏ: ମିଟିଂ କଥା ପକାଇଲା । କହିଲା, "ମିଟିଂ ଏତେ ସମୟ ଲଗିଲା ତା'ର କାରଣ ହେଉଛି ଯେ ଆଜି ଗୋଟାଏ ଜରୁରୀ କଥାର ଆଲୋଚନା ହେଲା । ଏହି ଯେଉଁ ନୂଆ ଆନ୍ଦୋଳନ ଉଠିଛି,—ଯେ ନିଗ୍ରୋ ପିଲାମାନେ ନିଗ୍ରୋ ସ୍କୁଲରେ ପଢ଼ିବେ ନାହିଁ । ସେଥିରୁ ଥୋକେ ଆସି ଗୋରାମାନଙ୍କ ସ୍କୁଲରେ ପଢ଼ିବେ ଓ ଗୋରାପିଲାଙ୍କ ଭିତରୁ କେତେଜଣଙ୍କୁ ଜବରଦସ୍ତ କରି ନିଗ୍ରୋ ସ୍କୁଲକୁ ପଠାଯିବ ।"

"କି ଆଶ୍ଚର୍ଯ୍ୟ କଥା !" ଶ୍ରୀମତୀ ଓ ମିସେସ୍ ସିମ୍ପସନ୍ ଏକାସାଙ୍ଗରେ କହି ଉଠିଲେ ।

ସୁସି କହିବାକୁ ଲଗିଲା, "ସମସ୍ତେ ଜାଣନ୍ତି ଓ୍ୱାଶିଂଟନ୍‌ରେ ଗୋରା ସ୍କୁଲ୍ ନିଗ୍ରୋ ସ୍କୁଲ୍ ବୋଲି କିଛି ନାହିଁ । ତେବେ ଗୋଟାଏ ପଡ଼ାରେ ଯଦି ବେଶି ନିଗ୍ରୋ ହୋଇଗଲେ, ସେଠିକାର ସ୍କୁଲ୍ ନିଗ୍ରୋ ସ୍କୁଲ ନ ହୋଇ ଆଉ କ'ଣ ହେବ ? କେତେଜଣ ଗୋରା ପିଲାଙ୍କୁ ସେଠିକି ପଠେଇଦେଲେ କଣ ପଢ଼ାର ଷ୍ଟାଣ୍ଡାର୍ଡ୍ ବଢ଼ିଯିବ ନା ନିଗ୍ରୋ ପିଲାମାନେ ବେଶି ସଭ୍ୟ ହୋଇଯିବେ ? ଆମର ଆଲୋଚନା ହେଲା କେମିତି ଏହାର ପ୍ରତିକାର କରାଯିବ । ସେଇଠୁଁ ଠିକ୍ ହେଲା— ।"

ଏହି ସମୟରେ ଶନ୍ ଅଯାଚିତଭାବରେ ମନ୍ତବ୍ୟ ଦେଲା, 'ଠିକ୍ କ'ଣ ହେବ ? ଏ ପାଗଳାମିର ଅନ୍ୟ ଉପାୟ ନାହିଁ । ଏମାନଙ୍କୁ ଜବତ୍ କରିବାକୁ ହେବ । ବର୍ମିଙ୍ଗ୍‌ହାମ୍ ନା କେଉଁଠି ଯେମିତି ହୋଇଥିଲା, ପୋଲିସ୍ କୁକୁର ଲଗାଇ ଘଉଡ଼ାଇବାକୁ ପଡ଼ିବ । ନ ହେଲେ ଏମାନେ ତୋଡିବେ ନାହିଁ ।"

ମିଷ୍ଟର୍ ସିମ୍ପ୍‌ସନ୍ ତା'କୁ ଆଉ ଆଗକୁ ବଢ଼ିବାକୁ ଦେଲେ ନାହିଁ । ବାରଣ କଲା ପରି ହାତଟେକି କହିଲେ, "ନା, ନା, ସେଥିରେ କିଛି ଲାଭ ନାହିଁ । ସେମାନେ ତାଙ୍କର ଭୁଲ୍ ବୁଝିବେ, କ୍ରମଶଃ ବୁଝିବେ ।"

କିଛି ସମୟ ପରେ ସେ ତାଙ୍କ ନିଜସ୍ୱ ହସଟିକ ଦେଲେ ଓ କହିଲେ, "ତୁମେ ସେମାନଙ୍କୁ ଜାଣିନାହଁ, ମୁଁ ଜାଣିଛି । ସେମାନେ ଖରାପ ନୁହନ୍ତି, ସେମାନେ ଅଭାଗା, ଭଗବାନଙ୍କ ଆଶୀର୍ବାଦ ହରାଇଛନ୍ତି । ···ଆମର ତାଙ୍କୁ ଭଲପାଇବା ଉଚିତ ।"

କଥାବାର୍ତ୍ତା ଏମିତିଗଲା । ମୁଁ ଉଇଲିୟମ୍ ସିମ୍ପ୍‌ସନଙ୍କର ବିଷାଦ-ମଧୁର ହସ ଓ କରୁଣାର ମୁଦ୍ରା ଦେଖି ରହିଲି । ହଠାତ୍ ମୋ ମନରେ ଆସିଲା ଯେ ମୁଁ ଭଗବାନଙ୍କ ଛବି ଦେଖୁଛି । ହଁ; ଏ କେବଳ ଜେନ୍ ସିମ୍ପ୍‌ସନଙ୍କ ଭଗବାନ୍ ନୁହନ୍ତି, ଏ ସମସ୍ତଙ୍କ ଭଗବାନ୍ । ହୋଇପାରନ୍ତି ସେ ଜଣେ ସାଧାରଣ ମଧ୍ୟବିତ୍ତ ନାଗରିକ, ଯାହାର କଲର୍ ଟି. ଭି. ନାହିଁ, ଯୋଡ଼ାଏ କାର୍ ନାହିଁ, ଯାହାର ବ୍ୟବହାର୍ଯ୍ୟ ବୃତ୍ତିରେ ଚମକ ନାହିଁ, ଯାହାର ନାଁ ଖବରକାଗଜରେ ବାହାରେ ନାହିଁ, କିନ୍ତୁ ତାଙ୍କର ଅପାର୍ଥିବ ବଡ଼ପଣ ଅଛି,—ତାହା ପରମ ଶାନ୍ତି, କରୁଣା ଓ ବିଷାଦର ବଡ଼ପଣ । ମୁଁ ସେହି ମହତ୍ତ୍ୱର ଝଲକ ପାଉଛି । ସେହି ହେଉଛି ଭଗବାନଙ୍କ ଛବି ।

କ୍ରମଶଃ ମୋର ମନେହେଲା ଯେ ମଲ୍‌ବେରି ଲେନ୍‌ର ଉଇଲିୟମ୍ ସିମ୍ପ୍‌ସନ୍ କେବଳ ବ୍ୟକ୍ତିଗତଭାବରେ ଭଗବାନ୍ ନୁହନ୍ତି । ସେ ଗୋଟିଏ ବିଶିଷ୍ଟଗୁଣରେ ଆଲୋକପାତ କରୁଛନ୍ତି, ଯାହା ମୁଁ ଆଉ କେତେ ମଲବେରି ଲେନ୍, ଆଉ କେତେ ଲିଭିଙ୍ଗ୍ ରୁମ୍ ଡ୍ରଇଂରୁମ୍‌ରେ ଦେଖିଛି । କେବଳ ଆମେରିକା ନୁହେଁ, ଭାରତରେ ଦେଖିଛି । ଭଗବାନଙ୍କ ରୂପ କିଣ ମୁଁ ଜାଣେ ନାହିଁ, ତାଙ୍କୁ ସଶରୀରେ ଦେଖିବାର ସମ୍ଭାବନା ମୋର ନାହିଁ; କିନ୍ତୁ ମୋର ଧାରଣା ହେଲା ଯେ ଯଦି ଭଗବାନଙ୍କୁ ଜୀବନ୍ତ କଳେବର ଧରିଯାଏ ତାହାହେଲେ ସେ ଉଇଲିୟମ୍ ସିମ୍ପ୍‌ସନଙ୍କ ପରି ହୋଇଥିବେ, କିମ୍ବା ହୁଏତ ସ୍ୱଦେଶର ସୀତାରାମ ଆଚାର୍ଯ୍ୟଙ୍କ ପରି ବା ଜଗନ୍ନାଥ ପଟ୍ଟନାୟକଙ୍କ ପରି, ବା··· । ଏମାନେ ସମସ୍ତେ ମଧ୍ୟବିତ୍ତ । ବଡ଼ଲୋକର ଉଦ୍ଧତପଣ ଏମାନଙ୍କ ପାଖରେ ନାହିଁ, ଗରିବର ନୀଚତା ପାଉଁବସିବା ଢଙ୍ଗ ନାହିଁ । ତେଣୁ ଏମାନେ ଭଗବାନଙ୍କୁ ନିକଟରୁ ଚିହ୍ନି ପାରିଛନ୍ତି ଓ ସଂସାରର ଦୁଷ୍ଟଭାବରେ ସନ୍ତପ୍ତ ହେଉଛନ୍ତି । ସେଥିରୁ ସହାନୁଭୂତି, ତହିଁରୁ କରୁଣା ଓ ଶାନ୍ତିର କାମନା । ମୋର ମନେ ପଡ଼ିଲା ସୀତାରାମ ଆଚାର୍ଯ୍ୟଙ୍କ କଥା । ସେ ସେଣ୍ଟ୍ରାଲ ସେକ୍ରେଟେରିଏଟ୍‌ରେ କାମ କରନ୍ତି । ସେ ଥରେ ମୋତେ କହିଥିଲେ ଯେ ତାଙ୍କର ଅବ୍ରାହ୍ମଣମାନଙ୍କ ପ୍ରତି ଆଦୌ ବିଦ୍ୱେଷ ନାହିଁ । ଅବ୍ରାହ୍ମଣମାନଙ୍କର ଦୋଷ ନୁହେଁ ଯେ ସେମାନେ ଶ୍ରେଷ୍ଠକୁଳରେ ଜନ୍ମ ହୋଇଛନ୍ତି । ଭଗବାନ୍ ତାଙ୍କୁ ସୁବୁଦ୍ଧି ଦେବେ, ନିଷ୍ଟୟ ଦେବେ । ପୁଣି ମନେ ପଡ଼ିଲା ଜଗନ୍ନାଥ ପଟ୍ଟନାୟକଙ୍କ କଥା । ସେ ତ୍ରିସନ୍ଧ୍ୟା କରନ୍ତି, ପାଠପଢ଼ୁଆ ପିଲାଙ୍କ ଅବାଧ୍ୟପଣ ତାଙ୍କୁ ବାଧେ, ପୁଅର ଶ୍ୱଶୁରଘରୁ ଯଥେଷ୍ଟ ଯୌତୁକ ଆସିଲା ନାହିଁ ବୋଲି ସେ ସମୁଧିର ସମ୍ମାନହାନି ପାଇଁ ଦୁଃଖିତ ହୋଇଥିଲେ । ମୋର ମନେ ଅଛି ଯେ ଥରେ ଠାକୁରଘରୁ ମଠାଳୁଗା

ପିଛ ପୂଜା ସାର ଆସିଲାବେଳକୁ ସେ ଶୁଣିଲେ ଯେ ମୂଳିଆମାନେ କାମ ନ କରି କାମ କରିଛନ୍ତି ବୋଲି କହୁଛନ୍ତି, ଓ ପଇସା ମାଗୁଛନ୍ତି । ସେ ସହନଶୀଳ ବ୍ୟଥିତ ଗୃହିଣୀଟିରେ ଆମ ଆଡ଼କୁ ଚାହାଁଇଲେ, ଓ କହିଲେ,—ସ୍ୱୀକାରବାକର ମୂଳିଆମାନେ ଏତେ ମିଛ କହନ୍ତି ନାହିଁକି ?

ସ୍ଥାନକାଳପାତ୍ର ନେଇ ସେହି ଭଗବାନଙ୍କର କେତେ ରୂପ । ମୁଁ ମୁଗ୍ଧ ହୋଇ ଚାହିଁ ରହିଲି ।

× × × ×

ସେହି କେତେମାସ ଭିତରେ ଅନେକ ଘଟଣା ଘଟିଗଲା । ଆମେରିକାର ଚାରିଆଡ଼େ ନିଗ୍ରୋ-ଗୋରା ସଙ୍ଘର୍ଷ । ପୁଲିସ୍-କୁକୁର, ଲୁହବୁହା ଗ୍ୟାସ୍, ଘରପୋଡ଼ି, ହତ୍ୟା, କୌଣସି ବାକି ନ ଥିଲା । ମୁଁ ପ୍ରତିଥର ଖବରକାଗଜରେ ଏହିସବୁ ବିଷୟ ପଢ଼ିଲାବେଳେ ଉଇଲିୟମ୍ ସିମ୍ପସନ୍‌ଙ୍କୁ ସ୍ମରଣ କରେ ଓ ତାଙ୍କର ଭାବର କାଣିଚାଏ ନେଇ ଦୁଃଖ ପ୍ରକାଶ କରେ । ଏ ଉତ୍ପାତ କ'ଣ ଚାଲିଥିବ ଏମିତି ?

କିନ୍ତୁ ଦିନେ ଗୋଟିଏ ନୂଆ ଧରଣର ସମ୍ବାଦ ଆସିଲା । ଖବରରେ ପ୍ରକାଶ ଯେ ରବିବାର ଦିନ ଦକ୍ଷିଣରେ ଗୋଟିଏ ନିଗ୍ରୋ ଚର୍ଚ୍ଚରେ ପ୍ରାର୍ଥନାସଭା ଚାଲିଥିଲା ବେଳେ ବୋମା ପଡ଼ିଛି । ବାରତେର ବର୍ଷର ଚାରୋଟି ନିଗ୍ରୋ ଝିଅ ନିହତ ।

କେବଳ ଏତିକିରେ ବିଶେଷତ୍ୱ ନ ଥିଲା । ସାମ୍ବାଦିକ ଆଉ କିଛି ଲେଖିଥିଲେ, ଘଟଣାର ସମ୍ପୂର୍ଣ୍ଣ ଦୃଶ୍ୟ ଦେଖାଇବା ପାଇଁ । ସେ ଲେଖିଥିଲେ ଯେ ବୋମା ପଡ଼ି ଚର୍ଚ୍ଚର ରଙ୍ଗିନ୍ ଝରକାକାଚ ଭାଙ୍ଗି ଯାଇଛି । ସେ କାଚରେ ଥିଲା ଯୀଶୁଖ୍ରୀଷ୍ଟଙ୍କର ଛବି,—ତାଙ୍କ ଚାରିପାଖରେ ପିଲାମାନେ ଘେରି ଯାଇ ତାଙ୍କ ଆଡ଼କୁ ହାତ ବଢ଼ାଇଛନ୍ତି । ଛବିରେ ଯୀଶୁଖ୍ରୀଷ୍ଟଙ୍କର ମୁହଁଟି ଭାଙ୍ଗି ଚୂନା ହୋଇଯାଇଛି, ବାକି ସବୁ ଅଛି ।

ମୋର କ୍ରୋଧ ଆସିଲା, କାହା ଉପରେ ମୁଁ କହି ପାରିବି ନାହିଁ । ଏବଂ ତା' ସହିତ ମୋର ଆଉ ଗୋଟିଏ ଅଦ୍ଭୁତ ଭାବ ଆସିଲା,—ଯେ ଭଗବାନ ମଧ୍ୟବିତ୍ତ ନୁହନ୍ତି । ତାହା ହୋଇଥିଲେ ଖ୍ରୀଷ୍ଟଙ୍କ ମୁହଁଟି ଅତୁଟ ଥାଆନ୍ତା, ସେ ବିଷାଦଭରା ଚାହାଣୀରେ ଚାହିଁ ରହି ଥାଆନ୍ତେ ଓ ଶାନ୍ତିର କାମନା କରୁଥାଆନ୍ତେ ।



# ଭଗବାନଙ୍କ ଛବି

ମୋର ଆମେରିକାରୁ ଫେରିବାର ପ୍ରାୟ ତେଇଶ ବର୍ଷ ହୋଇଗଲାଣି । କିନ୍ତୁ ବନ୍ଧୁମାନଙ୍କଠାରୁ ତଥାପି ଶୁଣିବାକୁ ପାଏ ଏବଂ ଶୁଣିଲେ ଦୁଃଖ ହୁଏ ଯେ ମିଷ୍ଟର୍ ସିମ୍ପ୍‌ସନ୍‌ଙ୍କ ଭଗବାନ୍ ତଥାପି ବଞ୍ଚି ରହିଛନ୍ତି ସେଠି । ଦକ୍ଷିଣ ଆଫ୍ରିକା କଥା ଛାଡ଼ିଦିଅ, ଯେଉଁଠି ଆତ୍ମରକ୍ଷାର ହିଂସ୍ର ପ୍ରବୃତ୍ତି କାମ ଦେଉଛି, ଗୋରା ଶାସକମାନେ ଖୋଲଖୋଲି ଭାବେ କହୁଛନ୍ତି ଯେ ସଂଖ୍ୟାଧିକ କଳାମାନଙ୍କୁ ବାଟ ଛାଡ଼ିଦେଲେ ଆମେ ଲୋପ ପାଇଯିବୁ । ଭାରତବର୍ଷ କଥା ଛାଡ଼ିଦିଅ ଯେଉଁଠି ଆମ ଜାତିଭେଦ ଅସ୍ଥି-ମଜ୍ଜାଗତ, ହଜାର ହଜାର ବର୍ଷର ଶାସ୍ତ୍ର ଓ ସଂସ୍କାରରେ ସମୃଦ୍ଧ । ମୋର ଦୁଃଖ ବିଶେଷତଃ ଆମେରିକା ପାଇଁ ଯେଉଁଠି ସମଭାବ କେବଳ ତାଙ୍କ ସମ୍ବିଧାନରେ ବଡ଼ ହରଫରେ ଲେଖା ହୋଇ-ନାହିଁ, ତାଙ୍କ ସମାଜର ପ୍ରତ୍ୟେକ ସ୍ତରରେ ସୁପର୍‌ମାର୍କେଟ୍‌ର 'କାଉଣ୍ଟର'ରେ, ସ୍କୁଲକଲେଜ୍‌ରେ, ଡାକ୍ତରଖାନାରେ, ମେଳାରେ, ମଉଛବରେ ସଦାସର୍ବଦା ଉଚ୍ଛ୍ୱସିତ ହୁଏ । ପିଠି ଥାପୁଡ଼େଇ 'ହାଏ' ବୋଲି ପାଟି କରେ, ହୋ ହୋ ହୋଇ ହସେ···ଏବଂ ଭାରତରୁ ଆସିଥିବା ଯାଆନ୍ତ ପୁଅକୁ ଚମତ୍କୃତ କରେ । ଦୁଃଖ ସେମାନେ କେବଳ ସେଇ ଗୋଟିଏ 'ବଡ଼ପଣ'କୁ ପୂରାପୂରି ଛାଡ଼ି ପାରି ନାହାନ୍ତି ଆଜିଯାଏଁ—ଯାହା କୁହେ କଳାମାନେ ଭିନ୍ନ, ହୀନ । ଦସ୍ୟୁମାନ । ଆଜିକାଲି ହୁଏତ କଳାଙ୍କ ଚର୍ମରେ ବୋମା ପଡ଼ୁନାହିଁ, କଳାଙ୍କ ଶିଶୁଙ୍କୁ ମାଡ଼ ଖାଉ ନାହାନ୍ତି, କିନ୍ତୁ ତଥାପି ଅଛି ସେହି ଉଚ୍ଚମନ୍ୟତା। ମହାନୁଭବତା, ଯାହାକୁ ଇଂରେଜୀରେ କହନ୍ତି Condescension ।

ଏଇ ବଚନ ଗୁଡ଼ିକ ସହିତ ଆମେ ଅଦୌ ଅପରିଚିତ ନୋହୁଁ, କିନ୍ତୁ ମଜା ଲାଗେ ଏବଂ ବେଳେ ବେଳେ ରାଗ ଆସେ

ଯେ ଅମେ ଭଗବାନଙ୍କୁ ମଧ୍ୟ ଆମ ସପକ୍ଷରେ ସାକ୍ଷ୍ୟ ଦେବାକୁ ଡାକି ଆଣୁ । ଆମକୁ ଦୋଷ ଦିଅ ନାହିଁ, ଭଗବାନଙ୍କୁ ପଚାର । ସେଇ ଯେମିତି ଗଢ଼ିଛନ୍ତି ସେମାନଙ୍କୁ, କାହିଁକି ସେଇ ଜାଣନ୍ତି । ଦୁଃଖର ବିଷୟ କିନ୍ତୁ ସ୍ୱତଃସିଦ୍ଧ ଯେ ମୂଳିଆ ଓ ତାଙ୍କ ଜାତି-ଭାଇମାନେ ମିଛ କୁହନ୍ତି, ଅସଭ୍ୟ କାମ କରନ୍ତି, ସ୍ନେହ ପ୍ରେମ ଆଦି ସୂକ୍ଷ୍ମ ଭାବର ଧାର ଧାରନ୍ତି ନାହିଁ ଏବଂ ଅକାଳରେ ମରନ୍ତି । କିନ୍ତୁ ତାଙ୍କୁ ଘୃଣା କରନାହିଁ, କାରଣ ସେମାନେ ମଧ୍ୟ ଭଗବାନଙ୍କ ସନ୍ତାନ । ତାଙ୍କୁ ଉପରକୁ ଉଠେଇବାକୁ ହେବ, କିନ୍ତୁ ଧୀରେ, ଅତି ଧୀରେ ··· । ନ ହେଲେ ସେମାନେ ମୁଣ୍ଡରେ ଚଢ଼ିବେ ଏବଂ ଧ୍ୱଂସ ଧ୍ୱଂସୁକୁଟିଆ ବିପ୍ଳବ ଆସିଯିବ । ଅପରପକ୍ଷେ ଯୋକେ କବି-ରୋମାଣ୍ଟିକ୍ ଅଛନ୍ତି ଯେଉଁମାନେ ଗରିବର ଭଗବାନଙ୍କୁ ସ୍ମରଣ କରନ୍ତି ଏବଂ ଭାବପ୍ରବଣତାରେ ଭାସିଯାଇ କୁହନ୍ତି ଯେ ଯେତେକ ସରଳତା ସ୍ନେହ, ଶ୍ରଦ୍ଧା ଆଦି ସଦ୍‌ଗୁଣ ଗ୍ରାମ୍ୟମୂଳିଆ ହରିଜନଙ୍କ ସଂସାରରେ ଅଛି, ତେଣୁ ତାକୁ ବଞ୍ଚେଇ ରଖ । ସେମାନେ ସଭ୍ୟ ହେବାକୁ ଯାଉଛନ୍ତି, ହୁଅନ୍ତୁ, କିନ୍ତୁ ତାଙ୍କୁ ଅମ ପରି ହେବାକୁ ଦିଅ ନାହିଁ । ଦେବଶିଶୁମାନଙ୍କୁ ହାତ ଧରି ଉଠେଇ ଆଣ, କିନ୍ତୁ ଧୀରେ, ଅତି ଧୀରେ··· । ଏଇ ଓଲଟା ମହାନୁଭବତା Inverted condescension ଅର୍ଥାତ୍ ହୀନମନ୍ୟତା ମଧ୍ୟ ସେତିକି ମାରାତ୍ମକ । ଆତ୍ମଶଠତାରେ ଦୁଷ୍ଟ, ତେଣୁ ଶାନ୍ତିପ୍ରଦ । ବରଂ ସ୍ୱା'କୁ ଚହ୍ନିବା ଆହୁରି କଷ୍ଟ ।

ହଉ, ଭଗବାନଙ୍କୁ ଡାକିଲେ ଡାକ ପଡ଼େ, ତାଙ୍କର ଦୟା ଓ ବିଷାଦକୁ ବାଦ୍ ଦେଇ ପାରିବ ନାହିଁ ? ତାଙ୍କୁ ଟିକିଏ ହସେଇଲେ ରଗେଇ ପାରିଲେ ବି' ଭଲ ହୁଅନ୍ତା । ପରି···

ଦୋଷଗୁଣ ନେଇ ଆମେ ସମସ୍ତେ ମଣିଷ ଓ ସମାନ, ପ୍ରତିଶ୍ରୁତି ନେଇ ଆମେ ସମସ୍ତେ ଭଗବାନ ଓ ସମାନ—ଏଇ ଅତିସୁଧିଆ ସତ ଆମ ଧାତୁରେ ଯିବ ନାହିଁ । କାହିଁକିନା ଆମେ କେବଳ ମଧ୍ୟବିତ୍ତ ନୋହୁଁ, ଆମେ ବୁଦ୍ଧିର ନାୟକ ଏବଂ କଳାର ପୂଜାରୀ । ତେଣୁ ଆମର ଗୋଟାଏ ଭଗବାନ୍ ନିହାତି ଦରକାର ! ବିଷାଦ-ସୁନ୍ଦର ଏବଂ ଶାନ୍ତିପ୍ରିୟ, ଠିକ୍ ଆମର ପରି ।

କଟକ

୨୪ ଅଗଷ୍ଟ ୧୯୮୭

# ଘର ବାହୁଡ଼ା

ମୋ ଦେଶକୁ ଫେରଯାଉଛି । ଏପରି କେତେ ଲୋକ ବିଦେଶକୁ ଆସି ଫେରିଯାଇଛନ୍ତି । ମୁଁ ସେମାନଙ୍କଠାରୁ ଅଲଗା ନୁହେଁ । ତଥାପି ମନେହେଉଛି ଯେ ମୋର ଅନୁଭୂତି ସ୍ୱତନ୍ତ୍ର, ମୁଁ ମୋ ସ୍ମୃତିରେ ଯେଉଁସବୁ ଛବି ତୋଳି କରି ଆଣିଛି ତାହା ଆଉ କେହି ଆଣି ନ ଥିବେ ।

···ହୁଏତ ଆଉକିଛି ଦିନ ରହିପାରିଥାଆନ୍ତି । ଓ୍ୱାଶିଙ୍ଗ୍‌ଟନ୍‌ରେ ପୁଣି ଥରେ "ଫଲ୍" ଋତୁ ଆସିଥାଆନ୍ତା । ଗଛପତ୍ରର ରଙ୍ଗ ବଦଳିଥାଆନ୍ତା । ଏ କଣ ଦେଖୁଛି ? ଏହି ସମୟରେ ନଉ ଇଂଲଣ୍ଡ୍ ଯିବା କଥା,—ମେନ୍, ଭରମଣ୍ଟ୍, ନଉ ହାମ୍ପଶାୟାର୍ । ଏତେ ଦୂରକୁ ନ ଗଲେ ଅନ୍ତତଃ ଓ୍ୱାଶିଙ୍ଗ୍‌ଟନ୍‌ର ଶହେ ଦୁଇଶହ ମାଇଲ ଦୂରରେ ଥିବା ଶେନାଣ୍ଡୋୟା ଭ୍ୟାଲି (Shenandoah valley) ଦେଖିଆସ । ହୁଏତ ଉତ୍ସୁକ ରଙ୍ଗପିପାସୁ ବନ୍ଧୁମାନଙ୍କ କଥାରେ ପଡ଼ି କାର୍ ଧରି ଯାଇଥାଆନ୍ତି ସେଆଡ଼େ, ଫେରିଆସି କହି ପାରି ଥାଆନ୍ତି,—ମୁଁ ଯାଇଛି ।

"ଫଲ୍" ସରିଲାବେଳକୁ ନୂଆ ବରଫବର୍ଷା, ତା'ର ପ୍ରଥମ ଚମତ୍କାରିତା । ତା'ପରେ ବରଫ ଥରକୁ ଥର ଆସିବ, ଘର ସାମନାରେ କୋଡ଼ି କାନ୍ଧ ଧରି ବରଫ ସଫା କରିବାକୁ ପଡ଼ିବ, କାର୍ ଚଲାଇବାରେ ବାଧା ଆସିବ, ଗୃହିଣୀ ତାଗିଦ୍ କରିବେ ଏକାଥରକେ ବେଶି କରି ଫ୍ରୋଜନ୍ ଫୁଡ୍ କିଣି ଆଣି ରିଫ୍ରିଜରେଟର୍ ଭର୍ତ୍ତି କରିବାକୁ । ହେଲେ ସେ ଗୋଟାଏ ଅନୁଭୂତି ଥିଲା— ।

ବଡ଼ ଝିଅ ପଛଧାଡ଼ିରେ ବସି ଜଣେ ବିଦେଶୀୟାଙ୍କ ସାଙ୍ଗରେ ତା'ର ଆମେରିକା ସ୍କୁଲ ଜୀବନ କଥା ଗପୁଛି । ଉଡ଼ାଜାହାଜ ତା'ର ସର୍ବୋଚ୍ଚ ସୀମାକୁ ଉଠିଯାଇ ଧୀରେ ସୁସ୍ଥେ ସନ୍ତରଣ କରିଚାଲିଛି,—ସକାଳୁ ସକାଳୁ ଲଣ୍ଡନ୍‌ରେ ପହଞ୍ଚିବା କଥା । ଅନ୍ୟପିଲାମାନେ ଉଡ଼ାଜାହାଜ କମ୍ପାନୀ ଯୋଗାଇଥିବା ଛବି-କାଗଜସବୁ ପଢ଼ୁଛନ୍ତି, ଛିଡ଼ାଛିଡ଼ି ହେଉଛନ୍ତି । ଶ୍ରୀମତୀ ବିଶ୍ରାମ—ଅବସାଦ ଉପଦେଶ କରି ଢୁଲାଉଛନ୍ତି ।

କେହି କଣ ଭାବୁଛନ୍ତି ଯେ ଆମେ ଜୀବନରେ ପୁଣି ଥରେ ଆମେରିକା ଆସି ପାରିବା ନାହିଁ ?

ଘରକୁ ଫେରଯାଉଛୁ,—ଘରକୁ ! ଆମେରିକାକୁ ପୁଣି ନ ଦେଖି ପାରିବାର ଦୁଃଖ ଘରଫେରନ୍ତା ସୁଖର ସାଗର ତଳେ ନିମଜ୍ଜିତ ହୋଇଯାଉ, ହୋଇଯିବାର କଥା । ପିଲାଦିନେ ପ୍ରଥମଥର ଘରକୁ ଫେରିଆସିଛୁ ସ୍କୁଲ୍‌ରୁ, ମାଆ ପାଖରେ ଗେହ୍ଲେଇ ହୋଇଛୁ ବହୁତଦିନରୁ ନ ଦେଖିଲା ପରି, ସ୍କୁଲର ଖେଳକଉତୁକ ଭୁଲି ହୋଇଯାଇଛୁ । ଛାତ୍ରଜୀବନରେ ଭିନ୍ନ ପ୍ରଦେଶର ସହରରେ କେତେବର୍ଷ ରହି ଡିଗ୍ରୀ ଧରି ମାଆ ପାଖକୁ ଫେରିଆସିଛୁ ସେହିପରି ଉନ୍ମତ୍ତ ଧରଣରେ ଗେହ୍ଲା ପାଇବା ପାଇଁ । ସେତେବେଳେ କଣ ପ୍ରିୟ ୟୁନିଭର୍ସିଟି ସହରକୁ ପୁଣି ଥରେ ନ ଦେଖି ପାରିବାର ଦୁଃଖ ମନକୁ ଘାରିଥିଲା । ଏମିତି ? ନା, ମୋର ମନେ ଅଛି ମୁଁ ରେଲଗାଡ଼ିର ପାହୁଣ୍ଡ ଗଣୁଥିଲି, ଷ୍ଟେସନ୍ ଗଣୁଥିଲି—ଧାନମଣ୍ଡଳ...ବୈରି...ତାପରେ ଆସିବ କପିଳାସ ରୋଡ଼...କିଛି ସମୟ ପରେ ମହାନଦୀ ପୋଲ, ସେ କୂଳରୁ ଆଲୁଅ ଜୁଳୁ ଜୁଳୁ କରୁଛି । କଳ୍ପନା କରୁଥିଲି ଯେ ଘରେ ପହଞ୍ଚିଲା ବେଳକୁ ଢେର ହୋଇଯାଇଥିବ, ବାପା ଗରମ ପୋଷାକ ଗୁଡ଼ାଇ ହୋଇ ଦାଣ୍ଡ ଆରାମଚଉକିରେ ବସିଥିବେ, ଥରକୁ ଥର ଫାଟକଯାଏଁ ଯାଇ ଫେରି ଆସୁଥିବେ,—ଫାଟକ ସାମନାରେ ଅନାବନା ଗଛଗୁଡ଼ାକୁ କେଜାଣି କେତେଥର ହାତଧରା ବାଡ଼ିରେ ଚିହ୍ନି ଆସିବେଣି—'ମାଆ ଚିନ୍ତା କରୁଥିବ ଯେ ଆଜି ପୁଅ ପାଇଁ ଲେଉଟିଆ ଶାଗ ବଡ଼ି କଲେ ଭଲ ହେବ ନା ଲେଜନାଶାଗ ଖରଡ଼ା କଲେ ଭଲ ହେବ...।

ମୁଁ ପୁରୁଣା ଭାବ କଳ୍ପନାକୁ ଆବାହନ କରିଗଲି, ସମ୍ଭାବନାର ସ୍ମୃତିରେ ଯୋଖିଦେଇ ଘର ଫେରନ୍ତାର ମନୋରମ ଦୃଶ୍ୟ ଗଢ଼ି ଚାଲିଲି । କିନ୍ତୁ କ୍ରମଶଃ ମୋର ମନେହେଲା ଯେ ମୁଁ ଆଉ କାହା ପାଇଁ ଏ ଦୃଶ୍ୟ ଗଢ଼ୁଛି,—ସୁନ୍ଦର ଦେଖାଯିବା ପାଇଁ, ସାହିତ୍ୟ ରଚନା କଲା ପରି । ଏ ମୋର ନିଜ ଅନୁଭୂତି ନୁହେଁ ।

ମୁଁ ଓ୍ୱାଶିଙ୍ଗ୍‌ଟନକୁ ଝୁରୁଛି, ନ୍ୟୁୟର୍କକୁ ଝୁରୁଛି ।

ଗୋଟାଏ ଅଶୋଭନୀୟ ସତ୍ୟକୁ ହଠାତ୍ ଜାଣିପାରିଲା ପରି ଚମକ ଲାଗିଲା ନାହିଁ । ମୁଁ ଭାବିଲି ଯେ ମୋର ଏହି ମନୋଭାବ ମୂଳରୁ ଅଛି, ଯେବେଠୁଁ ଖବର ଆସିଛି ଯେ ମୋତେ ଫେରିଯିବାକୁ ପଡ଼ିବ । ତାକୁ ଅସ୍ୱୀକାର କରିବାକୁ ଅନେକ ଚେଷ୍ଟା କରିଛି କିନ୍ତୁ ପାରି ନାହିଁ । ଆଜି ଯାତ୍ରା ପଥରେ ନୂଆ ଆନନ୍ଦ ଖୋଜିବସିବା ନିରର୍ଥକ । ଆନନ୍ଦ ନଥି ନାହିଁ, ବିଚ୍ଛେଦର ଦୁଃଖ ଆହୁରି ସ୍ପଷ୍ଟ ହୋଇଉଠୁଛି ।

ତେବେ ଏପରି ମନୋଭାବ ପାଇଁ ଲଜ୍ଜିତ ହେବାର ଦଣ ଅଛି ? ମାଆ, ମାତୃଭୂମି । ବିଦେଶରେ ନିଜକୁ ଭାରତୀୟ ବୋଲି ପରିଚୟ କରାଇବାରେ ମୋର

ଯଥୋଚିତ ଆନନ୍ଦ ଓ ଗର୍ବ ଆସିଛି । କିନ୍ତୁ ମାଆର ସୁନାପୁଅ ହୋଇ, ମାଆକୁ ଭଲପାଏ ବୋଲି କଣ ମୁଁ ପରଘରଣୀକୁ ପ୍ରେୟସୀରୂପେ ମଣିପାରିବି ନାହିଁ ? ମୁଁ ପିଲା ନୁହେଁ । ମୋର ମାଆଠାରୁ ପ୍ରିୟାକୁ ଅଧିକ ଚାହିଁବା ଲୋଡ଼ିବା ଅତି ସ୍ୱାଭାବିକ; ଅନୀତି ନୁହେଁ ।

ମୁଁ ଶ୍ରୀମତୀଙ୍କ ଆଡ଼କୁ ଅନାଇଲି । ସେ ପୂରାପୂରି ନିଦରେ ଶୋଇଗଲେଣି । ପିଲାମାନେ ଓ ଯାତ୍ରୀମାନଙ୍କ ମଧ୍ୟରୁ ଅନେକ ଅଳୁଅ ଲିଭାଇଦେଇ ଆଖିବୁଜି ଦେଲେଣି । ମୋର ଆଖିରେ ପଡ଼ିଲା ମୋର ସାନପୁଅ ପିନ୍ଧିଥିବା ସ୍ୱେଟର୍‌ରେ ଲାଗିଥିବା ବ୍ୟାଜ୍ । ନିଉୟର୍କ ଓ୍ୱାର୍ଲ୍‌ଡ୍‌ସ୍ ଫେୟାର୍‌ର ବ୍ୟାଜ୍, ମେଳାର ପ୍ରତୀକ ୟୁନିସ୍ଫିୟର୍‌ର ଛବି ଓ ତା'ତଳେ ଲେଖାହୋଇଛି,—ମୁଁ ସେଠିକି ଯାଇଛି ।

ଭାବିଲି ଆମେ ସମସ୍ତେ ଏମିତି କିଛି ନା କିଛି ଜିନିଷ ସାଙ୍ଗରେ ନେଇଛୁ, ଭାରତରେ ଯାଇ ଦେଖାଇବୁ । କେତେ ନୂଆ ଇଲେକ୍‌ଟ୍ରି ଜିନିଷ; ଗହଣା, ବାଦ୍ୟଯନ୍ତ୍ର, ଖେଳଣା ଇତ୍ୟାଦି । ଆପେ ବ୍ୟବହାର କରିବୁ ଓ ଅନ୍ୟମାନଙ୍କୁ ଦେଖାଇବୁ । କିଛି ଅଂଶରେ ଆମେ ସେମାନଙ୍କଠାରୁ ଭିନ୍ନ ବୋଲି ମନେ କରିବୁ,—ଆମର କିଛି ଅଧିକ ଅଛି, ଆମ ସ୍ୱେଟର୍‌ରେ ବ୍ୟାଜ୍ ଲାଗିଛି ।

ଲୋକେ ଆମକୁ ମନେ ମନେ ଈର୍ଷା କରିବେ, ଆମକୁ ତାହା ବାଧିବ ନାହିଁ । କାରଣ ତାଙ୍କ ମନରେ ସେପରି ଭାବ ଆସିବା ସ୍ୱାଭାବିକ । କିନ୍ତୁ ଆମେ ତାଙ୍କୁ ଜଣାଇବାକୁ ଚାହିଁବୁ ଯେ ଆମେ ବିଶେଷ କିଛି ଆଣିନାହୁଁ । ଅମୁକ ଲୋକ ଏତେ ଅଳ୍ପ ଦରମା ପାଇ ଏତେ ଜିନିଷ ଆଣିପାରିଥିଲେ, ଅମୁକ ଲୋକ ଅନୁଚିତ ଆମଦାନୀ ଦ୍ୱାରା କେତେ କଣ କରି ପାରିଥିଲା— । ସେମାନେ ହୁଏତ ଅନୁମାନ କରିପାରିବେ ନାହିଁ,—ଏହାଠାରୁ ବେଶି ଜିନିଷ ବି ଲୋକେ ଆଣି ପାରିଛନ୍ତି ! ଆମେ ଆମୋଦ-ହସରେ ସୂଚାଇଦେବୁ ଯେ ଆମେରିକା ଜୀବନ କଥା ତୁମେ ଭାବିପାରିବ ନାହିଁ, କଳ୍ପନା କରିପାରିବ ନାହିଁ । ସେ ସଂସାର ନିଆରା ।

ପ୍ରକୃତରେ ସେ ସଂସାର ନିଆରା । କିନ୍ତୁ ଏହିସବୁ ତୁଚ୍ଛବସ୍ତୁ ନେଇ ନୁହେଁ । ନିଆରାପଣ ତା'ର ପାଣିପବନରେ ଅଛି । ମାନେ ତା'ର ସଂସ୍କୃତି, ତା'ର ଆତ୍ମା, ସେମାନେ କିପରି ହସନ୍ତି, କଥା କହନ୍ତି, କାମ କରନ୍ତି, ସେମାନଙ୍କ ଜୀବନର ଉଦ୍ଦେଶ୍ୟ ଓ ଗତି କିପରି ନିତ୍ୟନୂତନ ଭାବରେ ତରଙ୍ଗାୟିତ ହୁଏ । ସେଠିକାର ସେ ଦୁଆବାଲି କେମିତି କଥା କହେ, ସାନପିଲା ରବିନ୍ କେମିତି ହସେ ଖେଳେ ଓ ଗୁରୁଗମ୍ଭୀର ହୋଇ ପକେଟ୍ ଖର୍ଚ୍ଚ ପାଇଁ ମୂଲ ଲାଗେ, ବୁଢ଼ା ପଡ଼ୋଶୀ କେମିତି ତା' ବୁଢ଼ୀର ଜନ୍ମଦିନ ମନାଏ, ସୁପର୍‌ମାର୍କେଟ୍‌ରେ କେମିତି ମୃଦୁ ସଙ୍ଗୀତର ଧ୍ୱନି ଭାସିଆସେ, ସେଠିକା ଖୋଲା ବଡ଼ରାସ୍ତାରେ କେମିତି କାର୍ ଗଡ଼ି ଚାଲେ ଛୁଟିଯାଏ

ଦୂରକୁ କେଉଁ ପାହାଡ଼ଝରଣା ପାଖକୁ··· ! ବୁଝାଇ ହେବ ? ଏ ସବୁ କଥା କଣ ବୁଝାଇ ପାରିବ ? ମୋ ଦେଶର ଲୋକେ କଣ ସେହି ଅପରୂପ ଭିନ୍ନ ପ୍ରାଣର ସନ୍ଧାନ କିଛି ପାଇ ପାରିବେ ? ହୁଏତ ଯେଉଁମାନେ ଆମେରିକା ଯାଇ ଫେରିଆସିଛନ୍ତି ସେମାନେ ମଧ୍ୟ ହୃଦୟଙ୍ଗମ କରିପାରିବେ ନାହିଁ । କଥାରେ ଯୋଗଦେଇ କହିବେ —ହଁ, ସେଠିକା ହାଇ-ୱେ, ପ୍ରକୃତିରେ ସୁନ୍ଦର, ସେଠିକାର ସୁପର୍‌ମାର୍କେଟ୍ ସବୁ କି ବଡ଼ିଆ !

ଗୋଲ୍ କାଚଝରକା ବାଟେ କିଛି ଦିଶୁ ନ ଥିବା ଆକାଶକୁ ଅନାଇଦେଇ ଶୋଇଆସିଲି । ଆଉ ବେଳ ନାହିଁ, କିଛି ସମୟ ପରେ ଭୋର ହୋଇଯିବ, ଲଣ୍ଡନ ଟାଇମ୍ ପାଞ୍ଚଘଣ୍ଟା ଆଗୁଆ ।

ଲଣ୍ଡନ୍‌ରେ ଅରୁଣ ସାଙ୍ଗରେ ଦେଖାହେବ । ସେ ଆମେରିକାରେ ରହି ଭାରତ ଫେରିଯାଇ ପୁଣି ଆସିଛି ଲଣ୍ଡନ୍‌କୁ । ଅରୁଣ ପରିବାର ବନ୍ଧୁ । ଭଲ ପିଲା, ସେ ଆମକୁ ମାନେ ।

( ୨ )

ଲଣ୍ଡନ୍‌ରେ ବଡ଼ଝିଅର ପ୍ରଥମ ଆବିଷ୍କାର ଯେ ଏଠିକାର ସବୁ ଟୋକାମାନେ "ବିଟ୍‌ଲ୍"ମାନଙ୍କ ପରି ଦେଖାଯାଆନ୍ତି । ମୁଁ ତା' କଥାରେ ହସିଦେଲି ଓ ଟିକିଏ ଆଶ୍ଚର୍ଯ୍ୟ ହେଲି ଯେ ଏ ପର୍ଯ୍ୟନ୍ତ ତା' ମୁଣ୍ଡରୁ ବିଟ୍‌ଲ ଭୂତ ଯାଇନାହିଁ । କିନ୍ତୁ ସେ ହାତଧରି ଟାଣିଆଣି ଦେଖାଇଲା ଜଣକୁ ଓ ମୁଁ ଦେଖିଲି ଯେ ସେ ସତରେ ଗୋଟିଏ ମୂର୍ତ୍ତିମନ୍ତ ବିଟ୍‌ଲ୍ ।

ବିଟ୍‌ଲ୍ । ସେମାନଙ୍କର ରୂପଗୁଣ ମାର୍କାମରା,—ମହାରାଜା, ବାବାଜୀ କିମ୍ବା ସେହିପରି ଶ୍ରେଣୀଗତ ଲୋକମାନଙ୍କ ପରି । ସେମାନେ ଅଳ୍ପବୟସ୍କ ଯୁବକ, କୈଶୋରସୀମା ନିକଟରେ ପାରହୋଇ ଆସିଛନ୍ତି । ସେମାନଙ୍କର ବ୍ୟବହାର କୋମଳ, ଗୋଛାଏ ବାଳ ମୁଣ୍ଡରେ ଟୋପର ପରି ରହିଛି ଓ କିୟଦଂଶ ଉପରକୁ ଝୁଲି ଆସିଛି, ସେମାନେ ବଡ଼ପାଟିରେ ଗୀତ ବୋଲନ୍ତି ଓ ଗୀତ ବୋଲିଲାବେଳେ ମୁଣ୍ଡ ଖୁବ୍ ଜୋର୍‌ରେ ହଲାନ୍ତି । ପୃଥିବୀରେ ସେମାନେ ମାତ୍ର ଚାରିଜଣ । ଇଂଲଣ୍ଡର ସନ୍ତାନ କିନ୍ତୁ ୟୁରୋପ ଓ ଆମେରିକାରେ ସୁଖ୍ୟାତି ପାଇଛନ୍ତି, ବିଶେଷତଃ ଆମେରିକାର ଅଧିକାଂଶ ଟୀନ୍ ଏଜର୍‌ମାନଙ୍କ ହୃଦୟହରଣ କରିପାରିଛନ୍ତି । ବାପ ମାଆମାନେ ହସିଦିଅନ୍ତି, କହିଛନ୍ତି ଯେ ଏ ବିଟ୍‌ଲ୍‌ମାନେ ପ୍ରକୃତରେ କିଛି ନୁହନ୍ତି, ଯେ ଏ ଗୋଟାଏ ଢ଼'ଙ୍ଗକିଆ ପାଗଳାମି । କିନ୍ତୁ ସେହି ପାଗଳାମି ଦେଖିବାକୁ ସମସ୍ତଙ୍କୁ ଭଲ ଲାଗିଛି । ମୋତେ ମଧ୍ୟ ଭଲ ଲାଗିଛି, ମୁଁ ମୋ ପିଲାଙ୍କୁ ବାଧା ଦେଇନାହିଁ ।

ବିଟ୍‌ଲ୍‌ମାନଙ୍କ ବିଷୟରେ ଏତେକଥା କହିଲି, ତା'ର କାରଣ ଅଛି । ପ୍ରଥମତଃ ଲଣ୍ଡନ୍‌ରେ ସେହି ବିଟ୍‌ଲ୍‌ଧର୍ମୀ ପଚ୍ଛୀ ଟୋକାମାନଙ୍କୁ ଦେଖି ମୁଁ ଭାବିଲି ଯେ ଏହି ପୁରୁଣା ଦେଶର ଯଥେଷ୍ଟ ଆତ୍ମାଭିମାନ ଅଛି । ସେଠିକାର ତରୁଣ ଦଳ ଗର୍ବର ସହିତ ଜଣାଇବାକୁ ଚାହାନ୍ତି ଯେ ବିଟ୍‌ଲ୍‌ମାନେ ତାଙ୍କ ଆତ୍ମୀୟ, ତାଙ୍କର ଦେଶର ବୀର । କିଏ କହେ ଯେ ସେମାନେ ଖାଲି ଆମେରିକା ପଛରେ ଧାଉଁଛନ୍ତି ? ଲଣ୍ଡନ୍‌ପିଲର ଏହି ପରିଚୟଟିକି ପ୍ରଣିଧାନଯୋଗ୍ୟ ।

ଦ୍ୱିତୀୟରେ ସେମାନଙ୍କ ବିଷୟରେ କେତୋଟି କଥା କହି ନ ଥିଲେ କେହି ବୁଝିପାରି ନ ଥାଆନ୍ତେ ଯେ ମୁଁ କାହିଁକି ପ୍ରଥମେ ଅରୁଣକୁ ଦେଖି ସ୍ତମ୍ଭିତ ହୋଇଗଲି । ତା'ର ସୁଡ଼ୌଲ ସୁଠାମ ତନୁ ପୂର୍ବପରି ଅଛି, ତା'ର ଚାହାଣୀର ହସିଦା ଚିଗିବା ପଣ ଉଭେଇ ଯାଇନାହିଁ । କିନ୍ତୁ ତା'ର ମୁଣ୍ଡର ବାଳ,—ମୋର ଭ୍ରମ ନୁହେଁ ତ,—ଠିକ୍ ବିଟ୍‌ଲ୍‌ମାନଙ୍କ ପରି !

ବିଶ୍ୱାସ ହେଲା ନାହିଁ । ଅରୁଣର ଏ ଦୁର୍ଦ୍ଦଶା କାହିଁକି ?

...ଅରୁଣ ସାଙ୍ଗରେ ଦେଖାହେବା ଆଗରୁ ଆମେ ଲଣ୍ଡନ୍‌ର ବଡ଼ବଡ଼ ଦୃଶ୍ୟ ଦେଖିସାରିଲୁଣି । ଦୃଶ୍ୟ ଦେଖିବାରେ ଆନନ୍ଦ ଥିଲା ନିଶ୍ଚୟ, କିନ୍ତୁ ଯଥେଷ୍ଟ ସନ୍ତୋଷ ମିଳିଲା ନାହିଁ । ଟିକିଏ ଖରା ଟିକିଏ ବର୍ଷାର ଲୁଚକାଲି ବିରକ୍ତ ଲାଗୁଥାଏ । ଟ୍ୟାକ୍‌ସି ଡ୍ରାଇଭର୍ ବିଶେଷ କଥା କହିବାକୁ ନାରାଜ, ଓ ତା'ର ଇଂରାଜୀ ଉଚ୍ଚାରଣ ବୁଝିହେଉ ନ ଥାଏ । ପିଲାମାନେ ଏକମତ ହେଲେ ଯେ ଏଠିକା ଲୋକେ ଇଂରାଜୀ କହି ଜାଣନ୍ତି ନାହିଁ, ଟାଣି ଓଟାରି ଦେଖାଇହେଲା ପରି କହନ୍ତି । ତା'ଛଡ଼ା ମୋର ପରିବାର ଇଂରାଜୀ ଇତିହାସର ଗରିମା ଉପଲବ୍‌ଧି କରି ପାରୁ ନ ଥାଆନ୍ତି । ଟ୍ରାଫାଲ୍‌ଗାର୍ ସ୍କୋୟାର୍‌ରେ ନେଲ୍‌ସନ୍‌ଙ୍କ ମୂର୍ତ୍ତି ଦେଖି ତାଙ୍କ ମନରେ କିଛି ଭାବ ଜାଗିଲା ନାହିଁ । ଅଥଚ ସେଠିକାର ପାରାମାନଙ୍କୁ ଖୋଇବାର ଦୃଶ୍ୟ ଦେଖି ଜଣେ କିଏ କହିଲା ଯେ ନିଉୟର୍କ୍ ସେଣ୍ଟ୍ରାଲ୍ ପାର୍କ୍‌ରେ ଏମିତି ଅଛି, ଏହାଠାରୁ ଭଲ । ପାର୍ଲିଆମେଣ୍ଟ୍ କୋଠା ଦେଖି ସେହିପରି ମନ୍ତବ୍ୟ,—ଓ୍ୱାଶିଙ୍ଗ୍‌ଟନ୍‌ର କାପିଟଲ୍ ଏହାଠାରୁ ସୁନ୍ଦର । ବିରାଟ ଅଗ୍ନିକାଣ୍ଡ (ଗ୍ରେଟ୍ ଫାୟାର୍)ର ସ୍ମୃତିସ୍ତମ୍ଭ ଦେଖି ତା'ର ତାତ୍ପର୍ଯ୍ୟ ବୁଝିପାରିଲେ ନାହିଁ । କହିଲେ,—ନିଆଁ ଲାଗିବାର ସ୍ମୃତିସ୍ତମ୍ଭ କାହିଁକି ? ଯାହାହେଉ କୌଣସିମତେ ଦୃଶ୍ୟ ଦେଖା କର୍ତ୍ତବ୍ୟ ସାରିଦେଇ ଆମେ ପ୍ରାୟ ସଞ୍ଜବେଳେ ହୋଟେଲ୍‌ରେ ପହଞ୍ଚିଲୁ ।

ଲଣ୍ଡନ୍‌ର ଜୁନ୍‌ମାସ ସଞ୍ଜବେଳ ପ୍ରାୟ ରାତି ୯ଟା ବେଳକୁ । ଶୀଘ୍ର ଖାଇସାରି ବିଶ୍ରାମ ନେବାର କଥା । କିନ୍ତୁ ଦେଖିଲିବେଳକୁ ଅରୁଣ ଆମପାଇଁ ଲବିରେ ଅପେକ୍ଷା କରି ବସିଛି । ବିଶ୍ରାମର ଇଚ୍ଛା ଅପସରି ଗଲା, ମୁଁ ଆଗେଇ ଯାଇ ତାକୁ କୁଣ୍ଢାଇପକାଇ

ଅଭିବାଦନ କଲି, ଓ ସେତିକିବେଳେ ମୋର ଆଖିରେ ପଡ଼ିଲା ତା'ର ଦେହ ବିଚିତ୍ର କେଶବିନ୍ୟାସ ।

ମୋର ପ୍ରଥମ ଦେଖାର ଆଶ୍ଚର୍ଯ୍ୟ ସେ ଜାଣି ପାରିଥିଲା । ଉତ୍ତରରେ କେବଳ ହସିଦେଇ କହିଲା,—ଭିତରକୁ ଯିବା ଚାଲ ।

ସେଦିନ ହୋଟେଲ୍ ରୁମ୍‌ରେ ସେ ଗପିଲା ଅଧରାତି ଯାଏଁ ।

ବାର୍ତ୍ତାଳାପର ଆରମ୍ଭରେ ସେ ତା'ର ମୁଣ୍ଡର ପ୍ରକୃତ ଅବସ୍ଥା ଦେଖାଇଲା । ହସି ହସି ବାଳଗୋଛାକ ହାତରେ କାଢ଼ି ତଳେ ରଖିଦେଲା । ସେ ମିଛବାଳ, ବିଟ୍‌ଲ୍-ଉଇଗ୍,—ତା'ର ନିଜସ୍ୱ ନୁହେଁ, ଷ୍ଟୋର୍‌ରେ କିଣିବାକୁ ମିଳେ ।

ଅରୁଣର ବୟସ ତିରିଶ ସେ ପାଖରେ । ଚପଳତା ତାକୁ କେବେହେଲେ ଆକ୍ରମଣ କରିବା କଥା ନୁହେଁ ଏପରି କହିବା ଭୁଲ୍ ହେବ । ତଥାପି ମୋର ପହିଲି ଆଶ୍ଚର୍ଯ୍ୟ ଘୁଞ୍ଚିଗଲା ନାହିଁ । ଅରୁଣ ତ ଏମିତି ନ ଥିଲା ।

ସେ ଖଟ ଉପରେ ବସି କଥା କହୁଥାଏ । ବିଟ୍‌ଲ୍ ଉଇଗ୍‌ଟାକୁ ପିଲାମାନେ ଜଣକପରେ ଜଣେ ମୁଣ୍ଡରେ ଲଗାଉଥାଆନ୍ତି । ସେ ଛୋଟିଆ ରୁମ୍‌ରେ ସବୁ ପିଲାଙ୍କର ଖେଳକଉତୁକ ପାଇଁ ଜାଗା ନ ଥାଏ । ଶ୍ରୀମତୀ ଚିଡ଼ୁଥାଆନ୍ତି । ସେଣ୍ଟ୍ରାଲ୍ ହିଟିଂ ନାହିଁ,—ଆମେରିକାର ଏହି ସର୍ବସାଧାରଣ ସୁବିଧାଟିକି ଲଣ୍ଡନ୍‌ରେ କ୍ୱଚିତ୍ ମିଳେ,—ତେଣୁ ଅଳ୍ପ ଶୀତ ଲାଗୁଥାଏ । ଗରମ ଚା' କିମ୍ବା କଫି ପାଇଁ ରୁମ୍ ସର୍ଭିସ୍‌କୁ ଫୋନ୍ କରିହେବ ନାହିଁ, କାରଣ ଏଠି ରୁମ୍ ସର୍ଭିସ୍ ନାହିଁ ଓ ଫୋନ୍ କରିବା ପାଇଁ ଦୂରକୁ ଯିବାକୁ ପଡ଼ିବ । ପ୍ରତିମୁହୂର୍ତ୍ତରେ ନିଜକୁ ଚେତାଇ ଦେବାକୁ ପଡ଼ୁଥାଏ ଯେ ଲଣ୍ଡନ୍ ଓ୍ୱାଶିଂଟନ୍ ବା ନିଉୟର୍କ ନୁହେଁ । ଧାରଣା ନ ଥିଲା ଯେ ଦିନକୁ ୮ ପାଉଣ୍ଡ ଦେଇ ମଧ୍ୟ ଏତେ ଅବସ୍ଥା ହେବାକୁ ପଡ଼ିବ । ପିଲାମାନେ ମଝିରେ ମଝିରେ ପଚାରୁଥାଆନ୍ତି,—ବାପା, କାଲି ପ୍ୟାରିସ୍ ଯିବା ନା ? କେତେବେଳେ ଯିବା ?

ଏହି ପରିବେଷ୍ଟନୀରେ ଟିକିଆଟାକୁ ଦୃଢ଼ଭାବରେ ଜାବୁଡ଼ିଧରି ଅଟଳ ପ୍ରତିଜ୍ଞାର ଭଙ୍ଗୀରେ ସେ କହିଲା,—ଜାଣିଛ ? ମୁଁ ଠିକ୍ କରିଛି ଏଇଠି ସେଟ୍‌ଲ୍ କରିବି, ଦେଶକୁ ଫେରିଯାଉ ନାହିଁ ।

ଅରୁଣବାବୁ, ଅରୁଣଦାଦା, ମିଷ୍ଟର୍ ଅରୁଣ ସେନ୍ ଲଣ୍ଡନ୍‌ରେ ରହିବେ ସବୁଦିନ ପାଇଁ ଭାରତକୁ ଫେରିଯିବେ ନାହିଁ । ଏ ଖବର ମୁଁ, ମୋର ସ୍ତ୍ରୀ ଓ ପିଲାମାନଙ୍କ ପାଖରେ ପହଞ୍ଚିଲା । ସମସ୍ତଙ୍କ ମୁହଁରେ କିଛି ନା କିଛି ଭାବର ଉଦ୍ରେକ ହୋଇଥିବ । ଅରୁଣ ସମସ୍ତଙ୍କ ମୁହଁକୁ ଥରେ ଥରେ ଅନାଉଥାଏ । ତାକୁ ବୋଧହୁଏ ଭାବିବାକୁ ଭଲ ଲାଗୁଥାଏ ଯେ ସେ ଗୋଟାଏ ବଡ଼ ଖବର ଦେଇଛି, ସମସ୍ତଙ୍କ ମନରେ କିଛି ନା କିଛି ପ୍ରତିକ୍ରିୟା ସୃଷ୍ଟି କରି ପାରିଛି । ବର୍ତ୍ତମାନ ଦେଖାଯାଉ ।

ମୋର ପ୍ରଥମ ପ୍ରତିକ୍ରିୟା ହେଲା ଯେ ଏ ତା'ର ଚପଳତାର ଆଉ ଗୋଟିଏ ନମୁନା । କିନ୍ତୁ ମୁଁ କିଛି କହିବା ଆଗରୁ ମଝିଆଁ ଝିଅ ପରାମର୍ଶ ଦେଲା, "ଅରୁଣ ଦାଦା ଏଠି କାହିଁକି ରହୁଛ ? ଓ୍ୱାଶିଙ୍ଗ୍‌ଟନ୍‌ରେ ରହୁନାହଁ ? ଲଣ୍ଡନ୍‌ଟା ବାଜେ ଜାଗା ।"

ଅରୁଣ ହସି ଉଠି କହିଲା, "ସେ ଭାଗ୍ୟ ମୋର ନାହିଁ । କିନ୍ତୁ ଏ ବାଜେ ଜାଗା ଭାରତଠାରୁ ଭଲ । ମୁଁ ଅନ୍ତତଃ ଏଠି ବଞ୍ଚିପାରିବ ।"

ମୋ ମନର ପ୍ରତିରୋଧଭାବ ଗର୍ଜି ଉଠୁଥାଏ । ଦେଶପ୍ରେମ-ଜନିତ କ୍ରୋଧ ପ୍ରବଳ ହୋଇ ଆସୁଥାଏ । ମୁଁ ତିରସ୍କାର ସ୍ୱରରେ ପଚାରିଲି "ଭାରତରେ ବଞ୍ଚିପାରିବୁ ନାହିଁ,—ସତେ ? ଦେଶରେ ଯେଉଁମାନେ ଅଛନ୍ତି ସେମାନେ ମୃତ, ମୁମୂର୍ଷୁ ନା ମଣିଷପଦବାଚ୍ୟ ନୁହଁନ୍ତି ?"

ସେ ସାହସୀ ଦୃଷ୍ଟିରେ ମୋ ଆଡ଼କୁ ଅନାଇଲା, ତା' ଭଙ୍ଗୀରେ ସତକଥା କହିପାରିବାର ଅହମିକା । କହିଲା, "ସେମାନେ ଅଛନ୍ତି ହୁଏତ ମରନାହାନ୍ତି, ହୁଏତ ମଣିଷ । କିନ୍ତୁ ମୁଁ ସେମାନଙ୍କ ପରି ରହିପାରିବି ନାହିଁ । ମୁଁ ଏଠିକାର ନିର୍ମଳ ଆଲୁଅ ଦେଖିଛି, ସେଠିକାର ଭିତର କଳା ଆଲୁଅ ପାଖକୁ ଫେରିଯିବି କାହିଁକି ।

ଦେଶପ୍ରେମରେ ଅବତାରଣା କରି ଲାଭ ନାହିଁ । କହିଲି, "ତୋର ନିର୍ମଳ ଆଲୁଅ କଣ ? ସୋହୋ ସ୍କୋୟାରର୍ ନାଇଟ୍‌କ୍ଲବର ଆଲୁଅ ? ଷ୍ଟ୍ରିପ୍‌ଟିଜ୍ ଷ୍ଟାର୍‌ର ଦେହ ଉପରେ ପଡ଼ୁଥିବା ହଜାରେ କାଣ୍ଡ୍‌ଲ ପାଓ୍ୱାର୍‌ର ଆଲୁଅ ନା ପଛସିଟ୍‌ରେ ନେଟହେଲ୍‌ଇ ହେବା ପାଇଁ ରଖା ହୋଇଥିବା ଅନ୍ଧାରିଆ ଆଲୁଅ ? ଆମ ଭିତର ଆଲୁଅ ନଉନ, କିନ୍ତୁ ନଉତୁଣା ନୁହେଁ ।"

ଅରୁଣ ବାଧ ଅସୁଛି । ଉଚିତ ଉତ୍ତର ଦେବାକୁ ଯାଇ ଅଡମଡ ହୋଇଯାଉଛି । ଶେଷକୁ କହିଲା, "ତୁମେ ଅଯଥା କଥା କହୁଛ । ମୋତେ କଥା କାଟି ଆସେ ନାହିଁ । ହେଲେ ମୁଁ ନିଜେ ଭାରତ ଯାଇ ଫେରି ଆସିଛି । ମୁଁ ସତ କହୁଛି ମୋର ସେଠି ନିଃଶ୍ୱାସ ରୁନ୍ଧ ହୋଇଗଲା । ମୁଁ ସେଠି ରହି କାମ କରିପାରିବି ନାହିଁ, ଚଳି ପାରିବି ନାହିଁ ।"

ମୁଁ କିଛି ସମୟ ପାଇଁ ନୀରବ ରହିଲି । ମନେହେଲା ତା'ର ରାଗ ମୋ' ରାଗଠୁଁ ସତ, ଯଦିଓ ତା'ର କାରଣ ସବୁ ଭୁଲ୍ । କିଛିଏ ପରେ ଧୀର କଣ୍ଠରେ ପଚାରିଲି, "ତୋର ମାଆଙ୍କୁ କହିଛୁ ?"

ସେ ଅପ୍ରସ୍ତୁତ ହେଲା ପରି ଲାଗିଲା ଓ ତା'ପରେ କହିଲା, "ନା, କହିନାହିଁ; କିନ୍ତୁ କହିବାକୁ ପଡ଼ିବ ।"

ଅରୁଣର ମାଆ ବିଧବା । ତାଙ୍କ ଧାନକୁଟି ପୁଅକୁ ପଢ଼ାଇବାକୁ ପଡ଼ି ନ ଥିଲା ସତ, କିନ୍ତୁ ପୁଅର ଉଚ୍ଚଶିକ୍ଷା ପାଇଁ ଯଥେଷ୍ଟ କଷ୍ଟସ୍ୱୀକାର କରିବାକୁ ପଡ଼ିଥିଲା । ତାଙ୍କର ଅରୁ ଉପରେ ବଡ଼ ଆଶା । ସେ ବାପ ପରି ଗରିବ ମାଷ୍ଟର ହେବ ନାହିଁ, ତା'ଠାରୁ ବଡ଼ ହେବ, ଘର ତୋଳିବ,—ସେଠି ତାଙ୍କ ପାଇଁ ଗୋଟିଏ ଗ୍ଲେଟିଆ କୋଠରି ଥିବ । ମୋର ଭାରତ ଛାଡ଼ିବା ଆଗରୁ ତାଙ୍କ ସାଙ୍ଗରେ ଦେଖା ହୋଇଥିଲା, ସେତେବେଳେ ଅରୁଣ ଆମେରିକାରେ ଥିଲା । ତାଙ୍କ କଥାରୁ ମୋର ମନେହେଲା ସେ ଦୂର ଭବିଷ୍ୟତର ସ୍ୱପ୍ନ ଦେଖୁନାହାନ୍ତି, ଆସନ୍ତାକାଲର ଛବି ଦେଖି ଖୁସି ହେଉଛନ୍ତି । ଏଇ ଜଳଜଳ ହୋଇ ଦିଶିଯାଉଛି, ଅରୁ ଆମେରିକାରୁ ଫେରିଆସି ବାହାସାହା ହୋଇ ଘର କରୁଛି । ଅରୁଣ ଆମେରିକାରୁ ପାଠପଢ଼ି ସାରି ଫେରିଆସିଲା ଓ ଛଅମାସ ପରେ ପୁଣି ବିଲାତ ଗଲା । ମାଆ ଭାବୁଥିବ ଯେ ସେ ଶୀଘ୍ର ଫେରିଆସିବ ଶେଷଥର ପାଇଁ, ଘରତୋଳା ଆରମ୍ଭ ହେବ ।

ଅରୁଣ କହୁଛି, "ମୁଁ ଜାଣେ ମାଆ ମନରେ କଷ୍ଟ ହେବ । ସେ ଭାବୁଛି ତା' ପୁଅ ବଡ଼ଲୋକ ହେବାକୁ ବସିଛି । ସେ ଆମେରିକାରୁ ଫେରିଛି, ବିଲାତରୁ ଫେରିବ; କିନ୍ତୁ ସେ କଣ ଜାଣିଛି ଯେ ପାଟଣାର ବାଙ୍କୀପୁର ରାସ୍ତାରେ ଉଦୁଉଦିଆ ଖରାରେ ତା' ପୁଅ କେମିତି ଚାକିରିଖଣ୍ଡେ ପାଇଁ ବାରଦୁଆର ହେଉଥିଲା ? ସେ ପାଟଣା ସେକ୍ରେଟେରି-ଏଟ୍‌ରେ ବଡ଼ବାବୁଙ୍କ ଅପେକ୍ଷାରେ ବସି ବସି ତା'ର ଦିନ ସରୁଥିଲା ?

"ସେମିତି ଲସ୍‌ସୀ ଗିଲାସେ ଖାଇ ଦିଲ୍ଲୀର ଖରାରେ ବୁଲିଛି; 'ବମ୍ବେରେ ବୁଲିଛି, ସନ୍ଧ୍ୟାବେଳକୁ ଖାଲି ହାତରେ ଫେରି ଆସି ଚୌପାଟି ସମୁଦ୍ରକୂଳରେ ଘଣ୍ଟା ଘଣ୍ଟା ଧରି ବସି ବାଲିରେ ଗାର କାଟିଛି । କେହି ମୋତେ ପଚାରିନାହାନ୍ତି । ସବୁଠି ସେହି ଏକା କଥା, ଅପେକ୍ଷା କର । ନ ହେଲେ ହେଇ ନିଅ ଚାକିରି, ଦରମା ତିରିଶ ଟଙ୍କା । ଇଙ୍ଗିତରେ ଜଣାଇ ଦିଅନ୍ତି ଯେ ତୁମ ପରି ବିଦେଶ ଫେରନ୍ତା ଗଣ୍ଡା ଗଣ୍ଡା ବୁଲୁଚନ୍ତି । ମୁଁ କେମିତି ତାଙ୍କୁ କହିବି ଯେ ମୁଁ ବିଦେଶ ଫେରନ୍ତାର ଦାବୀ କରୁନାହିଁ, ଯେ ମୁଁ କିଛି ବିଶେଷ ପାଠ ପଢ଼ିଛି, ତାକୁ ମୁଁ କାମରେ ଲଗାଇବାକୁ ଚାହେଁ ! ସେହି ପାଠ ଯେଉଁମାନେ ପଢ଼ିଛନ୍ତି, ତାଙ୍କର ଭିତରୁ ମୋତେ ବାଛ ଓ ତା'ର ଉଚିତ ମୂଲ୍ୟ ଦିଅ ।"

ତା' କଥାଗୁଡ଼ାକ ଶ୍ରୁତିକଟୁ ଲାଗୁଥାଏ । କାରଣ ଏମିତି କଥା ବହୁତ ଶୁଣିଛି ଆମେରିକାରେ ଅନେକ ଭାରତୀୟମାନଙ୍କ ଠାରୁ । ସେମାନେ ଭାରତ ଫେରି-ଆସିବାକୁ ଚାହାନ୍ତି ନାହିଁ । କେତେକ କହନ୍ତି ଟଙ୍କା ଅଣ୍ଟିବ ନାହିଁ, ସେମାନେ ସ୍ପଷ୍ଟବାଦୀ । କିନ୍ତୁ ଅନ୍ୟମାନେ କହନ୍ତି ଯେ ଭାରତରେ କାମ କରିବାର ସ୍ୱାଧୀନତା ନାହିଁ, ସମ୍ମାନ ନାହିଁ, ସେଠିକାର ବାତାବରଣ ଅତି ସଙ୍କୀର୍ଣ୍ଣ ଇତ୍ୟାଦି । ଅତି ପୁରୁଣା ସଫେଇ । ଦୁଃଖ ଲାଗୁଛି ଯେ ଅରୁଣ ସେମାନଙ୍କ ଭିତରୁ ଜଣେ ।

"ଖାଲି ଟଙ୍କା କଥା କହୁନାହିଁ । ସେଠି କାମ କରିବାର ଆଗ୍ରହ ମରିଯିବ । ମୋ ସାଙ୍ଗମାନେ, ଯେଉଁମାନେ କଲେଜରେ ଅଛନ୍ତି କିମ୍ବା ଘରକାଗ୍ର ଅଫିସ୍‌ରେ ଅଛନ୍ତି, ତାଙ୍କଠାରୁ ଶୁଣିଛି । ଖାଲି ପେଟପୋଷା କାମ ଅଧିକା କିଛି କରିବାର ପ୍ରୟାସ ନାହିଁ, କଲେ ମଧ୍ୟ କେହି ପଚାରିବେ ନାହିଁ···—।"

ଆରମ୍ଭ ହୋଇଗଲା ଧରାବନ୍ଧା କଥାର ସ୍ରୋତ । ମୋତେ ବିରକ୍ତ ଲାଗିଲା । ଜାଣିଶୁଣି ହାତବନ୍ଧା ଘଡ଼ିକୁ ଅନାଇଲି; ଅରୁଣ ଖରାପ ଭାବୁ ପଛେ । ତା'ଛଡ଼ା କାଲି ଶୀଘ୍ର ଉଠି ପ୍ଲେନ୍ ଧରିବାକୁ ପଡ଼ିବ ।

କିନ୍ତୁ ସେ ଗପି ଚାଲିଲା,—ନାନାବିଧ କ୍ଳେଶ ଦୁଃଖର କାହାଣୀ । ତେବେ କିଛି ସମୟ ପରେ ସେ ବୋଧହୁଏ ଦେଖିଲା ଯେ ମୁଁ ତା' କଥା ଶୁଣୁନାହିଁ, ଉଦାସୀନ ହୋଇଗଲିଣି । ସେଥିପାଇଁ ସେ ହଠାତ୍ ଟିକିଏ ଆଗକୁ ଉହୁଙ୍କି ଆସି ମୋ ଆଖିରେ ଆଖି ରଖି ପଚାରିଲା, "ତୁମେ କଣ ସତରେ ଭାବୁଛ ଯେ ମୁଁ ଖାଲି ବେଶି ଟଙ୍କା, ଅଧିକା ସୁବିଧା ଆରାମ ପାଇଁ ଏଠି ରହିବାକୁ ଚାହେଁ ! ମୁଁ କଣ ମୋ ମାଆକୁ ଭଲପାଏ ନାହିଁ ?"

ତରଳମତି ଅର୍ବାଚୀନ ଅରୁଣ; କିନ୍ତୁ ତା'ର ଆନ୍ତରିକତା ଅଛି । ହେଲେ ସେ ମୋତେ ଏମିତି ଧମକାଇଲା ପରି ପଚାରୁଛି କାହିଁକି ? କିଏ ମନା କରୁଛି ଯେ ସେ ତା'ର ମାଆକୁ ଭଲପାଏ ନାହିଁ ? ସେହି କଥାଟାକୁ ଜୋର୍‌ରେ କହିଦେଲେ କଣ ସବୁ ଦୋଷ ମାର୍ଜ୍ଜନା ହୋଇଗଲା ?

କିନ୍ତୁ ତା' କଥାର ଭାବପ୍ରବଣତାଟିକି ବୋଧହୁଏ ଶ୍ରୀମତୀଙ୍କ ମନକୁ ଛୁଇଁଥିଲା । ସେ ସ୍ତବ୍ଧ ହୋଇ ଆମ ଦୁଇଜଣଙ୍କ ଆଡ଼କୁ ଅନାଇଲେ । ବଡ଼ପିଲା ଦୁଇଜଣ ମଧ୍ୟ ଏହି ମାଆକୁ ଭଲପାଇବା କଥାରେ ଜାଗ୍ରତ ଉଦ୍‌ଗ୍ରୀବ ହୋଇ କଥାର ଶେଷକୁ ଚାହିଁ ବସିଲା ପରି ମନେହେଲା ।

କି ଆଶ୍ଚର୍ଯ୍ୟ ! ମୋତେ ସମସ୍ତେ ଅନାଇଛନ୍ତି କାହିଁକି ? ମୋର ଯେପରିକି କିଛି କହିବା ଦରକାର, ବୁଝାଇଦେବା ଦରକାର । ସତେ ଯେପରି ମୁଁ କହିବି ଯେ ମାଆକୁ ଭଲ ପାଇଥିଲେ ସେ ଏମିତି କଥା କରି ନ ଥାଆନ୍ତା କିମ୍ବା କହିବି ଯେ ଯଦି ସେ ମାଆକୁ ଏତେ ଭଲ ପାଉଥାଏ ତାହାହେଲେ ସବୁ ଠିକ୍ ଅଛି, ସେ ନାଗର । ସତେ ଯେପରି ପ୍ରଶ୍ନଟା ତା'ର ନୁହେଁ, ମୋର । ମୁଁ ନିଜକୁ ତା'ର ଉତ୍ତର ଦେବି ।

ତା'ର ମାଆ, ମୋର ମାଆ । ସେମାନେ ତାଙ୍କ ପୁଅମାନଙ୍କୁ ଭଲପାଆନ୍ତି, ଆମେ ତାଙ୍କୁ ଭଲପାଉ । ଭାରତବର୍ଷ ମାଆର ଦେଶ ବୋଲି, ମୁଁ ତ କହିଦେଇ ପାରିବି

ଯେ ମୁଁ ଏହାର ଉତ୍ତର ଦେଇସାରିଛି । ଯେ ମୁଁ ମାଆକୁ ଭଲପାଏ, କିନ୍ତୁ ମୋର ପ୍ରେମିକା—।

କିନ୍ତୁ ମୁଁ ଏ କଥା କହିଲି ନାହିଁ । ଅରୁଣ ବିଲାତ ବା ଆମେରିକାକୁ ଭଲପାଏ ନାହିଁ, ମୋ ପରି ଭଲପାଏ ନାହିଁ । ସେ ଏ ଦେଶର ଅର୍ଥ, ସୁବିଧା ସୁଯୋଗ ଚାହେଁ ନାହିଁ ବୋଲି କହୁଛି, ହୋଇଥିବ । ସେ ହୁଏତ ଭଲପାଏ, କିନ୍ତୁ ତା'ର ଅନୁରାଗ ସ୍ପର୍ଶ ରଙ୍ଗ ଗନ୍ଧ ନେଇ ଗଢ଼ା, ଉପଭୋଗ ପରିମିତ । ଏପରି ଭଲପାଇବାର ସ୍ୱାର୍ଥୀ ହୋଇ ସେ କେଉଁ ସାହସରେ ତା'ର ମାଆକୁ ଭୁଲିଯିବ ?

ମୁଁ ତା' ହାତ ଧରି କହିଲି "ଅରୁଣ, ତୁ ଘରକୁ ଫେରିଯା । ମୁଁ ଜାଣେ ତୁ ଏଠି ସୁଖୀ ହୋଇପାରିବୁ ନାହିଁ ।"

ତା'ର ଦୁର୍ବଳ ହସରେ କରୁଣତା ପହୁଞ୍ଚିଲି ପରି ଲାଗିଲା । ସେ ଆଉ କିଛି କହିଲା ନାହିଁ । ମୁଁ ଭାବିଲି ମୁଁ ଉଚିତ କଥା ଉଚିତ ଭାବରେ କହିଛି । ମୋର ସହାନୁ-ଭୂତିଶୀଳ ପରିବାର ମଧ୍ୟ ଖୁସିହେଲା ପରି ଲାଗିଲେ । ଅରୁଣବାବୁଙ୍କ ମନ କହିବ ଘରକୁ ଫେରିଯିବା ପାଇଁ,—ସେ ସବୁଦିନ ପାଇଁ ଏଠି ରହିବେ କେମିତି ? ଅସୁନ୍ଦର କଥା ।

···ଗଲାବେଳକୁ ସେ ବଟ୍‌ଲ୍-ଓପେନ୍‌ଟା ଛାଡ଼ିଗଲା ପିଲାଏ ଖେଳିବେ ବୋଲି । ସେ ଚାଲିଗଲା ପରେ ଆମେ ଦୁହେଁ ସେ ବସ୍ତୁଟିକୁ ଅନାଇ ସ୍ମିତହାସ ଦେଲୁ । ସେହି ହେଲା ଅରୁଣ ଓ ତା କଥା ଉପରେ ଆମର ଶେଷ ଟୀପ୍‌ପଣୀ ।

( ୩ )

ପ୍ୟାରିସ, ରୋମ୍‌ର ଦୃଶ୍ୟ ଦେଖା ସରିଗଲା । ପ୍ୟାରିସରେ ବେଶୀ ଦାମ ଦେଇ ବିଖ୍ୟାତ ରେଷ୍ଟୋରାଁରେ ଖାଇଲୁ, ପରିବାରର ଅନେକ ଭାବିଲେ ଭଲ ହୋଇଛି, କିନ୍ତୁ ସବୁଠାରୁ ବାଧିଲା ଫରାସୀ ଭାଷା । ଏମାନେ କଣ କେବେହେଲେ ଭୁଲ୍‌ରେ ପଡ଼ୋଶୀ ଇଂଲଣ୍ଡ ଆଡ଼କୁ ଚାହିଁନାହାନ୍ତି ? ଇଂରାଜୀ ଭାଷା ପ୍ରତି ଏପରି ବିମୁଖତା କାହିଁକି ? ବଡ଼ଝିଅର ସ୍କୁଲରେ ପଢ଼ିଥିବା ଫ୍ରେଞ୍ଚ୍ ମଧ୍ୟ ଅବହେଳିତ ହେଲା । କ୍ରମଶଃ ଲଣ୍ଡନ୍ ପରି ପ୍ୟାରିସ୍ ସେମାନଙ୍କର ନାପସନ୍ଦ ହେଲା; ଏଠିକା ଲୋକମାନଙ୍କର ସିଭିକ୍ ସେନ୍‌ସ ନାହିଁ ରାସ୍ତାରେ ଅଳିଆ ପକାଉଛନ୍ତି,—କହିବାକୁ ହୋଇଥିଲେ ପରିଷ୍କାର ଜୋରିମାନା ହୋଇଥାଆନ୍ତା, ଏଠିକା ଘରଗୁଡ଼ା ରଙ୍ଗଛଡ଼ା ପୁରୁଣାକାଳିଆ, ଇତ୍ୟାଦି । ନେପୋଲିୟନ୍ ନେଲସନଙ୍କଠାରୁ କିଛି ଅଧିକ ସମ୍ମାନ ପାଇଲେ ନାହିଁ । ରୋମ୍ ଅପେକ୍ଷାକୃତ ଭଲ ଲାଗିଲା, କାରଣ ପିଲାମାନେ

"ଥ୍ରି କଏନ୍‌ସ୍ ଇନ୍ ଏ ଫାଉଣ୍ଟେନ୍" ଗୀତ ଗାଇ ପାରିଲେ, ସିନେମାରେ ଯେଉଁଠି ସେ ଗୀତ ବୋଲା ହୋଇଥିଲା । ପୁଣି ସେମାନେ ପାଣିରେ ପଇସା ପକାଇ ଉଇଶ୍ କଲେ, ଅର୍ଥାତ୍ ବର ମାଗିଲେ । କେବଳ ସାନଝିଅ ବଡ଼ପାଟି କରି ବର ମାଗିଲା ଯେ ସେ ତା'ର ଓ୍ୱାଣ୍ଟିଙ୍ଗ୍‌ଟନ୍ ସାଙ୍ଗ ଅଲସ୍‌କୁ ଶୀଘ୍ର ଦେଖିବାକୁ ଚାହେଁ ।

କାଏରୋର ରୂପଗୁଣ ଆଗରୁ ଅନୁମାନ କରାଯାଇଥିଲା । ମରୁଭୂମି ପାଖରେ ଦେଶ, ନିଶ୍ଚୟ ଖୁବ୍ ଗରମ ହୋଇଥିବ । ନୀଳ ନଈର ଶୋଭା ଥିବ, ଏସିଆର "ବଜାର" ଥିବ, ନାସେରଙ୍କ ଫଟୋ ସବୁଆଡ଼େ ଦେଖିବାକୁ ମିଳିବ, ହୋଟେଲ୍‌ରେ ବିଭିନ୍ନ ଧରଣର ପିଲଫ୍ ଓ ଶୀସ୍ କବାବ୍‌ର ସ୍ୱାଦୁ ମିଳିବ ଓ ସବୋପରି ଥିବ ପିରାମିଡ୍‌ର ଶୋଭା ।

କିନ୍ତୁ ମୋର ଗୋଟାଏ ଆବିଷ୍କାର ବାକି ଥିଲା । ପହଞ୍ଚିବାଦିନ ପ୍ରଚଣ୍ଡ ଝଡ଼ରେ ନୀଳ ନଈରେ ପାଲଟଣା ଡଙ୍ଗା, ସ୍ଫିଙ୍କସର ପିଆଳିବକାଳ ଓ ଆପାଦମସ୍ତକ ଖୋଳ-ପିନ୍ଧା ଆରବର ଫଟୋ ନେଇସାରି ହୋଟେଲ୍‌ରୁମ୍‌ରେ ପହଞ୍ଚିଲାବେଳକୁ ଦେଖେ ଭିତରୁ ସମବେତ ଚିତ୍କାରର ଧ୍ୱନି ଶୁଭୁଛି । ବେଲ୍ ବଜାଇଲାରୁ ଜଣେ କବାଟ ଖୋଲିଦେଲା, କିନ୍ତୁ ତା' ପଛରୁ ସବୁ ପିଲାଏ ଆସି ମୋ ଉପରେ ପଡ଼ିଲେ । କୋଳାହଳ ଭିତରେ କେବଳ ଗୋଟିଏ କଥା ଶୁଣାଯାଉ ଥାଏ,—ଲିଜାର୍ଡ୍, ବାପା ଲିଜାର୍ଡ୍ !

ଯଥାକ୍ରମେ ସେମାନଙ୍କୁ ଶାନ୍ତ କରି ସେହି ଜନ୍ତୁଟିକୁ ଦେଖିଲି,—ଏକୁଟିଆ ଲିଙ୍ଗୁଡ଼ିକଟା ଝିଟିପିଟିଟିଏ । ପିଲାଙ୍କୁ ବୁଝାଇଲି ଯେ ସେ ମାରାତ୍ମକ ନୁହେଁ, କିଛି କରିବ ନାହିଁ, ଉପରେ ଖସିପଡ଼ିବାର ଭୟ ନାହିଁ । ଅପେକ୍ଷିତ ପ୍ରଶ୍ନ ଆସି ପହଞ୍ଚିଲା, "ବାପା, ଇଣ୍ଡିଆରେ କଣ ଝିଟିପିଟି ଅଛନ୍ତି ?"

ବଡ଼ଝିଅର ଭାରତ କଥା କିଛି କିଛି ମନେ ଥିଲା, କହିଲା,—"ହଁ ଅଛନ୍ତି, ସେମାନେ ଘରେ ପୋକ ଖାଆନ୍ତି, କିନ୍ତୁ ଆଈ କହୁଥିଲେ ଯେ ସେମାନେ ଦେହ ଉପରେ ପଡ଼ିଲେ ଭାରି ଖରାପ— ।"

ଝିଟିପିଟି ଚର୍ଚ୍ଚା କିଛି ସମୟ ଚାଲିଲା । ତା'ପରେ କାଏରୋର ମାଛି ଓ କାଉମାନଙ୍କ କଥା ପଡ଼ିଲା । ପିଲାମାନଙ୍କୁ ଜଣାଇ ଦିଆଗଲା ଯେ ଭାରତରେ ଏହି ସବୁ ପ୍ରାଣୀଙ୍କର ଅଭାବ ନାହିଁ । ସେମାନଙ୍କର କୌତୂହଳ ଉତ୍ସୁକତାର ଭ୍ରମ ଆଣୁଥିଲା, ମୁଁ ଆଶା କଲି ଯେ ଏହି କୌତୂହଳ ସରିବା ଆଗରୁ ଅଭ୍ୟାସ ଆସି ଯାଇଥିବ, ମଝିରେ ସେମାନଙ୍କୁ କିଛି ବାଧିବ ନାହିଁ ।

ପିଲମାନଙ୍କ କଥା ଶୁଣିବାକୁ ମଜା ଲଗୁଥିଲା । କିନ୍ତୁ ତାର ଆଲୋଚନା ମୋତେ ଚେତାଇ ଦେଲା ଯେ ଭାରତ ହାତପାହାନ୍ତାରେ, ଆମେରିକା ଦୂରେଇ ଯାଇଛି । ନିଜର କିଛି ସରିଯିବାର ଭାଙ୍ଗିଯିବାର ଆଶଙ୍କା ମୋ ମନକୁ ଆସିଲା, ଏବଂ ମୁଁ ନିଜକୁ କହିଲି ଯେ କିଛି ଦୂରେଇ ଯାଇନାହିଁ, ଯାଇପାରିବ ନାହିଁ ।

ମୁଁ ସ୍ମରଣ କଲି । କ୍ରମଶଃ କେତେଗୁଡ଼ିଏ ଛବି ପାଖକୁ ଫେରିଆସିଲେ । ସେମାନଙ୍କର ପାରସ୍ପରିକ ସମ୍ପର୍କ ନାହିଁ, କିନ୍ତୁ ମୋର ମନେ ହେଲା ସେମାନେ ମୋ ପ୍ରିୟା ଓ ପ୍ରୀତିର ପ୍ରମାଣ ଦେଉଛନ୍ତି । ···

···ଓ୍ୱାଶିଂଟନର ରକ୍-କ୍ରିକ୍ ପାର୍କ୍ । ସହର ଭିତରେ ପାର୍କ୍‌ଟି ମୁହଁ ଯୋଡ଼େଇ ରହିଛି, ତା' ପାଖକୁ ଗଲେ ତା'ର ସମଗ୍ରରୂପ ଦେଖିବାକୁ ମିଳେ ନାହିଁ । ତେବେ କେଉଁ କେଉଁ ଜାଗାରେ ତାକୁ ଉଙ୍କିମାରି ଦେଖି ହେବ । ଯଥା କନେକ୍ଟିକଟ୍ ଆଭିନ୍ୟୁର ଗୋଟିଏ ପୋଲ ଉପରୁ ତା'ର ଆଭାସ ପାଇ ହୁଏ । ମୁଁ ଦିନେ ସନ୍ଧ୍ୟାବେଳେ ସେହି ପୋଲ ଉପରୁ ତା'କୁ ଦେଖୁଥିଲି । ଅଗଣିତ ବଡ଼ ବଡ଼ ଗଛ ସବୁ ମୂକ ହୋଇ ମୋ ଆଡ଼କୁ ଅନାଇଥିଲେ, ସତେ ଯେପରି ଲୋକମାନଙ୍କର ଏପରି ନିର୍ଲଜ୍ଜ ଗୃହାଣୀ ଦେଖି ଦେଖି ସେମାନେ ମୂକ ହୋଇଗଲେଣି । ସେମାନଙ୍କ ମଝିରେ ଗ୍ରହଲେନ୍ ରାସ୍ତା ଦେଇ କାର୍ ଛୁଟି ଆସୁଥାଏ ଦୁଇପାଖରୁ । ଜଙ୍ଗଲକୁ ଲଗିକରି ପାଣି ଧାରଟିଏ ଶେତା ହୋଇ ଦିଶୁଥାଏ । ଗୋଟିଏ ହଂସ ବସିଛି ସେଠି ? କେଜାଣି । ସେହି ଦୃଶ୍ୟର କମନୀୟତା ମୋତେ ବିଶେଷ ମୁଗ୍ଧ କରି ନଥିଲା; ବରଂ ମନେ ହେଉଥିଲା ଯେ ସେ ଜଡ଼ ନିଥର ପ୍ରକୃତି ମୋ ଆଡ଼କୁ ହସି କରି ଚାହୁଁ ନାହିଁ । ତଥାପି ମୋର ଇଚ୍ଛା ହେଲା ଯେ ମୁଁ ତାକୁ ଦେଖି ରହିବି ଓ ପୋଲଉପରୁ ଡେଇଁ ପଡ଼ି ଦେଖିବା ଶେଷ କରିଦେବି । ମୃତ୍ୟୁର ଇଚ୍ଛା ନେଇ ଡେଇଁବି ନାହିଁ, ବଞ୍ଚିବାର ତୀକ୍ଷ୍ଣ ଆଗ୍ରହ ନେଇ ଡେଇଁ ପଡ଼ିବି । ସେହି ସବୁ ଛୁଟି ଆସୁଥିବା କାର୍‌ର ବେଗ ନେଇ ଶୀତଳ ଜଙ୍ଗଲ ସାଙ୍ଗରେ ସମ୍ବନ୍ଧ ସ୍ଥାପିବି, ହାତରେ ତା'ର ଥିର ପାଣିକୁ ଚହଲାଇବି, ବେଗ ଓ ଆବେଗର ଉତ୍ପୀଡ଼ନ ଦେଇ ତାକୁ ପ୍ରେମ କରିବି ।
× × × × ନିଉୟର୍କରେ ସେଣ୍ଟ୍ରାଲ ପାର୍କକୁ ପଛ କରି ରାସ୍ତା ଉପର ବେଞ୍ଚ୍‌ରେ ବସିଛି, ସିକ୍ସଥ୍ ଆଭିନ୍ୟୁ ଓ ଫିଫ୍‌ଟି ଏଇଠ୍ ଷ୍ଟ୍ରୀଟ୍ ଚଉମୁହାଣିର ଲୋକମାନଙ୍କୁ ଦେଖୁଛି । ସେପ୍‌ଟେମ୍ବର ସକାଳର ସ୍ୱଚ୍ଛତା ଓ ଭଙ୍ଗୁରତା । ମନେ ହେଉଛି ରାସ୍ତା କଡ଼ର ରେସ୍ତୋରାଁ କଫି ହାଉସମାନଙ୍କଠାରୁ ବ୍ରେକ୍‌ଫାଷ୍ଟ୍‌ର ଶବ୍ଦ ଶୁଭୁଛି — ପ୍ଲେଟ୍ ଚାମୁଚ୍ କଣ୍ଟାର ସଙ୍ଘାତ, କ୍ୟାନ୍‌ରୁ ଲାଲ୍ ଟମାଟୋ ରସର ଉଦ୍‌ବେଳ ପତନ । ପୋଷାକପିନ୍ଧା ପୁଡ୍‌ଲ୍ (ଶ୍ରେଷ୍ଠ କୁକୁର)କୁ ଧରି ଆସୁଥିବା ଭଦ୍ରମହିଳାଙ୍କ ମୁହଁରେ ଫ୍ରେକ୍‌ଲସ (ଚର୍ମଚୁଣ) ବାରି ହୋଇ ଯାଉଛି । ବିଳାସ ଭ୍ରମଣରେ ଘୋଡ଼ାଗାଡ଼ି,—ଅଧଘଣ୍ଟାକୁ ପାଞ୍ଚଡଲାର୍,—ଓ ସେଥିର ଟିଙ୍କିଟିଙ୍କା ଚାଳକମାନେ

ଝଳ ଦିଶୁଛନ୍ତି । ରାସ୍ତାର ଦୁଇ ପାଖରେ ଉଠିଥିବା ସ୍କାଏ-ସ୍କ୍ରେପର୍‌ଗୁଡ଼ିକ ଭିତରେ ଦିଗନ୍ତ ସୀମିତ ହୋଇଯାଇଛି, ଶୂନ୍ୟମାଳର ସ୍କାଏ-ସ୍କ୍ରେପର୍‌ଟିଏ ଓଲଟି ଗଲା ପରି ମନେ ହେଉଛି । ସେମାନେ ଆସୁଛନ୍ତି, ଯାଉଛନ୍ତି, କେତେ ଧରଣର ମଣିଷ, କେତେ ଧରଣର କୁକୁର, କେତେ ବର୍ଣ୍ଣ ଓ ଆକାରର କାର୍ । ଜନତାର ରୂପ ଏହି ନୂଆ ଦେଖୁନାହିଁ; କିନ୍ତୁ ସେଦିନ ସେମାନଙ୍କୁ ଦେଖୁଁ ଦେଖୁଁ ସେମାନଙ୍କ ଜ୍ୟୋତି ଓ ଗତିର ନୂଆ ଚମକ ମନରେ ଲାଗିଲା । ମନେହେଲା ଯେ ଏ ଜନତା କେବଳ ମଣିଷ ଗିହଳ ନୁହେଁ, ସେମାନେ ପ୍ରତ୍ୟେକ ଜଣେ ଜଣେ ବ୍ୟକ୍ତି । ଏ ସୁନେଲି ସକାଳ ସେମାନଙ୍କୁ ପରିବ୍ୟାପ୍ତ କରି ନାହିଁ, ସେମାନେ ଏହି ସକାଳଠାରୁ ବଡ଼ । ସେମାନେହିଁ ଏହି ସକାଳକୁ ତା'ର ରୂପରଙ୍ଗ ଆଣି ଦେଇଛନ୍ତି । ତାଙ୍କ ମମତାରେ ସ୍ପର୍ଶ ଅଛି, ଆନନ୍ଦରେ ବିଜୟହୁଙ୍କାର । ମୋର୍ ପାଖ ଦେଇ ଜଣେ ହାତଠେଲା ଗାଡ଼ିକୁ ଧରି ଚାଲିଗଲା । ଚେକ୍ ସାର୍ଟ, ମୁଣ୍ଡରେ କଳା ଟୋପି । ମୋ ଆଡ଼କୁ ଅନାଇ କହିଲା,—ଫାଇନ ମର୍ଣ୍ଣିଙ୍ଗ୍, ଇଜ୍‌ନଟ୍ ଇଟ୍ ? ତା ଆଡ଼କୁ ଅନାଇ ମୋର ଇଚ୍ଛା ହେଲା ସ୍ଥାନ ବଦଳ କରିବାକୁ । ମୁଁ କଣ ତା'ପରି ହୋଇ ପାରିବିନାହିଁ ? × × × × ନିଉୟର୍କ୍ । ମାର୍ଚ୍ଚମାସର ଗୋଟିଏ ଅପରାହ୍ଣରେ କନକନିଆ ଶୀତ ପବନ ବହୁଥାଏ । ମେଘଭରା ଧୂସର ଆକାଶରେ ସ୍ନେହର ମାଖା ଟିକିଏ ବୋଲି ନାହିଁ । ହୋଟେଲ ରୁମ୍‌ରେ ବସି ବସି ଟିକିଏ ଇଚ୍ଛା ହେଲା ବାହାରକୁ ଯିବି, ସେଣ୍ଟ୍ରାଲ ପାର୍କ ଆଡ଼କୁ, ତା'ର ଦକ୍ଷିଣ ମୁଣ୍ଡରେ ଥିବା ପୋଖରୀ ପାଖକୁ । ରାସ୍ତାରେ ଦେଖିଲି ଲୋକସଂଖ୍ୟା କମ୍,— ଜରୁରି କାମ ନ ଥିଲେ ଏ ପାଗରେ କିଏ କଣ ପଦାକୁ ବାହାରେ ? କିନ୍ତୁ ମୁଁ ଓଭର୍‌କୋଟ ସମ୍ଭାଳି ଧୀର ପଦକ୍ଷେପରେ ପାର୍କର ପୋଖରୀ କୂଳରେ ପହଞ୍ଚି ଦେଖିଲି ଯେ ଦୁଇଜଣଙ୍କର ଜରୁରୀ କାମ ଅଛି । ଆଉ କେହି ନାହାନ୍ତି । ବତକ-ମାନେ ମଧ୍ୟ କେଉଁଠି ମୁଣ୍ଡଗୁଞ୍ଜି ରହିଲେଣି । କେବଳ ସେମାନେ ଦୁଇଟି ଯୁବକ ଯୁବତୀ ପାଣିକୂଳରେ ଛିଡ଼ା ହୋଇ ଉଚ୍ଛନ୍ନ ଚୁମ୍ବନ ଦିଆଦେଇ ହେଉଛନ୍ତି,— ପବନରେ ହାଲୁକା ପୋଷାକ ଉଡ଼ୁଛି, ଖୋଲା ମୁଣ୍ଡ ବାଳ ଫୁରୁ ଫୁରୁ ହେଉଛି ।

ଯେଉଁ ଦେଶରେ ପ୍ରେମ କରିବାରେ ବାଧା ନାହିଁ, ସ୍ଥାନକାଳ ପାତ୍ରର ଅଭାବ ହୁଏ ନାହିଁ, ସେଠି ଏହି ଆଶ୍ଚର୍ଯ୍ୟ ପ୍ରକ୍ରିୟା ! ମୋର ସେଠି ରହିଲେ ନ ରହିଲେ କିଛି କ୍ଷତି ନ ଥିଲା । ତେବେ ଅନାବଶ୍ୟକତାର ବୋଝରେ ମୁଁ ସଙ୍କୁଚିତ ହୋଇଗଲି; ଏହି ଉତ୍କଟ ଶୀତ ଓ ଉଦ୍ଦାମ ପ୍ରେମ ମଝିରେ ମୋର ସ୍ଥାନ ନାହିଁ । ମୁଁ ହୋଟେଲ୍-ରୁମ୍‌କୁ ଫେରି ଆସି ଓ୍ୱାଶିଙ୍ଗଟନ୍‌ରେ ଶ୍ରୀମତୀଙ୍କ ପାଖକୁ ଫୋନ କଲି, କହିଲି ଯେ ବାହାରେ ଭୀଷଣ ଶୀତ, ପଦାକୁ ବାହାରି ହେଉନାହିଁ, ସେହି କାରଣରୁ । × × × ଓ୍ୱାଶିଂଟନ୍‌ରେ ଗୋଟିଏ ବର୍ଷାପ୍ଲାବିତ ସନ୍ଧ୍ୟା । ବର୍ଷା ସାମାନ୍ୟ,

କାଲୁ ପ୍ଲାବନ ଅଛୁ । ସାଇଡ଼୍‌ୱାକ୍ ପାଖରେ ଛୁଟିଲା ପାଣି ଭିତରେ ଶୁଖିଲା ଝଡ଼ା ପତର କେତେ ଭାସି ଯାଉଛୁ । ଗୋଟିଏ କାର୍ ଆମ ଘର ଦେଇ ଚାଲିଗଲା ଓ ଓଦା ପତରଟିଏ ଧାଇଁ ଧାଇଁ ତା' ପଛରେ ଲାଗିଲା । ମୁଁ ଅଳସ ଦୃଷ୍ଟିରେ ଚାହିଁଛୁ, ଏହି ସମୟରେ ପାଖ ଘରୁ ଆହ୍ୱାନର ଶବ୍ଦ ଶୁଭିଲା । କାର୍‌ର ଗତି ଧୀମେଇ ଗଲା, ମୁଁ ଦେଖିଲି ଡ୍ରାଇଭର୍ ସିଟ୍‌ରେ ଜଣେ ବୟସ୍କା ସ୍ତ୍ରୀ,—ବୃଦ୍ଧା ହୋଇ ପାରନ୍ତି । କ୍ରମଶଃ କାର୍ ସେହି ଘର ଆଗରେ ରହିଲା ଏବଂ ଏକା ସାଙ୍ଗରେ କାର୍ ଭିତରୁ ଦୁଇଟି ବୃଦ୍ଧାଙ୍କର ଆବିର୍ଭାବ ହେଲା । ଦୁଇଜଣ ଝିପିଝିପି ବର୍ଷାରେ ଛତା ଧରି ଅଗ୍ରସର ହେଲେ ଓ ଦାଣ୍ଡ ମଝିରେ ପରସ୍ପରକୁ ସାକ୍ଷାତ କଲେ । ଅତି ଅଳ୍ପ ସମୟ ପରେ ସେମାନେ ଆମ ଘରକୁ ଲାଗିଥିବା ଦାଣ୍ଡ ବଗିଚାକୁ ଆସିଗଲେ, ମୁଁ ତାଙ୍କୁ ଭଲ ଭାବରେ ଦେଖି ପାରିଲି ଓ ତାଙ୍କ କଥା ଶୁଣି ପାରିଲି । ମୋର ପଡ଼ୋଶୀ ଅଶୀ ବର୍ଷର ବୃଦ୍ଧା, ଆଗନ୍ତୁକା ସମବୟସୀ ପରି ଦିଶୁଥାଆନ୍ତି । ଦୁଇଟି ଶୁକ୍ଳ କେଶ ମଣ୍ଡିତ ଶିର ଉପରେ ଛତା, ଉପରୁ ପାଣି ପଡ଼ୁଛୁ । ମୋର ମନେ ହେଲା ସେମାନେ କେବଳ ଛୁଡ଼ା ହୋଇ ରହି ନାହାନ୍ତି, ସେମାନେ ବରଜମାନା । ତାଙ୍କ ମଝିରେ ଗୋଟିଏ ସାଧାରଣ ଗେଣ୍ଡୁ ଫୁଲର ଗଛ, ବୃନ୍ତରେ ଯୋଡ଼ାଏ ଫୁଲ । ଧୀରକଣ୍ଠର ଓଜନିଆ କଥା ଗୋଟି ଗୋଟି କରି ଶୁଣା ଯାଉଥାଏ ।

"ସ୍ୱଉଟିଫୁଲ୍ ! ନୁହେଁ ?"

"ଓ୍ୱାଣ୍ଡରଫୁଲ୍ !"

"ମୁଁ ଥରେ ତୁମ ବଗିଚା ଦେଖିବାକୁ ଯିବି ।"

"ଆସିବ, ନିଶ୍ଚୟ ଆସିବ ।"

କଣ୍ଠସ୍ୱରର ନୀରବତା, ମୁଗଧ ଦୃଷ୍ଟିର ନୀରବତା । କେବଳ ଫୁଲ ଦୁଇଟି ପବନରେ ସାମାନ୍ୟ ଦୋହଲି ଉଠୁଥିଲେ ।

ଚାହିଁ ଚାହିଁ ଦୁଇବନ୍ଧୁ ବିଦାୟ ବିପର୍ଯ୍ୟସ୍ତ ଢଙ୍ଗରେ ଗତି କଲେ । ସାକ୍ଷାତ୍ ପର୍ବ ସରିଗଲା । ଆଗନ୍ତୁକା ଘରବାରଣ୍ଡା ଯାଏଁ ଆସିନାହାନ୍ତି । ଛତାବନ୍ଦ କରିବାର ଅବକାଶ ହୋଇ ନାହିଁ ।

ସେମାନେ ଏ ବର୍ଷା ପାଗରେ କାହିଁକି ଏକାଠି ହୋଇଥିଲେ ? ମୁଁ ସେହି ପାଣିଭିଜା ନଇଁଲା ଗେଣ୍ଡୁ ଫୁଲ ଦୁଇଟିକୁ ଅନାଇ ରହିଲି, ମନେହେଲା ସେମାନେ ଶୁଖି ଝଡ଼ିଯିବା ପାଇଁ ପ୍ରସ୍ତୁତ ନୁହନ୍ତି । × × × × ଓ୍ୱାଶିଙ୍ଗଟନ୍‌ରେ ଆମ ଘରେ ଗୋଟିଏ ଗତାନୁଗତିକ ଡିନର୍-ପାର୍ଟି । କୋଳାହଳ, ଖାଲି ପାନୀୟ ଗିଲାସରେ

ମୋଡ଼ାମୋଡ଼ି ହୋଇ ପଡ଼ିଥିବା ଟିସୁ କାଗଜ ଓ ପେପରର ନାଲି ଗ୍ରେପା, ଆସ୍-ଟ୍ରେ ଗୁଡ଼ିକରେ ଭର୍ତ୍ତି ପାଉଁଶ ଓ ଅଧାଜଳା ସିଗାରେଟ୍, ଅତ୍ୟଧିକ ହୁଇସ୍କି ପରେ ଜନୈକ ରକ୍ତଚକ୍ଷୁ ନାଗର ଯୋଗାଭ୍ୟାସ ଉପରେ ବକ୍ତୃତା ଦେଉଛନ୍ତି ଓ ଆଉ କେତେ ଜଣ ଥଣ୍ଡା ପାଣି ମାଗିବାକୁ ଆରମ୍ଭ କଲେଣି । ଭଡ଼ାଟିଆ ବଅରର୍ ହାତବନ୍ଧା ଘଡ଼ି ଦେଖୁଛି,—ଆଉ କେତେ ଘଣ୍ଟାର କାମ ରହିଲା । ମୋଟ ଉପରେ ଡିନର୍ ଟେବୁଲ୍ ପାଖକୁ ଯିବାର ପୂର୍ବାବସ୍ଥା । ଏହି ସମୟରେ, ମାନେ ଠିକ୍ ଟେବୁଲ ପାଖକୁ ଯିବାର ନିମନ୍ତ୍ରଣ ଆସିବାବେଳକୁ ମୁଁ ମିସେସ୍ ଫିଲିସିଆ ରେଗାନ୍‌ଙ୍କ ମୁହାଁମୁହିଁ ହୋଇଗଲି । ତାଙ୍କ ମୁହଁ ସରସ ସତେଜ, କ୍ଲାନ୍ତିର ଚିହ୍ନ ଆଦୌ ନାହିଁ ଓ ସେଥିରେ ଗୋଟିଏ ମଧୁରିଆ ହସ । ଅନ୍ୟ ସ୍ତ୍ରୀଲୋକମାନଙ୍କ ସହିତ ମୁଁ ତାଙ୍କୁ ଖାଇବା ଟେବୁଲ୍ ପାଖକୁ ଆଗେଇ ନେଲି, ଅନେକ ଅତିଥିମାନଙ୍କ ମଧ୍ୟରୁ ସେ ଜଣେ । କିନ୍ତୁ ଦେଖିଲି ତାଙ୍କ ମୁହଁରେ ହାସ୍ୟରେଖା ଲାଗିରହିଛି ଅପ୍ରୟୋଜନୀୟ ବିଳାସ ପରି, ପାନପିଳର ସ୍ୱଗତ ଆନନ୍ଦ ପରି । ମିସେସ୍ ରେଗାନ୍‌ଙ୍କର କ'ଣ ହେଲା ? ତାଙ୍କ ବୟସ ପଞ୍ଚାଅଁଚାଳିଶ ହେବ, ବଡ଼ପୁଅ ଏୟାର୍ ଫୋର୍ସରେ ଅଛି । ସେ ରନ୍ଧନକୁଶଳା, ତାଙ୍କରି କୃପାରୁ ଶ୍ରୀମତୀଙ୍କର ଯୋଡ଼ାଏ ମୋଟା ଆଲବମ୍ ବିଭିନ୍ନ ରେସିପି (ରନ୍ଧନ ପ୍ରଣାଳୀ) ରେ ପୂରି ଗଲାଣି । ମୁଁ ଜାଣେ ସେ ହାସ୍ୟମୟୀ,—କିନ୍ତୁ ତାଙ୍କର ଏହି ଅଖଣ୍ଡ ଅଲୀକ ହସ କାହିଁକି ? ଯାହାହେଉ କ୍ରମଶଃ ମୁଁ ମନ ଭିତରୁ ତାଙ୍କ ରୂପକୁ ଆଡ଼େଇ ଦେଇ ଅନ୍ୟ ନରନାରୀ ଗହଳରେ ମିଶିଗଲି । କିନ୍ତୁ ପୁଣି ତାଙ୍କର ସେହି ଆନନ୍ଦବୋଳା ହସ ମୋ ବାଟ ଓଗାଳିଲା । ସେତେବେଳେ ସେ ସୁସଜ୍ଜିତ ପ୍ଲାଟର୍‌ରୁ ମାଛଖଣ୍ଡ କାଟିକରି ନେଉଛନ୍ତି, ପାଖରେ ଶ୍ରୀମତୀ ଛିଡ଼ାହୋଇ କଣ ପରାମର୍ଶ ଦେଉଛନ୍ତି । ଏଥର ସେ ହସର ପ୍ରତିଦାନ ମାଗିଲା ପରି ଲାଗିଲେ ଓ ମୁଁ କିଛି ନ ବୁଝି ହସିଲି ତାଙ୍କ ଆଡ଼କୁ ଚାହିଁ । ତା'ପରେ ସେ ଶ୍ରୀମତୀଙ୍କୁ ମୋ ବିଷୟରେ ହସି ହସି କଣ କହିଲା ପରି ଲାଗିଲେ ।

ପାର୍ଟି ସରିଲା ପରେ ଶ୍ରୀମତୀ ଏହି ରହସ୍ୟ ଉନ୍ମୋଚନ କଲେ । କହିଲେ ଯେ ମିସେସ୍ ରେଗାନ୍ କହୁଥିଲେ ମୋର ଦୃଷ୍ଟିଶକ୍ତିର ଅଭାବ, ମୁଁ ତାଙ୍କ ନୂଆ ହେୟାର୍-ଷ୍ଟାଇଲ୍ ଲକ୍ଷ୍ୟକରି ପାରିନାହିଁ । ଯେ ଆଜି ତାଙ୍କର ବିବାହ-ବାର୍ଷିକୀ, ସ୍ୱାମୀ ତାଙ୍କୁ ଗ୍ରିଶ ଡଲାର୍ ଦେଇଥିଲେ ମନଇଚ୍ଛା ଖର୍ଚ୍ଚ କରିବାକୁ, ସେଥିରେ ସେ ହେୟାର୍-ଷ୍ଟାଇଲ୍ ବଦଳାଇଛନ୍ତି । ମୁଁ ମୋର ନିର୍ବୋଧତା ମାନିଲି ନାହିଁ, କହିଲି ମିସେସ୍ ରେଗାନ୍ ଗୋଟିଏ ଫୁଲେଇ; କିନ୍ତୁ ତା'ପରେ ମୋର ମନେ ପଡ଼ିଲା ଆଜିର ପାର୍ଟିରେ ତାଙ୍କ ସ୍ୱାମୀ ପଲ୍ ରେଗାନ୍‌ଙ୍କର ଚେହେରା । ସେ ତାଙ୍କ ସ୍ତ୍ରୀଙ୍କ ପରି ହସୁ ନ ଥିଲେ, ହେଲେ ଅନ୍ୟମନସ୍କ ଥିଲେ । ମନେ ହେଉଥିଲା କୌଣସି ଅତୀତର ଛବି ତାଙ୍କ ଆଖିରେ ପଡ଼ୁଛି, କିନ୍ତୁ ସେ କାହାକୁ କହିପାରୁ ନାହାନ୍ତି । ତାଙ୍କୁ

ଫ୍ଲେଇର ସ୍ୱାମୀ କହିବା ପାଇଁ ଇଚ୍ଛା ହେଲା ନାହିଁ । ଭାବିଲି ଅଗରୁ ଜାଣିଥିଲେ ତାଙ୍କ ଗୃହାଣୀକୁ ଅନ୍ତର ନ ଦେଖି ଦେଖିଥାଆନ୍ତି, କାରଣ ସେ ଗୃହାଣୀ ଅଦରକାରୀ, ବୟସସୁଲଭ ନୁହେଁ, ହୁଏତ ଅପାର୍ଥିବ ।......

......ଏମିତି କେତେ ଦୃଶ୍ୟ, କେତେ ରୂପ ମୋ ମନରେ ଖେଳିଗଲା । ଏହି ସବୁଥିକୁ ନେଇ ମୋ ଭଲପାଇବା ତିଆରି ହୋଇଛି । ଏ ସବୁର ଭିତରେ କ୍ଷଣକ ପାଇଁ ମୁଁ ଗୋଟିଏ ଅପୂର୍ବ ଆବେଗ ପାଇଛି; ମନେ ହୋଇଛି ଯେ ତାହା ମୋ ସମଗ୍ର ଜୀବନର ଅପ୍ରକାଶିତ ଆବେଗ, ଛପିଲା ନିଆଁର ଉଜ୍ଜ୍ୱଳନ, ତାକୁ ଧରି ରଖି ପାରିଲେ ମୁଁ ସାର୍ଥକ ହୋଇପାରନ୍ତି । ସେ ଆବେଗର ଉପାଦାନ କଣ ମୁଁ ବ୍ୟାଖ୍ୟା କରିପାରିବି ନାହିଁ । ମନସ୍ତାତ୍ତ୍ୱିକମାନେ ହୁଏତ କହିବେ ଯେ ସେଥିରେ ଅଛି ଆତ୍ମମତା, ଅଧିକାର-ଲିପ୍ସା, ବଞ୍ଚିବାର ନିର୍ଲଜ୍ଜ ନାଟକୀୟତା; କିମ୍ବା ହୁଏତ ସେମାନେ କହିବେ ଯେ ଏହିପରି ଆବେଗ ନେଇ କବିତାରେ ଡେଣା ଲଗେ, ଛବି କଥା କୁହେ, ଗୋଟିଏ ପାଗଳାମିର ଆନନ୍ଦ ଭିତରେ ବଞ୍ଚିବା ମରିବାର ସୀମା ଲିଭିଯାଏ ।

ବାହାରେ କାଏରୋର ଶୁଷ୍କ ଉତ୍ତାପ । ଝରକାରୁ ଦେଖାଯାଉଛି ରାସ୍ତା ମୁଣ୍ଡରେ ଗୋଟିଏ ଗଧଗାଡ଼ି ଓ ପାଖରେ ଗୋଟିଏ ଗଧ । ଦୋକାନ ବାରଣ୍ଡାର ଦଉଡ଼ିଆ ଖଟ ଉପରେ ଲମ୍ବାକୁର୍ତ୍ତା ଓ ପାଇଜାମା ପିନ୍ଧି ଯୁବକଟିଏ ବସିଛି ଓ ଭାବୁଛି । ଭାବନା ସରିବା ଆଗରୁ ନିଦ ଆସିବ—ଆସୁ, ସମୟ ସରି ଯାଉନାହିଁ ।

ଆବେଗ, ସୁପ୍ତିର ଅପର ପାଖ । ସୁଷୁପ୍ତି, ଲୁପ୍ତି, ବିସ୍ମୃତି... । ନା, ମୋ ଦେଶ ତରଙ୍ଗିତ ହେଉ, କିନ୍ତୁ ମୁଁ ମୋର ଆବେଗ ଦାର୍ଶନିକଙ୍କୁ ଦେବିନି । ମୁଁ ତାକୁ ଭଲ ପାଏ, ଯେ ଯାହା ଭାବୁ ପଛେ । ଏ ଭଲପାଇବା ଅଟୁଟରେ ଭଲ ପାଇବା ପରି ନୁହେଁ, ଅନ୍ୟମାନଙ୍କ ଭଲପାଇବା ପରି ନୁହେଁ । ଅବଶିଷ୍ଟ ଜୀବନ ଭାରତରେ ରହିଲେ ମଧ୍ୟ ଏ ଭଲ ପାଇବା ଘୁଞ୍ଚିବ ନାହିଁ ।

( ୪ )

ଯଥାକ୍ରମେ କାଏରୋରୁ ବିଦାୟ ନେଇ ଭାରତଗାମୀ ପ୍ଲେନ୍ ଧରିଲୁ । ମଝିରେ ଆଉ କେଉଁଠି ରହିବାର ନାହିଁ । ରାତଟା ପାରି ହେଲେ ବମ୍ବେ, ଦୁଇ ତିନ ଘଣ୍ଟା ପରେ ଆମର ଶେଷ ଗନ୍ତବ୍ୟସ୍ଥାନ କଲିକତା ।

ପ୍ଲେନ୍ ନାଁ କାଞ୍ଚନଜଙ୍ଘା । ଦୁଇ ତିନ ଜଣ ଯାତ୍ରୀଙ୍କ ଛଡ଼ା ସମସ୍ତେ ଭାରତୀୟ । ଜଣେ ବ୍ୟବସାୟୀ ଭଦ୍ରଲୋକ ଉତ୍ତମ ଖାଦ୍ୟପେୟର ସମ୍ଭାର ଗ୍ରହଣ କରି ଉଡ଼ିଦେଇ

ଦୁଇ ତିନ ଫର୍ଦ୍ଦ କାଗଜରେ ହିସାବ କିତାବ କରି ଲାଗିଥାଆନ୍ତି । ବୋଧହୁଏ ଆମଦାନୀ-ଶୁଲ୍‌କ ବଞ୍ଚାଇବାର ଉଦ୍ଦେଶ୍ୟରେ ଥାଆନ୍ତି ।

ପିଲାମାନେ ଉଦ୍‌ଗ୍ରୀବ ହେଲେଣି, କାଲି ସକାଳେ ଇଣ୍ଡିଆ । ଇଣ୍ଡିଆ ମାନେ ଘର, ନିଜ ଘର । ଯେ ଘର ଭାରତର କେଉଁ ଗୋଟିଏ ନିର୍ଦ୍ଦିଷ୍ଟ ସହର ବା ଗାଁ ନୁହେଁ, ସାନପିଲାମାନେ କେହି ତାକୁ ଦେଖିନାହାନ୍ତି ; ତଥାପି ସେମାନେ ଖୁସି ହେଉଛନ୍ତି ଯେ ସେମାନେ ନିଜ ଦେଶକୁ ଫେରିଯାଉଛନ୍ତି, ଯେଉଁଠୁ ସେମାନେ ଆସିଛନ୍ତି । ସେଠି ତାଙ୍କୁ କିଛି ଅଧିକ ଆଦର ସମ୍ମାନ ମିଳିବ, ସେଠି ତାଙ୍କ ସମସ୍ତେ ଚିହ୍ନିବେ ।

ପ୍ରକୃତରେ ସେ ଉତ୍ସୁକତା ମୋର ନିଜର ମଧ୍ୟ ଆସିଥିଲା । ସେହି ରାତିର ଭାବନାଚିନ୍ତାରେ ଆମେରିକା ଅଳ୍ପ ଥିଲା, ବେଶି ଥିଲା ଭାରତ ।

ମୌସୁମୀକୁ ସାଙ୍ଗରେ ନେଇ ଆମେ ଭାରତରେ ପହଞ୍ଚୁଛୁ । ବମ୍ବେରେ ବର୍ଷା ହେଉଥିବ, କଲିକତାରେ ବର୍ଷା ହେବାକୁ ଯାଉଥିବ । ଆକାଶସାରା ଖାଲି କଳା କଳା ମେଘ । ଗମ୍ଭୀର-ଗମ୍ଭୀର ରୂପର ଗର୍ଜ୍ଜନ ଶୁଭୁଥିବ, ପିଲାମାନେ ଡରୁଥିବେ, ଅପୂର୍ବପେଣ୍ଟ ଗାଈ ଓ ଗୃଣୀ ଉପରକୁ ଚାହୁଁଥିବେ । ଏହି ବର୍ଷା-ଆଗମନୀକୁ ନେଇ କେତେ ସୁନ୍ଦର ଛବି ଅଙ୍କା ହୋଇଛି । ମନେପଡ଼ିଲା ରବୀନ୍ଦ୍ରନାଥଙ୍କର, "ଏଇ ଆସେ ଏଇ ଅତି ଭୈରବ ହରଷେ, ଜଳସିଂଚିତ କ୍ଷିତି ସୌରଭରଭସେ……… ।"

ମୋ ଭାରତ କଣ ସୁନ୍ଦର ନୁହେଁ ! ଏହି ସ୍ନିଗ୍ଧା ଶ୍ୟାମା ବର୍ଷା ସଜଳ ଭାରତଭୂଇଁର କବିମାନଙ୍କ ମଧ୍ୟରେ ମୁଁ ମଧ୍ୟ ଜଣେ, ମୋତେ ଭୁଲ୍ ବୁଝ ନାହିଁ । ମୋର ତା' ପ୍ରତି ପ୍ରଗାଢ଼ ମମତା ଅଛି, ତାହା ମୋର ଜନ୍ମଗତ ଅଧିକାର ।

……ବମ୍ବେରେ ପହଞ୍ଚିଲାବେଳକୁ ଝିପି ଝିପି ବର୍ଷା ହେଉଛି । ପ୍ଲେନ୍ ଭୂଇଁରେ ଲାଗିଲାବେଳକୁ ଯେଉଁ ବାଜଣା ବାଜି ଉଠେ ତାହା ଆବାହନୀ ସଙ୍ଗୀତ ପରି ଲାଗିଲା । ଆମେ ପରସ୍ପରର ମୁହଁକୁ ଚାହିଁଲୁ, ପାଇବାର ଭାବ ନେଇ । ଆମେ ପହଞ୍ଚିଛୁ ।

ବର୍ଷିଲା ପାଣି ଓ ଉଷ୍ମ ପବନ ଭିତରେ ଏୟାର୍‌ପୋର୍ଟ ଭିତରକୁ ଚାଲୁ,— କଲିକତା ପ୍ଲେନ୍ ପାଇଁ ଅପେକ୍ଷା କରିବାକୁ ହେବ । ଅପେକ୍ଷାଗୃହର ବେଞ୍ଚ୍‌ରେ ବସିପଡ଼ି ବଡ଼ଝିଅ ପ୍ରଥମେ ଟ୍ରାନ୍‌ଜିଷ୍ଟର ରେଡ଼ିଓ ଚଳାଇଦେଲା । କ୍ଷଣକେରେ ହିନ୍ଦୀ ସିନେମା ଗୀତ ଶୁଭାଗଲା ଓ ସେ ଉଚ୍ଛ୍ୱସିତ ଆନନ୍ଦରେ ଉଚିତରୁ ଅଧିକ ଉଚ୍ଚ କଣ୍ଠରେ ତା'ର ସ୍ୱାଗତ ଜଣାଇଲା । ସାନପିଲାମାନେ ରେଡ଼ିଓର ନୂଆ ଆବିଷ୍କାର କଲା ପରି ମନେ-ହେଲା । ଯେଉଁ ରେଡ଼ିଓ ଆମେରିକାର ବିଜ୍ଞାପନ ଗୀତ ଶୁଣାଉଥିଲା,—ଉଇନ୍‌ଷ୍ଟନ୍

ଟେଷ୍ଟସ୍ ଗୁଡ୍‌ଲାଇକ୍ ଏ ସିଗାରେଟ୍ ଶୁଡ୍, କାଏରୋରେ ଦୁର୍ବୋଧ ଆରବୀ ଶୁଣାଉଥିଲା; ତା'ର ଆଜି ଏ ନୂତନ ରୂପ ! କୌଣସି ନୂଆ ଫିଲ୍ମର ଗୀତ । ଶ୍ରୀମତୀ ନିଶ୍ଚିତ ଭାବରେ କହିଲେ,—ଏ ହେଉଛି ଲତା ମଙ୍ଗେସ୍କର୍ ।

ହିନ୍ଦୀ ଗୀତ ଶୁଣିବା ପରେ ପରେ ଶ୍ରୀମତୀଙ୍କର ମନେପଡ଼ିଲା ପାନ ଖାଇବା କଥା । ତାଙ୍କର ଅଭିଳାଷ ଥିଲା ଯେ ଭାରତରେ ପହଞ୍ଚି ପ୍ରଥମେ ଖଣ୍ଡେ ପାନ ଖାଇବେ, ଦୀର୍ଘ ପାଞ୍ଚବର୍ଷ ହେଲା ସେ ସେହି ଉପଭୋଗରୁ ବଞ୍ଚିତ ହୋଇଛନ୍ତି । ମୁଁ ଆଶ୍ୱାସନା ଦେଲି ଯେ କଲିକତାରେ ପହଞ୍ଚିବାମାତ୍ରେ ତାଙ୍କର ଇଚ୍ଛା ପୂରଣ କରାଯିବ ।

ଏୟାର୍‌ପୋର୍ଟରେ ବ୍ରେକ୍‌ଫାଷ୍ଟ ଖାଇବାକୁ ହେଲା । ଖାଇବା ଟେବୁଲ୍‌ରେ ଟେବୁଲ୍-କ୍ଲଥ୍ ପଡ଼ି ନ ଥାଏ, ହାତକୁ ଅଠାଳିଆ ଲଗୁଥାଏ । ଧୂଳିର ଓଦା ଲୁଣକୁ ଲୁଣ ବୋଲି ପ୍ରଥମେ ଠଉରାଇ ହେଲା ନାହିଁ । ପିଲାମାନେ ବୁଝି ପାରିଲେ ନାହିଁ ଯେ ଅଣ୍ଡା-ଫ୍ରାଏ ଖାଇବା ପାଇଁ ଜଣକୁ କାହିଁକି ମାଛ ଖାଇବା କଣ୍ଟା, ଆଉ ଜଣକୁ ଚିନିପରଶିବା ଚାମୁଚ, ଏମିତି ଦିଆହୋଇଛି । ବ୍ରେକ୍‌ଫାଷ୍ଟ ରୁମ୍‌ର ଜନୈକ ଅଧିକାରୀ ସହାସ୍ୟ ବଦନରେ ପିଲାମାନଙ୍କୁ କିଛି ସମୟ ଚାହିଁ ରହିଲେ ଓ ତା'ପରେ ଉପଦେଶ ଦେଲେ,—କଦଳୀ ଖାଅ, କଦଳୀ ଖାଅ, ଦେହରେ ଜୋର୍ ହେବ ।

ଏହି ପରିସ୍ଥିତିକୁ ଆବୃତ୍ତ କରି ଲତା ମଙ୍ଗେସ୍କରଙ୍କ ସୁମଧୁର ସଙ୍ଗୀତ ଶୁଣାଯାଉଥିଲା । ଆଉ କଣ ଦରକାର ? ପିଲାମାନେ ନୂତନ ଉପଭୋଗର ସ୍ୱାଦୁ ପାଇ ଖୁସି ଥିଲେ ।

···କଲିକତାକୁ ଯିବାର ଦୁଇ ତିନି ଘଣ୍ଟା ଭିତରେ ଭାରତର ଉପରେ ଆକାଶରେ ଥାଇ ଆମେରିକାର କେତେ ବିକ୍ଷିପ୍ତ ଘଟଣା ଓ ଅନୁଭୂତି ପୁଣି ମୋ ମନକୁ ଆସିଲା । ସତେ ଯେପରି ସେମାନେ ଶେଷ ସାକ୍ଷାତ କରିବାକୁ ଆସିଛନ୍ତି, ତା'ପରେ ଫେରିଯିବେ ମନର ଅନ୍ଧାରିଆ ଗହ୍ୱରକୁ । ଶ୍ରୀମତୀ ପୂର୍ବପରିଚିତା ଗୋଟିଏ ବିଦେଶିନୀ ଏୟାର୍-ହୋଷ୍ଟେସ୍ ସାଙ୍ଗରେ କେତେ କଣ ଗପୁଥାଆନ୍ତି । ହଠାତ୍ ବିଦେଶିନୀର ମନ୍ତବ୍ୟ ଶୁଭିଲା,—ଟେରିବଲ୍ ! ଅ'ଫୁଲ୍ ! ମୁଁ ଉତ୍କଣ୍ଠିତ ହୋଇ ଚାହିଁ ରହିବାରୁ ଶ୍ରୀମତୀ ବୁଝାଇଦେଲେ ଯେ ସେ କଲିକତାର ଖରା ଗୁଳୁଗୁଳି କଥା କହୁଥିଲା ।

······ସେ ଭୁଲ୍ କହି ନ ଥିଲା । ଡମ୍‌ଡମ୍‌ରେ ପ୍ଲେନ୍‌ରୁ ଓହ୍ଲାଇ ବସ୍‌ରେ ଖଣ୍ଡେ ଦୂର ଏୟାରପୋର୍ଟକୁ ଯିବା ଭିତରେ ଆମେ ଜାଣିପାରିଲୁ କଲିକତାରେ ଗ୍ରୀଷ୍ମୋତ୍ତାପ କାହାକୁ କୁହାଯାଏ । ଦେହରେ ଉଗ୍ରତା ନାହିଁ, କ୍ରୋଧ ନାହିଁ, ଖାଲି ଗୋଟାଏ ଅଯଥା ଅସନ୍ତୋଷଭାବ । ସତେ ଯେପରି ସେ ହସିବ ନାହିଁ କି କାନ୍ଦିବ

ନାହିଁ, କିନ୍ତୁ ତୁମକୁ ଆରାମ କରିବାକୁ ଦେବ ନାହିଁ । ଆମେ ସମସ୍ତେ ଛଟପଟ ହୋଇ ଉଠିଲୁ । ମୁଁ କେବଳ ଆକାଶକୁ ମଝିରେ ମଝିରେ ଚାହୁଁଥାଏ, ମେଘର ବଦଳି ରୂପକୁ ଦେଖିବା ପାଇଁ ।

ଗରମ ଗୁଲୁଗୁଲି, ଝାଳ, ପଥଶ୍ରାନ୍ତ, ହାତରେ ଗରମ ଓଭର୍‌କୋଟ୍ କାମେରା ଇତ୍ୟାଦିର ବୋଝ ଓ ଆଗରେ କଷ୍ଟମସ୍ । ମୋର ଇନ୍ଦ୍ରିୟ ସମସ୍ତ ପାଇ ନ ଥିଲା ଘରର ଚିହ୍ନା ବାସ୍ନା ପାଇବା ପାଇଁ । ମୁଁ ନିଜକୁ କହୁଥିଲି ଧୈର୍ଯ୍ୟ ଧରିବାକୁ ।

ତେବେ ଏୟାରପୋର୍ଟ କଷ୍ଟମସ୍ ଘରେ ପହଞ୍ଚି ମୁଁ ଆମ ଲୋକମାନଙ୍କୁ ପାଖରେ ଦେଖିବାର ସୁଯୋଗ ପାଇଲି । ସେମାନେ କେତେ ଶ୍ରେଣୀର, କେତେ ଧରଣର ଲୋକ । କେତେଜଣ କୁଲିପୋଷାକ ପିନ୍ଧିଥିଲେ । ଜଣେ କିରାଣୀବାବୁ ମଇଳା କାମିଜ ପିନ୍ଧି ଆମଠୁଁ କେତେ କଣ ଫର୍ମ ଦସ୍ତଖତ କରାଇନେଲେ । କେହି ଜଣେ ଆମକୁ ପଚାରିଲା,—କେଉଁଠୁ ଆସୁଛ ? ତା'ପରେ ଆମେରିକାରୁ ଆସିବା ଶୁଣି ସବୁ ବୁଝିପାରିଲା ପରି କହିଲା,—ଓ— । ଘରେ ଓ ବାରଣ୍ଡାରେ ଲୋକଙ୍କ ଭିଡ଼ । ସମସ୍ତେ କାମ କରୁଛନ୍ତି, ସମସ୍ତେ ବ୍ୟସ୍ତ ଅଛନ୍ତି । କାଉଣ୍ଟର୍ ସେ ପାଖରେ କଷ୍ଟମସ୍‌ର ମୁଖ୍ୟ କର୍ମଚାରୀ କେତେଜଣ ଓ ଏ ପାଖରେ ସେମାନଙ୍କର ସହକାରୀ, ଶ୍ରମିକଦଳ ଓ ଅନିର୍ଦ୍ଦିଷ୍ଟ ଅନ୍ୟମାନେ ।

ଆମ ଦେଶର ଲୋକ । ମୋର ମନେହେଲା ମୁଁ ବହୁଦିନ ପରେ ପ୍ରଥମ ଏମାନଙ୍କୁ ଦେଖୁଛି । ଆମେରିକାରେ ଏମାନେ ନ ଥିଲେ । ବମ୍ବେ ଏୟାର୍‌ପୋର୍ଟରେ ଏମାନଙ୍କ ସାଙ୍ଗରେ ସାକ୍ଷାତ କରିବାର ସୁଯୋଗ ପାଇ ନାହିଁ । ଏମାନେ ନିର୍ଭେଜା ଖାଣ୍ଟି ଭାରତୀୟ, ଶ୍ରମଝାଳ ଭିତରେ ମାରି କାମ କରୁଛନ୍ତି । ତାଙ୍କର କାର୍ଯ୍ୟବ୍ୟସ୍ତତା ଦେଖି ମୋତେ ଖୁସି ଲାଗିଲା । ଏଥିରେ କିଛି ହେଲେ ଗଢ଼ିଉଠିଛି, ଭାଙ୍ଗି ପଡ଼ିବାର ନଷ୍ଟ ହୋଇଯିବାର ଆଶଙ୍କା ନାହିଁ । ଆମେ କାମ କରୁଛୁ, ଆଗେଇ ଯାଉଛୁ ।

ବେଳେବେଳେ ସେମାନଙ୍କର ଇଂରାଜୀ ମୋତେ ବାଧୁଥାଏ, ମୁଁ ହିନ୍ଦୀ କିମ୍ବା ବଙ୍ଗଳାରେ ଉତ୍ତର ଦେବାର ଚେଷ୍ଟା କରୁଥାଏ । ବେଳେବେଳେ ମନେ ହେଉ-ଥାଏ ଯେ ସେମାନେ ବେଶିଗୁଡ଼ାଏ କଥା କହୁଛନ୍ତି, ଅଯଥା କୋଳାହଳ ସୃଷ୍ଟି କରୁଛନ୍ତି । ଯେଉଁଠି ଗୋଟାଏ ନିର୍ଦ୍ଦିଷ୍ଟ ଧାରା ସ୍ୱଚ୍ଛନ୍ଦରେ କାମ କରିଯାଆନ୍ତା ସେଠି କୁହାକୁହି ଲୋକମାନେ ବାଟ ଓଗାଳି କହୁଚନ୍ତି,—ଆମେ କାମ କରୁଛୁ,—ଆମେ । "ଆପଣ କହୁଛନ୍ତି ଯେ ଆଇନ୍ ଅନୁଯାୟୀ ଏ ଜିନିଷ ଛଅମାସ ବ୍ୟବହାର କଲେ ଚଳିବ, ଡିଉଟି ଲାଗିବ ନାହିଁ ? ଅଚ୍ଛା ଦେଖିବା······ଏ ବୋସ୍‌ଦା, ଶୁଣିଲେ ଟିକିଏ, ଏ କହୁଛନ୍ତି ଯେ··· ।" ବୋସ୍‌ଦା ଆଉ କାହାକୁ ପଚାରିବାକୁ ଗଲେ, ମଝିରେ ଆଉ କେଉଁ ଯାତ୍ରୀକୁ କଣ କହିଲେ, ପୁଣି କେତେ କାଗଜ ଦେଖିଲେ,

ଫେରଲେ ନାହିଁ । ଉପସ୍ଥିତ କର୍ମଗୃହୀ ପୁଣି ଥରେ କହିଲେ, "ଆଚ୍ଛା ଦେଖିବା··· କିଛି ଖତି ନାହିଁ···ତା'ପରେ ହେଲା ଆଇଟେମ୍ ନମ୍ବର ଗୃହ···ଏ ଆଇଟେମ୍‌ର ମୂଲ୍ୟ ହେବ···ଏ ସଜନ୍ ବାବୁ······।"

ତେବେ ମୋତେ ବିଶେଷ ଖରାପ ଲାଗୁ ନ ଥାଏ । ସୁପରମାର୍କେଟ୍‌ର ସୁସଭ୍ୟ କୁଶଳ ଗଠବିଧିରେ ଅଭ୍ୟସ୍ତ ହୋଇ ନୂଆ କରି ହାଟରେ ଦରଦାମ କରିବାର ଆନନ୍ଦ ପାଉଥାଏ ।

ସବୁ କାର୍ଯ୍ୟର ଶେଷ ଅଛି । ଶେଷକୁ କଷ୍ଟମସ୍ ପର୍ଯ୍ୟାୟ ମଧ୍ୟ ସରିଲା । ଆମେ ନିଃଶ୍ୱାସ ମାରିଲୁ । ପିଲାମାନଙ୍କୁ ହଠାତ୍ ବେଶି ଭୋକ, ବେଶି ଥକା ଲାଗିବ, —ଘରକୁ ଯିବା ।

ଫାଟକ ପାଖରେ ସେମାନେ ଠୁଳ ହୋଇ ଛିଡ଼ା ହୋଇଛନ୍ତି, ଭାଇ ଭଉଣୀ, ଶ୍ରୀମତୀଙ୍କ ଭାଇଭଉଣୀ ଓ ବିସ୍ତୃତ ପରିବାରର ବିଭିନ୍ନ ପ୍ରତିନିଧି । ସ୍ୱାଗତ, ଆନନ୍ଦ କୋଳାହଳ ଭିତରେ ଏକା ସାଙ୍ଗରେ ଅସଂଖ୍ୟ ପ୍ରଶ୍ନ ଓ ମନ୍ତବ୍ୟ, କୌଣସିଟି ଅସମ୍ଭାବିତ ନୁହେଁ, ଯଥା ଆରେ ଇଏ ଏଡ଼ୁଟିଏ ହୋଇଗଲାଣି !···ଟ୍ୱିଷ୍ଟ୍ ଭଲ କରି ଶିଖିଯାଇଛୁ ନା ? ଓଡ଼ିଆ କହି ପାରୁଛୁ···ବାଟରେ କଣ ସବୁ ଦେଖିଲ ?······ଇତ୍ୟାଦି ।

ମୁଁ ସ୍ନେହମୟ ପରିବାରର ଗହଳି ଭିତରୁ ଟିକିଏ ଦୂରକୁ ଅନାଇ ପାରିଲି, ଏୟାର୍‌ପୋର୍ଟର ସେ ପାଖକୁ, ସହର ଭିତରକୁ ।

ମୋର ପ୍ରଥମେ ଆଖିରେ ପଡ଼ିଲା ଦୂରରେ ଗୋଟିଏ ଗାଈ ଚରୁଛି, ଓ ତା' ପାଖରେ ଖାଲି ଦେହରେ ଜଣେ କିଏ ଛିଡ଼ା ହୋଇଛି । ସେ ଦୃଶ୍ୟ ଛବି ପରି ଲାଗିଲା । ମନେ ହେଲା ମୁଁ ଭାରତ ଭୂମିର ସଙ୍କେତ ରୂପ ଦେଖିପାରିଲି ।

ଆମେ ସମସ୍ତେ ବାଣ୍ଟି ହୋଇ କେତେଗୁଡ଼ିଏ କାର୍‌ରେ ବସିଲୁ, ସବୁ ଆମ୍ବାସାଡ଼ାର ଗାଡ଼ି । ମୁଁ କହିବା ଆଗରୁ ପିଲାମାନଙ୍କଠାରୁ ଶୁଣିବାକୁ ମିଳିଲା,— ଇଣ୍ଡିଆରେ ଏଇ କଣ ବେଷ୍ଟ୍ ବଡ଼ ଗାଡ଼ି ? ଏହାଠାରୁ ବଡ଼ କିଛି ନାହିଁ ?

କ୍ଲାନ୍ତିର ପରିଧିରେ ଶାନ୍ତି ଥିଲା । ମୁଁ ପଛ ସିଟ୍‌ରେ ଆଉଜି ଅଧିକାଂଶ ସମୟ ଆଖି ବୁଜି ରହିଥିଲି । ତେବେ ମଝିରେ ଶ୍ରୀମତୀଙ୍କ ପାଇଁ ଗାଡ଼ି ଅଟକାଇ ପାନ ଆଣିବାକୁ ପଡ଼ିଲା । ପାନକୁ ଉତ୍ତମ ରୂପେ ଚୋବାଇ ଓଠ ନାଲି କରି ଆମେ ଦୁଇଜଣ, — ଶ୍ରୀମତୀ ଓ ମୁଁ,—ପରସ୍ପର ମୁହଁକୁ ଚାହିଁଲୁ । ମନେ ହେଉଥାଏ ଯେ ଏ ତୃପ୍ତିର ଅନୁଭୂତି ଆଉ ଫେରିବ ନାହିଁ, ଦ୍ୱିତୀୟ ପାନରେ ଆସିବ ନାହିଁ ।

ଶାନ୍ତି ଓ ତୃପ୍ତିର ଦୋଳାରେ ଆମେ ଘରେ,—ମାନେ ସ୍ବର୍ଗର ବହାରେ ପହଞ୍ଚିଲୁ । ରାତିରେ ସବୁ ଅଲୁଆ ଭାତ ସାଙ୍ଗରେ ଘାଣ୍ଟତରକାରି ମାଛଭଜା ଇତ୍ୟାଦି ଖାଇଲାବେଳେ ବଡ଼ ଝିଅ କହିଲା,—ବାପା, ମନେ ହେଉଛି କଣ ଆମେ କେବେହେଲେ ଆମେରିକା ଯାଇଥିଲେ ? ମୋତେ ଲାଗୁଛି ଯେ ମୁଁ ଏଇଠି ସବୁଦିନେ ଅଛି, ଦି'ଦିନ ପାଇଁ କଣ ସ୍ୱପ୍ନ ଦେଖିଥିଲି । ତା'ର ସେହି କଥାରେ ବିଷାଦ ନ ଥିଲା ।

( ୫ )

ଏହା ପରେ ତିନୋଟି ଦିନର କଥା ।

ପ୍ରଥମ ଦିନ । ସକାଳେ ବସିବା ଘର ଦରଜାର ପରଦାକୁ ଆଡ଼େଇ ଦେଇ ମୁଁ ଦେଖିଲି ସେମାନଙ୍କୁ । ସାତ ଆଠଟି ଲଗାଲଗି କୁଡ଼ିଆ ଘର ବସ୍ତିର ଲୋକ,—ସେମାନଙ୍କ ଦିନର ଉଦ୍ୟମ ଆରମ୍ଭ କରୁଛନ୍ତି ।

ସେମାନଙ୍କୁ କଣ ମୁଁ ଭୁଲି ଯାଇଥିଲି ? ନାହିଁ ତ । ତଥାପି ଲାଗିଲା ଯେ ମୁଁ କାଳେ ଭୁଲି ଯାଇଥିବି ବୋଲି ସେମାନେ ନିଜର ଅସ୍ତିତ୍ୱ ପ୍ରଚାର କରି ଚାଲିଛନ୍ତି, ପ୍ରଚଣ୍ଡ ମୁଦ୍ରାରେ କହୁଛନ୍ତି ଯେ ସେମାନେ ମଧ୍ୟ ଅଛନ୍ତି, ତୁମୋନେ ଭାରତୀୟ ।

ମୁଁ ଜାଣେ । ମୁଁ ପାଞ୍ଚବର୍ଷ ପୂର୍ବେ ତୁମ୍ଭମାନଙ୍କୁ ଦେଖିଥିଲି । ମୁଁ ଜାଣେ ତୁମେ ସବୁ କେମିତି ରୁହ, କେମିତି ଖାଅ, କେମିତି କାରବାର କରୁଅ; କିନ୍ତୁ ଏହି ଉତ୍କଟ ଭାବ କାହିଁକି ?

କାହିଁକି ସେହି ଅଳିଆ ଆବର୍ଜନାର ଗଦା ଗୋଟାଏ ଘର ଆଗରେ ପଡ଼ି ରହିଛି ସେମିତି ? ସେଥିରେ ଅଇଁଠା ଭାତ, ଆମ୍ବଚୋପା, ଖପରା, ପାଉଁଶ ଓ ଆଉ କେତେ କଣ । ଯୋଡ଼ାଏ କାଉ ତା' ଉପରେ ବସି ଭାତ ଖୁମ୍ପୁଛନ୍ତି । ପେଟ କାଢ଼ି ଲଙ୍ଗଳା ପିଲାଟାଏ ସେ ଅଡ଼େ ଯାଉଛି । ନା, ନା—ସେ କାଉ ସାଙ୍ଗରେ ବାଦ କରିବାକୁ ଯାଉ ନାହିଁ । ସେ ହେଉଛି ଉପନ୍ୟାସର ଦୁର୍ଭିକ୍ଷ ଚିତ୍ର, ଏମିତି ସହଜରେ ଆଖି ଆଗରେ ପଡ଼େ ନାହିଁ । ମୋର ଆଶଙ୍କାର କାରଣ ନ ଥିଲା । ପିଲାଟି ବସି ପଡ଼ି ଭାତ ଗୋଟାଇଲା ନାହିଁ, ତା'ପାଖରେ ଛିଡ଼ା ହୋଇ ପରିସ୍ରା କରିବାକୁ ଆରମ୍ଭ କଲା ।

ମୁଁ ପରଦା ଟାଣି ଦେଇ ଫେରି ଆସିଲି, କାହିଁକିନା ଠାକୁ ବୋଧ୍ୟ ଦେଢିକ-ବେଳେ ପଛରୁ ପଚାରିଲେ,—ବ୍ରେକ୍‌ଫାଷ୍ଟ୍ ପାଇଁ ଟୋଷ୍ଟ୍ ଅଣ୍ଡା କରିବି ନା ପରଟା ସନ୍ତୁଳା କରିବି ?

ମୁଁ ନିଜକୁ କହିଲି ଯେ ଯାନବାହନ୍ ତାକ ନ ଥିଲେ ମୁଁ ଆଉ କିଛି ସମସ୍ତ ସେମାନଙ୍କୁ ଦେଖିବାର ସୁଯୋଗ ପାଇଥାଆନ୍ତି ।

...ଯାହାହେଉ ପୁଣି ଥରେ ସେମାନଙ୍କ ପାଖ ଦେଇ ଯିବାକୁ ପଡ଼ିଲା । କାରଣ ସେଇ ବସ୍ତି ଦେଇ ବଡ଼ରାସ୍ତାକୁ ଯିବାକୁ ପଡ଼େ । ଆମେ ବ୍ରେକଫାଷ୍ଟ ସାରି ବଡ଼ ରାସ୍ତାକୁ ଯାଉଥିଲୁ, ଟ୍ୟାକ୍ସି କରି ଭଡ଼ାଘର ସନ୍ଧାନରେ ବାହାରିବାକୁ ହେବ ।

ସେତେବେଳକୁ ଦିନ ଆଁଟିଗଲାଣି । ଖବରରେ ବର୍ଷା ହେବାର ଭବ ଅଛି, କିନ୍ତୁ ଦେହକୁ କାଟୁଛି । ଏଥର ବସ୍ତିଟା ଜଳ ଜଳ ହୋଇ ଦେଖାଯାଉଛି ଓ ସେ ଲୋକମାନେ କିନ୍ତୁ ପରି ଲାଗୁଛନ୍ତି । ମୋର ସେମିତି କହିବା ହୁଏତ ଉଚିତ ହେବ ନାହିଁ,—କିନ୍ତୁ ସେମାନେ ମିଛା ହୋଇ ବସୁ ନାହାନ୍ତି, ଛିଡ଼ା ହେଉ ନାହାନ୍ତି କାହିଁକି ? ଜଣେ ବାହାରେ ଗୋଟାଏ ଟିଣ ଡ୍ରମ ଉପରେ ବସିଛି, ଗୋଟାଏ ଗୋଡ଼ ଅଧ ଟେକି ଦେଇଛି, ଆଣ୍ଠୁରୁ ଜଙ୍ଘଯାଏ ଦେଖାଯାଉଛି । ଆଉ ଜଣେ ଖାଲି ହୋକେଇଟାଏ ମୁଣ୍ଡରେ ଲେଖି ହାଇ ମାରି ମାରି ଯାଉଛି । ମନେ ହେଉଛି କେଉଁଠିକୁ ଯିବାର ସ୍ଥିରତା ନାହିଁ, କେବଳ ହୋକେଇ ମୁଣ୍ଡାଇବା ତା'ର ଧର୍ମ । ଆଉ ଜଣେ ଅଧାଶୁଆ ଠାଣିରେ ଗୋଟାଏ ପାଣିଟୌବଗ୍ସ ଉପରେ ବସିଛି ଖାଲି ଦେହରୁ ଗାମୁଛା ଅଧା ଖସି ଆସି ତଳେ ଲୋଟୁଛି, ତଳେ ଅଛି କାଦୁଅ, ପାନପିକ ଓ ପଇଡ଼ଖୋପା ।

ଏମାନଙ୍କର କଣ କିଛି କାମ ନାହିଁ ? କାମ ନ ଥିଲେ ମଧ୍ୟ କଣ ଟିକିଏ ସହଜ ସାଧାରଣ ଭାବରେ ବସି ଉଠି ପାରିବେ ନାହିଁ ?

...ବସ୍ତି ସରୁ ନାହିଁ । ଦାନାଭାଇକୁ ପଚାରିଲି । ସେ କହିଲା,—ବସ୍ତି ? ବସ୍ତି ତ ଗଲାଣି କେତେବେଳଠୁଁ ।

ବସ୍ତି ଗଲାଣି, ତେବେ ସେ ବୁଢ଼ୀ ସେଠି ଗୋବର ଘାଣ୍ଟୁଛି କାହିଁକି ? ଗୃହଆଡ଼େ ଏତେମଇଳା ଛିଣ୍ଡା ଲୁଗାପଟା ଝୁଲୁଛି କାହିଁକି ?

ହୋଇଥିବ, ମୋର ଅଜ୍ଞତା । ଦେଖିଲି କୋଠାଘର ଆସିଲାଣି । ବୀଣାପାଣି ଷ୍ଟୋର୍ ନାମକ ଗୋଟାଏ ଦୋକାନ ପଡ଼ିଲାଣି । ଦୋକାନରେ ବୁସ୍ ସାର୍ଟ ପିନ୍ଧିଥିବା ଗରାଖ ଦେଖାଯାଉଛନ୍ତି । ଭିତରେ ଶୀତଳତା ଥିବ, ଉପରେ ପଙ୍ଖା, ତଳେ ସିମେଣ୍ଟ୍ ଚଟାଣ, ଦୋକାନୀ କାଠ କାଉଣ୍ଟର୍ ଉପରେ ବ୍ରିଲ୍‌କ୍ରିମ୍, କୋଲ୍‌ଗେଟ୍ ଟୁଥ୍‌ପେଷ୍ଟ ଇତ୍ୟାଦି ଦ୍ରବ୍ୟ ଆଣି ଥୋଇବ । ଠିକ୍ ଅଛି, କିନ୍ତୁ ଷ୍ଟୋର୍‌କୁ ଲାଗି କରି ଥିବା ମୋଟା ନର୍ଦ୍ଦମା ? ଟିଣ ଓ ଅଖାରେ ଘେରା ହୋଇଥିବ ସେହି କୁଡ଼ିଆଘର ? ଶୁଖିଲା ଘାସ ଉପରେ ଲମ୍ବା ଲମ୍ବା ହୋଇ ଶୋଇଥିବା ତିନିଜଣ ବସ୍ତି ଜାତୀୟ ଲୋକ ? ତଥାପି ମାନିଲି ଯେ ବସ୍ତି ଗଲାଣି, ଏ ସବୁ ଦୃଶ୍ୟ ହୁଏତ ଟିକିଏ ଆସ୍ଥାନରେ ଛିଟିକି ପଡ଼ିଛି ।

ପୁଣି ଆଉ କେତେ କୋଠାଘର ଆସିଲା । କେତେକ ପ୍ଳାର୍ଡ,—"୯ଠି ବିଜୁଳି-ପଙ୍ଖା ଭଡ଼ାରେ ଦିଆଯାଏ," ଇଣ୍ଟର୍ ନେସନାଲ୍ ହେୟାର୍‌କଟିଙ୍ଗ ସାଲୁନ୍ ପ୍ରସାଧନୀ ଲୁଗା ଦୋକାନ, ବମ୍ବେ ସୁଟିଂ ହାଉସ୍ । ରହିବା କୋଠାଘର ମଧ୍ୟ ଅଛି । ଦୁଆର ଆଗରେ ବ୍ଲାଉସ, ଶାଢ଼ୀ, ଧୋତି, କାମିଜ ପିନ୍ଧା କେତେଜଣ ଛିଡ଼ା ହୋଇଛନ୍ତି ନିରୁଦ୍ଦେଶ ଭାବରେ, ସତେ ଯେପରି ଠିକ୍ କରିପାରୁ ନାହାନ୍ତି ଏ ସଦାରର ବୈଚିତ୍ର୍ୟରେ ନିଜକୁ ମିଶାଇଦେବେ ନା ତାର ପରିଦର୍ଶନ କରିବେ; କିନ୍ତୁ ଗହଳି ବଢ଼ୁଛି ଓ ଗହଳି ସାଙ୍ଗରେ ଅନ୍ୟଧରଣର ଲୋକ ବଢ଼ି ଚାଲିଛନ୍ତି । ଟୋକେଇ ମୁଣ୍ଡାଇଥିବା ଲୋକ କେଜାଣି କେତେ,—ଖାଲି ଟୋକେଇ, ଭଗ୍ନ ଟୋକେଇ, କଣା ଟୋକେଇ । ହେଇ ଗୁଡ଼ିଏ ଲୋକ ଗୋଟାଏ ବଡ଼ ଆଲମାରୀକୁ ମୁଣ୍ଡରେ ବୋହି ମାର୍ଚ୍ଚ୍ କରି ଚାଲିଛନ୍ତି । ମନୁଷ୍ୟସୃଷ୍ଟିର ଭିଡ଼ର କେତେ ରୂପ କୁରୂପ ଦେଖାଗଲାଣି,—ମୋଟା ଓ ଛିଣ୍ଡା ଗେଞ୍ଜି, ଲୁଙ୍ଗି ଓ ବୋତାମ ନ ଥିବା ପଞ୍ଜାବି, ସାନ ଝିଅଟିଏ ପତଳା ସିଲ୍କ୍ ଜାମା ପିନ୍ଧିଛି ହେଲେ ଭିତରେ କିଛି ନାହିଁ । ବ୍ୟବହାରର ବୈଚିତ୍ର୍ୟ,—କିଏ ପଇଡ଼ାରେ ଖାଲି ଦେହ କୁଣ୍ଡାଇ ହେଉଛି, କିଏ କାଗଜ ଠୁଙ୍ଗାରୁ କଣ ପାଟିରେ ପକାଇ ପକାଇ ଯାଉଛି ଓ ସାଙ୍ଗରେ ମଇଁଷିଟାକୁ ଅଡ଼େଇ ନେଉଛି, କିଏ ଅଯଥାରେ ଗଡ଼ୁରୁ ପାଣି ଆଣି ରାସ୍ତାରେ ଛିଞ୍ଚୁଛି ଓ ଗଡ଼ୁ ଥୋଇ ଦେଇ ଆକାଶକୁ ନମସ୍କାର ହେଉଛି, କେଉଁଠି ଗୋଟାଏ ଟୋକା ରାସ୍ତାର ପୋଷ୍ଟ୍‌ବକ୍‌ସ ଉପରେ ବସି ଋଷିର ଭଙ୍ଗୀ କରୁଛି, କେଉଁଠି ଫୁଟ୍‌ପାଥ୍‌ରେ ଗାଈ ଓ ଭିକାରୀ ଏକାଠି ଶୋଇଛନ୍ତି, ଗାଈ ସଚେତନ ହୋଇ ପଡ଼ର ଗୁଡ଼ୁଛି, କିନ୍ତୁ ଭିକାରୀ ଆଖି ବୁଜିଛି ।

ଆମେ ସେମାନଙ୍କୁ ଆଡ଼େଇ ବାଟ ଚାଲୁଥିଲୁ । ଧକ୍‌କା ଖାଉଥିଲୁ, ଓ ବେଳେବେଳେ ମନେ ହେଉଥିଲା ଅନ୍ୟମାନଙ୍କୁ ଧକ୍‌କା ଦେବାକୁ ପଡ଼ୁଛି । ଦେହ ସାଙ୍ଗରେ ଦେହ ଟିକିଏ ବାଜିଗଲେ କିଛି କ୍ଷତି ନାହିଁ । କିନ୍ତୁ ଝାଳୁଆ ଦେହ, କୋଟଚଟ କଳା ଲୁଗା, ରଙ୍ଗଛଡ଼ା ଏନାମେଲ ଟିଣବାସନ, ଏ ସବୁ ସହିତ କ୍ଷଣିକ ସମ୍ପର୍କ ସଘାତ ବୋଲି ମନେ ହେଉଥିଲା । ଦୋଷ କାହାର ନୁହେଁ ତେବେ ସ୍ୱଚ୍ଛ ଓ ସ୍ୱଚ୍ଛତାକୁ ଅସ୍ୱୀକାର କରିବ କେମିତି ?

ମୋର ଶ୍ୱାସରୁଦ୍ଧ ହୋଇ ନ ଥିଲା । କାରଣ ମଝିରେ ମଝିରେ ଉପରକୁ ମୁଣ୍ଡ ଟେକି ମୁଁ ଦେଖୁଥିଲି ସିନେମା ପୋଷ୍ଟର୍, କେଶବର୍ଦ୍ଧିନୀ ବାସ୍ନା ତେଲର ବିଜ୍ଞାପନ ଇତ୍ୟାଦି । ଛବିର ସେହି କାନ୍ତିମୟୀ ତରୁଣୀମାନଙ୍କୁ ଦେଖିବାକୁ ଭଲ ଲାଗୁଥିଲା । ସେମାନେ ଯେତେବେଳେ ଅଛନ୍ତି ସବୁକିଛି ସରିଯାଇ ନାହିଁ ।

କିନ୍ତୁ ମୋର ଛବିଦେଖା ଆଶାର ମୁହୂର୍ତ୍ତଗୁଡ଼ିକ ବେଶି ସମୟ ତିଷ୍ଠି ପାରିଲେ ନାହିଁ । ମୋର ସାନ ପୁଅ,—ବୋଧହୁଏ କେବଳ ସେହି ଜଣେ ଥକି ଯାଇ ନ ଥିଲା—ହଠାତ୍ ପାଟି କରି ଉଠିଲା, "ବାପା, ସେମାନେ ଛିଅର ହେଉଛନ୍ତି !"

ଆମେ ସମସ୍ତେ ତା' ମୁହଁକୁ ଆମୋଦ ଆଶ୍ଚର୍ଯ୍ୟରେ ଚାହିଁଲୁ ଓ କ୍ଷଣକ ପରେ ତା'ର ଦେଖିଥିବା ଦୃଶ୍ୟକୁ ଦେଖିପାରି ହସି ଉଠିଲୁ । ସେ ଭୁଲ୍ କହିନାହିଁ । ସେ ପାଖ ଫୁଟ୍‌ପାଥ୍‌ରେ ସେମାନେ କ୍ଷିଅର ହେଉଛନ୍ତି, ବାଳ କାଟୁଛନ୍ତି,—ଦୁଇ ଦୁଇ ଜଣ ହୋଇ ସାତ ଆଠ ଜଣ ଲୋକ । ଜଣକ ଆଣ୍ଠୁ ଉପରକୁ ଅନ୍ୟ ଜଣର ଝୁଙ୍କିଲା ମୁଣ୍ଡ, ତା' ଉପରେ କଇଁଚି ଚାଲିଛି; ବ୍ରଶ୍‌ମୁହାଁ ଆଉ ଜଣେ ବିକୃତ ମୁହଁ କରି ଗାଲ ଦେଖାଇ ରହିଛି, ଅନ୍ୟ ଜଣକ ଗମ୍ଭୀର ମୁଦ୍ରାରେ ତା' ଉପରେ କ୍ଷୁର ଚଳାଉଛି; ଜଣେ ଅସ୍ତ୍ର ପ୍ରୟୋଗର ପରେ ଅନ୍ୟ ଜଣକ ସାଙ୍ଗରେ ଖୁସିଗପ ହେଉଛି, କଟାବାଳ ଚାରିଆଡ଼େ ଖେଳାଇ ହୋଇ ପଡ଼ିଛି ଓ କିଛି ଅଂଶ ଉଡ଼ି ଉଡ଼ି ଆସୁଛି ରାସ୍ତା ଉପରକୁ ।

ଦେଖିସାରିଲା ପରେ ହସିସାରିଲା ପରେ ମୋର ଆଖି ବୁଜି ଦେଖିବାକୁ ଇଚ୍ଛା ହେଲା । ଆଉ ଦେଖିବି ନାହିଁ । ଯଦି ଯେପରି କେହି ଜଣେ ଅହେତୁ କରି ମୋତେ ଏ ସବୁ ଦୃଶ୍ୟ ଦେଖାଉଛି, ମୋର ନ ଦେଖିଲେ ଚଳିବ ।

ଖରା ଅତ୍ୟନ୍ତ ଦେହକୁ ବାଧୁଛି । ବର୍ଷା ହେବ ନାହିଁ ? ଭିତରେ ପିନ୍ଧା ଝାଳରେ ଓଦା ହୋଇଗଲାଣି । ଶ୍ରୀମତୀ କହିଲେ ଯେ ସେ ଶୁଣିଛନ୍ତି ଏଠି ଭଲ ଡିଓଡ଼ୋରାଣ୍ଟ୍ ମିଳୁ ନାହିଁ, ଆମେରିକାରୁ ଆଉ କିଛି ଆଣିଥିଲେ ହୋଇ ଥାଆନ୍ତା । ସାନଭାଇ ଉଚ୍ଚସ୍ୱରରେ ଟିପ୍‌ପଣୀ ଦେଲା,—ଏଠି କେଉଁ ଜିନିଷଟା ମିଳୁଛି କହିଲ ?

ମୁଁ ତାଙ୍କ କଥାରେ ଯୋଗ ଦେଲି ନାହିଁ । ମୁଁ ଡିଓଡ଼ୋରାଣ୍ଟ୍ ଚାହେଁ ନାହିଁ, ଆମେରିକାରୁ କିଛି ଜିନିଷ ଚାହେଁ ନାହିଁ । ମୁଁ ଟିକିଏ ସୁସ୍ଥ ହେବାକୁ ଚାହେଁ, ଟିକିଏ ସୁସ୍ଥ ହୋଇ ସାରିଲା ପରେ ମୁଁ ଏହି ଘର ଫେରନ୍ତା ଅବସ୍ଥା କଥା ଭାବିବି, ଆଲୋଚନା କରିବି, ଗଳ୍ପ ଲେଖିବି ।

ମୋର ବ୍ୟଗ୍ରତା ଓ ଭ୍ରୂକୁଞ୍ଚନ ଦେଖି ସାନଭାଇ କହିଲା,—ଆଉ ଟିକିଏ ପରେ ଟ୍ୟାକ୍‌ସି ମିଳିଯିବ ନିଶ୍ଚୟ । ଏହିକ୍ଷଣି ଅଫିସ୍ ଟାଇମ୍ କି ନା, ସେଥିପାଇଁ ଅସୁବିଧା ହେଉଛି ।

ଟ୍ୟାକ୍‌ସି ମିଳିଲେ ଅସୁସ୍ଥତା ଘୁଞ୍ଚିଯିବ,—ହୁଏତ ଆଜି ଦିନକ ପାଇଁ । ମୁଁ କଳା-ହଳଦିଆ କାର୍ ଗୁଡ଼ିକୁ ଆକୁଳ ଆଗ୍ରହରେ ଚାହିଁ ରହିଲି, ପାଖରେ ଗଲାରୁ ହାତ ହଲାଇଲି, ଯଥାସମ୍ଭବ ଉଚ୍ଚ ସ୍ୱରରେ ଡାକ ଛାଡ଼ିଲି ।

କିନ୍ତୁ ଖାଲି ଟ୍ୟାକ୍‌ସି ମିଳିବା ଆଗରୁ ମୋର ଅସୁସ୍ଥତା ଶୀର୍ଷରେ ପହଞ୍ଚି ସାରିଥିଲା । ଅସୁସ୍ଥତା ନିବାରଣ ପାଇଁ ମୁଁ ନିଜକୁ ବହୁତ ଗାଳି ଦେଇଥିଲି,—ଯେ ଏ ମୋ ମନର ଅତ୍ୟଧିକ ପ୍ରବଣତା, ଅଛୁଆଁ ଭାବ, ବଡ଼ଲୋକର ଲକ୍ଷଣ ; ଯେ

ଭାରତର ଏ ଦାରିଦ୍ର୍ୟତା ନୂଆ ନୁହେଁ, ତାକୁ ଦେଖି ଶଙ୍କିଯିବା କାପୁରୁଷତା; ତଥାପି ମନ ମାନୁ ନ ଥାଏ । ଦାରିଦ୍ର୍ୟତାର ରୂପ ମୁଁ ଦେଖିଛି । ଦାରିଦ୍ର୍ୟତା ଗୋଟାଏ ବୈଷମ୍ୟ, ଗୋଟାଏ କାଳଦାଗ ମୋର ମନେ ପଡ଼ିଲା ନିଉୟର୍କର ଗ୍ରୀନ୍‌ଉଇଚ୍ ଭିଲେଜ୍‌ରେ ଥରେ ଗୋଟିଏ ବାଉଳୁଲା ଗରିବ ଲୋକକୁ ଦେଖିଥିଲି । ସେ ଛିଣ୍ଡା ମଇଳା ବେଶ ପିନ୍ଧି ରାସ୍ତାପାଖ ବେଞ୍ଚ୍‌ରେ ଶୋଇ ଯାଇଥାଏ । ସେତେବେଳକୁ ସନ୍ଧ୍ୟା ହୋଇ ଆସିଲାଣି, ପିଲାଏ ପାର୍କରେ ଖେଳୁଛନ୍ତି, କେତେ ଯୁବକ ଯୁବତୀ ହାତରେ ହାତ ଛନ୍ଦି, ଦେହରେ ଦେହ ଲଗାଇ ହସଖୁସି ହେଉଛନ୍ତି । ଏ ହସୁର ମଝିରେ ଲୋକଟି ତା'ର ନିରାଶାକୁ ନେଇ ଶୋଇଛି । ସେହି ବିଷମ ଦୃଶ୍ୟ ମୋ ମନରେ ଲାଗିଥିଲା । ମୁଁ ପାଖ ବେଞ୍ଚ୍‌ରେ ବସି ତାକୁ ଅନାଇ ରହିଥିଲି ତା'ର ଅନୁଭୂତିରେ ନିଜକୁ ମିଶାଇବାକୁ ଚେଷ୍ଟା କରୁଥିଲି, ଭାବୁଥିଲି,—ଏ ମଧ୍ୟ ଜଣେ ମଣିଷ ! କିନ୍ତୁ ଆଜିକାର ଏହି ଦାରିଦ୍ର୍ୟତାର ରୂପ ମୋର ଅନୁକମ୍ପା ମାଗୁ ନାହିଁ । ସେ ଶତସହସ୍ର ଭଙ୍ଗୀରେ ମୋର ଗୃହଆଡ଼େ ମୋତେ ଯେଉଁ ରହି ଚିତ୍କାର କରୁଛି । ତା'ର ଚିତ୍କାରରେ ଅନ୍ତର୍ନାଦ ନାହିଁ, ଅଛି ଗୋଟାଏ ଅଶ୍ଳୀଳତା । ଦେହର ଚାଳୁଣି ଖୋଲି ଯାଇଛି, ଭିତରେ ଥିବା ଅନ୍ତନାଡ଼ୀ ରକ୍ତମାଂସ ଉଦ୍ଭଟ ଆସି ନିଜକୁ ଦେଖାଇ ହେଉଛି । ସେମାନେ ଖିଅର ହେଉଛନ୍ତି, ହାଇଡ୍ରାଣ୍ଟର ମଇଳା ପାଣିରେ ଗାଧୋଉଛନ୍ତି, ନର୍ଦ୍ଦମା ଆବର୍ଜ୍ଜନାକୁ ନିଜ ସମ୍ପଦ ବୋଲି ଘୋଷଣା କରୁଛନ୍ତି । କୁକୁର ଷଣ୍ଢଙ୍କର ଖାଲି ଦେହ ସାଙ୍ଗରେ ନିଜର ଖାଲି ଦେହ ମିଶାଇ ସୃଷ୍ଟିର ଜୟ ଗାଉଛନ୍ତି । କାହିଁ ସେହି ଏକାକିନୀ ନିଷ୍କଣ ବିଷମତା, ରାଜଦ୍ୱାରର ଭିଖାରଣୀ ? ବଞ୍ଚିବାର ପ୍ରଚଣ୍ଡ ଉଲଗ୍ନତା ମୋର ଗୃହପୋଟରେ ମୋତେ ଥଟ୍ଟା କରୁଛି,—ମୋର ସହଅନୁଭୂତିର ସମ୍ମାନ ଦେବ କିଏ !

ମାଟିତଳୁ ଗୋଳିଆ ପାଣିର ଫୁଆରା ଉଠୁଛି, ସେଥିରେ ସେ ଶୁକୁଟୀ ସ୍ତ୍ରୀ ଜଣକ ଗାଧୋଉଛି ଓ ହସୁଛି । ଫୁଟ୍‌ପାଥର ଭଣ୍ଡାର ପାଟରେ ପୁଥୁଲା ଲୋକଟି ସାବୁନବୋଳା ମୁହଁରେ ସେ ଆଡ଼କୁ ଚାହିଁ ହସୁଛି । ମୋର ଅସୁସ୍ଥ ମନକୁ ନେଇ ମୁଁ ଭାବିଲି ସେ ସେମାନେ ପ୍ରେମର କଥାଭାଷା ହେଉଛନ୍ତି । ଏ ଦେଶରେ ଏମିତି ପ୍ରେମ ହୁଏ, ଦେହ ଏମିତି ଦେହକୁ ଡାକେ······ ।

ଅଗଣିତ ଲୋକ ଓ ଅଗଣିତ ଦେହ । ଏ ଦେହର ମେଳା ମୁଁ କଣ ଦେଖି ନ ଥିଲି ଆଗରୁ ? ପାହାଚ ପାଖରେ ପଡ଼ିଥିବା ଏ ମଲା ବିଲେଇକୁ ଦେଖି ନ ଥିଲି ? ଗୋଡ଼ାଗୋଡ଼ି ହେଉଥିବା ଏ ଚମଛଡ଼ା କୁକୁରମାନଙ୍କୁ ଦେଖି ନ ଥିଲି ? ସଂସାରର ଲୀଳାଖେଳା ଆତଯାତ କେବେ କଣ ମୋ ଆଖିରେ ପଡ଼ି ନ ଥିଲା,—କେମିତି ସେମାନେ ଖାଆନ୍ତି, ଶୁଅନ୍ତି, ଜାଭ ଛେଳନ୍ତି, ଛେପ ପକାନ୍ତି, ହସନ୍ତି, ଭିଖ ମାଗନ୍ତି ? କେମିତି ସେମାନେ ମୁଣ୍ଡବାଳ ଶୁଖାନ୍ତି, ଶାଢ଼ୀ ବଦଳାନ୍ତି, ପିଲା ଟେକନ୍ତି,

ପିଣ୍ଡା ଉପରୁ ପିଲାକୁ ମୁତାଇବାକୁ ଶିଖାନ୍ତି ? ମୁଁ ଆଜଯାଏଁ ସ୍ୱପ୍ନ ଦେଖୁଥିଲି, ନା ଏ ମୋର ଦୁଃସ୍ୱପ୍ନ ?

ଟ୍ୟାକ୍‌ସି,—ଏ ଟ୍ୟାକ୍‌ସି !

ଟ୍ୟାକ୍‌ସି ମିଳିଲା । ସସ୍ତ୍ରେ ଟ୍ୟାକ୍‌ସିରେ ବସି ପଡ଼ିଲୁ । ଶ୍ରୀମତୀ ଝାଳ ପୋଛିଲେ ମୁଁ ବନ୍ଧୁଙ୍କବେଳୁ ହାତରେ ଧରି ହୋଇଥିବା ସିଗାରେଟ୍‌ରେ ନିଆଁ ଲଗାଇଲି । ଭବାନୀପୁରରେ ଜନୈକ ପରିତୋଷ ମୁଖର୍ଜିଙ୍କ ଠିକଣା ଦେଇ ସର୍ଦ୍ଦାର୍‌ଜୀ ଡ୍ରାଇଭର୍‌କୁ କହିଲି ଶୀଘ୍ର ଚଳାଇବାକୁ । ତାଙ୍କର ସାହାଯ୍ୟରେ ଭଡ଼ାଘର ଖୋଜିବାକୁ ହେବ ।

ଟ୍ୟାକ୍‌ସି, ଟ୍ରାମ୍, ବସ୍, କାର୍ ଓ ମଣିଷ ପଶୁ ଗହଳି ଭିତରେ ବାଟକାଟି ଚାଲିଥାଏ । ସେହି ସାମାନ୍ୟ ଉତ୍ଥାନ, ସାମାନ୍ୟ ଗତିର ଶକ୍ତିକୁ ନେଇ ନିଜକୁ ଟିକିଏ ଭଲ ଲାଗୁଥାଏ । ମଣିଷ ଗହଳି ଗୋଟାଏ ସହସ୍ର ପାଦବିଶିଷ୍ଟ ବିରାଟ ଜନ୍ତୁ ପରି ମନେ ହେଉଥାଏ । ସେ ତା'ର ଅଛି,—ବଡ଼ ସହରର ଶାଳୀନତା, ଡେଙ୍ଗା ଡେଙ୍ଗା କୋଠାଘର ପରି ତା'ର ଅପରିହାର୍ଯ୍ୟ ପରିବେଶ ଭିତରେ ମୁଁ ଚାଲିଛି, ଗୋଟିଏ ମନ ପ୍ରାଣଧାରୀ ବ୍ୟକ୍ତି ଓ ମୋର ଅସୁସ୍ଥତାର କାରଣ ନାହିଁ । ମୁଁ ଗ୍ରେଟପିଲି ଲୁହେଁ ଯେ ଜନତା କୋଳାହଳକୁ ଦେଖି ଡରିଯିବି ।

.........ପରିତୋଷ ବାବୁ ଅପେକ୍ଷା କରିଥିଲେ । ତାଙ୍କ ପାନବୋଳା ଓଠର ହସ ଓ କଥା ହୃଦ୍ୟମଧୁର । କହିଲେ, "ମୁଁ ଆପଣଙ୍କ ପାଇଁ ବଛା ବଛା ଘର ଠିକ୍ କରିଛି, ଆପଣଙ୍କର ଯେଉଁଟା ପସନ୍ଦ ହେବ । ଚାଲନ୍ତୁ ।"

ସେ ଆସିଲେ ଟ୍ୟାକ୍‌ସିରେ । ତିନିଟା ଘର ଦେଖି ସାରିଲା ପରେ ମୁଁ ସାହସ ବାନ୍ଧି ପଚାରିଲି, "ଆଉ କୌଣସି ଏରିଆରେ ଭଲ ଘର ମିଳିବ ନାହିଁ ? ମାନେ ମୁଁ ବେଶି ବଡ଼ ଚାହୁଁ ନାହିଁ, କିନ୍ତୁ ଟିକିଏ ଖୋଲା ହୋଇଥିବ, ଫିଲ୍ମୀଲି ଘର କି ନା—"

"ମୁଁ ବୁଝିଲି, ମୁଁ ବୁଝିଲି,"—ପରିତୋଷ ବାବୁ ଆଗଭର ହୋଇ କହିଲେ । "ମୁଁ ଜାଣେ ଆପଣ କଣ ଚାହୁଁଛନ୍ତି । ମୁଁ କିଆତଲାରେ ଗୋଟାଏ ଘର ଦେଖିଛି, ଟିକିଏ ବେଶି ଭଡ଼ା ହେବ, କିନ୍ତୁ ଅତି ଉତ୍ତମ ଘର, ଫାଙ୍କା ଜାଗା ।"

କିଆତଲାର ଘରେ ମୋଜାଇକ୍ ଚଟାଣ ଥିଲା । ଶ୍ରୀମତୀ କହିଲେ ଯେ ରୋଷେଇଘର ଭଲ, ବାସନ ଧୋଇବାକୁ ଅଲଗା ଜାଗା ଅଛି । ଉପର ମହଲା ଘର, ପିଲାମାନେ ଗ୍ରେଟିଆ ବ୍ୟାଲକନି ଉପରୁ ଥଣ୍ଡା ପବନ ପାଇ ଖୁସି ହେଲେ । ମୁଁ କିନ୍ତୁ ବ୍ୟାଲକନି ଉପରୁ ଦେଖିଲି ଯେ ଗୋଟିଏ କୁଡ଼ିଆ ଆଗରେ ସ୍ତ୍ରୀଟିଏ ଗୋଡ଼

ଲମ୍ବେଇ ବସିଛି । ଘର କାନ୍ଥରେ କଞ୍ଚା ଗୋବର ଖଣ୍ଡା ହୋଇଛି ଘସି ହେବା ପାଇଁ । ଘର ସାମ୍ନାରେ ଗୋବରର ସ୍ତୂପ ଗୋବରକୁ ଲାଗି ବିଭିନ୍ନ ପ୍ରକାରର ଆବର୍ଜନା ଓ ସବୁର ଭିତରେ କୁକୁଡ଼ା ପୁଞ୍ଜିଏ ଏବଂ ତାଙ୍କର ପରିବାର । ସ୍ତ୍ରୀ ଲୋକର ଚାହାଣୀରେ ଗ୍ଲାନି ନାହିଁ, କୌଣସି ନିର୍ଦ୍ଦିଷ୍ଟ ଭାବ ଥିଲା ପରି ଜଣା ଯାଉନାହିଁ ।

ସେତେବେଳକୁ ମୁଁ ମୋର ଅସୁସ୍ଥତାକୁ ଯଥେଷ୍ଟମାତ୍ରାରେ ଜାଣି ସାରିଲିଣି । ଯାହାର ଦୁଃଖ ନାହିଁ, ତା' ପାଇଁ ସହାନୁଭୂତିର ପ୍ରଶ୍ନ ଉଠୁ ନାହିଁ, ଅସ୍ଥିରତାର କାରଣ ନାହିଁ । ଦୃଶ୍ୟବହୁଳ ଏ ଭରତଭୂଇଁରେ ମୁଁ ମଧ୍ୟ ଯଥାସ୍ଥାନରେ ନିଜକୁ ସଜାଡ଼ି ରଖି ପାରିବି । ସେ କୁଡ଼ିଆ ଅଛି, କିନ୍ତୁ ଟିକିଏ ଦୂରକୁ ଛକମୁଣ୍ଡରେ ଗୋଟିଏ ଚା' ଦୋକାନ ମଧ୍ୟ ଅଛି । ସେ ପକ୍କା ଘର, ଟିଣ ଛାତ, ତା' ଆଗରେ ଗୋବର କୁଢ଼ ନାହିଁ । ତା' ଆଗରେ ଗରାଖଟିଏ ଆନନ୍ଦରେ ଚା' ପିଉଛି, ମଇଳା ଧୋତି ଗେଞ୍ଜି ପିନ୍ଧିଥିଲେ ମଧ୍ୟ ହାତରେ ଘଡ଼ି ଅଛି । ଏ ପାଖକୁ ଦୃଷ୍ଟି ପକାଇଲେ ଦିଶୁଛି ଲାଗି ଲାଗି ହୋଇ କେତୋଟି ଦୁଇମହଲା ତିନିମହଲା କୋଠାଘର । ନିକଟତମ ଉପରମହଲା ବାରଣ୍ଡାରେ ଓଦାଶାଢ଼ୀ ଶୁଖୁଛି, ବସନ୍ତରଙ୍ଗର ତନ୍ତଶାଢ଼ୀ, ମୁହଁରେ ହାତୀ, ଶଙ୍ଖ ଓ ପଦ୍ମଫୁଲର ସୁନ୍ଦର ସମାବେଶ । ବାରଣ୍ଡାର କୋଣରେ ଗୋଟିଏ ପିଲାଙ୍କ ଠେଲାଗାଡ଼ି । ଯେ କୌଣସି ମୁହୂର୍ତ୍ତରେ ଗୁଲୁଗୁଲିଆ ପିଲାଟିଏ କିମ୍ବା ଜଣେ ରୁଚିସମ୍ପନ୍ନା ତରୁଣୀ ବାରଣ୍ଡାକୁ ଆସିପାରନ୍ତି ।

ପରିତୋଷବାବୁ ବୋଧହୁଏ ମୋର ଦୃଷ୍ଟିଦିଗ ଦେଖି ପାରିଥିଲେ । କହିଲେ,
—ମୁଁ କହୁ ନ ଥିଲି ? ଏ ବେଶ୍ ଭଦ୍ରପଡ଼ା । ମୁଁ ଶୁଣୁଛି ସେଠି ଜଣେ ଇନ୍‌କମ୍ ଟ୍ୟାକ୍ସ ଅଫିସର୍ ଅଛନ୍ତି, ସେ ପାଖ ଘରେ କର୍ପୋରେଶନ୍‌ର ଜଣେ ଇଂଜିନିୟର୍, ଏଣୁ ତେଣୁ ବାଜେ ଲୋକ କେହି ନାହାନ୍ତି । ଖୋଲା ହାଉଆ, କିନ୍ତୁ ଦୋକାନ ବଜାର ସବୁ ପାଖରେ, ସବୁଆଡ଼ୁ ସୁବିଧା ।

ପ୍ରକୃତରେ ଖୋଲା ଥଣ୍ଡା ପବନ ମୁହଁରେ ବାଜୁଥାଏ । ପବନରେ କୋଳାହଳ ନାହିଁ, ଧୂଳି ଦେଖା ଯାଉ ନାହିଁ । ବିଭିନ୍ନ ଦୃଶ୍ୟ ଆଗରେ ଅଛି । ଭଲ ହେଉ ମନ୍ଦ ହେଉ ସେଥିରେ ପ୍ରଗଲ୍‌ଭତା ନାହିଁ, ମୁଖରତା ନାହିଁ । ମୁଁ ପ୍ରସନ୍ନତାର ସ୍ମିତହାସ ଦେଲି । ପରିତୋଷବାବୁ ଖୁସି ହେଲେ ।

ଦ୍ୱିତୀୟ ଦିନର କଥା ।

ଦ୍ୱିତୀୟ ଦିନ ବର୍ଷା ହେଲା । ସେହି ବର୍ଷାରେ ପୁଣି ଥରେ ଗଲୁ ସେହି ଘରକୁ, ଘରବାଲା ସାଙ୍ଗରେ କଥାବାର୍ତ୍ତା କରି ଭଡ଼ା ନେବା ବିଷୟ ଠିକ୍ କରିବା ପାଇଁ ।

ସେ ଘରେ ପହଞ୍ଚି କିମ୍ବା ତା' ଆଗରୁ ମୋର ବାଧା-ପର୍ବ ଆରମ୍ଭ ହୋଇ ଯାଇଥିଲା କହି ପାରିବି ନାହିଁ । ଅସ୍ଥିରତା ନାହିଁ, ଆନ୍ଦୋଳନ ନାହିଁ,—ବୋଧହୁଏ କାଲି ରାତିର ନିଦ, ବିସ୍ମରଣୀ ଭିତରେ ଲିଭି ଯାଇଥିଲା । କିନ୍ତୁ ବର୍ଷାର ପ୍ରଥ ପତନ ସହିତ ହାରିଯିବାର ଭାବ ମନରେ ଆସୁଥାଏ । ମୁଁ ତାକୁ ଦୂରେଇ ଦେବା ପାଇଁ ଜନମାନବର ଦୃଶ୍ୟ ଦେଖିବାରେ ମନ ଦେଉଥିଲି ।

ରାସ୍ତାର ଶୁଖିଲା କାଦୁଅ ଓଦା-ଚକଟା ହୋଇଯାଇଛି, ସବୁ ମଇଳା କୁଢ଼ର କଳା ଅଂଶ ଆହୁରି କଳା ଦେଖାଯାଉଛି । କେତେ ଖୋଲା ଦେହରୁ ପାଣି ଝରୁଛି, କେତେ ଧୋବ ଲୁଗାରେ କାଦୁଅ ଲାଗିଛି, କେତେ ଭଦ୍ର ସଯତ୍ନ ମୁହଁ ବିକୃତ ହୋଇ ଉଠୁଛି । ମୋର ଆମୋଦଭାବ ଜାଗ୍ରତ ହେଲା; କିନ୍ତୁ ମନେ ହେଲା ଯେ ଏ ପରାଭବ, ନବାଗତର ଆମୋଦ । ଆନନ୍ଦର ଅବକାଶ ନାହିଁ, ଦୁଃଖ କରି ଲାଭ ନାହିଁ, ଅତଏବ ଚାଲ ହାରିବାର ଖେଳ ଖେଳିବା, ପରସ୍ପରକୁ ଦେଖି ହସିବା ।

ଭରା ବସ୍ ଟ୍ରାମ୍‌ରୁ ଲୋକମାନେ ବାଦୁଡ଼ି ପରି ଓହଳି ଥାଆନ୍ତି । ଯେ କୌଣସି ମୁହୂର୍ତ୍ତରେ କେହି ହେଲେ ଖସି ପଡ଼ିବେ ବୋଲି ଲାଗୁଥାଏ । ମୋର ଆମୋଦ ଭାବ ଚରିତାର୍ଥ ହେଲା । ଗୋଟିଏ ବସ୍‌ରୁ ଓହ୍ଲାଇବା ବେଳେ ଜଣେ ବୟସ୍କ ଭଦ୍ରଲୋକ ଖସଡ଼ା ପିଚ୍ ଉପରେ ଗଡ଼ି ଗଲେ, ଚଟି ଉପରକୁ ଉଡ଼ିଲା । କିନ୍ତୁ ସେ ଶୀଘ୍ର ଉଠିପଡ଼ି ଚତୁର୍ଦ୍ଦିଗକୁ ଅନାଇବାରୁ ସମସ୍ତେ ଜାଣିଲେ ଯେ କିଛି ଦୁର୍ଘଟଣା ହୋଇନାହିଁ । ତେଣୁ ବସ୍ ଭିତରୁ ହାସ୍ୟରୋଳ ଶୁଭାଗଲା । ବସ୍‌ର ମଡ୍‌ଗାର୍ଡ଼ ଉପରେ ଗୋଟାଏ ଗୋଡ଼ ଦେଇ, ପିନ୍ଧିଲା ଧୋତିର ଉଦ୍ଦେଶ୍ୟକୁ ଘୋର ଅବହେଳା କରି ବସିଥିବା ଲୋକଟି ଠୋ ଠୋ ହୋଇ ହସୁଥାଏ ।

ମୁଁ ମଧ୍ୟ ହସିଲି । ତା' ପରେ ଟ୍ୟାକ୍‌ସି ଚାଲୁଥିବାବେଳେ ମୁଁ ଭ୍ରାମ୍ୟମାଣ ବିବିଧ ମଣିଷ ଓ ଜନ୍ତୁମାନଙ୍କୁ ମନେ ମନେ ନିମନ୍ତ୍ରଣ କଲି ପୁଣି କିଛି ମଜାର ଖେଳ ଦେଖାଇବାକୁ ।

କିଆତଲାର ଘରେ ପହଞ୍ଚି ଶ୍ରୀମତୀ ପୁଣି ସବୁ ସୁବିଧା ଅସୁବିଧା ତଦାରଖ କଲେ । ଦେଖାଗଲା ଯେ ନାନାବିଧ ଇଲେକଟ୍ରିକ୍ ଜିନିଷ ଚଳାଇବା ପାଇଁ ଉପଯୁକ୍ତ ଜାଗାରେ ପାଓ୍ୱାର୍ ପ୍ଲଗ୍ ନାହିଁ, ମାତ୍ର ଗୋଟିଏ ବାଥ୍‌ରୁମ୍,—ସେଥିରେ ଶାଓ୍ୱାର୍ ନାହିଁ, ବାଥ୍‌ଟବ୍ ତ ଦୂରର କଥା । ବ୍ୟାଲ୍‌କନି ଉପରୁ ଖୋଲା ପବନ ନିଶ୍ଚୟ ମିଳୁଛି, କିନ୍ତୁ ବେଳେ ବେଳେ ସେଥିରେ ଏକ ବିଚିତ୍ର ଗନ୍ଧ ଭାସି ଆସୁଛି, ସେ ଗନ୍ଧରେ ପ୍ରକୃତିର ଘାସ ସହିତ ଆଉ କେତେକ ଅବାଞ୍ଛନୀୟ ଅପ୍ରାକୃତିକ ବସ୍ତୁ ମିଶିଥିଲା ପରି ମନେ ହେଉଛି ।

ବର୍ଷା ହେତୁ ଚା' ଦୋକାନ ସାମନାରେ ଅଖା ଟଙ୍ଗା ହୋଇଛି । ସେହି କୁଡ଼ିଆ-ଗୋବର ଘର ଆଗରେ ସ୍ତ୍ରୀଲୋକଟି ବସି ରହିନାହିଁ, କିନ୍ତୁ ଗୋବରକୁଢ଼ର

ପରିସର ବିସ୍ତୃତ ହୋଇଯାଇଛି ଓ କୁକୁଡ଼ା ପରିବାର ବୃଦ୍ଧି ପାଇଲା ପରି ଲାଗୁଛି । ଗୁହାକଡ଼ରେ ଗୋଟାଏ ବଡ଼ କଗ୍ରସିନଟିଣ ପଡ଼ିଛି, ତା' ଉପରେ ବର୍ଷାପାତର ଅବିରାମ ଧାତବ ଶବ୍ଦ,—କାହାକୁ ନ ଶୁଭିବ ନାହିଁ ।

ଶ୍ରୀମତୀ କହି ଚାଲିଛନ୍ତି, "ଟ୍ୟାପ୍‌ରୁ ଗରମ ପାଣି ମିଳିବ ନାହିଁ, ବାଥ୍‌ଟବ୍ ନାହିଁ, ସେ ସବୁ ତ ଏଠି ଆଶା କରିବା କଥା ନୁହେଁ ; ତଥାପି ମୁଁ ଭାବିଥିଲି ଚଳାଚଳର ଆଉ ଟିକିଏ ସୁବିଧା ଥିବ । ଓ୍ୱାର୍‌ଡ୍ରୋବ୍ ମୋଟେ ନାହିଁ, କାନ୍ଥଆଲମାରୀ ଗୋଟିଏ ଗୃହିନାବାସନ ସଜାଡ଼ିବା ପାଇଁ କେଉଁଠି ହେଲେ ଟିକିଏ ଜାଗା ନାହିଁ··· ।"

ଶ୍ରୀମତୀ ବୋଧହୁଏ ମୂଳରୁ ମୋର ନୀରବତା ଲକ୍ଷ୍ୟ କରିଥିଲେ । ବର୍ତ୍ତମାନ ବହୁତ ସମୟ ମୋ ଠାରୁ ଉତ୍ତର ନ ପାଇ ସେ ଧରିନେଲେ ଯେ ମୋର ନିରାଶାଭାବ ଦୃଢ଼ୀଭୂତ ହୋଇଯାଇଛି । ସେ ସହାନୁଭୂତିର ଭଙ୍ଗୀରେ ମୋ ପାଖକୁ ଚାଲି ଆସି କହିଲେ, "କିଛି ବ୍ୟସ୍ତ ହୁଅ ନାହିଁ । ଏହି ଘର ପୁଣି ଚମକି ଉଠିବ । ମୁଁ ରଫ୍ରି-ଜେରେଟର୍ ବାରଣ୍ଡାରେ ରଖିବି । ଗ୍ୟାସ୍‌ରେଞ୍ଜ ସ୍ଥେଷେଇ ଘରର ଗୋଟାଏ କୋଣରେ ରଖିବି, ସେଥିପାଇଁ ପାଓ୍ୱାର୍‌ପ୍ଲଗ୍ ଦରକାର ନାହିଁ । ଡାଇନିଂଘର ପାଇଁ ଗ୍ରେଟିଆ ସୋଫାସେଟ୍‌ଟିଏ ଆଣିନା । ମୋର ଯେଉଁ ପୁରୁଣା ସମ୍ବଲପୁରୀ ପରଦା ଅଛି, ତା' ସାଙ୍ଗକୁ ଆମର ଆମେରିକାନ୍ କାର୍ପେଟ୍‌ର ରଙ୍ଗ ଠିକ୍ ଖାପ୍ ଖାଇଯିବ । ସବୁ କ୍ୟୁରିଓ ଏବେକ୍ଷଣି ଖୋଲିବ ନାହିଁ, କେତୋଟି ବଛା ବଛା ଜିନିଷ ଡାଇନିଂଘରେ ସଜାଇଦେବି । କିନ୍ତୁ ତୁମର ସେହି ରୁଷିବସିଥିବା ମେକ୍‌ସିକାନ୍ ପୁରୁଷ ସ୍ତ୍ରୀଙ୍କୁ କେଉଁଠି ରଖିବି ଜାଣିଛ ? ଠିକ୍ ଆମେ ଶୋଇବା ଘର ଝରକା ଉପରକୁ ।······ ଜାହାଜରୁ ସବୁ ଜିନିଷ ଚାଲିଆସୁ, ଦେଖିବ ଆଉ ଯୋଡ଼ାଏ ମାସ ଭିତରେ ଏ ଘର କେମିତି ଦେଖାଯିବ । ଜାହାଜ କେବେ ଆସି ପହଞ୍ଚିବ କହିଲ ?"

ମୋ ଆଖିରେ ପଡ଼ିଲା କୁଡ଼ିଆଘରର ସେହି ଭାବହୀନା ସ୍ତ୍ରୀଲୋକଟି ବର୍ତ୍ତମାନ ବାହାରକୁ ଆସି ଭାବମୟୀ ହୋଇ ଉଠିଛି । କୌଣସି ଅବୋଧ ଭାଷାର ଚିତ୍କାର କରି ଗୋଟାଏ କୁକୁଡ଼ା ପଛରେ ଗୋଡ଼ାଇଛି ।

ମୁଁ ଭୁଲିପଡ଼ି ଶ୍ରୀମତୀଙ୍କ ଆଡ଼କୁ ଅନାଇଲି । ଅଧମିନଟକ ପାଇଁ ସେହି ଅନାବଶ୍ୟକ ଚାହିଁବା ଭିତରେ ମୋର ଏହି ଦୁଇଦିନର ଅନୁଭୂତି ପୁଞ୍ଜୀଭୂତ ହୋଇଗଲା, —ଉତ୍କଣ୍ଠା, ଆଶ୍ଚର୍ଯ୍ୟ, ଆଘାତ, ଅସ୍ଥିରତା, ବିଷାଦ, ଆମୋଦ । ମୋର ମନେହେଲା ଏହି ସୁଯୋଗ ମିଳିଛି, ମୁଁ ମୋର ସହଧର୍ମିଣୀକୁ ମୋର ମନକଥା ଶୁଣାଇବି । ରାଗରେ ଶୁଣାଇବି, କାହିଁକିନା ତା'ର ଧାରଣା ମୁଁ ଅନ୍ୟତମ ଅରୁଣ୍ ସେନ୍, ଅନ୍ୟତମ ଅଭି କେହି, ତ୍ୟାଗର କଷ୍ଟ ସହିପାରୁ ନାହିଁ । କିନ୍ତୁ କେମିତି ବୁଝେଇବି ? କିଣ କହିବି ?

ଶେଷକୁ ମୁଁ ସବୁ ଭାବନା ଛାଡ଼ିଦେଇ ଦେଲା ପରି ଇଂରାଜୀରେ କହି ପକାଇଲି,— ଆଇ ଜଷ୍ଟ ହେଟ୍ ଦି ହୋଲ୍ ଡାମ୍ଡ୍ ଥିଙ୍ଗ୍! ସହଜ ଅର୍ଥ,—ମୋତେ ଏ ସବୁ ଜିନିଷ ବିଷ ପରି ଲାଗୁଛି, ଘୃଣା ଲାଗୁଛି।

ଶ୍ରୀମତୀ ମୋର କଥାର ଆଘାତରେ ଟିକିଏ ଆଶ୍ଚର୍ଯ୍ୟ ହେଲା ପରି ଲାଗିଲେ। କିନ୍ତୁ ସେ ପରମୁହୂର୍ତ୍ତରେ ସ୍ନେହପିଲାକୁ ଭୁଆଁଇଲା ପରି କହିଲେ, "ହେଟ୍? ଲଭ୍ କରିବାକୁ ତ କେହି ବାଧା କରୁନାହିଁ ତୁମକୁ,—ହେଟ୍ କରୁଛ କାହିଁକି?"

ସେ ତାଙ୍କ ସ୍ମିତହାସରେ ମୋର ଉକ୍ତିକୁ ମିଳାଇଦେବାକୁ ଚାହିଁଲେ। ମୁଁ ମଧ୍ୟ ଅଳ୍ପ ହସି ସଂଯମର ପରିଚୟ ଦେଲି। ନୀରବରେ ଜଣାଇଦେଲି ଯେ ମୁଁ ଅଯଥାରେ ଏଣୁତେଣୁ କଣ କହି ପକାଇଲି।

କିନ୍ତୁ ତାଙ୍କର ସେ କଥାପଦକ ମୋ ମନକୁ ଥରକୁଥର ଆସୁଥାଏ। ମୋତେ ଭଲ ପାଇବାକୁ କେହି ବାଧା କରୁ ନାହିଁ। ଘୃଣା କରିବାର ପ୍ରଶ୍ନ ଆସୁଛି କେଉଁଠୁ?

······ସେଦିନ ରାତିରେ ମେଘ କଟିଯାଇ ଶୁକ୍ଳପକ୍ଷର ଜହ୍ନ ଆକାଶକୁ ଆସିଯାଇଥିଲା। ରାତି ଅଧରେ ମୁଁ କେଉଁଠା କାଉଙ୍କ କା-କା ଶୁଣିଲି। ନିସ୍ତବ୍ଧ ରାତି ଓ ଜହ୍ନ ଆଲୁଅରେ କାଉ କାହିଁକି କା-କା କରେ ଓ ସେଥିରେ କାହିଁକି ଏମିତି ଛଟପଟ ଲାଗେ? ମୋର ମନେହେଲା ମୁଁ ପୂର୍ବରୁ ଏ ଶବ୍ଦ ଶୁଣିଛି। ଭାରତରେ ଯେତେଦିନ ଥିବି, ଏ ଶବ୍ଦ ବାରମ୍ବାର ଶୁଣିବି।

କାଉ ବାର୍ତ୍ତା ଦେଉଛି। ତା'ର ରବ କର୍କଶ ନୁହେଁ, ତା'ର ଭାବ ନିଷ୍ଠୁର। ସେଥିପାଇଁ ସେ ଜହ୍ନ ଆଲୁଅର ଆଶ୍ରା ନେଇଛି। କଳା ଅନ୍ଧାରରେ ତା'ର ସେହି ଶବ୍ଦ ରୂପାୟିତ ହୋଇପାରନ୍ତା ନାହିଁ, କେହି ତାକୁ ପଚାରନ୍ତେ ନାହିଁ। କିନ୍ତୁ ଜହ୍ନ ଆଲୁଅରେ, ଦୃଶ୍ୟମାନ ନୀରବ ସୁନ୍ଦର ଜଗତରେ ସେ ନିଜକୁ ଶୁଣାଇପାରୁଛି। ତା'ର କରୁଣ ନିଷ୍ଠୁରତାର ମୂକ ଅନୁରାଗୀ ଚେତନାକୁ ଚିରିଦେଉଛି। କଣ ସେ କହୁଛି?

ମୋର ମନେହେଲା ସେ ଏହି ଶୋଇପଡ଼ିଥିବା ଜ୍ୟୋତ୍ସ୍ନା-ଧୂସର ସହରଟିର ସଙ୍କ୍ଷା ଦେଉଛି, ମୋତେ ଚିହ୍ନାଇ ଦେଉଛି। ସେମାନେ ଶୋଇପଡ଼ିଛନ୍ତି। ଫୁଟପାଥିରେ ବିଛଣାଗୁଡ଼ିକର ଘୋଡ଼େଇ ହୋଇ ଯେଉଁ ଲୋକଟା କମ୍ପୁଥିଲା, ସେ ଶୋଇଯାଇଛି। ରାସ୍ତାର ଗୋଟାଏ ପାଇଡ଼ ଗ୍ରେପାରେ ସ୍ନେହ ସ୍ନେହ ହାତ ପୁରାଇ କଜିଆ କରୁଥିବା ଯୋଡ଼ାଏ ଲଙ୍ଗଳା ପିଲା ଶୋଇପଡ଼ିଛନ୍ତି। ଛକର ଗହଳରେ ହାଇ ମାରୁଥିବା ବିରାଗୀ ପୁଲିସବାଲା ଜଣକ ଶୋଇଯାଇଛି। ବସ୍‌ରୁ ଝୁଲୁଥିବା ସେହି ଅଭଦ୍ର ହାସ୍ୟ-ପ୍ରବଣ ଲୋକଟା ଶୋଇଛି। ସେ ମଲା ବିଲେଇ ମଧ୍ୟ ଶୋଇଥିବ। ସବୁ ଛତ

ଶୋଇଛୁ, କିନ୍ତୁ ନିଶ୍ଚିନ୍ତ ହୋଇନାହିଁ । କାଉ କା-କା କରୁଛି ତାକୁହିଁ ଘଉ ଚହଲାଇଦେବା ପାଇଁ, ଜ୍ୟୋତ୍ସ୍ନାପ୍ରୀତିମଖା ଦେହର ସ୍ୱରୂପ ଜଣାଇବାପାଇଁ ।

ଏହି କ୍ଷତବିକ୍ଷତା ନାରୀ ପ୍ରେମ ମାଗୁଛି ! ତାକୁ ଭଲ ପାଇ ହେବ ?

ଶ୍ରୀମତୀଙ୍କ କଥା କାନରେ ବାଜିଲା । କିଏ କହୁଛି ଭଲ ପାଇବାକୁ ? ଭଲ ନ ପାଇ ବ୍ୟସ୍ତ ହେବା ପାଇଁ, ଘୃଣା କରିବା ପାଇଁ କିଏ କହୁଛି ?

ମୋର ମନେହେଲା କ୍ଷତବିକ୍ଷତା ନାରୀ କଥା କହୁଛି,—ମୋତେ କାହିଁକି ଭଲ ପାଇବାକୁ ବସିଛ କହିଲ ? ପାରିବ ନାହିଁ । ଯାଆକୁ କିଏ କେମିତି ଆଦର କରିବ ? ଯେଉଁମାନେ ବିଦେଶିନୀ ସୁନ୍ଦରୀଙ୍କୁ ଦେଖିନାହାନ୍ତି, ସେମାନେ ମଧ୍ୟ ପାରି-ନାହାନ୍ତି, ସେମାନେ ମୋ ନାଁରେ ପ୍ରଶସ୍ତି ଗାଇଛନ୍ତି, ପତାକା ଉଠାଇଛନ୍ତି, କିନ୍ତୁ ଭଲପାଇ ପାରିନାହାନ୍ତି । ତୁମେ କେମିତି ପାରିବ ? ମାଆ ପରି ଭଲପାଏ, ଭଉଣୀପରି ଭଲପାଏ ଇତ୍ୟାଦି ମିଛକଥା କୁହ ନାହିଁ । ସେଥିରେ ମୋତେ ବାଧିବ ।

ମୁଁ ତୁମର ଭଲପାଇବା ଚାହେଁ ନାହିଁ । ସହାନୁଭୂତି ମଧ୍ୟ ଲୋଡ଼ା ନାହିଁ । ତେବେ ଦୂରେଇ ରହି ମୋ' ଘା'ରେ ଟିକିଏ ମଲମ ଦେଇ ପାରିବ ନାହିଁ ?

······କେତେ ସମୟ ପରେ କାଉର କା-କା ଶୁଭିଲା ନାହିଁ । କିନ୍ତୁ ତା'ର ପ୍ରତିଧ୍ୱନି ସରୁ ନ ଥାଏ ।

ତୃତୀୟ ଦିନ ।

ଆମେ ନୂଆଘରକୁ ଶୋଭାଯାତ୍ରା କଲୁ । ଅଳ୍ପ ଜିନିଷପତ୍ର ଯାହା ସାଙ୍ଗରେ ଆସିଥିଲା ଠେଲାଗାଡ଼ିରେ ଗଲା । ତା' ପଛେ ପଛେ ଆମେ ବନ୍ଧୁବାନ୍ଧବ ଅଫିସ୍ କର୍ମଚାରୀ ସମେତ ତିନୋଟି ଟ୍ୟାକ୍ସିରେ ଗଲୁ । ଜଆଁତଳର ନୂଆ ଭଡ଼ାଟିଆ ଓ ତାଙ୍କ ସାଜସରଞ୍ଜାମ ଦେଖିବାପାଇଁ ଗଳିର କେତେଗୁଡ଼ିଏ ଆଖି ସ୍ଥିର ହୋଇଗଲା କିଛି ସମୟ ପାଇଁ; କିନ୍ତୁ ଗୋବରକୁଣ୍ଡଆର ସେହି ସ୍ତ୍ରୀଲୋକଟିର ମନରେ କିଛି ଭାବାନ୍ତର ଆସିଲା ପରି ଲାଗିଲାନାହିଁ । ସେ ତା'ର ପୁରୁଣା ଆସ୍ଥାନରେ ବସି ରହି ତା'ର ଅବିଚ୍ଛିନ୍ନ ଦୃଷ୍ଟିହୀନ ଦୃଷ୍ଟି ଆମଆଡ଼େ ଦେଉଥିଲା, ସତେ ଯେପରି ସେ ଆକାଶର ସବୁଦିନିଆ ମେଘକୁ ଦେଖୁଛି ।

ଘରେ ଜିନିଷପତ୍ର ଖୋଲାଖୋଲି କଲାବେଳେ ମୁଁ କ୍ୟୁରିଓ ବାକ୍ସ ଖୋଲି ନିଉୟର୍କର ଷ୍ଟାଚ୍ୟୁ ଅଫ୍ ଲିବର୍ଟି ମୂର୍ତ୍ତିଟିକୁ କାଢ଼ିଲି । ଶ୍ରୀମତୀ କହିଲେ,—ମୁଁ ତାକୁ ପରେ ସଜାଡ଼ିବି, ଆଉ ମୁଁ କହିଲି,—ମୁଁ ସଜାଡ଼ୁ ନାହିଁ, ଦେଖୁଛି, ଭାବୁଛି କେଉଁଠି ରଖିଲେ ଭଲ ଦେଖାଯିବ ।

ଶ୍ରୀମତୀ, ପିଲମାନେ ଓ ପଣ୍ଡୋଷବାବୁ ସମସ୍ତେ ଥର ଥର କରି ସେହି ମୂର୍ତ୍ତିଅଡ଼କୁ ଗୁହିଁଲେ, ମୋ ଭାବନାରେ ଗୁରୁତ୍ୱ ଦେଲପରି । ତା'ପରେ ନିଜ ନିଜ କାମରେ ଆଡ଼େଇ ହୋଇଗଲେ । ମୁଁ ମୂର୍ତ୍ତିର ଧୂଳି ଝାଡ଼ି ଦେଇ ତା'କୁ କିଛି ସମୟ ହାତରେ ଧରିଲି ଓ ପୁଣି ବାକ୍ସ ଭିତରେ ରଖିଦେଲି । ଶ୍ରୀମତୀ ତାକୁ ପରେ ଉପଯୁକ୍ତ ସ୍ଥାନରେ ସଜାଡ଼ିଦେଇ ପାରିବେ ।



# ଘର ବାହୁଡ଼ା

ଇଏ ଗପ ନୁହେଁ । ମୋର ଆତ୍ମକଥା । ତଥାପି ମୁଁ ତାକୁ ଗପର ସମ୍ମାନ ଦେବାକୁ ଯାଉଛି, କାହିଁକନା ମୋର ଧାରଣା ଯେ ମୋର ଅନୁଭୂତ, "ଉତ୍କଣ୍ଠା, ଆଶ୍ଚର୍ଯ୍ୟ, ଆଘାତ, ଅସ୍ଥିରତା, ବିଷାଦ, ଆମୋଦ" ଆଦର ପୁଞ୍ଜୀଭୂତ ସମାହାର ବୋଧହୁଏ ପ୍ରତ୍ୟେକ ସମ୍ବେଦନଶୀଳ ମଣିଷ ସାଙ୍ଗରେ କଥାଭୂଷା ହୋଇ ପାରିବ, ଯେ ତା' ଜୀବନରେ ଥରେହେଲେ ମାଆ ପାଖରୁ, ଆପଣା ଗାଆଁଭୂଇଁରୁ ଦୂରକୁ ଯାଇ ଫେର ଆସିଛି । ଡେଣା ମେଲାଇ ଆକାଶକୁ ଉଡ଼ି ଉଡ଼ି ଯିବା, ପୁଣି ଦିଗନ୍ତରେ ଠାବ ମିଳୁ ନାହିଁ ବୋଲ ନୀଡ଼କୁ ଫେର ଆସିବା, ଏଇ ଘରବାହୁଡ଼ାର କ୍ରମ ଯେତେ ପୁରୁଣା ପୋଚେ ହେଲେ ମଧ୍ୟ କେତେଜଣ ତା'କୁ ସାମାନ୍ୟ-ସାଧାରଣ ଘଟଣା ବୋଲ ମାନ ନେଇ ପାରଛନ୍ତ ? ବିଚ୍ଛେଦର ମାତ୍ରା ଅନୁଯାୟୀ ଖୁସିଟାଏ ହୋଇ ନାହାନ୍ତ, କାନ୍ଦ ନାହାନ୍ତ ? ଯାହାକୁ ଛାଡ଼ି ଆସିଲ ଓ ଯାହାକୁ ଫେର ପାଇଲ, ଏ ଦୁଇଟିକୁ ଅଯଥାରେ ମିଳାଇବାକୁ ଯାଇ ହଟହଟାରେ ପଡ଼ି ନାହାନ୍ତ ?

ପୁଣି ଯେତେବେଳେ ଆମେରକା ହୁଏ ମୋର ଆକାଶ ଓ ମୁଁ ଫେରଆସେ କଲକତାନାମକ ନୀଡ଼କୁ, ସେତେବେଳେ ହିସକାବର ପର୍ବ ସହଜରେ ସରେ ନାହିଁ । ତେଣୁ ମୁଁ ଗଳ୍ପଟିଏ ଲେଖି ମଧ୍ୟ ଖଲାସ ହୋଇ ପାରେ ନାହିଁ । ଆଜିଯାଏ ସେଇ ମହାବାତ୍ୟାପାତ ତୁଲ୍ୟ ଅନୁଭୂତ, Traumatic experience ମୋ ଚେତନାରେ ଗୁଞ୍ଜରୁଛି—କଣ ଛାଡ଼ିଲୁ ? କଣ ପାଇଲୁ ? କାହାକୁ ତୁ ସତରେ ଭଲପାଉ କହିଲୁ ? ବିଶେଷତଃ ଜୀବକା ନିର୍ବାହରୁ ଅବସର ନେଇ ଭାରତର ରାଜଧାନୀ ଦିଲ୍ଲୀ ଛାଡ଼ି ଜନ୍ମସ୍ଥାନ କଟକକୁ ଫେର ଆସିଲା ପରେ ସେଇ ଗୁଞ୍ଜରଣ ତୀବ୍ର ରୂପରେ ଉତ୍କଟ ହୋଇ ଉଠିଛି । ହୋଇପାରେ ଯେ ଉନ୍ମୀଳନକୁ ଧର ରଖି ହେବ ନାହିଁ ଧରୁଦନ ଯାଏଁ, ନିମୀଳନରେ ହିଁ ଶାନ୍ତ···କନ୍ତୁ ତୁମ କଥାକଥିତ ଶାନ୍ତକୁ

ଭଲପାଇବାର ଶେଷକଥା ବୋଲି କହି ହେଉ ନାହିଁ ତ ! ଅପରକୁ ଅଳ୍ପ ବହୁତ ସ୍ୱର୍ଗ ମାଗି ହାରିଗଲା ପରି ଲାଗୁଛି କାହିଁକି ? ଖାଲି ବାହାରର ଧୂଳିମଇଳା ନାଳନର୍ଦ୍ଦମା ନୁହେଁ, ଏଇ ଆପଣା ଓ ପୁରୁଣା ସମାଜର ଯେତେକ ସଙ୍କୀର୍ଣ୍ଣତା, ଶଠତା, ଅଦୃଷ୍ଟତା, ଅନ୍ଧବିଶ୍ୱାସ, ଯାହା ଆଜି ମୋତେ ଚିପୁଗୁଳିଉଛି— ଏଇ ଘୋର ଜନନୀ । ଜନନୀର ଜଠର । ଅନ୍ଧାର ଗୁଡ଼ୁଗୁଡ଼ିକୁ ଡରୁଛି କାହିଁକି ମ ? ଏଇ ଘୋର ଅନ୍ଧାର ପଥ ! ମୃତ୍ୟୁ ଆଉ କେତେ ଦୂରରେ କି ?

ଡରିବ ନାହିଁ, ଭଲ ପାଇବ । ହେଟ୍ କରିବ ନାହିଁ, ଲଭ୍ କରିବ । ମୁଁ ବୁଝୁଛି ଯେ ଭଲ ପାଇବାର ବ୍ୟାକୁଳତା ଆସୁଛି ବୋଲି ମୁଁ ଏମିତି ଦୋହରେଇ ହେଉଛି, ଶାନ୍ତି ପାଇଲା ପରି । ତେଣୁ ନିଜକୁ ଧନ୍ୟବାଦ ଦେବା ଉଚିତ ଯେ ମୁଁ ଅଳ୍ପକରେ ସନ୍ତୁଷ୍ଟ ନୁହେଁ । ମୋର ଏଭଳି ଗୋଟିଏ ଜନନୀ ଦରକାର ଯେ ବାସ୍ତବରେ ସ୍ୱର୍ଗାଦପି ଗରୀୟସୀ । କିନ୍ତୁ ଏଇ ଦୁରଭିଳାଷକୁ ନେଇ ମୁଁ କେତେଦିନ ଏମିତି ଛଟପଟ ହେଉଥିବି ?···ଯାହା- ହେଉ ମୋର ଭଗବାନଙ୍କ ଠାରେ ପ୍ରାର୍ଥନା ଯେ ମୁଁ ମୋର ଜୀବନର ଆଉ କେତୁଟା ଦିନ ଯେଉଁଠି ରହେ ନା କାହିଁକି, ଏଇ ଦ୍ୱନ୍ଦର ଦ୍ୱାହି ଦେଇ ମୋର କଅଣ ଯାଉଛି ବୋଲି ଶୋଇ ନ ପଡ଼େ । ଲେଖକ ଗୋଟିଏ ଅଦରକାରୀ ଜୀବ ହୋଇପାରେ କିନ୍ତୁ ମରିବା ଆଗରୁ କତରୀ ଘୋଡ଼େଇ ହେବା ତା'ର ଧର୍ମ ନୁହେଁ ।

ମୋର କେତେଜଣ ବନ୍ଧୁ କହିଚନ୍ତି ଯେ ଏଇ ବଡ଼ ଗପଟିକୁ ଆହୁରି ବଢ଼େଇ ଗୋଟିଏ କ୍ରମିକ ଉପନ୍ୟାସ, ୫ ଖଣ୍ଡ କରି ଗଢ଼ି ପାରିଲେ ଭଲ ହେବ । ଯେ ପରିଣତ ଲେଖକଠାରୁ ଏହିଭଳି ଆତ୍ମଚରିତମୂଳକ ଆଖ୍ୟାନ ଆଶା କରାଯାଏ । କିନ୍ତୁ ମୁଁ ଜାଣେ ନାହିଁ ଯେ ମୋ ବଳବୟସକୁ ଗୁହିଁ ମୁଁ କେଉଁ ସୀମା ସରହଦକୁ ଛୁଇଁ ପାରିବି, ଟଲଷ୍ଟୟଙ୍କ ଗପର ନଲିଖି ପରି ମୋର ଇଲାକାକୁ ବଢ଼େଇ ପାରିବି ସୂର୍ଯ୍ୟ ବୁଡ଼ିବା ଯାଏଁ ।

କଟକ

ସେପ୍ଟେମ୍ବର ୬, ୧୯୮୭

# ଲକ୍ଷ ବିହଙ୍ଗ

ତାଙ୍କ ଶାଢ଼ୀରେ ଲକ୍ଷ ବିହଙ୍ଗର ଶୋଭା ।

ବିହଙ୍ଗମାନେ ଉନ୍ମୁଖ ଓ ସୁନ୍ଦର । ମିସେସ୍ ପୁରୀ ସମ୍ମୁଖୀ ଓ ସୁନ୍ଦରୀ । ସୁନ୍ଦରୀ ବୋଲି ଧରିନେବାକୁ ହେଉଛି, କାରଣ ସୌନ୍ଦର୍ଯ୍ୟ ନ ଥିଲେ ତାଙ୍କ ଘରପାଖରେ ଏତେ କଳା ଓ କଳ୍ପନା, କୁଟୀର ଶିଳ୍ପ ଓ ଯନ୍ତ୍ର ଶିଳ୍ପର ସମ୍ଭାର ନ ଆଆନ୍ତା । ଯଥା:—ଯାମିନୀ ରାୟ, ଭେନସ୍ଙ୍କର ଜନ୍ମ ଅଖ୍ୟାତ ଶିଳ୍ପୀର ନଈ ଓ ଡଙ୍ଗା, ହାତୀଦାନ୍ତର ଶ୍ରୀକୃଷ୍ଣ, ବାଉଁଶ, ବେଣାଚେର ଖଦଡ଼ କାଗଜ ଇତ୍ୟାଦିରେ ଗଢ଼ା ବୋଝ ବୋହିଥିବା ଚାଷୀ ଓ ତା'ର ସ୍ତ୍ରୀ, କୃଷ୍ଣକାୟ ଆଦିବାସୀର ନାଚ, ଯାପୁଆ କେଳା ଇତ୍ୟାଦି । ତଦୁପରି ଇମ୍ପୋର୍ଟେଡ୍ ଉତ୍କୃଷ୍ଟ ଇଲେକ୍ଟ୍ରିକ୍ ଟୋଷ୍ଟର, ଟ୍ରାନ୍‌ଜିଷ୍ଟର୍, ଓ କାଚ ଗହଣା, ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ବିବିଧ ମନୋରମ ଦ୍ରବ୍ୟ, ଯାହାକୁ ଦେଖିବାକୁ ଭଲ ଲାଗେ, କିନ୍ତୁ ବ୍ୟବହାର କରିବା ମନା ।

ମିସେସ୍ ପୁରୀଙ୍କର ବେଡ୍‌ରୁମ୍ । ମିସେସ୍ ପୁରୀ ଶୋଇଛନ୍ତି । ନିଦରେ ଶୋଇ ନାହାନ୍ତି; ବର୍ତ୍ତମାନ ଦିନ ଏଗାରଟା । ତେଣୁ ବିଛଣା ଚାଦର ନୁହେଁ, ରଙ୍ଗିନ୍ ବେଡ୍‌କଭର ଉପରେ ଶୋଇଛନ୍ତି । ରାତିପିନ୍ଧା ନୁହେଁ, ସିଲ୍‌କଶାଢ଼ୀ ପିନ୍ଧି ଶୋଇଛନ୍ତି ଏବଂ ସେହି ଶାଢ଼ୀରେ ଲକ୍ଷ ବିହଙ୍ଗ ଉନ୍ମୁଖ, ଉଦ୍ୟତ ଓ ଆଗ୍ରହୀ ।

ମନେହେଉଛି ସେମାନେ ମୁହୂର୍ତ୍ତକରେ ଡେଣା ମେଲି ଉଡ଼ିଯିବେ । କିନ୍ତୁ ସେମାନେ ଉଡ଼ିଯିବାକୁ ଚାହୁଁ ନାହାନ୍ତି ।

ବାହାରେ ନେଳି ଆକାଶର ଅସୀମତା ସୂଚନା ଦେବ ଯେ, ଜୀବନ ଘରେ ନାହିଁ, ଆଶା ପୂରେ ନାହିଁ ଏବଂ ତଳକୁ ଅନାଇଲେ ଦେଖାଯିବ ଯେ, ପୃଥିବୀ ଅଯଥାରେ ପେଲି ହେଉଛି, ଧଇଁସଇଁ ହେଉଛି, ଖୋଜୁଛି ଜୀବନର ଅର୍ଥ ଅଛି । କେତେ ଜ୍ୱାଳା ଓ ନିଃଶ୍ୱାସ, କେତେ ଧୂଆଁ ଓ ଧୂଳି ଜୀବନର ଅର୍ଥ ତଲାସ କରୁଛି; ପାରୁନାହିଁ ।

ବାହାରେ ପୃଥିବୀର ତାଗିଦ । ଉଦ୍ୟମ, ମୁକ୍ତି କଳହର ତାଗିଦ । କେତେ କାଗଜ ଲେଖା ହେଉଛି ଚିରା ହେଉଛି । କେତେ ସଭା ବସୁଛି, ଭାଙ୍ଗୁଛି । କେତେ ଚକ ଜନପଦ ବୋହୁଛି, ମଣିଷ ବୋହୁଛି । ପ୍ରାଣୀମାନେ ଅଗଉଛନ୍ତି !

ଏବଂ ପୃଥିବୀର ଅଣ୍ଡା । ଅଣ୍ଡା ମୂର୍ଦ୍ଧାର । ···ମଲା ପ୍ରେମ । ଦରବୁଢ଼ୀ ସ୍ତ୍ରୀ ହାଣ୍ଡି ଗଡ଼େଇ ପେଜ ଗାଳୁଛି, ମଇଲା ଧଳା ପାଣି ପୁରୁଣା ପ୍ରେମକୁ ସାଙ୍ଗରେ ନେଇ ନଳାରେ ବହିଯାଉଛି । ଘୋର ଅଂଧାରରେ ସ୍ୱାମୀ ତା'ଦେହକୁ ଅଣ୍ଡାଳି ହେବ ଓ କାମ ସରିଲା ପରେ ଘୁଙ୍ଗୁଡ଼ି ମାରିବ । ···ମଲା ଜନ୍ମ । ସେମାନେ ଥୋକେ ଅଛନ୍ତି ଯେଉଁମାନେ ଜନ୍ମ ହୋଇ ମରିଯାଇଛନ୍ତି ହେଲେ ବଞ୍ଚିବାକୁ ଚାହାନ୍ତି । ସେମାନେ ବିକଳ ମନ ଓ ଲଙ୍ଗଳା ଦେହରେ 'ମୁଁ ମଣିଷ, ମୁଁ ମଣିଷ ବୋଲି ଚତ୍କାର କରୁଛନ୍ତି । ହସିବା କଥା । ସେମାନେ ସିଧା ହୋଇ ଚାଲି ଶିଖି ନାହାନ୍ତି, କଥା କହି ଜାଣି ନାହାନ୍ତି, ଧୋବପିନ୍ଧା ମଣିଷକୁ ଭଗବାନ୍ ବୋଲି ଭାବୁଛନ୍ତି, ଓ ତଥାପି କହୁଛନ୍ତି—ଆମେ ବଞ୍ଚିବୁ !···ମୃତ ଭଗବାନ୍ । ଭଗବାନ୍‌ର ହାତରେ ଖଣ୍ଡା ଚକ୍ ଚକ୍ କରୁନାହିଁ, ଫୁଲ ମହକୁ ନାହିଁ, ନୃଶରୁ ରକ୍ତ ଝରୁନାହିଁ । ଭଗବାନ୍ କାନ୍ଦୁ ନାହିଁ, ହସୁ ବି' ନାହିଁ । ସେଥିପାଇଁ ଏତେ ଧରପଗ ଠେଲପେଲ ।—ଜୟ ହନୁମାନଙ୍କ ଜୟ ! ମୁଁ ମଲା ଭଗବାନ୍‌ଙ୍କୁ ଛୁଇଁ ଆସିଚି, ମୁଁ ଧଣ୍ଡା ପାଇଛି, ତେଣୁ ମୁଁ ବଞ୍ଚିବ ।

ତାତ ଓ ହେମାଳ । ଜ୍ଞାନ ଓ ଅଜ୍ଞାନ କିଏ ମିଳିବ ସେ ନଉଛୁଣା ପୃଥିବୀକୁ ଚାହିଁ ? ଆମ୍ଭ ଉପର ଆକାଶକୁ ଅନାଇଲେ ଶୋଷ, ଖାଲି ଶୋଷ । ସେ ଶୋଷରେ ତଣ୍ଟି ଶୁଖିଯିବ, ଦିଗନ୍ତ ଧରା ଦେବନାହିଁ । ବିହଂଗମାନେ ଉଡ଼ିବାକୁ ମନ କରୁ ନାହାନ୍ତି ।

···ମିସେସ୍ ପୁରୀ 'ଜୋକ୍' ବହି ପଢ଼ୁଛନ୍ତି । ବହିରେ ଅଛି ହଜାରଟି ରହସ୍ୟମୂଳକ ମଜା କଥା । କେତେଗୁଡ଼ାଏ ଜୋକ୍ ପଢ଼ି କିଛି ଭାବାନ୍ତର ଆସୁନାହିଁ । କେତେଗୁଡ଼ିକରେ ଯାମାନ୍ୟ ହସିବାକୁ ଇଚ୍ଛା ହେଉଛି । ଏବଂ ବେଳେ ବେଳେ ଗୋଟିଏ ଜୋକ୍ ଏତେ ସୃଷ୍ଟିଛଡ଼ା ଲାଗୁଛି ଯେ, ମନେ ହେଉଛି ବ୍ରହ୍ମାଙ୍କ ଆସନ ଟଳିଯିବ, ପାଟି ମେଲାଇ ନ ହସିଲେ ରହି ହେଉ ନାହିଁ ।

ଏହିପରି ଗୋଟିଏ ଜୋକ୍ ପଢ଼ି ମିସେସ୍ ପୁରୀ ପାଟି ମେଲାଇ ହସିଲେ । ଅଧାଉଠା ହୋଇ ପାଖ ତକିଆଟାକୁ କୋଳରେ ଆଣି ରଖିଲେ, ଆନନ୍ଦରେ ଗୋଟିଏ ବିଧା ମାରିଲେ ଓ ହସିଲେ । ହସରେ ପ୍ରଥମେ ଥିଲା ଉଦ୍‌ଗମର ଧ୍ୱନି,—କଣ୍ଠଗତ ଓ ଗମ୍ଭୀର । ତା'ପରେ ନାଲିରଙ୍ଗବୋଳା ଓଠ ଦୁଇଟି ଅଲଗା ହୋଇଗଲେ ଓ ଦୁଇପାଟି ଦାନ୍ତର ବିସ୍ତାର ଦିଶିଗଲା ଏବଂ ହସର ସ୍ତର ପରେ ସ୍ତର ତାଲି ହୋଇଗଲା । ପ୍ରବାହ ଅମିଗଲାରୁ ମିସେସ୍ ପୁରୀ ମୁଣ୍ଡ ବାଳରେ ହାତ ଚଳେଇ, ଆନନ୍ଦକୁ ଚାକୁଳେଇ ପ୍ରସନ୍ନତା ଆଣିଲେ ଓ ପୁଣି ଖଟରେ ଲେଟିଯାଇ ବହିର ପର ଜୋକ୍‌ଟିକୁ ଦେଖିଲେ ।

ବିହଂଗମାନେ କହିଲେ,—ଚମତ୍କାର ! ଚମତ୍କାରତା ତାଙ୍କ ହସିବାର ଚେହେରାରେ ନଥିଲା, ଭଙ୍ଗୀରେ ଥିଲା କି ନାହିଁ କହିହେବ ନାହିଁ । କିନ୍ତୁ ତାଙ୍କର

ଭାବବ୍ୟଂଜନା ଅନୁପମ । ଘରଭିତରେ ଏହି ଏକୁଟିଆ ହସ, ଆପଣା ଉପଭୋଗର ହସ, ଅନ୍ୟ କେଉଁ ଅତରଙ୍ଗ ମଣିଷକୁ ଶୁଣାଇବା ପାଇଁ ନୁହେଁ,—ଏହି ହେଉଛି ବଞ୍ଚିବାର ଉପଯୋଗୀ ଛନ୍ଦ । ବିହଂଗମାନେ ମୁଗ୍ଧ ହେଲେ ଓ ଗୃହିଁରହିଲେ ।

ସାଢ଼େ ଏଗାରଟା । କଫି ଖାଇବା ବେଳ ହେଲଣି । ମିସେସ୍ ପୁରୀ ଟାଇମ୍‌ପିସ୍‌କୁ ଅନାଇଲେ ଓ ବହି ପଢ଼ାରେ ମନ ଦେଲେ ।

ଏଗାରଟା ବାଜି ପଇଁତରିଶ୍ ମିନଟ୍ । ତଥାପି କଫି ଆସି ପହୁଞ୍ଚି ନାହିଁ । କିନ୍ତୁ ମିସେସ୍ ପୁରୀ ଉଦ୍‌ବିଗ୍ନ ନୁହନ୍ତି । ଥରକୁ ଥର ଘଣ୍ଟା ଦେଖି ନାହାନ୍ତି । କଫି ଖାଇବା ବେଳ ଦୈନିକ ଜୀବନର ଗୋଟିଏ ଅବସ୍ଥା, ବନ୍ଧନ ନୁହେଁ । ଜଣାଶୁଣା ସମୟର ପରିସର ଭିତରେ ସେ ଘଟିବ, ସକାଳ ଦ୍ୱିପ୍ରହର ସନ୍ଧ୍ୟା ପରି, ଘରେ ପୂଝାରୀ ଅଛି ।

ଏଗାରଟା ଚାଳିଶ୍‌ରେ ପୂଝାରୀ କଫି ଆଣି ପହଞ୍ଚାଇଲା । କଫି କପ୍‌ଟିକୁ ମିସେସ୍ ପୁରୀଙ୍କର ହାତ ପାହାନ୍ତାରେ ଟି-ପୟ୍ ଉପରେ ରଖିଦେଲା । ରଖିସାରି ଟିକିଏ ଦୂରେଇହୋଇ ଛିଡ଼ାହେଲା ।

ମିସେସ୍ ପୁରୀ ଗୋଟିଏ ଜୋକ୍‌ର ଅଧାରେ ପହଞ୍ଚିଛନ୍ତି । ତେଣୁ ସେ ଅନ୍ୟମନସ୍କ ଭାବରେ ହାତ ବଢ଼ାଇ ଚାମୁଚରେ କଫିକୁ ଗୋଳାଇଲେ । କିଛି ସମୟ ଗୋଳାଇ ସାରିଲା ପରେ ଚାମୁଚେ କଫି ପାଟିକୁ ନେଲେ । ତା' ପରେ କହିଲେ, "ଚିନି" ।

ପୂଝାରୀ ବୁଝିଲା ଯେ ମାଲିକାଣୀ କହୁଛନ୍ତି ଚିନି କମ୍ ଅଛି । ଚିନି ବେଶି ଥିବାବେଳେ ମଧ୍ୟ ସେ କେବଳ ସେହି ଗୋଟିଏ ଶବ୍ଦ ଉଚ୍ଚାରଣ କରନ୍ତି, କିନ୍ତୁ ତାଙ୍କ ମୁହଁର ଭଙ୍ଗୀ ଅନ୍ୟପ୍ରକାର ହୋଇଯାଏ । ପୂଝାରୀ ଚାଲିଗଲା ଆଉ ଚିନି ଆଣିବ ବୋଲି ।

ଯଥାସମୟେ କଫି ପୂର୍ଣ୍ଣାଙ୍ଗ ହେଲା ଓ ମିସେସ୍ ପୁରୀ ତାକୁ ଚାମୁଚେ ଚାମୁଚେ କରି ପାଟିକୁ ନେଲେ । ଚାରି ପାଞ୍ଚ ଚାମୁଚ ଉତ୍ତାରୁ ଓ ଗୋଟିଏ ପୁଷ୍ଟାର ଜୋକ୍ ପରେ ସେ ଖଟ ଉପରେ ବସିଲେ ଓ କପ୍‌ଟିକୁ ହାତକୁ ଆଣି ସାଧାରଣ ଭାବରେ ଚୁମୁକ ଦେଲେ । ଖୋଲା ବହି ଖଟରେ ଓଲଟା ହୋଇ ରହିଥାଏ । ମିସେସ୍ ପୁରୀ କଫି ଖାଇବା ସାଙ୍ଗରେ କଣ ମନେ ପକାଇଲା ପରି ଦେଖା ଯାଉଥାଆନ୍ତି ।

ବିହଂଗମାନେ ତାଙ୍କର ସ୍ମୃତିବିକଶ ମୁହଁକୁ ଦେଖିଲେ ଓ କୁତୂହଳୀ ହେଲେ, —ତାଙ୍କର କଣ ମନେ ପଡ଼ୁଛି ?

ତାଙ୍କର ମନେପଡ଼ିବା ବସ୍ତୁକୁ ବର୍ଣ୍ଣନା କରିହେବ ନାହିଁ । କାରଣ ସ୍ମରଣିକା ଚଳନ୍ତା ଆଲୁଅ—ଛାଇ ପରି ଲାଗୁଛି, ସେଥିରେ ସଂହତି ନାହିଁ । ବୋଧହୁଏ ତା'ର

କାୟା ଗଢିଉଠିଲେ ସେ ଅସୁନ୍ଦର ହୋଇଯିବ । ତେଣୁ ମିସେସ୍ ପୁରୀ ତା'ର ଅନଙ୍ଗ ଚଳ-ପ୍ରବଣ ରୂପକୁ ଦେଖିବାକୁ ଭଲ ପାଉଛନ୍ତି ତାକୁ ଗଢି ଉଠିବାକୁ ଦେଉନାହାନ୍ତି ।

ମିସେସ୍ ପୁରୀ ପୂର୍ବରୁ ଗୋଟିଏ ସେକ୍ସ-ଆମୋଦଗ୍ରସ୍ତ ନୋଭେଲ୍ ପଢ଼ୁଥିଲେ । ତାକୁ ହିଁ ପଢ଼ିଥିବାରୁ ତାଙ୍କର ମନେ ପଡ଼ିଲା ସମ୍ପର୍କୀୟା ଜଣେ ନାରୀଙ୍କ ସହିତ ଜଣେ ଚରିତ୍ରହୀନ ପରପୁରୁଷଙ୍କ ଚେହେରା । ଏବଂ କଳ୍ପନାରେ ଚିତ୍ରିତ ହେଲା ସେ ଦୁଇଜଣଙ୍କ ପାରସ୍ପରିକ ବ୍ୟବହାର । ସେ ଛବି ଅସ୍ପଷ୍ଟ; ସ୍ପଷ୍ଟ ହୋଇପାରୁନାହିଁ । କିନ୍ତୁ ଦୁଇଟି ସମ୍ବନ୍ଧବିହୀନ ପୁରୁଷ ସ୍ତ୍ରୀଙ୍କୁ ଏପରି ଭାବରେ ଏକାଠି କରିବାର କୃତିତ୍ୱ ଆଉ କେତେ ଜଣଙ୍କର ଥାଇପାରେ ? ଏହାକୁହିଁ ତ ସୃଷ୍ଟି କହନ୍ତି ।

ସୃଷ୍ଟିର ଜ୍ୟୋତି ତାଙ୍କ ମୁହଁରେ ଫୁଟି ଉଠୁଥିଲା । ବିହଂଗମାନେ ତାକୁ ଦେଖି ଆପ୍ୟାୟିତ ହେଉଥିଲେ । ଏହି ସମୟରେ ପାଖରେ ଜୟରାମ ପହଞ୍ଚିଲା । ତା' ହାତରେ ପରବାଥିଲା ।

ଜୟରାମ ଷୋଳ ସତର ବର୍ଷର ଟୋକା । କଳା ମଚ ମଚ ବଳିଷ୍ଠ ଦେହ । ଖଣ୍ଡେ ଗେଂଜି ଓ ହାଫ୍ ପ୍ୟାଣ୍ଟ୍ ପିନ୍ଧିଛି । ମୁଣ୍ଡରେ ଗୋଛାଏ ବାଳ, କପାଳରେ କେତୋଟି ଗ୍ରେଟ ଝାଳବିନ୍ଦୁ । ମୁହଁରେ ସ୍ପର୍ଦ୍ଧା ଓ ଅଭିମାନର ଇଙ୍ଗିତ, —ଯେପରି କି ସେ କହିବାକୁ ଚାହେଁ ଯେ, ସେ ଜୟରାମ୍, ବାହାରର ରଜା, ତା' ହାତରେ ଥିବା ପରବାଥିଲା ଅନ୍ୟ କିଛି ହୋଇ ପାରି ଥାଆନ୍ତା ।

ଜୟରାମ ଦୁଆରବନ୍ଧର ଏପାଟକୁ ଛିଡ଼ାହୋଇ କହିଲା,—ମୁଁ ଯାଉଛି ।

ମିସେସ୍ ପୁରୀ କଳ୍ପନାରୁ ଫେରି ଆସିଲେ, ଜୟରାମକୁ ଦେଖି ପାରିଥିବାର ଅଙ୍ଗୀକାର ଜଣାଇଲେ ଓ କହିଲେ, "ଆଚ୍ଛା" । ତାଙ୍କ ଭଙ୍ଗୀରେ ଥିଲା ଦାତାର ଐଶ୍ୱର୍ଯ୍ୟ ଓ ଉଦାରତା । ମନେ ହେଉଥିଲା ଯେ ସେ କେବଳ ଜୟରାମକୁ ଉତ୍ତର ଦେଉ ନାହାନ୍ତି, ତା'ର କର୍ତ୍ତବ୍ୟର ଶୁଭକାମନା ଜଣାଉଛନ୍ତି ।

ଜୟରାମ ଫେରି ଯାଉଥିଲା । ଏହି ସମୟରେ ମିସେସ୍ ପୁରୀ ତାକୁ ପଛରୁ ଡାକିଲେ । କହିଲେ—"ଶୁଣ୍, ଆରଥର ପୋଟଳ ଖରାପ ପଡ଼ିଲା, ବିନ୍‌ଗୁଡ଼ାକ ବି ଶୁଖିଲା ଥିଲା । ତୁ ଯୋନାଗୁଁଦ୍ ବଜାରକୁ ଯାଉନୁ ? ମିସେସ୍ ମିଶ୍ର କହୁଥିଲେ ଯେ, ସେ ସେଠୁ ଦଶ୍ଟା ବିନ୍ ପାଇଛନ୍ତି, କିଲେ ମୋଟେ ବାରଅଣା—।"

ଜୟରାମ୍ କିଛିଏ ଭାବିଲାପରି ହେଲା ଓ କହିଲା, "ଯୋନାଗୁଁଦ୍ ବଜାର ? ସେ ତ ହେଉଛି ସାଇଁ କଲେଜ ପାଖରେ, ରେଲ୍ ଲାଇନ୍ ସେ ପାଖରେ ।" ସେ ଚାଲିବା ରାସ୍ତାର ଦୂରତା କଳନା କଲାପରି ଲାଗିଲା । ତା' ବାଣୀରେ ପ୍ରଶ୍ନ ଥିଲା,—ସେଠିକୁ ଯିବା କଣ ଦରକାର ?

ମିସେସ୍ ପୁଷ୍ପ ତା' ଗୃହାଣୀକୁ ଅବଜ୍ଞା କଲେନାହିଁ, ସ୍ନେହରେ ଚାହିଁଲେ । ମନେ ହେଉଥିଲା ଯେ, ସେ ତା'କୁ ତା' ନିଜ ଦ୍ୱିଧାର ସମାଧାନ କରିବାକୁ ଦେଉଛନ୍ତି । କେତୋଟି ମୁହୂର୍ତ୍ତ ପରେ ସେ ପଚାରିଲେ "କଣ ଯାଇ ପାରିବୁ ନାହିଁ ?"

ଭର୍ତ୍ସନା ନୁହେଁ, ଆଦେଶ ନୁହେଁ, କେବଳ ସାମାନ୍ୟ ଅବିଶ୍ୱାସ । ଜୟ୍ରାମର ଦ୍ୱିଧା ତୁଟିଗଲା । ସେ ମୁଣ୍ଡ ହଲାଇ ସମ୍ମତି ଜଣାଇଲା । ତା' ମୁଣ୍ଡର ଆଗୁଆ ବାଳ କେରୁଟା ଏ ପାଖରୁ ସେ ପାଖକୁ ଝୁଲିଗଲା ।

ମିସେସ୍ ପୁଷ୍ପ ଜୟ୍ରାମର ଫେନ୍ତ୍ରା ଚେହେରାକୁ ଅନାଇଲେ । ତା'ର ଶ୍ଲେଟ ନିଦା ବେକ ଓ ହାତଗୋଡ଼ର ମାଂସପେଶୀ ତାଙ୍କ ଆଖିରେ ପଡ଼ିଲା । ସେ ସ୍ୱଗତ ଅନୁମୋଦନ କଲେ,—ଟୋକା···ମଜବୁତ୍··· ।

ବିହଂଗମାନେ ଏହି ଦୃଶ୍ୟ ଦେଖୁଥିଲେ । ସେମାନେ ଆଶ୍ଚର୍ଯ୍ୟ ହେଲେ ଓ ସମ୍ମାନର ଭାବ ଦେଇ ମିସେସ୍ ପୁଷ୍ପଙ୍କ ଆଡ଼କୁ ଚାହିଁଲେ । ତା'ର କାରଣ ହେଉଛି ଯେ, ବିହଂଗମାନଙ୍କ ଦୃଷ୍ଟି କୋଣ ନିଆରା । ସେମାନଙ୍କ ମନରେ ଆସିଥିଲା ଯେ, ଜୟ୍ରାମ-ଠାରେ ଦେବତାର ଅଂଶ ଅଛି, କାହିଁକନା ସେ ପାରିବ, ତା'ର ଶକ୍ତି ଅଛି । ସେ ତାତଲା ଭୂଇଁରେ ଏତେ ବାଟ ଚାଲି ଚାଲି ଯାଇ ତାଜା ପରିବା କିଣି ପାରିବ । କିନ୍ତୁ ସେହି ଶକ୍ତିକୁ ପଦଦଳିତ କଲେ ମିସେସ୍ ପୁଷ୍ପ । ଅଳ୍ପକଥା, ସାମାନ୍ୟ ଇଙ୍ଗିତରେ ସେ ତା'ର ଦେବତ୍ୱକୁ ଖଟାଇ ପାରିଲେ । ମହୀୟସୀ ନାରୀ,—ଦେବତାଠୁଁ ବଡ଼ !

ମିସେସ୍ ପୁଷ୍ପ ପୁଣି ଖଟ ଉପରେ ଲୋଟିପଡ଼ିଲେ । ଜୋକ୍ ବହିଟିକୁ ରଖିଦେଇ ଖଟ ମୁଣ୍ଡରେ ଥିବା ଗୋଲ ଟେବୁଲ୍ ଉପରୁ ଖଣ୍ଡେ ମ୍ୟାଗାଜିନ୍ ଆଣି ହାତରେ ଧରିଲେ ।

ମ୍ୟାଗାଜିନ୍‌ଟି କେବଳ ସ୍ତ୍ରୀଲୋକମାନଙ୍କ ପାଇଁ । ଫେସନର ନୂଆ ଢଂଗ, ଝାଳଗନ୍ଧରୁ ରକ୍ଷା ପାଇବା ପାଇଁ ନୂଆ ଉପାୟ, ପ୍ରାଚ୍ୟପାଶ୍ଚାତ୍ୟ ବିଭିନ୍ନ ରନ୍ଧନ କାରସାଦି, ଘରେ ରେଫ୍ରିଜରେଟର୍ ଥିଲେ ହଠାତ୍ ପହଞ୍ଚିଥିବା ଅତିଥିଙ୍କ କିପରି ଚର୍ଚ୍ଚା କରିବାକୁ ହୁଏ ଇତ୍ୟାଦି ଘରକରଣାର ଉପାଦେୟ ତଥ୍ୟ ସେଥିରେ ଥାଏ । ମିସେସ୍ ପୁଷ୍ପ ପୃଷ୍ଠା ଓଲଟାଇଗଲେ । ହଠାତ୍ ସେ ତାକୁ ଛାତି ଉପରେ ରଖି ଅନାଇଲେ ସାମ୍ନାର କାନ୍ଥ ଆଡ଼କୁ ।

ଋଷିମାନଙ୍କ ମୁହଁରେ କଣ ଏମିତିକା ହସ ଥାଏ ? ଓ ଗାଲ କଣ ଏମିତି ଫୁଲିକା ଦିଶୁଥାଏ ?

ବାଉଁଶ ଫ୍ରେମ ଓ ଝୋଟକନା ଉପରେ ଋଷିର ଛବି । ଋଷିର ଫୁଙ୍ଗୁଳା ଦେହ, ବଡ଼ ନିଶୁଆ ମୁହଁ ଓ ମୁଣ୍ଡ ଉପରେ ଶସ୍ୟ ଟୋକେଇ । ମିସେସ୍ ପୁଷ୍ପ ତା'

ଓଠରେ ଥିବା ଈଷତ୍ ହସକୁ ନିଶ୍ଚୟ ଆଗରୁ ଦେଖିଥିଲେ । ଋଷିମାନଙ୍କ ଓଠରେ ହସ ଦେଖିବାକୁ ତାଙ୍କୁ ଯେ ଭଲଲାଗେ ନାହିଁ, ତା' ନୁହେଁ । କିନ୍ତୁ ଆଜ ତାଙ୍କର ଇଚ୍ଛାହେଲା ସମାଲୋଚନା କରିବାକୁ । କାରଣ ତାଙ୍କର ମନରେ ଆସିଲା ଯେ ଜମ୍ବୁରାମ୍ ବଡ଼ହେଲେ ଓ ଗାଁରେ ରହିଲେ ଗୋଟିଏ ଉଚିତ ଧରଣର ଋଷି ହୋଇପାରିବ ।

ଜମ୍ବୁରାମର ମୁହଁ ହସିଲା ନୁହେଁ, ଦରକାର ନ ପଡ଼ିଲେ ସେ ହସେ ନାହିଁ । ତା' ମୁହଁରେ ଅଛି ଟାଣୁଆ ପଣ ଓ ଛପିଲା ରାଗ । ବଡ଼ହେଲେ ସେହି ଟାଣୁଆ ପଣ ତା' ମୁହଁକୁ ରୁଗୁଡ଼ିଆ କରିଦେବ, ଏବଂ ସେ ରାଗ ଆହୁରି ଦବିଯାଇ କପାଳକୁ କୁଞ୍ଚକୁଞ୍ଚିଆ କରିଦେବ । ସେ କଣ ରଖିବ, —କେଜାଣି !

ମିସେସ୍ ପୁରୀଙ୍କୁ ଭବିଷ୍ୟତର ଜମ୍ବୁରାମ୍ କଥା ଭାବିବାକୁ ମଜାଲାଗିଲା । ଏବଂ ତା' ସହିତ ସେ ଠିକ୍ କରିନେଲେ ଯେ ଆର୍ଟର ଋଷିଟି ଉପଯୁକ୍ତ ହୋଇନାହିଁ । ହୁଏତ ସବୁ ଚଷାପୁଅ ଜମ୍ବୁରାମ ପରି ହୋଇ ନ ଥିବେ, ହୁଏତ ହସିଲା ଫୁଲୁକାମୁହାଁ ଋଷି ଥାଇପାରନ୍ତି । କିନ୍ତୁ ଆର୍ଟ୍ର ଋଷି ଏପରି ହେବା ଉଚିତ ନୁହେଁ । ଯେପରି କି ଶ୍ରୀକୃଷ୍ଣଙ୍କ ମୁହଁରେ ବଂଶୀ ନ ଥାଇ କାହାଳୀ ରହିବା କଥା ନୁହେଁ, ମାନିବ ନାହିଁ ।

ସେ କଳ୍ପନାରେ ଛବିଟିକୁ ମନମୁତାବକ ସଜାଇଲେ । ଚକଟକିଆ ଝାଳୁଆମୁହଁ କପାଳରେ ଅସଂଖ୍ୟ ଗାର, ଚେପିଲା ଆଖି, କିନ୍ତୁ ସେଥିରେ ପ୍ରାପ୍ତି ସ୍ୱୀକାର ନାହିଁ । ସତେ ଯେପରି ସେ କାମ କରି କରି ଥକିଗଲଣି, କିନ୍ତୁ ହାରିଯିବାକୁ ଚାହେଁ ନାହିଁ ଓ ସବୁବେଳେ କଣ ପ୍ରଶ୍ନ ପଚାରିବ ବୋଲି ହେଉଛି ।

ସମାଲୋଚନାର ପଥରେ ଆଗେଇ ଯାଇ ମିସେସ୍ ପୁରୀ ଅନ୍ୟ ଆର୍ଟବସ୍ତୁମାନଙ୍କୁ ସଜାଇଲେ,—ଋଷୁଣୀର ମୁହଁରେ ଅଧିକ ସ୍ଥୂଳତା ଆଣିଦେଲେ, ନାଚନ୍ତା ଆଦିବାସୀର ହସକୁ ଆହୁରି ଜଳୁବତ୍ ଚଉଡ଼ା କରିଦେଲେ, ଶ୍ରୀକୃଷ୍ଣଙ୍କ ସିଂହାସନରେ ସାମାନ୍ୟ ବକ୍ରତା ଆଙ୍କିଦେଲେ, ଇତ୍ୟାଦି ।

କଳା-ସମୀକ୍ଷା ସରିଗଲା ପରେ ମିସେସ୍ ପୁରୀ ଆଂଶିକ ହାଇ ମାରିଲେ ଓ ପୁଣି ସେହି ନାରୀ-ମ୍ୟାଗାଜିନ୍‌କୁ ପଢ଼ି ବସିଲେ ।

ବିହଙ୍ଗମାନେ ଅଶ୍ୱସ୍ତ ହେଲେ । ମିସେସ୍ ପୁରୀଙ୍କୁ ଭାବୁକା ରୂପରେ ଦେଖି ସେମାନେ ପ୍ରମାଦ ଗଣୁଥିଲେ, କାଳେ ସେ ଅନ୍ୟ ରକମର ହୋଇଯିବେ । କିନ୍ତୁ ସେମାନଙ୍କ ଆଶଙ୍କାର କାରଣ ନ ଥିଲା । ମିସେସ୍ ପୁରୀ ଭାବନାକୁ ଅନୁଧାବନ କରିବାକୁ ପସନ୍ଦ କରନ୍ତି ନାହିଁ । ସେହି ଫୁଲୁକାଗାଲିଆ ଋଷି ବର୍ଷ ବର୍ଷ ଧରି ବିଦ୍ୟମାନ ରହିଛି, କାନ୍ଥର ସେହି କୋଣଟିରେ ବସା ବାନ୍ଧିଲଣି, ସ୍ଥାନଚ୍ୟୁତ କରି ଲଭ ନାହିଁ ।

ବ୍ୟତିକ୍ରମଶୀଳ ସଂସାରରେ ହାତଦେଇ ନୂଆ ବ୍ୟତିକ୍ରମ ତିଆରି କରିବାରେ କିଛି ବାହାଦୁରି ନାହିଁ ।

ମିସେସ୍ ପୁରି ମ୍ୟାଗାଜିନ୍‌ର ଛବି ଓ ଶିରୋନାମାଗୁଡ଼ିକ ଦେଖିଲେ । ଆଗରୁ କେତେଥର ଦେଖି ସାରିଛନ୍ତି, ତଥାପି ଦେଖିବାକୁ ଖରାପ ଲାଗୁନାହିଁ । ଆଖି ଦେଖି ଯାଉଛି, ଭାବନାର ପରିଶ୍ରମ ନାହିଁ । ବମ୍ବେର ଜଣେ ଆଧୁନିକା ବିଭିନ୍ନ ଷ୍ଟାଇଲ୍‌ର ଶାଢ଼ୀ ପିନ୍ଧି ଓ ବିଭିନ୍ନ ଠାଣିରେ ଗୋଟିଏ କାର୍‌କୁ ଆଉଜି ଛିଡ଼ା ହୋଇଛନ୍ତି···ଘାଲଡ଼୍‌ର ବର୍ଣ୍ଣବିନ୍ୟାସ···କାର୍ଡ୍‌କୁ ବେକ୍‌ରେ ବ୍ୟବହାର କରାଯାଇପାରେ···'ମଧ୍ୟାହ୍ନରେ ପ୍ରେମ' ନାମକ ଗୋଟିଏ ଗପ ।

ସେତେବେଳକୁ ବାରଟା ବାଜି ପନ୍ଦର ମିନଟ୍ । ଘଣ୍ଟା ନ ଦେଖି ମଧ୍ୟ ମିସେସ୍ ପୁରିଙ୍କର ଧାରଣା ହେଲା ଯେ ଦିନ ଅଧାରୁ ବଳି ଗଲାଣି । ସେହି ଧାରଣାର ପ୍ରଭାବରେ ତାଙ୍କ ମନରେ କେତେଗୁଡ଼ିଏ ବିକ୍ଷିପ୍ତ ଭାବନା ବିହରଣ କରି ଗୃହଲଗଲା, ମ୍ୟାଗାଜିନ୍ ଦେଖାରେ ସ୍ଫୂର୍ତ୍ତି ଆସିଲା ନାହିଁ । ଜନ୍ମଦିନ ସୋନାଗ୍ରିନ୍ ବଜାରରେ ଅଧାବାଟରେ ହେବଣି, ପହଞ୍ଚି ଦେଖିବ ଯେ ପୋଟଲ ଅଧିକ ସଢ଼ା, ବିନ୍ ଅଧିକ ଶୁଖିଲା !···ସେ କେଉଁଟା ଫାଇଲ୍ ସାରିବେଣି ଏହା ଭିତରେ ? ଡାଇରେକ୍ଟର୍ ଜେନେରାଲ୍ ହେବାକୁ ଆଉ କେତେବାଟ ରହିଲା ? ଶୀଘ୍ର ହୋଇଯାଆନ୍ତା ଯେ, କିନ୍ତୁ ତାଙ୍କର କହିଲା ପୋଛିଲା ଗୁଣ ନାହିଁ । ଆଉ ଟିକିଏ ସ୍ମାର୍ଟ୍ ହୋଇଥିଲେ— ! ···ପାଖ ଘରୁ ସେ ଗ୍ରେଟିଆ ପିଲାଟା କାନ୍ଦୁଛି, ବୋଧହୁଏ ମାଡ ଖାଉଛି । ତା' ମାଆ ଭାରି ଜୋର୍‌ରେ ମାଡ଼ ମାରେ । ତା' ମାଉସୀ ସମାଜସେବା କରେ, ସବୁବେଳେ ଓ ଅଯଥା ହସୁଥାଏ । ମନେହୁଏ ଯେ ଏ ବେଶି ରାଗେ ବେଶି ମାଡ଼ ମାରେ, କାହିଁକିନା ତା' ଭଉଣୀ ବାହାଘାହା ନ ହୋଇ ସମାଜସେବା କରୁଛି । ଏବଂ ସେ ବେଶି ହସେ, ହସିବାର ଢଙ୍ଗ କରେ କାହିଁକିନା ସେ କାହାକୁ କାହାକୁ ଗାଳି ଦେଇପାରେ ନାହିଁ, ମାଡ଼ ମାରିପାରେ ନାହିଁ ।···ଲଞ୍ଚ ହେବାକୁ ଆଉ ପାଖ ଛଅଘଣ୍ଟା ଅଛି । ଆଜି ଶ୍ରୀବାସ୍ତବଙ୍କ ଘରକୁ ଯିବାର ଅଛି । ମିସେସ୍ ଶ୍ରୀବାସ୍ତବ ସବୁକଥା ଦୃଢ଼ ଭାବରେ କହନ୍ତି, ସତେକି ସେମିତି ନ କହିଲେ କେହି ବିଶ୍ୱାସ କରିବେ ନାହିଁ ଏବଂ ପରି କଥାରେ ନଜର୍ ଦିଅନ୍ତି,—ମୁଁ ଜାଣିଛି ଅମୁକ କହୁଥିଲେ, ମୁଁ ଦେଖିଛି ଅମୁକଙ୍କ ଘରେ, ଶାସ୍ତ୍ରରେ ଅଛି ପରା, ଇତ୍ୟାଦି । ମିସେସ୍ ଶ୍ରୀବାସ୍ତବ ନିହାତି' ଚିଲା ବଡ଼ସ୍ ପିନ୍ଧନ୍ତି··· ।

ମ୍ୟାଗାଜିନ୍ ଦେଖା ସରିଲା । ଭାବନା-ଛବି ସରି ଆସିଲା । ମିସେସ୍ ପୁରି ଉଠିଯାଇ ଟ୍ରାନ୍‌ଜିଷ୍ଟର୍ ରେଡ଼ିଓ ଚଲାଇଦେଲେ । ଏହିକ୍ଷଣି ୟୁରୋପୀୟ କ୍ଲାସିକାଲ୍

ସଙ୍ଗୀତର ସମସ୍ତ । ସେ କ୍ଲାସିକାଲ୍ ସଙ୍ଗୀତରୁ କିଛି ବୁଝନ୍ତି ନାହିଁ, କିନ୍ତୁ ତାଙ୍କୁ ଭଲ ଲାଗେ ।

ଆଜି ମୋଜାର୍ଟ୍, ମୋଜାର୍ଟ ତାଙ୍କୁ ସବୁଠୁଁ ଭଲଲାଗେ । ମନେ ହୁଏ ଯେ ସେ ପକ୍ଷୀ ରାଇଜରେ ବୁଲୁଛନ୍ତି ଓ ପକ୍ଷୀମାନେ ତାଙ୍କୁ କୁରୁକୁରୁ କରୁଛନ୍ତି । ସେ ପୁଣି ବିଛଣାରେ ଶୋଇ ପଡ଼ିଲେ, ନିଷ୍ପନ୍ଦ ହେଲେ ଓ ମନୋଯୋଗ ସହ ସଙ୍ଗୀତ ଶୁଣିଲେ ।

ତତ୍‌ସହ ବିହଙ୍ଗମାନେ ବିଭୋର ହେଲେ ଓ ଭାବିଲେ ଯେ ସେମାନଙ୍କର ଡେଣା କଟି ଯାଇଛି । ସେମାନେ ଗୋଟିଏ ସୀମିତ ଓ ସୁରକ୍ଷିତ ସ୍ୱର୍ଗରେ ଖସି ପଡ଼ିଛନ୍ତି ।

ସେମାନେ ଛଟପଟ ହେଲେ ନାହିଁ । ବରଂ ତାଙ୍କର ମନରେ ସନ୍ଦେହ ହେଲା,—ଏହି କଣ ସଭ୍ୟତାର ସ୍ୱର୍ଗ ? ହୋଇଥିବ । କାହିଁକିନା ଏଠି ଜ୍ଞାନର ଗର୍ବିପଣ ନାହିଁ ଓ ଅଜ୍ଞାନର ଜଡ଼ତା ନାହିଁ । ଅସନ୍ତୋଷ ନାହିଁ, ଉଦ୍ୟମ ନାହିଁ । ଅନୁକମ୍ପା ନାହିଁ, ହିଂସା ନାହିଁ । ବେରସିକତା ନାହିଁ ।

ମୋଜାର୍ଟ୍ ସରିଲା । ମିସେସ୍ ପୁରୀ ଅନ୍ୟମନସ୍କ ଭାବରେ ଦୂରକୁ ଅନାଇଲେ, ଦେଖିଲେ ରେଫ୍ରିଜରେଟର୍ ଉପରେ ଏକୁଟିଆ ମାଛିଟିଏ ବସିଛି ଓ କ୍ରମଶଃ ଆଖି ବୁଜି ଆଣିଲେ ।



# ଲକ୍ଷ ବିହଙ୍ଗ

୧୯୬୮ ମସିହାରେ ମୋର ଦୁଇଟି ବହି ପ୍ରକାଶିତ ହୁଏ, ସାତବର୍ଷିଆ ଦୀର୍ଘ ବ୍ୟବଧାନର କ୍ଷତ ପୂରଣ କଲାପରି । ପ୍ରଥମେ 'ଘରବାହୁଡ଼ା', ତା'ପରେ 'ଲକ୍ଷ ବିହଙ୍ଗ' । ଏହା ଦ୍ୱିତୀୟ ବହିରେ ଥିବା ବାରଟି ଗଳ୍ପର ସର୍ବପ୍ରଥମ ।

ଅନେକ ବନ୍ଧୁ ଓ ସମାଲୋଚକଙ୍କ ମତରେ 'ଭଙ୍ଗାଖେଳଣା' ଓଡ଼ିଆ ଗଳ୍ପସାହିତ୍ୟ କ୍ଷେତ୍ରରେ ଗୋଟିଏ ମାଇଲ୍‌ଖୁଣ୍ଟ । କାହିଁକିନା କଥାଟିଏ କହିବାକୁ ଯାଇ ମୁଁ ଭାବଭାବନାର ପ୍ରବାହକୁ ଏତେ ପ୍ରାଧାନ୍ୟ ଦେଇଛି, ଯାହା ବୋଧହୁଏ ପୂର୍ବରୁ କେହି ଦେଇ ନ ଥିଲେ । କିନ୍ତୁ ଦେଖିବାକୁ ଗଲେ ଗୀତା ବୋଲି ଏତକ ଟିକିଏ ଝିଅ, ତା'ଠାରୁ କେଉଁ ଚିନ୍ତା ବା ଘଟଣାର ଚମକ ଆଶା କରି ହୁଅନ୍ତା ? ଅପରନ୍ତୁ ତା ସାନମନରେ ଯେଉଁ ଭାବଭାବନାର ଚଳାବଉଦ ଖେଳୁଥିଲା, କେବଳ, ତାର ସୁନ୍ଦରପଣକୁ ଫୁଟାଇବା ଛଡ଼ା ମୋର ଅନ୍ୟ ଗତି କଅଣ ଥିଲା ? ତା'ଛଡ଼ା ସେଇ ଗପରେ କିଛି ଗୋଟାଏ ଘଟଣା ଘଟି ନାହିଁ ବୋଲି କହି ହେବ ନାହିଁ, ତୁମ ଆମ ଦୃଷ୍ଟିରେ ତା'ର ମୂଲ୍ୟ ଯେତେ ସାମାନ୍ୟ ହୋଇ ପଛେ । କିନ୍ତୁ 'ଲକ୍ଷ ବିହଙ୍ଗର' ମିସେସ୍ ପୁରୀ କୋଉ ପିଲା ହୋଇଛନ୍ତି ? ସେ କଣ ଇଚ୍ଛା କଲେ ଘଟଣା ଘଟାଇ ପାରି ନ ଥାଆନ୍ତେ ? ଚିନ୍ତାର ଦର୍ଶନ ଶୁଣେଇ ପାରି ନ ଥାଆନ୍ତେ ? ନା କେଉଁ ହିସାବରେ ତାଙ୍କ ମନକଥାର ଗୁଇ-ଆଳୁଅକୁ ସୁନ୍ଦର ବୋଲି କୁହାଯିବ ? ତଥାପି ତାଙ୍କ ଅଳସ ଉପଭୋଗୀ ନିଷ୍କ୍ରିୟତାକୁ ହିଁ ବିହଙ୍ଗମାନେ ବାହାବା କଲେ, ଏବଂ ମୁଁ ସେଇଥାକୁ ନେଇ ଗୋଟିଏ ଗପ ଲେଖିବାର ସାହସ କଲି···ଏହେତୁ ମୁଁ ଓଡ଼ିଆ ସାହିତ୍ୟର ଗପଲେଖାରେ ଗୋଟିଏ

ନିହାତି ଅଶ୍ଳୀଳ, ଅସୁନ୍ଦର, ଏବଂ ନୂଆ କାମ କାଳି ବୋଲି କହିଲେ କିଛି ଭୁଲ୍ ହେବ ? ମୋ ମତରେ 'ଭଙ୍ଗା ଖେଳଣା'ରୁ ବଳି ଏଇ ଘଟଣା ଶୂନ୍ୟ ଚିନ୍ତାଶୂନ୍ୟ ଅଣଗପ ହିଁ ଗୋଟାଏ ଆଖିଦୁରୁଶିଆ ମାଇଲ୍‌ଖୁଣ୍ଟ । ହେଇଠୁଁ ଆମେ ବିଶେଷ ଆଗକୁ ଯାଇ ପାରିଲୁ ନାହିଁ, ସେକଥା ଭିନ୍ନ ।

ଆଗେଇ ଯାଇ ନ ପାରିବାର ମୁଖ୍ୟ କାରଣ ବୋଧହୁଏ ଏଇ ଯେ 'ବିହଙ୍ଗମାନଙ୍କ ଦୃଷ୍ଟିକୋଣ ନିଆରା; ମଣିଷମାନେ ଭିନ୍ନ ଧାତୁରେ ଗଢ଼ା । ଆମେ ଶୁଙ୍ଘୁଁ ଗନ୍ଧ, ଦୁର୍ଗନ୍ଧ, ଧୂଳିଧୂଆଁ ତାତି ହେମାଳ, ଘଟଣାର ଘର୍ଷଣ ଧର୍ଷଣ ଓ କ୍ରନ୍ଦନ···ଏବଂ ଶୋକ । ସେଇ ହେଉଛି ଆମ ସଂସାର, ତା'କୁଇ ନେଇ ଯେତିକି କାବ୍ୟକବିତା ଗପ ଉପନ୍ୟାସ ଲେଖା ହେବା ସ୍ୱାଭାବିକ ଏବଂ ଉଚିତ । ଅବଶ୍ୟ ଆତଯାତ ହେଉଥିବା ସର୍ବସାଧାରଣଙ୍କ ଉର୍ଦ୍ଧ୍ୱରେ ଅଛନ୍ତି ମୁଷ୍ଟିମେୟ ଜ୍ଞାନୀମୁନି, ଯେଉଁମାନେ ତୃପ୍ତ ଏବଂ ଶାନ୍ତ । ସେମାନେ ଆମର ନମସ୍ୟ । କିନ୍ତୁ ତାଙ୍କୁ ନେଇ ଗପ ଲେଖିବା ଦୁଃସାଧ୍ୟ, ଯଦିଓ ଲେଖି ପାରିଲେ ତା'ଠାରୁ ବଳି ଯଶ ବୋଧହୁଏ ଆଉ କିଛି ନାହିଁ ଲେଖକ ପାଇଁ । ଯାହାହେଉ ଜ୍ଞାନୀ-ମୁନିଙ୍କୁ ଖଟେଇ ହେଲା ପରି ନିର୍ଲିପ୍ତ ଅର୍ଥାତ୍ ବୁଦ୍ଧି ଥିଲେ ମଧ୍ୟ ବୁଦ୍ଧି ନ ଖଟେଇ ଉଦ୍ୟମର ପାଖ ଦେଇ ନ ଯାଇ ହିଂସା ବା କରୁଣାର କଷ୍ଟ ନ କରି ନିଜକୁ ସୁଖୀ ବୋଲାଉଥିବା ଏଇ ପରିତୁଷ୍ଟା ମହିଳାଙ୍କ ପରି କେଇଟା ଲୋକ ଅଛନ୍ତି ଯେ ତାଙ୍କୁ ମୂଳ କରି ଗପ ଲେଖା ଯାଇ ପାରିବ ? ଫ୍ରିଜେରେଟରର ଉପରେ ବସିଥିବା ମାଛି ପରି ସେଇ କଳଙ୍କର ଛିଟାକୁ ଏତେ ସମ୍ମାନ କାହିଁକି ?

ପ୍ରଶ୍ନ ଉଠେ—ମିସେସ୍ ପୁରୀ କଣ ସତ ? ନା କାର୍ଟୁନ୍ ? ମୋତେ ପଚାରିଲେ ମୁଁ କହିବି ଯେ ଆମ 'ଉଚ୍ଚ ସମାଜ'ରେ ସମୟକୁ ହତ୍ୟା କରିବାରେ ଲାଗି ପଡ଼ିଥିବା ଅନେକେ ତାଙ୍କୁ ଆଦର୍ଶ ବୋଲି ଗ୍ରହଣ ନ କଲେ ବି ଈର୍ଷା କରିବାକୁ ବାଧ୍ୟ ହେବେ । ତେଣେ ସେ ସଭ୍ୟତାର ଏକ ବିଷମୟ ବିକଳ୍ପ । ଅନାସ୍ଥା, ଅନାସକ୍ତିର ଅପର ପାଖ । ତା'ର ଚରିତ୍ରକୁ ମଧ୍ୟ ଚିହ୍ନି ରଖିବା ଉଚିତ ନୁହେଁ କି ?

ଗପଟି ମାଇଲ୍‌ଖୁଣ୍ଟ ହେଉ ବା ନ ହେଉ ବିଭିନ୍ନ ମହଲରେ ଚହଲ ପକାଇଥିଲା । ଏକାଧିକ ଓଡ଼ିଆ ଗଳ୍ପସଙ୍କଳନରେ ଅନ୍ତର୍ଭୁକ୍ତ ହୋଇଛି ଏବଂ ଓଡ଼ିଆ ପାଠ୍ୟପୁସ୍ତକ ପାଇଁ ଗୃହୀତ ହୋଇଛି । ତା,ଛଡ଼ା ଏହାର ଇଂରାଜୀ ଅନୁବାଦ "A M:ll an Buads Bhubaneswar Review (winter 1968-69) ଏବଂ Times of India Weekly Short Sto y Special (May 6 1973) ଏବଂ ଏହାର ହିନ୍ଦୀ ଅନୁବାଦ "ଲଖୌ ପକ୍ଷୀ ଆଜ କଲ୍ (February 1979) ରେ ପ୍ରକାଶିତ ହୋଇଛି । ଇଂରାଜୀ ଗଳ୍ପଟି ମୋର ଇଂରାଜୀ ସଙ୍କଳନ "De th of on Indian"ର ଅନ୍ତର୍ଭୁକ୍ତ । ଏହାଛଡ଼ା ଅଷ୍ଟ୍ରେଲିଆର ନିଉକାସ୍‌ଲ ୟୁନିଭର୍ସିଟି ଦ୍ୱାରା ରେଡ଼ିଓରେ ପ୍ରସାରିତ ହୋଇଛି । ତଥାପି ଏହାର ଜନପ୍ରିୟତା କେତେକ ପ୍ରକାଶକଙ୍କୁ ସୁହାଇନି ନାହିଁ । ସେମାନଙ୍କ ମଧ୍ୟରୁ Penguins "New writing in India"ର ସମ୍ପାଦକ ଅନ୍ୟତମ । ସେ ଏହାକୁ ସ୍ଥାଣୁ ବୋଲି କହି ମୁଖରଚଞ୍ଚଳ "ଗୋଟିଏ ଲାଲ୍ ସନ୍ଧ୍ୟା" (Red Evening) କୁ ହିଁ ବାଛିଲେ । ମୁଁ ତାଙ୍କୁ ଦୋଷ ଦେଇ ପାରୁ ନାହିଁ ।

କଟକ

୨୮ ଡିସେମ୍ବର ୧୯୮୬



# ବିଧର୍ମୀ

ମୁଁ ବିଧର୍ମୀ ନୁହେଁ । ଏଥିର ପ୍ରମାଣପତ୍ର ଲୋଡ଼ା ନାହିଁ । ଯେ ମୋତେ ଜାଣିଛି, ସେ ଏ କଥା ଅସ୍ୱୀକାର କରିବ । ଏପରିକି ଅଭିରାମ ବାବୁ ନିଜେ କହିଛନ୍ତି ଯେ, ଯେତେ ଯାହା କହିଲେ ମଧ୍ୟ ମୋର ହୃଦୟ ନିର୍ମଳ, ମୁଁ ଭଗବାନଙ୍କୁ ଭଲପାଇ ପାରିବି । ସତକଥା । ମୁଁ ଭଗବାନଙ୍କୁ ଭଲ ପାଇପାରିବି,—ଯଦି ସେ ଅଭିରାମ ବାବୁଙ୍କ ପରି ହୋଇଥିବେ । କିନ୍ତୁ ମୁଁ ଜାଣେ ସେ ତାଙ୍କ ପରି ନୁହନ୍ତି, ସେ କାହାପରି ନୁହନ୍ତି । ମୋଟ ଉପରେ ସେ ଗୋଟାଏ ମିଛ କଥା ।

ଏହି ହେଉଛି ମୋର ଜ୍ଞାନ ଓ ବିଶ୍ୱାସ । ମୁଁ ଆଜି ତାକୁ ବଦଳାଇ ପାରିବି ନାହିଁ । କିନ୍ତୁ ମୁଁ ବିଧର୍ମୀ ନୁହେଁ । ମୋର ଅନୁରାଗ ବେଶି, ଘୃଣା କମ୍ । ମୁଁ କାହାକୁ ହତ୍ୟା କରିପାରିବି ନାହିଁ କଳ୍ପନାରେ ସୁଦ୍ଧା ହତ୍ୟା କରିପାରିବି ନାହିଁ । ମୁଁ ପ୍ରକୃତିର ନୀରବ ସଙ୍ଗୀତ ଓ ଜଗତର ସାନକଥାଗୁଡ଼ିକୁ ଭଲ ପାଏ,—ଅଗଣାରେ ଯେଉଁ ପାଣି ଜମିଛି ସେ କେମିତି ଶୀତେଇ ଉଠୁଛି, ପୁଷି ବିଲେଇ ଟୋକେଇ ଭିତରେ ଶୋଇ ତା' ଦେହ ଗୁନ୍ଦୁଛି, ଫଟା କାନ୍ଥ ଭିତରୁ କଅଁଳିଆ ଓସ୍ତପତ୍ରଟିଏ ଅସ୍ତବ୍ୟସ୍ତ ହୋଇ ଥିରି ଉଠୁଛି, ଯୋଡ଼ିଏ ଘରଚଟିଆ ଚଢ଼େଇ ଖୁମ୍ପାଖୁମ୍ପି ହେଉଛନ୍ତି··· । ମୁଁ ସବୁ ପିଲଙ୍କୁ ଭଲ ପାଏ ।

ମୁଁ ଏତେ ଭଲପାଏ ବୋଲି ତ ଆଜି ଏତେ କଷ୍ଟ ପାଉଛି ! ତଥାପି କିଏ କହିବ ଯେ ମୁଁ ବିଧର୍ମୀ ?

ଅଭିରାମ ବାବୁଙ୍କ ସାଙ୍ଗରେ ବହୁତଦିନୁ ଦେଖା ହୋଇନାହିଁ । ସେ କଣ ମୋ ସାଙ୍ଗରେ ଦେଖା କରିବାକୁ ଚାହୁଁନାହାନ୍ତି ? ନା, ତା' କେବେହେଲେ ହୋଇ ନଥିବ । ମୁଁ ମଧ୍ୟ ତାଙ୍କ ପାଖକୁ ଯାଉନାହିଁ । ତାର କାରଣ ମୋତେ କାମରୁ ଫୁରୁସତ୍ ମିଳୁନାହିଁ । ମୁଁ ଆସନ୍ତା ରବିବାର ଦିନ ତାଙ୍କ ଘରକୁ ଯିବି, ନିଶ୍ଚୟ ଯିବି । ଆଉ ମୁଁ ମୋ ପୁଅକୁ ସାଙ୍ଗରେ ନେଇଯିବି ।

ପୁଅର ନାଲି ବଲ୍‌ଟା ବାଗକବାଟ ଆଡ଼କୁ ଗଡ଼ିଯାଇଛି, ବର୍ଷା ପାଣିରେ ଭିଜୁଛି । ସେ ତା' ଆଡ଼କୁ ଦୃଷ୍ଟି ରଖିଛି । ମୋର ମନେ ହେଲା ସେ ସେହି ବଲ୍‌କୁ ମୂଳ କରି କଣ ଭାବୁଛି, ଭାବନାର ଥଳକୂଳ ପାଉନାହିଁ । ତା' ଭାବନାରେ ମୋ ଦୁଃଖ ରହିଛି. ସେ ତାକୁ ବୁଝିପାରୁନାହିଁ । ମୋର ଇଚ୍ଛାହେଲା ତାକୁ ସବୁକଥା କହିଦେବି । ସେ ଧର୍ମ ଅଧର୍ମ କିଛି ଜାଣେନାହିଁ, ସେ ମୋ ପାଇଁ କାନ୍ଦି ପାରିବ ।

...ପ୍ରାୟ ବର୍ଷେକ ତଳେ କଲିକତାକୁ ଆସିବା ପରେ ମୋର ଅଭିରାମ ବାବୁଙ୍କ ସାଙ୍ଗରେ ଜଣାଶୁଣା ହେବ । ସେ ସେଣ୍ଟ୍ରାଲସରକାରଙ୍କ ଅଧୀନରେ କାମ କରନ୍ତି, କିନ୍ତୁ ତାଙ୍କ ଅଫିସ୍ ଓ ମୋ ଅଫିସ୍ ଲଗାଲଗି,—ଗୋଟିଏ ତିନିମହଲା କୋଠାର ବିଭିନ୍ନ ଅଂଶରେ । ଦିନେ ଲଞ୍ଚ୍ ଛୁଟିବେଳେ ତଳମହଲାର କ୍ୟାଣ୍ଟିନ୍‌ରେ ଗୋଟିଏ ଅଁଠା ଚକଟା ମାର୍ବଲ୍ ଟପ୍ ଟେବୁଲ୍‌ର ଦୁଇପାଖରେ ବସି ଆମେ ଦୁଇଜଣ ପରସ୍ପରକୁ ଚହ୍ନିଲୁ । ସେଦିନ ମୁଁ ପ୍ରଥମେ କ୍ୟାଣ୍ଟିନ୍‌କୁ ଆସିଥାଏ, ଗହଳି ଧୂଆଁ ମଇଳାର ବାତାବରଣ ଦେଖି ଫେରିଯିବାକୁ ଇଚ୍ଛା ହେଉଥାଏ । ଏହି ସମୟରେ ଦେଖିଲି ଯେ ଜଣେ ଭଦ୍ରଲୋକଙ୍କ ସାମନାରେ ଜଳଖିଆ ପ୍ଲେଟ ଥୁଆ ହୋଇଛି ଓ ସେ ଆଖିବୁଜି ପ୍ରାର୍ଥନା କରୁଛନ୍ତି । ପ୍ରାର୍ଥନା ସରିଲା ପରେ ସେ ଭୋଗ ଦେଲେ ଓ ତା' ପରେ ମୋତେ ଦେଖିପାରି ସାହାସ୍ୟ ବଦନରେ କହିଲେ, "ବନ୍ଦେ ।"

ବନ୍ଦ ଭାବଠାରୁ କୌତୂହଳର ମାତ୍ରା ଅଧିକ ଥିଲା । ମୁଁ ପାଖ ଚଉକିରେ ବସି ପଡ଼ିଲି ଓ ଭାବିଲି,—ଏ ମଧ୍ୟ ଗୋଟିଏ ଧର୍ମପାଗଳ ଜୀବ ।

ଏମାନଙ୍କ ପ୍ରତି ମୋର ଘୋର ବିଦ୍ୱେଷ । ତଥାପି ସେଦିନ ତାଙ୍କର ସରଳ ହସ ଓ ଧୀର କଥା ମୋତେ ଆକୃଷ୍ଟ କରିଥିଲା । ମୁଁ ମଝିରେ ମଝିରେ କ୍ୟାଣ୍ଟିନ୍‌କୁ ଆସି ତାଙ୍କ ସହିତ ଲଞ୍ଚ୍ ଖାଇବା ପାଇଁ ରାଜି ହେଲି । ଭାବିଲି ଯେ ଅଧଘଣ୍ଟାର ଅବସରସାଥୀ ହେବା ପାଇଁ ଲୋକଟି ମନ୍ଦ ନୁହେଁ । ଅନ୍ତତଃ ସେ ଅଯଥା ଦେଖାଣିଆ କଥା ଗୁଡ଼ାଏ କହି ବିରକ୍ତ କରିବ ନାହିଁ ।

କ୍ରମଶଃ ମୁଁ ଜାଣିଲି ଯେ ସେ କେବଳ ମହାଧାର୍ମିକ ନୁହନ୍ତି, ସେ ପରମ ଭକ୍ତ । ରେଡ଼ିଓରୁ ରାମଧୁନ୍ ଶୁଣି ମଧ୍ୟ ସେ ଗଦ୍‌ଗଦ ହୋଇ ପାରନ୍ତି । ସେତେବେଳେ ସେ ଅନ୍ୟମନସ୍କ ହୋଇଯାଆନ୍ତି ଏବଂ ତାଙ୍କ ପ୍ରେମ ଠାକୁର ଉଠିଲି ପରି ମନେହୁଏ, ସତେ ଯେପରି ସେ ଗୋଟିଏ ଜୀବନ୍ତ ମୂର୍ତ୍ତିମନ୍ତ ପଥର । ସଚେତନ ହେଲା ପରେ ସେ ଲଜେଇଯାଇ ମୁହଁ ତଳକୁ କରନ୍ତି, ଜଣାଇ ଦିଅନ୍ତି ଯେ ସେ ଭଦ୍ରତା ହାନି ପାଇଁ ଲଜ୍ଜିତ ।

ସେ କୁରୂପ ନୁହଁନ୍ତି, ଅଙ୍ଗଭଙ୍ଗୀ ପ୍ରକୃତିରେ କୌଣସି ଅସ୍ୱାଭାବିକତା ନାହିଁ । ଗୋରା ଦେହ, ଉଚ୍ଚତା ଅଳ୍ପ, ମୁଣ୍ଡବାଳ ଅଧେ ଚନ୍ଦା ହୋଇଗଲାଣି । ସବୁ ଅଫିସରଙ୍କ

ପର ଅଫିସ୍‌କୁ ବ୍ରୁସ୍‌ସାର୍ଟ୍ ପ୍ୟାଣ୍ଟ କିମ୍ବା ସୁଟ୍ ପିନ୍ଧି ଆସନ୍ତି, ପରିଧାନ ସଯତ୍ନ ଓ ପରିଷ୍କାର ଆଏ ଏବଂ ତାଙ୍କର କଥା କହିବାର ଭଙ୍ଗୀ, ହସିବାର ଠାଣି, ଅଙ୍ଗ ସଞ୍ଚାଳନ ଇତ୍ୟାଦିରେ କୌଣସି ମୁଦ୍ରାଦୋଷ ଲକ୍ଷିତ ହୁଏନାହିଁ । ମୋଟ ଉପରେ ତାଙ୍କ ବ୍ୟବହାରରେ ଏପରି କିଛି ନାହିଁ, ଯାହା ମନରେ ଲାଗି ରହିବ, ଭୁଲି ହେବନାହିଁ । କେବଳ ଏତିକି,—ସେ ଭଗବାନଙ୍କୁ ପ୍ରାଣଭରି ଭଲ ପାଆନ୍ତି ଓ ସେହି ଦୁର୍ବଳତାଟିକୁ ଲୁଚାଇ ପାରନ୍ତି ନାହିଁ ।

ସେ ନିଜ ବିଷୟରେ ବିଶେଷ କିଛି ଗପନ୍ତି ନାହିଁ । କିନ୍ତୁ ତାଙ୍କ ବିନୟ ଓ ସୌଜନ୍ୟର ସୁଯୋଗ ନେଇ ମୋର ଇଚ୍ଛା ହେଲା ତାଙ୍କ ବିକାରର ମୂଳକଥା ଜାଣିବି । ପୃଥିବୀର ଅଧିକାଂଶ ଲୋକ ତଥାକଥିତ ଧର୍ମର ଆଗ୍ରହୀ କିନ୍ତୁ, ଭଗବତ୍-ପ୍ରେମର ଏପରି ନମୁନା କ୍ୱଚିତ୍ ଦେଖିବାକୁ ମିଳେ । ଯେଉଁମାନଙ୍କଠାରେ ମୁଁ ଏହି ଭାବ ଦେଖିଛି ସେମାନେ ସାଧୁ ନହୁ ମହାତ୍ମା ବୋଲାନ୍ତି, କିମ୍ବା ସେମାନେ ଗାଁ ଗହଳର ଅଶିକ୍ଷିତ ମଣିଷ । ସେମାନେ ଭିନ୍ନ ଶ୍ରେଣୀର, ଅଭିରାମ ବାବୁଙ୍କ ପରି ନୁହଁନ୍ତି ।

ତେଣୁ ମୁଁ ଦିନେ ତାଙ୍କୁ ଆକ୍ରମଣ କଲି । ସେତେବେଳେ ଆମେ ଚୌରଙ୍ଗୀ ମଇଦାନରେ ଛିଡ଼ା ହୋଇଥିଲୁ । ଉପସ୍ଥିତ ସମସ୍ୟା ଥିଲା କେମିତି ଗୋଟିଏ ଟ୍ରାମ୍‌ରେ ଠାଏ ମିଳିବ ଘରକୁ ଯିବାପାଇଁ । ଅଭିରାମ ବାବୁ ଆକାଶକୁ ଅନାଇ ବର୍ଷାର ଅନୁମାନ କରୁଥିଲେ ।

ମୁଁ ହଠାତ୍ ପଚାରିଲି, 'ଆପଣଙ୍କ ଭଗବାନଙ୍କ ଚେହେରା କେମିତି ?'

ସେ ଟିକିଏ ଆଶ୍ଚର୍ଯ୍ୟ ହୋଇ ମୋ ଆଡ଼କୁ ଅନାଇଲେ । ମୁଁ ମୋର ପ୍ରଶ୍ନକୁ ଉଦ୍ରୋଚିତ କରିଦେଲି, "ମାନେ ଆପଣ କେଉଁ ରୂପରେ ଭଗବାନଙ୍କୁ ଦେଖନ୍ତି ? ବାପା, ମାଆ, ପ୍ରିୟା, ବନ୍ଧୁ, ସନ୍ତାନ ନା ଆଉ କଣ ?

ମୋ ପ୍ରଶ୍ନରେ ସାମାନ୍ୟ ବିଦ୍ରୂପ ଥିଲା ନିଶ୍ଚୟ । କିନ୍ତୁ ସେ ତାକୁ ଅସ୍ୱୀକାର କଲେ । ଖବର ଜଣାଇଲା ପରି ସହଜ ସ୍ୱରରେ କହିଲେ "ମୁଁ ଭଗବାନଙ୍କୁ ଦେଖେ ନାହିଁ । ମୁଁ ତାଙ୍କୁ ଅନୁଭବ କରେ ।" ଏହି ସମୟରେ ଅପେକ୍ଷିତ ଟ୍ରାମ୍ ଆସି ପହଞ୍ଚିଲା । ଓହ୍ଲାଉଥିବା ଲୋକ ବେଶି ନାହାନ୍ତି, ଜାଗା ମିଳିବାର ଆଶାରେ ଆମେ ଦୁଆର ମୁହଁକୁ ଧାଇଁଲୁ ।

ଟ୍ରାମ୍ ଭିତରେ ଖୁନ୍ଦାଖୁନ୍ଦି ହୋଇ ଛିଡ଼ା ହେବାର ସୁବିଧା ମିଳିଲା । ଗୋଟିଏ ହାତ ଉପରେ ରେଲିଂକୁ ମୁଠାଇଥିଲି, ଅପର ହାତ ବ୍ରିଫ୍‌କେସ୍‌କୁ ସମ୍ଭାଳିଥିଲି ଏବଂ ବଳିଷ୍ଠ-ଚଞ୍ଚଳ ଜନତା ମଝିରେ ଦେହ କୌଣସିମତେ ସ୍ଥିର ରହିବାର ଚେଷ୍ଟା କରୁଥିଲି । ଏହି ଅବସ୍ଥାରେ ଅଭିରାମ ବାବୁ ତାଙ୍କର ବକ୍ତବ୍ୟ ଶେଷ କଲେ । କହିଲେ,

"ଅନୁଭବ କରେ ଅର୍ଥ କଣ ଜାଣନ୍ତି ? ମୁଁ ନିଜକୁ ପାଏ, ସମ୍ପୂର୍ଣ୍ଣରୂପରେ ପାଏ । ମନେ ହୁଏ ଯେ ମୋର କିଛି ଅଭାବ ନାହିଁ ।"

ଭିଡ଼ ଭିତରେ ଠେଲି ହୋଇ କଣ୍ଡକ୍ଟର ପଇସା ମାଗିଲା । ଅତୀବ କ୍ଳେଶ ଓ ନିପୁଣତା ସହ ପନ୍ଥା କାଢ଼ି ଦେଲି ବେଳକୁ ଦେଖିଲି ଯେ ଅଭିରାମ ବାବୁ ଅବିଚଳିତ ନିର୍ଲିପ୍ତ ଭାବେ ଛିଡ଼ାହୋଇ ରହିଛନ୍ତି, କଣ୍ଡକ୍ଟର ପ୍ରତି ଭ୍ରୂକ୍ଷେପ ନାହିଁ । ଅଥଚ ସେ ଅକାରଣରେ ହସି ଉଠିଲେ । କହିଲେ, "ଗୋଟାଏ ମଜାକଥା ମନେ ପଡ଼ିଲା । ଦିନେ ମୁଁ ପ୍ରାର୍ଥନାରେ ଆଖି ବୁଜିଥିଲି । ଆଖି ଖୋଲିଲି ବେଳକୁ ଦେଖେ ଯେ ମୋ ଝିଅ ଇନ୍ଦୁ ମୋ ସାମନାରେ ବସି ଆଖି ବୁଜିଛି । ତା' ପରେ ସେ ଆଖି ଖୋଲିଲା ଓ ମୋ ଆଡ଼କୁ ଅନାଇ ତା' ଖଣ୍ଡିଆ ଦାନ୍ତରେ ଟିକିଏ ହସିଦେଲା । ଆଉ କିଛି କଥା ନାହିଁ । ସତେ ଯେପରି ଆମେ ଦୁହେଁ ଗୋପନରେ କିଛି ପାଇ ପାରିଛୁ । ଆଉ କେହି ତାର ଭେଦ ଜାଣିବେ ନାହିଁ ।" ସେ ପୁଣି ହସିଲେ ଓ କହିଲେ "ଇନ୍ଦୁଟା ଚଗଲି । ସେ ମୋତେ ଚିଡ଼ାଏ କିନ୍ତୁ ଭାରି ଭଲପାଏ ।"

ଯଥାକ୍ରମେ ସେ ଜାଣି ପାରିଲେ ଯେ ସେ ଟ୍ରାମ୍ ଟିକେଟ୍ ପାଇଁ ପଇସା ଦେଇ ନାହାନ୍ତି ଓ ନିଜ ବିଷୟରେ ବେଶିଗୁଡ଼ାଏ ଗପି ଦେଇଛନ୍ତି । ତେଣୁ ସେ ପଇସା ଯାଚିଲେ, କ୍ଷମା ମାଗିଲେ ଓ ଦୀର୍ଘକାଳ ପାଇଁ ନୀରବ ହୋଇଗଲେ ।

ମୁଁ ତାଙ୍କୁ ମନେ ମନେ କହିଲି,—ଆପଣଙ୍କ ଦର୍ଶନ ଦୁର୍ବୋଧ ଓ କୁହୁଡ଼ିଆ । ମୁଁ ସେଥିରେ ବିଶ୍ୱାସ କରୁନାହିଁ । କିନ୍ତୁ ମୁଁ ଆପଣଙ୍କୁ କ୍ଷମା କରି ପାରୁଛି କାହିଁକିନା ଆପଣ ଆପଣଙ୍କର ଝିଅକୁ ଭଲ ପାଆନ୍ତି । ସେ ରକ୍ତମାଂସର ପ୍ରାଣୀ, ଭଗବାନ୍ ନୁହେଁ ।

ମୁଁ ତାଙ୍କର ସେହି ଭଗ୍ନଦନ୍ତ ଚଗଲି ଝିଅଟିକୁ ଦେଖିବାର ଅପେକ୍ଷାରେ ରହିଲି ।

...ତା' ନାଁ ଚନ୍ଦ୍ରିକା । ବୟସ ଦଶବର୍ଷ ଖଣ୍ଡେ ହେବ । ଉପର ଦାନ୍ତ ଗୋଟିଏ ଭାଙ୍ଗି ଯାଇଛି । ନାକ ଅଗ ମୁଣ୍ଡୁଳା ପରି ହୋଇ ସାମାନ୍ୟ ଉପରକୁ ଉଠିଛି, ନାକପୁଡ଼ା ବଡ଼ ବଡ଼ । ମୁଣ୍ଡର ପ୍ରଚୁର କଳାବାଳରେ ତେଲ ବୋଳା ହୋଇଛି ଓ ବାଳ ପଛକୁ ଟଣାହୋଇ କୁଣ୍ଡା ହୋଇଛି ଗାଉଁଲି ଝିଅଙ୍କ ପରି । ବେଣୀରେ ନାଲି ରିବନ୍ ଓ ଗୋଟିଏ ଗେଣ୍ଡୁ ଫୁଲ ।

ସେ ଓ ମୋ ପୁଅ ପ୍ରଥମ ଦେଖାରେ ସାଙ୍ଗ ହୋଇଗଲେ । ଏପରିକି କିଛି ସମୟ ପରେ ପୁଅ ତା' ବେଣୀରୁ ଫୁଲ କାଢ଼ି ନେବାର ସାହସ କରିପାରିଲା ଓ ଇନ୍ଦୁ ଅଧା ହସ ଅଧା କାନ୍ଦର ବୈଚିତ୍ର୍ୟ ଦେଖାଇ ତା' ପଛରେ ଗୋଡ଼ାଇଲା ।

ଅଭିରାମ ବାବୁ ସପରିବାରରେ ଆମ ଘରକୁ ଆସିଥାଆନ୍ତି । ଆମେ ଦୁହେଁ ଏହି ଦୃଶ୍ୟକୁ ଉପଭୋଗ କରୁଥିଲୁ ।

ମୁଁ ଅଭିରାମ ବାବୁଙ୍କୁ ପଚାରିଲି, "ତା' ନାଁ ତ ଚନ୍ଦ୍ରିକା! । ତାକୁ ଇନ୍ଦୁବୋଲି କାହିଁକି ଡାକୁଛନ୍ତି ?"

କିନ୍ତୁ ଏହି ପ୍ରଶ୍ନ ବୋଧହୁଏ ତାଙ୍କୁ ଅନେକ ପଚାରିଥିବେ । କାହିଁକିନା ସେ ଗୋଟିଏ ମୁହୂର୍ତ୍ତ ଗପ ଆରମ୍ଭ କରିବାର ବିଳାସରେ ସଜାଡ଼ି ହୋଇ ବସିଲେ ଓ କହିଲେ, "କଥା ହେଲା କଣ କି—ଜନ୍ମରୁ ତା ମୁହଁ ଗୋଲ୍, ଫୁଲୁକା ଗାଲ । ମୁଁ ଓ ତାର ମାଆ ଠିକ୍ କଲୁ ଯେ ତା' ନାଁ ସହିତ ଜନ୍ମର ସମ୍ପର୍କ ଥିବା ଉଚିତ । ସେ ବାଛିଲା ଚନ୍ଦ୍ରିକା ଓ ମୁଁ ବାଛିଲି ଇନ୍ଦୁମତୀ··· ।"

କଥାର ଅବଶିଷ୍ଟ ଅଂଶ ସହଜେ ଅନୁମେୟ । କିନ୍ତୁ ସେ ତାକୁ ବନେଇ-ଚୁନେଇ ବଢ଼ କରି କହିଲେ ସତେଯେପରି ସେ ଗୋଟିଏ ବିଶେଷ ରହସ୍ୟମୟ ଉପାଖ୍ୟାନ ।

କ୍ରମଶଃ ଆମର ଅନ୍ୟ ବିଷୟ ନେଇ କଥାବାର୍ତ୍ତା ହେଲା । ଅଭିରାମ ବାବୁ ତାଙ୍କର ସ୍ୱାଭାବିକ ଅବସ୍ଥାକୁ ଫେରିଆସିଲେ । ସ୍ୱଳ୍ପଭାଷୀ ଶାନ୍ତିପ୍ରିୟ ଅଭିରାମ ବାବୁ । ପୃଥିବୀରେ ସବୁ ଭଲ, କାହାର କିଛି ଦୋଷ ନାହିଁ । ସରକାରଙ୍କ ନୀତିରେ ଭୁଲ୍ ନାହିଁ; ଲୋକମାନଙ୍କ ରାଗ ଅକାରଣ ନୁହେଁ, କିନ୍ତୁ ସବୁ ଠିକ୍ ହୋଇଯିବ । ଅମୁକର ସ୍ୱଭାବ ପ୍ରକୃତରେ ମନ୍ଦ ନୁହେଁ, ବାହାରକୁ ସେମିତି ଜଣା ପଡ଼ୁଛି, ଇତ୍ୟାଦି । କ୍ଷୀଣ ପ୍ରତିବାଦ, ମୃଦୁ ହସ ଓ ସ୍ନିଗ୍ଧ ବାଣୀ ।

ଧାତୁ—ଏ ଲୋକଟାକୁ କଣ କେବେ କିଛି ବାଧେ ନାହିଁ ? ମୁଁ ବିଶ୍ୱାସ କରି ପାରିଲି ନାହିଁ ଏବଂ ଗୋଟିଏ ମୁହୂର୍ତ୍ତରେ ମୋ ମନରେ ହିଂସାର ଭାବ ଆସିଲା, —ଅଭିରାମ ବାବୁ କଷ୍ଟ ପାଆନ୍ତେ କି ! ତାଙ୍କ ଜୀବନରେ ଏପରି କିଛି ଘଟନ୍ତା ଯେଉଁଥିରେ ସେ ବିକଳ ହୋଇ ଆକାଶକୁ ଡାକି ଗୁହାରିନ୍ତେ, କହନ୍ତେ ଯେ ମୋତେ ଆଉ କନ୍ଦାଅ ନାହିଁ, କଷ୍ଟ ଦିଅ ନାହିଁ । ସେହିଦିନଠୁଁ ସେ ବୁଝନ୍ତେ ।

ଯାହାହେଉ ସେହି କ୍ଷଣିକ ଭାବ କଟିଗଲା ଓ ମୁଁ ଲଜ୍ଜିତ ହେଲି । ଭାବିଲି ଯେ ସେ ଧାର୍ମିକ, ତେଣୁ ନିର୍ବୋଧ ଓ ଦୟାମୟ ।

ଏଣେ ପିଲା ଦୁହିଁଙ୍କର ଖେଳ ସରୁ ନଥାଏ । କେତେବେଳେ ପୁଅ ଇନ୍ଦୁ ସାଙ୍ଗରେ ଗୋଡ଼ମାଟିର ଘର ତିଆରି କରୁଥାଏ, ଭୁଲିଯାଉଥାଏ ଯେ ଏ ହେଉଛି ଝିଅମାନଙ୍କ ଖେଳ । ଆଉ କେତେବେଳେ ସେମାନେ ଫୁଟ୍‌ବଲ୍ ଖେଳୁ ଥାଆନ୍ତି । ଇନ୍ଦୁକୁ ବୋଧହୁଏ ସେହି ବଡ଼ ରବର ବଲ୍‌କୁ ଗୋଡ଼ରେ ମାରିବାକୁ ଭଲ

ଲଗୁଥାଏ । ସେ କ୍ଷଣ କ୍ଷଣକେ ବଲ୍‌କୁ କୁଆଡ଼େ ବୋଲି କୁଆଡ଼େ ପିଟି ଦେଇ ପାଟି କରୁଥାଏ—ଗୋ—ଲ୍‌!

ତାଙ୍କ ଖେଳ ସରିଲା ଏବଂ ସମାପ୍ତିରେ ବଜ୍ରବିଦ୍ୟୁତ୍‌ର ଚମକ ଥିଲା । ଇନ୍ଦୁର ବେଗବାନ୍‌ ବଲ୍‌ ପୂଅର ନାକରେ ବାଜିଲା ଓ ଇନ୍ଦୁ ବଡ଼ ପାଟିରେ ହସି ଉଠିଲା । ଅପମାନରେ ଜର୍ଜରିତ ହୋଇ ପୂଅ ତତ୍‌କ୍ଷଣାତ୍‌ ଇନ୍ଦୁର କଣ୍ଢେଇଘରକୁ ଗୋଇଠା ମାରି ଭାଙ୍ଗି ଦେଲା । ଫଳରେ ଦୁହେଁ ତମତମ ହୋଇ ଫେରିଆସିଲେ ତାଙ୍କ ବାପାମାନଙ୍କ ପାଖକୁ—ରାଗ, ଅଭିମାନ ଓ ଅଭିଯୋଗର ଆଡ଼ମ୍ବର ନେଇ ।

କଣ କରିବାକୁ ଦେବ ? ଯଥାବିଧି ସାନ୍ତ୍ୱନା ଓ ତିରସ୍କାର ଦେବାକୁ ହେଲା । ଅଭିରାମ ବାବୁ କେବଳ ଇନ୍ଦୁର ପିଠି ଆପୁଡ଼ାଇ କହୁଥାଆନ୍ତି,—ଆଚ୍ଛା ହେଉ, ଆଚ୍ଛା ହେଉ । କିନ୍ତୁ ଦେଖାଗଲା ଯେ ଉପସ୍ଥିତ କ୍ଷେତ୍ରରେ ଅବସ୍ଥା ସୁଧୁରିବ ନାହିଁ । ଅଭିରାମ ବାବୁ ଘଡ଼ି ଦେଖିଲେ । ମୁଁ ଚଉକିରୁ ଉଠ ଉଠ ହେଲି ।

ଏହି ସମୟରେ ଆମ ଗଳିରେ ସେ ଡାକ ଡାକ ଗଲା,—ପଦ୍ୟ ଓ ପ୍ରଲୋଭନର ଡାକ ।

ଖୋକା ଖେଲ୍‌ବେ···ଖୁକି ଖେଲ୍‌ବେ !

ଖୋକା ଖେଲ୍‌ବେ ।”

ତା’ ସାଙ୍ଗକୁ କଣ୍ଢେଇ ପ୍ରାଣୀମାନଙ୍କର ବିଶୃଙ୍ଖଳ କେଁ କଟର କୁଁ କାଁ— ।

ପୁଅ କାନ ଡେରିଲା । ତା’ଚାହାଣୀ ଉଜ୍ଜ୍ୱଳ ହୋଇଉଠିଲା । କଣ୍ଢେଇବାଲା ! କେତେଥର ସେ ଏହି ବାଟଦେଇ ଯାଇଛି । ପୁଅ ଅଳି କରିଛି କିଣିବ ବୋଲି ଓ ମୁଁ ତାକୁ କହିଛି ଏଗୁଡ଼ାକ ବାଜେ ଜାପାନୀ କଣ୍ଢେଇ, ଝିଅ ପିଲାଙ୍କ କଣ୍ଢେଇ ଇତ୍ୟାଦି । ଆଜି କିନ୍ତୁ ତା’ ମୁହଁରେ ପାଇବାର ଆଗ୍ରହ । ସେ ଥରେ ମୋ ମୁହଁକୁ ଚାହୁଁଥାଏ, ଆଉ ଥରେ ଇନ୍ଦୁର ମୁହଁକୁ । ଆଜି ଖୋକା ଅଛି, ଖୁକି ମଧ୍ୟ ଅଛି । ଆଜି କଣ ବାପା ମନା କରିବେ ? ମନା କରିପାରିବେ ?

ମୋର ଇଙ୍ଗିତ ପାଇଲା ମାତ୍ରେ ସେ ଦାଣ୍ଡ ଦୁଆରେ ହାଜର । ତା ପଛେ ପଛେ କୁତୁହଳୀ ଇନ୍ଦୁ—ରାଗରୁଷା ଭୁଲି ଯାଇଛି ।

“ଘୋଡ଼ା ନେବୁ, ଘୋଡ଼ା ? ଦେଖ୍‌ କେମିତି ଲାଙ୍ଗୁଳ ହଲାଉଛନ୍ତି ।”

“ନାଇଁ ମୋର ଘୋଡ଼ା ଦରକାର ନାହିଁ, ମୁଁ ସେହି ଚଢ଼େଇକି ନେବି, ନାଲି ଥଣ୍ଟ ।”

"ଏଇ ଦେଖ୍ ବେଙ୍ଗ । ଇସ୍ !…"

ଯଥାକ୍ରମେ ମନପସନ୍ଦ ପଶୁ ଓ ପକ୍ଷୀର ଦଳ ଆସିଲେ, କାନ ଅତଡ଼ା ପକାଇ । ପୁଅ ଝିଅ ଖୋକା ଓ ଖୁକୀ ଉଭୟେ ଖୁସି ।

ଫେରିବା ବେଳକୁ ମୁଁ ଇନ୍ଦୁକୁ ପଚାରିଲି, "ତୁ ପୁଣି କେବେ ଆମ ଘରକୁ ଆସିବୁ କହିଲୁ ?" ମାନିନୀ ଗମ୍ଭୀରତାର ଭଙ୍ଗୀରେ କହିଲା, "ସେ ଆଗ ଆସୁ ।" ତଥାସ୍ତୁ—ଏହି ଭାବରେ ପୁଅ ମୁଣ୍ଡ ହଲାଇଲା । ସେ ଦୁହିଁଙ୍କ ମୁହଁରେ ହସ ଥିଲା ।

…କିନ୍ତୁ ଏହାପରେ ସେ ଦୁଇଜଣଙ୍କର ଆଉ ଦେଖା ହୋଇ-ନାହିଁ ।

ମୋର ଅଭିରାମ ବାବୁଙ୍କ ସାଙ୍ଗରେ ପ୍ରାୟ ଦେଖା ହୁଏ । କିନ୍ତୁ ପିଲାପିଲାଙ୍କୁ ନେଇ ତାଙ୍କ ଘରକୁ ଯାଇ ହେଲାନାହିଁ । ପ୍ରଥମେ ମୋର ହେଲା । ତା'ପରେ ସେ ଖରାଦିନେ ଦୁଇମାସ ଛୁଟି ନେଇ ତାଙ୍କ ଗାଆଁକୁ ଗଲେ । ଛୁଟି ପୂରିବାକୁ ଦଶ ପନ୍ଦର ଦିନ ବାକୀ ଅଛି, ଦିନେ ଫୋନ ଆସିଲା—ଅଭିରାମ ବାବୁଙ୍କ କୋମଳ ଅଚଞ୍ଚଳ ସ୍ୱର, —"ନମସ୍କାର, ମୁଁ ଫେରି ଆସିଛି ।" କିଛି ସମୟ ଗପି ସାରିଲା ପରେ ସେ ଅନୁହଙ୍ଗିକ ଭାବରେ କହିଲେ ଯେ, ଇନ୍ଦୁର ଦେହ ଭଲ ରହୁନାହିଁ, ସେଇଥିପାଇଁ ସେମାନେ ଶୀଘ୍ର ଫେରି ଆସିଲେ ।

ମୁଁ ସେଦିନ ଅଫିସରୁ ତାଙ୍କ ଘରକୁ ଗଲି । ଅଭିରାମ ବାବୁ ଓ ତାଙ୍କ ସ୍ତ୍ରୀ ମୋତେ ସାଦର ଅଭ୍ୟର୍ଥନା କଲେ, ସେମାନେ ଆଣିଥିବା ବିଶିଷ୍ଟ ଲଡ଼ୁ ଖଜା ଇତ୍ୟାଦି ଖୁଆଇଲେ ଓ ମୁଁ କାହିଁକି ସ୍ତ୍ରୀ ପିଲାଙ୍କୁ ସାଙ୍ଗରେ ନେଇ ଆସିନାହିଁ ବୋଲି ଅଭିଯୋଗ କଲେ ।

ମୁଁ ଇନ୍ଦୁକୁ ଖୋଜିଲି । ଅଭିରାମ ବାବୁ କହିଲେ ଯେ, ସେ ଶୋଇଛି, ତାକୁ ସାମାନ୍ୟ ଜ୍ୱର । ତାଙ୍କ ସ୍ତ୍ରୀ କହିଲେ, ତା'କୁ ବରାବର ଏମିତି ଜ୍ୱର ହେଉଛି, ସେ ଭଲକରି ଗଣ୍ଡାଏ ଖାଉ ନାହିଁ, ଶୁଖିଯାଉଛି, କଣ ହୋଇଛି କେଜାଣି—। ଅଭିରାମ ବାବୁ ତାଙ୍କର ମୃଦୁ ଧାରାରେ ନା ନା କହିଲେ ଓ ହସିବାର ଚେଷ୍ଟା କଲେ । ଯେପରିକି ତାଙ୍କ ସ୍ତ୍ରୀଙ୍କର ସେପରି କହିବା ଭୁଲ ହୋଇଛି, ସହାନୁଭୂତିର କର୍ତ୍ତବ୍ୟ ଅନ୍ୟ ଉପରେ ଲଦି ଦେବା ଉଚିତ ହୋଇ ନାହିଁ ।

ଅଭିରାମ ବାବୁଙ୍କର ଏହିପରି ଭାବ ପସନ୍ଦ ହେଲା ନାହିଁ । ଇନ୍ଦୁ କଣ ମୋ ଝିଅ ନୁହେଁ ? ମୁଁ ତାକୁ ଦେଖିବି ବୋଲି କହିଲି ।

ଝିଅ ନିଦରେ ଶୋଇଥିଲା । ସେ ଦ୍ରୁତରେ ଶୁଖିଯାଉଛି । ମୁଁ ତା' କପାଳରେ ହାତ ବୁଲାଇ ଆଣିଲି । ବାପମାଆଙ୍କୁ ଆଶ୍ୱାସନା ଦେଲି ଯେ, ସେ ଶୀଘ୍ର ଭଲ ହୋଇଯିବ ।

କିନ୍ତୁ ସେ ଶୀଘ୍ର ଭଲ ହେବ ନାହିଁ । ତା' ଦେହରୁ ଜ୍ୱର ଓହ୍ଲାଇଲା ନାହିଁ । କଲିକତାର ଡାକ୍ତର ପରୀକ୍ଷା କରି କହିଲେ, ତାକୁ ଟାଇଫଏଡ୍ । କହିଲେ ଯେ ତା' ସାଙ୍ଗକୁ ଅନେକ ଗୋଳମାଳିଆ ରୋଗ ଦେଖାଦେଲାଣି, କିନ୍ତୁ କିଛି ଚିନ୍ତା ନାହିଁ ।

ତଥାପି ଅଭିରାମ ବାବୁଙ୍କ ବ୍ୟବହାରରେ କୌଣସି ପରିବର୍ତ୍ତନ ହୋଇଛି ବୋଲି ମନେ ହେଉ ନାହିଁ । ସେ ନିୟମିତ ଭାବରେ ଅଫିସକୁ ଆସୁଛନ୍ତି, କ୍ୟାଣ୍ଟିନ୍‌ରେ ଜଳଖିଆ ଖାଉଛନ୍ତି, ଦେଶବିଦେଶର ଆଲୋଚନା କରୁଛନ୍ତି, ଏବଂ ସମସ୍ତ ଅସମୟରେ ତନ୍ମୟ ହୋଇ ଯାଉଛନ୍ତି । ଇନ୍ଦୁର ରୋଗଶେଯରେ ଇନ୍ଦୁର ମାଆ ଆଖି ଛଳ ଛଳ କଲାବେଳେ ସେ ଝିଅର ମୁହଁକୁ ଚାହିଁ ପିଲଙ୍କ ପରି ହସୁଛନ୍ତି । ପୁଚୁକାଗାଲ ଇନ୍ଦୁ—ତା ଦେହ ଶୁଖି କଣ୍ଟା ହୋଇଗଲାଣି କିନ୍ତୁ ଗାଲର ଚହଲ ଭାଙ୍ଗି ନାହିଁ—ତା'ର ପୁଷ୍ଟ-ପୁଷ୍ଟ ହସର ଉତ୍ତର ଦେଉଛି । ଯେପରି କି ବାପ ଝିଅ ଗୋଟିଏ ଦୁଇଜଣିଆ ଅନ୍ତରଙ୍ଗ ଖେଳ ଖେଳୁଛନ୍ତି । ପ୍ରାର୍ଥନାରେ ଏକାଠି ଆଖିବୁଜି ସାରି ପରସ୍ପରକୁ ଦେଖିଲା ପରି,— ଚୁପଚାପ୍ । ଆମେ ଜାଣିଛୁ ଏକା ଆମେ । ମାଆ କେଉଁଠୁ ବୁଝିବ ?

ଏହି ଆତ୍ମୀୟତାରେ ବିଷାଦ ଅଛି, ସହସ୍ରବାର ଅଛି । କିନ୍ତୁ ଏପରି ଦୃଶ୍ୟ ଦେଖି ମୋର ମନେ ହୁଏ ଯେ ବାପଝିଅ ସୃଷ୍ଟିଛଡ଼ା, ଏମାନଙ୍କ ଦୁଃଖରେ କିଛି ଅଧିକ ଗୁଣ ବା ଦୋଷ ଅଛି, ଯାହା ଆମ ଅନୁଭୂତିର ବାହାରେ । ସତେ ଯେପରି ଏମାନଙ୍କ ଦୁଃଖ ଏତେ ଗଭୀର ଓ ବିଶ୍ୱରୂପୀ ଯେ, ତାକୁ ଦୁଃଖ ବୋଲି କହି ହେବ ନାହିଁ । ସୁନୀଲ ନିଶ୍ଚଳ ମହାସାଗର । ତାର ଆନନ୍ଦ ନାହିଁ କି ଶୋକ ନାହିଁ । କେବଳ ଅଛି ଗୋଟିଏ ଚିରନ୍ତନ ବିଷାଦ । ସେହି ତାର ଉପଲବ୍ଧି ଓ ପ୍ରଶାନ୍ତି ।

ବୋଧହୁଏ ସେଇଥିପାଇଁ ଅଭିରାମ ବାବୁଙ୍କର ଆଖିରେ ପଡ଼ୁନାହିଁ । କେଜାଣି ।

ତେବେ ମୁଁ ଅଭିରାମ ବାବୁଙ୍କ ସ୍ତ୍ରୀଙ୍କୁ ପ୍ରବୋଧନା ଦେଇ ପାରୁଥିଲି । ଦିନେ ସେ କହିଲେ, "ଡାକ୍ତର କହୁଛି ଯେ, ବାରଅଣା ଆଶା ଇନ୍ଦୁ ଭଲ ହୋଇଯିବ ।" ମୁଁ ତାଙ୍କ ଆଶାରେ ମୋର ଆଶିଷ ଦେଲି । କହିଲି, "ସେ ନିଶ୍ଚୟ ଭଲ ହୋଇଯିବ । ବାକି ଚାରିଅଣା ଆମର ପ୍ରାର୍ଥନା ।" ସେ ମୋ ଆଡ଼କୁ ଜଳ ଜଳ ହୋଇ ଚାହିଁଲେ ।

ମୁଁ ତାକୁ ବୁଝାଇ ପାରିଲି ନାହିଁ ଯେ ମୁଁ ଭଗବାନଙ୍କ କଥା କହୁନାହିଁ। ପ୍ରାର୍ଥନାର ଅର୍ଥ ମଣିଷର ଇଚ୍ଛା ଓ ଆକୁଳତା। ତାର କଣ କିଛି ମୂଲ୍ୟ ନାହିଁ ?

...ହଠାତ୍ ମୋ ପୁଅ ସବୁ ଓଲଟପାଲଟ କରିଦେଲା। ତାକୁ ଜ୍ୱର ହେଲା। ତାର ଦୁଇ ଦିନ ପରେ ତା ଦେହସାରା ଫୋଟକା ବାହାରିଲା। ଡାକ୍ତର ନିଃସନ୍ଦେହରେ କହିଲେ ଯେ ଏ ହେଉଛି ବସନ୍ତ, ଏବେଷଣି ସହରରେ ...ରିଆଡ଼େ ଲାଗିଛି।

ମୁଁ ପ୍ରଥମେ ଯେତେବେଳେ ଅଭିରାମ ବାବୁଙ୍କୁ ଏହି ଖବର ଦେଲି, ମୋ ମନରେ ଗୋଟିଏ ବିକୃତ ଗାରିମା ଥିଲା। ମୋତେ ମଧ୍ୟ ଟ୍ରାଜେଡ଼ି ଛୁଇଁଛି—ମୋତେ ସମ୍ମାନ ଦିଅ, ସହାନୁଭୂତି ଦିଅ। ମୁଁ ଅଭିରାମ ବାବୁଙ୍କୁ କ୍ଷମା ମାଗିଲି ଯେ ମୁଁ ତାଙ୍କ ଘରକୁ ଯାଇପାରିବି ନାହିଁ ଓ ତାଙ୍କୁ ମୋ ଘରକୁ ଆସିବାକୁ ବାରଣ କଲି।

କିନ୍ତୁ ଅଳ୍ପଦିନ ମଧ୍ୟରେ ପୁଅର ଅବସ୍ଥା ସାଂଘାତିକ ହୋଇ ଉଠିଲା। ଟ୍ରାଜେଡ଼ିର ଜରିଖୋଲ ଫିଙ୍ଗିଦେଇ ମୁଁ ତାର କଷ୍ଟକୁ ଦେଖିଲି। ଜୀବନ୍ତ ଦେହର କଷ୍ଟ। ତା ଦେହସାରା ଘାଆ ହୋଇ ଯାଇଛି। ସେ କାନ୍ଦୁଛି। ସେହି ଭୟାନକ ରୋଗର ରାକ୍ଷସ ତାକୁ କାଲବାଲ କରୁଛି, ତା' ଦେହରେ ଛୁଞ୍ଚି ଫୋଡ଼ି ଦେଉଛି, ତା' ଦେହକୁ ଜଳନ୍ତା ନିଆଁରେ ପୋଡ଼ୁଛି।

ମୁଁ ତା' ପାଖରେ ବସି ତା'କୁ ଖୁସି କରିବାକୁ ଚାହିଁଲି, ଅଭିରାମ ବାବୁ ଯେମିତି କରନ୍ତି। ତା'ର ମାଆକୁ ସାନ୍ତ୍ୱନା ଦେଲି; କିନ୍ତୁ ମୁଁ ମୋର ଅସ୍ଥିରତାକୁ ସମ୍ଭାଳି ପାରିଲି ନାହିଁ। ମୋର ଇଚ୍ଛା ହେଲା କିଛି ଗୋଟାଏ କରନ୍ତି, କିଛି ଗଢ଼ନ୍ତି ବା ଭାଙ୍ଗି-ଦିଅନ୍ତି। ଯେଉଁଥିରେ ନିଜ ଉପରେ ବିଶ୍ୱାସ ଆସନ୍ତା ଓ ସେହି ବିଶ୍ୱାସକୁ ମୋ ପୁଅର ବେଦନାଆତୁର ମୁହଁରେ ମାଖି ଦିଅନ୍ତି। ଯେଉଁଥିରେ ତା'ର ବଞ୍ଚିବା-ମରିବାରେ ମୂଲ୍ୟ ଆସନ୍ତା।

ଦିନେ ମୁଁ ତା' ଶୁହାଣୀରେ ମରିବାର ଛାଇ ଦେଖିଲି। ଡାକ୍ତରଙ୍କୁ ପଚାରି କିଛି ଲାଭ ନାହିଁ। ସେ ମହାଜ୍ଞାନୀ ପରି କେବଳ ମୁଣ୍ଡ ହଲାଇବେ—ଦେଖିବା, ଅପେକ୍ଷା କର। ସେ ଦିନ ରାତିରେ ମୁଁ ସେ ଅଳୁଅ ଘରେ ଅସଂଖ୍ୟ ଔଷଧ ଶିଶି, ମାଆର ଅସରନ୍ତି କାନ୍ଦଣା, କମଳା ରେପା, ଡାଲିମ୍ବ ମଞ୍ଜିର ପ୍ରଚୁରତା, ନିମ୍ବ ପତ୍ରର ଉତ୍କଟ ବାସନାକୁ ସହିପାରିଲି ନାହିଁ। ଜୀବନକୁ ବଢ଼ାଇବାର ସେହି ତୀବ୍ର ପ୍ରଜ୍ୱଳନ ମୋ ଆଖିକୁ ବିନ୍ଧିଲା। କାହିଁକି ଏହି ନିଷ୍ଠୁର ଅନାବଶ୍ୟକତା ? ଯେ ମରିବ ସେ ବଞ୍ଚୁଛି କାହିଁକି ? ଯେ ବଞ୍ଚୁଛି ସେ ମରିବ କାହିଁକି ?

ମୁଁ ଏକୁଟିଆ ହେବାପାଇଁ ଛାତ ଉପରକୁ ଚାଲିଗଲି । ତାରାଖଚିତ ଆକାଶକୁ ଦେଖିଲି । ପୃଥିବୀରେ ମୋର ସାଙ୍ଗ ମଣିଷମାନଙ୍କୁ ଦେଖିଲି । ଜଣେ ତାର ଗ୍ୟାରେଜ୍‌ରେ କାର୍ ଭିତରକୁ ଟର୍ଚ୍ଚ ପକାଇ କଣ ଦେଖୁଛି । ମୂଲ୍ୟବାନ୍ ଅନୁସନ୍ଧାନ ! ସେ ମୋ ପୁଅ ବିଷୟରେ କିଛି ଜାଣେ ନାହିଁ କି ଜାଣିବାକୁ ଚାହେଁନାହିଁ । ଆଉ କାହାର କାଚଝରକା ଭିତରୁ ଗପ ଓ ହସର ଦୃଶ୍ୟ ଦେଖାଯାଉଛି । ରାସ୍ତାରେ ଗୋଟିଏ ଭର୍ତ୍ତି ଶଗଡ଼ ଗାଡ଼ିକୁ ଦୁଇଜଣ ଟାଣି ଟାଣି ନେଉଛନ୍ତି । ପୋଲିସ୍-ବ୍ୟାରାକ୍‌ର ଫାଟକରେ ଜଣେ ପହରା-ବାଲା ଉପରକୁ ଅନାଇ ତାରା ଗଣୁଛି ।

ପ୍ରାର୍ଥନା ?? ଅସହାୟର ପ୍ରାର୍ଥନା ! ତାହାହେଲେ ମୁଁ ମଧ୍ୟ ସେମାନଙ୍କ ମଧ୍ୟରୁ ଜଣେ,—ଯେଉଁ ଦୁର୍ବଳ ପ୍ରାଣୀମାନେ ବୁଦ୍ଧିରେ ଭଗବାନଙ୍କୁ ଉଡ଼ାଇ ଦିଅନ୍ତି, କିନ୍ତୁ ଏକୁଟିଆ ଭୂତ ଦେଖି 'ପରମ ପିତା' ଙ୍କ ଶରଣ ପଶନ୍ତି ?

ମୁଁ ନିଜକୁ ସଂଯତ କଲି । ପ୍ରାର୍ଥନାର ଲୋଭକୁ ଦମନ କଲି ଏବଂ ସେଥିସହି ଅଭିରାମ ବାବୁ ମନେ ପଡ଼ିଲେ ।

ଅଭିରାମ ବାବୁ ଓ ଇନ୍ଦୁ । ଅଭିରାମ ବାବୁ ମୋ ପରି କଷ୍ଟ ପାଉନାହାନ୍ତି, କାରଣ ସେ ଗୋଟିଏ ମିଛ ଧାରଣାରେ ନିଜକୁ ବୁଡ଼ାଇ ରଖିଛନ୍ତି ।

ସେହିଠୁଁ ମୋ ମନରେ ଆସିଲା ଯେ— । ମୋର ମନରେ ଆସିଲା ଜଣେ କେହି ମରିଲେ ଅନ୍ୟ ଜଣକେ ବଞ୍ଚି ଉଠିବ ।

ମୋର ଇଚ୍ଛାପୂରଣ ନୁହେଁ । ଏ ମୋର ପ୍ରାର୍ଥନା ନୁହେଁ, କାମନା ନୁହେଁ । ମୋର କଣ ତାଙ୍କ ଉପରେ ଅହନ୍ତା ଥିଲା ? ନା ମୁଁ ଇନ୍ଦୁକୁ ଭଲ ପାଏନାହିଁ ? କିନ୍ତୁ ମୋର ବିଶ୍ୱାସ ହେଲା ଯେ ମୋ ପୁଅ ବଞ୍ଚି ଉଠିବ । ଇନ୍ଦୁ ମରିବ । କାହିଁକିନା ଅଭିରାମ ବାବୁ ଧାର୍ମିକ, ତାଙ୍କୁ କିଛି ବାଧିବ ନାହିଁ । ସେମିତି ହେବା ଉଚିତ ।

ଏହି ସମୟରେ କାଚଝରକା ଭିତରର ଲୋକମାନେ ବୋଧହୁଏ ବେଶି ଜୋରରେ ହସିଉଠିଲେ । ରାସ୍ତାଘାଟ ଘର ବାହାରରେ ଥିବା ମୋର ପଡ଼ୋଶୀମାନେ ଅଧିକ ଚଞ୍ଚଳ ହେଲା ପରି ମନେ ହେଲେ । ଚଞ୍ଚଳ ଓ ସ୍ପନ୍ଦନଶୀଳ । ଏପରିକି ମୋତେ ଲାଗିଲା ଯେ ଏହି ଧାଉଁଥିବା କାର୍‌ଗୁଡ଼ିକ ଓ ଏକୁଟିଆ ପୁଲିସ ପ୍ରହରୀ ଏକାଠି ଅଛନ୍ତି ଅଭିନ୍ନ ଗୋଟିଏ ସମ୍ପୂର୍ଣ୍ଣ ଗୀତିକାବ୍ୟର ପଦେ ପଦେ । କେବଳ ମୁଁ ସେଠି ନାହିଁ, ମୁଁ ଅପର ବ୍ୟକ୍ତି । ବିଧର୍ମୀ ।

ପଳାଇଆସିଲି ପରି ମୁଁ ତରବର ହୋଇ ଫେରିଲି ମୋର ସ୍ତ୍ରୀ ପିଲାଙ୍କ ପାଖକୁ । ମୁଁ ମୋ ପୁଅ ପାଖରେ ବସିଲି, ଖଟ ଉପରେ । ଖଟର ଆର ପାଖରୁ ତା'ର ମାଆ କ୍ଲାନ୍ତଚାହାଣୀରେ ମୋ ଆଡ଼କୁ ଅନାଇଲେ । କହିଲେ 'କୁଆଡେ ଯାଇଥିଲ ? ଫୋନ୍ ଆସିଥିଲା ଏହିକ୍ଷଣି । ଅଭିରାମ ବାବୁ ।”

"କଣ କହିଲେ ?"

ମୋର ଆଶଙ୍କା ଓ ଉଦ୍‌ବେଗ ତାଙ୍କ ପାଖରେ ପହଞ୍ଚି ପାରିଲା ନାହିଁ । ସେ ପୂର୍ବବତ୍ ନିର୍ଲିପ୍ତ ଓ ବିରକ୍ତ ଭଙ୍ଗୀରେ କହିଲେ, "କିଛି ନାହିଁ । ପୁଅ କଥା ପଚାରୁ-ଥିଲେ । ଆଉ କହିଲେ ଯେ ଇନ୍ଦୁର ଅବସ୍ଥା ପୁଣି ଖରାପ ଆଡ଼କୁ ଯାଉଛି··· ।"

ମୋର ଆଉ ବିଶେଷ କିଛି କହିବାର ନାହିଁ । ଇନ୍ଦୁର ଶେଷଦିନ ମୁଁ ଯାଇ ପାରିଲି ନାହିଁ । ମୋର ସ୍ତ୍ରୀ ଯାଇଥିଲେ । ସେ କହିଲେ ଯେ, ଅଭିରାମ ବାବୁ କାନ୍ଦୁଥିଲେ କି ନାହିଁ ଜାଣି ହେଲା ନାହିଁ । ତେବେ ସେ କୁଆଡ଼େ କେତେସମୟ ଗୋଟିଏ ଘରେ କବାଟ ବନ୍ଦକରି ଏକୁଟିଆ ରହିଥିଲେ । ସେଠୁ ବାହାରିଲା ବେଳକୁ ତାଙ୍କ ଆଖିରେ ଲୁହର ଚିହ୍ନମାତ୍ର ନ ଥିଲା । ସେ ଦେଖାଯାଉଥିଲେ ଦରୁଦିନ ପରି ।

ମୁଁ ଠିକ୍ ଭାବିଥିଲି । ତେଣୁ ମୋର ଅନୁଶୋଚନାର କୌଣସି କାରଣ ନାହିଁ ।

କିନ୍ତୁ କେହି କଣ ମନେ କରୁଛି ଯେ, ଏ ମୋର ଦୁଃଖ ନୁହେଁ, ଦୁଃଖର ବିଳାସ ? ଆପଣା ସୁଖ ସହି ନ ପାରିବାର ଛଳନା ? ଏହିକ୍ଷଣି ସେ ଏ ବାଟେ ଡାକ ଡାକ ଆସିବ । କିମ୍ବା ହୁଏତ ନ ଆସିପାରେ । ହେଲେ ତା'ର ସ୍ୱର ମୋତେ ଶୁଭି ଯାଉଛି, ଛଟପଟ କରୁଛି, -ଖୋକା ଖେଲ୍‌ବେ···ଖୁକ୍‌ୁ ଖେଲ୍‌ବେ ।

ମୁଁ ତା'ଠୁ କିଛି ହେଲେ କିଣି ନାହିଁ କି କିଣିବ ନାହିଁ ।

*

# ବିଧର୍ମୀ

ମୁଁ ଏଇ ଗପଟିକୁ କେମିତି ଲେଖିଲି ? କେମିତି ଲେଖି ପାରିଲି ? ଦୁଇଟି ଭିନ୍ନ ଭିନ୍ନ ପ୍ରଶ୍ନ । ମୁଁ ଆଜିଯାଏ ପହିଲି ପଶ୍ନର ଉତ୍ତର ଦେଇପାରି ନାହିଁ । ଦ୍ୱିତୀୟର ଉତ୍ତର ଦେବାପାଇଁ ଚେଷ୍ଟା କରିଛି, କିନ୍ତୁ ମୋର ଆଶଙ୍କା ହୋଇଛି ଯେ ସୂକ୍ଷ୍ମ ପାଠକପ୍ରବର ମୋର ଉତ୍ତରକୁ ଗ୍ରାହ୍ୟ କରିବେ ନାହିଁ । ମୋତେ ପ୍ରକୃତରେ ବିଧର୍ମୀ ବୋଲି ଠଉରେଇବେ ।

ମୋର ଅଧିକାଂଶ ଗଳ୍ପର ଗୋଟିଏ କିମ୍ବା ବିଭିନ୍ନ ଅନୁଭୂତ ତଥା ପରିଲକ୍ଷିତ ଘଟଣା-ଚରିତ୍ରର ରଙ୍ଗରୂପ ମୋ ଆଖିକୁ ଦିଶି ଯାଏ । ମୋର ସୃଜନଶୀଳ ମନ ଅର୍ଥାତ୍ ସତମିଛର କାରଖାନାରେ ତା'କୁ ମୁଁ କେମିତି ଗୋଟିଏ ଆଖିଦୁରୁଶିଆ 'ସତ କଥା'ର ଜୀବନ ଦେଇ ପାରିଲି, ଏଇ ବିସ୍ମୟ ଓ ବାହାଦୁରି ମୋତେ ବହୁବାର ଉଲୁଦେଇଛି, ସତେକି ମୁଁ ବୋଲି ତା'ର ଭେଦ ଜାଣିଛି, ମୁଁ ବୋଲି ପାରିଲି । ତେଣୁ ବାଗ୍‌ଦେବୀ ବୋଧହୁଏ ମୋର ଗର୍ବ ସହି ପାରିଲେ ନାହିଁ । 'ବିଧର୍ମୀ' ପରି ଏମିତି କେତେଗୁଡ଼ିଏ ଗପ ଗଢ଼େଇଲେ ମୋ ହାତରେ ଯେ ମୁଁ ମୋଟେ ବୁଝି ପାରିବି ନାହିଁ ତା'ର ଆଦିମୂଳ କେଉଁଠି, କିଏ ମୋର ଅଭିରାମ ବାବୁ, କିଏ ମୋର ଇନ୍ଦୁ, କାହିଁକି ବା ଏଇ (ଅଣ) ଆଧ୍ୟାତ୍ମିକ ପାପ ଓ କ୍ରନ୍ଦନ । କଲିକତା ସହର, ଅଫିସ କ୍ୟାଣ୍ଟିନ୍, ଟ୍ରାମ୍‌ଗହଳି ଇତ୍ୟାଦି ପରିବେଶର ସାମାନ୍ୟତାକୁ-ଛାଡ଼ି ମୋର କିଛି ମନେ ପଡ଼ୁନାହିଁ । ମନର ଅଚେତନ-ଅବଚେତନରେ କେଉଁଠି କଣ ଛପିଥିବ ଯେ ! କିନ୍ତୁ ତା'କୁ ଦେଖିବ କେମିତି ? କାହାର ସାଧ ଅଛି ମୋତେ ଦେଖେଇ ପାରିବ ?

କିନ୍ତୁ ମୁଁ ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେବାକୁ ଚାହେଁ । ମୋତେ କୁହନ୍ତୁ ନାହିଁ ଯେ ବିଧର୍ମୀ ହୁଏ ବା ନ ହୁଏ ମୁଁ ଅତ୍ୟନ୍ତ ଦୁଷ୍ଟ ଏବଂ ଦୁଃଖି, ସେଥିପାଇଁ ଏପରି ଏକ ବିକୃତ ଭାବନାର ଝଲକ ମୋ ମନକୁ ଆସିଲା, ପରିପିଲାଟିକୁ ନିଷ୍ଠୁର ନିୟତି ବନାମ ଠାକୁରଙ୍କ ପାଖରେ ସଁପି ଦେଲି ମୋ ପିଲାଟି ବଞ୍ଚିବ ବୋଲି । ଯଦିଓ ମୁଁ ଠାକୁରଫାକୁରଙ୍କୁ ବିଶ୍ୱାସ କରେ ନାହିଁ, ଏବଂ ଯଦିଓ ମୁଁ ସେଇ ପରପିଲାଟିକୁ ଏତେ ଭଲପାଏ ··· ।। ମୋର କେବଳ ଗୋଟିଏ ଉତ୍ତର—ଏଇ ନିଉଚ୍ଛୁଣା ମଣିଷମନକୁ ବିଶ୍ୱାସ ନାହିଁ । ସ୍ୱାର୍ଥର ତୁଷ୍ଟି ପାଇଁ ସେ ଯେ କେବଳ ଜାଣିଶୁଣି ତଥାକଥିତ ପାପ କରେ ତା' ନୁହେଁ, ସେ ତା'ର ଅଜାଣତରେ, ସ୍ୱପ୍ନରେ, ଦୁଃସ୍ୱପ୍ନରେ, ଅଚିନ୍ତିତ ଭାବନା କଳ୍ପନାରେ କେତେ କଣ ପାପ କରିଯାଏ ତା'ର ସୀମା ନାହିଁ । କେତେ ପ୍ରିୟଜନଙ୍କ ହତ୍ୟା କରେ ଭଗବାନ୍ ଜାଣନ୍ତି । କିନ୍ତୁ ମୋ ପରି ଜଣେ ଅଧେ ଆତ୍ମ-ସଚେତନ ସମ୍ବେଦନଶୀଳ ଦୁର୍ଭାଗା ମିଳିବେ ଯେଉଁମାନେ ନିଜ ପାପର ଛାଇକୁ ଦେଖି ପାରନ୍ତି, ତା'ର ଯଥାଯୋଗ୍ୟ ସଫେଇ ଦେଇ ପାରନ୍ତି ନାହିଁ, ଏବଂ ମିଛୁଟାରେ ଜଳନ୍ତି । ସେମାନଙ୍କୁ କଣ କେବଳ ବିଧର୍ମୀ ବୋଲି ପଡ଼ଡ଼େଇ ଦେଲେ କଥା ସରିଲା ? ଈଶ୍ୱରଙ୍କ କରୁଣା, ଶରଧା ବାଲିରୁ ମୁଠାଏ ନ ହେଲେ ମଧ୍ୟ କାଣିଚାଏ କଣ ତାଙ୍କର ପ୍ରାପ୍ୟ ନୁହେଁ ?

ବିଧର୍ମୀର "ମୁଁ" କୁ ଠଉରେଇ ପାରୁ ନାହିଁ କି ନା, ମୁଁ ତା'କୁ ଚିହ୍ନେ । ଏବଂ ମୋର ବିଶ୍ୱାସ ଯେ ଆପଣ ମଧ୍ୟ ଚିହ୍ନିବେ ଓ ତା'କୁ ନିଜଗୁଣରେ କ୍ଷମା କରିବେ । ଆପଣା ହୃଦୟର ମନ୍ଥନକୁ ମାନି ନେଲେ ହେଲା ।

ଗପଟି ପାଠକ ମହଲରେ ବିଶେଷ ଆଦୃତ ହୋଇ ପାରିଛି । ମୁଁ ମଧ୍ୟ ଏହାକୁ ଉଚିତରୁ ଅଧିକ ଭଲ ପାଏ, କାରଣ ଏଥିରେ ଲେଖକର ଚତୁରତା ବା ପ୍ରଗଲ୍‌ଭତା ନାହିଁ ବୋଲି ମନେ ହୁଏ । ବରଂ ନିଜେ ହାରିଗଲା ପରି ଲାଗେ । ଗପଟି ଏକାଧିକ ଗଳ୍ପ-ସଂକଳନରେ ସ୍ଥାନ ପାଇଛି । ଏହାର ସ୍ୱକୃତ ଇଂରେଜୀ ଅନୁବାଦ 'Godlen' ମୋର ଇଂରାଜୀ ସଂକଳନ 'Death of an Indian' ଏବଂ Indian Council of Cultural Relationsଙ୍କ ଦ୍ୱାରା ପ୍ରକାଶିତ 'Modern Indian

Short Stories Vol IV' 'ରେ ସନ୍ନିବେଶିତ ହୋଇଛି । ଏହାଛଡ଼ା ଗୌହାଟୀରୁ ବାହାରୁଥିବା ବିଶିଷ୍ଟ ଇଂରାଜୀ ଦୈନିକ ପତ୍ରିକା 'Sentinel' ର ରବିବାର ସଂଖ୍ୟା (ଜୁନ୍ ୧୫ ୧୯୮୬) ରେ ପୁନଃ ପ୍ରକାଶିତ ହୋଇଛି । ସର୍ବଶ୍ରୀ କମଳକାନ୍ତ ଓ ଲୀଳାବତୀ ମହାପାତ୍ରଙ୍କ ଦ୍ୱାରା ରଚିତ ଏହାର ଅନ୍ୟ ଗୋଟିଏ ଇଂରାଜୀ ଅନୁବାଦ "The Atheist' ମୋର ଦ୍ୱିତୀୟ ଇଂରାଜୀ ସଂକଳନ "Indian peacock and other stories ଏଇ ସ୍ଥାନ ପାଇଛି । ଏବଂ ଶ୍ରୀମତୀ ବର୍ଷା ଦାସଙ୍କ ଦ୍ୱାରା ରଚିତ ଏହାର ଗୁଜରାଟି ଅନୁବାଦ 'ବିଧର୍ମୀ' ଗୁଜରାଟି ପତ୍ରିକା 'ଅଭିନବ ଭାରତୀ' (ଜୁନ୍ '୧୭୯) ରେ ପ୍ରକାଶିତ ହୋଇଛି ।

ଭୁବନେଶ୍ୱର

୨୪ ସେପ୍ଟେମ୍ବର ୧୯୮୬)



# ମୁଁ ପାରିବ

ସେ ପ୍ରଥମେ ହାତଯୋଡ଼ି ନମସ୍କାର କଲେ । କିନ୍ତୁ ତାଙ୍କ ମୁହଁରେ ଗୋଟିଏ ଦାମ୍ଭିକତା ଥିଲା, ସେଥିରୁ ମନେ ହେଉଥିଲା ଯେ ସେ ପ୍ରାର୍ଥୀ ନୁହନ୍ତି । ମୁଁ ତାଙ୍କୁ ପାଖ ଚଉକିରେ ବସିବା ପାଇଁ ଅନୁରୋଧ କଲି ।

ତାଙ୍କର ରୁକ୍ଷ ଚେହେରା ଓ ଶୁଷ୍କ ମୁହଁ । ସେ ରୁକ୍ଷତାରେ ଦୈନ୍ୟ ନାହିଁ, ଅପରର କ୍ରୋଧ ଥିଲା ପରି ଲାଗୁ ନାହିଁ । ଧାରଣା ହେଉଛି ଯେ ରୁକ୍ଷତା ତାଙ୍କର ନିଜସ୍ୱ,—ପାହାଡ଼ର ପଥରଗୁଣ୍ଡ, ଜଙ୍ଗଲର ଅସପମ । ତାକୁ ସାଉଁଳିବାର, ସଜାଇ-ବାର ଦୁଃସାହସ କାହାର ନାହିଁ ।

ତାଙ୍କର ମୁଣ୍ଡବାଳ କହରା, ଗୋଟିଗୋଟିକିଆ; ବୋଧହୁଏ ତେଲ କମ୍ବା ନିମ୍ ଲାଗିନାହିଁ କେବେହେଲେ ଏବଂ ମନେ ହେଉଛି ଯେ ସେହି ରକ୍ଷୀଗଣ ସଦଳବଳେ ଓ ଅଦମ୍ୟ ଉତ୍ତେଜନାରେ ଉଠି ଆସିଛନ୍ତି ତାଙ୍କ ବଡ଼ ମୁଣ୍ଡର ପହରା ଦେବାପାଇଁ । ଆଗନ୍ତୁକ ଥରେ ପ୍ରଚୁରଭାବେ ହାତ ବୁଲାଇ ଆଣିଲେ, ତାଙ୍କ ଘଞ୍ଚ ଆଖିପତାର ଦୃଷ୍ଟି ମୋ ଆଡ଼କୁ ଦେଲେ, ଓ କହିଲେ, "ମୁଁ ଆପଣଙ୍କୁ ଜାଣିଛି ।"

ଗୃହାଣୀରେ ଅସାଧାରଣ ଏକାଗ୍ରତା । ଯେପରିକି ସେ ତୁମ ସମ୍ପୂର୍ଣ୍ଣ ମନର ଉତ୍ତର, ପ୍ରତିକ୍ରିୟା ଗ୍ରହାନ୍ତି । ଅନ୍ୟମନସ୍କ ହୋଇଯିବାର ଉପାୟ ନାହିଁ ।

ହୁଏତ ମୁଁ ତାଙ୍କୁ ଦବେଇ ନେଇ କହିପାରି ଥାଆନ୍ତି,—କୁହନ୍ତୁ, ଯାହା କହିବାର ଅଛି ଶୀଘ୍ର କୁହନ୍ତୁ । କିନ୍ତୁ ମୁଁ ସେମିତି କହିଲି ନାହିଁ । କାରଣ ମୋର ମଧ୍ୟ ତାଙ୍କୁ ଜାଣିବାର ଇଚ୍ଛା ହେଲା ।

ମୁଁ ସିଧାସଳଖ ତାଙ୍କର ନାଁ ଗାଁ ପଚାରିଲି ନାହିଁ । ତା'ଠାରୁ ଭଲ ହେବ ମୁଁ ତାଙ୍କ କଥା ଶୁଣିଯିବି; ଧୀରେ ଧୀରେ ତାଙ୍କ ଉଦ୍ଦେଶ୍ୟ ଓ ପରିଚୟ ଫୁଟିଉଠିବ ।

ସେ କହିଲେ "ମୁଁ ଆପଣଙ୍କର ସୁନାମ ଶୁଣିଛି । ମୁଁ, ମୁଁ ଶୁଣିଛି ଆପଣ କେମିତି ଖଟ୍ଖଟ୍ରେ ଗାଁଗଣ୍ଡା ବୁଲୁଛନ୍ତି, ଲୋକମାନଙ୍କ ଅଭାବ ଅସୁବିଧା ବୁଝୁଛନ୍ତି । ଏ ଅଞ୍ଚଳକୁ ଏମିତିକା ଅଫିସର ଆଗରୁ କେହି ଆସି ନ ଥିଲେ ।"

ମୁଁ ନିଜ ପ୍ରଶଂସା ଶୁଣି ଟିକିଏ ଅପ୍ରତିଭ ହୋଇଗଲି । ଏହି ଦିଗରେ ଆଉ କିଛି କହିବାକୁ ବାରଣ କରିବାକୁ ଯାଉଛି, ଏହି ସମୟରେ ଦେଖିଲି ଯେ ତାଙ୍କ ମୁହଁ ହଠାତ୍ ଭାବାକ୍ରାନ୍ତ ହୋଇଗଲା । ସେଥିରେ ସନ୍ଦେହ ନିରାଶା ଓ ପ୍ରଶ୍ନବାଚକର ଚିହ୍ନ । ସେ ଖସି ଆସିଥିବା ଏଣ୍ଡି ଚଦରଟିକୁ କାନ୍ଧ ଉପରକୁ ନେଲେ । ଟେବୁଲ ଉପରେ ଥିବା ଗୋଟିଏ ପେପର୍‌ୱେଟ୍‌କୁ ଦୁଇହାତରେ ମୁଠେଇ ଧରିଲେ । ମୁଁ ଭାବିଲି ଯେ ସେ ସମୟ ନେଉଛନ୍ତି, ତାଙ୍କ ମନକଥା ମୋତେ କହିବେ ।

ତାଙ୍କର ରୁକ୍ଷ ପ୍ରଶସ୍ତ ମୁହଁ ପାଖେଇ ଆସିଲା । ତାଙ୍କ ସ୍ୱଚ୍ଛ ଚାହାଣୀ ମୋର ସମଗ୍ର ବ୍ୟକ୍ତିତ୍ୱକୁ ମାପଚୁପ କଲା ପରି ମନେ ହେଲା ? ତା'ପରେ ସେ ଧୀର ଗଳାରେ କହିଲେ, "କିନ୍ତୁ ଆପଣ ପାରିବେ ?"

ତାଙ୍କର ଆନ୍ତରିକତା ମୋତେ ବାଧିଲା । ମୋତେ ବାଧିଲା ଯେ ସେ କେବଳ କହିବା ପାଇଁ କହୁନାହାନ୍ତି, ଢଙ୍ଗ କରୁନାହାନ୍ତି । ମୋର ରାଗିବାକୁ ଇଚ୍ଛା ହେଲା । ସେ କିଏ ? ମୋ ବାପା, ନା ମୋ ନେତା ?

ତା'ପରେ ସେ ଚଉକିରେ ଆଉଜିଗଲେ ଓ ହତାଶ ଭଙ୍ଗୀରେ କହିଲେ, "ଆପଣ ପାରିବେ ନାହିଁ ।"

ମୋତେ କଥାଟା ବୁଝିବାକୁ ସମୟ ନ ଦେଇ ସେ କହିଲେ, "ଆପଣଙ୍କର ବଳ ବୟସ ଅଛି, ଉତ୍ସାହ ଅଛି । କିନ୍ତୁ ଏ ଦେଶର ପାପ ହଜାର ହଜାର ବର୍ଷର ବୁଢ଼ା, ସେ ସହଜେ ଚଳିବ ନାହିଁ । ବୁଦ୍ଧଙ୍କଠାରୁ ଆରମ୍ଭ କରି ଗାନ୍ଧିଜୀ ପର୍ଯ୍ୟନ୍ତ କେତେ ମହାତ୍ମା ଚେଷ୍ଟା କରିଯାଇଛନ୍ତି, କିନ୍ତୁ ସେ ଅଥର୍ବ ବୁଢ଼ାର କିଛି କ୍ଷତି ହୋଇନାହିଁ । ସେ ସେମିତି ବସି ରହିଛି, ନିର୍ଲଜ୍ଜ ମୁହଁରେ ହସୁଛି ଓ କହୁଛି, ମୁଁ ଅମର ବୁଢ଼ା ହେବି, ଅମର ବଞ୍ଚିବି । ···ଆପଣ ପାରିବେ ନାହିଁ । ସେ ପାପ ଆମ ସମସ୍ତଙ୍କର ପାପ । ସ୍ୱାର୍ଥପରତା ।"

ସ୍ୱାର୍ଥପରତା । ମୋର ମନେ ହେଲା ସେହି ଶବ୍ଦର ପ୍ରତିଘାତ ମୁଁ ଶୁଣି ପାରୁଛି । ମୋର ଅଫିସ୍-ଟେବୁଲ, ନିଷ୍ପତ୍ତି ଅପେକ୍ଷାରେ ପଡ଼ି ରହିଥିବା ଫାଇଲ୍, କାଗଜ କଲମ, ଡେସ୍କକ୍ୟାଲେଣ୍ଡର୍, ମୋର ହାକିମଗିରିର ସମସ୍ତ ପ୍ରତୀକ ସେହି ଶବ୍ଦରେ ପ୍ରତିଧ୍ୱନିତ ହେଉଛନ୍ତି । ଆତ୍ମରକ୍ଷାର ପ୍ରବୃତ୍ତିରେ ମୁଁ ଗୋଟିଏ ସୁଲଭ ଇଂରେଜି ଢ଼ଙ୍ଗ

କହିଲି—ଓ୍ୱେଲ ! ଅର୍ଥାତ୍ ତାଙ୍କ କଥା ସତ, ସେଥିପାଇଁ ଆମେ ସମସ୍ତେ ଦାୟୀ,—କିନ୍ତୁ କଣ କରାଯିବ ?

ସେ ପୁଣି କହିଲେ, "ସ୍ୱାର୍ଥପରତା ଆମର ଅସ୍ଥିମଜ୍ଜାଗତ । ବିଦେଶୀ ଶାସକଙ୍କୁ ତଡ଼ିବା ପାଇଁ ଆମେ କିଛିଦିନ ଏକାଠି ହୋଇଥିଲୁ । ଆପଣା ସ୍ୱାର୍ଥ ଭୁଲିଯାଇ ଦେଶ ଓ ଦଶର ମଙ୍ଗଳ ପାଇଁ କଷ୍ଟ ସହିଥିଲୁ । କିନ୍ତୁ ବର୍ତ୍ତମାନ ମନେ ହେଉଛି ଯେ, ଆମେ ଏକାଠି ହୋଇ ନ ଥିଲୁ, ଆମର ସ୍ୱାର୍ଥଗୁଡ଼ିକ ସବୁ ଏକାଠି ହୋଇଥିଲା । ଆମର ବଡ଼ପଣ କେବେ ନଥିଲା କି ନାହିଁ ।"

ମୁଁ ମୋର ସିଗାରେଟ୍ ପ୍ୟାକେଟ୍ ଖୋଲିଲି । ନିଜେ ନେବା ଆଗରୁ ତାଙ୍କ ଆଡ଼େ ବଢ଼ାଇଲି । କିନ୍ତୁ ସେ ନ ନେଇ ହାତ ଯୋଡ଼ିଲେ । ଅଗତ୍ୟା ମୁଁ ଗୋଟିଏ କାଢ଼ି ଟାଣିଲି ଓ ବେଲ୍ ବଜାଇ ଚପରାଶିକୁ ଡାକିଲି ଚା' ଆଣିଦେବା ପାଇଁ । କିନ୍ତୁ ଚପରାଶିକୁ ଦୁଇ କପ୍ ଆଣିବାକୁ କହିବାରୁ ସେ କହିଲେ, "କ୍ଷମା କରିବେ, ମୋ ପାଇଁ ମଗାଇବେ ନାହିଁ ।"

ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲି, "ଚା' ବି ଖାଆନ୍ତି ନାହିଁ ?"

"ନାହିଁ ଆଜ୍ଞା । ପାଠ ପଢ଼ିଲା ବେଳେ ଛାଡ଼ି ଦେଇଛି, ଯେତେବେଳେ ପ୍ରଥମେ ଜେଲ୍ ଗଲି ।"

ଜେଲ୍ । ନିଶା ନିବାରଣ । ମୋର କୌତୁହଳ ଜାଗ୍ରତ ହେଲା । ମୁଁ ତାଙ୍କୁ ଆଉ ଥରେ ନିରୀକ୍ଷଣ କଲି । ତାହାହେଲେ ଏହି ରୁକ୍ଷତା ସାଙ୍ଗରେ ଜେଲ, ଲଠିମାଡ଼ ଇତ୍ୟାଦିର ସମ୍ପର୍କ ଅଛି । ଦାମ୍ଭିକତାରେ ଅଛି ନ ମାନିବାର ଅଭ୍ୟାସ । ଏହି ଏକାଗ୍ର ଚାହାଣୀ ହେଉଛି ଏକମୁଖୀ ସଂକଳ୍ପ ଓ ସାଧନାର ଅସ୍ତ୍ର । ମୋଟା ଲୁଗା, ମୋଟା ଏଣ୍ଡି ଚଦର...... ।

ସେ କଣ ସତରେ ଜଣେ ନେତା ? ସେ ଭୋଗିଛନ୍ତି, ଜାଣିଛନ୍ତି,—ସେଇଥି-ପାଇଁ ତାଙ୍କର ଏହି ପ୍ରବୀଣତା, ଏହି ନିରାଶା ?

ସନ୍ଦେହ ନାହିଁ । ପ୍ରଥମ ମୁହୂର୍ତ୍ତର ଗତିରେ ତାଙ୍କର ଚେହେରା ମୋତେ କହିଲା ଯେ, ସେ ଜଣେ ନେତା । ତାଙ୍କର ଆନ୍ତରିକତା ଅନାବଶ୍ୟକ ନୁହେଁ ।

ସେ ମୋ ଭାବନାକୁ ଅନୁମୋଦନ କଲେ । କହିଲେ, "ମୁଁ ଆପଣଙ୍କୁ ମୋର ପରିଚୟ ଦେଇପାରି ନାହିଁ । ମୋ ନାଁ ହେଉଛି ମନ୍ଦରଧର ମହାପାତ୍ର ।"

ଆଉ କିଛି କହିଲେ ନାହିଁ । ଧରିନେଲେ ଯେ ସେତିକି ଯଥେଷ୍ଟ ହେବ, ସେତିକିରୁ ମୁଁ ତାଙ୍କ ଚରିତ୍ର ଇତିହାସ ସବୁ ଜାଣି ପାରିବି ।

ମୁଁ ଏ ଅଞ୍ଚଳରେ ନୂଆ । ସବୁ ମୁଖ୍ୟବ୍ୟକ୍ତିମାନଙ୍କୁ ଜାଣିବାର ଅବକାଶ ହୋଇ ନାହିଁ । ତଥାପି ତାଙ୍କ ନାଁ ମୋତେ ଜଣାଶୁଣା ଲାଗିଲା । କଲେଜ୍‌ର ବାର୍ଷିକ ଅନୁଷ୍ଠାନରେ ବୋଧହୁଏ ତାଙ୍କ କଥା କିଏ କହୁଥିଲା । ନା ଉନ୍ନୟନ କମିଟି ମିଟିଂରେ— ? ନା କୃଷି ସମ୍ମିଳନୀ ? ମୋର ପୂରାପୂରି ମନେ ପଡ଼ିଲା ନାହିଁ । ତେବେ ତାଙ୍କର ସୁଖ୍ୟାତି ଅଛି, ଏଥିରେ ଆଉ ଭାବିବାର କିଛି ନାହିଁ । ମୁଁ ମୋର ଅବଗତି ଜଣାଇଲି ଓ ବିନମ୍ର ଭାବରେ କହିଲି, "ମୁଁ ଆପଣଙ୍କ କଥା ଶୁଣିଛି । ଏପର୍ଯ୍ୟନ୍ତ ଆପଣଙ୍କ ସାଙ୍ଗରେ ପରିଚୟ ହୋଇ ପାରି ନ ଥିଲା । ଯାହାହେଉ— ।"

ସେ ହାତ ଉଠାଇ ମୋର ସୌଜନ୍ୟର ଅଙ୍ଗୀକାର କଲେ ଓ କହିଲେ, "ମୋ କଥା ଭୁଲିଯାଆନ୍ତୁ । ମୁଁ କେହି ନୁହେଁ । ଦେଶର ଭବିଷ୍ୟତ ଆପଣମାନଙ୍କ ଉପରେ । ସେଇଥିଲାଗି ମୁଁ ଆପଣଙ୍କ ପାଖକୁ ଆସିଛି । ମୁଁ ଆପଣଙ୍କ ଉତ୍ସାହ ଭାଙ୍ଗି ଦେଉନାହିଁ । କିନ୍ତୁ ମୁଁ ମୋ ମନକଥା କହିବି କାହା ଆଗରେ ? ମୋର ପରି ଅନ୍ୟ ପ୍ରାଣହୀନ ଫସିଲ୍‌ମାନଙ୍କୁ ? ମୁଁ ଅନ୍ତତଃ କାନ୍ଦୁଛି, ଦୁଃଖ କରୁଛି । ସେମାନଙ୍କର ସେ କ୍ଷମତା ଚାଲିଗଲାଣି ।"

"ମୁଁ ଦୁଃଖ କରିବି ନାହିଁ ?" ସେ କହି ଚାଲିଲେ, "ଏହି କଲେଜ୍‌କୁ ମୁଁ ନିଜ ହାତରେ ଠିଆ କରିଛି । ମାଇନର୍ ସ୍କୁଲରୁ ହାଇସ୍କୁଲ, ହାଇସ୍କୁଲରୁ କଲେଜ । ଘର ଘର ବୁଲି ଚାନ୍ଦା ମାଗିଛି । ଦେଶର ଏମୁଣ୍ଡରୁ ସେମୁଣ୍ଡ ବୁଲିଛି ଭଲ ମାଷ୍ଟର ଯୋଗାଡ଼ କରିବା ପାଇଁ । ସେମାନେ କହୁଥିଲେ କଲେଜ୍‌ର ନାଁ ଦେବେ ମନ୍ଦରଧର କଲେଜ୍ । ମୁଁ ମନା କଲି । କହିଲି—ମୁଁ କେବଳ ନିମିତ୍ତ ମାତ୍ର; କଲେଜ ମୋର ନୁହେଁ, ଦେଶର, ଆମ ସମସ୍ତଙ୍କର । କିନ୍ତୁ ମୁଁ ଦେଖିଲି ମୋରି ଆଖି ଆଗରେ ଏ କଲେଜ୍ ମରି ମରି ଗଲା । ବଡ଼ କୋଠା ଗଢ଼ି ଉଠିଲା, ବଡ଼ ହଲ୍ ତିଆରି ହେଲା, କିନ୍ତୁ ସରସ୍ୱତୀ ରହିପାରିଲେ ନାହିଁ । ଅହମିକା, ଜାତିପାତିର ଭେଦଭାବରେ ସେ ଘର ଦୂଷିତ ହୋଇଗଲା । ମାଷ୍ଟରମାନେ ଦଳ ବାନ୍ଧିଲେ, ପିଲାମାନେ ରାଜନୀତି କଲେ । ମୁଁ ଯେଉଁମାନଙ୍କୁ ଯୋଗ୍ୟ ଶିକ୍ଷକ ବୋଲି ବାଛି ଆଣିଥିଲି, ସେହିମାନେହିଁ ଦଳାଦଳିର ବଡ଼ପଣ୍ଡା ହେଲେ । ଏବେ କଣ ହେଲା ? ପିଲାମାନେ ଭଲ ପାସ୍ କରୁନାହାନ୍ତି, ଡିଗ୍ରୀକ୍ଲାସ ପାଇଁ ଗ୍ରାଣ୍ଟ୍ ମିଳୁନାହିଁ, ଲାଇବ୍ରେରୀ ଦହି ଉଇ ଖାଇ-ଗଲେଣି— ।

"ମୁଁ ସେଠୁଁ ଅଲଗା ହୋଇ ଗଲିଣି । ଶୁଣିଲି ନୂଆ ମ୍ୟାନେଜିଂ କମିଟିରେ ଆପଣ ଅଛନ୍ତି । ଆପଣଙ୍କ ରକ୍ତରେ ଦମ୍ଭ ଅଛି, ମନରେ କେତେ ଉଦ୍ଦେଶ୍ୟ, କେତେ ଯୋଜନା ଅଛି । କିନ୍ତୁ ଯେଉଁଠି ଜ୍ଞାନର ସମ୍ମାନ ନାହିଁ, ଶ୍ରେଷ୍ଠରୁ ବଡ଼ ଯାଏଁ ସ୍ୱାର୍ଥର ମୋହରେ ଅନ୍ଧ, ସେଠି ଆପଣ କଣ କରି ପାରିବେ ? ପାରିବେ ?"

ଏ ରାଗ, ଏ ଅଭିମାନ ନିଷ୍ଫଳ ହୋଇପାରେ, କିନ୍ତୁ ମିଛ ନୁହେଁ । ମୁଁ ତାଙ୍କର ଭବ-ଦଗ୍ଧ ବୟସ୍କ ମୁହଁକୁ ଦେଖିଲି ଓ ଦୃଷ୍ଟି ତଳକୁ କଲି । କିଛିକ୍ଷଣରେ ନୀରବତା ପରେ ସେ ପୁଣି କହିଲେ, "ମୁଁ ଏହି କେତେବର୍ଷ ତଳେ ପ୍ରାଦେଶିକ କୃଷି ସମ୍ମିଳନୀକୁ ଡକା ହୋଇଥିଲି । ସେଠି କିଏ କେତେ ବକ୍ତୃତା ଦେଲେ, ମୁଁ ମଧ୍ୟ ମୋର ବକ୍ତୃତା ଦେଇଥିଲି । ମୁଁ ଗର୍ବର ସହିତ କହିଲି ଯେ, ଆମ ଅଞ୍ଚଳର ଲୋକମାନେ ଆଧୁନିକ, ସେମାନେ ଉନ୍ନତିର ପନ୍ଥା ଜାଣନ୍ତି । ଯେ ଆମ ଅଞ୍ଚଳକୁ ଅଧିକ ଟ୍ରାକ୍ଟର, ଖତ ଓ ମଞ୍ଜି ଆସିଛି, ଆହୁରି ଆସିବା ଉଚିତ; ଉତ୍ପାଦନ ବଢ଼ିଛି, ଆହୁରି ବଢ଼ିବ । କିନ୍ତୁ ସବୁ କରତାଳି ବାହାବା ପରେ ମୁଁ ଯେତେବେଳେ ଘରକୁ ଫେରିଲି, କଣ ଦେଖିଲି ଜାଣନ୍ତି ? ଦେଖିଲି ମୋର ପଡ଼ୋଶୀ ଦୁଇଜଣ,—ସଭ୍ୟ ବିଦ୍ୱାନ ବ୍ୟକ୍ତି—କଜିଆ କରୁଛନ୍ତି । ସେମାନଙ୍କର ଶହ ଶହ ଏକର ଜମି ଅଛି, ତେବେ ସେମାନେ ଦୁଇ ଘର ମଝିରେ ଥିବା ଜମି ଖଣ୍ଡିକ ପାଇଁ କଜିଆ କରୁଛନ୍ତି । ଉଦୁଉଦିଆ ଖରାରେ ଛିଡ଼ା ହୋଇ ଅନର୍ଗଳ ଦେଶୀ-ବିଦେଶୀ ଭାଷାରେ ଗାଳି ଦିଆଦେଇ ହେଉଛନ୍ତି । କଳିର ବିଷୟ କଣ ନା ସେ ଜମିର ଗୋଟିକିଆ ଆମ୍ବଗଛଟା କାହାର, କାହା ପିଲା ଖାଇବେ । ସେତେବେଳେ ମୁଁ ଭାବିଲି ଯେ, ମୁଁ କାହିଁକି ଉତ୍ପାଦନ ବଢ଼ୁ ବୋଲି ପାଟି କରୁଥିଲି ? ଏ ଦେଶର ଧରଣୀ ବନ୍ଧ୍ୟା ହୋଇ ରହିଥିଲେ ଭଲ ହୋଇ ନ ଥାଆନ୍ତା !"

ନୀରବତା । ନୀରବତାର ଅଧିକାରରେ ସେ ଆହୁରି ପଦେ ଯୋଡ଼ି ଦେଲେ, "ସେମାନେ ସମାଜର ମୁଖିଆ, ଆପଣ ସେମାନଙ୍କୁ ନିଶ୍ଚୟ ଜାଣିଥିବେ । ଜଣଙ୍କର ଦୁଇ ମହଲା କୋଠା, ଆଉ ଜଣେ କୃଷ୍ଣଭକ୍ତ,—ଘରକୁ ଲାଗି ନିଜର କୃଷ୍ଣମନ୍ଦିର । ଦୁଇ ଘର ମଝିରେ ପାଚେରି ଉଠା ହୋଇ ସାରିଲାଣି; ଆମ୍ବଗଛ କେବେଠୁଁ କଟା ହୋଇ ଗଲାଣି ।"

ଏହି କ୍ରମରେ ସେ ଆହୁରି କେତେ କଥା କହିଗଲେ, ଆଉ କେତେ ଉଦ୍ୟମ ଓ ପରାଭବର କଥା । ଚକବନ୍ଦି, ସମବାୟ, ସମାଜସଂସ୍କାର ଇତ୍ୟାଦି । ଶେଷୋକ୍ତ ବିଷୟରେ ତାଙ୍କ ଭାଷାର ତେଜ ଓ ଭାବର କରୁଣତା ସବୁଠାରୁ ବେଶି ମର୍ମସ୍ପର୍ଶୀ ହୋଇ ପାରିଥିଲା । ଯୌତୁକପ୍ରଥା ନିବାରଣ ସମ୍ପର୍କରେ କହୁ କହୁ ସେ କହିଲେ,—

"ଏହି ଯୌତୁକ ଦାବୀ ମେଣ୍ଟାଇବାକୁ ଯାଇ କେତେ କନ୍ୟାପିତା ସର୍ବସ୍ୱାନ୍ତ ହୋଇଯାଉଛନ୍ତି । ମୁଁ ଏହି ରାକ୍ଷସ ବିରୁଦ୍ଧରେ ପ୍ରାଣପଣେ ଲଢ଼ିଛି । କେବଳ ସେତିକି ନୁହେଁ । ମୁଁ ନିଜେ ଚୋଟ ଖାଇଛି, ତା'ର ଦାଗ ଏପର୍ଯ୍ୟନ୍ତ ଲିଭି ନାହିଁ । ମୋ ପୁଅ ବାହାଘରରେ ମୁଁ ଅଧଲାଟାଏ ଯୌତୁକ ନେଇନାହିଁ । କିନ୍ତୁ ମୋ ଝିଅ ବେଳକୁ କଣ ହେଲା ? ମୁଁ ଗୋଟିଏ ଭଲପିଲା ସାଙ୍ଗରେ ବାହାଘର ଠିକ୍ କରିଥିଲି । କେତେଦିନୁ

ତା' ବାପା ଓ ମୁଁ ସମୁଖ ଜନାଜନ ହେଉଥିଲୁ । ପୁଅଝିଅଙ୍କୁ ସାଙ୍ଗସାଥୀମାନେ କୌତୁକ ପରିହାସ କରୁଥିଲେ । କିନ୍ତୁ ଶେଷକୁ ତା' ବାପା ପଶୁ ପାଲଟି ଗଲା । ସେ ପୁଅକୁ ଲକ୍ଷେ ଟଙ୍କା ଲୋଭରେ ଆଉ କେଉଁ ଝିଅ ସାଙ୍ଗରେ ବନ୍ଧିଦେଲା । ··· ମୁଁ କିଛି କହିପାରିଲି ନାହିଁ । ମୋ ଝିଅର ଏକୁଟିଆ କାନ୍ଦଣା ମୁଁ ଶୁଣିଲି, ସହିଲି । ବେଳେ ବେଳେ ଇଚ୍ଛା ହୋଇଥିଲା ତା' ତଣ୍ଟି ଚିପି ମାରିଦେବି,—କାହିଁକି ସେ ଏ ସମାଜରେ ଜନ୍ମ ହେଲା ?

ମୋ ଝିଅର କପାଳ ଭଲ, ସେ ଆଉ ଗୋଟିଏ ଭଲ ଜାଗାରେ ବାହାହୋଇ ପାରିଲା । କିନ୍ତୁ ତାର ପରି ଏମିତି କେତେ ଝିଅ କାନ୍ଦୁଥିବେ, କାନ୍ଦୁଛନ୍ତି । ସେମାନଙ୍କର ଆଖିର ଲୁହ କିଏ ପୋଛିଦେଇ ପାରିବ ?"

ସେ ଉଠିବାକୁ ବସିଲେ । କିନ୍ତୁ ମୋର ମନେ ହେଲା ତାଙ୍କର ବର୍ତ୍ତମାନ ଚ୍ଛାଡ଼ି ଚାଲିଯିବା ଶୋଭା ପାଉନାହିଁ । ଯେପରିକି ସେ ଗୋଟିଏ ବାକ୍ୟ ଅସମ୍ପୂର୍ଣ୍ଣ ରଖିଦେଇ ଗଲେ, ଉପନ୍ୟାସ ଟେବୁଲକୁ ଲେଟି ପଢ଼ିବାକୁ ଦେଲେ ନାହିଁ, ଝିଅକୁ ଅଧା ବାଟରେ ବସେଇ ଦେଇ ଗଲେ । କେତେ କଣ ଭାଙ୍ଗିରୁଜି ଗଲା । ମୋ ମୁଣ୍ଡ ଗୋଳମାଳ ହୋଇ ଯାଉଛି, ତାଙ୍କ ଗୃହିଣୀର ଧାସ କମୁନାହିଁ । ଏ ଅବସ୍ଥା କଣ ଏମିତି ରହିଥିବ ? ନା, ମୁଁ କିଛି ଉତ୍ତର ଦେବି । କିମ୍ବା ସେ ତାଙ୍କର ଶେଷପଦାଟିକୁ କହି ଦେଇ ମୋତେ ନିର୍ବାକ୍, ନିଃଶେଷ କରି ଚାଲିଯିବେ ।

ମୁଁ ଉତ୍ତର ଦେବା ପାଇଁ ସମୟ ଚାହିଁଲି । ତେଣୁ ତାଙ୍କୁ ଆଉ କିଛି ସମୟ ବସି ରହିବା ପାଇଁ ଅନୁରୋଧ କଲି । ସିଗାରେଟ୍‌ରେ ଘନ ଘନ ଫୁଙ୍କ ଦେଇ କହିଲି, "ବସନ୍ତୁ, ପୁଣି ଆପଣଙ୍କ ସାଙ୍ଗରେ କେବେ ଦେଖା ହେବ ।"

ହଠାତ୍ ମୁଁ ତାଙ୍କ ମୁହଁରେ ଲଘୁତା ଓ ଆମୋଦର ସଞ୍ଚାର ଦେଖିଲି । ସସ୍ମିତ ବଦନରେ ସେ କହିଲେ, "କ୍ଷମା କରିବେ । ଆପଣଙ୍କୁ ଦେଖି ମୋର ପୁଅ କଥା ମନେ ପଡ଼ୁଛି । ସେ ଅନେକାଂଶରେ ଆପଣଙ୍କ ପରି ।"

ସେ ମୋର ଜିଜ୍ଞାସାକୁ ଅବହେଳା କଲେ ନାହିଁ । ଚଟ୍‌କରି ତାଙ୍କ କଥାର ଅର୍ଥ ବୁଝାଇ ଦେଇ କହିଲେ, "ସେ ଅବଶ୍ୟ ଆପଣଙ୍କଠାରୁ ଅନେକ ଶ୍ରେଷ୍ଠ । କିନ୍ତୁ ସେ ଆପଣଙ୍କ ପରି ଆଶାବାଦୀ । ସେ ମଧ୍ୟ ସ୍ୱପ୍ନ ଦେଖୁଛି ।"

ସ୍ମୃତିକୁ ଡାକିଆଣିଲା ପରି ସେ ଶୂନ୍ୟକୁ ଚାହିଁଲେ ଓ କହିଲେ, "ସେ ସ୍ୱପ୍ନ ଆଜିକାର ନୁହେଁ । ସେ ଯେତେବେଳେ ପିଲା ହୋଇଥିଲା, ମୁଁ ଶେଷଥର ପାଇଁ ଜେଲ୍‌ରୁ ମୁକୁଳି ଆସିଲି, ଓ ସ୍ୱାଧୀନତା ହାତ ପାହାନ୍ତାରେ ଥିଲା । ଘରକୁ ଫେରି ଆସିଲା ପରେ ତା'ର ଆନନ୍ଦ ଆଶ୍ୱାସନା,—'ବାପା' ତୁମେ ଆଉ ଜେଲକୁ ଯିବ

ନାହିଁ । ମୁଁ ବଡ଼ ହୋଇ ଗଲିଣି । ଆମ ଦେଶ ସ୍ୱାଧୀନ ହେବ ।' ତା ପିଲାକଥା ମନରେ ସେ ଦୁଇଟି ବସ୍ତୁ ଏକାଠି ବସା ବାନ୍ଧିଥିଲେ,— ଯେ ଦେଶ ସ୍ୱାଧୀନ ହେବ ଓ ସେ ବଡ଼ ହେଲଣି । ସତେ ଯେପରି ତା ବାପାର ଆଉ କିଛି କରିବାର ନାହିଁ, ସେ ସବୁ ବୁଲାଇ ନେବ ।"

ପୂଅର ସରଳ ବିଶ୍ୱାସ । ସେ ହସିଲେ ଓ ପୁଣି କହିଲେ, "ଦେଶ ସ୍ୱାଧୀନ ହେଲା । ସେ ପ୍ରକୃତରେ ବଡ଼ ହେଲା । କିନ୍ତୁ ତା'ର ସ୍ୱପ୍ନକୁ କେହି ପଚାରିଲେ ନାହିଁ ।"

ତାଙ୍କ ଭାଷାର ଗତି ଧୀମେଇଗଲା । ମନେହେଲା ସେ ଭାବୁଛନ୍ତି, ଭାବନାରେ କଷ୍ଟ ପାଉଛନ୍ତି, ତେଣୁ ପ୍ରକାଶ କରିବାରେ ବାଧା ଆସୁଛି । ଛିଡ଼ା ଛିଡ଼ା ହୋଇ ଅନ୍ତରର ଶବ୍ଦ ଗୁଡ଼ିକ ପଦାକୁ ଆସିଲେ,—"ତା'ର ସ୍ୱପ୍ନ । ଦେଶପାଇଁ କିଛି କରିବ । ପ୍ରତି ଯୋଗ୍ୟସନ୍ତାନର ସ୍ୱପ୍ନ······ଆପଣଙ୍କର ସ୍ୱପ୍ନ···ସେ ମାମୁଲି ନୁହେଁ, ସାଧାରଣ ନୁହେଁ, ମୁଁ ତାକୁ ଜାଣିଛି··· ।"

ମୋତେ ଅସ୍ଥିର ଲାଗିଲା । ମୁଁ ପଚାରିଲି, "ସେ କଣ କରିବାକୁ ଚାହେଁ ? କଣ କରୁଛି ଏହିକ୍ଷଣି ?"

"କିଛି କରୁନାହିଁ । ଘରେ ବସିଛି, ବୁଢ଼ା ବାପାଠାରୁ ଇତିହାସ ଶୁଣୁଛି ।"

ମୁଁ ବୁଝି ପାରିଲି ନାହିଁ । କହିଲି, "କାହିଁକି ? ଚାକିରି ବ୍ୟବସାୟ ?

ସେ ମୋର ଅବୁଝାପଣକୁ ଅଟ୍ଟା କଲାପରି କହିଲେ, "ଚାକିରି ? ତାର ଡିଗ୍ରୀ ନାହିଁ ପରା ! ଏହି ଆପଣାଙ୍କ ଅଫିସ୍‌ରୁ ସେ କେତେ ଥର ଫେରି ଯାଇଛି ସେହି କଥା ଶୁଣି । ଆଉ ବ୍ୟବସାୟ । କେଉଁ ବ୍ୟବସାୟ କରିବ ? ଖଣ୍ଡେ ଲାଇସେନ୍‌ସ, ପରମିଟ୍ ନ ଥିଲେ କିଏ ପଚାରିବ ତା'କୁ ?"

ସେ ଉଠି ଛିଡ଼ା ହେଲେ । ତାଙ୍କ ଆତ୍ମସମ୍ମୋଳକ ଗୁହାରୀ ପୁଣି ଚେଇଁ ଉଠିଲା । ସେ ଚଢ଼ା ସ୍ୱରରେ କହିଲେ ସାରା ସଂସାରକୁ ଶୁଣାଇଲା ପରି, "କିଛି ଚିନ୍ତା ନାହିଁ ବାବୁ । ତା'ର ପେଟ ଅପୋଷା ରହିବ ନାହିଁ । ସେ କଥା ପଡ଼ି ନାହିଁ । କିନ୍ତୁ କଲାପରି କାମ ମଣିଷ ପରି କାମ ତା'ର ସ୍ୱପ୍ନ । କିଏ ତାକୁ ପୂରଣ କରିବ ? କିଏ ବାଟ ଦେଖାଇବ ? ପାରିବେ ଆପଣ ? ପାରିବେ ?"

ମୁଁ ଡରବର ହୋଇ କାଗଜ କଲମ ଅଣି ପଚାରିଲି, "ପୁଅର ନାଁ ?… । ସେତେବେଳେ ମୋ' ମନରେ ନିର୍ଦ୍ଦିଷ୍ଟ ଧାରଣା ନ ଥିଲା ଯେ, ମୁଁ କେଉଁଥିପାଇଁ ଏ ସବୁ ଲେଖୁଛି । ଷ୍ଟକିଷ୍ଟ, ଲାଇସେନ୍ସ, ପର୍ମିଟ ନା ଆଉ କଅଣ । କିନ୍ତୁ ମୋ' ମନରେ ସଫଳତାର ଶାନ୍ତି ଥିଲା,—ମୁଁ ଉତ୍ତର ଦେଇଛି, ନିଅଁ ଲଭିଛି ।



# ମୁଁ ପାରିବି

ମୁଁ ମନ୍ଦରଧର ମହାପାତ୍ରଙ୍କ ପୁଅର ନାଆଁ ଗାଆଁ ଟିପି ନେଲି, ତା'କୁ ଖଣ୍ଡେ ଭଲ ଚାକିରି, ସରକାରୀ କଣାବକାର ଏଜେନ୍‌ସି, କିମ୍ବା ସେହିପରି କିଛି ଲାଭଜନକ ଧନ୍ଦା ଜୁଟେଇ ଦେବା ପାଇଁ ତୋର ଅନ୍ତରାତ୍ମା କାନ୍ଦି ଉଠିଲା । ବେଶ୍, ଏଥିରେ ଭୁଲ୍ କଅଣ ହେଲା ? ଅବଶ୍ୟ ମନ୍ଦରବାବୁ ଯଦି ମିଛ କହି ଭଣ୍ଡେଇଥିବେ ମୋତେ, ସେକଥା ଭିନ୍ନ ।

ନା, ସେ ମିଛ କହି ନାହାନ୍ତି । ନାଟକୀୟ ଭଙ୍ଗୀରେ ନିଜକୁ ଉପସ୍ଥାପିତ କରିଛନ୍ତି, ସ୍ୱାଧୀନ ଭାରତର ସାମାନ୍ୟ ବ୍ୟୁରୋକ୍ରାଟ୍‌କୁ ସେବକାର ପର୍ବତର ସମୁଦ୍ରର ଚେହେରା ଦେଖାଇ ମୁଗ୍‌ଧ କରିଛନ୍ତି, କିନ୍ତୁ ସେ ମିଛ କହି ନାହାନ୍ତି । ଧରିନିଅ ସେ ଥିଲେ ସ୍ୱାଧିନତା-ସଂଗ୍ରାମୀ । ହୋଇପାରେ ଯେ ତାଙ୍କୁ ଆଜି କେହି ପଚାରୁ ନାହାନ୍ତି । ତା' ବୋଲି ତୁ ତୋ ନିଜ ବଡ଼ପଣକୁ ଚଟ୍‌କିନି ଟେକି ଦେଲୁ ତାଙ୍କ ହାତକୁ ? ଶ୍ରେଷ୍ଠ ବଡ଼ ଅଧିକାରୀ ହିସାବରେ ତୋତେ ଯେଉଁ କ୍ଷମତାର ଦାୟିତ୍ୱ ଦିଆ ହୋଇଛି, ତା'ର ଅପବ୍ୟବହାର କରିବା ପାଇଁ ରାଜି ହୋଇଗଲୁ ? ଭୁଲିଗଲୁ ଯେ ; ମନ୍ଦରଧରଙ୍କର ସ୍ୱପ୍ନାଳୁ ପୁଅ ଯେତେ ଛବିଲ ସ୍ୱପ୍ନ ଦେଖୁ ନା କାହିଁକି, ତାକୁ ସାହାଯ୍ୟ କରିବା ତୋର ଧର୍ମ ନୁହେଁ ? ସେ ପରିଭଳି ସାହାଯ୍ୟକୁ ଦୁର୍ନୀତି କୁହାଯାଏ ?

ଦୁର୍ନୀତି ? କଣ କହୁଛ ତୁମେ ? ମୁଁ କଣ ଭଦ୍ରଲୋକଙ୍କଠାରୁ ହାତଗୁଞ୍ଜା ନେଇଛି ? ନା ସେ ମୋର ଭାଇବନ୍ଧୁ, କୁଟୁମ୍ବ ? ତାଙ୍କ ପୁଅକୁ ସାହାଯ୍ୟ କରିବାରେ ମୋର କେଉଁ ସ୍ୱାର୍ଥ ସାଧିତ ହେଲା ଯେ ମୋତେ ଏମିତି କଡ଼ା କଡ଼ା କଥା କହୁଛ ?

ଆଃ ! ଏଇଠୁ ତ ଆରମ୍ଭ, ପ୍ରବଚନାର ପହିଲ ପାହାଚ ! ମନ୍ଦରଧର ତୋର ଦେଶାତ୍ମବୋଧକୁ ଆହ୍ୱାନ କଲେ । କିଛି-ଦିନ ପରେ ରଙ୍ଗାଧର ତୋର ଓଡ଼ିଆ ପ୍ରେମକୁ ଚେତାଇ ଦେବେ । ସେଇଠୁଁ ଆସିବେ ବମ୍ବାଧର, କହିବେ ଭୁଲି ଯାଅ ନାହିଁ ଯେ ତୁ କରଣ ଘରର ପିଲା । ତଦୁତ୍ତରୁ ଗଙ୍ଗାଧର ମନେ ପକାଇ ଦେବେ ଯେ ତୋର ଆପଣା ଭାଇବନ୍ଧୁ କୁଟୁମ୍ବଙ୍କ ପ୍ରତି ବିଶେଷ କର୍ତ୍ତବ୍ୟ ଅଛି, ନହେଲେ ତୁ ଏତେ ବଡ଼ ଆସନରେ ବସିବାର ଯୋଗ୍ୟ ନୁହଁ । ଶେଷକୁ ତୋର ଅତି ଆପଣାର ପୁଅ ଜ୍ୱାଇଁ ପ୍ରିୟାପ୍ରିୟ ତୋଷଣର ତାଡ଼ନା, ଓ ତାକୁ ତୁଲେଇବାର ଆନନ୍ଦ କିଏ ସହଜେ ହରେ ? ତା'କୁ ଦୁର୍ନୀତି ବୋଲି ନ କହି ଗୋଟାଏ ନୂଆ ନାଆଁ ଦେଇ ପାର, ଯଥା ସୁଖନୀତି, ସହଜନୀତି । ଅବା ପୁରୁଣା ନାଆଁ ପରୋପକାର ତଳେ ଲେଖି ଦେଇପାର । କିଏ ମନା କରୁଛି ?

ମନ୍ଦରଧରଙ୍କ ଠାରୁ ବଡ଼ା ହେଲ ପରେ ଅଧିକାଂଶ ଜଣକ ଏହିପ୍ରକାର ଅନ୍ତର୍ଦ୍ୱନ୍ଦରେ ପଡ଼ି ଥାଇ ପାରନ୍ତି । ହୁଏତ ସେ ଲେଖିଥିବା ନାଆଁକୁ ପରେ ଅଣ୍ଡା ମିଜାଜ୍‌ରେ କାଟି ଦେବେ । କିନ୍ତୁ ମୋ ଗପର ମୂଳକଥା ତା' ନୁହେଁ । ତାର ପ୍ରାଣ ହେଲା ପ୍ରବଚନା । କହିପାରନ୍ତି ଯେ ଆଜିକାଲି ଯେଉଁପ୍ରକାର ଖୋଲା ଖୋଲି ଦୁର୍ନୀତି ଗ୍ରାହ୍ୟ ହୋଇ ଯାଇଛି ଆମ ସମାଜରେ, ଦେଖିଲେ, ଏଭଳି ପ୍ରବଚନାକୁ ଅତି ସୂକ୍ଷ୍ମ, ସାମାନ୍ୟ, ତେଣୁ କିଛିନୁହେଁ' ବୋଲି କହିଲେ ଭୁଲ୍ ହେବ ନାହିଁ । ହେଉ, ଗପଟି ଆପଣଙ୍କୁ ଚମକେଇ ନ ପାରିଲେ ମଧ୍ୟ କୁତୁକୁତୁ କରି ପାରିବ ନାହିଁ ? କେଉଁ ଝଡ଼ିରେ (ହୁଏତ ନିଜ ଅଜାଣତରେ ) ଭଦ୍ରଲୋକ ନିଷ୍ଠାବାନ୍ ତରୁଣ ଅଧିକାରୀଙ୍କୁ ଠକିଲେ, ଏବଂ ଅଧିକାଂଶ ତାଙ୍କ ହେବା କରି ବସିଲେ । ଅର୍ଥାତ୍ ନିଜକୁ ଠକିଲେ, ଭାବିଲେ ଦେଖି ?

କେତେ ଚମତ୍କାର ଏହି ପ୍ରବଚନାର ଖେଳ । ବୃହତ୍ତର ସ୍ୱାର୍ଥର ଅବତାରଣା କରି ଆପଣା କୁ ନୁମୁନିଆ ସ୍ୱାର୍ଥକୁ ଲୁଚେଇ ଦେବାର ପ୍ରବୃତ୍ତି । କିଏ ମନା କରି ପାରିବ ଯେ ବ୍ରିଟିଶ୍‌ବାର ପରିଗ୍ରହ କରିବା ଦ୍ୱାରା ମୋର ପିଲାଛୁଆଙ୍କ ମଙ୍ଗଳ ହୋଇ ନାହିଁ ? ତା' ସାଙ୍ଗକୁ ସ୍ୱାଧୀନତା ଗୋଟାଏ ଭୋକ ମେଣ୍ଟି ଯାଉଛି ତ କିଣି

ହେଲ ସେଇଠୁ ? ନେତା ବା ହାକମ ହୋଇ ମୁଁ କେଣ ଯଥେଷ୍ଟ ରାତ ଅନଦ୍ରା ହୋଇ ନାହିଁ, ପ୍ରଗତର ସେରୁ ବାନ୍ଧ ନାହିଁ, ମନ୍ତ୍ରୀ ଖଣ୍ଡ୍ରୀଙ୍କ ସେବା କର ନାହିଁ ? ତା' ସାଙ୍ଗକୁ ହାତକୁ ଉପୁର ଦି' ପଇସା ଆସିଲା ତ କ୍ଷତ କଅଣ ? ଶ୍ରୀଯୁକ୍ତ ଧୂରନ୍ଧରଙ୍କ ବଳତ ଯିବା ଦ୍ୱାରା ଦେଶର କେତେ ମଙ୍ଗଳ ହେଲ, ଏକଥା କେହ ଅସ୍ୱୀକାର କରପାରବେ ନାହିଁ । ହେଲ ଏବେ ସେ ମୋର କ୍ୱାଇଁ, ଓ ତା' ପାଇଁ ମୁଁ ବନ୍ତର ଧରାଧର କଲି । ସେଥିରେ ଯାଏ କେତେ ଆସେ କେତେ ?

କାମ୍ୟୁ ଥରେ କହୁଥିଲେ ଯେ ଏଭଳ କୌଣସି ପରାଭବ ନାହିଁ ଯାହାକୁ ଅବଜ୍ଞାରେ ହସି ଦେଇ ବାତଲ୍ କର ହେବ ନାହିଁ । ତେଣୁ ମୋ ସାଙ୍ଗରେ ମିଶି ନାକ ଫୁଲେଇ ହସିବାକୁ ଚେଷ୍ଟା କରନ୍ତୁ । ଦୁର୍ନୀତ ଆପେ ଆପେ କଟିଯିବ ପର !

ଅଶୋକ କୁମାର ଦାସଙ୍କ ଦ୍ୱାରା ରଚତ ଗଳ୍ପର ଇଂରାଜ ଅନୁବାଦ "I can make it" କେନ୍ଦ୍ର ସାହିତ୍ୟ ଏକାଡେମୀର ମୁଖପତ୍ର Indian Literatureରେ ପ୍ରକାଶିତ ହୋଇଛି ।

କଟକ

୨୫ ସେପ୍ଟେମ୍ବର ୧୯୮୭



# ଗୋଟିଏ ବାହାଘରର କଥା

ଶଶାଙ୍କ ମହାପାତ୍ର ଗୋଟିଏ ଝରକାକୁ ଛାଡ଼ିଦେଇ ଅନ୍ୟ ସବୁ କବାଟ ଝରକା ବନ୍ଦ କରିଦେଲେ । ଉପର ମହଲ; ଖୋଲା ଝରକାଟି ବହିର୍ମୁଖୀ । ତଳକୁ ଅନାଇଲେ ଦେଖାଯାଏ ଅଯତ୍ନ-ରକ୍ଷିତ ବାରବଗିଚା, ପିଜୁଳିଗଛ ଓ ହତାର ସାନ ପାଚେରି । ଦୂରରେ ସହରର ବଡ଼ ରାସ୍ତା ଓ ତା'ର ବାଁ ହାତ ମୋଡ଼ରେ ଗୋଟିଏ ଦୁଇମହଲା ହଳଦିଆ କୋଠା, ଯେଉଁଠି ଚଞ୍ଚଳା କିଶୋରୀ ତରୁଣୀଙ୍କ ବହୁଳତା ଆଖିରେ ପଡ଼େ ।

ଏ ହେଉଛି ସରକାରୀ ଘର । ଶଶାଙ୍କ ବାବୁ ଏଠି ଚାରି ପାଞ୍ଚ ମାସ ହେଲା ଅଛନ୍ତି । ପ୍ରବାସରେ ଉଚ୍ଚଶିକ୍ଷା ସରିଗଲା ପରେ ବାପାଙ୍କ ଅନୁରୋଧ ନିର୍ଦ୍ଦେଶ ଅନୁଯାୟୀ ତାଙ୍କ ପାଖରେ କିଛିଦିନ ବିତାଇବାକୁ ଆସିଛନ୍ତି । କାର୍ଯ୍ୟସୂଚୀରେ ଅଛି ବିବାହ ଓ ଜୀବିକାର ପନ୍ଥା ।

ଉପସ୍ଥିତ ପ୍ରଶ୍ନ ବିବାହ । ସେଥିପାଇଁ ଶଶାଙ୍କ ବାବୁ ଭିତରୁ ଘର ବନ୍ଦକରି ଖୋଲା ଝରକା ପାଖରେ ବସିଛନ୍ତି ଏବଂ ସନ୍ତର୍ପଣରେ ଡ୍ରୟରରୁ ଗୋଟିଏ ଲଫାପା କାଢ଼ି ହାତରେ ଧରୁଛନ୍ତି ।

ଲଫାପା ଭିତରେ ଯାହା ଅଛି, ତାକୁ ଦେଖିବା ପାଇଁ ନିର୍ଜନର ଆଳୁଅ ଦରକାର । ତା' ଛଡ଼ା ଖୋଲା ଝରକାରେ ମିଳିବ ସ୍ୱାଧୀନତାର ଅଭାସ, ରୋମାନସ୍‌ର ବାସ୍ନା । ଏଠି ବସି ସେ ଦେଖିପାରିବେ ଆକାଶର ବିହଙ୍ଗ । ଏବଂ ସେ ସେହି ହଳଦିଆ କୋଠାର ଅଳ୍ପବୟସୀମାନଙ୍କୁ ମଧ୍ୟ ଦେଖିପାରିବେ । ସେମାନେ ବାରମ୍ବାର ବାଲ୍‌କନି ଉପରକୁ ଆସନ୍ତି, ହାତ ହଲାଇ କଥା କୁହନ୍ତି, ଧାଡ଼ି ମେଲାଇ ହସନ୍ତି, ମୁଣ୍ଡର ଓଦାବାଳ ଶୁଖାନ୍ତି, ଇତ୍ୟାଦି । ଶଶାଙ୍କ ବାବୁ ସେମାନଙ୍କୁ ଜାଣନ୍ତି ନାହିଁ, କିନ୍ତୁ ସେମାନେ ତାଙ୍କ ଚେତନାରେ ସ୍ୱର୍ଣ୍ଣସୁଖ ଆଣି ଦିଅନ୍ତି ।

ଉପଯୁକ୍ତ ବାତାବରଣ । ଶଶାଙ୍କ ବାବୁ ତରତର ହୋଇ ଲଫାପାକୁ ଖୋଲିଲେ ନାହିଁ । ସେ ତାଙ୍କ ଉଦ୍‌ବେଗକୁ ଧରି ରଖିଲେ, ବାହାରକୁ ଅନାଇଲେ ଓ

ଗମ୍ଭୀରଭାବରେ ନିଃଶ୍ୱାସ ନେଲେ । ଅର୍ଥାତ୍ ସେ ଏହି ମୁହୂର୍ତ୍ତକୁ ସମ୍ମାନ ଦେଲେ । ଏ ପିଲାଖେଳ ନୁହେଁ । ଜୀବନର ସାର୍ଥକ୍ୱ ।

ଶେଷକୁ ସେ ଲଫାପା ଖୋଲିଲେ । ତା' ଭିତରେ ତିନୋଟି ଫଟୋ, ନାୟିକା ଜଣେ । ଶଶାଙ୍କ ବାବୁ ତିନୋଟିଯାକ ଏକାଠି କରି ଧରିଲେ, ତାସ୍ ଧରିଲାପରି । ସେଗୁଡ଼ିକ ନିରୀକ୍ଷଣ କଲେ । ତା' ପରେ ସେ ଗୋଟିକୁ ନେଇ ଚଉକିରୁ ଉଠି ପଡ଼ିଲେ ଏବଂ ତାକୁ ଝରକାର ରେଲିଂରେ ହାତ ଲଗାଇ ଆଲୁଅମୁହାଁ କରି ଦେଖିଲେ । କିଛି ସମୟ ପରେ ସେ ଦ୍ୱିତୀୟକୁ ସେହି ଭାବରେ ଦେଖିଲେ ଓ ତା' ପରେ ତୃତୀୟ ।

ଦେଖି ସାରିଲା ପରେ ସେ ଚଉକିରେ ବସି ପଡ଼ିଲେ ଓ ଆଉ ଥରେ ଦୀର୍ଘନିଃଶ୍ୱାସ ନେଲେ । ଗୋଟିଏ ଅବାନ୍ତର ପ୍ରଶ୍ନ ତାଙ୍କ ମନରେ ଉଠିଲା,—ସେ କିଏ ? ତା' ସାଙ୍ଗରେ ମୋର ସମ୍ବନ୍ଧ କଅଣ ?

ଚଢ଼େଇମାନେ ଉଡ଼ୁଛନ୍ତି, ଉଡ଼ୁଛନ୍ତି, ଉଡ଼ୁଛନ୍ତି । ଦୂର ବାଲିକନି ଉପରେ ମୁକ୍ତକେଶୀ ସାନୀକୁ ଆଉଜଣେ ଅସିଗଲାଣି,—ଅନୁଲାଧ୍ୟିତକୁନ୍ତଳା । ଦୁହେଁ ପଦେ ପଦେ କଥା କହୁଛନ୍ତି ଓ ହସୁଛନ୍ତି । ଆଉ କେଉଁଠୁ ଗୋଟିଏ ଜଣାଶୁଣା ସିନେମା ଗୀତ ଶୁଭୁଛି । ସେଥିରେ ମନେ ପଡ଼ିଯାଉଛି କଲେଜ କରିଡର୍...... ସହପାଠିମାନଙ୍କ ଗୁମାନ......ମୋଟା ବହି ଓ ମ୍ୟାଟିନି...ଗରମ୍ ଚପ୍ ଓ ହେମିଙ୍ଗ୍‌ଓ୍ୱେ... ।

ହଠାତ୍ ଶଶାଙ୍କ ବାବୁଙ୍କର ମନେହେଲା,—ଏ ଘର ଏଇଠି ଥାଉ, ଏ ଫଟୋଗୁଡ଼ାକ ଏଇଠି ପଡ଼ିଥାଉ, ମୁଁ ବିଶ୍ୱବ୍ରହ୍ମାଣ୍ଡ ଉପରକୁ କୁଦିପଡ଼ିବି ଓ ଲଭ୍ କରିବି । ଏ ଲଭ୍‌ରେ ସାଥିତ୍ୱ ନାହିଁ, ପ୍ରେମ ସାମାନ୍ୟ । କିନ୍ତୁ ଏଥିରେ ଅଛି ପ୍ରାଣ ଓ ପ୍ରସାର । ଏବଂ ଅଛି ଜୀବନର ତରଙ୍ଗ, ଢେଉ ପରେ ଢେଉ । ଯେଉଁଥିରେ ମଣିଷ ପ୍ରତିଥର ଗାଧୋଇ ପାଧୋଇ ନୂଆ ହୋଇ ଉଠେ, ବୁଢ଼ା ହୁଏନାହିଁ ।

ଏହି ସମୟରେ ଗ୍ୟାରେଜ୍‌ରୁ କାର୍ ବାହାରିବାର ଶବ୍ଦ ହେଲା । ଅର୍ଦ୍ଧେକ ଚପରାଶି ମଙ୍ଗୁଲିର ପାଟି ଶୁଭିଲା'—ମୁଁ ତାକୁ ସେଦିନୁ କହୁଛି ପରା... । (ସେ ସବୁବେଳେ ବେସରକାରୀ ଚଳିଆ ଲୋକମାନଙ୍କ ଆପାରଗତା ପ୍ରମାଣ କରିବାକୁ ଭଲ ପାଏ । ) ଏବଂ କୁକୁଡ଼ାମାନେ ଫଡ଼ଫଡ଼ ହୋଇ ବଗିଚାକୁ ଉଡ଼ିଆସିଲେ ।

କୁଦିପଡ଼ିବାର ଇଚ୍ଛା କ୍ରମଶଃ ମିଳାଇଗଲା । ବୀରେଶ୍ୱର ମହାପାତ୍ରଙ୍କ ପୁଅ ଶଶାଙ୍କ ମହାପାତ୍ର କୁଦନ୍ତି ନାହିଁ । ଦେଖିବାକୁ ଗଲେ ପୃଥିବୀର ଖୁବ୍ କମ୍ ଲୋକ ସେମିତି କରି ପାରିଥାନ୍ତି । ସୁନୀଲ୍ ଦାହର କଅଣ ହେଲା ? ସେ ଥିଲା ପ୍ରେମିକ ସମ୍ରାଟ୍ ।

ପ୍ରକାଶ ପାଇ,—ସେ ଥିଲା ମହା ବିପ୍ଳବର କୁଆଁ ତାରା । ବାଲେନ୍ଦୁ ଘୋଷ୍ । ସେ ପ୍ରଚାର କରୁଥିଲା, ନୂତନ ଅର୍ଥନୀତି, ଯାଦ୍ଵାରା ଗରିବମାନେ ଲୋପ ପାଇଯିବେ ଏବଂ ବଡ଼ଲୋକମାନେ ଟଙ୍କା ରୋଜଗାର କରିବେ କେବଳ କଳାର ଉନ୍ନତିପାଇଁ । ଆଜି ସମସ୍ତେ ମୁହଁମାଡ଼ି ପଡ଼ିଛନ୍ତି, ପାନ ଖାଉଛନ୍ତି, କଲମ ପେଷୁଛନ୍ତି ଓ ଘର ତୋଳିବାର କଳ୍ପନା କରୁଛନ୍ତି । ସୁନୀଲ୍ ଦାସର ସ୍ତ୍ରୀ ଗେଡ଼ୀ, ନାଲି ବ୍ଲାଉସ୍ ଉପରେ ନେଳିଆ ଶାଢ଼ୀ ପିନ୍ଧେ ଓ ନିପଟ ମଫସଲଙ୍କ ପରି କଥା କୁହେ । ଏହିକ୍ଷଣି ସୁନୀଲ୍ ତା' ପାଇଁ କେଉଁ ସନେଟ୍ ତିଆରି କରୁଥିବ ?

ନା, ପ୍ରଥମ କଥ ହେଲା ଖୁମ୍ବ । ସ୍ଥିତି, ମେରୁଦଣ୍ଡ । ମୋର ଦେହିକ ମୂଳରୁ ଅଛି । ତେଣୁ ମୁଁ ସେମାନଙ୍କ ପରି ଲୋକହସା ହେବନାହିଁ । ଲଭ୍, ରୋମାନ୍ସ, ପ୍ରେମ, ସାଥୀତ୍ୱ—ସବୁ ହେବ, ଏକାଠି ହେବ । କିନ୍ତୁ ସେଥିପାଇଁ ଖୁମ୍ବରୁ ଫିଟି ପଳାଇଯିବା ଦରକାର ନାହିଁ । ମୁଁ ପ୍ରାକ୍‌ଟିକ୍ୟାଲ୍ ।

ଶାଶାଙ୍କବାବୁ ଏହିପରି ଭାବରେ ନିଜକୁ ଚହ୍ଲାଇଲେ ଓ ନିଜ ଉପରେ ବିଶ୍ୱାସ ଆଣିଲେ । ତା' ପରେ ସେ ଡିବୋଟିରୁ ଗୋଟିକୁ ପୁଣି ନେଇଆସି ଦେଖିଲେ ଏବଂ ସମ୍ମୋହନର ମନ୍ତ୍ର ପଢ଼ିଲାପରି ମନେ ମନେ କହିଲେ,—ମୁଁ ବାହାହେବି । ମୁଁ ତୁମକୁ ବାହାହେବି । ତୁମେ ମୋର ସାଥୀ ହେବ । ଆମ ସଂସାର ଭଲ ହେବ, ଭଲ ଚାଲିବ, ବେଶ୍ ଭଲ ଚାଲିବ ।

ଆଉ କିଛି ଭାବିବାର ନାହିଁ । ତଥାପି ତାଙ୍କର ନିଯୁକ୍ତ ଓରଫ୍ ବାପା ମାଆ ପରିବାରଙ୍କ ପାଖରେ ଦାନ ଅଭିଯୋଗଟିଏ କରିବାକୁ ଇଚ୍ଛାହେଲା । ଝିଅ ଟିକିଏ କମ୍ ମୋଟା ଅଳ୍ପ କଳା ହୋଇଥିଲେ କ'ଣ କ୍ଷତି ହୋଇଥାନ୍ତା, କିମ୍ବା ଯଦି ନାକ ଟିକିଏ ବଡ଼ ହୋଇଥାନ୍ତା, କପାଳ କଟିଡ୍ ଶ୍ଳେଟ ହୋଇଥାନ୍ତା— ।

···ବୀରେଶ୍ୱର ବାବୁ କାର୍‌ରେ ଯାଇଥିଲେ ଘଣ୍ଟାକପାଇଁ । ମଧ୍ୟସ୍ଥ ପଦ୍ମନାଭ ବାବୁଙ୍କ ସାଙ୍ଗରେ ମସୁଧା କରି ଫେରିଲେ ।

ଚପରାଶି-ଡ୍ରାଇଭର ରତନ୍‌ସିଂ ପଚାରିଲା ଯେ, ସେ ଏହିକ୍ଷଣି ଘରକୁ ଫେରିବ କି ନାହିଁ । ବୀରେଶ୍ୱର ବାବୁ ଅନୁମତି ଦେଲେ ଓ କାଲି ବଡ଼ିଭୋରେ ଆସିବାକୁ ଆଦେଶ ଦେଲେ । କାଲି ଲମ୍ବା ଟୁର୍‌ରେ ଯିବାକୁ ହେବ । ସରକାରୀ କାମ ଅଛି ଓ ତା'ଛଡ଼ା ବାହାଘରପାଇଁ ନାନାଦି ବ୍ୟବସ୍ଥା କରିବାକୁ ହେବ ।

ତା'ପରେ ସେ କ୍ୱାଟର୍ସର ପ୍ରଶସ୍ତ ହତା ଭିତରେ ବୁଲିବାକୁ ଲାଗିଲେ । ବିଭିନ୍ନ ଲତାଗୁଳ୍ମ ଗୁଡ଼ିକୁ କାଟିବାପାଇଁ ସ୍ଥିର କଲେ । ଫୁଲକୁଣ୍ଡ ସବୁ କେମିତି ସଜା-ହେବ ସେକଥା ଭାବିଲେ । ସେଇଠୁଁ ମନେପଡ଼ିଲା ଗୃହଦୁଆ କଥା, ବ୍ୟାଣ୍ଡପାର୍ଟି କଥା,

ମାଛ କଥା । ଅନେକ କିଛି ଭାବିବାକୁ ଅଛି । କ୍ଷତି ସରିଛି, କିନ୍ତୁ ପରବର୍ତ୍ତୀ ବ୍ୟବସ୍ଥା ବାକି ଅଛି ।

ପ୍ରଶ୍ନ ଉଠିପାରେ ଯେ, ବୀରେଶ୍ୱର ବାବୁ କେମିତି ଜାଣିଲେ ଯେ କ୍ଷତି ହୋଇଯାଇଛି । ଏହି ଘଣ୍ଟାକ ଆଗରୁ ଉପର ମହଲାର ଗୋଟିଏ ଘରେ ଯେଉଁ ନୀରବ ବିପ୍ଳବ ହେଲା, ତା'ର ଗନ୍ଧ ସେ ପାଇଲେ କେମିତି ?

ନା, ବୀରେଶ୍ୱର ବାବୁ ସର୍ବଜ୍ଞ ନୁହନ୍ତି । କିନ୍ତୁ ସେ ଧରି ନେଇ ପାରନ୍ତି ଏବଂ ସେହି ଧାରଣାର ଭୁଲ-ଠିକ୍ ବାଛିବାପାଇଁ ସମୟ ନଷ୍ଟ କରନ୍ତି ନାହିଁ ।

ଅସଲ କଥା ହେଲା ବ୍ୟବସ୍ଥା । ବ୍ୟବସ୍ଥା ଠିକ୍ ଥିଲେ ଚନ୍ଦ୍ର ସୂର୍ଯ୍ୟ ମଧ୍ୟ ବୋଲ ମାନିବେ, ଠିକଣା କାମ କରିବେ । ଏବଂ ତାହାକୁ ହିଁ ମୂଳକରି ପୁଣି ବ୍ୟବସ୍ଥା କରିବାକୁ ହେବ, ଦ୍ୱିତୀୟ ପାହାଚପାଇଁ ।

ପୁଅ ହୋଇପାରେ ନୂଆ ଯୁଗର ମଣିଷ, କିନ୍ତୁ ତା' ମୁଣ୍ଡରେ ବୁଦ୍ଧି ଅଛି । ସର୍ବେଜନୀ ବିଖ୍ୟାତ ଜମିଦାର ଦୁର୍ଯ୍ୟୋଧନ ପଟ୍ଟନାୟକଙ୍କ ଝିଅ । ସେହି କଣ ଯଥେଷ୍ଟ ନୁହେଁ ? ଯଦି ବା ତା' ନ ହେଲା, ଅନ୍ୟ କଥା ଅଛି । ପଦ୍ମନାଭ ବାବୁ ସୁସ୍ପଷ୍ଟ ଇଙ୍ଗିତ ଦେଇଛନ୍ତି ଯେ, ଶନୀର ବଳାତ ଯିବା ଦରକାର । ଶନୀର କାଜ ପାଇଁ ଗୋଟିଏ ନୂଆ କାର୍ ଦରକାର । ଦୁର୍ଯ୍ୟୋଧନବାବୁଙ୍କର ଗୋଟିଏ ଝିଅ । ସେ ଝିଅ ଜ୍ୱାଇଁଙ୍କ ସୁଖ ପାଇଁ ଅନେକ କିଛି କରିପାରିବେ—। ବୀରେଶ୍ୱର ବାବୁ ଚୁପ୍ ହୋଇ ଶୁଣିଛନ୍ତି, ଆଗ୍ରହ ଦେଖାଇ ନାହାନ୍ତି । କିନ୍ତୁ ଏହି ଖବର ପୁଅ ପାଖରେ କିପରି ପହଞ୍ଚିବ ତାର ବ୍ୟବସ୍ଥା କରିହୋଇଛି । ଆଜିକାଲିକା ପିଲାଙ୍କୁ ଏହିସବୁ 'ମାଟି' କଥା ମୁହାଁମୁହିଁ କହିହେବ ନାହିଁ, ସେମାନେ ତାତିଉଠିବେ । ତେଣୁ ତାଙ୍କ ଭାବନା ମୂଳରେ ଏହି କାଉଁଚ୍ଛୁଣା ଯାରଖତ ଟିକ୍ତିଦେବାକୁ ହେବ, ଯେପରି କି ସେମାନେ ଜାଣି ମଧ୍ୟ ଜାଣିବେ ନାହିଁ । ମନର ଗହୀର ତଳେ ରହି ସେ ତା'ର କାମ କରିଯିବ,—କେହି ତାକୁ ସ୍ୱୀକାର କରୁ ବା ନ କରୁ ।

ତା' ଛଡ଼ା ଝିଅଟି ଭଲ । ବୀରେଶ୍ୱର ବାବୁ ଏହି ବିଶ୍ୱାସ ନିଜକୁ ଦେଇପାରି-ଥିଲେ । ତଦନୁରୂପ ବିଶ୍ୱାସ ପୁଅ ତା' ମନରେ ଆଣିପାରିବ ନାହିଁ, ଏହାର କୌଣସି କାରଣ ନାହିଁ ।

କ୍ଷତି ହୋଇସାରିଛି । ବର୍ତ୍ତମାନ ବାହାଘରଟା କେମିତି ଜମିବ, ତା'ର ବ୍ୟବସ୍ଥା କରିବାକୁ ହେବ । ପଦ୍ମନାଭ ବାବୁଙ୍କ ପଦେ କଥା ତାଙ୍କ ମନରେ ଲାଗିଥିଲା, —ଦୁର୍ଯ୍ୟୋଧନ ବାବୁ ରାଜା ଥିଲେ, ଏବେ ମଧ୍ୟ ଅଛନ୍ତି । ଅର୍ଥାତ୍ ଜମିଦାରୀ ଚାଲିଗଲେ ମଧ୍ୟ ତାଙ୍କ କୌଳିନ୍ୟ, ତାଙ୍କ ଆଭିଜାତ୍ୟ ଅକ୍ଷୁଣ୍ଣ ଅଛି । ତେଣୁ ପୁରୁ-

ରାଜାପରି ସେ ଗୃହାନ୍ତ ରାଜାର ବ୍ୟବହାର ! ପଦ୍ମନାଭ ବାବୁ ଅବଶ୍ୟ ଏଥିକି ହସିକରି କହିଥିଲେ, ତୁମେ ଯାଧନବାବୁଙ୍କ ଅଫିସକାୟାପରି । କିନ୍ତୁ ବୀରେଶ୍ୱର ବାବୁଙ୍କର ମନେ ହେଲା ଯେ ଏଥିରେ ଅଛି ଚେତାବନୀ ଓ ଚ୍ୟାଲେଞ୍ଜ୍ । ଯଦିଓ ଯେପରି ପୂର୍ବ ଘର ଓଜନରେ କମ୍, ବୀରେଶ୍ୱର ମହାପାତ୍ର ଗୁଡ଼ା ସରକାରୀ ଗୁକରିଆ ଅଥବା କାଳିକା ଭଦ୍ରଲୋକ !

ବୀରେଶ୍ୱର ବାବୁ ଭାବିଲେ —ମୁଁ ଜବାବ୍ ଦେବି । କଡ଼ା କଥାର ଜବାବ୍ ନୁହେଁ । ପ୍ରତିଯୋଗିତାର ପ୍ରଶ୍ନ ଉଠୁନାହିଁ । ମୁଁ ନିଜ ବାଟରେ ଦେଖାଇଦେବି । ସେମାନେ ଆପେ ଆପେ ବୁଝିବେ ଯେ, ଏ ଯୁଗର ରାଜା ହୁଙ୍କାର କରେ ନାହିଁ, ଖଲା ବାଡ଼ିରେ ଚଉକି ପକାଇ ହୁକୁମ୍ କରେନାହିଁ, ବେଠିଆ ମୂଲିଅଙ୍କର ଗୃହ୍ଟି ଶୁଣି ପେଟରେ ହାତ ବୁଲାଏ ନାହିଁ । ଏ ଯୁଗରେ ରାଜା ଭାବେ ଓ ବ୍ୟବସ୍ଥା କରେ, ଲେଖେ ଓ ଶାସନ କରେ । ଏହି ଗୁକରିଆ, ଏହି ଭୃତ୍ୟର କାରମିଡ଼ ସେ ବୁଝିବେ କେଉଁଠୁ ?

ବୁଲୁ ବୁଲୁ ସେ ହତାର ପଛପଟେ ପହଞ୍ଚିଲେ, ଯେଉଁଠି ଗୋଟିଏ କୁଡ଼ିଆ ଘରେ ଚପରାଶି-ଦରଜି ଅଲତାଫ୍ ମିଆଁର କଳ ପଡ଼ିଛି ଓ ସମ୍ମୁଖର ଘାସ ଉପରେ ମୁସଲ୍‌ମାନ ଲୁଙ୍ଗି ଶୁଖୁଛି । ବୀରେଶ୍ୱର ବାବୁ ଦେଖିଲେ ଯେ ମେସିନ୍ ଲେବେ, ଅଲ୍‌ତାଫ୍ ମିଆଁ ଶୋଇଯାଇଛି । ସେ ତାକୁ ଉଠେଇଲେ ନାହିଁ । ବେଚାରା ଶୋଇ-ଥାଉ । ତା'ପାଇଁ ବହୁତ କାମ ରଖାହୋଇଛି, ବାହାଘରର ବସ୍ତୃତ ଫର୍ଦ୍ଦ,— ବ୍ଲାଉଜ୍, ଫକ୍, ସନ୍ତାରୀ, ଶେଯ, ତକିଆଖୋଳ ଇତ୍ୟାଦି । କାମ ବୁଲାଇଦେଲେ ତାକୁ କିଛି ପାରିତୋଷିକ ଦେବାକୁ ହେବ ।

ଖଣ୍ଡେ ଦୂରରେ ଆଉ ଗୋଟିଏ କୁଡ଼ିଆ । ସେଠି ଥାଏ ଚପରାଶି-ଧୋବା ଘନ ମଲିକ । ଲୋକଟା ଦେଖିବାକୁ ଯେମିତି ତା' କାମ ସେମିତି ଅପରିଚ୍ଛନ୍ନିଆ । ବୀରେଶ୍ୱର ବାବୁ ତାକୁ ଉଠାଇଦେବେ ବୋଲି ଭାବୁଥିଲେ । ତା'ପରେ ତାଙ୍କର ମନେପଡ଼ିଲା ଯେ, ସେ ହେଉଛି ଗଳାହାଟିଆ, ଦୁଧ, ଘିଅ, ଛେନା ଏ ସବୁର ଭାର ସେ ନେଇପାରିବ । ଘନ ମଲିକକୁ ସେକଥା କହିବାରୁ ସେ କୁନ୍ଥୁ କୁନ୍ଥୁ ହେଲା । କିନ୍ତୁ ମଙ୍ଗୁଳି ଆଖି ଦେଖାଇଲା, ଚେତାଇ ଦେଲା ଯେ, ସେ ହେଉଛି ହେମଘର ଚପରାଶି । ଶେଷକୁ ଠିକ୍ ହେଲା ଯେ ସେ ଘିଅ ଯୋଗାଇବ । ନ ହେଲେ— ।

ବୀରେଶ୍ୱରବାବୁ ତା କୁଡ଼ିଆ ଆଡ଼କୁ ଗୁହିଁଲେନାହିଁ । ଘନ ମଲିକକୁ ତାଙ୍କର ମନେ ହୁଏ ଯେ ସେ ଗୋଟିଏ ପୋକ । ଏବଂ ହିଂସ୍ର ପୋକ । ଘୃଣା ଓ ଭୟ ମିଶାମିଶି ଗୋଟିଏ ଭାବ ତାକୁ ଆକ୍ରମଣ କରେ,—ଯେପରି କି ଏହି ପୋକମାନେ ହଠାତ୍ ସଙ୍ଘବଦ୍ଧ ହୋଇ ମାଡ଼ିଆସିପାରନ୍ତି ।

ଏହି ସମୟରେ ମଙ୍ଗୁଲି ବେହେରା ବାରଣ୍ଡାରୁ ଏଆଡ଼େ ଆସିବାର ଦେଖା-ଗଲା । ତା' ହାତରେ ଗୋଟିଏ ସିଗାରେଟ୍ ଟିଣ ଓ ଧଆସିଲି । ସାହେବ ଦାଣ୍ଡ ପିଣ୍ଡାରେ ଗ୍ଳଡ଼ ଦେଇଥିଲେ, ତେଣୁ ସେ ସେସବୁ ଆଣିଛି ।

ସିଗାରେଟ ଟିଣ ବଢ଼ାଇ ଦେଇ ମଙ୍ଗୁଲି ଛିଡ଼ା ହୋଇ ରହିଲା । ଭାବିଲା ଯେ, ସାହେବ କଣ କହିବେ । ଦୀର୍ଘ କେତୋଟି ମୁହୂର୍ତ୍ତପରେ ସ୍ୱାରେଶ୍ୱର ବାବୁ କହିଲେ,—

"ଅଭୟ ମିଶ୍ର କଣ୍ଟ୍ରାକ୍ଟରର ସାଙ୍ଗରେ ଦେଖା ହୋଇଥିଲା ?"

"ଅଜ୍ଞା ହଁ । ତା'ର ସେ ଧଳା ସେଭ୍ରୋଲେଟ୍ ଗାଡ଼ି ବରକନ୍ୟାଙ୍କୁ ଆଣିବ । ଆଉ ଗ୍ଳେଟବଡ଼ ହୋଇ ଛଅ ଖଣ୍ଡ ଗାଡ଼ି ମିଳିଯିବ । ବାକି ଜିପ୍ କଥା—"

"ଜିପ୍ କଥା ଭାବିବା ଦରକାର ନାହିଁ । ଅଫିସରୁ ମିଳିବ । ମୁଁ ଭଗବତ ବାବୁଙ୍କୁ କହିଛି ।"

"ଆଜ୍ଞା ହଁ । ଏହି କେତେଦିନ ତଳେ ଭଗବତ ବାବୁ କହୁଥିଲେ, ଆପଣଙ୍କୁ ଟିକିଏ ମନେପକାଇ ଦେବାକୁ । ତାଙ୍କ ଇଣ୍ଟରଭିଉ ଆରମାସ ଗ୍ଳର ତାରିଖରେ ।"

"ଠିକ୍ ଅଛି । ମୁଁ ଦୁର୍ଲ୍ଲଭ ବାବୁଙ୍କୁ କହିଛି । .........ଆଚ୍ଛା, ତେଜମଲ୍ ପାଖକୁ ଯାଇଥିଲେ ? ସେ କ'ଣ କହିଲା ?"

"ଆଜ୍ଞା ହଁ । ରିସେପ୍‌ସନ୍‌ର ଭାର ସେ ନେବାକୁ ରାଜି ହୋଇଛି । ଏହାର ଭିତରେ ସେ 'ହ୍ୱୋର୍ଡ୍ ହୋମ୍' ହୋଟେଲ ସାଙ୍ଗରେ କଥାବାର୍ତ୍ତା କରିବ । ସେ ଖାଲି କହୁଥିଲା ଯେ, ବୟ୍‌ବରଚ୍‌ମାନଙ୍କର ବକ୍‌ସିସ୍‌ଟା ଆମେ ଦେଲେ ଭଲ ହୁଅନ୍ତା ।"

"ହଁ ହଁ ମୁଁ ଦେବି, ନିଶ୍ଚୟ ଦେବି ।"

ସ୍ୱାରେଶ୍ୱର ବାବୁ ଗତିଶୀଳ ହେଲେ । ଅଫିସ ରୁମ୍‌ରେ ପଦଗ୍ଳରଣ କରି ଷ୍ଟେନୋକୁ ଡିକ୍ଟେସନ୍ ଦେଲାପରେ ସେ ତାଙ୍କ ଚିନ୍ତାକୁ ସୁବ୍ୟସ୍ଥିତ କଲେ, ତାଙ୍କ ବହୁମୁଖୀ ଯୋଜନାର ଦିଗମାନଙ୍କୁ ଗୋଟି ଗୋଟି କରି ଆବାହନ କଲେ ଓ ମଙ୍ଗୁଲିକୁ ଶୁଣାଇଲେ । ଦୁଇଜଣଯାକ ପାଖାପାଖି ହୋଇ ଗ୍ଳଲିଲେ ଘରଆଡ଼କୁ ।

ମଙ୍ଗୁଲି ଯାହା ଶୁଣିଲା, ଯାହା ଉତ୍ତର ଦେଲା ଓ ଯେଉଁ ନିର୍ଦ୍ଦେଶ ପାଇଲା, ସେଗୁଡ଼ିକ ସବୁ ନୁହେଁ । ଜଳସ୍ଥିତ ତୁଷାରଖଣ୍ଡ ପରି ତା' ପଛରେ ରହିଗଲା କେତେ କଠିନ ବାସ୍ତବର ଭବିଷ୍ୟତ ପାଇଁ । ଯଥା ଦୂର ଗାଆଁରୁ ଯେଉଁ ସବୁ ଝିଅ ଗ୍ଳୁଇଲି ଆସିବ, ତାର ଦାୟିତ୍ୱ ନେଇଛନ୍ତି ଜଣେ, ଯେ ନିଜ ପାଇଁ କିଛି ଗ୍ଳହାନ୍ତି ନାହିଁ,

ଗ୍ରାମର ମଙ୍ଗଳ ଗୃହାନ୍ତ, ଦେଶର ଉନ୍ନତି ଗୃହାନ୍ତ ।· ବିଷମ ସମସ୍ୟା । ଏହିସବୁ ଅସ୍ଥିର ମନୋବାଞ୍ଛା କେତେବେଳେ କେଉଁ ରୂପ ଧାରଣ କରିବ, କହିହେବ ନାହିଁ । ପୁଣି ଧର ତେଜମଲ୍‌ର କାମ । ତେଜମଲ୍ ଯାହା କରୁଛି ମନ୍‌ସୁଖାନୀ ଜାଣିବ ନାହିଁ, ମନ୍‌ସୁଖାନୀ ଯାହା କରୁଛି— । ଯେପରି କି ଜଣେ ଭାବିବ ଯେ, ଅନ୍ୟ ଜଣକ ପ୍ରଶ୍ରୟପାତ୍ର ନୁହେଁ, ସେହି କେବଳ ଖରେଶ୍ୱର ବାବୁ ଓରଫ୍ ସରକାରଙ୍କ ସୁନାପୁଅ । ତା' ନ ହେଲେ ବିପଦରେ ପଡ଼ିବା କଥା ।

ଘର ପାଖରେ ପହୁଞ୍ଚିଲେଣି । ଖରେଶ୍ୱର ବାବୁ ଭାବୁଛନ୍ତି ଯେ ବାରିରେ ଖଣ୍ଡେ ବେତ ଚଉକି ପକାଇ ବସିବେ ଓ ଆରାମ କରିବେ, ଏହି ସମୟରେ ମଙ୍ଗୁଲି କହିପକାଇଲା, "ଆଜ୍ଞା, ମାଛକଥା ।" ସାହେବଙ୍କ ଉତ୍ତରକୁ ଅପେକ୍ଷା ନ କରି ପୁଣି କହିଲା, "ରଜୁ ବାବୁ କହୁଛନ୍ତି ମାଛକଥା ବୁଝିବେ ।"

ଖରେଶ୍ୱର ବାବୁ ହସିଦେଲେ । ଅମୋଦର ହସ । ସେ ବୁଝିଲେ ଯେ, ଅନ୍ୟ ସମସ୍ତଙ୍କ ପରି ମଙ୍ଗୁଲିର ମଧ୍ୟ ଆସ୍ଥା ନାହିଁ ଯେ ମାଇଟିଆ ରଜୁ କିଛି କରିପାରିବ । କାରଣ ରଜୁ ଆଉ ଗୋଟିଏ ଲୋକ । ଘନ ମଳକ ପରି ନୁହେଁ, ହିଂସ୍ର ନୁହେଁ । ସେ ଦାନ୍ତ ନିକୁଟେ, ବଡ଼ ବଡ଼ କଥା କୁହେ, ନିଜ ବାବୁପଣକୁ ଦୋହରାଇ ହୁଏ, କିନ୍ତୁ ତା କଥା କେହି ଶୁଣନ୍ତି ନାହିଁ । ତା'କୁ ଦେଖିଲେ ମନେହୁଏ ଯେ, ସେ ମୁହୂର୍ତ୍ତକରେ ଭାଙ୍ଗି ପଡ଼ିବ କିମ୍ବା ମାଟିରେ ଲେଟିଯିବ । ତଥାପି ସେ ବାବୁ । ଯେହେତୁ ସେ ସାନ ସାନ ପିଲାଙ୍କ ମାଷ୍ଟର, କିରାଣୀ ହେବା ଆଶାରେ ଏଠି ଆଶ୍ରା ନେଇଛି ଓ ଆପଣା ଖୁସିରେ ପିଲାଙ୍କୁ ପାଠ ପଢ଼ାଉଛି ।

ସସ୍ମିତ ଖରେଶ୍ୱର ବାବୁ ଓ ଗମ୍ଭୀର ମଙ୍ଗୁଲି ପରସ୍ପରକୁ ଚାହିଁଲେ । କେଉଁ ଦୁର୍ବଳତା, ଅବସାଦ ଅଥବା କୌତୂହଳର ବଶବର୍ତ୍ତୀ ହୋଇ ଦୁହେଁ ରଜୁ ବାବୁଙ୍କ ହାତରେ ମାଛର ଦାୟିତ୍ୱ ଛାଡ଼ିଦେଲେ, ତାହା କହିହେବ ନାହିଁ ।

ଯାହାହେଉ ଖରେଶ୍ୱର ବାବୁ ଖୁସି ଥିଲେ ଏବଂ ସେ ବାରିରେ ବେତ ଚଉକି ପକାଇ ବସିଲେ ।

ଉପର ଘରେ କୌଣସି କୋଳାହଳର ଧ୍ୱନି ତାଙ୍କ କାନରେ ବାଜିଲା, କିନ୍ତୁ ସେ ତାର ଶବ୍ଦାବଳୀ ଶୁଣିପାରିଲେ ନାହିଁ । ଶୁଣିଥିଲେ ସେ ଅଧିକ ଖୁସି ହୋଇ ଥାଆନ୍ତେ । କାରଣ ସେଥିରେ ବାହାଘରର ଗୋଟିଏ ଅଂଶ ଥିଲା,—ଥଟ୍ଟା କଉତୁକ । ଶଶାଙ୍କ ବାବୁଙ୍କ ଦୁଇଟି ସାନ ଭାଇଭଉଣୀ ତାଙ୍କୁ ଚିଡ଼ାଉଥିଆନ୍ତି !

"ଜନ, ଜନ, ଜନ,
ବ୍ରାଇଟର୍ ଦ୍ୟାନ୍ ସନ୍‌ସାଇନ୍
ସୁଇଟର୍ ଦ୍ୟାନ୍ ହନି !—"

ଶଶାଙ୍କ ବାବୁ ମିଛିମିଛିକା ଚଢ଼ୁଥାଆନ୍ତି । ବେଳେ ବେଳେ ତାଙ୍କର ଭ୍ରମ ହେଉଥାଏ ଯେ, ତାଙ୍କ ମୁହଁର ବର୍ଣ୍ଣ ବଦଳିଯାଉଛି, ସେ ଲଜଉଛନ୍ତି । ତାଙ୍କୁ ଭଲ ଲଗୁଥାଏ,—ବୋଧହୁଏ ଅନୁରାଗ ଗଢ଼ି ଉଠୁଛି ।

ଏଣେ ଡଇଁଘର ବାରଣ୍ଡାରେ ମିସେସ୍ ମହାପାତ୍ର ଓରଫ୍ ସୁରବାଳା ଦେବୀ ଜଣେ ପ୍ରତିବେଶିନୀଙ୍କ ସାଙ୍ଗରେ ଗପ କରୁଥାନ୍ତି । ଆଗନ୍ତୁକା ଅଭିବାଦନ ଛଳରେ ଖବର ବୁଝିବାକୁ ଚାହିଁଥିଲେ, "ଯାହାହେଉ, ବଡ଼ ଘରେ ବନ୍ଧ କରୁଛ । ଝିଅଟି ଭଲ,—ନା ? କାହାପର ଦେଖିବାକୁ ?" ମିସେସ୍ ମହାପାତ୍ର ସାମାନ୍ୟ ଉତ୍ତର ଦେଇ ପକୋଡ଼ା ଖାଇବା ଓ ଖୁଆଇବାରେ ଅଧିକ ଆଗ୍ରହ ଦେଖାଇଲେ । କହିଲେ, "ଯାହା ଭାଗ୍ୟରେ ଅଛି । ବିଧାତା ଯାହାପାଇଁ ଯାହାକୁ ଗଢ଼ିଛି,—ତାକୁ ଜଣେ ମଣିଷ ବଦଳାଇ ପାରିବ ? ଆଉ ଦି'ଟା ପକୋଡ଼ା ଖାଅ ମ ।"

ଚାକରାଣୀ ସୁଖୀଆ ଶଣେଣେ ଦି'ଥର ପ୍ଲେଟରେ ପକୋଡ଼ା ଭରି ଦେଇ ଗଲା । ଅଖଣ୍ଡ ଭବିତବ୍ୟତାର ସାକ୍ଷୀ ହେଲାପରେ ଦୁହେଁ କିଛି ସମୟ କଥା କହିଲେ ନାହିଁ, ଏବଂ ଖାଇ ରହିଲେ ।

× × × ×

ବାହାଘର ସୁରୁଖୁରୁରେ ହୋଇଗଲା । ବରଯାତ୍ରୀମାନଙ୍କ ମଧ୍ୟରେ ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ଏବଂ ବିଭିନ୍ନ ଶ୍ରେଣୀର ଲୋକ ଥିଲେ । ପୂର୍ବତନ ମନ୍ତ୍ରୀ, ୟୁନିଭର୍ସିଟି ପ୍ରଫେସର୍, ଶ୍ରମିକ ନେତା, ତୁଙ୍ଗ ବ୍ୟବସାୟୀ, ଅର୍ବାଚୀନ କଲେଜ ଛାତ୍ର, ସମସ୍ତେ ସେହି ଦଳରେ ଥିଲେ ଏବଂ ସମସ୍ତେ ପ୍ରଶଂସାରେ ଶତମୁଖ ହୋଇ ଫେରିଲେ । ଦୁର୍ଯ୍ୟୋଧନ ପଟ୍ଟନାୟକ ଜଣେ ରାଜା, ଏକଥା ହୁଏତ କେହି କହିବେ ନାହିଁ । କିନ୍ତୁ ଅନେକ କହିଲେ ଯେ, ସେ ଜଣେ ପ୍ରକୃତ ସାମନ୍ତ । ବରଯାତ୍ରୀମାନଙ୍କର ଗୋଡ଼ଧୁଆ ମାଲ୍ୟାର୍ପଣଠାରୁ ଆରମ୍ଭ କରି ଝିଅବିଦା ପର୍ଯ୍ୟନ୍ତ କୌଣସିଥିରେ କିଛି ଊଣା ହୋଇ-ନାହିଁ । ବଡ଼ ମାଛ, ଲମ୍ବା ଓଢ଼ଣା, ସୁଶ୍ରାବ୍ୟ ଯୋଡ଼ନାଗରା, ସୁସ୍ପଷ୍ଟ ଶ୍ଳୋକ—କାହାକୁ ଶୁଣିବ ? ପୁଣି ଦୁର୍ଯ୍ୟୋଧନ ପଟ୍ଟନାୟକଙ୍କର ବପୁ; ଠାଣି ବ୍ୟାପକ, ଦରପାକଲା ଜଣ ଓ ଉନ୍ମୁକ୍ତ ହସ । ତା'ର ମଧ୍ୟ ଗୋଟାଏ ଦାମ୍ ଅଛି ।

ନିଜେ ଶଶାଙ୍କ ବାବୁ ମଧ୍ୟ ଭାବୁଥିଲେ ଯେ ଏହି ନୂତନ ସମ୍ପର୍କର ମହତ୍ତ୍ୱକୁ ଅସ୍ୱୀକାର କରିହେବ ନାହିଁ । ଏକ ଦିଗରେ ଏହି ମଧ୍ୟ ଯୁଗର ପ୍ରାସାଦ, ଅସି ଓ ବର୍ମ୍ମ, ଭୂସ୍ୱ ଓ କାହାଳୀ; ଅପର ଦିଗରେ ଧାରୁଆ ଚକ୍ ଚକ୍ ଅଧୁନିକତା । କିନ୍ତୁ ଉପ-ଭୋଗର ଆନନ୍ଦ ପାଇଲା ବେଳକୁ ତାଙ୍କର ମନେ ପଡ଼ିଯାଉଥିଲା ଯେ ସେ ହେଉଛନ୍ତି ପ୍ରଧାନ ଅଭିନେତା, 'ହିରୋ' ଓ ଏହି ଚମତ୍କାରିତା ତାଙ୍କ ଚାରିପାଖରେ ତାଙ୍କର

ଲାଗି ଦମ୍‌ଦମ୍‌ ହେଉଛି । ସେତେବେଳେ ସେ ଆତ୍ମ-ସଚେତନ ହୋଇ ଉଠୁଥିଲେ । ପାଖରେ ଥିବା ରୂପାଗିଲାସ ପଣାରେ ଆଉ ଥରେ ମୁହଁ ଲଗାଉଥିଲେ । କିମ୍ବା ପାଖରେ ବସିଥିବା ସାନ ଶାଳୀ ସାଙ୍ଗରେ ପୁରୁଣା ଥଟ୍ଟାକୁ ଦୋହରାଉଥିଲେ,—କି ଅପା ମାଙ୍କରେ ଯୌତୁକ ହୋଇ ଆସିବୁ ପରା ? ଏବଂ ସେତେବେଳେ ତାଙ୍କ ଭାବନାରେ ଆସୁଥିଲା ଯେ, ଓଢ଼ଣା ତଳେ ଗୋଟିଏ ମୁହଁ ଅଛି, ସେ ହସୁଥିଲା କି କାନ୍ଦୁଥିଲା କହିହେବ ନାହିଁ, କିନ୍ତୁ ସେ ହେଉଛି ତାଙ୍କ 'ହିରୋଇନ୍‌' ।

ବୀରେଶ୍ୱର ବାବୁ ସନ୍ତୁଷ୍ଟ ଥିଲେ ବରଯାତ୍ରୀମାନଙ୍କର ଉପଯୁକ୍ତ ଚର୍ଚ୍ଚା ହୋଇଛି । ସାମନ୍ତଶ୍ରେଷ୍ଠ ଦୁର୍ଯ୍ୟୋଧନ ବାବୁ ପୁରୁଣାକାଳିଆ କିନ୍ତୁ ନିହାତି ଅବାଗିଆ ନୁହନ୍ତି—ଇଂରାଜି ଜ୍ଞାନ ମନ୍ଦ ନୁହେଁ, ରାଜନୀତି ଉପରେ ଚର୍ଚ୍ଚା କରିପାରନ୍ତି । ସର୍ବୋପରି ସୁଖର ବିଷୟ ଯେ, ପଦ୍ମନାଭ ବାବୁଙ୍କ କଥା ମିଛ ନୁହେଁ । ଦୁର୍ଯ୍ୟୋଧନ ବାବୁ ନିଜେ କହିଛନ୍ତି ଯେ, ଶଶୀକୁ ବିଲାତ ପଠାଇବାର ଭାର ତାଙ୍କ ଉପରେ ଏବଂ କାର୍‌ର ବନ୍ଦୋବସ୍ତ କୁଆଡ଼େ ହୋଇସାରିଛି, ଏହି ଦୁଇ ତିନି ମାସ ମଧ୍ୟରେ ପହଞ୍ଚିବ ।

ତଥାପି ଭୂରିଭୋଜନ ପରେ ଖଣ୍ଡେ ପାନକୁ ମନ ବଳାଇଲା ପରି ବୀରେଶ୍ୱର ବାବୁ ସମ୍ପୂର୍ଣ୍ଣତାର ସ୍ୱପ୍ନ ଦେଖୁଥିଲେ । ଚଉଠୀଘରର ସମାରୋହ । ମଙ୍ଗନ ବେଶ୍‌ ଭଲ ହୋଇଥିଲା । କିନ୍ତୁ ଚଉଠୀରେ ବଡ଼ ଭୋଜି ଓ ରିସେପ୍‌ସନ୍‌ । ସେହିଦିନ ପାଇଁ ଅଛି ବିଜୁଳି ଆଲୁଅର ଉତ୍ସବ, ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଆସିଥିବା ଖାଦ୍ୟ ପେୟର ସମ୍ଭାର, ବ୍ୟାଣ୍ଡବାଜା, ଶାସ୍ତ୍ରୀୟ ସଙ୍ଗୀତ । ସେହିଦିନ ମୁଖ୍ୟମନ୍ତ୍ରୀ ଆସିବେ ।

ସେହିଦିନ ଫୁଟିଉଠିବ ମୋ ସାଆନ୍ତପଣର ମର୍ଯ୍ୟାଦା । ନା, ପ୍ରତିଯୋଗିତା ନୁହେଁ । କେବଳ ପ୍ରଭେଦ । ସେହି ପ୍ରଭେଦ ହିଁ ପୂର୍ଣ୍ଣତା । ଏହି ଅପୂର୍ବ ସମ୍ବନ୍ଧର ଶେଷ ପରିଚୟ ।

ବୀରେଶ୍ୱର ବାବୁଙ୍କ ମନ ଶ୍ରଦ୍ଧାରେ ଭରିଆସୁଥିଲା,—ନିଜ ପାଇଁ ଓ ଦୁର୍ଯ୍ୟୋଧନ ବାବୁଙ୍କ ପାଇଁ ।

···କିନ୍ତୁ ଚଉଠୀ ଦିନ ଶଶାଙ୍କ ବାବୁ ଖୁସିହୋଇ ପାରୁ ନ ଥିଲେ । ସେ ନିଜକୁ ଖୋଜୁଥିଲେ ।

ସେମାନେ ସମସ୍ତେ ତରତର ହେଉଛନ୍ତି, ଖାଉଛନ୍ତି, ପାର୍ଟି କରୁଛନ୍ତି, ହସୁଛନ୍ତି । ଟପା ଧୋବ କୋଟ୍‌ ଓ କଳା ପ୍ୟାଣ୍ଟ, ସରୁ ଧୋତି ପଞ୍ଜାବୀ ଓ ଚଦର, ଉର୍ଦ୍ଦିପିନ୍ଧା ବେଅରର୍‌, ମୁଖ୍ୟମନ୍ତ୍ରୀ ଏବଂ ଉଗ୍ର ଓ ହାସ୍ୟମୟୀ ଅସଂଖ୍ୟ ନାରୀ । ବାପା

ମାଛ ନା ଆଉ କେଉଁ କଥାରେ କାହା ଉପରେ ଚଡ଼ୁଛନ୍ତି । କିନ୍ତୁ ମୋ' କଥା ? ପ୍ରଶ୍ନର ତୀବ୍ରତା ଆଲୁଅ ସଙ୍ଗୀତ କୋଳାହଳକୁ ଡୁବାଇ ଦେଉଥିଲା ।

ମୋ କଥା ମାନେ ମୋ' ବାହାଘର, ମୋ' ଚଉଠୀ ରାତି, ମୋର ସ୍ତ୍ରୀ । ଏଥିରେ ଏତେ ବ୍ୟସ୍ତ ହେବାର କଅଣ ଅଛି ? ଆବେଗ ? ଉଦ୍‌ବେଗ ? ନା ଅଧୈର୍ଯ୍ୟତା ? ଧ୍ୟାତ୍, ମୁଁ କଅଣ ପିଲା ହୋଇଛି ? ସେ ତାଙ୍କ ପୁରୁଷତ୍ୱକୁ ଆହ୍ୱାନ କଲେ । ଏବଂ ମୋ' ସ୍ତ୍ରୀ ନ କହି କହିଲେ,—ମୋର ନାରୀ । ସେହି ଧାରଣାରେ କିଛି ଦମ୍ଭ ଆସିଲାପରି ଲାଗିଲା । ଯଥାସମୟରେ ଶଶାଙ୍କ ବାବୁ ମୁହଁରେ ସୁସୁରି ବଜାଇ ଉପରମହଲର ପାହାଚ ଚଢ଼ି ପାରିଲେ । ବାସରଘର । ଅସୁଛି, ଅସୁ ।

କବାଟ ଖୋଲିଦେଇ ସେ ଦେଖିଲେ ଯେ ତାଙ୍କ ନାରୀ ବିଛଣାରେ ମୁହଁମାଡ଼ି ଶୋଇଛି । ସେ କବାଟ ବନ୍ଦ କଲେ ।

ଯୌବନର ଦେହ ଉପରେ ଉଜ୍ଜ୍ୱଳ ବର୍ଣ୍ଣ ଶାଢ଼ୀ । ଚନ୍ଦନ ,ଝୋଟି, ଶୁଖିଲା ଫୁଲର ବାସ୍ନା ଆସୁଛି । ଶଶାଙ୍କ ବାବୁ ଦେହକୁ ଛୁଇଁଲେ । ଏହି ଛୁଇଁବାରେ ଉତ୍ତେଜନା ଆସୁଛି । ଏହି ତ ବାସର ରାତି !

ଛୁଇଁବାର କ୍ଷେତ୍ର ପ୍ରସାରିତ ହେଲା । କ୍ରମଶଃ ସେ 'ମୋ ନାରୀ'କୁ ଓଲଟାଇ ଦେଇ ତା'ର ମୁହଁ ଦେଖିପାରିଲେ । ତାଙ୍କର ଭାବନ୍ତାର ଆସିଲା ନାହିଁ । ସେ ନିଜକୁ କହିଲେ—ମୁଁ ତା'ର ଫଟୋ ଦେଖିଛି । ମୁଁ ତାକୁ ଜାଣେ ।

ଉତ୍ତେଜନା । ଉତ୍ତେଜନାରୁ ଭଲପାଇବା । ନା ଭଲପାଇବାରୁ ଉତ୍ତେଜନା ? ଯାହାହେଉ ସେଥିରେ କିଛି ଯାଏ ଆସେ ନାହିଁ । ଶଶାଙ୍କ ବାବୁ ଅଯଥା ପ୍ରଶ୍ନ ଆଡ଼େଇଦେଇ ଭାବିଲେ ଯେ, ବାସର ରାତି ଉଚିତ ଭାବରେ ଗତି କରୁଛି । ସେ ଚୁମ୍ବନ ଦେବାକୁ ଉଦ୍ୟତ ହେଲେ ।

ଏହି ସମୟରେ କବାଟରେ କିଏ ଖଟ୍ ଖଟ୍ କଲା । ଶଶାଙ୍କ ବାବୁ ଆଶ୍ଚର୍ଯ୍ୟ ବିରକ୍ତ ହୋଇ ଉଠିପଡ଼ିଲେ ଓ କବାଟ ଖୋଲିଦେଲେ । ଦେଖିଲେ ମାଇଚିଆ ରାଜୁ ମାଷ୍ଟ୍ରେ । ସେ କାନ୍ଦ କାନ୍ଦ ହୋଇ କଅଣ କହିବେ ବୋଲି ଚେଷ୍ଟା କରୁଛନ୍ତି ଓ କ୍ଷମା ମାଗୁଛନ୍ତି ।

ସେ କହିଲେ ମାଛକଥା । ଠିକ୍ ସମୟରେ ମାଛ ଆଣି ହେଲାନାହିଁ, ବଡ଼ ମାଛ ମିଳିଲା ନାହିଁ । ସାହେବ ଭୀଷଣ ରାଗିଛନ୍ତି, କହିଲେ ନିକାଲି ଦେବେ; ତେଣୁ ଏହି ଅସମୟ ପ୍ରାର୍ଥନା,—ମୋତେ ବଞ୍ଚାନ୍ତୁ ।

କୌଣସିମତେ ଅଶ୍ୱାସନା ଦେବାକୁ ହେଲା । 'ମୁଁ ବାପାଙ୍କୁ କହିବି, ମୁଁ ବୁଝିବି' ଏହି କ୍ରମରେ କିଛି ସମୟ କହିଲାପରେ ରାଜୁବାବୁ ବିଦାୟ ନେଲେ ।

ତା'ପରେ ଶଶାଙ୍କ ବାବୁ ବାହାରଘରରେ ଘରକୁ ଫେରି ଗୃହିଁଲେ । ଦେଖିଲେ ଯେ, ଦ୍ୱିତୀୟ ବ୍ୟକ୍ତି ଖଟ ଉପରେ ସିଧା ହୋଇ ବସିଛନ୍ତି । କାୟା କଳେବର ସୁସ୍ପଷ୍ଟ । ମୁହଁରେ ଅଛି ଆହ୍ୱାନ ଗ୍ରହଣର ଭାବ,—ମୁଁ ଆସିଛି ।

କିନ୍ତୁ ଉତ୍ତେଜନା ଫେରିଆସିଲା ନାହିଁ ଏବଂ ଶଶାଙ୍କ ବାବୁ ଆବିଷ୍କାର କଲେ ଯେ, ଉତ୍ତେଜନା ଅନାବଶ୍ୟକ । ଭଲପାଇବା ମଧ୍ୟ ଅପ୍ରାସଙ୍ଗିକ । କାରଣ ତାଙ୍କର ମନେ ହେଲା ଯେ, ରାଜୁବାବୁ ଏହି ପରିଣୟ-ଅନୁଷ୍ଠାନର 'ହିରୋ'; ଶଶାଙ୍କ ମହାପାତ୍ର ନୁହଁନ୍ତି ।

ତେଣୁ ସେ ଭାବିଲେ ଯେ କେବଳ କବାଟ ବନ୍ଦ କରି ଦେଲେ ହିଁ ଯଥେଷ୍ଟ ହେବ ।



# ଗୋଟିଏ ବାହାଘର କଥା

କେବଳ କବାଟ ବନ୍ଦ କରି ଦେଲେ ହିଁ ଯଥେଷ୍ଟ ହେବ ।

ଏହି କଣ "ଶୁଭବିବାହ"ର ଶେଷ କଥା ? ଅର୍ଥାତ୍ ନାରୀ-ପୁରୁଷ ସଂଗମ, ତହୁଁ ସନ୍ତାନ, ଏବଂ ବଂଶରକ୍ଷା ହିଁ ସମାଜର ଚେଣୁ ବିଧାତାର ନିୟମ, ବାକି ସବୁ ଆନୁଷଙ୍ଗିକ ? ଗୌଣ, ଯଥା ପ୍ରେମ ରୋମାନ୍ସ ଆଦି ବସ୍ତୁ ଏବଂ ରାଜୁବାବୁଙ୍କ ମାଛ ?

ଭୁଲ୍ କହିଲ । ବୀରେଶ୍ୱର ମହାପାତ୍ର ଏକଥା ଶୁଣିଲାକ୍ଷଣି ଆହୁରି ତାତି ଉଠିବେ । କହିବେ ରଖ ତୁମ ପ୍ରେମ ଫ୍ରେମ— ତା'କୁ କଣ ହାତରେ ଧରି ହେବ, ଓଜନ କରି ହେବ ନା ତା' ବଦଳରେ ଦି' ପଇସା ମିଳିଯିବ ତୁମକୁ ? ବରଂ ଏଇ ମାଛ-ଗୁଡ଼ାକ ମନ ମୁତାବକ ହୋଇଥିଲେ କେତେ ଫାଇଦା ହୋଇ ଥାଆନ୍ତା ଭାବୁଛ ? ଖାଲି ମୋର ମାନ ରହି ଯାଇଥାଆନ୍ତା ନୁହେଁ, ଦୁର୍ଯ୍ୟୋଧନବାବୁ ବି' ବୁଝିଥାଆନ୍ତେ ଯେ ବୀରେଶ୍ୱର ବାବୁହିଁ ଏଯୁଗର ସାମନ୍ତ ରଜା, ତାଙ୍କ ସାଙ୍ଗରେ ଖେଳ ହେବ ନାହିଁ । କାର୍ ଦେବାକୁ କହିଛ ଯଦି ଦେବ, ଶୀଘ୍ର ଦେବ, ଚକଚକିଆ ବଡ଼ କାର୍ । ଜ୍ୱାଇଁଙ୍କ ବିଲାତ ଯିବାର ଅର୍ଥବ୍ୟବସ୍ଥା କରିବାକୁ ପଡ଼ିବ, ଆଜି ନ ହେଲେ କାଲି ସକାଳେ, ମାସକ ଭିତରେ । ଗୁଁ ପୁଁ ଚଳିବ ନାହିଁ । କିନ୍ତୁ ଏଇକ୍ଷଣି ତାଙ୍କର ମନେ ହେବ, ଏବଂ ଯେତିକି ଭଦ୍ରଲୋକଙ୍କ ଆଖିରେ ପଡ଼ିବ, ଯେ ମୁଁ ତାଙ୍କ ସମାସ୍କନ୍ଧ ବନ୍ଧୁ ନୁହେଁ । କାହିଁ ବିରାଟ ଜମିଦାର ଦୁର୍ଯ୍ୟୋଧନ ପଟନାଏକ ଓ କାହିଁ ଦରକାରି ଚାକିରିଆ ବୀରେଶ୍ୱର ମହାପାତ୍ର ! କାହିଁ ବରଯାତ୍ରୀମାନଙ୍କ ପତ୍ରରେ ପଡ଼ିଥିବା ବିଶାଳ ରସାଳ ଭକୁଡ଼ମୁଣ୍ଡ, ଗୋଟାଏ ଲେଖା ଜଣକୁ, ଓ କାହିଁ ଚଉଠି ଭୋଜିରେ ପରଶା ହୋଇଥିବା ଅନାମଧେୟ ମାଛର ଚରୁଡ଼ାଏ !

ହୁଏତ ନାହିଁ । ବୀରେଶ୍ୱର ମହାପାତ୍ର ଆଜି ମଧ୍ୟ ବଞ୍ଚିଛନ୍ତି ବୋଲି ମୋର ବିଶ୍ୱାସ, ମୋର ଏଇ ଗପଲେଖାର ଛତିଶି ପଇଁତିରିଶ ବର୍ଷ ପରେ । ସେ ବଞ୍ଚିଲେ ବଞ୍ଚନ୍ତୁ । ତାଙ୍କର ମହାନ୍ ସାଆନ୍ତିଆ ସ୍ୱାର୍ଥକୁ କୁଣ୍ଢେଇ ଧରନ୍ତୁ, ଶୁଖିଲା କାନ୍ଥକୁ ଗୋଇଠା ମାରନ୍ତୁ, ମୋର ଆପତ୍ତି ନାହିଁ । କିନ୍ତୁ ଦୁଃଖର ବିଷୟ ଯେ ଶଶାଙ୍କ ମହାପାତ୍ର ମଧ୍ୟ ମହଜୁଦ୍ ଅଛି, ସେ ଯେତେ ପାଠ ପଢ଼ୁ ବା ଦେଶବିଦେଶ ବୁଲି ଆସୁ ଯାଏ ଆସେ ନାହିଁ । ବଳେଇ ଆଖି ବୁଜି ଦୁଧ ପିଇଲା ପରି ସେ ସବୁ ଗ୍ଲାନି ଦେଉଛି ତାର ପୂଜ୍ୟ ପିତାମାତାଙ୍କ ଉପରେ । କହୁଛି, ମୁଁ କେମିତି ତାଙ୍କ ମନରେ କଷ୍ଟ ଦେବି ? ମୁଁ କାର୍ ନେବି ନାହିଁ, ଟଙ୍କାସୁନା ଛୁଇଁବି ନାହିଁ ବୋଲି କଣ ଘାଟି କରିବି ? ତା' ଛଡ଼ା ଇଏ କୋଉ ଯୌତୁକ ହୋଇଛି ? ନା ଆମର ଏତେ ଜାକଜମକ ଦରକାର ନାହିଁ ବୋଲି ଅଡ଼ି ବସିବି ? ମୁଁ କଣ ଜାଣେ ନାହିଁ ଯେ ତାଙ୍କ ତଳିଆ ଅଫିସର୍, ବ୍ୟବସାୟୀମାନେ ତାଙ୍କୁ ଭଲ ପାଇ ଯାହା କିଛି କରି ଯାଉଛନ୍ତି, ତାଙ୍କର ସେଥିରେ କିଛି ହାତ ନାହିଁ ? ତା' ଛଡ଼ା ତମର ଏତେ ମୁଣ୍ଡ ବଥଉଛି କାହିଁକି ? ଇଏ କୋଉ ଦୁର୍ନୀତି ନା କଣ ?

ଯୌତୁକ ଯୌତୁକ ନୁହେଁ । ଦୁର୍ନୀତି ଦୁର୍ନୀତି ନୁହେଁ । ମିଛ ମାନେ ସତ । ଅର୍‌ୱେଲ୍‌ଙ୍କ "1984" ମନେ ପଡ଼ୁ ନାହିଁ ? ଏବଂ ଗୁଡ଼ ଅନ୍ଧାରରେ ଖାଇଲେ ଯାହା, ଆଲୁଅରେ ଖାଇଲେ ସେଇଆ । କେବଳ କବାଟ ବନ୍ଦ କରି ଦେଲେ ହିଁ ଯଥେଷ୍ଟ ।

ଆପଣ କହିବେ ଯେ ଯୁଗ ବଦଳୁଛି । ଆପଣଙ୍କ ମଧ୍ୟରୁ ହୁଏତ କେଣେ ଅଧେ ପଣ୍ଡିତ ବାହାରିବେ ଯେଉଁମାନେ କହିବେ ଯେ ଲଭ୍-ମ୍ୟାରେଜ୍ ଠାରୁ ଏମିତିକା ବାହାଘର ଭଲ, କାରଣ ଏଥିରେ ବାହାଘର ସହଜେ ଭାଙ୍ଗିଯାଏ ନାହିଁ, ଏବଂ ପ୍ରେମ ଶୂନ୍ୟରୁ ଗଢ଼ି ହୋଇଯାଏ, ଅଲେଖା କାଗଜରେ ଛବି ଆଙ୍କିଲା ପରି—ଯାହା ବର୍ଟ୍ରାଣ୍ଡ୍ ରସେଲ କରିଛନ୍ତି । କିନ୍ତୁ ମୋର ମନେ ହୁଏ ଯେ ଆମ ସମାଜର (ବିଶେଷତଃ ଓଡ଼ିଆ ସମାଜର ) ଯୁଗ ଯେଉଁଭଳି ଗତିରେ ଏବଂ ଧାରାରେ ବଦଳୁଛି,

କଚ୍ଛପ ହାଇ ମାରିଲା ପରି , ସେଥିରେ ବ୍ରହ୍ମାଙ୍କୁ ଅପମାନ ଦେବା କଥା । ହଁ, ପ୍ରଖର ବୁଦ୍ଧିବାଦୀ ବର୍ଟ୍ରାଣ୍ଡ୍ ରସେଲ୍‌ଙ୍କୁ ମନେ ପକାଇଲେ ଭଲ । ତେବେ ସେ କହୁଥିଲେ ସଚେତ ସ୍ୱାଧୀନ ପୁରୁଷ-ସ୍ତ୍ରୀଙ୍କ କଥା, ଯେଉଁମାନେ ପରସ୍ପରକୁ ଦେଖିପାରିବେ ବୁଦ୍ଧି-ବସ୍ତୁର ବାହାରୁ ଅନ୍ତ, ଧୀରେ ସୁସ୍ଥେ ପ୍ରେମ କରିବେ ବୋଲି । ସେ ବାପର ପୁଅ ଏବଂ ଓଢ଼ଣା ତଳର ପ୍ରାଣୀମାନଙ୍କୁ ଚିହ୍ନି ନ ଥିଲେ । କି ଖଇଁଡ଼ମୁଣ୍ଡର ମୂଲ୍ୟ ତାଙ୍କୁ ଜଣା ନ ଥିଲା ।

ଛାଡ଼ନ୍ତୁ । ପ୍ରାକ୍ଟିକ୍ୟାଲ୍ ହେବାକୁ ପଡ଼ିବ । ସେଇଲାଗି କହୁଛି ପରା—ଶୋଇବା ଘର ହେଉ ବା ଭାବଭାବନାର ମନ୍ଦିର ହେଉ କବାଟ ବନ୍ଦ କରି ଦେଲେ ଗଲା ।

କଟକ

୧୬ ସେପ୍ଟେମ୍ବର ୧୯୮୬



# ଅତିଥି

ସେ କଲେଜରୁ ଫୋନ୍ କରି କହିଲେ, "ବୁଝିଲ, ତୁମ ବାପଘରୁ ଜଣେ କୁଣିଆଁ ଆସିଛନ୍ତି ।"

ସୁମିତ୍ରା ଦେବୀ ଶୁଣି ଖୁସି ହେଲେ । ଆରବର୍ଷ ଦୋଳ ବେଳକୁ ମାଆ ଆସିଥିଲା, ଦଶ ପନ୍ଦର ଦିନ ରହିକରି ଯାଇଛି । ତା' ପରଠୁ କାହାରି ଦେଖାଦର୍ଶନ ନାହିଁ ଏବେ ମାଆ ପାଖକୁ ଖଣ୍ଡେ ଅଭିମାନୀ ଚିଠି ଦିଆହୋଇଛି ।··· କିଏ ଆସିଛି ?

"କୁଣିଆଁ କିଏ ଜାଣ ? ତୁମ ଜଗୁଦାଦା···ଜଗଦୀଶ ବାବୁ ହେଲେ,—ବୁଝିଲ ଏଥର ? ଶୁଣ, ତାଙ୍କୁ କହିଛି ଆଜି ସଞ୍ଜରେ ଆମ ଘରେ ଗୃ' ଜଳଖିଆ ଖାଇବେ । ଡେରି କରିବ ନାହିଁ, କାହିଁକି ନା ସେ ସାତଟା ବେଳେ ଟ୍ରେନ୍‌ରେ ଫେରିଯିବେ । ···ମୁଁ ଗୋଟାଏ କାମରେ ଅଟକିଯାଉଛି, ଲେକ୍‌ଚରର୍ସ ଆସୋସିଏସନ୍‌ର ମିଟିଂ । କିଛି ଭାବିବ ନାହିଁ, ସୁନାଟି ପରି··· ।"

ସୁମିତ୍ରା ଦେବୀଙ୍କ ସ୍ୱାମୀଦତ୍ତ ଗେହ୍ଲାଡାକ ସୁନା । ସେ ଡାକ ସବୁବେଳେ ଶୁଣିବାକୁ ମିଳେନାହିଁ । ଏବଂ ତାକୁ ଶୁଣିଲେ ତାଙ୍କର ମନେହୁଏ ଯେ, ସେ ଗୋଟିଏ ଧଳା ମୂଷା, ଠେକୁଆ କିମ୍ବା ସେହି ଧରଣର ଜନ୍ତୁବିଶେଷ, ଯାହାର କର୍ତ୍ତବ୍ୟ କେବଳ ଗେହ୍ଲେଇହେବା, ଯେ ସ୍ୱାମୀରୂପକ ସଂସାର ତାଙ୍କୁ ଜୀବନଯାକ ଅଉଁସିଦେବ ଓ କିଛି ଭାବିବାକୁ ଦେବ ନାହିଁ । ଆଜି କିନ୍ତୁ ସେ ଡାକରେ ବିଶେଷ ମୂଲ୍ୟ ରହିଲା ନାହିଁ । କାରଣ ସୁମିତ୍ରା ଦେବୀ ଶୁଣିଲେ ଯେ ଜଗୁଦାଦା ଆସିଛନ୍ତି ।

ଜଗୁଦାଦା ନିଜ ଦାଦା ନୁହନ୍ତି, ଦୂରସମ୍ପର୍କୀୟ ଏବଂ ସେ ଜଣେ ମୁଖ୍ୟବ୍ୟକ୍ତି, ମୁରବି, ଗୁରୁଜନ । ପାଞ୍ଚବର୍ଷ ତଳର ଗୋଟିଏ ଫଗୁଣ ସଞ୍ଜ ପୂର୍ବରୁ ସେ ଥିଲେ ଗୋଟିଏ ତୁଙ୍ଗ କ୍ଳୀବ ଓ ସମ୍ମାନନୀୟ ବସ୍ତୁ-ସହରର ଦେଉଳ, ଟାଉନ୍‌ହଲ୍ ବା କଚିରୀଘର ପରି । କିନ୍ତୁ ହଠାତ୍ ସେଦିନର ସଞ୍ଜରେ ସେ ମଣିଷ ପାଲଟିଗଲେ ଓ କୁମାରୀ ସୁମିତ୍ରା ଦେବୀଙ୍କ ଜୀବନରେ ହାତ ପକାଇଲେ । ଇନ୍ଦ୍ରଙ୍କ ପରି ସେ ତାଙ୍କ ଦୁଇ ଆଖିରେ ଗୋଟିଏ ଦୃଶ୍ୟ ଦେଖିଲେ, ଅହୁରି ଦେଖିବାକୁ ମନ ବଳାଇଲେ ଓ

ଗଲା ଝଙ୍କାର ପାଖକୁ ଡାକଲେ । ବୁଢ଼ାଙ୍କର ସନ୍ତବେଳେ ଏକୁଟିଆ ସ୍କୁଲ ହତାରେ ବୁଲିବା କ ଦରକାର ଥିଲା ? ଯଦିବା ବୁଲିବାକୁ ହେଲା, ସେ ସାଥି ଆକାଶଙ୍କୁ ନ ଅନାଇ ନଗ୍ନଟିଆ ସ୍କୁଲ୍ ଘରର ଗୋଟିଏ ଝରକା ଅଡ଼କୁ ଅନାଇଲେ କାହିଁକି ? ନୀଚ, ଅତି ନୀଚ ।

ସେ ଆହତ । ମୋର ଭସିଯାଉଛି । ଏହି ମର୍ମରେ ସୁନୀତି ଦେବୀ ନିଜକୁ ଟେପରୁଆ ହେବାକୁ କହିଲେ । କିନ୍ତୁ ତାଙ୍କୁ ଭଲ ଲଗିଲା ନାହିଁ । ତାଙ୍କର ମନେ ହେଲା ଯେ, ଏହି ଲୋକଟି ତାଙ୍କ ଜୀବନର ପ୍ରଧାନ ଅଶାନ୍ତି ଓ ବିରକ୍ତି । ତା'ର ଆବିର୍ଭାବ ଜଣାଇଦେବ ଯେ 'ସୁନା' ଡାକ ଯଥେଷ୍ଟ ନୁହେଁ । ସେଥିରେ ଷୋଳଅଣା ସୁନା ନାହିଁ, ରହିବା ଅନୁଚିତ ।

ଯାହାହେଉ ସେ ନିଜକୁ ଖୁସି କରିବାକୁ ଚେଷ୍ଟାକଲେ । ଦର୍ପଣ ପାଖଆ ନେଇ ମୁଣ୍ଡ କୁଣ୍ଡାଇଲେ, ଗୁଣୁ ଗୁଣୁ ହେଲେ ଓ ସ୍ୱାମୀଙ୍କ କଥା ମନେ ପକାଇଲେ । କ୍ରମଶଃ ସେ ତାଙ୍କୁ ମନେମନେ ଚୁମ୍ବନ ଦେଇ ପାରଲେ ଓ 'ମୁଁ ତୁମର ସୁନା' ବୋଲି କହିପାରଲେ ।

ସ୍ନେଷେଇଘରେ ଅତିଥିଙ୍କ ପାଇଁ ତରକାରୀ ରାନ୍ଧିଲା ବେଳେ ମଧ୍ୟ ସେ ଗୁଣୁ-ଗୁଣୁ ହେଉଥିଲେ ।

ମୋଟ ଉପରେ ସେ ଯଥାସାଧ୍ୟ ନିଜକୁ ସମ୍ଭାଳି ରଖିଥିଲେ । ଚୌବାଉଦ ଆସି ଗୁଲିଯିବ ଅବା ରାଜପଥ କଡ଼ରେ ଥିବା ନର୍ଦ୍ଦମା ପରି ପଡ଼ିରହିବ, ତା' ପରେ ମୋର ଧବଶୁଭ ସ୍ୱାମୀର ସଂସାର—ଏହି ଭାବକୁ ମନରେ ବସାଇ ନେଇଥିଲେ । କିନ୍ତୁ ଶେଷକୁ ଯେତେବେଳେ ଜଗୁଦାଦା ଆସି ପହଞ୍ଚିଲେ ଓ ଗଲା ଖଙ୍କାର, ହାତଧରା ବାଡ଼ିଟା ବଢ଼ାଇଦେଇ କହିଲେ, "ଭଲ ଅଛୁ ତ ମା ?" ସେତେବେଳେ ସୁନୀତି ଦେବୀଙ୍କର ଇଚ୍ଛା ହେଲା ଚିତ୍କାର କରିଉଠିବେ । କାରଣ ସେ ପୁଣି ଅନୁଭବ କଲେ ସେହି ଉଦାରତାର ପାହାଡ଼-ବୋଝ ଏଥିରୁ କଣ ନିସ୍ତାର ନାହିଁ ?

ଉଦାରତା, ଅର୍ଥାତ ନୀଚତା । 'ଭଲ ଅଛୁ ତ ମା' । କେବଳ ଏହି କଥାପଦକ ନୁହେଁ, ତାଙ୍କର ସମଗ୍ର ଭଙ୍ଗୀ । ତାଙ୍କର ପୁରୁଣା ଶେତା ଆଖିର ଧୂର୍ତ୍ତି ବର୍ତ୍ତମାନ ଗୃହାଣୀ । ବୋଧହୁଏ ସେ ଆଖି ଯେତେ ବୁଢ଼ା ହେଉଛି, ସେତେ ଏହି ସଂସାରକୁ ଦେଖିପାରୁଛି, ତା'ର ମଳାଧୂଳିର ହିସାବ ରଖି ପାରୁଛି । ତାଙ୍କ କଣ୍ଠର ଜଳଦଧ୍ୱନି, —ଯାହା ପବନରେ ବସା ବାନ୍ଧେ, ଖେଳାଇ ହୋଇଯାଏ ନାହିଁ, ଯାହାର ଧୈର୍ଯ୍ୟ, ପ୍ରସ୍ଥ ଓ ଗମ୍ଭୀରତା ମାପି ହେବ ବୋଲି ମନେ ହୁଏ । ତାଙ୍କର ଅନାବନା ଦାଢ଼ି, ପ୍ରଗଲ୍ଭ ଓ କୁତ୍ସିତ । ତାଙ୍କ ଲମ୍ବା କୋଟ ପକେଟରୁ ଉଠି ଆସିଥିବା ମେଞ୍ଚାଏ

ରୁମାଲ,—କୌଣସି ଦୋକାନୀର କାନରେ ଖୋସା ହୋଇଥିବା ପେନ୍‌ସିଲ୍ ପରି, ଯେଉଁଥିରୁ ଜଣାପଡ଼େ ଯେ ସେ ସଂସାର କାର୍ଯ୍ୟରେ ଲିପ୍ତ, ତେଣୁ ବେଶ ହେବାକୁ ବେଳ ନାହିଁ । ତାଙ୍କର ଗଳା ଖଙ୍କାରିବା, ଯାହାର ଅର୍ଥ,—ମୁଁ କହିବାକୁ ଚାହେଁନାହିଁ କିନ୍ତୁ ନ କହି ଉପାୟ ନାହିଁ । ତାଙ୍କର ଝିନସ୍ନୀ ଅନ୍ତର୍ଗତ ସ୍ମିତହାସ, ମହାତ୍ମାମାନଙ୍କ ପରି । ଯେପରି କି ସେ ସବୁଙ୍କ ଓ ସେଥିପାଇଁ କ୍ଷମା ମାଗି ନେଉଛନ୍ତି । ତାଙ୍କର ବାର୍ଦ୍ଧକ୍ୟ, ତାଙ୍କର ପ୍ରବୀଣତା । ତାଙ୍କର ଉଦାରତା, ନୀଚତା ।

ସୁନୀତି ଦେବୀ ଭୂମିଷ୍ଠ ପ୍ରଣାମ କଲେ । ମାଆ ପଠାଇଥିବା ଜିନିଷପତ୍ର ସଜାଡ଼ି ରଖୁ ରଖୁ କୁଶଳ ପ୍ରଶ୍ନ ପଚାରିଲେ, —ବାପା ଭଲ ଅଛନ୍ତି ? ମାଆ ଭଲ ଅଛି ? ଖୁଡ଼ି ଭଲ ଅଛନ୍ତି ? ଇତ୍ୟାଦି । କିନ୍ତୁ ତାଙ୍କର ସ୍ମରଣରେ ଆସିଲା ସେହି ଫଗୁଣ ପଞ୍ଚ ଯେଉଁଦିନ ଜଗୁଦାଦାଙ୍କ ଉଦାରତା ତାଙ୍କ ଜୀବନରେ ପ୍ରଥମେ ପ୍ରବେଶ କଲା ଓ ଦାଗ ରଖିଦେଇ ଗଲା ।

···ସେଦିନ । ଝାପ୍‌ସା ଅନ୍ଧାର ଭିତରୁ ହଠାତ୍ ଗୋଟିଏ ମଣିଷ ଶବ୍ଦ ଶୁଣିବାକୁ ମିଳିଲା । ତାକୁ ଠଉରେଇ ହେଲାନାହିଁ । ହିମାଳୟର ଶୁଭ୍ରତମ ଶୃଙ୍ଗ ଉପରେ କିମ୍ବା ମହାସାଗରର ପାତାଳ ରାଜ୍ୟରେ ଥିଲାବେଳେ ଏମିତି କେତେ ଅଦ୍‌ଭୁତ ଶବ୍ଦ କାନରେ ବାଜେ । ସେ ସବୁ କଣ ସତ ? ପ୍ରଥମେ ଦୁଇଜଣ ପରସ୍ପରକୁ ଆହୁରି ଜୋରରେ ଜାବୁଡ଼ି ଧରିଲେ, ଅଦ୍‌ଭୁତଙ୍କୁ ଆଡ଼େଇ ଦେବାପାଇଁ । କିନ୍ତୁ ଗଳା ଖଙ୍କାରିବା ସ୍ପଷ୍ଟ ହୋଇଉଠିଲା । ଆଲିଙ୍ଗନ କୋହଲ ହେଲା ଓ ଦୁହେଁ ବିସ୍ଫାରିତ ଆଖିର ଆଖିପତା ଆନ୍ଦୋଳିତ କଲେ । କଣ ହେଲା ? ପ୍ରଥମେ ସାହସ ବାନ୍ଧିଲେ ସୁନୀତି ଦେବୀ । ସେ ମୁହଁ ଫେରାଇ ଝରକା ଆଡ଼କୁ ଚାହିଁଲେ ଓ କିଏ ବୋଲି ପାଟିକଲେ । ଉତ୍ତରରେ ଶୁଭିଲା ଧୀର ଅଭୟ ବାଣୀ, ଉଦାରତାର ପ୍ରଥମ ପଦକ୍ଷେପ, —କିଏ ସୁନୀ କଲେ ? ମୁଁ ଜଗୁଦାଦା । ଡର୍ ନାହିଁ । ଟିକିଏ ବାହାରକୁ ଆସି-ପାରିବୁ ?···

ନ ଯାଇ ଉପାୟ ନ ଥିଲା । ମୋ ଜାଗାରେ ଆଉ କିଏ ଥିଲେ କଣ କରିପାରି ଥାଆନ୍ତା ? ସୁନୀତି ଦେବୀ ନିଜକୁ ଦୋଷ ଦେଇ ପାରିଲେ ନାହିଁ ।

ଜଗଦୀଶ ବାବୁ ଖବର ଅନ୍ତର ଶୁଣାଉଛନ୍ତି, "···ତୋ ବାପାକୁ ଆସିବାକୁ କହିଲି,—ବୁଝିଲୁ ? କିନ୍ତୁ ସେ କଅଣ ସହଜରେ ଘର ଛାଡ଼ି ଆସିବ ? ତା' ଗାଈଗୋରୁ କାନ୍ଦିବେ, ତା' ଠାକୁର ଉପାସ ରହିବେ, ନ ହେଲେ କଣ ନା ଜଳବାୟୁ ଦେହରେ ସିବନାହିଁ । କଉ, ନିଜକୁ ଟିକିଏ ଛାଣୁଆ କର । ବୁଢ଼ା ହେଲ, ଏଥର ଟିକିଏ ସଂସାରଟାକୁ ଦେଖ । ସେ ହରୁଦିନେ ସେମିତି । ତା' ଦି' ବଖରା ଘର ଆଉ ଠାକୁର ଭଲ କି ସେ ଭଲ । ତା' ପିଲାମାନଙ୍କୁ ବଡ଼େଇ ମଣିଷ କରିପାରିଲେ

ଯେତିକି ଯଥେଷ୍ଟ ।” ଜଗଦୀଶ ବାବୁ ହସିଲେ । ତା’ପରେ କହିଲେ, “ଶୁଣ, ମୁଁ ବେଶି କିଛି ଖାଇବି ନାହିଁ । ଟ୍ରେନ୍ ଧରିବା ଆଗରୁ ମୁଁ ଆଉ ଜଣଙ୍କ ଘରକୁ ଯିବି । ଏଠିକାର ଜଣେ ବଡ଼ ବ୍ୟବସାୟୀ । ମୁଁ ତାଙ୍କୁ ଗୋଟାଏ ବଡ଼ କେସ୍‌ରେ ଜିତେଇ ଦେଇଥିଲି । ତା’ଠାରୁ କିଛି ଟଙ୍କା ହାସଲ୍ କରିବି, ଆମ ସ୍କୁଲ ଲାଇବ୍ରେରୀ ପାଇଁ···।

କାମିକା ଜଗୁଦାଦା । ସବୁଆଡ଼େ ଯାଆନ୍ତି, ସବୁଥିରେ ମୁଣ୍ଡ ପୂରାନ୍ତି । ପୀଡ଼ିତା ବସୁଧାର ସବୁ ପ୍ରାଣୀ ତାଙ୍କର କୁଟୁମ୍ବ । ସମସ୍ତେ ତାଙ୍କଠାରେ ଋଣୀ । ସୁମୀତି ଦେବୀ ନିଜେ ନେଇଥିବା ଋଣ କଥା ଭାବିଲେ—ଏ ହେଉଛି ଗ୍ଲାନି ଅପମାନର ଋଣ । ଏହାର ପରିଶୋଧ କରିହେବ ନାହିଁ । କିନ୍ତୁ ପ୍ରତିଶୋଧ ନେଇହେବ ନାହିଁ ?

ସୁମୀତି ଦେବୀ ଅନୁଶୋଚନାରେ ଅଉଟିହେଲେ । ମୁଁ କାହିଁକି ବାପାଙ୍କୁ ସବୁ କଥା କହିଲି ନାହିଁ ? ସେ ରାଗିଥାନ୍ତେ, ମୁଁ ରାଗି ଥାନ୍ତି । ମୁଁ ଆତ୍ମହତ୍ୟା କରିବାକୁ ଯାଇଥାଆନ୍ତି, ସେ ଠାକୁରଘରେ ଏକୁଟିଆ ବସି ରହୁଥାଆନ୍ତେ । ତା’ ପରେ ସବୁ ଠିକ୍ ହୋଇଯାଇଥାଆନ୍ତା । ନିଷ୍ପତ୍ତି ହୋଇଥାଆନ୍ତା । ତେବେ ମୁଁ କାହିଁକି ଏ ଲୋକଟାର ଧାରୁଆ ହେଲି ?

ସେ ତରବର ହୋଇ ଜଳଖିଆ ସଜାଡ଼ିଲେ, ରୁପା ଗିଲାସରେ ପାଣି ରଖିଲେ । ‘ମୁଁ ଆଗରୁ ଜାଣିପାରିଲି ନାହିଁ, ଭଲ ମନ୍ଦ କିଛି କରି ପାରିଲି ନାହିଁ, ଇତ୍ୟାଦି କହି ଦୁଃଖ ପ୍ରକାଶକଲେ । ଜଗୁଦାଦାଙ୍କ ଚର୍ଚ୍ଚା କଲେ ଓ ତାଙ୍କ ଆତ୍ମୀୟତାର ଘରୋଇ କଥା ଶୁଣିଲେ । କିନ୍ତୁ ପ୍ରତିମୁହୂର୍ତ୍ତରେ ତାଙ୍କ ମନରେ ଆସୁଥାଏ,—ମୁଁ ଋଣ ଶୁଝି, ମାନେ ଫେରାଇ ଦେଇପାରିବିନାହିଁ ? ଆଜି ନ ହେଲେ ଆଉ କେଉଁଦିନ, —କେବେହେଲେ ପାରିବିନାହିଁ ?

ଜଗୁଦାଦା କହୁଛନ୍ତି, “ମୁଁ ଆଜିକାଲି ଆଗପରି ଖାଇ ପାରୁ ନାହିଁ । ଯେତେହେଲେ ବୟସ ଗଲାଣି । ତେବେ ମୁଁ ନିଜକୁ ଫିଟ୍ ରଖିଛି । ସକାଳ ସନ୍ଧ୍ୟାରେ ବେଶ୍ ଦୁଇତିନି ମାଇଲ ଚାଲୁଛି । ଦିନେ ମୋ ସାନଝିଅ ତନୁ ପଚାରିଲା,—ବାପା ତୁମେ ଏହି ବାଡ଼ିଟାକୁ କାହିଁକି ସାଙ୍ଗରେ ନିଅ ? କଣ ବାଡ଼ି ନା ଧରିଲେ ଚାଲି-ପାରିବ ନାହିଁ ? ମୁଁ କହିଲି,—ହଁ, ମୁଁ ବୁଢ଼ା ହେଲଣି ପରା ! ସେଇଠୁ ସେ ଠୋ ଠୋ ହୋଇ ହସିଲା । ···ତନୁକୁ ପାଞ୍ଚ ପୂରି ଛଅ ଚାଲୁଛି । ତା ସାନ ଭାଇକୁ ବର୍ଷେ ପୂରିବ, ଏଇ ଆସନ୍ତା ଡିସେମ୍ବରରେ । ତୁ ସାନକୁ ଦେଖିନାହୁଁ,—ନା ?···”

ନା, ମୁଁ ଦେଖିନାହିଁ କି ଦେଖିବାକୁ ଚାହେଁ ନାହିଁ । ସୁମୀତି ଦେବୀ ମନେ-ମନେ କହିଲେ । ତୁମ ନୀଚତାର ସବୁ ସନ୍ତକ ମୋ ଆଖିରେ ଗେଞ୍ଜି ନ ଦେଖାଇଲେ ଚଳିବ । ନୂଆ ଖୁଡ଼ୀ କେମିତି ତୁମ ଦେହକୁ ଆସିବାକୁ ଦେଲେ ? ଶୀତ୍କାର କଣ ଉଠିଲେ ନାହିଁ ।

ଏ କୁତ୍ସିତତା ପାପ ନୁହେଁ ?

"ଆଉ ରସଗୋଲା ଦେବ,—ଜଗୁଦାଦା ?" ଜଗଦୀଶ ବାବୁ ଆଉ ଗୋଟିଏ ନେଲେ ଓ ପୁଣି ଦେବାକୁ ବାରଣ କଲେ । ରସଗୋଲା ପାଟିରେ ପୂରାଇ କହିଲେ, "ବ୍ୟସ୍ତ ହୁଅନା । ମୁଁ ପୁଣି କେତେଥର ଆସିବି । ମନବୋଧ କରି ଖୁଆଇବୁ ।" ତା ପରେ ସନ୍ତୋଷ ଜଣାଇ କହିଲେ, "ଏ ଅଞ୍ଚଳର ରସଗୋଲା ପ୍ରକୃତରେ ବଢ଼ିଆ । ତଳୁ ମାଆର ବରାଦ ଅଛି । ମୁଁ ଯାଇଂରେ କିଛି ନେଇକରି ଯିବି ।"

ସୁନୀତି ଦେବୀଙ୍କର ଇଚ୍ଛା ହେଲା କହିବେ.—ନେଇ ଯାଆ ଯେତେ ନେବ । ଦରକାର ହେଲେ ମୁଁ ଏଠୁ ପାର୍ସଲ କରି ପଠାଇବି । କିନ୍ତୁ ମୋ ପାଖକୁ ଆଉ ଆସ ନାହିଁ ।

ଏ କାମନା ପିଚ୍ଛିଳଅଂ, ନିରର୍ଥକ । ଜଗୁଦାଦା ନ ଆସିଲେ ମଧ୍ୟ ତାଙ୍କ ସ୍ମୃତି ରହିଥିବ,—ତାଙ୍କ ଉଦାରତା, ତାଙ୍କ ଦାନର ମହିମାକଳା ସ୍ମୃତି । ସେ ମୋତେ ରକ୍ଷା କରିଥିଲେ ! ସୁନୀତି ଦେବୀ ବିବର୍ଣ୍ଣ ହେଲେ ଓ ପଛ କଥାର ଇତିହାସ ପୁଣି ମନେ ପଡ଼ିଲା ।

···ସ୍କୁଲ ଘରୁ ବାହାରି ଆସିଲା ବେଳେ ଛାତି ଦମ୍ କମ୍ କରୁଥିଲା । ଅଜଣା ଭୟର ଭୂତ ପ୍ରଶ୍ନ କରୁଥିଲା,—କଣ ହେବ ? ଏହାପରେ କ'ଣ ହେବ ? ଜଗୁଦାଦା ପ୍ରଥମେ ଯନ୍ତ୍ରା-ଦୃପ୍ତାର ମୁହଁକୁ ଜଳଜଳ କରି ଚାହିଁଲେ । ବୋଧହୁଏ ହିସାବ କରୁଥିଲେ ଯେ ଏ ମୁହଁରେ ଦୃଢ଼ କେତେ ଓ ମିଛ କେତେ, ଧୈର୍ଯ୍ୟ କେତେ ଓ ସାହସ କେତେ । ତାଙ୍କର ଯେଉଁ ତଉଲବା ଚାହାଣୀ ସହି ହେଉ ନ ଥିଲା । ଆଉ ଟିକିଏ ଡେରି କରିଥିଲେ ସୁନୀତି ଦେବୀ ନିଶ୍ଚୟ ରାଗିଯାଇ ଥାଆନ୍ତେ ଓ ଚଟକରି କଣ କହି ପକାଇ ଥାଆନ୍ତେ । କିନ୍ତୁ ଜଗୁଦାଦା ସେ ଯାଏଁ ଅପେକ୍ଷା କଲେ ନାହିଁ । ପିଠିରେ ହାତ ଆପୁଡ଼େଇ କହିଲେ ସ୍କୁଲ ଘରକୁ ଯିବା । ମୁଁ ତୋ ବାପାକୁ କହିବି ନାହିଁ, କାହାକୁ କିଛି କହିବି ନାହିଁ ।

ସେ ଆଶ୍ୱାସନାକୁ ଆଡ଼େଇ ଦେଇ ହେଲନାହିଁ । କହି ହେଲା ନାହିଁ ଯେ ମୋର ଦରକାର ନାହିଁ, ମୁଁ କିଛି ଭୁଲ୍ କରି ନାହିଁ, ସମସ୍ତେ ଜାଣନ୍ତୁ କିଛି ଯାଏ ଆସେ ନାହିଁ । ବରଂ ସେ ଆଶ୍ୱାସନା ଶାନ୍ତିର ଚନ୍ଦନ ପରି ଲାଗିଲା । ବିରାମର ଶାନ୍ତି,—ଟିକିଏ ସମୟ ମିଳିଲା, ମୁଁ ଭାବିବି । ଗୋଟାଏ ବଡ଼ କିଛି ହୋଇଗଲା । ଆଖି ଝଲସିଗଲା, ତା'ପରେ ସବୁ ଅନ୍ଧାର । ଏଥର ମୁଁ ସୁସ୍ଥ ହୋଇ ଚତୁଃର୍ଦ୍ଦିଗ ଦେଖିବି, ନିଜକୁ ଦେଖିବି ଓ ଭାବିବି ।

କିଛି ସମୟ ପରେ ଜଗୁଦାଦା କହିଲେ,—ସେ ଘରେ ଆଉ କିଏ ଅଛି ? ବୀର ନାୟକ, ନା ? ମୁଁ ଜାଣେ । ମୁଁ ତାକୁ କହିବି ନାହିଁ, ତା' ବାପାକୁ କିଛି କହିବି ନାହିଁ । ତୁ ଘରେ ଚୁପ୍‌ଚାପ୍ ହୋଇ ରହ । ବୁଝିଲୁ ? ମୁଁ ସବୁ କଥା ବୁଝିବି, ସବୁ ଠିକ୍ କରିଦେବି ।

କେଉଁ କଥା ବୁଝିବେ ? କଣ ଠିକ୍ କରିଦେବେ ? ଅନେକ ପ୍ରଶ୍ନ ପଚାରିବାର ଥିଲା, କିନ୍ତୁ ପଚାରି ହେଉନାହିଁ । ଅନିର୍ଦ୍ଦିଷ୍ଟ ଭାବରେ ସୁମିତ୍ରା ଦେବୀଙ୍କ ମନରେ ଆସିଲା ଯେ ସବୁ ଠିକ୍ ହୋଇଯିବ,—ମୋର ଭଲ ପାଇବା, ମୋର କଳ୍ପନା, ମୋର ଭବିଷ୍ୟତ ।

ମଝିରେ ମଝିରେ ଜଗୁଦାଦା ମୁଣ୍ଡ ହଲାଇ କହୁଥିଲେ, "କିଛି ଚିନ୍ତା ନାହିଁ" ଓ ପିଠିରେ ହାତ ରଖୁଥିଲେ । ସେ ହାତକୁ ଛାଡ଼ି ଦେଇ ହେଲାନାହିଁ ।

ଘରକୁ ଫେରିବା ବାଟରେ ଜଣାଶୁଣା ରାସ୍ତାଘାଟ । ସ୍କୁଲ ପଡ଼ିଆ ପୁରୁଣା ବରଗଛ ଯାହାର ଦେହରେ କେତେ ସତମିଛ ପ୍ରେମର ପରିଚୟ ଦିଆହୋଇଛି । ମହେନ୍ଦ୍ର ବାରିକ୍‌ର ଚା' ଦୋକାନ । ମହେନ୍ଦ୍ର ବାରିକ୍ ପିଲାଦିନେ ଗୋଟିଏ ଲେଖା ଅଧଲା ଲଟେନନ୍ସ ହାତରେ ଦେଇ କହୁଥିଲା, ସୁନାନାକୀ ଝିଅ ଲୋ, ତୁ ବଡ଼ ହେଲେ ଅସଲ ଜଣେ ହେବୁ । ଶିଉଳଲଗା ଗିର୍ଜାଘର, ସନ୍ଧ୍ୟାର ଘଣ୍ଟା ବାଜୁଛି । ସରକାରୀ ବଗିଚା, ଯେଉଁଠି ଆଠକାଳ ବାରମାସୀ ଗୋଲାପ ଫୁଲ ଫୁଟେ । ମାଣିକ ମା' ପୋଖରୀ ତୁଠରେ ପଞ୍ଚାଏ ଟୋକା ବସି ହସଖୁସି ହେଉଛନ୍ତି । ପିଲାଦିନେ ବେଶି ରାଗିଲେ, ଇଚ୍ଛା ହେଉଥିଲା ଏହି ପୋଖରୀରେ ବୁଡ଼ି ମରିବାକୁ । ତା' ପାଣି ଭାରି ଥଣ୍ଡା ।

ସେମାନେ କିଛି କହିଲେ ନାହିଁ, ଆଖି ଦେଖାଇଲେ ନାହିଁ । ବରଂ ମନେ ହେଉଥିଲା ଯେ ଜଗୁଦାଦା ସେମାନଙ୍କୁ ମଧ୍ୟ ବୁଝାଇ ଶୁଝାଇ ଦେଇଛନ୍ତି । ସେମାନେ ସାମାନ୍ୟ କୌତୂହଳ ଓ ଅଳସ ମମତାରେ ଚାହିଁଛନ୍ତି,—ଆମର ସୁମିତ୍ରା, ତା ଜୀବନରେ ଗୋଟିଏ ବଡ଼ କଥା ଘଟିଛି ।

କେବଳ ବାକୀ ଥିଲେ ବାପା । ସେ କିଛି ପଚାରିବା ଆଗରୁ ଜଗୁଦାଦା କହିଲେ, "ଏ ତା' ସାଙ୍ଗ ଘରକୁ ପଢ଼ିବାକୁ ଯାଇଥିଲା । ଏକୁଟିଆ ଅନ୍ଧାରରେ ଫେରୁଥିଲା, ମୁଁ କହିଲି ଚାଲ ଛାଡ଼ିଦେଇ ଆସିବି । ··· କଅଣ ପୂଜାପୂଜି ସରିଗଲାଣି ?"

ବାପା ଜଗୁଦାଦାଙ୍କୁ ଉତ୍ତର ନ ଦେଇ ଝିଅର ମୁଣ୍ଡ ଆଉଁସିଦେଲେ, ମିଛ ରାଗରେ କହିଲେ, "ଦେହ ପଛକେ ଶୁଖିଶାଖି କଣ୍ଟା ହେଲାଣି । ବେଶି ପଢ଼ି କରି ଅଧିକଟା କଣ ହେବ ?"

ସେତିକିବେଳେ ଓ କ୍ଷଣକପାଇଁ ଇଚ୍ଛା ହେଲା କାନ୍ଦି ପକାଇବାକୁ । କିନ୍ତୁ କାନ୍ଦି ହେଲାନାହିଁ । ......

ଜଗଦୀଶ ବାବୁ ଚା’ କପଟିଆ ଶେଷ କରି ବିଶ୍ରାମ ନେଲେ । ଲମ୍ବା କୋଟ୍‌ରେ ବୋତାମ ଲଗାଇଲେ, ବାଡ଼ିଟିକୁ ଫେରାଇଆଣି ଚଉକିର ହାତରେ ଓହଳାଇ ଦେଲେ ଓ ଚଉକିରେ ବସିରହି ଘରର ଚାରିଆଡ଼େ ଆଖି ବୁଲାଇଲେ । ମନେହେଲା ଯେ ସେ ସୁନୀତି ଦେବୀଙ୍କ ଚକ୍‌ଚକ୍ ରନ୍ଧା ବାସନ ଓ ପରିଚ୍ଛନ୍ନ ଚଟାଣ, କାନ୍ଥରେ ଟଙ୍ଗା ହୋଇଥିବା ମହାତ୍ମା ଗାନ୍ଧୀ ଓ ଶିବପାର୍ବତୀଙ୍କ ଛବି ଇତ୍ୟାଦିର ଦରକରଣା ଦେଖୁଛନ୍ତି ଓ ଅନୁମୋଦନ କରୁଛନ୍ତି ।

କୃତଜ୍ଞତାକୁ ପୁରସ୍କାର ଦେଲାପରି ସେ କହିଲେ, “ମୁଁ ଏହାପରେ ଯେବେ ଆସିବି, କନୁମାଆକୁ ସାଙ୍ଗରେ ନେଇ ଆସିବି, ସେ ତୋର ପାଖରେ ରହିବ ।” ତା’ ପରେ ବନ୍ଧୁ ସୁଲଭ ଭଙ୍ଗୀରେ ହସ ହସ ହୋଇ କହିଲେ, “ତାର ଭାରି ଆସିବାକୁ ଇଚ୍ଛା,—କାହିଁକି ଜାଣୁ ? ଏଠିକାର ସିଲ୍‌କ୍ ଶାଢ଼ୀ । ଆମ ଆଡ଼େ ଏ ଶାଢ଼ୀ ନିଶ୍ଚୟ ମିଳେ । କିନ୍ତୁ ଏଠୁ ନେଲେ ତା’ର ମର୍ଯ୍ୟାଦା ଅନ୍ୟରକମ— ।”

ପ୍ରଥମେ ରସଗୋଲା; ବର୍ତ୍ତମାନ ଶାଢ଼ୀ । ସୁନୀତି ଦେବୀ ଶୁଣିଗଲେ ।

“—କିନ୍ତୁ ଗୋଟାଏ କଥା । ମୋ ବଡ଼ ଝିଅ ଜୟନ୍ତୀର ବି ଶାଢ଼ୀ ଦରକାର । କାହାପାଇଁ କେମିତି ଶାଢ଼ୀ ବାଛିବାକୁ ହେବ; ସେ ଭାର ତୋ ଉପରେ । ଖୁ-ଉ-ବ୍ ସାବଧାନ ହେବାକୁ ହେବ । କାହିଁକି ବୁଝୁଛୁ ତ ?” ଏହା କହି ସେ ମୁରୁକି ହସା ଦେଲେ । ଯେପରି କି କେବଳ ଟିକିଏ ଆଖିଠାର ଉହ୍ୟ ରହିଗଲା ।

ବୁଝୁଛି ଜଗୁଦାଦା, ସହସ୍ରବାର ବୁଝୁଛି । ମୋ ଛଡ଼ା ତୁମର ନିର୍ଲଜ ଆମୋଦ ଆଉ କିଏ ବୁଝିପାରିବ ? ସୁନୀତି ଦେବୀ ତିକ୍ତତାରେ ମନକୁ ମନ କହିଲେ । ତୁମର ବଡ଼ ଝିଅକୁ ବୟସ ଯେତିକି ତୁମର ଦ୍ୱିତୀୟା ସ୍ତ୍ରୀର ବୟସ ପ୍ରାୟ ସେତିକି । ତୁମେ ଉଦାର, ଦୁଇଜଣଙ୍କ ଭିତରେ ପାତର ଅନ୍ତର କରିବାକୁ ଚାହଁ ନାହିଁ । ଦୁହିଙ୍କ ଶାଢ଼ୀ ଏମିତି ହେବା ଦରକାର ଯେ, କାହାରି ମନ ଊଣା ହେବ ନାହିଁ ।

ଜଗୁଦାଦା ! ତୁମେ ନିଜକୁ, ନିଜର ମନଜୀବନକୁ କେବେ କେମିତି ଦର୍ପଣରେ ଦେଖିଛ ? ଯଦି ନ ଦେଖିଥାଅ ତାହେଲେ ମୋ’ଠାରୁ ଶୁଣି ଯାଅ । ସୁନୀତି ଦେବୀ ତାଙ୍କ ଅକୁହା କଥାର ତିରସ୍କାର ଢାଳିଦେଲେ,—

ତୁମେ ଦିନରେ ଲମ୍ବାକୋଟ ଓ ସମାଜ, ରାତିରେ ନିର୍ବେଳା ଦେହ ଓ ଜନ୍ତୁ । ତୁମର ସମାଜ ସେବା, ତୁମର ଓକିଲାତି, ତୁମର ଟେକ୍‌ସ ଏବଂ ତୁମର ନିରାସକ୍ତି,

ଅର୍ଥାତ୍ ହୃଦୟହୀନତା । ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ଗୁଣ ପୂର୍ଣ ହୋଇଗଲା । କିନ୍ତୁ ଭଗବାନଙ୍କ ମଣିଷ ଏମିତି ନୁହେଁ । ଅସମ୍ଭବ ।

ତାହାହେଲେ ସଂସାରକୁ ରକ୍ଷା କରିବାପାଇଁ, ସୁମିତ୍ରମାନଙ୍କୁ ରକ୍ଷା କରିବାପାଇଁ କଣ ତୁମପରି ଲୋକ ନିହାତି ଦରକାର ?

ମୋ ଆଡ଼କୁ ସେମିତି ଚାହିଁ ରହନାହିଁ ଜଗୁଦାଦା । ସେମିତି ପାଟି ଚିକୁଲେଇ ଚିକୁଲେଇ ପାନ ଚୋବାଅନାହିଁ । ଘୁରିଘୁରି ମୋର ଘର ଦୁଆରକୁ ଦେଖି ମନେ ମନେ ଖୁସି ହୁଅନାହିଁ ଯେ, ତୁମଦ୍ୱାରା ଏସବୁ ହୋଇପାରିଲା । ତୁମ ସାଙ୍ଗରେ ମୋର କିଛି ସମ୍ବନ୍ଧ ନାହିଁ । ତୁମର ଛାଇ ମୋ ସଂସାର ଉପରେ ପଡ଼ିବ ନାହିଁ । ନାହିଁ, ନାହିଁ, ନାହିଁ ।

ହୁଏତ ମୁଁ ବୀରଭାଇଙ୍କୁ ବାହାହୋଇ ପାରି ନ ଥାଆନ୍ତି । ପ୍ରକୃତରେ ବାହା-ହେଲେ ଭଲ ହୋଇ ନ ଥାଆନ୍ତା । ମୁଁ ସୁଖୀ ହୋଇ ପାରି ନ ଥାଆନ୍ତି । କାରଣ ଆନନ୍ଦର ଜ୍ୱାଳା ଓ ବେଦନାକୁ ନେଇ ଘର କରିହୋଇ ନ ଥାଆନ୍ତା । କିନ୍ତୁ ସେ ମୋର ପ୍ରଥମ ଆବିଷ୍କାର, ରାଜକୁମାର । ମୋର ମନେ ପଡ଼ୁଛି ଯେ ଦିନେ ବୀରଭାଇଙ୍କ ଛନଛନିଆ ଗୋରା ପାତଳା ମୁହଁକୁ ଦେଖି ଏତେ ଭଲ ପାଇଲା ପରି ଲାଗିଲା ଯେ, ଇଚ୍ଛା ହେଲା ସେ ଯୀଶୁ ହୋଇ ଯାଆନ୍ତେ ଓ ମୁଁ ତାଙ୍କ କ୍ରୁଶବିଦ୍ଧ ଦେହକୁ ଦେଖି ଲୁହ ଗଡ଼ାଉଥାଆନ୍ତି । ସେ ଭାବର ସୌନ୍ଦର୍ଯ୍ୟ ନିଆରା । ତୁମେ ସେଦିନ ଯାହା ଦେଖିଲ,—କଅଣ ଦେଖିଲ ? କଅଣ ବୁଝିଲ ?

ସୁମିତ୍ର ଦେବୀ ସାହସୀ ହୋଇଉଠିଲେ । ସେ ଭାବିଲେ,—ମୁଁ ଯଦି ବର୍ତ୍ତମାନ କହେ ଯେ, ମୁଁ ବୀରଭାଇଙ୍କୁ ଅର୍ଥାତ୍ ସେହି ସୁନ୍ଦର ସ୍ମୃତିଗୁଡ଼ିକୁ ଭଲପାଏ, ତାହାହେଲେ କିଛି କ୍ଷତିନାହିଁ ଏବଂ ସେ ଦେଖିଲେ ଯେ, ଜଗୁଦାଦା ପୂର୍ବବତ୍ ବସି ରହିଛନ୍ତି ଜଗଦ୍‌ଗୁରୁ ଗାନ୍ଧୀଙ୍କ ପରି, 'ତାଙ୍କ' ସଂସାରର କୃତିତ୍ୱକୁ ନିଠେଇ ଦେଖୁଛନ୍ତି । ବର୍ତ୍ତମାନ ତାଙ୍କର ଦୃଷ୍ଟି ଅଗଣାର ତୁଳସୀ ଚଉରା ଉପରେ ।

ହଠାତ୍ ସୁମିତ୍ର ଦେବୀଙ୍କ ମନରେ ଆସିଲା ଯେ, ସେ ଜଗୁଦାଦାଙ୍କର ଏହି ଭ୍ରାନ୍ତ ଭୃପ୍ତି ଭାବକୁ ନଷ୍ଟ କରିଦେବେ । ଏତେଦିନ ପରେ ସ୍ପଷ୍ଟରୂପେ ଜଣାଇଦେବେ ଯେ, ସେ ତାଙ୍କ ପାଖରେ ଧାରୁଆ ନୁହନ୍ତି; କିଛି ଗୋପନ କଥାର ଦାୟିତ୍ୱ ତାଙ୍କ ଉପରେ ନାହିଁ । ଉପାୟ ଅତି ସହଜ । ସୁମିତ୍ର ଦେବୀଙ୍କୁ ଭାବିବାକୁ ମଜା ଲାଗିଲା । ସେ ଅନୁମାନ କଲେ କେମିତି ଜଗୁଦାଦା ଚମକି ଉଠିବେ, ବଲବଲ କରି ଅନାଇବେ । ଭାବିବେ—ସୁମିତ୍ରର କଣ ହେଲା ? ସେ ତଥାପି—!

ଜଗଦୀଶ ବାବୁ ନିଜର ଅଳସଦୃଷ୍ଟି ଫେରାଇ ଆଣି ଉଠିବେ ବୋଲି ମନସ୍ଥ କରୁଥିଲେ, ଏହି ସମୟରେ ସୁମିତ୍ରା ଦେବୀ ପ୍ରଶ୍ନକଲେ, "ଦାଦା, ବୀରଭାଇଙ୍କ ଖବର କଅଣ ?"

"କିଏ ?"

ମନେହେଲା ଯେ, ସେ କଥାଟା ଧରିପାରୁ ନାହାନ୍ତି, ତାଙ୍କ ଶୁଣିବାରେ ଭୁଲ୍ ହୋଇଛି । ସୁମିତ୍ରା ଦେବୀ ଉତ୍ତେଜିତ ହେଲେ । ଅପେକ୍ଷା କଲେ । ଲକ୍ଷ୍ୟଭେଦ ହେଉନାହିଁ ।

କିଛି ମୁହୂର୍ତ୍ତିକର ବିଳମ୍ବ ପରେ ଜଗୁଦାଦା ଉତ୍ତର ଦେଲେ । କହିଲେ, "କିଏ, ବୀର ନାୟକ ?" ତାଙ୍କ ଭଙ୍ଗୀରେ ଥିଲା,—ତୁ ସେକଥା କହୁଛୁ !

ଜଗଦୀଶ ବାବୁ ପୁଣି ପାଟି ଖୋଲିଲେଇ ଅତି ସହଜ ସାଧାରଣ ଉତ୍ତରକୁ ଜାଣିଶୁଣି ଲମ୍ବେଇଲା ପରି କହିଲେ, "ବୀର ! ସେ ଏଇବର୍ଷ ଲ' ପାସ୍ କଲା ପରା । ମୋ ପାଖରେ ଜୁନିୟର୍ ହୋଇଛି । ମନ୍ଦ କରୁନାହିଁ ।"

ସୁମିତ୍ରା ଦେବୀ ଆଉ କିଛି ପଚାରି ପାରିଲେ ନାହିଁ । ଯେପରି କି ସେ ଶେଷ ଉତ୍ତର ପାଇସାରିଛନ୍ତି ।

ସୁମିତ୍ରା ଦେବୀ ଏକ ଘୋର ସ୍ତବ୍ଧତା ଅନୁଭବ କଲେ । ଶ୍ମଶାନ ଅଥବା ମରୁଭୂମିର ସ୍ତବ୍ଧତା । ତାହାରି ମଧ୍ୟରେ ସେ ଅତିଥିଙ୍କୁ ବିଦାୟ ଦେଲେ ଓ ଭୂମିଷ୍ଠ ପ୍ରଣାମ କଲେ । ଯିବାବେଳର ଏଣୁ ତେଣୁ କଥା ଭିତରେ କେବଳ ଗୋଟିଏ କଥା ଶୁଣାଗଲା, ଦୂରରୁ ଶୁଭିଲା ପରି, ମହାକାଳର ଘୋଷା ପରି,—ମୁଁ ପୁଣି ଆସିବି । ବୁଝିଲୁ ? ଆରମାସକୁ ପୁଣି ଆସିବି ।



# ଅତିଥି

ଯାଚ୍ଞା ମୋଘା ବରମଧିଗୁଣେ ନାଧମେ ଲବ୍ଧକାମାଃ ।
କବି କାଳିଦାସ କହିଲେ ଯେ ଅଧମଠାରେ ମନସ୍କାମନା ପୂରଣ କରାଇବା ଠାରୁ ଉତ୍ତମ ଠାରେ ଗୁହାରି କରି ହାରିଯିବା ଭଲ । ଇଏ ହେଲା ଆତ୍ମସମ୍ମାନର ଆଦର୍ଶ । କିନ୍ତୁ ବିପଦରେ ପଡ଼ିଲା ବେଳେ କେତେଜଣଙ୍କର ସେକଥା ମନେ ଥାଏ ? ତେଣୁ ସୁମିତା ଲୋ, ଅଳ୍ପବୟସୀ ଅଭିଆଡ଼ୀ ଝିଅଟିଏ ହୋଇ ତୁ ଜଗୁଦାଦାଙ୍କ ଉପକାରକୁ ସ୍ୱୀକାର କରି ନେଲୁ, ଏଥିରେ ଏତେ ଲଜ୍ଜା କାହିଁକି ? ଏତେ ରାଗୁ ଛୁ କାହିଁକି ନିଜ ଉପରେ ?

ତା'ଛଡ଼ା ତୁ ତାଙ୍କୁ ନୀଚ ନୀଚ ବୋଲି କହି ହେଉଛୁ କାହିଁକି ? ତାଙ୍କର କେଉଁ ନୀଚତା ତୋ' ଆଖିରେ ପଡ଼ିଛି କହିଲୁ ନାହିଁତ ? ଧରିନିଅ ଯେ ତରୁଣୀ ସୁମିତା ଯେଉଁ କାମ କରୁଥିଲା ତା' ଷୀରଷଇ ସାଙ୍ଗରେ, ସେଥିରେ ପ୍ରେମ ଜଳୁଥିଲା ଦପ୍ ଦପ୍ ହୋଇ, ସେକ୍ସ ଥିଲା ପଛ ଲାଗୁ ନ ଥିଲା. ଅଥଚ ବୁଢ଼ା ଜଗୁଦାଦା ଯେଉଁ ବ୍ୟବହାର କରନ୍ତି ନୂଆ ଝିଅଙ୍କ ସାଙ୍ଗରେ ସେଥିରେ ତୁଚ୍ଛା ସେକ୍ସ ଛଡ଼ା ଆଉ କିଛି ନାହିଁ; ତା' ବୋଲି ସେ ନୀଚ ହୋଇଗଲେ ? ପାପତାପ ଜର୍ଜରିତ ପ୍ରବୀଣ ଜଗୁଦାଦା କେଉଁ ସପାଗ୍ନି ବାପ ଦାଦାଙ୍କଠାରୁ ଅଧିକ ଅସୁନ୍ଦର ଯେ ତୁ ତାଙ୍କୁ ନୀଚ ବୋଲି କହିବୁ ? ଯୌବନର ସରଳତା ତଥା ନିର୍ବୋଧତାକୁ ସୁନ୍ଦର ବୋଲି କହିଲେ କହ, ସେଥିରେ କୋଉ ବଡ଼ପଣ ଅଛି ଯେ ତୁ ଏତେ ଭଲେଇ ହେଉଛୁ ?

କହିବି ଅସଲ କଥା ? ତୁ ଗୃହିଁଥିଲୁ ଗୋପ୍ୟ ପ୍ରେମର ମଉଜ କରିବୁ, ଧରା ନ ପଡ଼ିଲେ ଗଲା, ବାହାଘର କଥା ପରେ ।

ତୋ ସାରଥିଙ୍କ କରୁଣକୋମଳ ଶିଶୁଶ୍ରାନ୍ତପଣ ମଧ୍ୟ ତୋତେ ଚେତାଇ ଦେଉଥିଲା, ଧୀରେ ସଂଗୋପନେ,—ଯେ ସ୍ୱାମୀଙ୍କୁ ଭଲ ପାଇବ ସିନା, ବାହା ହୋଇ ଘର କରିବ କେମିତି ? ତେଣୁ ପ୍ରକୃତ ପକ୍ଷେ ଜଗୁଦାଦା ତୋତେ ଉଦ୍ଧାର କରି ନେଲେ, କେବଳ ସମାଜର ନିନ୍ଦା ଅପବାଦରୁ ନୁହେଁ, ତୋ ନିଜଠାରୁ । ନିଜ ଭବିଷ୍ୟତକୁ ନିର୍ଣ୍ଣୟ କରିବା ଦାୟିତ୍ୱରୁ । କିନ୍ତୁ ତୁ ସେକଥା ମାନିବୁ କେମିତି ? ତୋ ସ୍ୱର୍ଗୀୟ ପ୍ରେମର ଇମେଜ୍ କ୍ଷୁର୍ଣ୍ଣ ହୋଇଯିବ ନାହିଁ ? ତୋର ମୂଲ୍ୟବୋଧରେ ଆଞ୍ଚ ଲାଗିବ ନାହିଁ ? ତେଣୁ ତୁ ମିଛୁଟାରେ ଜଗୁଦାଦାଙ୍କୁ ଦୋଷ ଦେଉଛୁ ଯେ ତାଙ୍କର ଯୋଗୁଁ ତୋ ପ୍ରେମ ବଞ୍ଚି ପାରିଲା ନାହିଁ । ମିଛୁଟାରେ ନିଜକୁ ଦୋଷ ଦେଉଛୁ ଯେ ତୁ ଡରିଗଲୁ, ତୋର ସାହସ କୁଳେଇଲା ନାହିଁ । ଏବଂ ଅଯଥାରେ ଅତିଥିଙ୍କୁ ହତାଦର କରୁଛୁ, ଅନୁମାନ କରୁଛୁ ଯେ ସେ ତୋର 'ସୁନାର ସଂସାର' ବିଗାଡ଼ିବାକୁ ଆସିଛନ୍ତି । ତୁ ଜାଣିଶୁଣି ଭୂତ ଦେଖୁଛୁ, ନିଜକୁ ନିଷ୍ପୀଡ଼ିତା ଅବଳା ବୋଲି ଦେଖାଇବା ପାଇଁ । କଅଣ ଭୁଲ୍ କହିଲି ?

ଆପଣ ବୋଧହୁଏ ଆଶ୍ଚର୍ଯ୍ୟ ହେବେ । ଯେ ଯେଉଁ ତରୁଣୀ ନାୟିକାକୁ ସ୍ନେହ ଓ ସହାନୁଭୂତିର ପୁତୁଳିଟିଏ କରି ଗଢ଼ିଥିଲି ମୋ ଗପରେ (ଗଢ଼ି ନଥିଲି କି ?) ତା' ପ୍ରତି ଆଜି ଏଡ଼େ ବିଦ୍ୱେଷ କାହିଁକି ? ତା'ହେଲେ କଣ ବୁଝିବାକୁ ହେବ ଯେ ଲେଖକ ବୟସ ଓ ବିଜ୍ଞତାରେ ଜଗୁଦାଦାଙ୍କ ପାଖାପାଖି ହୋଇ-ଗଲାଣି, ତେଣୁ ସେ ତାଙ୍କ ତରଫରୁ ସଫେଇ ଦେବାକୁ ଚାହେଁ ?

ନା, ତା' ନୁହେଁ । ସରଳ ନିର୍ବୋଧ ତରୁଣତରୁଣୀମାନଙ୍କୁ ମୁଁ ଅବଶ୍ୟ ଭଲ ପାଏ । ସେହି ହିସାବରେ ଜଗୁଦାଦା କିମ୍ବା ନିଜକୁ ଭଲ ପାଇବାର ପ୍ରଶ୍ନ ଉଠୁ ନାହିଁ, କାରଣ ଅଭିଜ୍ଞତା ନାମକ ଗୋଟିଏ ଘସରା ମୁଦ୍ରା ସାହାଯ୍ୟରେ ଆମେ ଆତ୍ମ-ସନ୍ତୋଷ କିଣି ସାରିଛୁ । ଅନ୍ୟ ଅର୍ଥରେ ଆମେ କାହାଠାରୁ ଅନୁରାଗ ଆଦି କୋମଳଭାବ ଲୋଡ଼ିବାର ଅବସ୍ଥାରେ ନାହୁଁ । ଏବଂ ଆମ ଭାବତରଳତାର ମିଆଦ ମଧ୍ୟ କଟିଗଲାଣି, ଦରକାର

ପଡ଼ିଲେ କ୍ଷମା କରିବା ଛଡ଼ା ଏଣିକି ସତ୍ୟ ଶୁଣାଇବାକୁ ପଡ଼ିବ । ନିରପେକ୍ଷ ସତକଥା କହିବାକୁ ପଡ଼ିବ ।

ସେଇଥିପାଇଁ କହୁଛି ପରି—ସୁମୀ ଲେ, ନିଜ ସାଙ୍ଗରେ ଏମିତି ସାଲିସ୍ କରିବାକୁ ପଡ଼େ, ସ୍ୱାର୍ଥର ତାଡ଼ନାରେ । ମୁଁ ଯଦି ତୋ ବୀରଭାଇ ହୋଇଥାଆନ୍ତି ମୁଁ ବି ହୁଏତ ଘୃଣ୍ୟ ଜଗୁଦାଦାଙ୍କ ଜୁନିଅର୍ ହେବା ପାଇଁ ରାଜି ହୋଇ ଯାଇଥାଆନ୍ତି । କିନ୍ତୁ ମାନି ନେଲେ ଭଲ ଯେ ଆମେ ଛୋଟ ମଣିଷ । ସେଥିପାଇଁ ଆଉ କାହାକୁ କିମ୍ବା ନିଜକୁ ଦୋଷ ଦେବା ଅକାରଣ । ବରଂ ସେତିକି ମାନି ନେଇ ପାରିଲେ ବଡ଼ ମଣିଷର କଳ୍ପନା କରି ହେବ । ଏବଂ ସ୍ୱପ୍ନ ଦେଖି ହେବ ଯେ ଆମ ପିଲାମାନେ କି ତାଙ୍କ ପିଲାମାନେ ସତସେତିକା ବଡ଼ ହେବେ । ଏଭଳି ଅସ୍ମରଣତାର ପାଲରେ ପଡ଼ିବେ ନାହିଁ କି ଆତ୍ମଗ୍ଲାନିର ବଳାୟରେ ଲୁହ ଗଡ଼େଇ କହିବେ ନାହିଁ ଯେ ମୁଁ ବଡ଼ ହୋଇ ଥାଆନ୍ତି ଯେ, ସେଇମାନେ ( ବାପା, ସମାଜ, ଜଗୁଦାଦା ଓଗେର ) ମୋତେ ଦବେଇ ଦେଲେ ।

ଦମ୍ପତି କମଳାକାନ୍ତ ଓ ଲୀଳାବତୀ ମହାପାତ୍ରଙ୍କ ଦ୍ୱାରା ରଚିତ ଏହାର ଇଂରାଜୀ ରୂପାନ୍ତର "The Guest" ମୋର ଦ୍ୱିତୀୟ ଇଂରାଜୀ ଗଳ୍ପସଂକଳନ "The wild Peacock and other stories" ରେ ସ୍ଥାନ ପାଇଛି ।

ଭୁବନେଶ୍ୱର
୨୧ ସେପ୍ଟେମ୍ବର ୧୯୮୬



# ବିଷ

ମୁଁ ମୋର ବନ୍ଧୁମାନଙ୍କୁ ଖାତିର୍ କରେ ।

ଅଫିସରୁ ଫେରିଆସିଛି; ସଂଧ୍ୟା ଭଲ ଲାଗୁଛି କିନ୍ତୁ ପାରିବାରିକ ସ୍ନେହ ଓ ସାନକଥାରେ ଘୋଡ଼େଇ ହୋଇ ବସିବାକୁ ଇଚ୍ଛା ହେଉ ନାହିଁ, ଥାକରେ ସଜା ହୋଇଥିବା ବହିଗୁଡ଼ିକୁ ଦେଖିବାକୁ ଭଲଲାଗୁଛି କିନ୍ତୁ ପଢ଼ିବାକୁ ଇଚ୍ଛା ହେଉନାହିଁ, ସମାଜ ପ୍ରତି ମୋର ଦାୟିତ୍ୱ ଅଛି, ଏହି ଭାବ ମନରେ ଆସୁଛି—ସେତେବେଳେ ବନ୍ଧୁମାନେ ମନେପଡ଼ନ୍ତି । କାହା ଘରକୁ ଯିବା ? ମିଷ୍ଟର ଚନ୍ଦ୍ର,—ସହକର୍ମୀ ଅଫିସର୍, ମିଷ୍ଟର ସୋମ୍—ପିତୃବନ୍ଧୁଙ୍କର ଯୋଗ୍ୟ ସନ୍ତାନ, ଜସ୍ୱି ବାବୁ—'ନିଜ' ପ୍ରଦେଶର ଲୋକ, ଶଙ୍କର ସାହୁ—କଲେଜରେ ଏକାଠି ପାଠ ପଢ଼ୁଥିଲୁ, ଏଠି ବିଜିନେସ୍ କରୁଛି, ମିଷ୍ଟର ଜୟରମନ୍ ,—ପ୍ରତିବେଶୀଙ୍କର ଜନୈକ ବନ୍ଧୁ; ମିଷ୍ଟର୍ ନାଥ;—ନୀଳିମାର ଜଣେ ମହିଳାସମାଜ ସଙ୍ଗୀନିଙ୍କର ସ୍ୱାମୀ, ଇତ୍ୟାଦି ଏହି ସହରରେ ଦଶ ବାରଜଣ ଅଛନ୍ତି । ପାମିଷ୍ଟ୍ରୀ, ହୋମିଓ ପ୍ୟାଥି, ଭିଏତନାମ ଏହି ସବୁ ବିଷୟରେ ସେମାନଙ୍କର ବିଭିନ୍ନ ମତ । କିନ୍ତୁ ସେମାନେ ସମସ୍ତେ ଶିକ୍ଷିତ । ସହଜ ଭାବରେ ଆଳାପ କରି ପାରନ୍ତି; ଅର୍ଥାତ୍ ଉତ୍ତେଜିତ ହୋଇ ଯୁକ୍ତି କରନ୍ତି ନାହିଁ, ଏବଂ ଡ୍ରଇଂରୁମ୍‌ର ମର୍ଯ୍ୟାଦା ଜାଣନ୍ତି । ସେମାନେ 'ଜୋକ୍'ର ମୂଲ୍ୟ ବୁଝନ୍ତି । ସେମାନଙ୍କ ମଧ୍ୟରୁ କେହି ହେଲେ ଜୁଟିଲେ ସମୟକୁ ସୁରୁଚିରୂପେ ହତ୍ୟା କରିହେବ । ମନରେ ସ୍ଫୁର୍ତ୍ତି ଆସିବ, ସମୟକୁ ବାଧିବନାହିଁ ।

"କାହା ଘରକୁ ଯିବା ?" ଜୁଲାଇ ମାସର ଗୋଟିଏ ବୃଷ୍ଟିହୀନ ସନ୍ଧ୍ୟାରେ ମୁଁ ମୋର ସ୍ତ୍ରୀ ନୀଳିମାଠାରୁ ଏହି ପ୍ରଶ୍ନର ଉତ୍ତର ଚାହୁଁଥିଲି । ଏହି ସମୟରେ ମିସେସ୍ ନାଥ ଫୋନ୍ କଲେ । ଶ୍ରୀମତୀଙ୍କୁ ଜଣାଇଲେ ଯେ ସେ ସୁବିଧା ଦରରେ ଗୋଟିଏ ଇଂପୋର୍ଟେଡ୍ ରେଫ୍ରିଜିରେଟର୍ କିଣିଛନ୍ତି ଓ ତାକୁ ଦେଖିସାରି ମତାମତ ଦେବାପାଇଁ ସେ ଆମର ସାହାଯ୍ୟ ଲୋଡ଼ୁଛନ୍ତି । ଆଜି ସନ୍ଧ୍ୟାବେଳେ ଆସିଲେ ଭଲହେବ ।

ଉତ୍ତମ । ଆମେ ନିଜକୁ ପ୍ରସ୍ତୁତ କଲୁ । କିନ୍ତୁ କିଛି ସମୟ ପରେ ମିଷ୍ଟର୍ ଅନୁପମ ଚନ୍ଦ୍ର ତାଙ୍କ ନବବିବାହିତା ସ୍ତ୍ରୀ'ଙ୍କ ସହିତ ଆସି ପହଞ୍ଚିଲେ । କଣ କରାଯିବ ? ମିସେସ୍

ଚନ୍ଦ୍ର ତରୁଣୀ ଓ ସୁନ୍ଦରୀ । ମିଷ୍ଟର୍ ଚନ୍ଦ୍ର ଅଧ ବୃଦ୍ଧଲୋକ । ସେମାନଙ୍କୁ ଅଲଗକରେ ବଦାୟ ଦେବା ଶୋଭନୀୟ ନୁହେଁ । ମିସେସ୍ ଚନ୍ଦ୍ର ଏହି ଅରେଞ୍ଜ ରଙ୍ଗର ଶାଢ଼ୀରେ ପ୍ରକୃତରେ ଭାରି ସୁନ୍ଦର ଦେଖାଯାଉଛନ୍ତି । ତାଙ୍କ ବୟସ କେତେ ହେବ) ? ମୁଁ କିଛି କହିବା ଆଗରୁ ଶ୍ରୀମତୀ ପ୍ରସ୍ତାବ କଲେ ଯେ, ସେମାନେ ଆମ ସାଙ୍ଗରେ ଗ୍ଲଲନ୍ତୁ । ସ୍ୱାମୀ ସ୍ତ୍ରୀ ପରସ୍ପରକୁ ଗ୍ଲହିଁଲେ କ୍ଷଣକପାଇଁ, ଓ ତା'ପରେ ରାଜି ହୋଇଗଲେ । ମିସେସ ଚନ୍ଦ୍ର କହିଲେ ଯେ, ସେ କେଉଁ କ୍ଲବ୍‌ରେ ମିସେସ୍ ନାଥ୍‌ଙ୍କୁ ଥରେ ଅଧେ ଭେଟିଛନ୍ତି, ସେ ଭାରି ଭଲ ଲୋକ । ମିଷ୍ଟର୍ ଚନ୍ଦ୍ର ମୁଣ୍ଡ କୁଣ୍ଡାଉଲେ, ଘଣ୍ଟା ଦେଖିଲେ ଓ କହିଲେ "ଠିକ୍ ଅଛି, ଆଠଟା ପୂର୍ବରୁ ଫେରି ଆସିବା, ମୋର ଟିକିଏ କାମ ଅଛି ।" ମୁଁ ଖୁସି ହେଲି ଓ ଭାବିଲି ଯେ, ଆଜି ସେମାନେ ରାଜି ନ ହୋଇ ରହିପାରି ନ ଥାନ୍ତେ । ତାଙ୍କୁ ଅରାଜି ହେବାକୁ ଦିଆ ହୋଇ ନ ଥାଆନ୍ତା । କାରଣ ମିସେସ୍ ଚନ୍ଦ୍ରଙ୍କର ଅରେଞ୍ଜ ସିଫନ୍ ଶାଢ଼ୀ, ସେଥିରୁ ଅଧିକକଳଙ୍କମ ଚନ୍ଦନ, ତାଙ୍କର ରୁଚିମନ୍ତ ସୌନ୍ଦର୍ଯ୍ୟ ଏକାଧିକ ବନ୍ଧୁଙ୍କର ଆଖିରେ ପଡ଼ିବା ଉଚିତ ।

ନୀଳିମାର ମଧ୍ୟ ରୁଚି ଅଛି ଏବଂ ମୋର ଈର୍ଷାଭାବ ନାହିଁ କହିଲେ ଚଳେ । ଆମେ ଦୁହେଁ ଠିକ୍ କଲୁ ଯେ, ସେ ସିମ୍ପଲ୍ ଡ୍ରେସ୍ ପିନ୍ଧିବ, ମିସେସ୍ ଚନ୍ଦ୍ରଙ୍କ ସହିତ ତାଳ ଦେବାକୁ ଯିବନାହିଁ । ତେଣୁ ସେ ପିନ୍ଧିଲା ଖଣ୍ଡେ ଧଳାସୂତା ଶାଢ଼ୀ-ସୁନେଲି ଧଡ଼ି, ଓ ହଳଦିଆ ରଙ୍ଗର ବ୍ଲାଉଜ୍ । ଖାପ୍‌ଖାଇଲା ପରି ଚଟି ଓ ଚୁଡ଼ି । ନୀଳିମା ଥଟ୍ଟାକରି କହିଲା,—ମୋତେ କେହି ତୁମ ମିସେସ୍ ଚନ୍ଦ୍ରଙ୍କର ଚାକରାଣୀ ବୋଲି ଭାବବେ ନାହିଁ ତ ?

ଆମେ ବାହାରିବାକୁ ବସିଛୁ, ଏହି ସମୟରେ ପୁଣି ଫୋନ୍ ଆସିଲା । ଏଥର ଖଦ୍ଦର ସାହୁ କହିଲା,—"କିରେ କଣ କରୁଛୁ ? ଆଜି ଆମ ଅଡ଼ାକୁ ଆସ । ···ରମାକାନ୍ତ ସାଙ୍ଗରେ ଦେଖା ହୋଇଥିଲା ? ସେ ଦି'ଦିନ ପାଇଁ ଆସିଥିଲା ଠିକ, ମୋ ଘରେ ଥିଲା । ···ଆଉ ନୀଳିମା ଦେବୀଙ୍କ ଖବର କଣ ?···" ଗପି ବସିଲେ ତା' କଥା ସରେ ନାହିଁ ଓ ବିଗ୍‌ବିଡ଼ିଗ ଘୁରିବୁଲେ । ମୁଁ ତାକୁ ବାଦେଇଦେଇ ମୋର ଉପସ୍ଥିତ ଅବସ୍ଥା କଥା କହିଲି । ସେ ସେଥିରେ ଆନନ୍ଦିତ ହେଲା ପରି କହିଲା, "ବେଶ୍ ଭଲ । ଆମେ ବି' ଯାଇ ମିଷ୍ଟର୍ ନାଥ୍‌ଙ୍କ ଘରେ ପହଞ୍ଚିବୁ । ମିଷ୍ଟର ନାଥ୍‌ଙ୍କ ସାଙ୍ଗରେ ମୋର ଅନେକ ଦିନ ଚିହ୍ନା,—ଜାଣିଛୁ ? ଏବେ ପରା ମୁଁ ତାଙ୍କ କମ୍ପାନୀକୁ ଲୁହାଛଡ଼ ଯୋଗାଇ କରୁଛି । ଲୋକଟା ବୁଦ୍ଧିମାନ···ମନ୍ତ୍ରୀ କହୁଥିଲା—।" କୌଣସିମତେ ମୁଁ 'ଆଚ୍ଛା' 'ଆଚ୍ଛା' କହି ରିସିଭର ରଖିଦେଇ ପାରିଲି ଓ ଭାବିଲି ଯେ, ଖଦ୍ଦର ଟ୍ରେଡ଼ିଂ କମ୍ପାନୀ କାହାକୁ କ'ଣ ଯୋଗାଇ ନ କରେ ତାହା ଭାବିବା ବିଷୟ । ପଚିଶବର୍ଷିଆ ଖଦ୍ଦର ବହୁତ ଉପରକୁ ଉଠିଲାଣି, ଆହୁରି ଉଠିବ ।

ଏହିପରି ଭାବରେ ସେଦିନ ଆମ ଗୃହଜନଙ୍କର ସମ୍ମିଳିତ ସମାବେଶ ହେଲା। ମୋର ମନେହେଲା ଯେ, ଆଜି ମୋର ସବୁ ବନ୍ଧୁ ଯୁଗପତ୍ ଜାଗି ଉଠିଛନ୍ତି। ଉଦ୍ଦେଶ୍ୟ—ଏକାଠି ହେବା ଓ ଖୁସି ହେବା। ଆମେ ଆମର ଛୋଟିଆ ସୁଖ ଦୁଃଖକୁ ନେଇ ଏକାଠିହେବା, ଗୁଜହେବା, ଓ ଖୁସି ହେବା।

ଆମେ ସମସ୍ତେ ମିଷ୍ଟର୍ ଚନ୍ଦ୍ରଙ୍କର କାର୍‌ରେ ଗଲୁ, ସେ ନିଜେ ଚଳାଉଥିଲେ। ମନେଅଛି ଯେ, ସିବାବାଟରେ କେନାଲର ସରୁ ପୋଲର ମୁହାଣରେ କାର୍ ଅନେକ ସମୟ ଅଟକିଗଲା,—ସବୁଥର ଏମିତିହୁଏ,—ଓ ସେହି ଦକ୍ଷିଣୀ ଭିକାରୁଣୀ ଝିଅ ତା'ର ମାଗିବାର ଶ୍ଳୋକ ଆରମ୍ଭ କରିଦେଲା,—ତେରା ଭଲା ହୋଗା ମା ! ତେରା ବର୍‌ଗ୍ମ ମିଲେଗା। ତେରା ବର୍‌ଗ୍ମ ବଡ଼ାଘାର୍ ବନେଗା। ଏକ୍ ଚୌଅନ୍ନି ଦେ ଦେ ମା !··· ସବୁଥର ପରି ଏଥର ମଧ୍ୟ ଚିଡ଼ିମାଡ଼ିଲା ଯେ, ଏତେ ସାନ ପିଲାହୋଇ ଭିକମାଗି ଶିଖିଛି, ତା'ର ବାପା ମାଆ ହୃଦୟହୀନ ଓ ଅଳସୁଆ, ଇତ୍ୟାଦି। ତଥାପି ମୁଁ ମୋର ସହଯାତ୍ରୀମାନଙ୍କ ଆଡ଼କୁ ଅନାଇ ମୁରୁକିହସା ଦେଇ ଦଶ ନୂଆପଇସା ପକାଇଦେଲି। ଯେପରିକି ମୁଁ ଭୁଲ୍ କରୁଛି, କିନ୍ତୁ ଏ ଉଦାରତାର ଭୁଲ୍, ତେଣୁ କ୍ଷମଣୀୟ। ମିଷ୍ଟର୍ ଚନ୍ଦ୍ର କହିଲେ, "ଏମାନଙ୍କୁ ମୋଟେ ପ୍ରଶ୍ରୟ ଦେବା ଉଚିତ ନୁହେଁ।" ମୁଁ କହିଲି, "ଠିକ୍ କ-ଛନ୍ତି।"

ମିଷ୍ଟର ନାଥ୍‌ଙ୍କ ଘରେ ପହଞ୍ଚି ଦେଖିଲେ ଯେ, ଦୁଇଜଣଯାକ ଡ୍ରଇଁ ରୁମ୍‌ରେ ବସି ରହିଛନ୍ତି, ସାଙ୍ଗରେ ଆଉ ଜଣେ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା। ଅସ୍ଥାନରେ କିନ୍ତୁ ସର୍ବସମ୍ମୁଖରେ ସଦ୍ୟ ଖୋଳରୁ କଢ଼ା ହୋଇଥିବା ରଫ୍ରିଜରେଟର୍ ମୁଣ୍ଡ ଟେକିଛି, ଚକ୍ ଚକ୍ କରୁଛି। ମନେହେଉଛି ଯେ, ସେ ଏହି ସଭାର ମୁଖ୍ୟ ଅତିଥି। ମିଷ୍ଟର୍ ନାଥ୍ ଚିହ୍ନାଇ ଦେଲେ,—"ଏ ହେଉଛନ୍ତି ଡକ୍ଟର ଗୁପ୍ତ, ବିଖ୍ୟାତ ମେଡ଼ିକାଲ୍ ପ୍ରାକ୍ଟିସନର୍ ଓ ପରିବାର ବନ୍ଧୁ। ମିସେସ୍ ଗୁପ୍ତ।" ସେମାନଙ୍କ ସହିତ କରମର୍ଦ୍ଦନ ନ ସାରୁଣୁ ମୁଁ କହିଲି, ଚମତ୍କାର ! ତା' ସହିତ ଅନ୍ୟମାନେ ମଧ୍ୟ କିଛି ନା କିଛି ପ୍ରଶଂସାର ଶବ୍ଦ କରିଲା ପରି ଲାଗିଲା। କେବଳ ମିଷ୍ଟର୍ ଚନ୍ଦ୍ର ପଛେଇଗଲେ। ସେ ହାତ ମିଳାଇ କୁଶଳ ସମ୍ଭାଷଣ ସାରି ସୋଫାରେ ବସିଲେ, ଓ କିଛି ସମୟ ରଫ୍ରିଜରେଟର୍ ଆଡ଼କୁ ଅନାଇ ମୃଦୁହାସ ଦେଇ କହିଲେ, "ବେଶ୍ ଭଲ ହୋଇଛି।"

ଏହି ହେଉଛି ମିଷ୍ଟର୍ ଚନ୍ଦ୍ରଙ୍କର ବିଶେଷତ୍ୱ। ସେ ଜଣାଇ ଦେଲେ ଯେ ଉଚ୍ଛ୍ୱାସପ୍ରବଣତାରୁ ସନ୍ତୋଷର ମୂଲ୍ୟ ଅଧିକ। ବୋଧହୁଏ ସେ ଅନ୍ତରର ବାର୍ତ୍ତା ଶୁଣିବାପାଇଁ ଅପେକ୍ଷା କରିଥିଲେ। ସେହି ବାର୍ତ୍ତା କଳକଣ୍ଠରେ ଫୁଟି ଉଠିଲା, ଏବଂ ମିଷ୍ଟର୍ ଚନ୍ଦ୍ର ସେଥିରେ ସିକ୍ତ-ସନ୍ତୁଷ୍ଟ ହୋଇ କହିଲେ,—ବେଶ୍ ଭଲ ହୋଇଛି।

ମିଷ୍ଟର୍ ଓ ମିସେସ୍ ନାଥ୍ କୃତଜ୍ଞତାର ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇଲେ, ଯେପରି କି ସେମାନେ ଏହି କଥାପଦକୁ ଶୁଣିବା ପାଇଁ ବସିଥିଲେ ।

ସନ୍ତୋଷ । ମୁଁ ମନେ ମନେ ମିଷ୍ଟର୍ ଚନ୍ଦ୍ରଙ୍କୁ ପ୍ରଭୂତ ପ୍ରଶଂସା କଲି । ସେ ଯାହା କହନ୍ତି ଯାହା କରନ୍ତି ସବୁଥିରେ ଏହି ମଣିଷପଣିଆ ଦେଖିବାକୁ ମିଳେ,—ଯେ, ମୁଁ ଠିକ୍ କରିନେଲି ଓ ମୋତେ ଭଲ ଲାଗୁଛି । ନାଚିବା, କୁଦିବା, ବାଜା ବଜାଇବା, ବକ୍ତୃତା କରିବା ଦରକାର ନାହିଁ । ମୁଁ ଫାଇଲ୍ ଉପରେ ମୋର ମତାମତ ଦେଇ ଦେଲେ, ମୁଁ ତୁମର ଦରଖାସ୍ତ ନାମଞ୍ଜୁର କରିଦେଲି; ମୁଁ ମୋର ମୃତା ସ୍ତ୍ରୀଙ୍କ ଭଉଣୀ ରଜନୀକୁ ତିନିମାସ ମଧ୍ୟରେ ବାହାହୋଇ ପଡ଼ିଲି ।··· ମିସେସ୍ ଚନ୍ଦ୍ରଙ୍କର ଦେହଲଗା ସିଫନ୍ ଶାଢ଼ୀ ଟେବୁଲ ଫ୍ୟାନର ପବନରେ ଅସ୍ଥିର ହେଉଛି, ବେଲୁନ୍ ପରି ଫୁଲି ଉଠୁଛି ଓ ଚୁପି ହୋଇଯାଉଛି । ନୂଆ ପ୍ରେମିକ ଯେପରି ତା'ର ସଙ୍ଗିନୀକୁ ସବୁମତେ ଆଚ୍ଛନ୍ନ କରିବାକୁ ଚାହେଁ, ଅସ୍ତବ୍ୟସ୍ତ ହୋଇ ଭୁଲ୍ କରେ ଓ ପାରେନାହିଁ । ··· ମୁଁ ଭାବିଲି ଯେ, ମିଷ୍ଟର୍ ଚନ୍ଦ୍ରଙ୍କର ପ୍ରବଣତା ଏମିତି ନୁହେଁ । ସେ ଦେଖିଲେ ଯେ, ରଜନୀକୁ ଭଲ ଲାଗିବ ଓ ତାଙ୍କୁ ଭଲ ଲାଗିବ, ଯଦି ସେମାନେ ପ୍ରେମ କରନ୍ତି ଓ ବାହା ହୋଇ ପଡ଼ନ୍ତି । ତେଣୁ ସେ ଅସ୍ଥିର ନ ହୋଇ ଅଥଚ ମୋଟେ ବିଳମ୍ବ ନ କରି ବାହା ହେଲେ । ମୋର ମନେହେଲା ଯେ, ଯେତେବେଳେ ସେ ଭିଖାରୀ ଭିଖାରୁଣୀମାନଙ୍କୁ ଦାନ ଦେଉନ୍ତିନାହିଁ, ପରିଚୟ ଦେଉନ୍ତିନାହିଁ, ସେତେବେଳେ ମଧ୍ୟ ତାଙ୍କର ଏହି ଭାବ ଥାଏ,—ମୁଁ ଠିକ୍ କରିନେଲି ଓ ମୋତେ ଭଲ ଲାଗୁଛି । ···ମୁଁ ଅନୁପମ ଚନ୍ଦ୍ରଙ୍କ ଆଡ଼େ ପୁଣି ଚାହିଁଲି, ତାଙ୍କର ଉଷ୍ଣ-ଶୀତଳ ପ୍ରକୃତିକୁ ଅନୁଧ୍ୟାନ କଲି, ଓ ଭାବିଲି,— ପୃଥିବୀରେ ଏତେ ଅଶାନ୍ତି, ଏତେ ଅସନ୍ତୋଷ କାହିଁକି ? ଲୋକମାନେ କ'ଣ ବୁଝି ପାରନ୍ତିନାହିଁ ତାଙ୍କୁ କ'ଣ ଭଲ ଲାଗେ ?, ଠିକ୍ କରି ପାରନ୍ତି ନାହିଁ ?

ମିଷ୍ଟର ନାଥ୍ଙ୍କ ମୁଣ୍ଡର ଏକତୃତୀୟାଂଶ ଚନ୍ଦା ହୋଇ ଗଲାଣି । ସେତିକି ସାମନାରୁ ଉଠି ଉଠି ପଛକୁ ଯାଇଛି, ତେଣୁ ତାଙ୍କ କପାଳ ଅତି ପ୍ରଶସ୍ତ ଦେଖାଯାଏ ଏବଂ ମନେହୁଏ ଯେ, ସେହି ବିରାଟ କପାଳ ତାଙ୍କର ବ୍ୟକ୍ତିତ୍ୱକୁ ଧରି ରଖିଛି । ନ ହେଲେ ତାଙ୍କର ଟେଲିଟିଗଲ ପରି ଖଲ ଖଲ ହସ ପିଲାଳିଆ ଲାଗନ୍ତା, ତାଙ୍କ ଦୁର୍ବଳ ଚିବୁକ ସ୍ୱଭାବତଃ ଶ୍ମଶ୍ରୁବିହୀନ ବୋଲି ମନେହୁଅନ୍ତା ଏବଂ ତାଙ୍କର ଖର୍ବତନୁ କ୍ଷୁଦ୍ରତାର ପରିଚୟ ଦିଅନ୍ତା । ନ ଜାଣିବା ଲୋକେ ଭାବନ୍ତେ ଯେ, ସେ ଜଣେ ହାସ୍ୟପ୍ରିୟ ମଧ୍ୟସ୍ଥ, ଦଲାଲ୍ ଏଜେଣ୍ଟ କିମ୍ବା ସେଲ୍ସ୍ମ୍ୟାନ । କିନ୍ତୁ ଲୋକେ ତା ଭାବନ୍ତିନାହିଁ । ଙ୍କର ସାହୁ ପରି ଅନ୍ୟମାନେ ମଧ୍ୟ ଭାବନ୍ତି ଯେ, ସେ ବୁଦ୍ଧିମାନ୍,— ତାଙ୍କର ପ୍ରଶସ୍ତ କପାଳରେ ଗଣି ଗଣି ଯୋଜନାର ଗଠା, ପରିଶ୍ରମର ଝାଳ । ତାଙ୍କର ମୋଟା ଚଷମା, ବଳିଷ୍ଠ ମଣିବନ୍ଧ, ବର୍ଦ୍ଧିଷ୍ଣୁ ପେଟ ଏହି ଧାରଣାକୁ ସୁଦୃଢ଼ କରିଦିଏ । ଏହାପରେ ସେ

ଯେତେବେଳେ ପିଲାଙ୍କ ପରି ହସି ଉଠନ୍ତି, ସେତେବେଳେ ତାଙ୍କୁ ଭଲ ନ ପାଇ ରହି ହୁଏନାହିଁ ।

ବିଷ୍ଣୁ ନାରାୟଣ ନାଥ୍ ମିଷ୍ଟର୍ ଚନ୍ଦ୍ରଙ୍କ ଅନୁମୋଦନକୁ ଗ୍ରହଣ କଲେଓ ବିମତ ହୋଇ କହିଲେ, "ଥ୍ୟାଙ୍କସ୍ । କିନ୍ତୁ ଏହି ରଫ୍ରିଜିରେଟର ପାଇଁ କମ୍ କଷ୍ଟ ସହିବାକୁ ପଡ଼ିନାହିଁ । ମୀରା (ମିସେସ୍ ନାଥ) କହୁଥିଲା ଯେ ଏତେ ଗୋଳମାଳକୁ କାହିଁକି ଯିବା ଏକ ଇଣ୍ଡିଆନ୍ ରଫ୍ରିଜିରେଟର ଗୋଟାଏ କିଣିନେବା । କିନ୍ତୁ ମୁଁ କହିଲି—ନାହିଁ । ଭଲ ଜିନିଷ ପାଇଁ ଚେଷ୍ଟା କରିବାକୁ ହେବ । ନ ମିଳିଲେ ନାହିଁ, ଭାଗ୍ୟକୁ ଆଦର କରିବା । କିନ୍ତୁ ଚେଷ୍ଟା କରିବାକୁ ହେବ— ।" ମିସେସ୍ ନାଥ୍ ସ୍ୱାମୀଙ୍କ ଅଡ଼କୁ ଅନାଇ ସ୍ନେହସୂଚକ ମୁଖବକ୍ରିତ କଲେ, ଯାହାର ଅର୍ଥ,—କେତେ ଫୁଲେଇ ହେଉଛ ମ !

ମିଷ୍ଟର ନାଥ୍ କହି ଗ୍ଲାଲେ, "ପ୍ରଥମ କଥା ହେଲା, ଜଣେ ଲୋକ ଖୋଜି ପାଇବା, ଯେ ସିଧାସଳଖ ବିଦେଶରୁ ନୂଆ ମଡ଼େଲ୍ ନେଇ ଆସି ପାରିବ । ଅବଶ୍ୟ ମୋର ଅନେକ ଚହ୍ନା ଅଛନ୍ତି, କିନ୍ତୁ ସମସ୍ତଙ୍କୁ ତ କହି ହେବନାହିଁ । ଶେଷକୁ ସନ୍ଧାନ ମିଳିଲା ଯେ, ସୁରଜିତ୍ ମାଲ୍‌ହୋତ୍ରା ବୋଲି ଜଣେ ଭଦ୍ରଲୋକ;—ମାଲହୋତ୍ରା ବ୍ରଦର୍ସ କଣ୍ଟ୍ରାକ୍‌ଟରଙ୍କ ନାଁ ଶୁଣିଥିବେ; ତାଙ୍କର ଆମ କମ୍ପାନୀ ସାଙ୍ଗରେ ବହୁତ କାରବାର ଥାଏ,—ତାଙ୍କର ସାନଭାଇ ବିଦେଶରେ ଅଛନ୍ତି, 'ଏଂବାସି'ରେ କାମ କରନ୍ତି ।"

ଭାବିଲି କଥା ସରଳ ହୋଇଗଲା । ନା ମିଷ୍ଟର ନାଥ୍ କହିଲେ, "କିନ୍ତୁ ସେଥିକରେ କ'ଣ ଛୁଣ୍ଡିଲି ? ସେଠୁ ଆସିବ କେମିତି ? ଇଂପୋର୍ଟ୍ ଡିଉଟି କେମିତି ? ଡିଉଟିରୁ ଛାଡ଼ ପାଇବାକୁ ହେଲେ ଦେଖାଇବାକୁ ହେବ ଯେ ଅନ୍ତତଃ ବର୍ଷେ ହେଲା କିଣିଛ ଓ ବ୍ୟବହାର କରିଛ । ଏଣେ ମାଲ୍‌ହୋତ୍ରାଙ୍କ ଭାଇ ଗ୍ରୀରିମାସ ଭିତରେ ଫେରୁଛନ୍ତି !"

ସେ ସମସ୍ୟାକୁ ଆମ ସାମ୍ନାରେ ଥୋଇ ଦେଇ ଚୁପ୍ ରହିଲେ । ଆମେ ଅପେକ୍ଷା କଲୁ ।

ଏହି ସମୟରେ ମିସେସ୍ ଚନ୍ଦ୍ର କଣ କହିବେ କହିବେ ହେଲେ ଓ କହି ପକାଇଲେ, "ଗୋଟିଏ ସୁବିଧା ଉପାୟ ଅଛି । କହିବି ? ତାଲି ତରକାରୀ ରଫ୍ରିଜିରେଟର୍ ଭିତରେ ଛୁଇଁଦେବ, ଆଉ ତା'ର ଦାଗ ଛଡ଼ାଇବ ନାହିଁ । ମୋଟେ ଛଡ଼ାଇବ ନାହିଁ ।"

ମିଷ୍ଟର୍ ନାଥ୍ କହିଲେ, "ଉତ୍କୃଷ୍ଟ ଉପାୟ", ଓ ଆମେ ସମସ୍ତେ ହସି-ଉଠିଲୁ । ମୋର ମନେହେଲା ଯେ, ମିସେସ୍ ଚନ୍ଦ୍ର ଜାଣିଶୁଣି ଏମିତି କହିଲେ,

ମାଇପି ବୁଦ୍ଧିର ନମୁନା ଦେଖାଇ ତାଙ୍କ ନାସ୍ତିତ୍ୱକୁ ଆହୁରି ଫୁଟାଇ ଦେଇ-ପାରିଲେ । ତାଙ୍କର କଥା କହିବାର ଭଙ୍ଗୀରେ ମଧ୍ୟ ସେହି ମିଠା ଅପରିପକ୍ୱତା ଉପଭୋଗ କରିହେଲା । ନୂଆ ଗୃହ ଶିଖିଲାବେଳେ ଶିଶୁ ଯେମିତି ଆଗକୁ ପାଦ ପକାଏ, ଡରେ ଓ ଉତ୍ତଳା ହୋଇ ଧାଇଁଯାଏ । ବୋଧହୁଏ ଭାବେ ଯେ ପଡ଼ିଗଲେ ମଧ୍ୟ ସେଥିରେ ବାହାଦୁରୀ ଅଛି, ତାକୁ କେହିହେଲେ ବାହାବା କରିବ, ସ୍ନେହ ଓ ଆମୋଦରେ ତୋଳି ଧରିବ । ମୁଁ ମିଷ୍ଟର ଚନ୍ଦ୍ରଙ୍କ ସହିତ ଏକମତ ହେଲି । ଏହି ନାରୀଜଣକୁ ବାହା ହୋଇ ନ ଥିଲେ, ଆପଣା ବାହୁଗ୍ରସ୍ତ ତଳେ ଆଣି ନ ଥିଲେ ସେ ନିଜକୁ କ୍ଷମା କରିପାରି ନ ଥାଆନ୍ତେ ।

ହସ ଥମି ନ ଯାଉଣୁ ମିଷ୍ଟର ନାଥ୍ ଘୋଷଣା କଲା ପରି କହିଲେ, "କଷ୍ଟମସ । ତାକୁ ଠକେଇବା ଏତେ ସହଜ ନୁହେଁ । ତେବେ ମୁଁ ମଧ୍ୟ ହାତ ଗୁଡ଼ି ବସିଯିବା ଲୋକ ନୁହେଁ । ମୁଁ ସୁର୍‌ଜନ୍ତ୍ ମାଲ୍ ହୋଇବାକୁ ପରାମର୍ଶ ଦେଲି— ।"

ଦାଣ୍ଡ ଘରର ପରଦା ଆଡ଼େଇ ଦେଇ, ଗୋଟିଏ ସାର୍ବଜନୀନ "ହ୍ୟାଲୋ" କହିଦେଇ ପ୍ରବେଶ କଲେ ଶଙ୍କର ସାହୁ, ସାଙ୍ଗରେ ସ୍ତ୍ରୀ ମନ୍ଦାକିନୀ ଦେବୀ । ମନ୍ଦାକିନୀ ଦେବୀଙ୍କ ଶାଢ଼ୀରେ ବଡ଼ ବଡ଼ ନାଲିଆ ଫୁଲ । କେଉଁ ବନାଙ୍କଣ୍ଠି ବିଶାଳ ମହାଦେବରେ ଫୁଲ ପରି ହେଥିରେ ବର୍ଷ୍ଣି ଗଦା ଓଜନ ଥିଲାପରି ଲାଗିଲା । ଏପରିକି ମୋର ମନେହେଲା ଯେ, ତାଙ୍କଠାରୁ ଯେଉଁ ବାସ୍ନା ଆସୁଛି, ଆଘ୍ରାଣକୁ ଦାରି ଦେଉଛି, ସେ ଏହି ଫୁଲର ସୁଗନ୍ଧ । ମିସେସ୍ ସାହୁ ମିସେସ୍ ନାଥ୍‌ଙ୍କ ପାଖରେ ଗୋଟିଏ ଚଉକିରେ ବସି ପଡ଼ିଲେ ଓ ତତ୍‌କ୍ଷଣାତ୍ ଆରମ୍ଭ କଲେ, "ମୋର ଟିକିଏ ଡେରି ହୋଇଗଲା, କାହିଁକିନା'— ।"

ଏହାପରେ ଆଳାପର ପରିସର ବିଭକ୍ତ ହୋଇଗଲା । ମିଷ୍ଟର୍ ନାଥ ରିଫ୍ରିଜରେଟର-ଓ କଷ୍ଟମ୍‌ସ୍ କାହାଣୀର ପରବର୍ତ୍ତୀ ଅଧ୍ୟାୟ ବର୍ଣ୍ଣନା କଲେ । କିନ୍ତୁ ତା ସହିତ ନାରୀମହଲର ଗୁଞ୍ଜନ ବଢ଼ି ଚାଲିଲା । ତେଣୁ ମୁଁ ମିଷ୍ଟର୍ ନାଥ୍‌ଙ୍କ କଥା ମନୋଯୋଗ ଦେଇ ଶୁଣିଲେ ମଧ୍ୟ ନାରୀମହଲର ପଦେ ଅଧେ ଶୁଣିବାକୁ ପାଇଲି । ସେଥିମଧ୍ୟରୁ କେତେଗୁଡ଼ିଏ ଶବ୍ଦ ଅଚିହ୍ନା ଓ ଅସାଧାରଣ ବୋଲି ମନେ ହେଲା ଏବଂ ମୋର ଜାଣିବାକୁ ଇଚ୍ଛା ହେଲା,—ସେମାନେ କଣ ଗପୁଛନ୍ତି ?

ଗୋଟିଏ ଶବ୍ଦ ଏକାଧିକ ବାର ମୋ କାନରେ ବାଜିଲା,—"ବଟ୍‌ଲର୍ ।" ସେ କିଏ ? କନୈକ ମିଷ୍ଟର ବଟ୍‌ଲର ? ନା ଭୃତ୍ୟବିଶେଷ ? ଅର୍ଥ ସ୍ଥିର କରିପାରିଲି ନାହିଁ । କୌତୂହଳ ଜାଗ୍ରତ ହେଲା ।

ଏଣେ ମିଷ୍ଟର ନାଥ୍ ତାଙ୍କର ବକ୍ତବ୍ୟ ଶେଷ କରିବାକୁ ବସିଲେଣି । ସେ କହିଲେ ଯେ, ଭାଉଚରର ତାରିଖ ଠିକ୍ କରାହୋଇଥିଲା । ତାଲିଗ

ଦାଗ ନଥିଲା ଥିଲା, ତଥାପି କଷ୍ଟମ୍ସର ଲୋକେ ସନ୍ଦେହ କଲେ ଓ ନୂଆ କିଣା ହୋଇଛି ବୋଲି ଡିଉଟିର ଦାବୀ କଲେ । କ୍ଲିଅରିଂ ଏଜେଣ୍ଟ କିଛି କରିପାରିଲା ନାହିଁ, ସୁରକିତ୍ତ ମାଲ୍‌ହୋତ୍ରା ତାଙ୍କ ପାଖକୁ ଆସି ମୁହଁ ଶୁଖାଇଲା ଓ କହିଲା ଯେ, "କିଛି" ନ ଦେଲେ ଚଳିବ ନାହିଁ । ମିଷ୍ଟର୍ ନାଥ୍ ରାଗିଗଲେ,—ସହିବାର ଗୋଟାଏ ସୀମା ଅଛି,— ଓ କହିଲେ ଯେ, ରେଫ୍ରିଜରେଟର୍ ନ ହେଲା ନାହିଁ, ସେ ଚୋର-ମାନଙ୍କୁ ପ୍ରଶ୍ରୟ ଦେବେନାହିଁ । (ଏହି ସମୟରେ ଜଣେର ସାଙ୍ଗ କହିଲ,—ଠିକ୍ କଥା । ସେଗୁଡ଼ାକ ସମସ୍ତେ ଚୋର । ଉପରୁ ତଳଯାଏଁ ସମସ୍ତେ, କେହି ବାଦ୍ ଯିବେ ନାହିଁ ।) ଶେଷକୁ ଭଗବାନ୍ ସାହାଯ୍ୟ କଲେ । ମାଲ୍‌ହୋତ୍ରାର ଗୋଟାଏ ବଡ଼ କଂଟ୍ରାକ୍ଟ ମିଷ୍ଟର ନାଥ୍‌ଙ୍କ ମନ୍ତ୍ରଣାଳୟ ଆସିଲା ଓ ସେହି ଫାଇଲ୍ ଉପରେ ବସିଲେ । କିଛିଦିନ ପରେ ହଠାତ୍ ମାଲ୍‌ହୋତ୍ରାର ଫୋନ୍ ଆସିଲା ଯେ, ବ୍ୟସ୍ତ ହେବା ଦରକାର ନାହିଁ, ବ୍ୟବସ୍ଥା ହୋଇଯାଇଛି, ରେଫ୍ରିଜରେଟର ମୁକୁଳିଯିବ । ଏଇ କାଲି ସକାଳେ ରେଫ୍ରିଜରେଟର୍ ଆସି ପହଞ୍ଚିଲା । ମିଷ୍ଟର ନାଥ୍ କଥା ଶେଷ କଲେ ଏବଂ ତାଙ୍କର ବାର କ୍ୟୁବିକ୍ ଫୁଟ୍ ରେଫ୍ରିଜରେଟର ଆଡ଼କୁ ଗୋଟିଏ ସସ୍ନେହ ସକରୁଣ ଦୃଷ୍ଟି ନିକ୍ଷେପ କଲେ, ଯାହାର ଅର୍ଥ,—ମୁଁ ତୋତେ ଅନେକ କଷ୍ଟରେ ପାଇଛି !

ଆମେ ନୀରବ ହୋଇ ସେହି ରେଫ୍ରିଜରେଟର୍ ଆଡ଼କୁ ଅନାଇଲୁ ଓ ତାଙ୍କର ଦୁଃଖକିଣା ଆନନ୍ଦର ସମ୍ମାନ ଦେଲୁ । ମୋର ମନରେ ଆସିଲା ଯେ, ଆମେ କେହି ବଡ଼ଲୋକ ନୁହେଁ । ସ୍ୱଚ୍ଛନ୍ଦ ଜୀବନ ପାଇଁ ଆମର ଏହି ଛୋଟ ଛୋଟ ଇଚ୍ଛା, ଯଥା ଗୋଟିଏ ଇମ୍ପୋର୍ଟେଡ୍ ରେଫ୍ରିଜରେଟର, ଇଚ୍ଛା ପୂରଣରେ ଏତେ ବାଧା, ଏତେ କ୍ଲେଶ ଓ ପାଇବାର ଏ ଆନନ୍ଦ—ଏ ସବୁ ବଡ଼ଲୋକମାନେ ବୁଝିଦେ ପାରିବେ ? ନ ବୁଝନ୍ତୁ, ଆମେ ତାଙ୍କ ଶୁଖିଲା ସ୍ୱର୍ଗର ଅଭିଳାଷୀ ନୁହେଁ ! ଆମେ ଏହି ଜୀବନକୁ ଭଲପାଉ ।

ନୀରବତା ଭଙ୍ଗ କରି ମିଷ୍ଟର୍ ଚନ୍ଦ୍ର କହିଲେ, "କଷ୍ଟମ୍‌ସ୍‌ର ମିଷ୍ଟର ଦତ୍ତ ଚୌଧୁରୀଙ୍କୁ ଜାଣିଛନ୍ତି ? ସେ ମୋର ଆତ୍ମୀୟ ।"

ମିଷ୍ଟର ଦତ୍ତ ଚୌଧୁରୀ କଷ୍ଟମସ୍‌ର ଜଣେ ବଡ଼ କର୍ତ୍ତା । ତାଙ୍କୁ ଉଣା ଅଧିକେ ସମସ୍ତେ ଜାଣନ୍ତି । ସେ ମିଷ୍ଟର ଚନ୍ଦ୍ରଙ୍କର ଆତ୍ମୀୟ ନ ହେବାର କୌଣସି କାରଣ ନାହିଁ । ତେଣୁ ମୁଁ ଭାବିଲି ଯେ, ସ୍ୱଳ୍ପଭାଷୀ ମିଷ୍ଟର ଚନ୍ଦ୍ର କେବଳ ଏତିକି କହିବାପାଇଁ କହିଲେ ନାହିଁ । ସେ ଜଣାଇଲେ ଯେ, ମିଷ୍ଟର ନାଥ୍ ଏତେ ଅବସ୍ଥା ଭୋଗି ନ ଥାଆନ୍ତେ ଯଦି ସେ ମିଷ୍ଟର ଚନ୍ଦ୍ର ହୋଇପାରି ଥାଆନ୍ତେ କିମ୍ବା ତାଙ୍କର ସାହାଯ୍ୟ ଲୋଡ଼ିଥାଆନ୍ତେ ।

ମିଷ୍ଟର୍ ନାଥ୍ କହିଲେ, "ଆଚ୍ଛା, ମୁଁ ଜାଣି ନ ଥିଲି ।······ମୋର ଜଣେ ସାଙ୍ଗ ଜର୍ମାନୀରେ ଅଛି । ମୁଁ ତାଙ୍କୁ କହିଛି ମୋ ପାଇଁ ଗୋଟିଏ ଭଲ ଟେପ୍-ରେକର୍ଡ଼ର ଆଣିବ । ଦେଖାଯାଉ କଣ ହେଉଛି— ।" ମୁଁ ଖୁସି ହେଲି ଯେ, ମୋର ଦୁଇବନ୍ଧୁ ଏହିପରି ଭାବରେ ପରସ୍ପର ସହ ବାନ୍ଧି ହୋଇ ଯାଉଛନ୍ତି ।

ସ୍ତ୍ରୀ ଲୋକମାନେ ଅନେକବେଳୁ ନିଜ ଗପରେ ମଜ୍ଜି ଗଲେଣି । ବର୍ତ୍ତମାନ ସେମାନେ ସ୍ପଷ୍ଟଭାବରେ ଓ ଉତ୍ତେଜିତ ହୋଇ ଅଳାପ କରୁଛନ୍ତି,—ଘରକରଣାର ଦୈନନ୍ଦିନ ସତ୍ୟ; ଅଭାବ ଓ ଅନାଟନ । ମିସେସ୍ ସାହୁ ଟାଣି ହେଲାପରି ଓ ଜୋରରେ କହୁଛନ୍ତି, "ମୁଁ କହୁଛି ପରା । ବର୍ତ୍ତମାନ ଯାହା ଯୁଗ ହେଲାଣି ଏଥିରେ ବଞ୍ଚିବା କଷ୍ଟ । 'ଚଳ୍' ତ ସାତ ସପନ । ଭଲ ବଟର ତ ବଜାରରୁ ଉଠିଗଲାଣି···।" ମିସେସ୍ ନାଥ ମହିଳା ସମାଜ ଇତ୍ୟାଦିରେ ବକ୍ତୃତା ଦେଇପାରନ୍ତି, ତେଣୁ ସେ ଗମ୍ଭୀର ଓ ବ୍ୟଥିତ ହୋଇ କହୁଚନ୍ତି, "ଦେଶର ଅବସ୍ଥା ଯାହା ହେଲାଣି ! କେହି ଦେଖୁ ନାହାନ୍ତି, କେହି ବୁଝୁ ନାହାନ୍ତି । ଆମ ପିଲାଏ ପବନ ଟିକିଏ ପାଉନାହାନ୍ତି, ଖାଦ୍ୟ ଦୂରର କଥା । ମହିଳା ସମାଜ ତରଫରୁ ଅମ୍ଭେ ଗ୍ରାଣ୍ଟ୍ ମାଗିଥିଲୁ ଗୋଟିଏ ନୂଆ ପାର୍କ ବସାଇବା ପାଇଁ । ଗଭର୍ଣ୍ଣମେଣ୍ଟ କଣ କହିଲା ଜାଣନ୍ତି ?···" ମୀନାମା ନିଜକୁ ଉପସ୍ଥାପିତ କରୁଛି "ମୁଁ ତ ସ୍ୱାଙ୍କୁ ସବୁବେଳେ କୁହେ ଯେ, ଚାଲ ଗାଆଁରେ ବସି ଜମିବାଡ଼ି ବୁଝିବା । କଣ ମିଳିବ ଏ ଗୃହକଷ୍ଟରୁ ?" ମିସେସ୍ ଚନ୍ଦ୍ର ସଚଳବୁଦ୍ଧି ଓ କୋମଳ କଣ୍ଠରେ ପଚାରୁଛନ୍ତି, "ଦରକାର କଣ ସବୁ ସୁନା ଗହଣା ହାତକୁ ନେଇଯିବ ? କାହିଁକି ?"

ସେମାନେ କିଛି ଭୁଲ୍ କହୁନାହାନ୍ତି । ସେମାନେ ଆମ ସଂସାରକୁ ଚଳାଉଛନ୍ତି । ସବୁ ଅଭାବ ଅସୁବିଧା ସତ୍ତ୍ୱେ ପାରୁପର୍ଯ୍ୟନ୍ତ ଚେଷ୍ଟା କରି ଚଳାଉଛନ୍ତି । ସେଦିନ ସକାଳେ ଜଳଖିଆ ଟାଇଲେ ବେଳକୁ ମୀନାମା କହିଲା ଯେ, ସେ ସବୁଦିନେ ଅଣ୍ଡା ଖାଇବ ନାହିଁ; କାହିଁକି ନା ଅଣ୍ଡାର ଦାମ୍ ବଢ଼ି ଗଲାଣି । ମୁଁ ହସିକରି କହିଲି,—ଥାଉ, ଦେଖିକି ଥାଉ ଓ ତା'କୁ ତା'ର ନଷ୍ଟଭିତ୍ତି ବଦଳାଇବାକୁ ବାଧ୍ୟ କଲି । ସେ ସହଜେ ଡ଼ାଏଟିଂ କରି ଶୁଖିଗଲାଣି । ଅଣ୍ଡା ଦୁଧ କମ୍ କରିଦେଲେ ବଞ୍ଚିବ କେମିତି ?

ସେମାନେ ଗପନ୍ତୁ । ସେମାନଙ୍କ ଘରଣୀପଣର ପରାକାଷ୍ଠା ଫୁଟିଉଠୁ । ଅମ୍ଭେ ସ୍ୱାମୀମାନେ ତାଙ୍କ କଥାରେ ଯୋଗ ଦେଲୁ, କିଛି କିଛି କହିଲୁ କିନ୍ତୁ ଆମ ପାଇଁ ଅନ୍ୟାନ୍ୟ ଦରକାରି କଥାବସ୍ତୁ ରହିଛି,—ପୃଥିବୀର କଥା, ଯୁଦ୍ଧ ଓ ଶାନ୍ତିର କଥା, ୟୁନାଇଟେଡ୍ ନେସନ୍ ଓ ଜେମିନୀ ରକେଟ୍‌ର କଥା । ମୁଁ କେଉଁ ଆଡ଼ୁ ଆରମ୍ଭ

କରିବ ବୋଲି ଭାବୁଛୁ, ଏହି ସମୟରେ ଡକ୍ଟର ଗୁପ୍ତ କହିଲେ, "ଆଜିକାର ଖବର କାଗଜ ପଢ଼ିଛନ୍ତି ନା ? ଆମେ କଣ ଆଟମ୍ ବମ୍ ତିଆରି କରିବା ନାହିଁ ?"

ମୁଁ ପ୍ରମାଦ ଗଣିଲି । କାରଣ ଏ ବିଷୟରେ ମତଦ୍ୱୈଧ ହେବା ସ୍ୱାଭାବିକ । କିନ୍ତୁ ନିଜେ ଡକ୍ଟର ଗୁପ୍ତ ମୋର ସନ୍ଦେହ ମୋଚନ କଲେ । ସେ ମୂଳକଥାକୁ ଚାଲି ଆସିଲେ ଓ କହିଲେ, "ସେ ଯାହା ହେଲେ ହେବ । କିନ୍ତୁ ଲାଭ କଅଣ ? ଅଟମ୍ ବମ୍‌ରୁ ବଡ଼ ହେଉଛି ଡିସିପ୍ଲିନ୍ । ଯେ ପର୍ଯ୍ୟନ୍ତ ଆମ ଲୋକେ ଡିସିପ୍ଲିନ୍‌ର ମୂଲ୍ୟ ବୁଝି ନାହାନ୍ତି, ସେତେଦିନ ଯାଏଁ ଏ ଦେଶକୁ କେହି ରକ୍ଷା କରିପାରିବେ ନାହିଁ । ମୋର ଏଥିରେ ପୂର୍ଣ୍ଣ ବିଶ୍ୱାସ ।"

ଡିସିପ୍ଲିନ୍ । କେଉଁ ଜାଣିବା ଶୁଣିବା ଶିକ୍ଷିତ ଲୋକ କହିବ ଯେ, ତା'ର ଏଥିରେ ବିଶ୍ୱାସ ନାହିଁ ? ଖାକି ପୋଷାକର ଧାଡ଼ି ଚାଲିଛି, ଚାଲିଛି । ଉଦୟଭାନୁର କିରଣରେ ଇସ୍ପାତ୍ ଚକ୍‌ଚକ୍ କରୁଛି । ତା'ର ଫେଟନ୍ତା ବନ୍ଧୁକ ସୂର୍ଯ୍ୟଙ୍କୁ ଛୁଉଁଛି, ଦିଗନ୍ତରେ ଖେଳିଯାଉଛି । ମୁଁ କଳ୍ପନାରେ ଦେଖିଲି ଯେ, ଡକ୍ଟର ଗୁପ୍ତ ମଧ୍ୟ ପାଦ ମିଳାଇ ଚାଲିଛନ୍ତି । ତାଙ୍କର ଚ୍ଛେଟିଆ ମୁହଁ ଦିବ୍ୟ ଜ୍ୟୋତିରେ ଫୁଲିଉଠୁଛି । ତାଙ୍କ ପାତଳା ହାଡ଼ୁଆ ଦେହର ଶକ୍ତ କଟକଟ ହୋଇ ଡାକ ଉଠୁଛି,—ମୁଁ କେବଳ ଡାକ୍ତର ନୁହେଁ, ମୁଁ ସୈନିକ । ସବୁ ସ୍ୱାର୍ଥ ଭୁଲିଯାଇ ମୁଁ ଚାଲିଛି ତୁମ ସାଙ୍ଗରେ, ନୀରବରେ ମାଡ଼ି ଚାଲିଛି ।

କିନ୍ତୁ ଅନେକ ଅଛନ୍ତି, ଯେମାନେ ଡକ୍ଟର ଗୁପ୍ତଙ୍କ ପରି ନୁହନ୍ତି । ଲୋକେ ଅଛନ୍ତି ଯେଉଁମାନେ ଶୃଙ୍ଖଳାକୁ କଳିଆ କରନ୍ତି, ମରମର ହୁଅନ୍ତି । ମୋର ଗୋଟିଏ ଦୃଶ୍ୟ ମନେ ପଡ଼ିଲା । ମୋ ଅଫିସ୍ ପାଖରେ ଗୋଟିଏ ସିନେମା ଘର ଅଛି । ସେଠି ଉଦୁଉଦିଆ ଖରାରେ ମଧ୍ୟ କେତେ ମଳମୁଣ୍ଡିଆ ଲୋକ ଆଠଅଣିଆ ଟିକେଟ୍ ପାଇଁ ରାସ୍ତାଯାଏଁ ଲମ୍ବି ଯାଇଥାଆନ୍ତି । ମଝିରେ ମଝିରେ ମୁଁ ଚିତ୍କାର ଓ ମରମରର ଶବ୍ଦ ଶୁଣିବାକୁ ପାଏ । ମୁଁ ବାଲକନିକୁ ଉଠିଆସି ଦେଖେ ଯେ ଲାଇନ ଭାଙ୍ଗିଛି, ତେଣୁ ଲୋକେ ଠେଲାପେଲା ହେଉଛନ୍ତି, ପାଟି କରୁଛନ୍ତି ଏବଂ ପୋଲିସ ଠେଙ୍ଗଉଛି । ମୋ ମନରେ ଦୁଃଖ ହୁଏ । ଲୋକମାନେ ଏମିତି ହୁଅନ୍ତି କାହିଁକି ? ଗୋଟିଏ ଖଣ୍ଡେ ଟିକେଟ୍ ପାଇଁ !

ପୁଣି ମୋର ମନେ ପଡ଼ିଲା ଯେ ହେଡ୍ ଅଫିସରେ ରୋଗୀ କେମିତି ଡାକ୍ତରଖାନା ଓ୍ୱାର୍ଡ଼୍‌ରେ ଅସଭ୍ୟଙ୍କ ପରି ରଡ଼ି କରନ୍ତି । ନର୍ସ ଡାକ୍ତରଙ୍କ କଥା ମାନନ୍ତି ନାହିଁ । ମନ୍ଦିର ଦୁଆରରେ ମଧ୍ୟ ଖୁନ୍ଦାଖୁନ୍ଦି ହୁଅନ୍ତି ଓ ଠାକୁରଙ୍କ ଉଦ୍ଦେଶ୍ୟରେ ଗର୍ଜନ କରନ୍ତି ।

ଡକ୍ଟର ଗୁପ୍ତ କଣ ସେହିମାନଙ୍କୁ ଲକ୍ଷ୍ୟକରି କହିଲେ ? ହୋଇଥିବ, କାରଣ ସେହିମାନେ ହିଁ ପୃଥିବୀରେ ବେଶି । ଅତି ବେଶି ।

ହତାଶାର କାରଣ ନାହିଁ । ଆମେ ହତାଶ ହେଲେ ଏ ଦେଶକୁ ଉଠେଇବ କିଏ ? ଯେଉଁମାନଙ୍କର ବ୍ୟାଙ୍କରେ ଅଜସ୍ର ଟଙ୍କା ଅଛି, ଯେଉଁମାନେ ଘିଅ ପରେ ଘିଅ ରେସ୍ତୋରାଁ ନାଇଟ୍ କ୍ଲବରେ ଶହ ଶହ ଟଙ୍କା ଫିଙ୍ଗି ଦେଇପାରନ୍ତି, ଯେଉଁମାନଙ୍କ ଘରେ ଗଣ୍ଡା ଗଣ୍ଡା ଲୋକ ପାଞ୍ଚଶୁ ଆସୁଶୁ ସଲାମ ଦିଅନ୍ତି, ଯେଉଁମାନେ ଇଚ୍ଛା କଲେ ଇଂପୋର୍ଟେଡ୍ ରେଫ୍ରିଜରେଟର୍ ତ ସାନ କଥା, ଇଂପୋର୍ଟେଡ୍ କାର୍ ଦି' ଦିନରେ ହାଜର୍ ହୋଇଯାଏ, ସେମାନେ ଏ ଦେଶକୁ ଉଠେଇବେ ? ଭୟ ନାହିଁ । ସେମାନେ ବଡ଼ଲୋକ । ସେମାନେ ଏତେ ଉପରେ ଅଛନ୍ତି ଯେ ତାଙ୍କ ଆଖିକୁ କିଛି ଦେଖାଯିବ ନାହିଁ । କେବଳ ଆମେମାନେ କିଛି କରି ପାରିବୁ, ଆମରି ପରି ଲୋକ,—ଡକ୍ଟର ଗୁପ୍ତ, ମିଷ୍ଟର୍ ନାଥ୍, ମିଷ୍ଟର୍ ଚନ୍ଦ୍ର, ଶଙ୍କର ସାହୁ ଏହି ଜାତିର ଲୋକ ।

ମୋର ଭାବନାକୁ ସମର୍ଥନ କଲାପରି ମିଷ୍ଟର୍ ନାଥ୍ ତାଙ୍କ ପ୍ରଶସ୍ତ କପାଳରେ ହାତ ବୁଲାଇ ଆଣିଲେ ଓ କହିଲେ, "ଶିକ୍ଷା ଦରକାର; ଉଚିତ ଶିକ୍ଷା । ଶଙ୍କର ସାହୁ ଯୋଡ଼ିଲ, "ଶିକ୍ଷା, ଅଉ ଶାସନ ।" ମିଷ୍ଟର ଚନ୍ଦ୍ର ଭ୍ରୂରୁ ସାମାନ୍ୟ ଉପରକୁ କଲେ, ଆଖିରୁ ଚଷମା କାଢ଼ି ଦେଇ ପୋଛିଲେ ଓ ଫୁଙ୍କିଲେ, ଏବଂ ଆମୋଦିତ ହେଲାପରି ହସିଲେ ଯେପରି କି ସେ ଏହି ଶାସନର ବର୍ଣ୍ଣମାଳା ମୂଳରୁ ଶେଷଯାଏ ଜାଣନ୍ତି । ତେବେ ଆଉ କିଏ,—ଶଙ୍କର ସାହୁ ବା ଆଉ କେହି,—ସେକଥା ପକାନ୍ତୁ, ତାଙ୍କର ଆପତ୍ତି ନାହିଁ । ଡକ୍ଟର ଗୁପ୍ତ ନିଜ ପୂର୍ଣ୍ଣ ବିଶ୍ୱାସର ପ୍ରମାଣ ଦେଇ କହିଲେ,—ଯେଉଁ ରୋଗୀମାନେ ମୋ କଥା ମାନନ୍ତି ନାହିଁ, ମୋର ପ୍ରେସ୍କ୍ରିପ୍ସନ୍ ଅନୁଯାୟୀ ଚଳନ୍ତି ନାହିଁ, ମୁଁ ତାଙ୍କୁ ସ୍ୱେଟ୍‌ଠାକ୍ କହିଦିଏ ଯେ, ବାବୁ ଅନ୍ୟ ଡାକ୍ତର ଦେଖ, ମୋ ପେଟ ଅସୁସ୍ଥ ରହିବ ନାହିଁ···।"

ସ୍ତ୍ରୀ ଲୋକମାନେ କଣ ବର୍ତ୍ତମାନ ସୁଦ୍ଧା ଅସୁସ୍ଥ ପେଟର ଚର୍ଚ୍ଚା କରୁଛନ୍ତି ? ମୋତେ ସେମିତି ଲାଗିଲା । ମୁଁ କାନେଇଲି । ମିସେସ୍ ନାଥ୍ ଅନୁଚ୍ଚ ସ୍ୱରରେ ଓ ଅବିରାମ ଗତିରେ କଣ କହି ଚାଲିଛନ୍ତି, ବିଷୟବସ୍ତୁ ଜଣା ପଡ଼ୁନାହିଁ, ସେଥିରେ କଣ ଥିଲା କେଜାଣି ମିସେସ୍ ସାହୁ ହଠାତ୍ ବଡ଼ ପାଟିରେ ହସି ଉଠିଲେ ଓ କହିଲେ, "ନା, ମୋ ବଟ୍‌ଲର୍ ସେମିତି ନୁହେଁ । ସିନେ କଅଣ ହେଲା ନା···।"

ପୁଣି ସେହି ବଟ୍‌ଲର୍ ! ବର୍ତ୍ତମାନ ଜଣାଗଲା ଯେ, ସେ ହେଉଛି ଶଙ୍କର ସାହୁ ଓ ମହାଲକ୍ଷ୍ମୀ ଦେବୀଙ୍କ ବଟ୍‌ଲର୍ । କିନ୍ତୁ,— । କିନ୍ତୁ ସେ କାହିଁକି ଚାକର ନୁହେଁ, ବେହେରା ନୁହେଁ, ବ୍ୟଅରର୍ ମଧ୍ୟ ନୁହେଁ ? ସେ ବଟ୍‌ଲର୍ କାହିଁକି ହେଲା ? କେମିତି

ହେଲ ? ମୁଁ ଅଶାନ୍ତ ଅନୁଭବ କଲି,—କ୍ୟୁରିଓଟିକୁ ଡ୍ରଇଂରୁମ୍‌ରେ ଯଥାସ୍ଥାନରେ ରଖି ନ ପାରିବାର ଅଶାନ୍ତି । ମିସେସ୍ ସାହୁଙ୍କର ଗପ ଶୁଣିହେଲ ନାହିଁ ।

ଏହାପରେ ଅନେକ କଥା ପଡ଼ିଲା । ମିଷ୍ଟର ନାଥ୍ କହିଲେ ଯେ, ସରକାରର ଟ୍ୟାକ୍‌ସ ଅତ୍ୟନ୍ତ ବାଧୁଛି । ଯେତେ ଖାତା ସଜାଡ଼ିଲେ ମଧ୍ୟ ଇନ୍‌କମ୍ ଟ୍ୟାକ୍‌ସବାଲ ହଇରାଣ କରୁଛନ୍ତି । ଶଙ୍କର ସାହୁ ପୁଣି କହିଲ ଯେ, ସେମାନେ ଚୋର, ସବୁ ଚୋର, ଏବଂ ଆସ୍ଫାଳନ କଲ ଯେ, ତାଙ୍କୁ ଠକିବାର ବାଟ ସେ ଜାଣିଛି । ମିଷ୍ଟର୍ ଚନ୍ଦ୍ର ଡକ୍ଟର ଗୁପ୍ତଙ୍କ ଆଡ଼କୁ ଅନାଇଁ ହସିକରି କହିଲେ, "ଆପଣଙ୍କୁ ବୋଧହୁଏ ଇନ୍‌କମ୍ ଟ୍ୟାକ୍‌ସ ଦେବାକୁ ପଡ଼େ ନାହିଁ,—ନୁହେଁ" ଡକ୍ଟର ଗୁପ୍ତ ମୁରୁକିହସା ଦେଲେ, କିଛି କହିଲେ ନାହିଁ । ମିସେସ୍ ଚନ୍ଦ୍ର ବିସ୍ମୟଭରା ନେତ୍ରରେ ପଚାରିଲେ, "କାହିଁକି ? ଡାକ୍ତରମାନଙ୍କୁ କଣ ଇନ୍‌କମ୍ ଟ୍ୟାକ୍‌ସ୍ ଛାଡ଼ ?" ଏଥିରେ ସମସ୍ତେ ହସିଉଠିଲେ ।

ଦେଶ ବିଦେଶର ଅନ୍ୟାନ୍ୟ କେତେ ବିଷୟ ନେଇ ଅଲାପ ଆଲୋଚନା ହେଲା । ସ୍ତ୍ରୀ ଲୋକମାନେ ମଧ୍ୟ ଯୋଗ ଦେଲେ । ତେଣୁ ଗୃହସଜ୍ଜା, ଅର୍ଥାତ ଘରରେ ରୁଚି ଓ କଳା ଯୋଡ଼ିହୋଇ ଯାଉଥାଏ । ଜାପାନୀ ଫୁଲସଜା, ଚୀନା ଚେଷ୍ଟୁରି, ଇଟାଲୀୟ ଚିତ୍ରକଳା, ଫରାସୀ ଅତର, ମାର୍କିନ୍ ଜାଜ୍ ଏସବୁ ସୁନ୍ଦର ଭାବରେ ସୃଷ୍ଟି ହୋଇଗଲା । ନିଜେ ମାଳମା (ଯେ ବିଦେଶକୁ ଯାଇନାହିଁ) ୟୁରୋପୀୟ କାଚ ଓ ପୋର୍ସିଲେନ୍ ବାସନ ସମ୍ପର୍କରେ ଅନେକ କିଛି କହିପାରିଲ ।

କିନ୍ତୁ ମୋର ଅଶାନ୍ତି ଦୂର ହେଲା ନାହିଁ । ମନ୍ଦାକିନୀ ଦେବୀଙ୍କର ବଟ୍‌ଲର୍ ମୋ ମନରୁ ଗଲନାହିଁ । ଙ୍କର ସ ହୁ ଗୋଟିଏ ବଡ଼ ଘର ପାଇଛି, ତା'ର ଗୋଟିଏ ସେକେଣ୍ଡ ହ୍ୟାଣ୍ଡ୍ ବଡ଼ କାର୍ ଅଛି, ସେ ହୁଏତ ଅଳ୍ପ ବହୁତ ପାର୍ଟି ଡାକେ । ତେବେ ବଟ୍‌ଲର୍ ନ ରଖିଲେ କଣ ଚଳନ୍ତା ନାହିଁ ? ମନ୍ଦାକିନୀ ଦେବୀ ଅଳ୍ପ ପାଠ ପଢ଼ିଛନ୍ତି, ତାଙ୍କୁ ଇଂରେଜୀ ଭଲ କହିଆସେ ନାହିଁ, ସେଥିପାଇଁ ଯେ ମୋତେ ଅଡ଼ୁଆ ଲାଗିଲା ତା' ନୁହେଁ । ମୋର ମନେ ହେଲ ଯେ, ବଟ୍‌ଲର୍ ରଖି ସେମାନେ ନିଜର ଓ ଆମର ଏହି ସମ୍ପ୍ରଦାୟର ଅନିଷ୍ଟ ଘଟାଉଛନ୍ତି । କାରଣ ସେ ଗୋଟିଏ ଅବାଞ୍ଛିତ ପ୍ରାଣୀ । ସେ ଆମକୁ ଦେଖି ହସୁଥିବ ।

ମିସେସ୍ ସାହୁଙ୍କର ବଟ୍‌ଲର୍ ତାଙ୍କ ଘରେ ଅଛି, ଏଠି ନାହିଁ । ତାକୁ ନେଇ ଏତେ ମୁଣ୍ଡବଥା କାହିଁକି ? ଆଜିକାର ଏହି ଆସରରେ ସେ ଆସିଛି କେଉଁଠୁ । କିନ୍ତୁ ମୋର ମନ ବୁଝିଲା ନାହିଁ । ମୋତେ ଲାଗିଲା ଯେ ସେ ବଟ୍‌ଲର୍ ଏଠି ମଧ୍ୟ ଅଛି । ଏହି ଯେଉଁ କୃଷ୍ଣକାୟ ଲୋକଟି ପାନୀୟର ଟ୍ରେ ଧରି ପାଦ ଚପି ଚପି ଆସୁଛି,— ଧୁଆହୋଇ ସାର୍ଟ, ଫୁଲପ୍ୟାଣ୍ଟ ଓ ମୁଣ୍ଡରେ ଧଳା ଟୋପି, ତାକୁ ମିଷ୍ଟର ଓ ମିସେସ୍ ନାଥ୍

କିଏ ବୋଲି ତାଙ୍କୁ କେଜାଣି, କିନ୍ତୁ ସେ ମଧ୍ୟ ବଟ୍‌ଲର୍ । ଏପରି କି ମୋର ମନେ ହେଲା ଯେ ମୋର ପାଣୁଆ ଗୁରୁକର, ଯେ ସଦାସର୍ବଦା ଗେଞ୍ଜି ଓ ଧୋତି ପିନ୍ଧି ବୁଲେ, ସେ ମଧ୍ୟ ଏହି ଦଳରେ ଅଛି, କିମ୍ବା କାଲି ସକାଳେ ଯୋଗଦେବ । ପରିଧାନରେ ବିଶେଷ କିଛି ଯାଏ ଆସେ ନାହିଁ, ଅସଲ ହେଉଛି ଭିତରିଆ ଚେହେରା । ସେମାନଙ୍କର ଭାବହୀନ ଭାବ । ମୂଢ଼ତା ଓ ଗୁଡ଼ତାର ଟାଣ । ନିମୀଳିତ ନିଷ୍ପନ୍ଦ ବିରାଗ । ମୁଁ ଆଶ୍ଚର୍ଯ୍ୟ ହେଲି ଯେ; ମୋର ବନ୍ଧୁମାନେ କେମିତି ଏତିକି ଠଉରାଇ ପାରୁନାହାନ୍ତି ? ମୁଁ ନିଜେ କେମିତି ଆଜଯାଏଁ ଜାଣିପାରି ନ ଥିଲି ?

ଏହି ସେ ଆସୁଛି । ଅମରାବତୀର ନୈବେଦ୍ୟ ଆଣି ଦେଇପରି ଗ୍ଲାସ୍‌ଗୁଡ଼ିକୁ ସନ୍ତର୍ପଣରେ ତଳ ଆସନ ଓ ଉପର ଢାଙ୍କୁଣି ଦେଇ ଗୋଟି ଗୋଟି କରି ରଖୁଛି । କେତେ କଥା ଓ ହସ, କେତେ ପ୍ରଶ୍ନବାଚକ ବିସ୍ମୟବାଚକର ଶବ୍ଦ, ଭାବନା ସଜାଡ଼ିବାର କେତେ ଖୁସ୍‌ଖାସ୍,—ପଣତର ଉତ୍‌ଥାନ ପତନ, ଟେବୁଲ୍‌ରେ ଅଙ୍ଗୁଳିକ୍ରୀଡ଼ା, ଓଷ୍ଠ ଦଂଶନ, ଇତ୍ୟାଦି—ତା'ର ଚାରିପାଖରେ ଧ୍ୱନିତ ହେଉଛି । ସେ କଣ କିଛି ଶୁଣୁନାହିଁ, କିଛି ଦେଖୁନାହିଁ ? ନା, ସେ ଜାଗ୍ରତ । ତା'ର ନିଦା-ବେଳରେ ଯେଉଁ ମୋଟା ଶିରା ଦେଖା ଯାଉଛି, ସେଥିରେ ମଧ୍ୟ ଚେତନାର ସ୍ରୁଅ ଛୁଟୁଛି । କିନ୍ତୁ ସେ ଆମକୁ କିଛି ଦେବାକୁ ଚାହେଁ ନାହିଁ । ଯେପରି କି ଆମେ ତା'ର ଯୋଗ୍ୟ ନୁହଁ ।

ସେ କଣ ଭାବୁଛି ଯେ, ଆମେ ବଡ଼ଲୋକ ନୁହଁ ? ମୋତେ ଲାଗିଲା ଯେ ସେ ଇଚ୍ଛା କଲେ ଯେ କୌଣସି ମୁହୂର୍ତ୍ତରେ ହସିଉଠିବ,—ଖାଲୁଆ ପାତାଳ ହସ, ଯେଉଁଥିରେ ଆମେ ଚଉକି କୁଣ୍ଢେଇ ଝାଉଁଳିଯିବୁ ! ସେ ଆମକୁ କଅଣ ବୋଲି ଭାବୁଛି କି ?

ଦୋଷ ତା'ର ନୁହେଁ । ସେ ଏମିତି ଦିଶୁ ନ ଥାଆନ୍ତା । ସବୁ ଦୋଷ ଶଙ୍କର ସାହୁ ଓ ସାହୁଆଣୀଙ୍କର । ଘର ଗାଡ଼ି ଘୋଡ଼ା ସବୁଥିରେ ଲାଗିପଡ଼,—କିନ୍ତୁ ବଟ୍‌ଲର୍-ଟିଏ ରଖିବାକୁ କିଏ କହୁଥିଲା ? ବର୍ତ୍ତମାନ ଏହି ଭୃତ୍ୟପ୍ରବର, ମୋର ଗୁରୁକରଟୋକା, ସମସ୍ତେ ବଟ୍‌ଲର୍ ପାଲଟିଗଲେଣି । କାରଣ ଶଙ୍କର ସାହୁ, ମିଷ୍ଟର୍ ନାଥ୍, ମିଷ୍ଟର୍ ଚନ୍ଦ୍ର ଇତ୍ୟାଦି ଆମେ କେବଳ ବନ୍ଧୁ ନୁହଁ । ଆମେ ସମସ୍ତେ ସମାନ । ଏକାପରି ।

ଆମେ ବଡ଼ଲୋକ ଭଳି ଦେଖାଯାଉଛୁ, କିନ୍ତୁ ବଡ଼ଲୋକ ନୁହଁ । ସତ କଥା । ସେଥିରେ ଦୁଃଖ କରିବାର କିଛି ନାହିଁ; ଗର୍ବର କାରଣ ରହିଛି । ସେ କିଏ କହିବ ଯେ ଆମେ ଧନିକ୍ ?

ସେ କଣ ଗୁପ୍ତଚର ?

ମୋର ମନେ ହେଲା ଯେ, ସେହି ଉଦ୍ଭୁଉଦିଆ ଖଦ୍ଦରେ ଠେଙ୍ଗା ଖାଉଥିବା ଲୋକଙ୍କ ଭିତରୁ ଜଣେ, ଏଠିକି ଆସି ଡିସିପ୍ଲିନ୍‌ର ଢଙ୍ଗ କରୁଛି । ସେ ଅପେକ୍ଷା କରିଛି ।

ଅପେକ୍ଷା କରିଛି ଯେବେ ଇନ୍‌କିଲାବ୍ ଆସିବ । ସେତେବେଳେ ସେ ଆମ ଆଡ଼କୁ ଚାହିଁବ ନାହିଁ; କାରଣ ଆମେ ତା'ର ଶତ୍ରୁ ନୁହଁ କିମ୍ବା ତା'ର ମାଡ଼ୁଆ ଦଳରେ ନାହୁଁ । ଆମେ ମାଡ଼ ଦେଇ ଜାଣୁ ନାହିଁ କିମ୍ବା ଇନ୍‌କିଲାବ୍‌ରେ ବିଶ୍ୱାସ କରୁ ନାହିଁ ଏବଂ ଆମର ଅମାର ଗ୍ରେଟ; ନଉଳୁଣା; ସେଥିରେ ମର୍ଯ୍ୟାଦା ନାହିଁ ।

ପୁଣି ମୋର ମନେ ହେଲା ଯେ, ଆମକୁ ମାରିଲା ବେଳେ ସେ ଅସ୍ତ୍ର ଧରିବ ନାହିଁ, ଆମ ଦେହରେ ହାତ ଦେବ ନାହିଁ । ଚରମ ଦୟା ଓ ଘୃଣାରେ ବିଷପାଣି ପିଆଇ ଦେବ ।

ବର୍ତ୍ତମାନ କେଉଁ କଥା ପଡ଼ିଛି ? ମୁଁ ଶୁଣିବାକୁ ଚେଷ୍ଟା କଲି । ଶୁଣିଲି ଯେ, ମିସେସ୍ ନାଥ୍ କହୁଛନ୍ତି ବ୍ଲାକ୍ ମାର୍କେଟ୍‌ରେ ଅଥଚ ବେଶି ଦାମ୍ ନ ଦେଇ ବାସୁମତୀ ଅରୁଆ ଚାଉଳ କେଉଁଠି ମିଳିପାରିବ । ମୁଁ ତରତର ହୋଇ ମୋର ଭାବନାକୁ ଫେରିଆସିଲି ଓ ମୋର ଗ୍ଲାସ୍‌ରେ ଥିବା କମଳାରସ ସର୍‌ବତ୍‌କୁ ଚାହିଁ ରହିଲି ।

ମିସେସ୍ ଚନ୍ଦ୍‌ଙ୍କ ଦୃଷ୍ଟି ମୋ ଉପରେ ପଡ଼ିଲା ଓ ସେ ତାଙ୍କ କୁହୁସ୍ୱରରେ କହି ପକାଇଲେ, "ମିଷ୍ଟର୍ ଦାସ୍ ତାଙ୍କ ସରବତ ଗ୍ଲାସକୁ ଏମିତି ଚାହିଁଛନ୍ତି କାହିଁକି ? କଅଣ ଭାବୁଛନ୍ତି ସେଥିରେ କିଏ ବିଷ ଦେଇ ଦେଇଛି ?"

ମୋ ମୁହଁର ରଙ୍ଗ କଅଣ ହୋଇଗଲା କହିପାରୁ ନାହିଁ, ଓ ମୋ ପାଟିରୁ ବାହାରିଲା,—"ନା, ନା—"

ଏହି ଜୋକ୍‌ଟିକୁ ସମସ୍ତେ ଉପଭୋଗ କଲେ ଓ ବଡ଼ପାଟିରେ ହସିଉଠିଲେ ।

# ବିଷ

ନିଜକୁ ଏଭଳି ହୀନ ଦୃଷ୍ଟିରେ ଦେଖିବା କଣ ଏକ-ପ୍ରକାର ଅସୁସ୍ଥତା ନୁହେଁ ? ଅବଶ୍ୟ କୁହାଯାଇପାରେ ଯେ ମୁଁ ଲେଖକ ହୋଇଥିବାରୁ ମୋ ଶ୍ରେଣୀର ଲୋକମାନଙ୍କଠାରୁ ଭିନ୍ନ, ସେଇଥିପାଇଁ ମୁଁ ତାଙ୍କ ଗହଣରେ ବସି ସୁରାପାନ କରୁଥିଲେ ମଧ୍ୟ ତାଙ୍କ ଲଘୁ ରଜନୀତି ଏବଂ ଓଜନିଆ ରେଫ୍ରି-ଜେରେଟର୍ ନେଇ ବିଶେଷ କିଛି କହି ପାରୁନାହିଁ । କାରଣ ମୁଁ କେଉଁ ଚୁପ୍‌ସଇତାନ୍ 'ବଟ୍‌ଲର' କଥା ଭାବୁଛି ଯେ ଆମକୁ ଦିନେ ବିଷ ଖୁଆଇ ଯଶ କରି ପାରେ । କିନ୍ତୁ ଅସୁବିଧା ତ ହେଉଛି ! ମୋ ବନ୍ଧୁମାନଙ୍କ ଦୃଷ୍ଟିରେ ମୁଁ ଗୋଟାଏ ଅସାମାଜିକ ଗୋଠ-ଖଣ୍ଡିଆ ଜୀବ, ଅଯଥାରେ ଏଣୁତେଣୁ ଭାବେ, ଅକାରଣରେ ଏଣୁତେଣୁ ଲେଖେ, ଯେଉଁଥିରୁ ଦି'ପଇସା ମିଳିବାର ଆଶା ନାହିଁ । (କାଁ ଭାଁ ପୁରସ୍କାର ଛଡ଼ା); ତେଣୁ ମୁଁ ଧର୍ମରକ୍ଷା କରି ତାଙ୍କ ପଙ୍ଗତରେ ବସି ପାରୁଛି, ମଝିରେ ମଝିରେ ହସି ପାରୁଛି ଏହି ଯଥେଷ୍ଟ । ଅନ୍ୟ ଅର୍ଥରେ ମୁଁ ଅସୁସ୍ଥ, କିନ୍ତୁ କ୍ଷମଣୀୟ, କାରଣ ମୁଁ ଭଲଲୋକ । ମୁଁ ଅମଣିଷ, ଅର୍ଥାତ୍ ଉଗ୍ରବାଦୀ, ନୀତିବାଦୀ, ଅବା ଗାନ୍ଧିବାଦୀ ନୁହେଁ ଯେ ତାଙ୍କ ବିଜ୍ଞତା-ଚତୁରତାକୁ ଝଢରେ ପକାଇବି । ତେଣୁ ବିଚରା ଲେଖୁ ତା'ର ଗପ, କବିତା, ଯାହା କିଛି, କିନ୍ତୁ ଥରେ ଅଧେ ସେ ଆସୁ ଏମିତି ଆମ ଆଡ୍ଡା, ନହେଲେ ତା'ର ଅସୁସ୍ଥତା ବଢ଼ି ବଢ଼ି କେତେ ଦୂର ଯିବ କହି ହେବ ନାହିଁ ।

ଏଣେ ଉପରୋକ୍ତ ଉଗ୍ରବାଦୀ କୁହେ ଯେ ମୁଁ ଭିନ୍ନ ହୋଇ ନ ପାରେ । ନିଜ ଶ୍ରେଣୀକୁ ଛୁଗୁଲେଇବାର ଢଙ୍ଗ ବୁର୍ଜୁଆ-

ସ୍ଥୂଳର ଭୁଲେଇବା ଗୁଲ (diversionary tactics) ଛଡ଼ା ଆଉ କିଛି ହୋଇ ନ ପାରେ ।

ମାର୍କସବାଦୀ କୁହେ ଯେ ମୁଁ ଖ୍ରୁ ।

ଗାନ୍ଧୀବାଦୀ କୁହେ ଯେ ମୁଁ ନିଷ୍କର୍ମ ।

ମୋ ସ୍ତ୍ରୀ କୁହନ୍ତି—କଣ ମିଳିବ ସେଥିରୁ ? ଦେଖୁଛ ତା ମିଷ୍ଟର୍ ଚନ୍ଦ୍ର, କେଉଁଠି ଥିଲେ, କେଉଁଠି ପହଞ୍ଚଲେଣି ଆସି ? ଟିକିଏ ପ୍ରାକ୍ଟିକ୍ୟାଲ ହେବାକୁ ଶିଖ ।

ଶେଷକୁ ଜଣେ ବଙ୍କ ସମୀକ୍ଷକ ମଧ୍ୟ ମୋ ଲେଖାର ସମାଲୋଚନା କରିବାକୁ ଯାଇ ପ୍ରଚୁର ପ୍ରଶଂସା ସତ୍ତ୍ୱେ କହିଲେ ଯେ ଆପଣାକୁ ନେଇ ଏଇ ସ୍ୱାନମାନ୍ୟତା (ନିଜେ ଏବଂ ନିଜ ଶ୍ରେଣୀ ଏକା କଥା) ଧର୍ଷିତ ହେବାକୁ ଭଲ ପାଇବା ଅର୍ଥାତ୍ ଫ୍ରଏଡୀୟ ଯୌନ ପ୍ରବୃତ୍ତି masochsimର ପାଙ୍ଗା ପାଖି ।

ଏ ହେତୁ ମୋର ଯଦି ସନ୍ଦେହ ହୁଏ ଯେ ମୁଁ ଅସୁସ୍ଥ, ସେଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ମୋର କେବଳ ଭୟ ହେଉଛି ଯେ ଜଣେ ଅଧେ 'ବାଦୀ' କହିପାରନ୍ତି ଯେ ଇଏ ବି' ଗୋଟାଏ ଢଙ୍ଗ, ଅଳସବିଳାସ···

କିନ୍ତୁ ମୁଁ ପଚାରୁଛି—ତାହାହେଲେ କୁହ ମୁଁ କିଏ ? ମୁଁ କଣ କୌଣସି ଦଳର ନିଜ ଲୋକ ହୋଇପାରିବି ନାହିଁ ? ଏଣେ ନିର୍ଦ୍ଦଳୀୟ ହୋଇ ରହି ପାରିବି ନାହିଁ ? ନିଜକୁ ନିଜେ ହୋଇ ରହି ପାରିବି ନାହିଁ ? ସେଥିରୁ ହୁଏତ ସେମାନେ ମୋର ଅସୁସ୍ଥତାକୁ ଚିହ୍ନିବେ ଓ ତା'ର ନାଆଁ ଦେବେ । ଆତ୍ମନିର୍ଣ୍ଣୟର ସଙ୍କଟ Indentity c isis ।

ହେଲେ ଧୋକ ବି' କଡ଼ ଲେଉଟେଇ ପାରିବ । ତେଣୁ ଆଜି ମୁଁ ଦମ୍ଭର ସହିତ କହିବାକୁ ଚାହେଁ ମୋ ସଙ୍କଟ ମୋର, ପ୍ରତ୍ୟେକ ଇଣ୍ଟେଲେକ୍‌ଚୁଆଲ୍‌ର, ମୁଁ ତାକୁ ସମ୍ଭାଳି ନେବି । ହୋଇପାରେ ଯେ ମୁଁ ମଚ୍ଚିମଚ୍ଚିଆଁ, ତା' ବୋଲି ମୁଁ ବୁଡ଼ି ମରିବି ବୋଲି ଲେଖା ହୋଇ ନାହିଁ । ମନେରଖ ଯେ କେବଳ ଏଇ ମଚ୍ଚିମଚ୍ଚିଆଁ ହିଁ ଯାଚି ଫିଟାଏ, ସାହିତ୍ୟ ହେଉ ବା ଘୋଷଣାପତ୍ର, ମ୍ୟାନିଫେଷ୍ଟୋ ହେଉ । ସେ ଯେତେକ ଗଣ୍ଡଗୋଳ

କରେ, ହେଲେ ଧର୍ମଯୁଦ୍ଧ କରିବା ପାଇଁ ମଧ୍ୟ ତାକ ଛାଡ଼େ । ଝିଣି ଝିଣି ସ୍ୱାର୍ଥର ଗ୍ରୋଟକଥା ଭିତରେ ମଧ୍ୟ କାହାରି କାହାରି ବଡ଼ପଣ ଚକ୍ ଚକ୍ କରେ, ଏବଂ ସେହିମାନେହିଁ ଇତିହାସର ନାୟକ ହୁଅନ୍ତି, କଳିଯୁଗକୁ ପାଲଟେଇ ଦେଇ ପାରନ୍ତି । ଆମ ଛଡ଼ା ସଂସାରର ଗ୍ରୋଟବଡ଼ ସତକଥାକୁ ବୁଝିବ କିଏ ଯେ ତା'କୁ ଲୁଚେଇବ, ତାକୁ ନେଇ ଖେଳିବ, ଅବା ତା'କୁ ସୁଧୁରେଇ ପାରିବ ?

ନା, ମୋର ପୂର୍ଣ୍ଣ ବିଶ୍ୱାସ ଯେ କେଉଁ ଭବିଷ୍ୟତରେ ବଟ୍‌ଲର୍ ମୋତେ ବିଷ ଖୋଇ ମାରି ପାରିବ ନାହିଁ । ମୁଁ ବଞ୍ଚିବ ।

ଗଳ୍ପର ବଙ୍ଗଳା ରୂପାନ୍ତର 'ବିଷ' ଅଧ୍ୟାପକ ଠାକୁର ଚନ୍ଦ୍ର ନନ୍ଦୀଙ୍କ ଦ୍ୱାରା ସମ୍ପାଦିତ ଏବଂ ୧୯୮୬ ମସିହାରେ ପ୍ରକାଶିତ ଶ୍ରେଷ୍ଠ ଓଡ଼ିଆ ଗଳ୍ପ ସଙ୍କଳନ'ରେ ଅନ୍ତର୍ଭୁକ୍ତ ହୋଇଛି । ଦମ୍ପତି କମଳାକାନ୍ତ ଓ ଲୀଳାବତୀ ମହାପାତ୍ରଙ୍କ ଦ୍ୱାରା ରଚିତ ଏହାର ଇଂରାଜି ଅନୁବାଦ "Poison" ମୋର ଇଂରାଜୀ ସଙ୍କଳନ "Wild Peacock and other Stories"ରେ ସ୍ଥାନ ପାଇଛି ।

ଭୁବନେଶ୍ୱର
୩୦ ସେପ୍‌ଟେମ୍ବର ୧୯୮୬



# ପଞ୍ଚ ପରମ ଗୁରୁ

ସତ୍ୟନାରାୟଣ ବାବୁ ଭଲଲୋକ । କିନ୍ତୁ ଏହି କେତେଦିନ ହେଲା ସେ ବେଶି ଭଲ ହେବାକୁ ବସିଛନ୍ତି ।

ସେ ପ୍ରାୟ ରାଗନ୍ତି ନାହିଁ । କିନ୍ତୁ ଆଜିକାଲି ମନେହେବ ଯେ, ତାଙ୍କର ରାଗିବାର କ୍ଷମତା ନାହିଁ । ପିଲାମାନେ ପ୍ରଚଣ୍ଡ କଳି କଜିଆ କଲାବେଳେ, ଘରଣୀ ସୁମିତ୍ରା ଦେବୀ ତାଙ୍କର ଦାମ୍ପତ୍ୟିକ ଓ ନିଦ୍ଧିମିତ ଜୀବନ ଦୁଃଖ ଶୁଣାଇଲା ବେଳେ, କିମ୍ବା ଘଣ୍ଟା ଘଣ୍ଟା ଧରି ବିଦ୍ୟୁତ୍‌ଶକ୍ତି ବନ୍ଦ ହେବାରୁ ବିନା ପଙ୍ଖାରେ ଗ୍ରୀଷ୍ମୋତ୍ତାପ ସହିବାକୁ ଯାଇ ତାଙ୍କ ମୁହଁରେ ଅସନ୍ତୋଷର ଲକ୍ଷଣ ପ୍ରକାଶ ପାଉନାହିଁ ।

ଅଫିସ୍ କାମ କଲାବେଳେ ସେ ଭାବୁଛନ୍ତି ଯେ, ସେ ପ୍ରକୃତରେ ସରକାରୀ ଚାକର, ଅର୍ଥାତ୍ ଜନସେବକ । ଟିକସଦାତା ମାଲିକମାନେ ଆସୁଛନ୍ତି,—କିଏ ଗୁହାରି କରୁଛି, କିଏ ତୋଷାମଦ କରୁଛି, କିଏ ନିନ୍ଦା କରୁଛି । ସତ୍ୟନାରାୟଣ ବାବୁ ପ୍ରସନ୍ନ ବଦନରେ ସମସ୍ତଙ୍କ କଥା ଶୁଣୁଛନ୍ତି, ଲେଖି ରଖୁଛନ୍ତି ଏବଂ [illegible] ହେଲେ କ୍ଷମା ମାଗୁଛନ୍ତି । ତାଙ୍କ ମନରେ ଆସୁଛି,—ମୁଁ ତୁମକୁ ଯଥାସାଧ୍ୟ ଖୁସି ରଖିବାକୁ ଚେଷ୍ଟା କରିବି । ମୁଁ ତୁମର ସେବାକାରୀ ।

ସତ୍ୟନାରାୟଣ ବାବୁ ବିଳାସୀ ନୁହନ୍ତି । କିନ୍ତୁ ସାମାଜିକ ସ୍ଥିତି ଓ ବୟସର ପ୍ରଭାବରେ ସେ ଶାରୀରିକ କଷ୍ଟ ବିଶେଷ ସହିପାରନ୍ତି ନାହିଁ । ତଥାପି ଦେଖାଯାଉଛି ଯେ, ସେ ଆଜିକାଲି ବିନା କାରଣରେ ନିଜକୁ କଷ୍ଟ ଦେଉଛନ୍ତି । ଯଥା, ଦିନେ ଅଫିସରୁ ଫେରି ସେ ପରିବା ଥଳି ଧରି ବାହାରିଲେ ବଜାର ସଉଦା କରିବାକୁ । ସ୍ତ୍ରୀଙ୍କୁ କହିଲେ,—କଅଣ ସବୁ ଆସିବ କୁହ, ମୁଁ ଚାଲି ଚାଲି ଯାଉଛି ନେଇଆସିବି । ସୁମିତ୍ରା ଦେବୀ ଆଶ୍ଚର୍ଯ୍ୟ ହେଲେ ଓ ପରିହାସ କଲେ,—କଅଣ ପେଟ୍ରୋଲ୍ ପଇସା ବଞ୍ଚାଇବାକୁ ଚାହୁଁଛ ? ସତ୍ୟନାରାୟଣ ବାବୁ କିଛି କହିଲେ ନାହିଁ ଓ ଗୋଟିଏ ଅମାୟିକ ହସ ହସିଦେଲେ ।

ସବୁଠାରୁ ପ୍ରଶଂସାର ବିଷୟ ଯେ, ସେ ସିଗାରେଟ୍ ଛାଡ଼ି ଦେଇଛନ୍ତି । ପୂରାପୂରି ଛାଡ଼ି ଦେଇ ନାହାନ୍ତି ; ତେବେ ଆଗେ ଦିନକୁ ତିରିଶ ପଇଁତିରିଶରୁ ଉପରେ ଖାଇବା ସ୍ଥଳେ ଏବେ ପାଞ୍ଚୋଟିରୁ ବେଶି ଖାଉ ନାହାନ୍ତି । ସେ ଆଶା କରୁଛନ୍ତି ଯେ, ଆସନ୍ତା ସପ୍ତାହ ମଧ୍ୟରେ ଏହି ବଦଭ୍ୟାସକୁ ବର୍ଜନ କରିପାରିବେ ।

ସୁମିତ୍ରା ଦେବୀ ବୁଦ୍ଧିମତୀ । ସ୍ୱାମୀଙ୍କର ବ୍ୟବହାର ପରିବର୍ତ୍ତନ ତାଙ୍କ ଆଖିରେ ନ ପଡ଼ିବାର କଥା ନୁହେଁ । କିନ୍ତୁ ସେ ସ୍ୱାମୀଙ୍କର ସିଗାରେଟ୍ ବର୍ଜନ ଛଡ଼ା ଆଉ କିଛି ଲକ୍ଷ୍ୟ କରି ପାରି ନାହାନ୍ତି । ତା'ର କାରଣ ଆଗରୁ କୁହାଯାଇଛି । ସତ୍ୟ-ନାରାୟଣ ବାବୁ ସହଜେ ଭଲ ଲୋକ, ତେଣୁ ତାଙ୍କ ଭଲପଣରେ ପରିବର୍ତ୍ତନ ଓ ସଂପ୍ରସାରଣ ସୁଦୃଶ୍ୟ ହେଉନାହିଁ । ସୁମିତ୍ରା ଦେବୀଙ୍କ ସମେତ ଅନ୍ୟମାନଙ୍କ ମନରେ ଆସୁଛି ଯେ ସେ ସବୁଦିନେ ସେମିତି,—ସେ ରାଗନ୍ତି ନାହିଁ, ସେ ସ୍ନେହୀ ସ୍ୱାମୀ ଓ ପିତା, ସେ ନିଷ୍ଠାବାନ୍ ଅଫିସର ଇତ୍ୟାଦି ।

ସତ୍ୟନାରାୟଣ ବାବୁ ମଧ୍ୟ ବୁଝୁଥାନ୍ତି ନାହିଁ ଯେ, କେହି ଭାବିବ ସେ ବଦଳି ଯାଇଛନ୍ତି । ତାଙ୍କର ଧାରଣା ଯେ, ଏ ହେଉଛି ତାଙ୍କର ସ୍ୱାଭାବିକ ରୂପ, ତାଙ୍କ ସ୍ୱକୀୟ ଆତ୍ମା ଓ ବୁଦ୍ଧିର ପ୍ରେରଣା, ଯାହାକୁ ହୁଏତ ସେ ସବୁବେଳେ ମାନିପାରି ନାହାନ୍ତି ।

ଏବଂ ଏଥିପାଇଁ ତାଙ୍କ ମନରେ ବଡ଼ିମାର ଭାବ ଆସୁନାହିଁ । ବରଂ ସେ ନିଜକୁ କହୁଛନ୍ତି ଯେ ଏ ଯଥେଷ୍ଟ ନୁହେଁ,—ମୁଁ ଏହାଠାରୁ ଅଧିକ କିଛି ହୋଇ ପାରିବ ।

ଏହି ଅପୂରଣ, ଏହି ଆକାଂକ୍ଷା ବେଳେ ବେଳେ ସ୍ପଷ୍ଟ ହୋଇ ଉଠୁଛି ଯେତେବେଳେ ସେ ଘରେ ଚୁପ୍‌ଚାପ୍ ବସି ରହି ସ୍ତ୍ରୀ-ପିଲଙ୍କୁ ଦେଖୁଛନ୍ତି, ସେମାନଙ୍କୁ ନିଜ ଧନ୍ଦା, ନିଜ ଖେଳରେ ବ୍ୟାପୃତ ହେବାର ଦେଖୁଛନ୍ତି । ସବିନୟ ହୋଇ ସେ ଭାବୁଛନ୍ତି,—ଏ ଛନ୍ଦ ସୁମଧୁର ଓ ମୋର । କିନ୍ତୁ ମୁଁ କଣ ତା'ର ଉପଯୁକ୍ତ ନାୟକ ହୋଇପାରୁଛି ?

ଛନ୍ଦର ପୃଷ୍ଠଭୂମିରେ ସେ, ସୁମିତ୍ରା । ସେ ମୋର ସ୍ତ୍ରୀ ।

ସେ ମୋର ସ୍ତ୍ରୀ,—ଏହି ଭାବ ଆସିଲାରୁ ସେ ସୁମିତ୍ରା ଦେବୀଙ୍କୁ ଚାହିଁ ରହୁଛନ୍ତି । ସୁମି ରୋଷେଇ ଘରେ କାମ କରୁଛି, ସୁମି ପିଲଙ୍କୁ ଗାଳି ଦେଉଛି, ସୁମି ପିଲଙ୍କଠାରୁ କେଉଁ ମଜା କଥା ଶୁଣି ହସିଦେଉଛି, ସୁମି ଭାବାଳୁପର ହେଉଛି, ସୁମିର ଦେହରୁ ଅପର୍ଯ୍ୟାପ୍ତ ଝାଳ ବହୁଛି, ସୁମିର ଆଖି ତଳେ କଜଳ ଲେସି ହୋଇଯାଇଛି, ସୁମିକୁ ହଳଦୀ ରଙ୍ଗର ଶାଢ଼ୀ ଭଲ ଦେଖାଯାଉଛି··· । ଏହି ରୂପ-

ଗୁଣର ସ୍ୱତନ୍ତ୍ରତା ମୋର । ପୁଣି ଥରେ ତାଙ୍କ ମନରେ ଆସୁଛି ଯେ, ତାଙ୍କ ଭଲପଣ, ତାଙ୍କ ବଡ଼ପଣ ଯଥେଷ୍ଟ ନୁହେଁ ।

...ଶେଷ ସିଗାରେଟ୍ ଖାଇବାର ଚବିଶ ଘଣ୍ଟା ପାରହୋଇଗଲା ଓ ସତ୍ୟନାରାୟଣ ବାବୁ ଦେଖିଲେ ଯେ, ସେ ଅସ୍ୱସ୍ତି ବୋଧ କରୁନାହାନ୍ତି । ସେଦିନ ଗୋଟିଏ ମିଟିଂରେ ନାନାଦି ତର୍କ ଓ ଦୋଷ ଦିଆଦେଇର ଉତ୍ତାପରେ ତାଙ୍କର ଅସୀମ ଧୈର୍ଯ୍ୟ ଦେଖି ଅନେକ ଆଶ୍ଚର୍ଯ୍ୟ ହୋଇଥିଲେ । ଜଣେ ଅଫିସର୍ ବନ୍ଧୁ ଥଟ୍ଟା କରି କହିଲେ, "ପୃଥିବୀର ନେତାମାନେ ଯଦି ସତ୍ୟବାବୁଙ୍କ ପରି ହୋଇଥାଆନ୍ତେ, ତାହାହେଲେ ତୃତୀୟ ମହାଯୁଦ୍ଧର ଆଶଙ୍କା ନ ଥାଆନ୍ତା ।"

ଏବଂ ସେଦିନ ସେ ସୁମିତ୍ରା ଦେବୀଙ୍କୁ ବିଶେଷ ଭାବରେ ଦେଖିଲେ ଓ ଅମୋଦିତ ହେଲେ । ତାଙ୍କର ମନେହେଲା ଯେ, ସୁମିର ସମସ୍ତ ନାରୀତ୍ୱ ତାଙ୍କ ଆଖିଆଗରେ ଉନ୍ମୋଚିତ ହୋଇଗଲା, ଚଳଚିତ୍ର ପରି । ସେହି ଦୃଶ୍ୟାବଳୀର ସାରାଂଶ ଏହି ପ୍ରକାର—

ସୁମିତ୍ରା ଦେବୀ ବାହାରୁ ଫେରିଲେ । ଫେରିକରି କହିଲେ ଯେ, ତାଙ୍କ ମୁଣ୍ଡ ବିଥାଉଛି ଓ ଆସ୍‌ପିରିନ୍ ଖାଇଲେ । ସେତେବେଳେ ତାଙ୍କ ମୁହଁରେ ଭ୍ରୂକୁଞ୍ଚନ ଓ ବ୍ୟାଥାର ଭାବ । କିନ୍ତୁ ତା' ପରେ ସେ କେତେ କଣ ଗପିଗଲେ, ପ୍ରତିବେଶୀ ମହଲର ସମାଚାର,—ଅମୁକର ବଡ଼ଲୋକି, ଅମୁକର ଗ୍ଲେଟଲୋକି, କେଉଁ ମିସେସ୍ ଭଲ ହାଲୁଆ ତିଆରି କରି ପାରନ୍ତି, ଆଉ କେଉଁ ମିସେସ୍ ବିଦିଗ କାହାକୁ କହନ୍ତି ଜାଣନ୍ତି ନାହିଁ, ଇତ୍ୟାଦି । ଏହି ସବୁ ବିଷୟ ଗପିଲାବେଳେ ମନେହେଲା ଯେ, ତାଙ୍କର ମୁଣ୍ଡବିଥା ଚାଲି ଯାଉଛି ଓ ସେ ଜୀବନ ପ୍ରତି ପୁଣି ଆଗ୍ରହୀ ହୋଇ ଉଠୁଛନ୍ତି । ହଠାତ୍ କଥା ମଝିରେ ସେ ଅଭିଯୋଗ ବାଢ଼ିଲେ ଯେ, ତାଙ୍କୁ ଭାରି ଝରପ ଲାଗୁଛି, ସେ ବହୁତଦିନ ହେଲା କାହାକୁ ଖାଇବାକୁ ଡାକିପାରି ନାହାନ୍ତି । ଭଲ ଡିନର୍ ସେଟ୍ କେବେ କଣା ହେବ ? ଭଲ ପୁଅଟିଏ କେବେ ମିଳିବ ? ସେ କାନ୍ଦ କାନ୍ଦ ହୋଇ ଆସିଲେ । ତା' ପରେ ପରେ ସାନପୁଅ ତାଙ୍କ ପାଖକୁ ଆସି ଗେହ୍ଲେଇ ହେଲା, ଓ ସେ ଆଦର ମଧୁର କଣ୍ଠରେ ତାକୁ ଗେହ୍ଲା କଲେ,—ମୋ ଶୁକୁଟା ରେ, ମୋ କାଳିଆରେ··· । ଏତିକି ବେଳେ ବଡ଼ଝିଅର କଅଣ ଅପ୍ରୀତିକର ବିଷୟ କହିବାକୁ ଥିଲା, ଓ ସୁମିତ୍ରା ଦେବୀ ତା' କଥା ଶୁଣି ଅଗ୍ନିଶର୍ମା ହୋଇଗଲେ । କହିଲେ, "ତୋର ଯାହା ଇଚ୍ଛା ହେଉଛି କର, ମୋତେ ଜଳାଇ ଟପାଡ଼ାଇ ମାର୍‌ନା — ।" କ୍ରମଶଃ ରାଗ କମିଲା । ସୁମିତ୍ରା ଦେବୀ ସ୍ୱାମୀଙ୍କୁ କହିଲେ, "ଆଜି ତୁମପାଇଁ ଗୋଟାଏ ଭଲ ଜିନିଷ ରନ୍ଧା ହେଉଛି । କାଅଣ ଜାଣିଛ ?" ରହସ୍ୟ ମୋଚନ ନ କରି ସ୍ମିତହାସ ଦେଇ ସେ ରୋଷେଇଘର ଭିତରକୁ ଗଲେ । କିଛି ସମୟ ପରେ ସେ ରୋଷେଇଘରୁ ଆସି ଅଗଣାକୁ ଗଲେ, ଓ ଓ ସେଠୁ ସ୍ୱାମୀଙ୍କୁ ଡାକ ଛାଡ଼ିଲେ, —"ଇସ୍ ! ଆଜିର ଏ ଜହ୍ନଟାକୁ ଦେଖିଛ ? ଆସ ଦେଖିବ ଆସ । "

ସତ୍ୟନାରାୟଣ ବାବୁ ଜହ୍ନକୁ ଦେଖିଲେ । ଦ୍ୱାଦଶୀର ପେଟୁଆ ଜହ୍ନ ନେଳିଆ ଆକାଶରେ ଜୋର ହୋଇ ଦିଶୁଛି । ଭଙ୍ଗା ମନ୍ଦିରର ଚୂଡ଼ା ଉପରେ ଦେଖାଯାଉଛି, —ଛବିରେ ଅଙ୍କା ହେଲପରି । କିନ୍ତୁ ଜହ୍ନ କଥା ନ ଭାବି ସେ ଭାବିଲେ ସୁମିତ୍ରା ଦେବୀଙ୍କ କଥା । ସୁମିତ୍ରା ନାରୀ, ଦସ୍ତୁରମତ ନାରୀ । ଏବଂ ମନେ ମନେ ସେ ଏହି ଧାରଣାର ବ୍ୟାଖ୍ୟା କଲେ ।—

ନାରୀ ପ୍ରବାହ ରୂପିଣୀ । ପ୍ରବାହ ମାନେ ଗତି ଓ ଚଞ୍ଚଳତା, ଅନିୟମ ଓ ଅସ୍ଥିରତା । ପ୍ରାଣୀ ପରି, ପ୍ରକୃତି ପରି ।

ପ୍ରକୃତି ଖୋଜେ ପୁରୁଷ । ପୁରୁଷ ଆଣିଦିଏ ସ୍ଥିତିର ବିଶ୍ୱାସ, ଉଦ୍ଦେଶ୍ୟର ଭିତ୍ତିପତ୍ର, ଜୀବନର ଅର୍ଥ ।

ପ୍ରକୃତିର କଳ୍ପନା କରିବାକୁ ଯାଇ ସତ୍ୟନାରାୟଣ ବାବୁ ଦେଖିଲେ ଯେ, ନଈ ବହିଯାଉଛି, ପତ୍ର ଦୋହଲୁଛି, ମାଛ ଚଙ୍ଗ ଚଙ୍ଗ ହେଉଛି, ପୋକ ସାଲୁବାଲୁ ହେଉଛନ୍ତି, ପିଲାମାନେ ଖେଳୁଛନ୍ତି । ଏବଂ ସୁମି ଅଥବା ନାରୀମାନେ ଧିଆଁକାନ୍ଦ ନେଇ ଛଟପଟ ହେଉଛନ୍ତି, ନିଜକୁ ଠଉରାଇ ପାରୁ ନାହାନ୍ତି ।

ଆଉ ପୁରୁଷ ? ପୁରୁଷର କଳ୍ପନାଚିତ୍ର ପ୍ରତିଭାତ ହେଲ ନାହିଁ । କେବଳ ମଣିଷ ପୁରୁଷ ତାଙ୍କ ଆଖି ଆଗରେ ଦିଶିଲା । ସତ୍ୟନାରାୟଣ ବାବୁ ତାକୁ ହିଁ ସ୍ୱୀକାର କଲେ । କିନ୍ତୁ ସେ ଭାବିଲେ ଯେ, ଏ ପୁରୁଷ ସାଧାରଣ ନୁହେଁ, ନାହର ନର ନୁହେଁ । ସେ ହେଉଛି ସ୍ୱାମୀ, ଓ କିଛି ଅଂଶରେ ଦେବତା । ଯଥା ପାର୍ବତୀପତି ଶିବ,— ମହାଜ୍ଞାନୀ, ମହାଯୋଗୀ, ମହାପୁରୁଷ ।

ମୁଁ ଶିବ ନୁହେଁ, ଯୋଗୀ ନୁହେଁ, ମୁଁ ଯଥେଷ୍ଟ ନୁହେଁ,—ସେ ନିଜକୁ ଚେତାଇଦେଲେ । କିନ୍ତୁ ସେ ନିଜ ଭିତରେ ଥିବା ସ୍ୱାମୀତ୍ୱ ଓ ଶିବତ୍ୱକୁ ଅବହେଳା କରି ପାରିଲେ ନାହିଁ । ସୁମି ଅତି ଅସହାୟା । କେବଳ ନାରୀ ।

ଜହ୍ନକୁ କିଛି ସମୟ ଦେଖି ସାରିଲା ପରେ ସୁମିତ୍ରା ଦେବୀ ଶାନ୍ତ ନୀରବ ହୋଇଗଲେ । ସ୍ୱାମୀଙ୍କ ସହିତ ଖାଇବସିଲା ବେଳେ ସେ ନିଜ କଥା କହିଲେ, ନିଜକୁ କହିଲା ପରି,—"ମୋର ଇଚ୍ଛା ହେଉଛି ମୁଁ ଶୀଘ୍ର ବୁଢ଼ୀ ହୋଇଯାଆନ୍ତି କି ! ଏ ସଂସାର ଜଞ୍ଜାଳ ତୁଟି ଯାଇଥିବ । ମୁଁ ଗାଆଁରେ ରହିବି । ଗୋଟିଏ ଛୋଟିଆ କୁଡ଼ିଆ, ଗାଆଁ ବାହାରେ, ଝରକାରୁ ଠାକୁରାଣୀ ମନ୍ଦିର ଦେଖା ଯାଉଥିବ । ମୁଁ ମୋ ଛୋଟିଆ ବଖରାରେ ଏକୁଟିଆ ଥିବି ଓ ବାହାରକୁ ଅନାଇଥିବି । ହୁଏତ ମନ୍ଦିରକୁ କେବେ ମୋଟେ ଯିବି ନାହିଁ, କିନ୍ତୁ ଦୂରରୁ ତାକୁ ଗୋଟିଏ ଦୃଷ୍ଟିରେ ଦେଖୁଥିବି, ଏକୁଟିଆ···ମନ୍ଦିର ପଛକୁ ଯେଉଁ ବଡ଼ ଓସ୍ତଗଛଟା ଅଛି, ମନେ ଅଛି ନା ?

ଗମ୍ଭୀରତାର ସ୍ପର୍ଶ । ଅସୀମର ଡାକ । ନିଜକୁ ହଜାଇ ଦେବାର କାମନା । ସତ୍ୟନାରାୟଣ ବାବୁ ବୁଝି ପାରନ୍ତି । ବେଳେ ବେଳେ ସୁମିର ମନରେ ଏହିପରି ଭାବ ଆସେ, ଓ ତାହା କେତେ ରୂପରେ ପ୍ରକଟିତ ହୁଏ । କେତେବେଳେ ସମୁଦ୍ର କୂଳରେ ନିଛାଟିଆ ବଙ୍ଗଳା, କେତେବେଳେ ନିଶ ଜଙ୍ଗଲରେ ଆଦିବାସୀ ମେଳରେ ଜୀବନ-ଯାପନ, କେତେବେଳେ ରକ୍ତାକ୍ତ ଯୁଦ୍ଧ ଭୂମିରେ ନର୍ସିଙ୍ଗ୍ ।

ନାରୀର ମନଶ୍ଚଳତା । ଭଙ୍ଗୁର ଓ ରୋମାଣ୍ଟିକ୍ । ବୋଧହୁଏ ସେଥିପାଇଁ ସୁନ୍ଦର, ଶିଶିର କଣାରେ ଇନ୍ଦ୍ରଧନୁ ପରି । ସତ୍ୟନାରାୟଣ ବାବୁ ତାଙ୍କ ଗୃହିଣୀରେ ଅଜସ୍ର ସ୍ନେହର ନରମତା ଆଣିଲେ, ଓ ମୁଣ୍ଡ ଚୁଙ୍ଗାଇଲେ ।

ରାତିରେ ସୁମିତା ଦେବୀଙ୍କର ଇଚ୍ଛା ହେଲା, ସ୍ୱାମୀଙ୍କ ଛାତିରେ ମୁଣ୍ଡ ଦେଇ ଶୋଇବାକୁ । ଶୋଇବା ଆଗରୁ ସେ ଅନୁମତି ମାଗିଲେ । କହିଲେ,—ତୁମ ଚଉଡ଼ା ଛାତିରେ ଟିକିଏ ଜାଗା ଦେବ କି ?

ସତ୍ୟନାରାୟଣ ବାବୁ ଆପ୍ୟାୟିତ ହେଲେ, ମିଛିମିଛିକା ମନା କଲେ, ଓ ତା'ପରେ ସ୍ତ୍ରୀଙ୍କର ଅଳକଦେଶ ମଥାକୁ ନିଜ ଛାତି ଉପରକୁ ଆଣିଲେ । କିଛି ସମୟ ପରେ ତାଙ୍କୁ କଷ୍ଟ ହେଲା, କିନ୍ତୁ ସେ କିଛି କହିଲେ ନାହିଁ । ଏବଂ ସୁମିତାଦେବୀ ଆପଣାଭୋଳା ହୋଇ ଶୀଘ୍ର ନିଦରେ ଶୋଇଗଲେ ।

ଶୋଇଲା ସ୍ତ୍ରୀଙ୍କ ମୁହଁକୁ ଚାହିଁ ସତ୍ୟନାରାୟଣ ବାବୁଙ୍କର ଗୋଟିଏ ଉପମା ମନେପଡ଼ିଲା,—ଆକାଶରେ ଜହ୍ନ । କମନୀୟ ଶୀରୁ ଜହ୍ନ । ଉଦାରତା ବିଶାଳତାର ଆକାଶ । ସୁମିତା ଦେବୀ ଏମିତି କେତେଥର ତାଙ୍କ କୋଳରେ କିମ୍ବା ଛାତିରେ ଶୋଇପଡ଼ିଛନ୍ତି । କିନ୍ତୁ ତାଙ୍କର ମନେହେଲା ଯେ, ସେ ଆଜି କିଛି ଅଧିକ ଦେଇ ପାରୁଛନ୍ତି, କାହିଁକି ନା ଏହି କେତେଦିନ ଭିତରେ ତାଙ୍କ ବ୍ୟକ୍ତିତ୍ୱରେ କିଛି ଅଧିକ ଗୁଣ ଆସି ଯାଇଛି । ସେ ହୁଏତ ଯଥେଷ୍ଟ ନୁହେଁ, କିନ୍ତୁ ତା'ର ପାଖାପାଖି ।

ଅଗାଧ ନିବିଡ଼ ଦାନର ବଡ଼ପଣ । ଆକାଶର ଜହ୍ନର ଚିତ୍ର ପରେ ତାଙ୍କର ମନେପଡ଼ିଲା ଗୋଟିଏ ବିସ୍ତୃତ ସବୁଜ ପ୍ରାନ୍ତର,—ଯେଉଁଠି ଗ୍ରେଟ ଛେଳି ଛୁଆଟିଏ ମୁହଁ ଗୁଞ୍ଜି ଘାସ ଖାଉଛି ।

ସେଥିଠୁ ସେ ଭାବିଲେ ଯେ ମିସେସ୍ ବର୍ମା ବହୁଗୁଣସମ୍ପନ୍ନା ମହୀୟସୀ ନାରୀ ହୋଇପାରନ୍ତି, ସୁମି ତାଙ୍କଠାରୁ ବହୁତ କିଛି ଶିଖି ପାରିଥାଏ, ଜାଣି ପାରିଥାଏ,—କିନ୍ତୁ ସେ ସ୍ୱାମୀତ୍ୱର ଅପୂର୍ବ ଦାନ ଦେଇ ପାରିବେ କେଉଁଠୁ ?···

ବର୍ତ୍ତମାନ ମିସେସ୍ ବର୍ମାଙ୍କ ବିଷୟରେ ପଦେ ଅଧେ କହିବା ସମୀଚୀନ ହେବ । ମିସେସ୍ ବର୍ମା ଓରଫ୍ ଶ୍ରୀମତୀ ଅରୁନ୍ଧତୀ ସୁମିତା ଦେବୀଙ୍କର ପରମ ବନ୍ଧୁ । ସେ ସୁମିତା ଦେବୀଙ୍କଠାରୁ ବୟସରେ ବଡ଼, କର୍ମକୁଶଳା, ଓ ହାସ୍ୟମୟୀ ।

ସେ ଦୁଇଜଣଙ୍କର ବନ୍ଧୁତାର ସୂତ୍ରପାତ ହୋଇଥିଲା ଅସାଧାରଣ ଭାବରେ,—ଗୋଟିଏ ସିନେମା ହଲ୍‌ରେ । ମିସେସ୍ ବର୍ମା ସୁମିତ୍ରା ଦେବୀଙ୍କ ପାଖରେ ବସିଥିଲେ । ରୋଗ ଶୋକର ଗୋଟିଏ ଦୁଃଖାତ୍ମକ ଦୃଶ୍ୟ ଦେଖିଲା ବେଳେ ମିସେସ୍ ବର୍ମା ଏହି ପଦଟି ଉଚ୍ଚାରଣ କଲେ,—"—ସୁନ୍ଦର ! ନୁହେଁ ?" ସୁମିତ୍ରା ଦେବୀ ସେତେବେଳକୁ କାନ୍ଦି ଆସୁଥିଲେ । ସେ ଆଶ୍ଚର୍ଯ୍ୟ ହୋଇ ମନ୍ତବ୍ୟକାରିଣୀଙ୍କ ଆଡ଼କୁ ଆଡ଼ଚାହାଣୀରେ ଅନାଇଲେ । ଦେଖିଲେ ଯେ, ଗୋଟିଏ ସୌମ୍ୟ ମୁହଁରେ ମୃଦୁ ହସର ରେଖା,—କେବଳ ତାଙ୍କର ପାଇଁ । ସେ ତାକୁ ଗ୍ରହଣ କଲେ ଓ ତାଙ୍କୁ ଭଲ ଲାଗିଲା ।

ବନ୍ଧୁତା ଗଭୀର ହେବା ପରେ ମିସେସ୍ ବର୍ମା ଏହି ଘଟଣାଟିକୁ ନେଇ କେତେ କଥା କହିଛନ୍ତି ସେ କହିଛନ୍ତି । ଯେ, ସୁଖ ଓ ଦୁଃଖ ଉଭୟ ସୁନ୍ଦର; କିନ୍ତୁ ସେହି ସୁନ୍ଦରତାକୁ ପାଇବା ପାଇଁ ନିଜଠାରୁ ନିଜକୁ ଅଲଗା କରି ନେବାକୁ ହେବ, ସଂସାରକୁ ଭଗବାନଙ୍କ ଦୃଷ୍ଟିରେ ଦେଖିବାକୁ ହେବ । ଏବଂ ସେ କହିଛନ୍ତି,—ତୁମ ଆଖିରେ ଲୁହ ଆସିବା ଆଗରୁ ମୁଁ ଜାଣି ପାରିଥିଲି । ମୋର ଭାରି ଇଚ୍ଛା ହେଲା ତୁମକୁ କିଛି କହିବି । କେଜାଣି କାହିଁକି ମୋର ବିଶ୍ୱାସ ହେଲା ଯେ, ତୁମେ ମୋତେ ଫେରାଇଦେବ ନାହିଁ ।

ମିସେସ୍ ବର୍ମା ନିଜକୁ ଅରୁନ୍ଧତୀ ବୋଲି ଡାକିବାକୁ କହିଥିଲେ । କିନ୍ତୁ ସୁମିତ୍ରା ଦେବୀ ବାରମ୍ବାର ଭୁଲ୍ କରିବାରୁ ସେ କହିଲେ, "ଆଚ୍ଛା ମୋତେ ଦିଦି ବୋଲି ଡାକ । ସବୁଠାରୁ ସୁବିଧା ସମ୍ବୋଧନ, ଅବଶ୍ୟ ଯଦି ତୁମର ମୋତେ ବଡ଼ ଭଉଣୀ ବୋଲି ମାନିବାକୁ ଆପତ୍ତି ନ ଥାଏ ।" ସୁମିତ୍ରା ଦେବୀ ତାଙ୍କୁ ବର୍ତ୍ତିବାକୁ ଦେଲେ ନାହିଁ । ଅଗଭିର ହୋଇ କହିଲେ, "ତୁମେ ମୋର ବଡ଼ ଭଉଣୀ ନୁହଁ, ଆହୁରି କିଛି ।"

ମିସେସ୍ ବର୍ମା ଘରଣୀ । ତାଙ୍କ କପାଳର ସିନ୍ଦୁର ବିନ୍ଦୁ ବେଶ୍ ବଡ଼ ଓ ଉଜ୍ଜ୍ୱଳ । ସେ କେବଳ ପରାମର୍ଶ ଦିଅନ୍ତି ନାହିଁ, ଉପଦେଶମୂଳକ ବଡ଼ ବଡ଼ କଥା କହନ୍ତି ନାହିଁ । ସେ ଷର ଗୁଡ଼ଲର ଭଲ ପିଠା କରି ଜାଣନ୍ତି, ଓ ନିଜେ ହାତରେ ଆଣି ଦେଇ ଯାଆନ୍ତି । ସେ ଭଲ 'ଲେସ୍' କେଉଁଠି ମିଳେ ତା'ର ସନ୍ଧାନ ଦିଅନ୍ତି । ସେ ରୋଗ ବିୟୋଗରେ ଘଣ୍ଟା ଘଣ୍ଟା ଧରି ବସିରହନ୍ତି ଏବଂ ସେ ହସିହସି ଗପ କରିପାରନ୍ତି ।

ସତ୍ୟନାରାୟଣ ବାବୁ ମିସେସ୍ ବର୍ମାଙ୍କୁ ପସନ୍ଦ କରନ୍ତି । ତାଙ୍କର କର୍ମକୁଶଳତା, ସାହାଯ୍ୟ ମନୋବୃତ୍ତି ଓ ଆନନ୍ଦ-ହସକୁ ପ୍ରଶଂସା କରନ୍ତି । ଏପରି କି ମିସେସ୍ ବର୍ମାଙ୍କ ଗାଲରେ ଥିବା କଳା ଭାରୁଡ଼ି, ତାଙ୍କର ଡଗଡଗ ଚୁଲ ଓ ତାଙ୍କ କଣ୍ଠର

ମୋଟା ଚଡ଼ା ସ୍ୱର ତାଙ୍କୁ ଭଲ ଲାଗିଯାଇପାରେ ମନେହୁଏ । ଯୋଗେ କି ଭଦ୍ରମହିଳାଙ୍କର ଏହି ଅନାଗ୍ରହଟିକ ରହିବା ଉଚିତ । ସେହି ହେଉଛି ତାଙ୍କର ପାରିବାରପଣର ଲକ୍ଷଣ,—ତାଙ୍କର ବିଶେଷତ୍ୱ ଓ ଅଭାବ । ସେ ସୁମି ପରି ନୁହନ୍ତି ।

ତେବେ, ସତ୍ୟନାରାୟଣ ବାବୁଙ୍କୁ ଅଡ଼ୁଆ ଲାଗେ, ଯେତେବେଳେ ମିସେସ୍ ବର୍ମା ବେଳେ ବେଳେ ତାଙ୍କ କଥାବାର୍ତ୍ତାରେ ଘରକରଣାର ଉପର ସ୍ତରକୁ ଚାଲିଯାଆନ୍ତି, ଜୀବନଧର୍ମ, ମଣିଷଜାତି ଇତ୍ୟାଦି ସମ୍ବନ୍ଧରେ ମନ୍ତବ୍ୟ ଦିଅନ୍ତି । ଏବଂ ସେ ବୁଝିପାରନ୍ତି ନାହିଁ ସୁମି ଜାଣିକି ଏମିତି ମନୋଯୋଗ ସହ ଶୁଣୁଛି । ସେ ଆଶ୍ୱସ୍ତ ହୁଅନ୍ତି ଯେତେବେଳେ ବାର୍ତ୍ତାଳାପ ସିଲେଇ ଓ ରନ୍ଧା ସ୍ତରକୁ ଖସିଆସେ । ତାଙ୍କର ମନେ ପଡ଼ିଯାଏ ଆରବ ଉପସାଗରର ଉଡ଼ନ୍ତା ମାଛ,—ଡେଣା ଛୁଟି ଖଣ୍ଡେ ଉପରକୁ ଉଠୁଛି ଓ ପୁଣି ପାଣି ଭିତରେ ବୁଡ଼ିଯାଉଛି ।

. କିନ୍ତୁ ଏହି କେତେଦିନ ତଳେ ସୁମିତ୍ରା ଦେବୀ ଗୋଟିଏ କଥା କହିଲେ, ଯେଉଁଥିରେ ସତ୍ୟନାରାୟଣ ବାବୁଙ୍କୁ ଭାବିବାକୁ ପଡ଼ିଲା । କଥାର ପୂର୍ବାପର ସମ୍ବନ୍ଧ ମନେ ନାହିଁ । କେବଳ ଏତିକି ମନେ ଅଛି ଯେ, ସୁମିତ୍ରା ଦେବୀ ସକାଳର କାମ ଧନ୍ଦାରେ ବ୍ୟସ୍ତ ଥିଲେ ଓ ସେହି ବ୍ୟସ୍ତତାକୁ ମୂଳ କରି କେତେ କାଣ କହିଯାଉଥିଲେ । ହଠାତ୍ ଶୁଣିବାକୁ ମିଳିଲା, ସେ କହୁଛନ୍ତି,—"ଦିଦି ଚାଲିଯାଉଛି । ସେ ନୂଆ ଘର ପାଇଛି, ଏଠୁ ଦଶ ପନ୍ଦର ମାଇଲ ଦୂରରେ । ସେହି ଜଣେ ଥିଲା, ଯେ ମୋର ମନକଥା ଶୁଣି ପାରୁଥିଲା । ସେ ମୋର କେହି ନୁହେଁ, କିନ୍ତୁ— ।" ସୁମିତ୍ରା ଦେବୀ ଆଉ କିଛି କହିଲେ ନାହିଁ, କି କହିପାରିଲେ ନାହିଁ ।

ସତ୍ୟନାରାୟଣ ବାବୁ ଜାଗ୍ରତ ହୋଇଉଠିଲେ । ସୁମି ଏହିପରି କଥା କୁହେ । କିଛି ନ ଭାବି ନ ଚିନ୍ତି, ଅର୍ଥ ସ୍ୱୀକାର କରିବାର ଦାୟିତ୍ୱ ନ ନେଇ କହିପକାଏ । ତଥାପି ତାଙ୍କ ମନରେ କିଞ୍ଚିତ୍ ବ୍ୟଥାର ଭାବ ଆସିଲା,—ମୁଁ ଯଥେଷ୍ଟ ନୁହେଁ । ମୁଁ ସୁମିକୁ ଆହୁରି କିଛି ଦେଇପାରି ଥାଆନ୍ତି ।

କ୍ରମଶଃ ତାଙ୍କର ବିଶ୍ୱାସ ଆସିଲା,—ମୁଁ ଆହୁରି କିଛି ଦେଇ ପାରିବି । ଏବଂ ସେହି ଦିନଠାରୁ ସେ ନିଜକୁ ବଦଳାଇବାକୁ ଚେଷ୍ଟା କଲେ ।

···ତା'ପରଦିନ ଦ୍ୱାଦଶୀର ଜହ୍ନ ତ୍ରୟୋଦଶୀ ହୋଇଥିଲା । ସତ୍ୟନାରାୟଣ ବାବୁ ଓ ସୁମିତ୍ରା ଦେବୀ ଖାଇ ପିଇ ସାରି ବିଛଣାରେ ଶୋଇଥିଲେ ପାଖାପାଖି ହୋଇ ।

ନୂଆ ଶିଖିଥିବା ଅଭ୍ୟାସ ପରି ସୁମିତ୍ରା ଦେବୀ ତାଙ୍କ ମୁଣ୍ଡକୁ ସ୍ୱାମୀଙ୍କ ଛାତି ଉପରକୁ ନେଲେ । ଜହ୍ନ ଆଲୁଅ ତାଙ୍କ ଛାତି ଉପରକୁ ପଡ଼ିଲା,—ମୁହଁର ସୀମାରେ ।

ସେଠି ଯେପରି ଜ୍ୟୋତ୍ସ୍ନା କେବଳ ଦେହକୁ ହିଁ ବ୍ୟକ୍ତ କରିପାରୁଛି । ଆଢ଼ୁଆଳରେ ଯେଉଁ ମୁହଁଟି ଅଛି, ସେ କେବଳ ଦେହ ନୁହେଁ; ସେଥିରେ ଅଛି ଅତଳ ଭାବର ସମୃଦ୍ଧି ଓ ରହସ୍ୟ ।

କିନ୍ତୁ ସତ୍ୟନାରାୟଣ ବାବୁ ସେ ମୁହଁର ଭାବ ନିରୂପଣ କରିବାକୁ ଚାହିଁଲେ ନାହିଁ । ତାଙ୍କର ହଠାତ୍ ଇଚ୍ଛାହେଲା ସେଥିରେ ଚୁମା ଦେବାକୁ ।

ସହଜ ପ୍ରବୃତ୍ତି । ସତ୍ୟନାରାୟଣ ବାବୁ ନିଜକୁ ସମ୍ବରଣ କଲେ । ଚୁମ୍ବନରେ କଥାଭାଷା ହୁଏ ନାହିଁ । ସେଥିରେ ଅଗଣିତ ସୂକ୍ଷ୍ମ ଭାବକୁ ଗୋଳି ବାଟି ପିଇ ଦେଲାପରି ମନେ ହେବ । ତା' ଛଡ଼ା ଚୁମ୍ବନର ଅର୍ଥ ସଂଯୋଗ, ସମତା, ଏକାଠି ହେବା । ସ୍ତରର ତାରତମ୍ୟ ନାହିଁ, କେବଳ ଏକାଠି ହେବା ।

ହେଉ । ଆକାଶ କିଣ ପୃଥିବୀକୁ ଚୁମ୍ବନ ଦିଏ ନାହିଁ ? ଏ କି ଅଭିଲ କଥା ଯେ ସ୍ୱାମୀ ସ୍ତ୍ରୀକି ଚୁମ୍ବନ ଦେଲେ ସ୍ୱାମୀତ୍ୱର ହାନି ହୋଇଯିବ ? ଏ କେଉଁ ଆଢ଼ର ଜୀବନଧର୍ମ ? ସତ୍ୟନାରାୟଣ ବାବୁ ନିଜର ଦ୍ୱିଧାକୁ ହସରେ ଉଡ଼ାଇଦେଲେ । ଭଲପାଇବା ଗୋଟିଏ ଅନାବିଳ ମହାର୍ଘ ବସ୍ତୁ ।

ମୁଁ ତୁମକୁ ଭଲ ପାଏ, ଭାରି ଭଲ ପାଏ,—ଏହି ଭାବ ନେଇ ସତ୍ୟନାରାୟଣ ବାବୁ ଚୁମ୍ବନ ଦେଲେ । ଦୀର୍ଘ ଓ ଗାଢ଼ ଚୁମ୍ବନ । ସୁମିତ୍ରା ଦେବୀ ସ୍ୱାମୀଙ୍କ ଗ୍ରୀବାରୁ ଖସିଆସି ତାଙ୍କ ଦେହରେ ବାହୁ ଗୁଡ଼ାଇ ଆଣିଲେ ।

ଦୂରରେ ଗୋଟାଏ କୁକୁର ବୋବାଇଲା । ପାଖରେ ଗୋଟାଏ ଗଛ ଉପରୁ ମେଞ୍ଚାଏ ପାଣି ଝରିପଡ଼ିଲା ପରି ଲାଗିଲା । କିନ୍ତୁ ସତ୍ୟନାରାୟଣ ବାବୁ କୌଣସି ଅତିରିକ୍ତ ଧ୍ୱନି ଶୁଣିପାରିଲେ ନାହିଁ । ସେ ନିଜକୁ ବାରଣ କରୁଥିଲେ,— ସେତିକି, ଆଉ ନୁହେଁ । କିନ୍ତୁ ବାରଣ ମାନି ହେଉ ନ ଥିଲା । ପ୍ରେମ କଣ କେବଳ ଗୋଟିଏ ଇଙ୍ଗିତ, ସଙ୍କେତ, ନା କୁଶଳ ସମ୍ଭାଷଣ ? ଚୁମ୍ବନର 'ହ୍ୟାଲୋ' କହିଦେଲେ କାମ ସରିଗଲା ? ସୁମିର ମାଂସଳ ଶ୍ୟାମତନୁ ଉଦ୍‌ଗତ, ଉଦ୍‌ଭାସିତ । ବାହାଘରର ୧ବେ ବର୍ଷ ପରେ ମୁଁ ତାକୁ ପ୍ରେମ ଦେବାକୁ ଭୁଲିଯିବି ?

ସତ୍ୟନାରାୟଣ ବାବୁ ପ୍ରେମ କଲେ । ତାଙ୍କ ଆବେଗରେ ସରଳତା ଥିଲା । ମନେ ହେଉଥିଲା ଯେ ସେ ଦେହ, ଦେହର ବାସ୍ନା ଓ ଜନ୍ମ ଆଲୁଅ ସମସ୍ତଙ୍କୁ ପ୍ରେମ କରୁଛନ୍ତି । × × ×

ତା'ପରେ ସେ ଗେଞ୍ଜି ପାଇଜାମା ପିନ୍ଧି ଖଟ କଡ଼ରେ ଚଟାଣ ଉପରେ ବସିଥିଲେ । ସୁମିତ୍ରା ଦେବୀ ଖଟ ଉପରେ ପେଟେଇ ପଡ଼ି ସ୍ୱାମୀଙ୍କ ଆଡ଼କୁ ଚାହିଁଥିଲେ । ତାଙ୍କ ମୁହଁରେ ହସ ଥିଲା ଓ ତୃପ୍ତିର ଜ୍ୟୋତି ।

ସୁମି ଏତେ ଖୁସି ଅଛୁ କାହିଁକି ? ସତ୍ୟନାରାୟଣ ବାବୁଙ୍କୁ ବିରକ୍ତ ଲାଗିଲା । କଅଣ ପାଇଲା ପରି ସେ ଏତେ ଖୁସି ହେଉଛୁ ?

ତାଙ୍କର ମନେହେଲା ଯେ ସୁମି କହୁଛୁ,—ମୁଁ ତୁମକୁ ପାଇଛୁ । ତୁମର ଅନାବୃତ ଦେହ ଓ ଅନାବୃତ ମନକୁ ପାଇଛୁ । ସେଥିରେ ବଡ଼ପଣ ନାହିଁ, ସମ୍ମାନ ନାହିଁ । ମୁଁ ତୁମକୁ ଭଲପାଏ ପରା !

କିନ୍ତୁ ସୁମିତ୍ରା ଦେବୀ ଖୁସି ଥିବାର ଅନ୍ୟ କାରଣ ଜଣାଇଲେ । କହିଲେ,— "ଜାଣିଛ ? ଦାଦା ଫୋନ୍ କରିଥିଲା । ସେ କାଲି ସନ୍ଧ୍ୟାବେଳେ ଆସିବ । ତୁମେ ଅଫିସରୁ ଟିକିଏ ଜଲ୍‌ଦି ଆସିପାରିବ ନାହିଁ ?"

ସତ୍ୟନାରାୟଣ ବାବୁ ଦୃଢ଼ ଭାବରେ ଜବାବ୍ ଦେଲେ, "ଅସମ୍ଭବ । କାଲି ସନ୍ଧ୍ୟାବେଳେ ମୋର ବହୁତ କାମ ଅଛି । ଜରୁରୀ କନ୍‌ଫରେନ୍‌ସ ।"

'ସେ' କଅଣ ଟିକିଏ ଚିଡ଼ିଗଲେ ? କାହିଁକି ? ସୁମିତ୍ରା ଦେବୀ ଆଶ୍ଚର୍ଯ୍ୟ ହେଲେ । ତା'ପରେ ସେ ଭାବିଲେ ଯେ 'ସେ' ବହୁଥର ଏହି ଅବସ୍ଥାରେ ଗୋଟିଏ ସିଗାରେଟ୍ ଖାଆନ୍ତି । ବର୍ତ୍ତମାନ ବୋଧହୁଏ ତା'ର ଅଭାବ ବୋଧ କରୁଛନ୍ତି ।

ସେହିଠୁଁ ସୁମିତ୍ରା ଦେବୀ ବିଛଣାରୁ ଉଠିପଡ଼ି ତାଙ୍କ ଆଲମାରୀ ଭିତରରୁ ଗୋଟିଏ ସିଗାରେଟ୍ ପ୍ୟାକେଟ୍ ଆଣିଲେ ଏବଂ ସ୍ୱାମୀଙ୍କ ଆଡ଼କୁ ଦେଖାଇ ଦୁଷ୍ଟାମିର ହସ ହସି କହିଲେ,—'ଦରକାର ?'





# ପଞ୍ଚ ପରମ ଗୁରୁ

ସତ୍ୟନାରାୟଣ ବାବୁଙ୍କୁ ଏହିପରି ଭାବରେ ଛୁଗୁଲେଇବା କଣ ଉଚିତ ଥିଲା ?

ମୁଁ ଯଦି କୁହେ—'ନାଇଁ ମ, ସମଦୁଃଖୀ ହିସାବରେ ମୁଁ ତାଙ୍କୁ ଟିକିଏ ଥଟ୍ଟା କଲି ପରି !' ସେ କଣ ମୋତେ ବିଶ୍ୱାସ କରିବେ ? ବୋଧହୁଏ ନୁହେଁ, କହିବେ ଯେ ଆପଣଙ୍କ ଗପ ମୋଟେ ହାଲୁକା ନୁହେଁ। ଉପୁରିଆ କୌତୁକ କଲେ କଣ ହେବ, ଆପଣ ଭିତରେ ଭିତରେ କାହାକୁ ହେଲେ ଖୁଞ୍ଚା ଦେବାକୁ ଭୁଲନ୍ତି ନାହିଁ । ହୁଏତ ନିଜକୁ। ତେଣୁ ଏଥିରେ ସନ୍ଦେହ ନାହିଁ ଯେ ମୋତେ ଓ ମୋର ଭଲମଣିଷପଣିଆକୁ ହେୟଜ୍ଞାନ କଲେ। ଠିକଣା ସମୟରେ ମୋର ସ୍ତ୍ରୀଙ୍କୁ କହିଲେ ମୋ ହାତରେ ଗୋଟିଏ ସିଗାରେଟ୍ ଧରେଇ ଦେବାକୁ ଯେମିତି ମୁଁ ମନା କରି ପାରିବି ନାହିଁ। ମୋର ବାରବର୍ଷର ତପସ୍ୟାକୁ (ଏଇ କେଇଟା ମାସ ଛାରବର୍ଷରୁ ଊଣା ନ ଥିଲି ମୋ ପାଇଁ) ଜାଳିପୋଡ଼ି ଦେଲିରୁ ଯାଇଁ ଆପଣଙ୍କ ମନ ଶାନ୍ତ ହେଲା ! ପରିହାସ ନୁହେଁ ମଧୁର ବୋଲି କିଛି ନାହିଁ ଏଥିରେ, ଇଏ ହେଉଛି ନିର୍ମମ ନିଷ୍ଠୁର ଉପହାସ। ବୁଝିଲେ ? ମୁଁ କ'ଣ ପିଲା ହୋଇଛି ଆପଣ ଭୁଲେଇବେ ମୋତେ ?

ମୁଁ ଜାଣେ ତାଙ୍କୁ ବାଧୁଛି । ସ୍ୱାମୀସୁହାଗିନୀ ସୁମିତ୍ରା ଠିକ୍ ସେଇକବେଳେ ମିସେସ୍ ବର୍ମାଙ୍କୁ ମନେ ପକେଇଲେ କାହିଁକି ? ମାନେ ଯେତେବେଳେ ସ୍ୱାମୀ ଏକାଧାରରେ ସ୍ୱାମୀତ୍ୱ ତଥା ସମ୍ଭୋଗର ତୃପ୍ତିକୁ ଟାଣି ନେଉଥିଲେ ନିଜ ଭିତରକୁ, ସିଗାରେଟ୍ ଧୂଆଁର କ୍ଷତିପୂରଣ କଲା ପରି ? ମନେ ପକାଇଲେ ତ ତାକୁ ମନ ଭିତରେ ରଖିଲେ ନାହିଁ କାହିଁକି ? ସତେକି ଯେ

ଜାଣିଶୁଣି ଚେତେଇ ଦେଲେ, ଯେ ତୁମେ ଯେତେହେଲେ ସ୍ୱାମୀଟାଏ ! ଅନ୍ତରଙ୍ଗ । ପଢ଼ିଲେ ଦେହର, ତା'ପରେ ଯାଇଁ ମନର, ପ୍ରାଣରେ ଇତ୍ୟାଦି । କୋଉ ବୁଦ୍ଧିରେ ମୋର ଗୁରୁ ହେବାକୁ ବସିଛ—ତୁମ ମୁହଁକୁ ଟିକିଏ ଲାଜ ନାହିଁ ? ନିଅ, ସିଗାରେଟ୍ ଖଣ୍ଡେ ଟାଣ, ମିଛୁଟାରେ ମୋ ଅଡ଼କୁ ଅନାଅ ନାହିଁ ସେମିତି···ମୋ ସୁନାଟା ପରା !

ହଁ, ବିଚାର ନୁହେଁ ଯେ କିଛି ସମୟ ପରେ ସ୍ୱମିତ୍ରା ତାଙ୍କୁ ଗେହ୍ଲା କରିବେ, ପ୍ରେୟସୀରୁ ବଳି ମାଆ ପରି, ସେଇଠୁଁ ତାଙ୍କ ରାଗ ଫାଗ ମିଳେଇ ଯିବ । କିନ୍ତୁ ଏକଥା ମଧ୍ୟ ସତ ଯେ ସତ୍ୟନାରାୟଣ ବାବୁ ପୁଣି ବୋଧହୁଏ ଏମିତି ଅତି-ଭଲ ହେବାକୁ ଚେଷ୍ଟା କରିବେ ନାହିଁ । ମୁଁ ତାଙ୍କ ଅଭିଳାଷକୁ ମାରି ଦେଇଛି ଏକାଥରକେ । ସେ ଗୁରୁ ହୋଇ ପାରିବେ ନାହିଁ । ପୂର୍ଣ୍ଣଚ୍ଛେଦ । ଆହନ୍ତାକାଲି ମିସେସ ବର୍ମାଙ୍କ ଜାଗାରେ ଆଉ କେଉଁ ନାରୀ, ପୁରୁଷ, ସ୍ୱାମୀଜୀ, ମାତାଜୀ ଛବି, ପଥର ଆସିପାରନ୍ତି । କିନ୍ତୁ ସ୍ୱାମୀ ନାମକ ଦେହର ଦୋସର ପଡ଼ି ରହିଥିବ ସେମିତି, ଭୁଇଁଟାରେ । ସିଗାରେଟ୍ ଫୁଙ୍କୁଥିବ, ତୃପ୍ତିରେ, ସ୍ୱାନମନୀୟତାରେ···

ସତ୍ୟନାରାୟଣ ବାବୁ ବିକଳ ହୋଇ ପଚାରି ପାରନ୍ତି ମୋତେ—ଏମିତି କାହିଁକି ହୁଏ ? ଏମିତି କାହିଁକି ହେବ ? ଗଜପତି ଶିଳ୍ପପତିଙ୍କ ଠାରୁ ଆରମ୍ଭ କରି ରାଷ୍ଟ୍ରପତିଙ୍କ ଯାଏଁ ସମସ୍ତେ ସୁନିର୍ଦ୍ଦିଷ୍ଟ ଉଚ୍ଚ ଆସନରେ ବସି ପାରନ୍ତି, ଖାଲି ପତ୍ନୀର ପତିକୁ ଉପରକୁ ଅନେଇବା ମନା ? ତା'ଛଡ଼ା ଆମ ଶାସ୍ତ୍ର ଆମ ଶଙ୍ଖାସିଂଦୂରର ସଂସ୍କାରରେ ମଧ୍ୟ କଣ ଏଇ କଥାଟି ସ୍ୱର୍ଣ୍ଣାକ୍ଷରରେ ଲେଖା ହୋଇ ରହିନାହିଁ ଯେ ପତି ପରମ···? ଶିବ କଣ ପାର୍ବତୀଙ୍କ ଅନ୍ତରଙ୍ଗ ବୋଲି ତାଙ୍କର ଶିବ ନୁହନ୍ତି ? ନା ସେ ସମସ୍ତ ଶାସ୍ତ୍ର-ସଂସ୍କାରକୁ ପୁରୁଷାୟିତ, ନାରୀକୁ ବସ୍ତୁରୂପେ ଭୋଗଦଖଲ କରିବାର କାରସାଦି ବୋଲି କହିବ, ଯେଉଁଥିରେ ସାରତତ୍ତ୍ୱ ନାହିଁ ?

ମୁଁ ଏସବୁ ପ୍ରଶ୍ନର ଉତ୍ତର ଦେବାକୁ ଅକ୍ଷମ । ମୁଁ କେବଳ ସମକାଳୀନ ସତ୍ୟନାରାୟଣ ବାବୁଙ୍କୁ ଜାଣିଛି ଏବଂ ମୋର ବିଶ୍ୱାସ ଯେ ଯଥାସମ୍ଭବ ଦୂରେଇ ନ ରହିଲେ ମଣିଷ ଦେବତା ହୋଇ

ନ ପାରେ । କିନ୍ତୁ ନପୁଂସକ, ବୃଦ୍ଧ ଅବା ମହାତ୍ମା ହୋଇ ନ ଥିଲେ କିଏ ଭଲ ଶୁଖିଲା ଦେବତା ହେବାକୁ ମନ ବଳେଇବ ?

କ୍ଷମା କରିବେ, ମୁଁ ଯେତେ ଯାହା କହିଲି, ତା'କୁ ହାଲୁକା ଅର୍ଥରେ ନଅନ୍ତୁ । ସର୍ବସାଧାରଣ ସତ୍ୟନାରାୟଣ ବାବୁ ପୁରୁଷ ଜାତିର ପ୍ରତୀକ ନୁହଁନ୍ତି । ଆଦର୍ଶ ହିଁ ପ୍ରତୀକ । ତେଣୁ ସେହି ଦୁର୍ଲଭ ପୁରୁଷକୁ ପ୍ରତୀକ ବୋଲି ଧରି ନିଅନ୍ତୁ, ଯେ ପାରିବ । ଏଇ ଦେହକରେ ମନପ୍ରାଣ ଇତ୍ୟାଦିକୁ ଝପି ପାର୍ବତୀଙ୍କ ଶିବ ହୋଇ ପାରିବ ।

କିନ୍ତୁ ମୁଁ ଯେତେବେଳେ ଏ ଗପଟି ଲେଖିଥିଲି ସେତେ-ବେଳେ ଆମ ସାହିତ୍ୟରେ ଉଚ୍ଚାଙ୍ଗ ଉଚ୍ଚମନ୍ୟ ନାରୀ-ପୁରୁଷ ଏମିତି ଭେଲା ଭେଲା ହେଉଥିଲେ (ମନେ ହେଉଥିଲା ଯେ ତାଙ୍କର ସେକ୍ସ ବୋଲି ଗୋଟାଏ ଅଙ୍ଗ ବା ଜିନିଷ ନାହିଁ), ଏବଂ ମହା ମହା ନୀତିବାକ୍ୟ ଶୁଣାଉଥିଲେ ପରସ୍ପରକୁ, ଯେ ତୁମ-ଆମ ପରି ହୀନଭାଗୀ ସତ୍ୟନାରାୟଣ ବାବୁ ତଥା ସୁମିତ୍ରାଙ୍କୁ —ସୁମିତ୍ରାଙ୍କ ଭକ୍ତିଭାବର ଚେହେରା ମଧ୍ୟ ଦେଖି ପାରୁଥିବେ— ଏଭଳି ପରିହାସ ଅବା ଉପହାସ କରିବା ଛଡ଼ା ମୋର ଅନ୍ୟ ଗତି ନ ଥିଲା ।

ଆଜି ମଧ୍ୟ ଏହିପ୍ରକାର ମୂର୍ତ୍ତିଭଙ୍ଗାର ଆବଶ୍ୟକତା ଅଛି କି ନାହିଁ ଆପଣ ବିଚାର କରିବେ ।

କଟକ
୩ ଅକ୍ଟୋବର ୧୯୮୬
(ମହାଳୟା)



# ପ୍ରଭାତ ବର୍ଣ୍ଣନା

ପ୍ରାତଃଭ୍ରମଣର ଉପକାରିତା ବିଷୟରେ ମୁଁ ନିଃସନ୍ଦେହ । ତଥାପି ମୁଁ ଅଞ୍ଜି-ଯାଏଁ ମୋର ଇଚ୍ଛାକୁ କାର୍ଯ୍ୟରେ ପରିଣତ କରିପାରୁ ନ ଥିଲି । ତା'ର ପ୍ରଥମ କାରଣ ମୋର ଆଳସ୍ୟ । କିନ୍ତୁ ଅନ୍ୟର କାରଣ ମଧ୍ୟ ମୂଳ୍ୟ ଅଛି । ମୋର ଧାରଣା ଯେ, ସକାଳୁ ଉଠି ରାସ୍ତାକଡ଼ରେ ଲମ୍ବା ପାହୁଣ୍ଡ ପକାଇ ବୁଲିଲେ ଆତ୍ମାର ତୃପ୍ତି ହୁଏ ନାହିଁ । ସେପରି ଭ୍ରମଣରେ ଫୁସ୍‌ଫୁସ୍‌ର ମଙ୍ଗଳ ସାଧିତ ହେଉଥିବ କିନ୍ତୁ ମନ ପୂରେ ନାହିଁ ।

ମୁଁ ସୁନ୍ଦର ପୃଥିବୀକୁ ଦେଖିବାକୁ ଚାହୁଁଥିଲି । ନୂଆ ଦିନର ଜନ୍ମ । ତାକୁ ପ୍ରମାଣିତ କରିବେ ଘାସଗୁଳ୍ମ, ଫୁଲ ପତର, ପଶୁ ପକ୍ଷୀ—ଯେଉଁମାନଙ୍କର ଜୀବନ ଅଛି, କିନ୍ତୁ ଜିଜ୍ଞାସା ନାହିଁ । ଯେଉଁମାନେ ହାତପାତି ଗ୍ରହଣ କରନ୍ତି, ଖୁସି ହୁଅନ୍ତି, ପ୍ରଶ୍ନ ପଚାରନ୍ତି ନାହିଁ । ତାଙ୍କରି ଗହଣରେ ମଣିଷ ପ୍ରଭାତବନ୍ଦନା କରିପାରିବ; ଅଫିସ୍ କଥା ପିଲାଛୁଆଙ୍କ ଭବିଷ୍ୟତ୍, ଗୃହିଣୀଙ୍କ ଅବୁଝାମଣା, କିମ୍ବା ସୃଷ୍ଟିର ରହସ୍ୟ କଥା ଭାବିବ ନାହିଁ । ମୁଁ ସେହି କବିତ୍ୱର ଆଗ୍ରହୀ ଥିଲି ।

ତେଣୁ ମୁଁ ପ୍ରାତଃଭ୍ରମଣରେ ମନ ବଳାଇଲି, ଯେତେବେଳେ ମୁଁ ଘର ବଦଳି କଲି ଓ ଦେଖିଲି ଯେ ଗୋଟିଏ ବଡ଼ ସରକାରୀ ପାର୍କ ଘରର ଅତି ନିକଟରେ ଅଛି । ଏହି ପାର୍କରେ ଗଛ, ଫୁଲ, ପୋଖରୀ ସବୁ ଅଛି, ଗାୟକ ଚଢ଼େଇମାନେ ନିଶ୍ଚୟ ଥିବେ, ଅସଂଖ୍ୟ ଗୁଣ୍ଡୁଚିମୂଷା ଦୌଡ଼ା ଦୌଡ଼ି ହେଉଥିବେ— । ମୁଁ ଆନନ୍ଦର ନିଷ୍ପତ୍ତି ଶୁଣାଇଲି ଯେ, ମୁଁ ସକାଳେ ମୋ ସାନପୁଅକୁ ସାଙ୍ଗରେ ନେଇ ବୁଲିବାକୁ ଯିବି, ଆଉ କେହି ଆସନ୍ତୁ ବା ନ ଆସନ୍ତୁ ।

ପୁଅକୁ ସାଥୀ କରିବାରେ ଗୋଟିଏ ଆଶା ଓ ଉଦ୍ଦେଶ୍ୟ ଥିଲା ଯେ, ସେ ସାହିତ୍ୟ ଲେଖି ଶିଖିବ । ତା'ର ସେ ଆଡ଼କୁ ଟିକିଏ ଦୁର୍ବଳତା ଅଛି ବୋଲି ମୋର ବିଶ୍ୱାସ । ମୁଁ ଭାବିଲି ଯେ ଏହି ଏକ ସୁଯୋଗ ମିଳିଛି । ସେ ସକାଳର ସଜ ମନରେ ସୁନ୍ଦର ବସ୍ତୁ ଦେଖିଆସି ଲେଖିବ । ମୁଁ ପରଖିନେବି, ଦେଖିବି, ସେ ସୁନ୍ଦରତାକୁ

କେତେଦୂର ଫୁଟାଇ ପାରୁଛି, ତା'ର କଳ୍ପନା-ଅନୁଭୂତିକୁ କପରି ଭବରେ ଦଳାଇ ପାରୁଛି । ମୁଁ ତା'ର ଭୁଲ୍ ସୁଧାର ଦେବି, ତା'କୁ ପ୍ରଣାଳୀ ଶିଖାଇବି, ଦରକାର ହେଲେ ଅନୁଭୂତିର ଖୋରାକ ଯୋଗାଇବି, କଳ୍ପନାର ଇଙ୍ଗିତ ଦେବି । କିଏ ଜାଣିଛି ବଡ଼ ହେଲେ ସେ ହୁଏତ— । ମୋର ଆକାଂକ୍ଷା ଅନୁଚିତ ନୁହେଁ ।

ପୁଅ ଏହି ଯୋଜନାରେ ରାଜି ହେଲା ଏବଂ ଉତ୍ସାହ ଦେଖାଇଲା । କହିଲା ଯେ ତାକୁ ରଚନା ଲେଖିବାକୁ ଭଲ ଲାଗେ । ଆଷ୍ଟାଳନ କଲା ଯେ ରଚନା ଲେଖାରେ ସେ ସବୁବେଳେ ବେଶି ମାର୍କ ରଖିଆସିଛି । ଗତ ଥର ସେ କୁଆଡ଼େ ବର୍ଷାଋତୁ ବିଷୟରେ ଚାରି ପୃଷ୍ଠା ଲେଖି ଫାଷ୍ଟ୍ ହୋଇଥିଲା ।

ତା'ର ଉତ୍ସାହ ସତ୍ତ୍ୱେ ମୁଁ ତାକୁ ସାହିତ୍ୟ ରଚନାର କେତୋଟି ସାର କଥା କହିବାକୁ ଚାହିଁଲି । କହିଲି, "ଶୁଣ୍, ବେଶି ଗୁଡ଼ାଏ ଏଣୁତେଣୁ ଲେଖିବୁ ନାହିଁ । ସଜେଇ କରି ଲେଖିବୁ । ଶ୍ରେଷ୍ଠ ଜିନିଷକୁ ଭୁଲିବୁ ନାହିଁ, ତେବେ ଯାହା ବେଶି ଅଛି, ଯାହା ସମସ୍ତଙ୍କ ଆଖିରେ ପଡ଼ିବ ତାକୁ ବଢ଼େଇ କରି ଲେଖିବୁ । ତା' ଛଡ଼ା ତୁ ନିଜେ ଭାବିବୁ,—କଣ ଲେଖିଲେ ଭଲ ଦେଖାଯିବ, ଭଲ ଶୁଭିବ । ବୁଝିଲୁ ?"

ଦଶ ବର୍ଷର ପୁଅକୁ ଏହାଠାରୁ ଅଧିକ ବୁଝାଇ ହୋଇ ନ ଥାଆନ୍ତା । ପୁଅ ନିଶ୍ଚିତ ଭାବରେ ମୁଣ୍ଡ ହଲାଇଲା । ମୁଁ ପରମେଶ୍ୱରଙ୍କର କଲ୍ୟାଣ ମାଗିଲି ।

...ଦେଖିବା ଓ ଲେଖିବାର ଦାୟିତ୍ୱ ପୁଅ ଉପରେ ଛାଡ଼ିଦେଇ ମୁଁ ମୋର ପ୍ରାତଃଭ୍ରମଣକୁ ଉପଭୋଗ କଲି । ପ୍ରଭାତର ଗନ୍ଧ, ବର୍ଣ୍ଣ ଓ ଧ୍ୱନିରେ ଚେତନାକୁ ସିକ୍ତ କରିଦେଲି, ସବୁ ଅନୁଭୂତିକୁ ଏକାଠି କରି ଦେଲି ଉପଲବ୍ଧିର ଆନନ୍ଦ ପାଇଁବ ପାଇଁ, ଯେମିତି କି ଆଘ୍ରାଣ ଦର୍ଶନ ଓ ଶ୍ରବଣର ସୀମା ଲିଭିଯାଇଛି । ଏହି ଯେଉଁ ଲମ୍ବା ବଡ଼ ବଡ଼ ଗଛ, ଯେଉଁଠୁ ଶ୍ରେଷ୍ଠ ହଳଦିଆ ଫୁଲସବୁ ଝରି ପଡ଼ୁଛି,—ମୋର ମନେ ହେଲା ମୁଁ ସେହି ଫୁଲ ଝରା ଶୁଣି ପାରୁଛି । ନିଃଶବ୍ଦ ଶବ୍ଦ, ଗୋଟିଏ ନିବିଡ଼ ନିଭୃତ 'ଆହା' ପରି । ...ଏହି ଚଢ଼େଇ-ମାନଙ୍କର କୂଜନ- କାକଳି, କୁହୁ-କା ଚେଁ-ଚୁଁ କେତେରକମର ଶବ୍ଦ, ମୁଁ କେବଳ ଶୁଣୁ ନାହିଁ, ମୁଁ ତାଙ୍କ ଲେଖୁଡ଼ୁର ଚଞ୍ଚୁ ଓ ଗୃହାଣୀକୁ ଦେଖିପାରୁଛି । ସେମାନେ ପୃଥିବୀର ଶିଶୁ, ଭାବ ଜାଣନ୍ତି ନାହିଁ ଅଥଚ ସବୁ କିଛି ମାଗୁଛନ୍ତି । ତାଙ୍କ ଆବେଗ ଧ୍ୱନିରେ ମୁଁ ମଧ୍ୟ ପିଲା ହୋଇ ମାଗୁ ଛି, କିଛି ପାଇବି ବୋଲି ସବୁ ମାଗୁ ଛି ।······ ପବନ ପୋଖରୀର ପାଣି ସାଙ୍ଗରେ ଖେଳୁଛି, ତାକୁ ଠେଲାଇ ଖେଳାଇ ନେଇଯାଉଛି କୂଳଯାଏଁ । ସେ ଅଳଗଲା ପରେ ପୁଣି ତା' ସାଙ୍ଗରେ ଖେଳୁଛି, ତାକୁ ଉଲୁଟାଉଛି, ତା'ର ବାରଣ ନ ମାନି ତାକୁ ହଇରାଣ କରୁଛି । ଏ କି ନିର୍ଲଜ୍ଜ ଅହରନ୍ତ ପ୍ରେମ ! ପାଣିଯାପ ମୁଣ୍ଡ ଟେକି ଉବୁଯାଉଛି, 'କାଠିକୁଟା ଅସ୍ତବ୍ୟସ୍ତ ହୋଇ ଏଣେ ତେଣେ

ଭାସିଯାଉଛି, ଝଙ୍କିଲ ଗଛର ଶାଖା ମୁଣ୍ଡ ହଲଉଛି । ମୁଁ ସେହି ନର୍ମ୍ମକ୍ଷତାର ଭୋଜରେ ଯୋଗଦେଲି । ଏ ନୂଆ ପୃଥିବୀ ପଗ୍,—ଏଠି ଲଜ୍ଜା ନାହିଁ······ଧାଡ଼ି ଧାଡ଼ି ହୋଇ ସାଜିସୁଜି ହୋଇ କେତେ ଫୁଲର ମେଳା । ଡାଲିଆ, କାର୍ନେସନ୍, କ୍ରିସାନ୍‌ଥିମମ୍, ପେଟୁନିଆ, ଫ୍ଲକ୍‌ସ— । ବିଲାତି ଫୁଲର ବାସନା ନାହିଁ ? କିଏ କହିଲା ? ଏ ହେଉଛି ଉଦ୍ଧତ ନାରୀଶାଢ଼ୀର ବାସ୍ନା ! ବଧୂଅଙ୍ଗଲଗା ଅଳତାର ସୌରଭ !! ଉନ୍ମାଦକୁଆଁରୀ ଅଧର ଧୂଳିର ସୁଗନ୍ଧ !!!···

ମୋ ପୁଅ କଣ ଲେଖୁଛି ?

ମୋର ଜାଣିବାକୁ ଇଚ୍ଛା ହେଲା, କିନ୍ତୁ ମୁଁ ତାକୁ ତରତର କଲି ନାହିଁ । ମୁଁ ତାକୁ କହିଥିଲି ଯେ ସେ ପ୍ରଥମେ ଦେଖିଯିବ, ଦିନ ପରେ ଦିନ, ତା'ପରେ ଲେଖିବ । ଆନନ୍ଦ, ପରିଚୟ, ଅନୁରାଗ, ତା'ପରେ ଯାଇଁ ଅନୁଭୂତି ଫୁଟିଉଠିବ । ଯଥା—ସେ ପ୍ରଥମେ ସୁନ୍ଦର ଫୁଲଟିକୁ ଦେଖି ଖୁସି ହେବ, ଦ୍ୱିତୀୟରେ ଦେଖିବ ଯେ ସେ ତାକୁ ଚୁହିଁ ହସୁଛି, ତୃତୀୟରେ ଦେଖିବ ଯେ ଫୁଲର ଓଠ ଥରୁଛି, ତା'ର ପାତଳା ଦେହ କାକରରେ ଓଦା ହୋଇଗଲାଣି, ତାକୁ ନିଜର କରିବାକୁ ଇଚ୍ଛା ହେଉଛି । ଶେଷ ଦେଖାରେ ଥିବ ତା'ର ସମ୍ପୂର୍ଣ୍ଣ ଅନୁଭବ । ତା'କୁ ଦେଖିବାକୁ ଯାଇ ସେ ବାଢ଼ିବ ତା' ପିଲା ମନର କଳ୍ପନା ଓ ସାହିତ୍ୟ । '

ପ୍ରାୟ ସାତଦିନ ପରେ ମୁଁ ତାକୁ ସାହସ ଦେବା ପାଇଁ ପଚାରିଲି,—"ତୁ ଲେଖା ପାଇଁ ବ୍ୟସ୍ତ ହେବୁ ନାହିଁ । ବେଳ ପଡ଼ିଛି ।"

ସେ ମୋର ଭୀରୁତା ବୁଝି ନ ପାରିଲାପରି କହିଲା, "ମୋ ଲେଖା ତ କେବେଠୁଁ ସରିଲାଣି । ତୁମେ ପଚାରୁ ନ ଥିଲ ବୋଲି ମୁଁ ଭାବିଲି ତୁମର ଆଉ ଦରକାର ନାହିଁ ।"

ମୋର ଗ୍ରୀବା ଦବିଗଲା । ମୁଁ ନିରାଶା ଗୋପନ କରି ପଚାରିଲି, "କ'ଣ ସବୁ ଲେଖିଛୁ ?"

ସେ ବିନା ଦ୍ୱିଧାରେ କହିଲା, "ସବୁ ଲେଖିଛି । ଲେଖିଛି ଯେ ସକାଳେ ଥଣ୍ଡା ପବନ ବହେ । ପୁଣି ଲେଖିଛି ଯେ ସୂର୍ଯ୍ୟ ଉଠି ଆସୁଛନ୍ତି, ଆମେ ତାଙ୍କୁ ଦେଖିପାରୁ ନାହୁଁ । ଫୁଲ, ବହୁଳିଆ ଘାସ, ଚାରିକୋଣିଆ ପୋଖରୀ, ସମସ୍ତଙ୍କ କଥା ଲେଖିଛି । ଆଉ ଲେଖିଛି ଯେ, ଚଢ଼େଇମାନେ ପାଟି କରୁଛନ୍ତି, ବାପାମାନେ ଟହଲ କରୁଛନ୍ତି, ବୁଢ଼ାମାନେ ଗପ କରୁଛନ୍ତି, ମାଳୀ,—ସେମାନେ କେଉଁଠୁ ମାଳୀ ମୁଁ ଜାଣେ ନାହିଁ—, ପଥର ସଫା କରୁଛି, ଗୋଟିଏ ସାହେବ ପିଲା ଠେଲାଗାଡ଼ିରେ ବୁଲିଆସିଛି । ହଁ, ଲନ୍‌ରେ ଗୋଟାଏ ଲମ୍ବା ରବର ନଳୀ ପଡ଼ିଛି, ସେ ପିଲା ତା' ସାଙ୍ଗରେ ଲାଗୁଛି,

'ଆସ୍ଥା' ତାକୁ ଗାଳିଦେଉଛି । ପୋଖରୀ କୂଳ କାହାରି ଅଦନା, ଛିଣ୍ଡା ଚଟି, ଚେପ୍ଟା ବଲ୍, ଆଉ କେତେ କ'ଣ ପଡ଼ିଛି । ଗୋଟାଏ ପଥର ବୃଷଭର ମୁହଁରୁ ପାଣି ଝରୁଛି, କିନ୍ତୁ ବୃଷଭର ନାକ ଖଣ୍ଡିଆ ହୋଇଯାଇଛି । ଲନ୍‌ରେ ଯେଉଁଠି ଟିକେ ପାଣି ଜମିଛି, ଚଢ଼େଇମାନେ ସେ ପାଣିକୁ ପିଉଛନ୍ତି । ···ବାପା, କେତେଜାଗାରେ ଟିଣପଟାରେ ଲେଖା ହୋଇଛି 'କିପ୍ ଅଫ୍‌ ଦ ଗ୍ରାସ୍' । କିନ୍ତୁ ସେଠି ଲୋକମାନେ ବସୁଛନ୍ତି କାହିଁକି ? ତା' ଛଡ଼ା ଓଦା ଘାସରେ କଣ ବସିବାକୁ ଭଲ ଲଗୁ ଛି ?"

ମୋର ଇଚ୍ଛା ହେଲା ପଚାରିବି,—କଣ ଏଠିକିରେ ଚରିଲ ? କିନ୍ତୁ ଆଶଙ୍କା ହେଲା ଯେ ପଚାରିବା ମାତ୍ରେ ସେ ପୁଣି ଅନର୍ଗଳ ଗାଇଯିବ,—ପାର୍କର ଭୂଗୋଳ, ତା'ର ବହୁମୁଖୀ ଗୁଣ ଅବଗୁଣର କଥା ।

ସେ ମୋଟାମୋଟି ମୋ ନର୍ଦ୍ଦେଶ ମାନି ନେଇଛି । ଶ୍ରେଷ୍ଠ ଜିନିଷକୁ ଭୁଲି ନାହିଁ, ଯାହା ସମସ୍ତଙ୍କ ଆଖିରେ ପଡ଼ିବ, ତାକୁ ଅଙ୍ଗୁଳି ଦେଖାଇ ଲେଟିଛି । ତା'ର ଅଖି ଚାରିଆଡ଼େ ଘୂରିଆସିଛି, ସେ ଶୋଇ ରହି ନାହିଁ ।

କିନ୍ତୁ କବିହୃଦର ଜାଣିଚାଏ କଣ ତା' ପାଖରେ ନାହିଁ ?? ସେ କଣ କ୍ଷଣକ ପାଇଁ ଆଖିବୁଜି ପୃଥିବୀର ଅଦେଖା ରୂପକୁ ଦେଖିପାରୁ ନାହିଁ ? ଏହି ପିଲାଦିନୁ କଣ ତା'ର କଳ୍ପନାର ଉତ୍ସ ଶୁଖିଯାଇଛି ?

ମୁଁ ତାକୁ କିଛି କହିଲି ନାହିଁ, କିନ୍ତୁ ମୋ ମନରେ ଦୁଃଖ ହେଲା ।

···ତା' ପରଦିନ ମୁଁ ଘାସରେ ଶୋଇଲି ଓ ପୁଅକୁ କହିଲି ପାଖରେ ଶୋଇବାକୁ । କହିଲି ଯେ, 'କିପ୍ ଅଫ୍ ଦ ଗ୍ରାସ୍' ଲେଖା ହୋଇଛି ସିନା କିନ୍ତୁ ଏଠି ଶୋଇବା ମନା ନୁହେଁ । ପୁଣି କହିଲି ଯେ ଘାସ ଓଦା ହେଲେ କିଛି କ୍ଷତି ନାହିଁ ।

ମୁଁ ଆଖି ବୁଜିଦେଲି ଓ ଗୋଟିଏ ପରମ ତୃପ୍ତିର 'ଆଃ' କହିଲି । ଆଖି ଖୋଲିଲା ପରେ ଦେଖିଲି ଯେ ପୁଅ ଚିତ୍ ହୋଇ ଶୋଇ ଉପରକୁ ଚାହିଁଛି, ଆକାଶ ଆଡ଼କୁ । ଭଲ, ଆକାଶରେ ବସ୍ତୁ ଗଣିବାର କିଛି ନାହିଁ । ତେଣୁ ସେ ତାକୁ ନିଶ୍ଚୟ ଅନୁଭବ କରିବ,—ତା'ର ସ୍ୱଚ୍ଛ ନୀଳିମା, ତା'ର ବ୍ୟାପ୍ତି, ତା'ର ଅଦେହର ମାୟା ।

ପାଖରେ ଲୋକବାକ କେହି ନାହାନ୍ତି । ଫୁଲ ଧାଡ଼ି ନିକଟରେ ଅଛି । ସୌଭାଗ୍ୟ, ଆଜି ଭଅଁରଟିଏ ମଧ୍ୟ ଗୁଣୁ ଗୁଣୁ ହେଉଛି । ଯେତେ ଯେପରି ପ୍ରକୃତି ମୋର ଉଦ୍ଦେଶ୍ୟ ଜାଣି ପାରିଛି, ଓ ସେହି ଦିଗରେ ଯଥାସାଧ୍ୟ ଚେଷ୍ଟା କରୁଛି ।

ଫେବୃଆରୀ ମାସର ସକାଳ ପବନ ଧୀର ସହଜ ଗତିରେ ଆସୁଛି । ପୂର୍ବ ଦିଗରେ ଚନ୍ଦ୍ରମା ଦେଖିହେଉନାହିଁ, କିନ୍ତୁ ତେଜ ଚଢ଼ାଣ ନାଲି ଫୁଲମାନଙ୍କ ଉପରେ ପଡ଼ୁଛି ଓ ତାଙ୍କ ପଛରେ ଥିବା ଲତାବାଡ଼ି ଉପରେ ଭଅଁରଟି ଜଳ ଜଳ ଦେଖାଯାଉଛି ।

ଦାରବତା । ପୁଅ କଡ଼ ଲେଉଟାଇଲା, ବୋଧହୁଏ ଫୁଲମାନଙ୍କୁ ଦେଖିବ ବୋଲି । କିଛିକ୍ଷଣ ପରେ ତା' ପାଟିରୁ ଯେଉଁ ବାଞ୍ଛିତ ଶବ୍ଦଟି ବାହାରିଲା, "ସୁନ୍ଦର,— ନୁହେଁ ?" ମୁଁ ଆନନ୍ଦରେ ଅଧୀର ହୋଇ ତା'ର ପର ଶବ୍ଦଟିକୁ ଅପେକ୍ଷା କରି ବସିଲି ।

ସେ କହିଲା, "କେତେ ଫୁଲ ! ଫୁଲରେ ଏତେ ପ୍ରକାରର ରଙ୍ଗ ଥାଏ ବୋଲି ମୁଁ ଜାଣି ନ ଥିଲି । ଏତେ ବଡ଼ ବଡ଼ ଡାଲିଆ ମୁଁ ଆଉ କେବେ ଦେଖି ନ ଥିଲି ।"

ମୁଁ ତୋ ଅନୁଭୂତିରେ ଭାଗୀ,—ଏହି ଭାବରେ ମୁଁ ତା ଦେହରେ ହାତ ପକାଇଥିଲି ।

ତା'ପରେ ସେ କହିଲା, "ମୁଁ ରଚନାରେ ଏଇ ଫୁଲମାନଙ୍କ କଥା ଲେଖିଛି । ଲେଖିଛି ଯେ, ଏତେ ବଡ଼ ପଡ଼ିଆରେ ଏତେ ବେଶି ଫୁଲ ଧାଡ଼ି ଧାଡ଼ି ହୋଇ ସଜାହୋଇ ରହିଛି, ଦୋକାନରେ ଯେମିତି ମିଠେଇ ସଜା ହୋଇଥାଏ । ଆଉ କଣ ଲେଖିଛି ଜାଣିଛ—?"

ସେ ଉପମା ଦେଇ ଜାଣିଛି । ମୁଁ ଆଗ୍ରହ ଦେଖାଇଲି ।

"—ମୋର ପରି ଗୋଟିଏ ପିଲା, ତା' ଗୋଡ଼ରେ ଚଟି ନ ଥିଲା । ସେ ଗୋଟିଏ ଡାଲିଆ ଫୁଲ ପାଖକୁ ଗଲା, ତା'କୁ ଅଉଁସିଲା, ତାକୁ ବୋଧହୁଏ ନେବ ନେବ ବୋଲି ହେଉଥିଲା । କିନ୍ତୁ ନେଇପାରିଲା ନାହିଁ । ଚଙ୍ଗ ଚଙ୍ଗ ହୋଇ ଚାରିଆଡ଼େ ଅନାଇଲା, ଡରକରି ନେଲା ନାହିଁ । କିନ୍ତୁ ତା' ପରେ ପରେ ଜଣେ ବୁଢ଼ା ଭଦ୍ରଲୋକ ଧୋତି ପଞ୍ଜାବୀ ପିନ୍ଧି ସେହି ବାଟଦେଇ ଗଲେ । ତାଙ୍କ ଆଖିରେ ଚଷମା ଥିଲା । ଆଉ ତାଙ୍କ ଧୋତି ଏତେ ଲମ୍ବା ଯେ, ଘାସରେ ଲେଟୁଥାଏ । ସେ ସିଧା ସଳଖ ଗୋଟିଏ ଛୋଟ ନାଲିଆ ଫୁଲକୁ ତୋଳିକରି ନେଲେ, ହାତରେ ଧରିଲେ ନାହିଁ, ପକେଟରେ ପୂରାଇଲେ ।"

ମୁଁ ହସିଉଠିଲି । ପୁଅର ମୁହଁରେ ବିଜୟର ଟାଣି ଥିଲା । ସତେ ଯେପରି ସେ ଗୋଟିଏ ବଡ଼ କଥା, ଉପାଦେୟ କଥା କହିପାରିଛି ।

ଲେଖିଯା'ରେ ପୁଅ ଲେଖି ଯା' । ମୁ ତୋତେ ଭୁଲ୍ ବୁଝିଥିଲି । ତୋ'ଠାରେ କବିତ୍ୱ ନାହିଁ, ହୁଏତ କାବ୍ୟିକତା ନାହିଁ । କିନ୍ତୁ ତୁ ପ୍ରାଣୀ ଚରିତ୍ରକୁ ବେଶ୍ ଦେଖିପାରୁଛୁ, ଜାଣିପାରୁଛୁ । ଏତେ ବଡ଼ ପଡ଼ିଆ । ଏତେ ଫୁଲ ଓ ରଙ୍ଗ ତୋ'

ଆଖିରେ ପଡ଼ୁଛି । ସେମାନେ ସୁନ୍ଦର ଓ ଲୋଭନୀୟ । କିନ୍ତୁ ତୋ' ମନକୁ ଛୁଇଁଛନ୍ତି ବ୍ୟକ୍ତିବିଶେଷ,—ସାହେବ ପିଲା ଓ ତା'ର ଆୟା, ସ୍ନେହ କରି ନ ଥିବା ବାଳକ ଓ ସ୍ନେହ କରିଥିବା ବୃଦ୍ଧ । କିଛି କ୍ଷତି ନାହିଁ । ସେମାନେ ମଧ୍ୟ ଏହି ପ୍ରକୃତିର ଅଂଶ । ସେମାନେ ମଧ୍ୟ ତୋ ରଚନାକୁ ସମୃଦ୍ଧ କରିପାରିବେ; ସାହିତ୍ୟରେ କ୍ଷୁଣ୍ଣ ହେବ ନାହିଁ ।

ଏ ସାହିତ୍ୟର କୌଣସି ନୂତନ ଢଙ୍ଗ ବା ମୂଲ୍ୟାଙ୍କନ ନୁହେଁ । ତଥାପି ମୋର ମନେହେଲା ଯେ, ମୁଁ ପୁରୁଣା ଓ ମୋ ପୁଅ ନୂଆ । ମୁଁ ତାକୁ ବୁଝିପାରୁଛି, ଏଥିକରେ ନିଜକୁ ଧନ୍ୟବାଦ ଦେବା କଥା ।

ମୁଁ ଆଦରରେ କହିଲି, "ଆଜି ମୁଁ ତୋର ରଚନା ଦେଖିବି ।" ପ୍ରଥମେ ରାଜି ହେଲା । ତା' ପରେ ଭାବିଲାପରି ହୋଇ କହିଲା, "ଆଉ କିଛି ଦିନ ଯାଉ । ମୁଁ ଏହା ଭିତରେ କେତୋଟା ନୂଆ ଜିନିଷ ଦେଖି ରଖିଛି, ତା'କୁ ମୋ ରଚନାରେ ଯୋଡ଼ି ଦେବି ।"

···ତେଣୁ ଆଉ କିଛିଦିନ ପରେ ମୁଁ ତା' ରଚନାକୁ ଦେଖିବାର ସୁଯୋଗ ପାଇଲି ।

ରଚନା ଛଅ ପୃଷ୍ଠା । ବ୍ୟାକରଣ ଭୁଲ୍ ଅନେକ ଅଛି, ଧାରାବାହିକତା ପ୍ରାୟ ନାହିଁ କହିଲେ ଚଳେ । ତା ସତ୍ତ୍ୱେ ମୋତେ ପଢ଼ିବାକୁ ଭଲଲାଗିଲା । ମୋର ମନେ ହେଲା ଯେ, ସେ ସକାଳର ପାର୍କରେ ଗୋଟିଏ ମେଳା ମଉଛବର ଦୃଶ୍ୟ ଆଣି ଥୋଇ ଦେଇଛି । ସେଇ ବିଚ୍ଛିନ୍ନ ବୈଚିତ୍ର୍ୟରେ ଧାରା ଆସିବ କେଉଁଠୁ ? କେଉଁ ସ୍ୱାସ୍ଥ୍ୟକାମୀ ଗେଞ୍ଜି, ହାଫ୍ ପ୍ୟାଣ୍ଟ୍ ପିନ୍ଧି ଦୌଡ଼ୁଛି ଓ ରାଗିଲା ପରି ଦେଖାଯାଉଛି; କିଏ ଜଣେ ଫ ଆରାରେ ମୁହଁଲଗାଇ ପାଣି ପିଇବାକୁ ଚେଷ୍ଟା କରୁଛି, ପାରୁନାହିଁ; କେଉଁ ପୁରୁଷ ସ୍ତ୍ରୀ ଦୁଇଜଣ ପାଖାପାଖି ବସିଛନ୍ତି ଓ ଭାବୁଛନ୍ତି, କଥା କହୁ ନାହାନ୍ତି; କେଉଁ ଛୋଟ ପିଲଟିଏ ଗୋଡ଼ ଗୋଟାଉଛି (ପୁଅ ଲେଖିଥିଲା ଯେ, ସେ ସବୁ ଚିକ୍କଣ କଳା ପଥର ହୋଇଥିବ, ସେ 'ଗିଲିଦିନେ' ଯେମିତି ଯାଇଉଥିଲା); କେଉଁଠି ଗୁଣ୍ଡିଆ ମୂଷା ଯୋଡ଼ିଏ କଜିଆ କରୁଛନ୍ତି, ଆଉ ଗୋଟିଏ ଦୁଷ୍ଟ ପିଲା ତାଙ୍କ ଉପରେ ଟେକା ପକାଉଛି; ଇତ୍ୟାଦି । ମୁଁ ଅଭିନବ, ଓଲଟା ସିଧା ଚଳଚ୍ଚିତ୍ର ଦେଖିଗଲି । ଆଶ୍ଚର୍ଯ୍ୟ ହେଲି,—ପାର୍କରେ କଣ ଏତେ ଲୋକ ଥିଲେ ?

କିନ୍ତୁ ମୁଁ କେତୋଟି ଜାଗାରେ ଝୁଣ୍ଟିଲି ।

ପ୍ରଥମେ ଝୁଣ୍ଟିଲି ଯେତେବେଳେ ପଢ଼ିଲି ଯେ, ପାର୍କର ସୀମାରେ ଗୋଟିଏ କୁଡ଼ିଆ ଘର ଅଛି, ଘର ଉପରେ କେତୋଟା ଶୁଖିଲା ତାଳ-ବାହୁଙ୍ଗା ପଡ଼ିଛି ଓ ଘରର ଦୁଆର ମୁହଁରେ ଗୋଟିଏ ସ୍ତ୍ରୀଲୋକ କନ୍ଥା ସିଲେଇ କରୁଛି । ସେ କୁଆଡ଼େ ସଦାବେଳେ

କନ୍ଥା ସିଲେଇ କରୁଥାଏ । ପୁଣି ତା' ଆଗରେ କୋଟିଏ ପିଲା ନାଲି କୁରୁତା ପିନ୍ଧି, କିଛି ନ କଲା ପରି ଛିଡ଼ା ହୋଇଥାଏ । ମୋତେ ଏହି ଦୃଶ୍ୟ ଆଉଆ ଲାଗିଲା । ସେମାନେ ପାର୍କ୍ର ସୀମାରେ ଅଛନ୍ତି, ଚୁପ୍ ହୋଇ ଅଛନ୍ତି,—ପାର୍କର ଉପଯୋଗୀ ଜନତା ସହିତ ତାଙ୍କର ସମ୍ପର୍କ କଣ ଅଛି ? ସେମାନେ ସକାଳରୁ କ'ଣ ପାଉଛନ୍ତି ?

ମୋତେ ଅଡ଼ୁଆ ଲାଗିଲା । କିନ୍ତୁ ପରେ ମୁଁ ଭାବିଲି ଯେ, ଏ ହେଉଛି ଦାରିଦ୍ର୍ୟ । ଦାରିଦ୍ର୍ୟକୁ ଉପେକ୍ଷା କରିବାକୁ ନୁହେଁ, ସାହିତ୍ୟରେ ତା'ର ନିର୍ଦ୍ଦିଷ୍ଟ ସ୍ଥାନ ଅଛି । ବରଂ ତାହା ବ୍ୟତୀତ ଆର୍ଟ୍‌ରେ ପୂର୍ଣ୍ଣତା ଆସେ ନାହିଁ । ସେଥିରୁ କିଛି ନ ଥିଲେ ସଂସାର-ଚିତ୍ର ସମତା ଦୋଷରେ ଦୂଷିତ ହୋଇଯିବ; ଫିକା ଲାଗିବ ।

ସେ ଦରିଦ୍ର ସ୍ତ୍ରୀ ଲୋକଟି କନ୍ଥା ସିଲେଇ କରୁଛି, କରୁଥାଉ । ବୋଧହୁଏ ସାତ ଶୀତରୁ ନିଜକୁ ବଞ୍ଚାଇବାକୁ ଚାହୁଁଛି । କିନ୍ତୁ ନାଲି କୁରୁତା ପିନ୍ଧା ତା', ପିଲା ସେମିତି ଛିଡ଼ାହୋଇ ରହିଛି କାହିଁକି ? ତା' ବାପର ଆସିବା ବାଟକୁ ଚାହିଁଛି ? ସହଜାତ ନିର୍ବୋଧତା ? ଯାହାହେଉ ପ୍ରଶ୍ନବାଚକଟି ମନ୍ଦ ନୁହେଁ, କିଞ୍ଚିତ୍ ରହସ୍ୟର ସୂଚନା ଦେଉଛି ।

ମୁଁ ପୁଣି ଥରେ ଚିନ୍ତିଲି ଯେତେବେଳେ ଏହି ଧରଣର ଆଉ ଗୋଟିଏ ଦୃଶ୍ୟ ଦେଖିବାକୁ ମିଳିଲା । ପୁଅ ଲେଖିଛି ଯେ ଦିନେ ପାର୍କ୍ର ବଡ଼ ବରଗଛର ଚଉତରା ଉପରେ ଗୋଟିଏ ବୁଢ଼ୀ ବସିଥିଲା । ତା'ର ପିନ୍ଧିଲା ଶାଢ଼ୀ ନିହାତି କୋତରା, ମଇଳା । ତା' ଆଖି ଦୁଇଟା କୁଆଡ଼େ ସାପ ଆଖି ପରି, ନାକ ଚଟେଇର ଅଣ୍ଟା ପରି । ମୁହଁରେ ଧାର ଧାର ଲୋସଡ଼ା ମାଉଁସ । ତା' ପାକୁଆ ପାଟିରୁ କଣ କାଳା କଳା ରସ,—ପାନ ପିକ ନୁହେଁ,—ବହିପଡ଼ୁଛି । ସେ ବଡ଼ ବଡ଼ ହୋଇ କାହାକୁ ଗାଳି ଦେଉଥିଲା, ଏବଂ ତା' ଗାଳିରେ ଅନେକ ଅସଭ୍ୟ ଶବ୍ଦ ଥିଲା । ପୁଅ ଲେଖିଛି ଯେ ସେ ଗୋଟିଏ ଡାହାଣୀ, ବୁଢ଼ୀମା ନୁହେଁ ।

ମୋର ଏ ଦୃଶ୍ୟ ପସନ୍ଦ ହେଲା ନାହିଁ । ମୁଁ ସେ ବୁଢ଼ୀକୁ ଦେଖିଛି । ସେ ନିଃସ୍ୱ ଅଧା-ବୁଢ଼ୀ, ଅତି ଗରିବ ଓ ତା ମୁଣ୍ଡ ଖରାପ । ତା' ହାତରେ ମୁଁ ଗ୍ରନ୍ଥ ୀ ଦେଖିଛି । ପ୍ରକୃତରେ ମନେହେବ ଯେ ସେ ଗୋଟିଏ ଡାହାଣୀ । କିନ୍ତୁ ସେ ମୋର ସକାଳଧୂଆ ମନରେ ଛାଇପରି ଆସି ଚାଲି ଯାଇଛି, ଲାଗିରହି ନାହିଁ ।

ଦାରିଦ୍ର୍ୟ ଭଲ । କିନ୍ତୁ ଏହି ବିକାର, ବୀଭତ୍ସତା ! ମୋ ପୁଅର ସାହିତ୍ୟରେ ତା'ର ସ୍ଥାନ ନାହିଁ । ମୁଁ ଏହି ମର୍ମରେ ସେହି ଅଂଶଟିକୁ କଟାଇବାକୁ ଯାଉଥିଲି, ଏହି ସମୟରେ ମୋର ପିଲାଦିନର ଗୋଟିଏ ବୁଢ଼ୀ କଥା ମନେପଡ଼ିଲା । ତା'ର ବିକଟ ରୂପ

ସେ ମଧ୍ୟ ଅକଥ୍ୟ ଭାଷାରେ ଗାଳି ଦେଇପାରେ । କିନ୍ତୁ ମୁଁ ତା'ର କାନ୍ଦ ଦେଖିଛି । ତା' ଛଡ଼ା ସେ ଥରେ ମୋତେ ଲୁଚେଇ କରି ଦୁଧସର ଖାଇବାକୁ ଦେଇଥିଲା ।

ଶେଷକୁ ମୁଁ ଭାବିଲି,—ଥାଉ, ସେ ବୁଢ଼ୀ ରହିଥାଉ ସେମିତି। କହିବାକୁ ଗଲେ ସେ ମଧ୍ୟ ଦାରିଦ୍ର୍ୟତାର ବନ୍ଧନୀ ଭିତରେ ଆସିଯାଉଛି । ମୁଁ ମୋର ଉଦାରତା ପାଇଁ ନିଜକୁ ପ୍ରଶଂସା କଲି ଓ ଆଗେଇଲି ।

ତେବେ ଉଦାରତାର ଗୋଟାଏ ସୀମା ଅଛି । ଯେତେ ଯାହା କୁହ, ସାହିତ୍ୟରେ କିଛି ରୁଚି, ମର୍ଯ୍ୟାଦା ଥିବା ଉଚିତ । ମୁଁ ସବୁ କ୍ଷମା କରିଦେଲି । କିନ୍ତୁ ମୋର ସମଗ୍ର ବିଚାରବୁଦ୍ଧି ବିଦ୍ରୋହ କରିଉଠିଲା, ଯେତେବେଳେ ମୁଁ ଗୋଟିଏ ନିତାନ୍ତ ଅଦରକାରୀ, ଅସଙ୍ଗତ ଓ ଅଶ୍ଳୀଳ ଦୃଶ୍ୟ ଦେଖିବାକୁ ପାଇଲି । ମୋର ମନେହେଲା ଯେ, କେବଳ ସେହି ଅଂଶଟିକୁ କାଢ଼ିନେଲେ ଯଥେଷ୍ଟ ହେବ ନାହିଁ । ମୋର ଶକ୍ତି ଥିଲେ ମୁଁ ସେହି ଦୃଶ୍ୟର ସତ୍ୟତାକୁ ଧ୍ୱଂସ କରିଦିଅନ୍ତି !

ଦୃଶ୍ୟ ସତ ଓ ସାଧାରଣ । ପୂର୍ବ ଲେଖିଛି ଯେ, ସକାଳୁ ସକାଳୁ ସେମାନେ ବୁଲିଆସନ୍ତି,—ଆଖପାଖରେ ଥିବା ବଡ଼ ବଡ଼ କୋଠାର କୁକୁରମାନେ ଓ ତାଙ୍କୁ ଚଲାଇ ନେଉଥିଲା ଚାକରଦଳ । ଚାକରମାନେ ପାର୍କର ସାନ ପାଚେରି ଉପରେ ଆଣ୍ଠୁରୁ ଲୁଗା ଟେକି ବସନ୍ତି ଓ ଗପ କରନ୍ତି । ଝିଞ୍ଜିର ଢିଲା ହେବାରୁ କୁକୁରମାନେ ଚତୁରର ହୋଇ ଅଗଏ ଜାଗା ବୁଲିଆସନ୍ତି, ମାଟି ଶୁଙ୍ଘନ୍ତି ଓ ଲାଙ୍ଗୁଡ଼ ହଲାନ୍ତି ।

ଅଶ୍ଳୀଳ କିଏ ? କୁକୁରମାନେ ବୁଦ୍ଧିମାନ୍ ପ୍ରଭୁଭକ୍ତ ଜୀବ । ତାଙ୍କୁ ସକାଳେ ବୁଲାଇନେବା ଚାକରମାନଙ୍କ କର୍ତ୍ତବ୍ୟ । ଏବଂ ସେମାନେ ଯେଉଁଠୁ ଆସିଛନ୍ତି, ସକାଳ ବୁଲାର ନିର୍ଦ୍ଦେଶ ପାଇଛନ୍ତି, ସେଥିର ମାଲିକମାନେ ଅତି ବଡ଼ଲୋକ, ତାଙ୍କ ପ୍ରାସାଦ ଫାଟକ ପାଖରେ କ୍ଷମତାପନ୍ନ ଦରୱାନ ବସିଥାଏ ।

ଅନେକ କହିବେ, ଏଥିରେ ଚମକିବାର କିଛି ନାହିଁ ଯେ, ମୋର ରୁଚିବୋଧ ଦୁଃଖୀ ଓ ପୀଡ଼ିତ । କିନ୍ତୁ ମୋତେ ଲାଗିଲା ଯେ, ଏହି ଦୃଶ୍ୟଟିକୁ ନେଇ ପ୍ରଭାତ ଉଦ୍ୟାନର ସମସ୍ତ ସୌନ୍ଦର୍ଯ୍ୟ ନଷ୍ଟ ହୋଇଯାଉଛି । ଶତସହସ୍ର ଡାହାଣୀ ବୁଢ଼ୀ ତା'ର ଅନୁପମ ଜ୍ୟୋତିକୁ ମଳିନ କରିପାରନ୍ତେ ନାହିଁ, କିନ୍ତୁ ଏହି ପଞ୍ଚାଏ କୁକୁର ଓ ତାଙ୍କ ଚାଳକମାନେ ତାର ମହାନତାକୁ ବିଦ୍ରୂପ କରୁଚନ୍ତି, ନିଜର ଶ୍ରେଷ୍ଠପଣରେ ତାକୁ ନିର୍ଯ୍ୟାତନ କରି ଦେଉଛନ୍ତି ।

ମୁଁ ନିଜକୁ ବୁଝାଇଲି ଯେ, କୁକୁରମାନେ ନିର୍ଦ୍ଦୋଷ । ଯେ ତାଙ୍କୁ ବୁଲାଇ ନେବାଛଡ଼ା ଚାକରମାନଙ୍କର ନିଶ୍ଚୟ ଅନ୍ୟ ଦରକାରୀ କାମ ଥିବ । ଯେ ବଡ଼

କୋଠାରେ ସମାଜର ଗଣ୍ୟମାନ୍ୟ ଲୋକ, ତାଙ୍କର କୁକୁର ପାଳିବା କଥା, ଏବଂ ସେମାନେ କଦାଚିତ୍ ନିଜେ ସେହି ଜନ୍ତୁମାନଙ୍କୁ ବୁଲାଇ ନେଇ ପାରନ୍ତେ ନାହିଁ ।

ତଥାପି ମୋ ମନ ମାନିଲା ନାହିଁ । ପଶୁ, ଧନ ଓ ଭୃତ୍ୟ ମିଶ୍ରିତ ଗୋଟିଏ ଅବୋଧ ଅଶ୍ଳୀଳତା ମୋର ବାଟ ଓଗାଳିଲା । ମୁଁ ପୁଅକୁ କହିଲି, "  ସବୁ କାଟି ଦେ'—ଏହି କୁକୁରମାନଙ୍କ କଥା ।"

ସେ କହିଲା, "କାହିଁକି ବାପା ? ସେମାନେ ବାରବୁଲା କୁକୁର ନୁହନ୍ତି, ଜାତି କୁକୁର,—ଆଲସେସିଆନ୍, ଡାଲମେସିଅନ୍, କକର୍ ସ୍ପାନିଏଲ୍, ଏମିତି କେତେ କଣ ।"

ମୁଁ ନରମିଗଲି ନାହିଁ । ତା'କୁ ମୋ ଆଦେଶ ମାନିବାକୁ କହିଲି ।

# ପ୍ରଭାତ ବର୍ଣ୍ଣନା

ଦଶ ବର୍ଷର ପୁଅ ବାପାଙ୍କ ଆଦେଶ ମାନିନେଲା । (ଏବଂ ମାନିବା ଉଚିତ) ଯେ ସେଇ କୁକୁରମାନଙ୍କ ବିଷୟ ତା' ଚେତନାରୁ କାଟି ଦେବାକୁ ପଡ଼ିବ । କିନ୍ତୁ ବଡ଼ ହେଲାରୁ ତା'ର ଯଦି ମନେ-ଥିବ ସେକଥା, ଏବଂ ସେ ଯଦି ସ୍ୱାଧୀନଚେତା ଯୁବକ ବୋଲାଉ-ଥିବ ନିଜକୁ, ସେ କ'ଣ ବାପାଙ୍କୁ ପଚାରିବ ନାହିଁ, ଅନ୍ତତଃ ମନେ ମନେ—

"ବାପା, କୁକୁରମାନେ ତୁମର କଣ ଦୋଷ କଲେ ? ମୋତେ ତାଙ୍କୁ କାଟି ଦେବା ପାଇଁ ବାଧ୍ୟ କଲ କାହିଁକି ? ସେମାନେ ପରା ଜାତି କୁକୁର, ଆଲ୍‌ସେସିଆନ୍, ଡାଲ୍‌ମେସିଆନ୍, କକ୍‌ର ସ୍ପାନିଏଲ୍...ମୁଁ କହି ନ ଥିଲି ତୁମକୁ ?"

ବାପା ପିଲାଟାକୁ ସହଜରେ ଦବେଇ ଦେଇଥିଲେ ସିନା, ଟୋକାକୁ ଯଥାଯଥ ଉତ୍ତର ନ ଦେଲେ ଚଳିବ ନାହିଁ । କିନ୍ତୁ ସେ ହିଡ଼ବଡ଼େଇ ଯିବେ । ମନୋରମ ପ୍ରଭାତରେ କୁକୁରମାନଙ୍କ ପ୍ରବେଶ ପ୍ରଣବ ଅଶୁଦ୍ଧ ବୋଲି ଦାବି କରି ପାରିବେ ନାହିଁ । ବିଶେଷତଃ ପୁଅ ଯେତେବେଳେ ବାରମ୍ବାର କହୁଛି ଯେ ସେମାନେ ବାରବୁଲା କୁକୁର ନୁହଁନ୍ତି, ଅଭିଜାତ ତାଙ୍କ ମାଲିକମାନଙ୍କ ପରି । ଆରେ, ମୁଁ କଣ ନିଜେ ଦେଖି ନାହିଁ ସେମାନଙ୍କୁ ? କିଏ ଲମ୍ବା-ଚଉଡ଼ା ତ କିଏ କୁନିମୁନିଆ, କିନ୍ତୁ ଏକରୁ ଆନ ବଳିଆର, ସ୍ୱାସ୍ଥ୍ୟରେ ତଥା ସମ୍ପଦରେ । ଦେଖ ତାଙ୍କ ବେକରେ କେମିତିକା ପଟି ବନ୍ଧା ହୋଇଛି, ଶୀତଦିନେ ଦେଖିପାରି ତାଙ୍କ ଗୁଡ଼ ପେଟକୁ ଭିଡ଼ି ଧରିଥିବା ଗରମ କୋଟ୍ ଏବଂ ଅନୁମାନ କରିପାରି ତାଙ୍କ ଚିକ୍କଣିଆ ଦେହକୁ ଚିପିଲେ କେତେ ଲୋଟାଏଁ ଲହୁଣୀ ବାହାରିବ । ଆଦେଶ ପାଇଲେ ସେମାନେ କିଭଳି ମାଡ଼ିଯିବେ, ଯଥୋଚିତ କାମ କରି ଫେରି ଆସିବେ ଖାମିନ୍ଦ ପାଖକୁ, ତାହା ମଧ୍ୟ ସହଜେ

ଅନୁମେୟ । କିନ୍ତୁ ମୁଁ ତାଙ୍କୁ ବର୍ଜନ କରି ବୋଲି କହିଲି କାହିଁକିନା …କାହିଁକିନା…। ବାପା ଭାବି ହେବେ ।

ତାହାହେଲେ କଣ କୁକୁରଙ୍କୁ ବୁଲେଇ ନେଇ ଆସିଥିବା ଭୃତ୍ୟମାନେ ମୋର ଚକ୍ଷୁଶୂଳ ହେଲେ ? କାହିଁକି ? ସେମାନେ କୋଡ଼ ମାଗିଖିଆ ହୋଇଛନ୍ତି ? ନା ସେଇ ଡାହାଣୀବୁଢ଼ୀ ପରି କୁତ୍ସିତ ଦେଖା ଯାଉଛନ୍ତି ? ନା ଭୃତ୍ୟ ବୋଲି ସେମାନେ ନୀଚ ଶ୍ରେଣୀର ଲୋକ ? ଆଃ, ମୁଁ ସେ କଥା କହୁନାହିଁ । ସେମାନଙ୍କ ମାନମର୍ଯ୍ୟାଦାକୁ ଘୃଣା କରୁ ନାହିଁ । କିନ୍ତୁ କଥା ହେଉଛି…। ବାପା ପୁଣି ଅଟକି ଯିବେ ।

ଯେଉଁ ଅଶ୍ଳୀଳତା ତାଙ୍କ ଭାବକାତର ମନକୁ ଛୁଇଁଲା, ତାଙ୍କ ସୁନ୍ଦର ପବିତ୍ର ଉପରକୁ ଲଣ୍ଡ୍ରାଏ ଛେପ ପକାଇଲା, ତା'ର ଚେହେରା ଚରିତ୍ର ତ ସେ ନିଜେ ଭଲଭାବରେ ଠଉରେଇ ପାରି ନାହାନ୍ତି, ପୁଅକୁ ବୁଝେଇବେ କଅଣ ?

ଦରିଦ୍ରତାକୁ କ୍ଷମା କରି ହେଲା । ବରଂ ଚିତ୍ରପଟରେ ବୈଷମ୍ୟ (Contr st) ଆଣି ଦେବା ପାଇଁ ତା'ର ରହଣି ଏକାନ୍ତ ଆବଶ୍ୟକ ବୋଲି ମନେ ହେଲା । କୌଣସି ମତେ ସେ ଡାହାଣୀ ବୁଢ଼ୀକୁ ମଧ୍ୟ ଦରିଦ୍ରତାରେ ସାମିଲ କରି ହେଲା । କିନ୍ତୁ ଏଇ ସୁସ୍ଥ ସମ୍ପନ୍ନ, ଏବଂ ଅଭିଜାତ କୁକୁର ବୁଲାର ପ୍ରକ୍ରିୟାକୁ ସହି ପାରିଲି ନାହିଁ କାହିଁକି ?…ବାପାଙ୍କ ମୁଣ୍ଡ ବଥେଇବ ।

ମୁଁ କଣ ଧନୀମାନଙ୍କୁ ଏତେ ଘୃଣା କରେ ଯେ ତାଙ୍କ କୁକୁର—ଶୂକର ବିଳାସ ମୁଁ ଦୁଇ ଆଖିରେ ଦେଖି ପାରିଲି ନାହିଁ ? ନା, ତା' ନୁହେଁ, କଦାପି ନୁହେଁ । ମୁଁ ସେମାନଙ୍କୁ ଜାଣେ, ମୁଁ ସେମାନଙ୍କ ସାଙ୍ଗରେ ଚାହାପାନ କରିଛି ତାଙ୍କ ଡ୍ରଇଂରୁମ୍‌ରେ ଟଙ୍ଗା ହୋଇଥିବା ମୌଳିକ ପେଣ୍ଟିଙ୍ଗ୍‌ମାନ ଦେଖି ମୁଗ୍ଧ ହୋଇଛି, ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ତାଙ୍କଠାରୁ ଚାନ୍ଦା ଆଦାୟ କରିଛି । ସେମାନେ ଭଦ୍ରଲୋକ । ତେଣୁ ମୋ ପୁଅର ସାହିତ୍ୟରେ ତାଙ୍କ ବଡ଼ଲୋକର ଚାଲି ପଡ଼ିଲାକୁ ଚହଳି ଉଠିଲି, ଏଭଳି କହିବା ଭୁଲ୍ ହେବ । ଅବଶ୍ୟ ମୁଁ ମଧ୍ୟବିତ୍ତ ଏବଂ ବୁର୍ଜୁଆ, ସେମାନଙ୍କ ପ୍ରତି ମୋର ଅଳ୍ପ ବହୁତ ଈର୍ଷାଭାବ ଥାଇପାରେ । କିନ୍ତୁ ସେକଥା ଭିନ୍ନ । …ବାପାଙ୍କ ତର୍କ ବସ୍ତୁର ସରିବ ନାହିଁ ।

ବାପା କଣ ସତେ ତାଙ୍କ ବଢ଼ିଲା ପୁଅକୁ ବୁଝେଇ ପାରବେ ? ଅଶ୍ଳୀଳତାର ଅସ୍ପଷ୍ଟ କିନ୍ତୁ ଉତ୍କଟ ବାସ୍ନାକୁ ଦେଖେଇ ଦେଇ ପାରବେ, ଯେ ତା'ର ଉପାଦାନ ଏହି ପ୍ରକାର ? ଆପଣା ମନର ଏତେ ଗଭୀରକୁ ଯାଇ ଅନୁଭବ କର ପାରବେ ଯେ ବସ୍ତୁ ମାନେ ହିଁ ଅଶ୍ଳୀଳ, ପ୍ରକ୍ରିୟା ମାନେ ହିଁ ଅଶ୍ଳୀଳ, ଯେଉଁଥିରେ ଆତ୍ମୀୟତାର ଉଷ୍ଣ ନାହିଁ ? ଯେ ମମତାହୀନ ମମତ୍ୱ ହିଁ ନିର୍ମମ, —ଯେଉଁଥିରେ ଆନନ୍ଦ ନାହିଁ କି କ୍ରୋଧ ନାହିଁ, କେବଳ ଅଛି ଗୋଟାଏ ଉଦ୍ଗମନୀ ଉପଦ୍ରବ, ମାଲିକାଣିଅର ନିରକ୍ତଆ ଅହଂକାର ?

ମାଲିକମାନେ ଯେଉଁ ଭ୍ୟାନ୍ ଗଗ୍ ଅବା ଯାମିନୀ ରାୟଙ୍କୁ ଟାଙ୍ଗିଛନ୍ତି ତାଙ୍କ ଡ୍ରଇଂରୁମ୍‌ରେ, ଯେଉଁ ରମଣୀଙ୍କୁ ଥାପିଛନ୍ତି ତାଙ୍କ ବେଡ୍‌ରୁମ୍‌ରେ, ସେମାନେ ମଧ୍ୟ କୁକୁର ଜାତୀୟ ଗୃହର ଜାତୀୟ ବସ୍ତୁ, ଦରକାରୀ । ହୁଏତ ମୂଲ୍ୟବାନ୍ । କିନ୍ତୁ ତାଙ୍କୁ ପାଖକୁ ଆଣିବାର, ନିଜର କରିବାର ପ୍ରଶ୍ନ ଉଠୁନାହିଁ । କିଓ, ସେମାନେ କଣ ଏତେ ହୀନ ହୋଇଛନ୍ତି ଯେ ଛାର କାମିନୀ-କାଞ୍ଚନକୁ ଭଲ ପାଇବେ ?

ଦଖଲ କରିବାହିଁ ଭଲ ପାଇବା । ଯେ ଦଳରେ ପ୍ରସାରିତ ପ୍ରକ୍ରିୟା ହିଁ କ୍ରିୟା । ମଣିଷପଣିଆ । ମଧ୍ୟବିତ୍ତ ବୁଦ୍ଧିଜୀବି ବାପା ସେଇ ଅଶ୍ଳୀଳତାର ବାସ୍ନାଟିକି ପାଇ ପାରିଲେ, ଏତକି କଅଣ ଯଥେଷ୍ଟ ନୁହେଁ ?

ହୁଏତ ସେ ଯଦି ଦେଖିଥାଆନ୍ତେ ଯେ ଭୃତ୍ୟ କୁକୁରକୁ ଆଉଁସି ଦେଉଛି, ଅବା କୁକୁର ଭୃତ୍ୟ ହାତରେ ଖେଳୁଛି, ତାହାହେଲେ ବୋଧହୁଏ ସେ ପୁଅକୁ ତା' ନିଜ ବାଟରେ ଯିବା ପାଇଁ ଛାଡ଼ି ଦେଇଥାଆନ୍ତେ । କିନ୍ତୁ ତା' କଣ ହେଲା ? ଯେତେଦୂର ସମ୍ଭବ ସେ ଦେଖିଲେ ଯେ ଭୃତ୍ୟ ତା'ର ଅବସର ମୁହୂର୍ତ୍ତର ଆପଣା ହକ୍ ବଢ଼ିପିଆ ଚଳେଇଛି, ଏବଂ କୁକୁର ଶ୍ୟାମଳକୁଞ୍ଜରେ ତା'ର ନିତ୍ୟକର୍ମ ହାଗ ଦେଇ ଅସୁଛି, ଅଶ୍ଳୀଳତାର ତଳେ ବହଳିଆ ଗାରଟାଏ ଟାଣି ଦେଲା ପରି···

କଟକ

୮ ଅକ୍ଟୋବର, ୧୯୮୬

# ବନ ମୟୂର

ଡକ୍ଟର ମିସ୍ ସରୋଜାଙ୍କ ଗାଡ଼ି ଆଡ଼୍‌ଭୋକେଟ୍ ମିଷ୍ଟର ରାଓଙ୍କ ଘର ପୋର୍ଟିକୋରେ ପହଞ୍ଚିଲା । ଗାଡ଼ିର ଶବ୍ଦରୁ ମିଷ୍ଟର ରାଓ ଜାଣି ପାରିଲେ, କିଏ ଆସିଛି । କେବଳ ସରୋଜା ହିଁ ଗାଡ଼ିରେ ଏମିତି ବେଗ, ରୂପ ଆଣିପାରେ । ତାଙ୍କୁ ହସ ଲାଗିଲା । ସରୋଜା ବେଗବତୀ । ଆଇନା ଟେବୁଲ ଆଗରେ ଛିଡ଼ାହୋଇ ସେ ନିଜର ଚେହେରା ଦେଖିନେଲେ, ମୁଣ୍ଡବାଳ ସାଉଁଳେଇ ଆଣିଲେ,—ଏ ଚେହେରାରେ ଯଥେଷ୍ଟ ପୁରୁଷ-ପଣିଆ ଅଛି ବେଗବତୀର ଚ୍ୟାଲେଞ୍ଜ ଜିତିବା ପାଇଁ ।

"ଆଡ଼୍‌ଭୋକେଟ୍ ସାହେବ ଅଛନ୍ତି ?" ଏତିକି କହିସାରିଲା ପରେ ମିସ୍ ସରୋଜା ଅଯଥା ହସିଉଠିଲେ । ପ୍ରାୟ ଏମିତି ହସନ୍ତି ସେ । ଉଦ୍‌ଗାରିଲା ପରି ହସ,— ବୋଧହୁଏ କଥାକୁ ଠେଲି ଆଗରେ ପହଞ୍ଚାଇ ଦେବାପାଇଁ, ଲୋକଙ୍କ ମନଧ୍ୟାନ ଟାଣି ଆଣିବା ପାଇଁ । ଶ୍ରୋତା ସ୍ୱତଃ ହସିଉଠେ, କଥା ବଢ଼ି ଚାଲେ ।

ମିସ୍ ସରୋଜା ହାଲୁକା ଗୋଲାପୀ ରଙ୍ଗର ଶାଢ଼ୀ ପିନ୍ଧିଛନ୍ତି । ତେଲ ଦିଆ ହୋଇ ନ ଥିବା ମୁଣ୍ଡବାଳ ବନ୍ଧା ହୋଇଛି ପଛକୁ, ଓ ଆଗକୁ କେଶଏ ଝୁଲି-ପଡ଼ୁଛି । ବଳିଷ୍ଠ ଗୋରା ହାତରେ ଘଣ୍ଟା ବନ୍ଧାହୋଇଛି, ଆର ହାତରେ ସୁନା ଚୁଡ଼ି ଦି'ପଟ, ପରିଷ୍କାର ଦାନ୍ତ ଦି'ପାଟି, ଚିକଣ ଚଉଡ଼ା କପାଳ, ଫୁଲିଲା ଗାଲରେ କାନର ଲମ୍ବା ସୁନାର ଦୁଲ୍ ବାଡ଼େଇ ହେଉଛି । ଓଠରେ ପ୍ରଶସ୍ତ ହସ, ଆଖିରେ ଚଞ୍ଚଳ ଚାହାଣୀ, ଓ ହାତ ଗୋଡ଼ରେ କାମ କରିବାର ବିପୁଳ ଉତ୍ସାହ । ମିସ୍ ସରୋଜା ଜୀବନକୁ ଭଲ ପାଆନ୍ତି,—ଗେହ୍ଲା କଲାପରି ନୁହେଁ, ହାତ ଧରି ଧେଇ ଧେଇ ନାଚିଲାପରି ।

ମିଷ୍ଟର ରାଓ ଉତ୍ତର ଦେଇ ନାହାନ୍ତି ଏତେବେଳଯାଏଁ । ସେ ଡେରିରେ ଉତ୍ତର ଦିଅନ୍ତି, କିମ୍ବା ଉତ୍ତର ବଦଳରେ ଗମ୍ଭୀର ଭାବରେ ହସିଦିଅନ୍ତି, ଓଠ ତଳକୁ ଟାଣିଆଣି । ସେହି ହସ ସାଙ୍ଗରେ ଆଖିର ତୀକ୍ଷ୍ଣ କୁତୁହଳୀ ଚାହାଣୀ

ସୂଚାଇ ଦିଏ ଯେ, ସେ ଜୀବନର ସବୁ ଧାର୍. ସବୁ ଗଡ଼ ସହିତ ଅଭ୍ୟସ୍ତ; ସେ ସବୁ ଜାଣନ୍ତି । ସେ ମଧ୍ୟ ଜୀବନକୁ ଭଲ ପାଆନ୍ତି, କିନ୍ତୁ ସେ ଭଲ ପାଇବାର ସବୁ ରଜନୀତି ତାଙ୍କୁ ଜଣା । ତେଣୁ ସେ ଆମୋଦ ପାଆନ୍ତି ପ୍ରଚୁର, ଅଭିବ୍ୟକ୍ତିର ଅବକାଶ ନ ଥାଏ ।

କେତେବେଳେ ମିସ୍ ସକ୍ସେନା ସୋଫା ଉପରେ ବସିଯାଇଲା ପରେ ମିଷ୍ଟର ରାଓ ସିଗାରେଟ୍ କେସ୍‌ରୁ ସିଗାରେଟ୍‌ଟିଏ କାଢ଼ି ସସ୍ମିତ ବଦନରେ କହିଲେ, "ଓ୍ୱେଲ୍ କମ୍" ଓ ହଠାତ୍ ମନେପଡ଼ିଲା ପରି ସିଗାରେଟ୍ କେସ୍ ମିସ୍ ସକ୍ସେନାଙ୍କ ଆଡ଼କୁ ବଢ଼ାଇଲେ । ମିସ ସକ୍ସେନା ତାଙ୍କ ସ୍ୱାଭାବିକ ହସ ଉଚ୍ଛୁଳାଇ ଦେଇ କହିଲେ, 'ଧନ୍ୟବାଦ, ମୁଁ ଛାଡ଼ି ଦେଇଛି । "ଏଁ୍ୟା" କହି ମିଷ୍ଟର ରାଓ ଆଖିପତା ଦୁଇ ତିନିଥର ପକାଇ ସେଇଠି ଛିଡ଼ାହୋଇ ରହିଲେ ଓ ଆଶ୍ଚର୍ଯ୍ୟର ଭଙ୍ଗୀରେ କହିଲେ "ଛାଡ଼ି ଦେଇଛନ୍ତି ? ମାନେ ପୁରାପୁରି ଛାଡ଼ି ଦେଇଛନ୍ତି ? ସବୁ ତାହାହେଲେ ଛାଡ଼ିଦେବେ ଏମିତି !!" ତା ପରେ ମିଷ୍ଟର ରାଓ ପାଖକୁ ଚାଲି ଆସି କେସ୍‌ଟିକୁ ଅତିଥିଙ୍କ ଆଗରେ ଧରି ରଖିଲେ ଓ ଝୁଙ୍କିପଡ଼ି ତାଙ୍କ ଆଡ଼କୁ ଦୁଷ୍ଟ ଚାହାଣୀରେ ଚାହିଁଲେ ।

"ଉଃ, —ଅସମ୍ଭବ ଆପଣ" କହି ମିସ୍ ସକ୍ସେନା ସିଗାରେଟ୍‌ଟିଏ ଆଣି ଓଠରେ ଲଗାଇଲେ । ତାଙ୍କ ମୁହଁରେ ସାମାନ୍ୟ ନରମ ଭାବ ଫୁଟି ହୋଇଗଲା,—ମାନିନେଲା ପରି, ହାରିଯିବାର ଆନନ୍ଦ ପାଇଲା ପରି । କିନ୍ତୁ ଖାଲି ସେହି ମୁହୂର୍ତ୍ତଟା । ମିଷ୍ଟର ରାଓ ଅତି ପାଖରେ ଛିଡ଼ା ହୋଇଥିଲେ ସେତେବେଳେ । ତାଙ୍କ ଦେହରୁ ଇଉ-ଡି-କୋଲନ୍ ଓ ସିଗାରେଟ୍ ଧୂଆଁ ମିଶାମିଶି ବାସ୍ନା ଝସୁଥାଏ, ତାଙ୍କର ଲମ୍ବା ସାବନା ମୁହଁରେ ଓଠ ଦୁଇଟା କଁଆ, ନାଲିଆ ଦେଖା ଯାଉଥାଏ, ତାଙ୍କର ବଡ଼ ଶିଥିଳ ହାତରେ ମୁଦିର ନାଲିଆ ପଥର ଜଳୁଥାଏ ଦପ୍ ଦପ୍ କରି ।

ଖାଲି ସେହି ମୁହୂର୍ତ୍ତଟା । ତା'ପରେ ମିସ୍ ସକ୍ସେନା ସଜାଡ଼ି ହୋଇ ଗଲେ । ମନକୁ ଆସିଲା ଯେ, ମିଷ୍ଟର୍ ରାଓ ସୁନ୍ଦର ନୁହେଁ । ମନେପଡ଼ିଲା ପୁରୁଷ ଦେହର କଦର୍ଯ୍ୟ, ହସପିଟାଲରେ ସେହି କୁତ୍ସିତ ଦେହର ଝଗଣିତ ରୂପ । ଅସଯତ ଭାବନାକୁ ବେକଦେଇ ମିସ୍ ସକ୍ସେନା ସିଗାରେଟ୍ ଜୋରରେ ଟାଣିବାକୁ ଲାଗିଲେ ଓ କହିଲେ, "ଭାରି କ୍ଳାନ୍ତ ଲାଗୁଛି ସତେ, ଡାକ୍ତର ହେବା ଜୀବନରେ ସବୁଠୁଁ ବଡ଼ ଅଭିଶାପ ।"

"ସତେ ? ମିସ୍ ସକ୍ସେନାଙ୍କର ପୁଣି କ୍ଳାନ୍ତ ଆସିଲା କେବେଠୁଁ ?" ମିଷ୍ଟର ରାଓ ପଚାରିଲେ । ସେ ସକ୍ସେନାଙ୍କ ପାଖରୁ ଦୂରେଇଗଲେଣି, କିନ୍ତୁ ବସୁନାହାନ୍ତି । ଚାରିଆଡ଼କୁ ଘୂରି ଘୂରି ଚାହୁଁଛନ୍ତି । ତା'ର କାରଣ ସେହି ଦୁର୍ବୋଧ୍ୟ ଚାହାଣୀ ମନର

ଗୋଟିଏ ନିର୍ଦ୍ଦିଷ୍ଟ ଭାବକୁ ଉଡ଼ାଇଦେବାକୁ ଚେଷ୍ଟା କରୁଥାଏ । ମିସ୍ ସରୋଜାଙ୍କ ପାଖରେ ଛିଡ଼ା ହେଲାବେଳେ ତାଙ୍କ ଆଖିରେ ପଡ଼ିଥିଲା ସରୋଜାଙ୍କର ମୁହଁର ଚମଡ଼ା,—ସିଠା କାଠୁଆ ଚମଡ଼ା, ଅସଂଖ୍ୟ ଛିଦ୍ର ସେଥିରେ । ମିଷ୍ଟର୍ ରାଓ ନିଜକୁ ବୁଝାଇଲେ ଯେ, ଡାକ୍ତରାଣୀ ସରୋଜା ଯୁବତୀ ନୁହେଁ, ଲକ୍ଷ୍ମୀ ପିଲା ନୁହେଁ; କିନ୍ତୁ ତା'ର ପ୍ରାଣ ଅଛି । ଯୌବନ ତା'ର କଥାରେ, ତା'ର ହସରେ, ତା'ର ଭଙ୍ଗୀରେ । ହେଲେ ସେହି ଚର୍ମଗୁଣ୍ଡ, ସେହି ନାସ୍ତିଭାବର ଛବି ତାଙ୍କ ମନରୁ ଯାଉ ନ ଥାଏ । ଗୃହିଣୀ ଥର ଥର କରି ଫେରି ଆସୁଥାଏ ସରୋଜାଙ୍କ ଆଡ଼ୁ, ଅନ୍ୟଆଡ଼େ ଆଶ୍ରା ପାଇବ ବୋଲି ।

ମିସ୍ ସରୋଜା ଉଠିପଡ଼ି ବହିଥାକ ଆଡ଼କୁ ମୁହାଁଇଲେ । ଥାକ ଉପରେ ଥୁଆ ହୋଇଛି ବୁଦ୍ଧଙ୍କର ମୂର୍ତ୍ତି, ତଳେ ଡିଟେକ୍‌ଟିଭ ନଭେଲ୍, ବିଦେଶୀ ଛବିବହି ଓ ମଝିରେ ଖଣ୍ଡେ ଖଣ୍ଡେ ଆନ୍ତର୍ଜାତୀୟ ବେଷ୍ଟ ସେଲର୍ । ମିସ ସରୋଜା ବେଶି ସମୟ ଗୋଟାଏ ଜାଗାରେ ବସିପାରନ୍ତି ନାହିଁ । ସବୁଆଡ଼କୁ ମୁହାଁନ୍ତି, ସବୁଥିରେ ହାତ ଲଗାନ୍ତି । ସେ ଯେପରି କି ତାଙ୍କ ହାବଭାବରେ ଦେଖାଇଦେଲେ ଯେ, ସେ କ୍ଳାନ୍ତ କଥାଟା କହିପକାଇଥିଲେ ଅନ୍ୟମନସ୍କ ହୋଇ । କହିଲେ, "କଣ ସବୁ ନୂଆ ବହି କିଣିଛନ୍ତି ? ମୁଁ ଏବେ ଆମ ଡକ୍ଟର ଜଗନ୍ନାଥଙ୍କ ପାଖରୁ ସମରସେଟ୍ ମ'ମ୍‌ଙ୍କର ଖଣ୍ଡେ ନୂଆ ବହି ଆଣିଥିଲି, ଚମତ୍କାର ଲେଖା, ଫିମେଲ କ୍ୟାରେକ୍ଟର୍ ଏତେ ସୁନ୍ଦର ଫୁଟିଉଠିଛି— ।"

ମିଷ୍ଟର ରାଓ ହୋ ହୋ ହୋଇ ହସିଉଠିଲେ । ଆଉ ଜଣଙ୍କର ଉତ୍ସାହ ଭାଙ୍ଗିବାକୁ ହେଲେ ସେ ପ୍ରଥମେ ହସନ୍ତି ଏମିତି । ବିଶେଷତଃ ମିସ୍ ସରୋଜାଙ୍କ ପାଖରେ ଏହି କାଇଦାଟି ବେଶ୍ ଚଳେ । ଉତ୍ତେଜନାରେ ସେ ଅଧିକ ପ୍ରାଣବନ୍ତ ହୋଇଉଠନ୍ତି, ଯୁକ୍ତି ଗଢ଼ିଲେ, କଥା ଜମେ । ବେଳକୁ ଯୁକ୍ତି ଉଡ଼ିଯାଏ, ରହିଯାଏ ରଙ୍ଗ, ରସ, ଆମୋଦ । ସାନ୍ଧ୍ୟ ବିହାରର ଉଦ୍ଦେଶ୍ୟ ସାର୍ଥକ ହୁଏ ।

ମିଷ୍ଟର୍ ରାଓ ଆରମ୍ଭ କଲେ, "ସମର୍‌ସେଟ୍ ମ'ମ୍ ! ସେ କେଉଁଠି ବୁଝିବ ନାରୀଚରିତ ? ଯେ ବାହା ହୋଇନାହିଁ, ଗୋଟିଏ ସ୍ତ୍ରୀକୁ ଘନିଷ୍ଠ ପାଖରେ ପାଇନାହିଁ, ସେ କେମିତି ବୁଝିବ ନାରୀର ସତ ରୂପ କ'ଣ ?"

"ଯଥା ଆପଣ,—" ମିସ୍ ସରୋଜା ଥଟ୍ଟା କଲେ ।

"ନିହାତି ସତ । ହେଲେ ସେ ରୂପକୁ ବେଶି କରିକି ନ ଦେଖିବା ଭଲ । ଦେଖିଲେ ସେ କାହିଁର କାବୋଧତା ହିଁ ଆଖିରେ ପଡ଼ିବ ।"

"ସତେ ?"

"ଅବଶ୍ୟ ବିଶେଷ କେତେ ଜଣଙ୍କୁ ଛାଡ଼ି ।"

ଦୁହେଁ ହସିଉଠିଲେ । ଆଦରେ କମିଲା ଏବଂ ଉଷ୍ମମକୁ ବଢ଼ାଇବା ଲାଗି କଫିର ଟ୍ରେ ଆସିଗଲା ଯଥା ସମୟରେ । ମିଷ୍ଟର ରାଓ ସୋଫାରେ ବସି କଫି ତିଆରି କଲେ । ମିସ୍ ସରୋଜା ଆଗରେ ଥିବା ଗଦି ଚଉକିରେ ବସିଲେ ।

ମିସ୍ ସରୋଜା କିଛି ଭାବିଲା ପରି ହୋଇ ମୃଦୁ ମୃଦୁ ହସି କହିଲେ, "ସତରେ ମିଷ୍ଟର୍ ରାଓ, ମୁଁ ଭାବେ ସ୍ତ୍ରୀ ଲୋକମାନେ ବେଶି ନିର୍ବୋଧ । ଗୋଟିଏ ମଜା କଥା କହିବି,—ଶୁଣିବେ ?"

"ନିଶ୍ଚୟ, ନିଶ୍ଚୟ", କଫି କପ୍‌ରେ ଚାମୁଚ୍ ବୁଲାଇ ବୁଲାଇ ମିଷ୍ଟର୍ ରାଓ କହିଲେ । ମିସ୍ ସରୋଜାଙ୍କ କଥାରେ ମଜା ଯାହା ଥାଉ ନ ଥାଉ, ତାଙ୍କର କହିବାର ଢଙ୍ଗ ନିଆରା । ମିଷ୍ଟର ରାଓ ଉତ୍ସୁକ ହୋଇଲେ, "କୁହନ୍ତୁ ନା—"

ମିସ୍ ସରୋଜା ଗଳ୍ପ ଯୋଡ଼ି ଆରମ୍ଭ କଲେ, "ଆମ ପଡ଼ାରେ ପରେଶବାବୁ ବୋଲି ଜଣେ ଭଦ୍ରଲୋକ ଅଛନ୍ତି । ସେକ୍ରେଟାରିଏଟ୍‌ରେ କାମ କରନ୍ତି, କିଛି ଦୁଇଶ ତିନିଶ ଟଙ୍କା ପାଆନ୍ତି । ଆମ କ୍ୱାର୍ଟର୍ସ ପଛଆଡ଼େ ସେଇ ଯେଉଁସବୁ ଛୋଟ କ୍ୱାର୍ଟର୍ସ ଅଛି, ତା'ର ଭିତରୁ ଗୋଟିକରେ ଥାଆନ୍ତି । ସ୍ତ୍ରୀଙ୍କ ନାଁ ରତ୍ନାବଳୀ ।"

"ବାଃ, ଭାରି ସୁନ୍ଦର ନାଁ ତ," ମିଷ୍ଟର ରାଓ ଆଗ୍ରହ ଦେଖାଇଲେ ।

"ସୁନ୍ଦର କଅଣ, ରୋମାଣ୍ଟିକ୍ ! ମଜା କଥା ଆସୁଛି ପଛରେ, ଶୁଣନ୍ତୁ ନା—।" ମିସ ସରୋଜା କହିଚାଲିଲେ, "ଏହି ରତ୍ନାବଳୀଙ୍କର ଗୁଡ଼ିଏ ରତ୍ନ । ଚାରି ଝିଅ, ତିନି ପୁଅ । ଥରେ ସେ ମୋ ପାଖକୁ ଆସିଥିଲେ ଦେହ ଦେଖାଇବାକୁ । ଦେଖିଲି ଯେ ସେ ଦେହ ପିଲା ଜନ୍ମ କରି ଓ ପିଲାଙ୍କ ତଳେ ଖଟି ଭାଙ୍ଗି ଉଜୁଡ଼ିଯାଇଛି । ସହାନୁଭୂତି ଦେଖାଇଲି, କହିଲି,—'ଅପରେସନ୍ କରି ନେଉ ନାହାନ୍ତି ?' ସେ-କଥା ପଡ଼ୁ ପଡ଼ୁ ବିଚାରୀ କାନ୍ଦି ପକାଇଲେ, କହିଲେ,—'ସେଇଆ କରି ଦିଅନ୍ତେ ଭଲ । କିନ୍ତୁ ତା' କଅଣ ହୋଇପାରିବ ?' ଦୟା ହେଲା, ଭାବିଲି ସେକଥା ପରେ, ଅନ୍ତତଃ ଏଙ୍କୁ ଜନ୍ମନିୟନ୍ତ୍ରଣରେ କେତୋଟି କଥା ଶିଖାଇବାକୁ ହେବ ।"

"ଫ୍ୟାମିଲି ପ୍ଲାନିଂ ଏକସ୍‌ପର୍ଟ୍ ଯେତେବେଳେ" କହି ମିଷ୍ଟର ରାଓ ଅଧା ହସଟିଏ ହସିଦେଲେ ।

"ସେ ଯାହା ହେଉ, ମୁଁ ତାଙ୍କୁ ଜନ୍ମନିୟନ୍ତ୍ରଣର ମୂଳକଥା କେତୋଟି ବତାଇଲି । ଆଗ୍ରହରେ ଶୁଣୁଥାନ୍ତି ସେ, ମନୋଯୋଗୀ ଛାତ୍ରୀ ପରି । କହିଲି ନିୟମିତ ଭାବରେ ପ୍ରତି ମଙ୍ଗଳବାର ନ ହେଲେ ପ୍ରତି ଶୁକ୍ରବାର ଆସିବାକୁ, ମୋର

ଫୁ ସମୟରେ । କାନ୍ଦ କାନ୍ଦ ହୋଇ ବ୍ୟଥାଭରା କଣ୍ଠରେ ସେ କହିଲେ,—ଅସମ୍ଭବ । ପିଲାଙ୍କୁ ଘଣ୍ଟାଏ ଛାଡ଼ି ଆସିହେବ ନାହିଁ । ଏଇ ଆସିଛି ଯେ, ବଡ଼ ପିଲାଙ୍କୁ ସେ ନେଇଯାଇଛନ୍ତି ଏକ୍‌ଜିବିସନ୍‌କୁ । ଆଉ ପଡ଼ୋଶୀ ମିସେସ୍ ବର୍ମାଙ୍କୁ ନେହୁରା କରି କହି ଆସିଛି ସାନ ଦୁଇଜଣଙ୍କୁ ଦେଖିବାକୁ । ସାନ ପୁଅଟା ବେମାରିଆ, ଖାଲି କାନ୍ଦୁରା । ଆଉ ତା' ଉପରେ ଭଉଣୀ ଭାରି ଦୁଷ୍ଟ ହୋଇଛି । ଦଉଡ଼ବେଳେ ପିଟିବ ଭାଇକୁ, ଦିନଯାକ କନ୍ଦାଆ ଲଗେଇଥିବେ,—ଇତ୍ୟାଦି ଇତ୍ୟାଦି ।"

ମିଷ୍ଟର ରାଓ ନାରାଣ ହେଲାପରେ ଜଣା ଯାଉଥିଲେ । କହିଲେ "କଫି ଥଣ୍ଡା ହୋଇଯାଉଛି, ଖାଇଦିଅନ୍ତୁ ।"

କିନ୍ତୁ ମିସ୍ ସକ୍ସେନା ନିଜର କାହାଣୀ ଉପଭୋଗ କରୁଥିଲେ । ଅଦମ୍ୟ ଉତ୍ସାହ ନେଇ ଗପିଚାଲିଛନ୍ତି । କଫି କପ୍‌ରେ ଟିକିଏ ମୁହଁ ଦେଇ କହିଲେ, "ଶେଷକୁ ଏଇଆ ହେଲା ଯେ, ମୁଁ ଦିନେ ଦିନେ ଲଞ୍ଚ୍‌ରୁ ଫେରିଲା ବେଳକୁ ତାଙ୍କ ଘରଆଡ଼େ ଟିକିଏ ପଶିଯାଏ, ରତ୍ନାବଳୀଙ୍କର ପାଠପଢ଼ା ଅଗେଇଦେବାକୁ । ଆଉ ପ୍ରାୟ କଣ ଦେଖେ ଜାଣନ୍ତି ? ସାନରୁ ଗୋଟାଏ ଲଙ୍ଗଳା ହୋଇ କାନ୍ଦୁଥିବ । ଆଉ ଗୋଟାକ ଉପରେ ମାଡ଼ ବର୍ଷୁଥିବ । ନ ହେଲେ ମାଆ ପିଲାଙ୍କୁ ଓ ନିଜକୁ ଅଭିଶାପ ଦେଉଥିବେ,— 'ତମେ ସବୁ ମରିଯାଆନ୍ତ କି ଗୋଟାକୁ ଗୋଟା ! ନ ହେଲେ ମୁଁ ମରିଯାଆନ୍ତି, ଜଞ୍ଜାଳ ଯାଆନ୍ତା ।' ମିସ୍ ସକ୍ସେନା ହସିପକାଇ କହିଲେ, "କଣ ଆଉ କହିବି ସେ କଥା, କାନରେ ଶୁଣିହେବ ନାହିଁ । ଯାହାହେଉ ମୁଁ ଭିତରକୁ ଯାଏ, ଉପଦେଶ ପରାମର୍ଶ ଦେଇ ଫେରିଆସେ । ଆଖିରେ ପଡ଼େ ମଇଳା ବିଛଣା ପଡ଼ିହୋଇଥିବା ଲାଗାଲାଗି ଯୋଡ଼ିଏ ଖଟ ଓ ତା ଉପରକୁ ଅଲଗା ଲଗା ସ୍ୱାମୀ ସ୍ତ୍ରୀଙ୍କର ଯୋଡ଼ି ଫଟୋ ।

"ଦିନେ କ'ଣ ହେଲା ନା,—ସେଦିନ ଛୁଟି ଦିନ ହେବ ପରା,—ମୁଁ ତାଙ୍କ ଦାଣ୍ଡ ଦୁଆର ମୁହଁରେ ପହଞ୍ଚିଛି କି ନାହିଁ, ସେହି ସମୟରେ ଶୁଣିଲି ସ୍ତ୍ରୀ କଣ୍ଠର କ୍ରନ୍ଦନ ସ୍ୱର ଓ ତା' ସାଙ୍ଗରେ ଜଣେ ପୁରୁଷଙ୍କର ଚତ୍କାର । ଚତ୍କାର ଭିତରେ ଶୁଭୁଛି 'କିଛି ବୁଝୁନାହଁ ତୁମେ...ମୁଁ ଏ ଘର ଛାଡ଼ି ପଳେଇବି...ମୁଁ ଏ ଘର ଛାଡ଼ି ପଳେଇବି ।' ଭାବିଲି ଫେରି ଆସିବି, ତା'ପରେ କୌତୂହଳ ଦବାଇ ନ ପାରି ଭିତରକୁ ଗଲି । ମୋ ଆସିବା ଶବ୍ଦ ସେମାନେ ଶୁଣିପାରି ନାହାନ୍ତି । ଆପଣା ଭିତରେ ମହାଭାରତ ଯୁଦ୍ଧ ଲାଗିଛି,—ଶୁଣିବେ କେଉଁଠୁ ? ଯାହାହେଉ ମୁଁ ଯାଇ ଯାହା ଦେଖିଲି, କାଠ ହୋଇଗଲି । ରତ୍ନାବଳୀ କାନ୍ଦଣା ସହ ଠୋ ଠୋ କରି କାନ୍ଥରେ ମୁଣ୍ଡ ପିଟୁଛନ୍ତି ଓ କହୁଛନ୍ତି, 'ହେ ଭଗବାନ୍ ! ହେ ଭଗବାନ୍ ! ନେଇ ଯାଅ ମୋତେ । ମୋର ପିଲାଛୁଆ ଘରସଂସାର କିଛି ଦରକାର ନାହିଁ ।' ଆଉ ତାଙ୍କ ସ୍ୱାମୀ ମହାଶୟ ମୁଣ୍ଡ ବାଳରେ ହାତ ଚଳାଇ 'ଓଃ' 'ଓଃ' 'ଓଃ' କହୁଛନ୍ତି ମଝିରେ

ମଟିରେ । ମୋତେ ହଠାତ୍ ଦେଖି ପକାଇ ଦୁଇଜଣଯାକ ସ୍ଥିର ହୋଇଗଲେ । ପରେଶ୍ ବାବୁ ବିବ୍ରତ ହୋଇ ଚଉକି ଖୋଜିବସିଲେ । ଆଉ ରତ୍ନାବଳୀ କାନ୍ଦୁରା ରଙ୍ଗା ମୁହଁରେ ବଳବଳ ହୋଇ ଚାହିଁଲେ ମୋ ଆଡ଼େ । ଦୁହେଁ ଜାଣିଲେ ଯେ, କିଛି ଲୁଚିଯାଇ ନାହିଁ ମୋଠୁଁ । କିନ୍ତୁ ରତ୍ନାବଳୀ ଉପଯୁକ୍ତ ସାକ୍ଷୀ ପାଇଲା ପରି ପୁଣି ଉଚ୍ଚ ସ୍ୱରରେ ଆରମ୍ଭ କଲେ, 'ବୁଝିଲେ, ମୁଁ ଦିନସାରା ଖଟି ଖଟି ମରୁଥିବି, କାହାର ଟିକିଏ ଦୟାମାୟା ନାହିଁ । ଆଉ ସେଥିରେ ଝିଅ ଖଣ୍ଡିକ ମୋତେ ଦି'ପଦ କହିବ । ମୁଁ କହିଲାରୁ ସେ ଆହୁରି ଦି'ପଦ କହିବେ । ମୋତେ ନେଇ ଯାଆନ୍ତୁ ଡାକ୍ତରଖାନା, ମୁଁ ସେଇଠି ସଞ୍ଜ ରହିବି । ସେ ପଅର ଦିନ ଯାଉଛନ୍ତି ବମ୍ବେ, ମୁଁ ବି ଡାକ୍ତରଖାନା ଚାଲିଯିବି । ଏ ପିଲା ତାଙ୍କର ଭାଗ୍ୟ ନେଇ ରହିବେ, ମୋର କଣ ଅଛି— ।

"କଥାର ଗତି ବଦଳାଇବା ପାଇଁ ମୁଁ ଭଦ୍ରଲୋକଙ୍କ ଆଡ଼କୁ ଅନାଇ କହିଲି, 'କଣ ବମ୍ବେ ଯାଉଛନ୍ତି ? ସରକାରୀ କାମରେ ?' ଭଦ୍ରଲୋକଙ୍କୁ ମୁଁ ଆଗରୁ ଦେଖିଥିଲି ଥରେ ଦି'ଥର । ସାଦାସିଧା ମଣିଷଟିଏ, ଉଦାସିଆ ଗୃହାଣୀ । ସେ ମୁଣ୍ଡ ଝୁଙ୍କାଇ ଧୀର ଗଳାରେ କହିଲେ, 'ହଁ, ଏଇ ମାତ୍ର ପାଞ୍ଚ ଦିନପାଇଁ ଯାଉଛି । ଗୋଟାଏ କନ୍‌ଫରେନ୍‌ସର ଷ୍ଟାଫ୍ ହୋଇ ଯାଉଛି ।' କିଛି ନ ଭାବି ମୁଁ କହିଲି, 'ମିସେସ୍‌ଙ୍କୁ ସାଙ୍ଗରେ ନେଇ ଯାଉନାହାନ୍ତି ?' ପରେଶ ବାବୁଙ୍କ ଆଖି ଦୁଇଟା ଉଜ୍ଜ୍ୱଳ ହୋଇ-ଗଲା । ଭାଷାରେ ସାମାନ୍ୟ ତେଜ ଆଣି ସେ କହିଲେ, 'ମୁଁ ପରା ସେଇଆ ଲଗେଇଛି ତାଙ୍କୁ । ଶୁଣିଲେ ହେବ ତ— । କାହିଁକି ନା ଏମିତିକା ସୁବିଧା ଆଉ ମିଳିବ ନାହିଁ । ମୋର ଭଉଣୀ ଭିଣେଇ କାଲି ଆସି ପହଞ୍ଚିଛନ୍ତି ଏଠି । ତାଙ୍କ ପାଖରେ ପିଲାଯାକ ରହିଯାଆନ୍ତେ କିଛି ଦିନ ।' ତାଙ୍କ କଥା ନ ସରୁଣୁ ରତ୍ନାବଳୀ କହିଉଠିଲେ, 'ବମ୍ବେ ଯିବ ନା ଚୁଲିକୁ !'

ମିସ୍ ସରୋଜା ହସିଉଠିଲେ । କିନ୍ତୁ ମିଷ୍ଟର ରାଓ ହସିଲେ ନାହିଁ । ତାଙ୍କୁ ସେତେବେଳକୁ ନିହାତି ବିରକ୍ତ ଲାଗିଲାଣି । ମିସ୍ ସରୋଜା ଏପରି ଗୋଟାଏ ରସହୀନ କଥା କହିବେ ବୋଲି ତାଙ୍କର ଆଦୌ ଧାରଣା ନ ଥିଲା । ତାଙ୍କ ମନରେ ସନ୍ଦେହ ଆସୁଥାଏ,—ସ୍ତ୍ରୀଙ୍କର କିଛିତ ହୃଦୟ ପରିବର୍ତ୍ତନ ହୋଇଛି କି ?

ମିସ୍ ସରୋଜା ଟିକିଏ ଦମ୍ ନେଇ ପୁଣି କଥାର ଖିଅ ଧରିଲେ । "ତେବେ ଯାହାହେଉ, ମୁଁ କହିବା ହେତୁ ବା ଆଉ କେଉଁ କାରଣରୁ ସେମାନେ ବମ୍ବେ ଗଲେ । ତା'ର କେତେଦିନ ପରେ ମୁଁ ସେ ବାଟେ ଗଲାବେଳେ ଦେଖିଲି ଯେ, ଅନ୍ୟମାନେ ତାଙ୍କ ଘରେ ଅଛନ୍ତି, ତାଙ୍କ ଭଉଣୀ ଭିଣେଇ ହେବେ ପରା । ପଚାରିଲି ନାହିଁ, ଅନୁମାନ କରିନେଲି ଯେ ସେମାନେ ବମ୍ବେ ଯାଇଛନ୍ତି ! ଅନୁମାନ କରିବାକୁ ଭଲ ଲାଗୁଥିଲା, କାରଣ ମନେ ହେଉଥିଲା ଯେ, ସେଥିରେ ମୋର କିଛି ହାତ ଅଛି ।

"ତା'ପରେ ମୁଁ ବହୁତ ଦିନ ସେଆଡ଼େ ଯାଇନାହିଁ । ମୁଁ ଲକ୍ଷ୍ନୌ ଯାଇଥିଲି, ତା' ଛଡ଼ା ଏଣୁତେଣୁ ଅନେକ କାମ ପଡ଼ିଯାଇଥିଲା । ଏଇ କେତେଦିନ ତଳେ ପୁଣି ରତ୍ନାବଳୀଙ୍କ ସାଙ୍ଗରେ ଦେଖା ହେଲା ତାଙ୍କ ଘରେ । ମୋତେ ଦେଖି ଟିକିଏ ହସି-ଦେଲେ । ସେ ହସ ଭାରି ମିଠା ଓ କରୁଣ ଲାଗିଲା । ମୋର ପ୍ରଥମ ପ୍ରଶ୍ନ ହେଲା,— 'ବମ୍ବେ ଯାଇଥିଲେ ବୋଧହୁଏ ? କେମିତି ଲାଗିଲା ?' ସେ କିଛି ନ କହି ରହସ୍ୟର ସୂଚନା ଦେଲାପରି ମୋତେ ଭିତରକୁ ଡାକିଲେ । ମୁଁ ଚଉକିରେ ବସିଲି ଓ ସେ ଖଟ ଉପରେ ବସି ଖଟ ବାଡ଼ରେ ହାତ ଗୁଡ଼ାଇ ଆଣି ତା ଉପରେ ଚିବୁକ ରଖି ମୋ ଆଡ଼କୁ ଅନେଇ କହିଲେ, 'କଣ କହିବି ?'

ମିସ୍ ସକ୍ସେନା ଗଦି ଚଉକିର ଗୋଟିଏ କୋଣକୁ ଢଳିପଡ଼ିଲେ, ଓ ମୃଦୁ ହସି ମିଷ୍ଟର ରାଓଙ୍କ ଆଡ଼କୁ ଚାହିଁ କହିଲେ, "ଆକ୍ଟିଙ୍ଗ କରି ପାରେ କି ? କହିବି, ଠିକ୍ ରତ୍ନାବଳୀ ଯେମିତି କହିଲେ ?" ମିଷ୍ଟର ରାଓ ନୀରବରେ ମୁଣ୍ଡ ଟୁଙ୍ଗାରିଲେ । ସକ୍ସେନାଙ୍କର ଏହି ଅଭିନବ ବ୍ୟବହାର ତାଙ୍କ ମନକୁ ଆନ୍ଦୋଳିତ କଲା ।

ମିସ୍ ସକ୍ସେନା ଆଖି ବୁଜିଦେଲେ ଅଳ୍ପ ସମୟ । ଏବଂ କଳ୍ପନାରେ ଛବି ଆଙ୍କିଲା ପରି ଆରମ୍ଭ କଲେ, ରତ୍ନାବଳୀ କହୁଛନ୍ତି—

'ଜାଣନ୍ତି, ମୁଁ ଏଇ ପ୍ରଥମ ଥର ତାଙ୍କ ସାଙ୍ଗରେ ଏକାଠି ଗଲି ବାହାରକୁ । ଅବଶ୍ୟ ଘରକୁ ଯାଇଛି କେତେଥର, କିନ୍ତୁ ସାଙ୍ଗରେ ପିଲାଏ ଥିଲେ ଓ ଅନ୍ୟମାନେ ।

'ସତ କହୁଛି, ମୁଁ ଯିବାକୁ ଚାହୁଁ ନ ଥିଲି । ଆପଣ ଯେତେବେଳେ କହିକରି ଗଲେ, ତା'ପରେ ପିଲାଏ ବି ଲାଗିଲେ । ସେଇ ବଡ଼ ଝିଅଟା, ଦମ୍ ଜଣେ କି ସେ ! ରାଗି ଯିନା, କିନ୍ତୁ ମାଆକୁ ଭାରି ଦେଖିପାରେ । କହିଲା—ମାଆ, ତମକୁ ନିଶ୍ଚୟ ବମ୍ବେ ଯିବାକୁ ହେବ, ଆମେ ଆମର ଚଳିଯିବୁ, କେଇଟା ଦିନ କଥା । ଆଉ ସମସ୍ତେ ତା କଥାରେ ହଁ କଲେ । ଶେଷକୁ ସାନପୁଅ ସମସ୍ତଙ୍କ ସାଙ୍ଗରେ ମିଶି ମୁଣ୍ଡ ହଲାଇଲା, କହିଲା,—ମାଆ, ମୋ ପାଇଁ ବମ୍ବେରୁ ଗୋଟାଏ ବଡ଼ ନାଲିଆ ଘୋଡ଼ା ଆଣିବ । ନଣନ୍ଦ ନଣନ୍ଦେଇ ରାଜି ହୋଇଗଲେ ପିଲାଙ୍କୁ ରଖିବାକୁ । ସେମାନେ ମଧ୍ୟ ମୋତେ ଜିଗର କଲେ ଯିବାପାଇଁ । ଅଗତ୍ୟା ମୁଁ କହିଲି,—ହଉ, ସମସ୍ତେ ଯେତେବେଳେ କହୁଛନ୍ତି ମୁଁ ଯିବି, ମୋର କୋଉ କଥାରେ ମତାମତ ଅଛି ନା କଅଣ— ।

'ହେଲେ ମନଟା ଦୁଗୁଡ଼ୁଗୁଡ଼ୁ ହେଉଥାଏ, ଭଲ ଲାଗୁ ନ ଥାଏ । ସାନ ପୁଅ ତ ସହଜେ ଦୁର୍ବଳିଆ, ସବୁବେଳେ କାନ୍ଦିବ । ତା' କଥା କଣ କେହି ବୁଝିବେ ଭଲକରି ? ପିଲାମାନେ କଜିଆ କରିବେ । ମୁଁ ଯିନା ଥିଲି ବୁଝେଇ ଶୁଝେଇ ମାଡ଼

ଗାଳି ଦେଇ ତାଙ୍କ ସମ୍ଭାଳୁଥିଲି । ଅନ୍ୟମାନେ କଣ ପାରିବେ ? ଖାଲି ବ୍ୟସ୍ତ ହେବେ, ହଇରାଣ ହେବେ । ସତ କହୁଛି, ସିବାବେଳ ଯେତେ ପାଖେଇ ଆସୁଥାଏ, ମୋତେ ଦୁଃଖ ସେତେ ଲାଗୁଥାଏ । ପିଲାଙ୍କୁ କେବେହେଲେ ଛାଡ଼ିକରି ଯାଇ ନ ଥିଲି ଆଜିଯାଏଁ । ଶେଷକୁ ପ୍ଲାଟ୍‌ଫର୍ମରେ ସାନ ପୁଅଟା କାନ୍ଦିପକାଇଲା । ବଡ଼ଟିଏ ଦୁଇ-ଜଣ ହସୁଥାନ୍ତି, କିନ୍ତୁ ମୁଁ ଦେଖିଲି ଜଣକର ଆଖି ଛଳ ଛଳ ହୋଇ ଆସୁଛି । ଗାଡ଼ି ଛାଡ଼ିବାର କେତେବେଳଯାଏଁ ଅନେଇ ରହିଲି, ଶେଷକୁ ଅନେଇପାରିଲି ନାହିଁ,—ଆଖିରେ ଧୂଆଁ ଲାଗିଲା । ଗାଡ଼ୀ ଘୁଞ୍ଚିଗଲା ଧୀରେ ଧୀରେ, ପିଲାମାନେ ଲୁଚିଗଲେ । ମୁଁ ମୁହଁ ଫେରାଇଲି,—ମୁଁ ଯାଉଛି ବମ୍ବେ ।

'କେତେବେଳଯାଏଁ ମୋର ଖିଆଲ୍ ନ ଥିଲା । ମୁହଁ ଫେରାଇଲାରୁ ଦେଖିଲି ଯେ, ସେ ଡବାରେ ଆଉ କେହି ନାହାନ୍ତି, ସେ ଓ ମୁଁ ଏକା । ଆପଣ ହସିବେ ନିଶ୍ଚୟ, କିନ୍ତୁ ମୋତେ କେଜାଣି କେମିତି ଡର ଲାଗିଲା । ଠିକ୍ ଡର୍ ନୁହେଁ,—ମୁଁ କଣ ତାଙ୍କୁ ଡରେ ନା କଅଣ—, କେମିତି ଅଡ଼ୁଆ ଲାଗିଲା । ଏମିତି ଦିନ ଦି' ପହରେ ଏକୁଟିଆ ବସି ଦିହେଁ ଦିହିଁଙ୍କ ମୁହଁକୁ ଚାହିଁ ରହିବା, ହୁଏତ ବମ୍ବେ ପହଞ୍ଚିବାଯାଏଁ, —ଭାବିଲାବେଳକୁ ଅସ୍ୱସ୍ତି ଲାଗିଲା । ଇଚ୍ଛା ହେଲା ମୋ' ହାତ ଚୁଡ଼ି ତାଙ୍କ ମୁଣ୍ଡ ଉପରେ ପିଟିଦେବି । ସେତେ ଯେପରି ତାଙ୍କର ଏତେ ଫିକର ମୋତେ ଏକୁଟିଆ ଡବାକୁ ନେଇ ଆସିବାପାଇଁ । ମୁଁ ମୁହଁ ଏଡ଼େବଡ଼ କରି ବସିରହିଲି, କଥା କହିଲି ନାହିଁ, ହସିଲି ନାହିଁ ।

'ସେଦିନ ଖରା ନ ଥାଏ, ମେଘ ବି' ନଥାଏ । ଛାଇଛାଇଆ ପାଗ ହୋଇ-ହୋଇଥାଏ । ମୁଁ ଝରକା ଭିତର ଦେଇ ବାହାରକୁ ଅନେଇଲି । ଦେଖିଲି, କେତେ ବଡ଼ ବଡ଼ ଗହମ କ୍ଷେତ ଲମ୍ବିଛି କେଉଁଯାଏ । ଆଉ ଛୋଟ ଛୋଟ ମାଟିଘର ଦୂରୁ । କେତେବେଳେ ପାଖରେ ଦିଶି-ଯାଉଛି, ଗଛ ଗହଳରେ ଲାଗାଲାଗି ହୋଇ,—ରୋଷେଇ ଘର ଧୂଆଁ ଦେଖାଯାଉଛି, ମାଇପିଟିଏ ଘରୁ ବାହାରି ଆସି ଅନେଇଛି ଟ୍ରେନ୍‌କୁ କେବେ ନ ଦେଖିଲା ପରି । ଆଉ କେତେବେଳେ ଦେଖାଯାଉଛି କେଉଁ ଦୂରରେ, ଖେତ ସେ ମୁଣ୍ଡରେ ଆକାଶକୁ ଲାଗିକରି । ଅମ ଗାଆଁ ମନେ ପଡ଼ିଲା । ବାଡ଼ପଟେ ଅନେଇଲେ ଦେଖାଯାଏ ଯେତେ ଦୂରର ଗଛ, କେତେ ଲମ୍ବା ଖେତ, କେତେ ଦୂରର ଗାଆଁ । କେଡ଼େ ଶାନ୍ତ ସେଠି ! ମୋର ମନେହେଲା ମୁଁ ଦିଲ୍ଲୀର କାଗଜୀ ପଡ଼ାରୁ ପଳେଇଆସିଛି ସବୁଦିନ ପାଇଁ,—ଯେଉଁଠି ଖାଲି ବଖରା, ଖାଲି ମଣିଷ, ଖାଲି ପାଚିରୁଣ୍ଡ, ଅଶାନ୍ତ । ଇଚ୍ଛାହେଲା ହାତ ବଢ଼େଇ ଛୁଇଁଦିଅନ୍ତି ସେ ଘାସକୁ ସେ ଏକୁଟିଆ ପାଣିକଲୀ ସାଙ୍ଗରେ କଥାଭାଷା ହୁଅନ୍ତି, ତା ଦେହକୁ ଛୁଇଁ ଉଲୁମାଇ ଦିଅନ୍ତି । କଣ ଏମିତି ପିଲାଳିଆ ଭାବନା ସବୁ, କହିଲେ ଆପଣ ହସିବେ । କିନ୍ତୁ କହି-

ଦେବାକୁ ଇଚ୍ଛା ହେଉଛି । କହିଲେ ସିନା ଆପଣ ଜାଣିବେ, ଆପଣ ବୁଝିବେ ଯେ—ଯେ—।

ଏମିତି ଅନେଇଛି ଆଉ ଭାବୁଛି । ଏଇ ସମୟରେ ସେ ମୋ ଦେହରେ ହାତ ପକାଇଲେ, ମୁଁ ଚମକିପଡ଼ିଲି । ବିରକ୍ତ ହେଲି, ମନେହେଲା, ସେ ମୋତେ ଶାନ୍ତିରେ ଟିକିଏ ଭାବିବାକୁ ଦେବେ ନାହିଁ, ମୋ ମନକୁ ତା' ବାଟରେ ଛାଡ଼ିଦେବେ ନାହିଁ । ଚିଡ଼ିକରି କହିଲି,—କଅଣ ? ସେ ହସିଲେ, କହିଲେ—କଣ ଦେଖୁଛ ? ଉତ୍ତରର ଅପେକ୍ଷା ନ କରି ଗପିଲେ—ଭଲ ଲାଗୁନାହିଁ ଦେଖିବାକୁ ? ଛବିପରି ଲାଗୁଛି । ହେଇ ଦେଖିଲ ସେଠି ସେ ପାଣି ଟୁବ୍ରିଟିଏ । ଧଳା ଚଢ଼େଇ ହବୁ ଘେରିକରି ବସିଛନ୍ତି—, ହେଇ ଉଡ଼ିଗଲେ ଉଡ଼ିଗଲେ ଆକାଶ ଭିତରକୁ । କେତେ ରଙ୍ଗର ଘାସ, କେତେ କିସମର ପାଣି, କେତେ ରୂପ, କେତେ ଛାଇ । ଏଇଥିରେ କହୁଥିଲି ବମ୍ବେ ଆସିବି ନାହିଁ ବୋଲି ?

"ମୁଁ କିଛି କହିପାରିଲି ନାହିଁ । କିଛି ନ କହିଲେ ଭଲ, ସେ ଭାବନ୍ତୁ ଯାହା ଭାବିବେ । କିନ୍ତୁ ସେ ପୁଣି ସେମିତି କହିଚାଲିଲେ, ପିଲାଙ୍କୁ ଛବିବହି ଦେଖାଇଲା ପରି । ମିଛ କହିବି ନାହିଁ, ମୋତେ ତାଙ୍କ କଥା କେମିତି ନୂଆପରି ଲାଗୁଥାଏ । ଭଲ ଲାଗୁଥାଏ । ମୁଁ ତାଙ୍କ ଆଡ଼କୁ ନ ଅନେଇ ଅନେଇଥିଲି ବାହାରକୁ; କିନ୍ତୁ ମୋର ମନେ ହେଉଥାଏ ଯେ ତାଙ୍କ କଥାରେ ଦୃଶ୍ୟଗୁଡ଼ିକ ଆହୁରି ଫୁଟିଉଠୁଛି । ଆଉ ମନେ ହେଉଥାଏ ଯେ, ଆମେ ଦୁ' ଜଣ ତା'ରି ଭିତରେ କେଉଁଠି ଅଛୁ, ହେଇ ଗଛମୂଳେ ନ ହେଲେ ସେଇ ଝରଣା-ପାଣି ପାଖରେ । ମୋତେ ଲାଗିଲା ଯେ ମୁଁ ଭୁଲ୍ ଭାବିଥିଲି । ସେ ମୋର ଶାନ୍ତିକୁ ଭାଙ୍ଗି ଦେଇ ନାହାନ୍ତି, ଚହଲାଇ ଦେଇଛନ୍ତି । ଥିର ପାଣି ଚହଲି ଢେଉ ହୋଇଯାଇଛି, ଖୁସି ଲାଗୁଛି ।

'ଷ୍ଟେସନରେ ଗାଡ଼ି ରହୁଥାଏ, ପୁଣି ଚାଲୁଥାଏ । ସେ ସେମିତି ଗପି ଚାଲିଥାନ୍ତି, ଆଉ ମୁଁ ଶୁଣୁଥାଏ । କିନ୍ତୁ କେତେ ସମୟ ନ ଶୁଣିଲା ପରି ରହିବି ? ବେଳେବେଳେ ନିଜ ଅଜାଣତରେ ତାଙ୍କ ଆଡ଼କୁ ମୁହଁ ଫେରାଇ ହସିଦେଉଥିଲି ଟିକିଏ, ଆଉ ଦେଖୁଥିଲି ତାଙ୍କ ହସ, ତାଙ୍କର ସେ ଚାହାଣୀ,—ଚଦ୍ରା ଚାହାଣୀ, ସେବେକାର, ଯେତେବେଳେ ଆମେ ନୂଆ ବାହା ହୋଇଥିଲୁ । ସେ ଚାହାଣୀ କେମିତିକା ମୁଁ ବୁଝେଇ ପାରିବି ନାହିଁ,—ଆପଣ ହସିବେ ନାହିଁ—, ସେ ଚାହାଣୀ ଯେମିତି ଜଣାଇଦିଏ ଯେ, ମୁଁ ଗୋଟିକିଯାକ ତାଙ୍କର । ଭାରି ଅଳଜୁକ ଚାହାଣୀ ସତେ—"

ମିଷ୍ଟର ରାଓ ଭଲକରି ଶୁଣୁ ନ ଥିଲେ; ନଚେତ୍ ନାଷ୍ଟ୍ରାଣ କଥା ବୋଲି ମୂଳରୁ ତା'କୁ ମନ ଭିତରୁ କାଟି ଦେଇଥିଲେ । କିନ୍ତୁ ରତ୍ନାବଳୀର ଭ୍ରମଣକାହାଣୀ

ପଢ଼ିଲବେଳଠୁଁ ସେ ମିସ୍ ସରୋଜାଙ୍କ ଆଡ଼ୁ ଆଖି ଫେରାଇପାରୁ ନାହାନ୍ତି । ଡାକ୍ତରାଣୀ ସରୋଜା ଏତେ ନିପୁଣ ଅଭିନୟ କରିପାରେ ! ବୋଧହୁଏ ତାଙ୍କ କହିବା କଥାରୁ ରତ୍ନାବଳୀଙ୍କର ଲୁହେଁ, ସେ ନିଜେ ଖଞ୍ଜି ଦେଇଛନ୍ତି । ତାଙ୍କର କୁହାଣୀ କେତେ-ବେଳେ ନରମ ହୋଇଯାଉଛି, କେତେବେଳେ କରୁଣ ହୋଇଯାଉଛି, ଆଉ କେତେ-ବେଳେ ଲାଜରା ହୋଇଯାଉଛି । ତାଙ୍କର ସେ ଉଚ୍ଛୁଳା ହସ ନାହିଁ, ଜାକିଜୁକି ହୋଇ ଟୋପିଟିଆ ରେଖାଟିଏ ହୋଇ ରହିଯାଉଛି, ଓ ଦରକାର ପଡ଼ିଲେ ଖାଲି ଝରଣାର ଧାରାପରି ଟିକିଏ ଝରିଆସି ଥମିଯାଉଛି । ରତ୍ନାବଳୀ ସେମିତି ହସନ୍ତି ପରା । ସ୍ୱାମୀ-ସୁହାଗିନୀମାନେ ସେମିତି ହସନ୍ତି । ଡ୍ୟାମ୍ ଇଟ୍ ! ମିସ୍ ସରୋଜା ରୋମାଣ୍ଟିକ୍ ପାର୍ଟ୍ କରୁଛି ! ହେଲେ ଚମତ୍କାର କରୁଛି । ରୋମାନ୍‌ସ—ଭାବିଲାବେଳକୁ ମଜା ଲାଗୁଛି । ସେଥିରୁ ଅଧିକା ମିଳେ କଅଣ ? ରୋମାନ୍‌ସ-ଆଖିରେ ଦେଖିଲେ କଣ ସରୋଜାଙ୍କର ବୟସର ଭାର ଖସିଯାଆନ୍ତା, ତାଙ୍କ ମୁହଁର ଅସଂଖ୍ୟ ଛିଦ୍ର ଲୁଚିଯାଆନ୍ତା, ତାଙ୍କ କାଠୁଆ ସିଠା ଚମଡ଼ା ନରମ ହୋଇଯାଆନ୍ତା ? ନା ତାଙ୍କ ବେଢ଼ଙ୍ଗ ପୁରୁଷ-ହସ ଆଉ ରକମର ହୋଇଯାଆନ୍ତା ? ମିଷ୍ଟର୍ ରାଓ ସମ୍ଭାବତା ରୋମାନ୍‌ସ-ନାୟିକା ମିସ୍ ସରୋଜାଙ୍କୁ ଛଗୁଳେଇଲେ ମନେ ମନେ ଓ ଖୁସି ହେଲେ । କିନ୍ତୁ ଆଶ୍ଚର୍ଯ୍ୟ କଥା, ମିସ୍ ସରୋଜାଙ୍କ ଆଡ଼କୁ ଅନେଇଲେ ମନେ ହେଉଛି ଯେ, ସେ କେବଳ ଅଭିନୟ କରୁନାହାନ୍ତି, ତାଙ୍କୁ ପାର୍ଟ୍‌ଟା ଭାରି ଭଲ ଲାଗୁଛି । ତାଙ୍କ ସତ୍ତ୍ୱର କେଉଁ କୋଣରେ ରୋମାନ୍‌ସର ଧାଡପେ ରହିଯାଇଛି ନା କଣ ? ସେଇ କଣ ରତ୍ନାବଳୀ କାହାଣୀକୁ ଭାବର ଖୋରାକ୍ ଯୋଗାଉଛି ? ଭାବୁଭାବୁ ହସି ପକାଇଲେ ମିଷ୍ଟର୍ ରାଓ । ସେ ହସ ଯେପରି କି ସରୋଜାଙ୍କ ଅବଚେତନର ରୋମାନ୍‌ସ ଭୂତକୁ ତଡ଼ିଦେବାକୁ ଚାହୁଁଥାଏ,—ତୋର ସ୍ଥାନ ନାହିଁ ଏଠି, ଦୂର୍ ପଳା, ଦୂର୍ ପଳା । ଡାକ୍ତରାଣୀ ସରୋଜା ତାଙ୍କର ସ୍ୱାଭାବିକ ନିଜ ରୂପ ଧରି ରହନ୍ତୁ, ଯେଉଁଥିକୁ ମୁଁ ଚିହ୍ନିଛି, ସେଇ ମୋତେ ଆଦରେଇବ ।

ମିଷ୍ଟର୍ ରାଓଙ୍କର ହସରେ ମିସ୍ ସରୋଜା ଚମକି ଉଠିଲାପରି ଜଳଜଳ କରି ଅନେଇଲେ ତାଙ୍କ ଆଡ଼କୁ ଓ ପଚାରିଲେ, "ଏଁ—ହସିଲେ କାହିଁକି ଆପଣ ?" ତା'ପରେ ବୋଧହୁଏ ତାଙ୍କର ମନେପଡ଼ିଗଲା ଯେ ଏ କାହାଣୀରେ ଆମୋଦ ଅଛି, ଏଥିରେ ତ ହସିବାର କଥା । ତେଣୁ ସେ ମଧ୍ୟ ହସିଦେଲେ ଟିକିଏ ଓ ପୁଣି ଆରମ୍ଭ କଲେ,— 'ହଁ, କଣ କହୁଥିଲି କି,—ହଁ, ରତ୍ନାବଳୀ କହୁଛନ୍ତି—

'ଏମିତି ସମୟ ଗଡ଼ି ଚାଲୁଥାଏ, ଗାଡ଼ି ସାଙ୍ଗେ ସାଙ୍ଗେ ହଁ ଆଁ କହୁଥାଏ, ହଁ ଆଁ ଶୁଣୁଥାଏ । କଥା କହିସାରେ ମୋତେ ଜଣା ନାହିଁ ମୁଁ କେତେବେଳେ ତାଙ୍କ ପାଖକୁ ଲାଗିଆସିଲିଣି । ସେ ଖଣ୍ଡେ ଅଧା-ହାତି ସାର୍ଟ ଓ ପ୍ୟାଣ୍ଟ ପିନ୍ଧିଥାନ୍ତି, କେଉଁ ଫେରନ୍ଦାଟା ପୋଷାକ ହେବ ପରା ! କିନ୍ତୁ ତାଙ୍କର ସେ ବେଶ ଭଲ ଲାଗୁଥାଏ—

ଅଫିସ୍ ଯିବା ଠାଣି ନ ଥାଏ ସେଥିରେ, ବୋଧହୁଏ ସେଇଥିପାଇଁ । ମନେ ହେଉଥାଏ ଯେ, ସେ ଜାଣିଶୁଣି ଏମିତି ପିନ୍ଧିଛନ୍ତି । ବେକ୍‌ଭୁଖାର ଅଳରେ ନଜର ଚେହେରକୁ ଅତି ଆପଣାର କରି ସଜାଇଛନ୍ତି, ଖାସ୍ ମୋର ପାଇଁ ।

'ଏମିତି ଯାଉ ଯାଉ ସେ ହଠାତ୍ ମୋ ହାତ ଧରି ପାଖକୁ ଟାଣିଆଣିଲେ ଓ ଓ ଆର ହାତ ଦୂରକୁ ଦେଖାଇଲେ । ତାଙ୍କ ଆଖି ଦୁଇଟା ଉଜ୍ଜ୍ୱଳ ହୋଇଯାଇଥାଏ ପିଲାଙ୍କ ପରି । କହିଲେ,—ହେଇ ଦେଖିଲଣି, ଦେଖ, ସେଇ ଗଛ ଗହଳରେ, ଇଃ-କି ସୁନ୍ଦର ! ମୁଁ ଦେଖିଲି, କଣ ନା ବଣର ମୟୂର । ଦଳ ଦଳ ହୋଇ ବୁଲୁଥାନ୍ତି,— କଏ କଏ ପୁଚ୍ଛ ମେଲାଇ ଦେଇଥାନ୍ତି,—ଓ ବୁଲୁଥାନ୍ତି ସେଇ ଗଛଗୁଡ଼ିକ ଓ ମେଘଗୁଡ଼ିକ ତଳେ ତଳେ । ଆପଣ କଣ ବଣ ମୟୂର ଦେଖିଛନ୍ତି ? ମୁଁ ଦେଖି ନ ଥିଲି ଆଗରୁ, ସେ ବି ଦେଖି ନ ଥିଲେ । ଏଇକ୍ଷଣି ମନେହେଉଛି ଯେ, ହଁ, ମୟୂର ଗୁଡ଼ାଏ ତ— କଣ ବଡ଼ କଥା ? କିନ୍ତୁ ସେଦିନ ସେତେବେଳେ ସେ ମୟୂର ଦଳକୁ ଦେଖି କଣ କେମିତି ଲାଗିଲା କହିପାରିବି ନାହିଁ । ତାଙ୍କର ସବୁ ରଙ୍ଗ, ଥାଟ, ଅଳସ ଗତି ଯେମିତି କି ଆମ ମନରେ ଲାଖିଗଲା । ପୋଡ଼ାମୁହାଁ ଆମରି ପାଇଁ ଆସିଥିଲେ ସତେ ! ମୁଁ ନିଜକୁ ଭୁଲିଗଲି । ତାଙ୍କ ଛାତିରେ ମୁହଁ ରଖି ମୟୂର ଶୋଭାକୁ ଚାହିଁରହିଲି । ଆଉ ଗୋଟିକ ପରେ ଗୋଟିଏ ଆସୁଥାନ୍ତି ସେମାନେ, ବାଟଯାକ, – କେଜାଣି କେତେ ।

ମିସ୍ ସସ୍ରେଜା ରହିଗଲେ, ରହିଗଲେ ବେଶ୍ କିଛି ସମୟ । ରୁମାଲରେ ମୁହଁ ପୋଛିଲେ, ନିଜକୁ ସଳଖ କରିନେଲେ । ମନେହେଲା ଯେ ସେ ନୀଲାବଳୀଙ୍କ ପାଖରୁ ନିଜକୁ ଫେରାଇ ଆଣୁଛନ୍ତି, କୁଶଳ ଅଭିନୟ ଧାରି ନିଜକୁ ସଜାଡ଼ି ନେଉଛନ୍ତି ।

ବିଶ୍ରାମ ନେଲା ପରେ ସେ ମିଷ୍ଟର ବର୍ମଙ୍କ ଆଡ଼କୁ ଚାହିଁ କହିଲେ, "ଏଇଠି ହେଲା କାହାଣୀର ଶେଷ । ଏହାପରେ ନୀଳାବଳୀ କିଛି କହିପାରିଲେ ନାହିଁ ନିରବ ହୋଇଗଲେ । ସତେ ଯେପରି ସେ ସେଦିନକୁ ପୁଣି ମନେ ପକାଉଛନ୍ତି, ପୁଣି ଭାବୁଛନ୍ତି— ଆଉ ସେଦିନ ଫେରିବ ନାହିଁ ।"

ତା'ପରେ, ଶେଷ କଥାର ଗୁରୁତ୍ୱ ଆଣିବା ପାଇଁ ବୋଧହୁଏ, ମିସ୍ ସସ୍ରେଜା ପଦ ଗଣି ଗଣି ନିଃଶ୍ୱାସମିଶା କଣ୍ଠରେ କହିଲେ, "ହଠାତ୍ ସେ ଚୋରି ମୁହଁରେ ଚାହିଁ ଆସିଗଲା । ମୁହଁରେ ସେହି ଶୁଖିଲା ମିଠା ହସ ଦେଖାଦେଲା, ଯେମିତି ମୁଁ ପହିଲେ ଦେଖିଥିଲି । ସେ ଡରିଲା ପରି ଧୀରେ ଧୀରେ କହିଲେ, 'ମୋତେ ଠିକଏ ଦେଖିବେ, ମୋତେ ଡର ଲାଗୁଛି । ଏତେ କଥା ଗପିଲି, ଆପଣଙ୍କୁ ବିରକ୍ତ କଲି । ହେଲେ ମୁଁ

କଣ କରବ । ସବୁ କଥା ନ କହିଲେ ଆପଣ ବୁଝିପାରବେ ନାହିଁ । ମୋତେ ଟିକଏ ଦେଖିବେ ?'

"ମୁଁ ତାଙ୍କ କଥା ପ୍ରଥମେ ବୁଝିପାରିଲି ନାହିଁ । ତା'ପରେ ତାଙ୍କର ଗୃହିଣୀ ମୋତେ ସବୁ ଜଣାଇଦେଲେ । ଦସ୍ୟୁ ଆସିବା ଆଗରୁ ରୋଗ ଆସିଲା—ସତରେ କଅଣ ଏ ଏତେ ନିର୍ବୋଧ, ଅଗୁଆଁର ! ରୋଗ ଗୃପି ଜେରା କଲି । ଯାହା ବୁଝିଲି ସେଥିରେ ସନ୍ଦେହ ଘନେଇ ଆସିଲା । ତଥାପି ଭଲ ଭାବରେ ଜାଣିବା ପାଇଁ ଗମ୍ଭୀର ହୋଇ କହିଲି—କାଲି ଡାକ୍ତରଖାନାକୁ ଆସ, ଦେଖିବ ।

"ତା' ପରଦିନ ଡାକ୍ତରଖାନାରେ ପରୀକ୍ଷା କଲି ତାଙ୍କୁ । ପରୀକ୍ଷାର ଫଳ ଜଣାଇଦେଲି—ରତ୍ନାବଳୀ ପୁଣି ଥରେ ମାଆ ହେବାକୁ ଯାଉଛନ୍ତି । ତାଙ୍କ ମୁହଁକୁ ଅନାଇଲି ନାହିଁ, ନିର୍ବୋଧମାନଙ୍କ ପ୍ରତି ମୋର ସହାନୁଭୂତି ନାହିଁ । କେବଳ ପଚାରିଲି,—'ମୁଁ ଯେଉଁସବୁ ଉପାୟ ବତାଇଲି ତା'କୁ ଭୁଲିଗଲେ ?' ରତ୍ନାବଳୀ ସେଇ ଶୁଖିଲା ମୁହଁରେ କହିଲେ ଚଟ୍‌କିରି—'ସେ ସିନା ସବୁଦିନିଆ ପାଇଁ; କିନ୍ତୁ ସେଦିନ କେମିତି ସମ୍ଭବ ହୋଇଥାଆନ୍ତା ?"

ଏତିକିବେଳେ ମିଷ୍ଟର୍ ରାଓ ଉଚ୍ଚ ସ୍ୱରରେ ହସିଉଠି କହିଲେ, "ଓ ମାଇଁ ଗଡ୍ ! ସେଦିନ କେମିତି ସମ୍ଭବ ହୋଇଥାନ୍ତା ? ସେଦିନ ତୁମେ ସ୍ୱପ୍ନ ଦେଖୁଥିଲ ପରା !"

ମିସ୍ ସରୋଜା ଈଷତ୍ ହସି କହିଲେ, "ଠିକ୍ କହୁଛନ୍ତି ଆପଣ । ଗୁଡ଼୍, ଜାଣିଶୁଣି ନିଆଁରେ ପଡ଼ି ମରିବ ଯିଏ, ତାକୁ କିଏ କଣ କରିବ ? ମ-ର-ନ୍ତୁ ସେମାନେ, ମୋର କଣ ଅଛି ।"

କହିସାରିଲା ପରେ ସେ ଯେପରି ଭାବରେ ବସିରହିଲେ, ସେଥିରୁ ସନ୍ଦେହ ହେଲା ଯେ; ତାଙ୍କ ମନ ଗଭୀର ଦୁଃଖ ଓ ଅଭିମାନରେ ଜୁଡ଼ୁବୁଡ଼ୁ ହୋଇଯାଇଛି । ମିଷ୍ଟର ରାଓ ପୁଣି ଥରେ ବିସ୍ଫାରିତ ଆଖିରେ ଅନେଇଲେ ତାଙ୍କୁ—କଣ ହୋଇଛି ଏଙ୍କର ? ଦୁଃଖ ରତ୍ନାବଳୀଙ୍କ ପାଇଁ ହେଉଛି ନା ନିଜପାଇଁ ହେଉଛି ଯେ, ଏ ନିଆଁରେ ପଡ଼ି ମରିବା ସୁଖ ତାଙ୍କୁ ଜଣା ନାହିଁ ? ରାଓ କୁ ରୁକ ଖାଇ ହସିଲେ—ସରୋଜାଙ୍କୁ ହସ୍‌କେଇବା ପାଇଁ । କିନ୍ତୁ ଏ କଅଣ ? ସରୋଜା ହସୁନାହାନ୍ତି କାହିଁକି ? ମିଷ୍ଟର ରାଓ ପ୍ରମାଦ ଗଣିଲେ । ବେଳ ଉଚ୍ଛୁର ହେଲଣି । ସେ ତାଙ୍କ ପାଖକୁ ଲଗିଆସିଲେ । ତାଙ୍କ କାନ୍ଧରେ ହାତ ରଖି ଚପଳ ଭଙ୍ଗୀରେ କହିଲେ, "କଣ ଭାବୁଛ ଡାକ୍ତର ? ରତ୍ନାବଳୀ କଥା ?" ସରୋଜାଙ୍କ ଦେହରୁ ବାସ୍ନା ଆସୁଛି । ବେକତଳ

ମାଂସର ପ୍ରାଚୁର୍ଯ୍ୟରେ ଚୂର୍ଣ୍ଣକେଶ ଖେଳାଇହେଉଛି । ସ୍ନିଗ୍ଧ ଡାକୁଛି, ଅଥଯ୍ଥ କରୁଛି । ମିଷ୍ଟର ରାଓ ଆହୁରି ଆଗେଇଲେ । ମୁହୂର୍ତ୍ତିକ ପାଇଁ ତାଙ୍କର ମନେହେଲା ଯେ, ସବ୍ରେଜା ବିରକ୍ତ ହୋଇ ଅନାଇଛନ୍ତି ତାଙ୍କ ଆଡ଼େ, ଆଉ ଟିକିଏ ଗଲେ ହାତ ଛାଡ଼ି ଦେଇ ପଳାଇଯିବେ ପରା । ସେ ଶଙ୍କିଗଲେ । କିନ୍ତୁ ତା'ପରେ ମିସ୍ ସବ୍ରେଜା ହଠାତ୍ ତାଙ୍କର ସେହି ବିଖ୍ୟାତ ବିରାଟ ହସ ହସିଦେଇ ଚଉକିରୁ ଉଠିପଡ଼ିଲେ ଓ ମିଷ୍ଟର ରାଓଙ୍କ ହାତରେ ହାତ ରଖି କହିଲେ, "ଚାଲନ୍ତୁ, ଆଉ ଘରକୁ ଯିବା ।"

ମିଷ୍ଟର ରାଓ ତାଙ୍କ ସାଙ୍ଗେ ସାଙ୍ଗେ ଚାଲିଲେ ପାଖ ଶୋଇବା ଘରକୁ । ଭାବିଲେ ଯେ, ସବୁ ସ୍ତ୍ରୀମାନେ ଗୁଣା ଅଧିକେ ଅଦ୍ଭୁତ, ତାଙ୍କ ମନର କାରବାର ସହଜେ ବୁଝିହେବ ନାହିଁ । ହେଲେ,—ମିଷ୍ଟର ରାଓ ନିଜକୁ ଆଶ୍ୱାସନା ଦେଲେ— ସବ୍ରେଜା ନିର୍ବୋଧ ନୁହେଁ ।



# ବନ ମୟୂର

ସନ୍ଦେହ ନାହିଁ ଯେ ଏହି ଗପରେ ଆପଣ ରତ୍ନାବଳୀଙ୍କୁ ସବୁଠାରୁ ବେଶି ଭଲ ପାଆନ୍ତି । ତା' ପଛକୁ ମିସ୍ ସକ୍ସେନାଙ୍କୁ, ଯେ ରତ୍ନାବଳୀଙ୍କ କାହାଣୀରେ ନିଜକୁ ହଜାଇ ଦେଇ ପାରିଲେ, ଅନ୍ତତଃ କିଛି ସମୟ ପାଇଁ ଏବଂ ବୋଧହୁଏ ଦୁଃଖ କଲେ ଯେ ରୋମାନ୍ସର ଏଇ ଭିନ୍ନ ସ୍ୱାଦୁଟି କଅଣ ସେ ଜାଣି ପାରିଲେ ନାହିଁ ଆଜଯାଏଁ ଏବଂ ମିଷ୍ଟର ରାଓଙ୍କୁ ଘୃଣା କରନ୍ତି, କାହିଁକିନା ଲୋକଟା ନିତାନ୍ତ ସ୍ଥୂଳ ଓ ବସ୍ତୁବାଦୀ, ରୋମାନ୍ସର ପାଖ ଦେଇ ଯାଇ ନାହିଁ । ଅନ୍ୟ ଅର୍ଥରେ ଆପଣ ନିପଟ ନିର୍ବୋଧକୁ ହିଁ ସବୁଠାରୁ ବେଶି ଭଲ ପାଆନ୍ତି ଏବଂ ମହା ବୁଦ୍ଧିମାନ୍‌କୁ ସବୁଠାରୁ କମ୍ । ନା ଆପଣ କହିବାକୁ ଚାହାନ୍ତି ଯେ ମୋର ଏତେଟା ନିଃସନ୍ଦେହ ହେବା ଉଚିତ ନୁହେଁ, ଯେ ମୁଁ ମୋ ନିଜର ରୋମାନସ୍ ପ୍ରବଣ (ଲୁଚିଛି ନା ଗୋଡ଼ ଦିଇଟା ଦିଶୁଛି) ମନକୁ ଆପଣଙ୍କ ଉପରେ ଲଦି ଦେବାକୁ ଚାହୁଁଛି ?

ଲେଖକ ହିସାବରେ ମୋର ବଦ୍‌ନାମ ଯେ ମୁଁ ଅତି-ମାତ୍ରାରେ ଭାବୁକ, ତେଣୁ ଭାବପ୍ରବଣତାର ମାଧୁର୍ଯ୍ୟକୁ ବୁଝି ପାରି ନାହିଁ । ଅତଏବ ମୁଁ ରୋମାନ୍ସ ନାମକ ଅନ୍ୟତମ ଭାବପ୍ରବଣତା ଅର୍ଥାତ୍ ଭାବ ଭ୍ରଷ୍ଟକାରୀ ବାସ୍ନା, ରଙ୍ଗ, ଧ୍ୱନି, କୁହୁଡ଼ି ଇତ୍ୟାଦିକୁ ଦେଖେଇ ଚିହ୍ନେଇ ହସିବି ବୋଲି ଆଶା କରାଯାଏ । କହିବାକୁ ଗଲେ ମିଷ୍ଟର ରାଓଙ୍କ ପରି ମୋର ବି ଠୋ ଠୋ ହୋଇ ହସିବା ଉଚିତ, ଯେ ଏଡ଼ିକି ବୋକୀ ସେ ମାଇପିଟା, ବନ ମୟୂର ଦେଖି ଏତେ ଭୋଳ ହୋଇଗଲା ଯେ ନିର୍ବୋଧର ବାଟ ଭୁଲିଗଲା, ନିଜ ବେକରେ ଗ୍ରେଣ୍ଟ ପକେଇଲା··· ମରୁ ହ୍ୟାପ ! ଚାଲ ଅମେ ଆମ ଶୋଇବା ଘରକୁ ଯିବା ।

ଷ୍ଟେକ୍‌ଠୋକ୍ ସୁଖ କରିବା । ବାଟ ଭୁଲିବାର ପ୍ରଶ୍ନ ଉଠୁ ନାହିଁ । କୌଣସି ବନ ମୟୂରର କି ମାୟା ମିରିଗ ଆମ ଆଖିରେ ପଡ଼ିବ ନାହିଁ; ପଡ଼ିଲେ ବି ଆମେ ତା'କୁ ଟଗୋଲମାରି ଉଡ଼େଇ ଦେବା ।

ସମାଜର ମଙ୍ଗଳ ଦୃଷ୍ଟିରୁ ମଧ୍ୟ ମୋର ରତ୍ନାବଳୀଙ୍କୁ ନସଟର ହସରେ ବ୍ୟଂଗ ବିଦ୍ରୁପରେ ପୋଛି ଦେବା ଉଚିତ । ନହେଲେ ପରିବାର ଯୋଜନାରେ ଅଂଶ ଲାଗିବ । ବିଶୃଙ୍ଖଳ ବହୁ ସନ୍ତାନ ମାଆମାନେ ବନ ମୟୂରକୁ ଖୋଜିବେ, କହିବେ ଭବିଷ୍ୟତ ଚୁଲିକୁ ଯାଉ, ଏଭଳି ସ୍ୱପ୍ନ ଏଭଳି ଆନନ୍ଦ ସହଜେ ମିଳିଲ ନାହିଁ ଏଇ ଜୀବନଯୌବନରେ···ସେଇଠୁଁ ଭୁଲ୍ କରି ବସିବା କେତେ ଦୂର ? ରୋମାନ୍‌ସର ନିଶା ମୁଣ୍ଡକୁ ଚଢ଼ିଲେ ଆଉ ରକ୍ଷା ଅଛି ? ନା, ରତ୍ନାବଳୀମାନଙ୍କୁ ଅଦୌ ପ୍ରଶ୍ରୟ ଦେବା ଉଚିତ ନୁହେଁ । ହୁଏତ ଯତ୍‌ସାମାନ୍ୟ ଦୟା···ନା, ନାଁ, ସେଇଟିକ ବି' ନୁହେଁ, ଦୟାରୁ ସହାନୁଭୂତି, ସହାନୁଭୂତିରୁ ସ୍ନେହ, ବଡ଼ ପିଚ୍ଛିଳ ସେ ପଥ । ମୋଟ ଉପରେ ସେମାନଙ୍କୁ ପାଖରେ ପୂରେଇବାର ନୁହେଁ ।

ସ୍ୱଧର୍ମ ହେଉ ବା ସମାଜଧର୍ମ, ବନ ମୟୂରକୁ ଏମିତି ମୁଣ୍ଡରେ ବସେଇବା ଉଚିତ ନ ଥିଲା ମୋର । ରତ୍ନାବଳୀଙ୍କୁ ମିଛିମିଛିକା ଅନନ୍ଦ ଅଣିଦେବା, ବାଟ ଭୁଲେଇବା ଉଚିତ ନ ନ ଥିଲା । ସର୍ବୋପରି ରତ୍ନାବଳୀଙ୍କୁ ଏମିତି ଗଢ଼ିବା ଉଚିତ ନ ଥିଲା ଯେ ଆପଣ ତାଙ୍କୁ ଭଲ ପାଇବେ । ଏଇ ତ ?

ମାନୁଛି, ମାନୁଛି । କିନ୍ତୁ ଦୋଷ କଣ ଖାଲି ମୋର ? ପ୍ରକୃତରେ କହିଲେ ଦେଖି, ମୁଁ କଣ କେଉଁଠି ହେଲେ ଦେଖେଇଛି, ପ୍ରତ୍ୟକ୍ଷରେ ଅବା ଇଙ୍ଗିତରେ, ଯେ ରତ୍ନାବଳୀଙ୍କ ରୋମାନ୍‌ସ ଓରଫ୍ ନିର୍ବୋଧତା ଆମର କାମ୍ୟ ? ତଥାପି ଆପଣ ତାଙ୍କୁ ଭଲ ପାଇଲେ (ହୁଏତ ମୋ ଭଲ ପାଇବାର ଛିଟିକାଏ ଆପଣଙ୍କ ଉପରେ ପଡ଼ିଲା), ସେଥିପାଇଁ କଅଣ ମୁଁ ଦାୟୀ ?

କଥା ହେଉଛି ଯେ ବନ ମୟୂରକୁ ଆମେ ସମସ୍ତେ ଭଲ ପାଉ, ତାକୁ ଘରେ ଅଣି ପୋଷିବା ଭିନ୍ନ କଥା । ରାଜାଙ୍କୁ ଡାକିଦେଲେ ମଧ୍ୟ ରାଜକାର୍ଯ୍ୟ ରୋମାନ୍‌ସକୁ ବଞ୍ଚେଇ ରଖିବାକୁ ନୁହଁ । ଯେତେ ଅଦରକାରୀ ହେଲେ ମଧ୍ୟ ଟଙ୍କକୁ ଭଲ ପାଉ,

ତନ୍ତୁଁ ବଚାଇବାକୁ । ଏଇ ତ ବାସ୍ତବତା ! ତା'ର ଅବମାନନା କରି ଆଖାନ୍ତି କେମିତି ? ତେବେ ମୋର ବିଶ୍ୱାସ ଯେ ଆପଣ ତାକୁ ଅଙ୍କଟରେ ରଖି ପାରିବେ, ମିସ୍ ସରୋଜାଙ୍କ ପରି ଏବଂ ମିଷ୍ଟର୍ ରାଓଙ୍କୁ ଘୃଣା ନ କଲେ ଚଳିବ । ସେ ତାଙ୍କ ଜୀବନରେ ଥରେ ହେଲେ ବନ ମୟୂରର ପାଲରେ ପଡ଼ିବେ ନାହିଁ ବୋଲି କିଏ କହିବ ?

ରତ୍ନାବଳୀଙ୍କୁ ଭଲ ପାଇଲେ ପାଆନ୍ତି । ଆଜ୍ଞା, ଲୁବଲ୍ଲୋଲା ମୂର୍ଖ ମଣିଷଟି କଅଣ ବଚାଇ ନୁହେଁ କି ?

କେଜାଣି କାହିଁକି ମୋର ଅନୁବାଦକ ମହାପାତ୍ର ଦମ୍ପତିଙ୍କୁ ଗପଟି ବିଶେଷ ଭଲ ଲଗିଛି । ସେଇଥିପାଇଁ ସେ ଏହାକୁ କେବଳ ଇଂରେଜୀରେ ଅନୁବାଦ କରିଛନ୍ତି ନୁହେଁ, ତାଙ୍କ ଦ୍ୱାରା ଅନୂଦିତ ମୋର ଦ୍ୱିତୀୟ ଇଂରେଜୀ ଗଳ୍ପ ସଙ୍କଳନର ନାଆଁ ରଖାଇଲେ, "Wild Peacock and other sto ies" ଏବଂ ତାଙ୍କର ଦ୍ୱାରା "Wild Peacock" ବିଶିଷ୍ଟ ଇଂରେଜୀ ପତ୍ରିକା "New Quest" (March-April 1984)ରେ ପ୍ରକାଶିତ ହୋଇଛି ।

କଟକ
୧୦ ଅକ୍ଟୋବର ୧୯୮୨



# ନାକ ଓ ମଣିଷ

ଖାଧୋଇସାରି ବାସି ଧୋତି ଓ ପଞ୍ଜାବୀ ପିନ୍ଧିଲାପରେ ଦିବାକର ବାବୁଙ୍କୁ ଭଲ ଲାଗିଲା । କିନ୍ତୁ ତାହା କ୍ଷଣିକ ଓ ସାମାନ୍ୟ । କାରଣ ସେ ଆରାମ ଚଉକିରେ ବସିରହି ଦେଖିଲେ ଯେ, ପୂଟ୍‌ଖାଇ ଜଟାଧର ମସଲା ବାଟୁଛି । ବାଟି ଗୁଳାଉଛି । ଘର୍ଷଣ ଶବ୍ଦରେ କାନ କଅଣ ହୋଇଯାଉଛି । କିନ୍ତୁ ଲୋକଟାକୁ କିଛି କହିହେବ ନାହିଁ । ଜଟି ପୂଟ୍‌ଖାଇ ହେଉଛି ପୁରୁଣା ଲୋକ, ଘର ମଣିଷ, ତା'ବିନା କୁଆଡ଼େ କାମ ଚାଲିବ ନାହିଁ । ହୁଁଃ !

ଦିବାକର ବାବୁ ଜଟାଧରକୁ ଭଲପାଆନ୍ତି ନାହିଁ। ତା'ର କାରଣ ଅନେକ । ସେ ସବୁ ତାଙ୍କ ମନର ଫର୍ଦ୍ଦରେ ହିସାବ ହୋଇ ରହିଛି । ପ୍ରଥମ କଥା, ତା' ମୁହଁ ଛୁଞ୍ଚିପରି, କିମ୍ବା ନେଉଳ ପରି । ଦ୍ୱିତୀୟରେ ସେ ଭାରି ଅସନା । ସବୁବେଳେ ନାକ ସଫା କରେ, ପିନ୍ଧା ଧୋତିରେ ନାକ ପୋଛେ ଓ ନଳା ଉପରକୁ ଥୁ ଥୁ କରି ଛେପ ପକାଏ । ତୃତୀୟରେ ସେ ବିଡ଼ି ପିଏ । ତା' ଛଡ଼ା ଲୋକଟା ଚୋର । ସେ ପୁରୁଣା ବିଶ୍ୱାସୀ ଲୋକ ବୋଲି ତା'ର ଚୋରି ଧରା ପଡ଼ୁ ନାହିଁ, କିନ୍ତୁ ସେ କିଛି କମ୍ ନୁହେଁ । ଦିବାକର ବାବୁଙ୍କର ଅଭିଳାଷ ଯେ ଦିନେ ନା ଦିନେ ସେ ତା'ର ଚୋରି ଧରିବେ ଓ ତାକୁ 'ନିକଲ୍ , ଅଭି ନିକଲ୍' ବୋଲି କହିପାରିବେ ।

ଆଉ ଗୋଟିଏ କଥା, ଯାହା ହିସାବ ଖାତାରେ ଲେଖା ନାହିଁ । ଅଧିକାଂଶ ଚାକରବାକର ତାଙ୍କୁ ବଡ଼ବାବୁ ବୋଲି ଡାକନ୍ତି, କିନ୍ତୁ ଏ ଡାକେ ବୁ-ଢ଼ା ବାବୁ । ସେଥିରେ କିଛି ଯାଏ ଆସେ ନାହିଁ, ତେବେ ସେ ଏମିତି ଭାବରେ ପଦଟିକୁ ଲମ୍ବେଇ-କରି କୁହେ, ସେଥିରୁ ମନେହୁଏ ଯେ ସେ ଖାତିର୍ କରୁ ନାହିଁ । ଦିବାକର ବାବୁଙ୍କୁ ବାଧେ ଯେ ତା'ର ଏହି ବେଖାତିର ଢଙ୍ଗ ଆଉ କାହାର ଆଖିରେ ପଡ଼େ ନାହିଁ, ଆଉ କାହାକୁ କହିଲେ ସେ ବିଶ୍ୱାସ କରିବ ନାହିଁ ।

କ୍ରମଶଃ ମସଲାବଟାର ଶବ୍ଦ ତାଙ୍କ ଚେତନାରେ ଖଣ୍ଡି ହୋଇଗଲା । କିନ୍ତୁ ରୋଷେଇଘର ଆଡ଼କୁ ଚାହିଁ ଚାହିଁ ସେ ଖାଦ୍ୟପେୟର କଥା ଭାବିଲେ, ଏବଂ ହଠାତ୍ -

ଠିକ୍ କଲେ ଯେ, ସେ ଆଜି ରାଗିବେ । ନ ରାଗିଲେ ଏ ଘରେ କିଛି ହେବ ନାହିଁ । ଏହି ନିଷ୍ପତ୍ତି ପରେ ତାଙ୍କ ଆଖିପତା ଧୀରେ ଧୀରେ ବୁଜିହୋଇ ଆସିଲା ।

ରାଗିବାର ମୂଳକଥା ହେଉଛି ଯେ, ସେ ସେପେଇ ଘରେ ମାଗୁର ମାଛର କୌଣସି ଲକ୍ଷଣ ଦେଖିଲେ ନାହିଁ । ଆଜିକୁ ତିନିଦିନ ହୋଇଗଲା । ଡାକ୍ତରଙ୍କ ମତରେ ତାଙ୍କର ମାଗୁର ମାଛ ଖାଇବା କଥା । ତାହାହେଲେ କାହିଁକି ସେ ମାଛ କିଣା ହେବ ନାହିଁ ? ଏତେ ବଡ଼ ସହରରେ କଣ କେଉଁଠି ତା'ର ସନ୍ଧାନ ମିଳିଲା ନାହିଁ ? ଅସମ୍ଭବ ।

ତାଙ୍କୁ ନିଦ ଲାଗିଯାଇଥିଲା । ମଝିରେ ସେ ଏମିତି ଶୋଇପଡ଼ନ୍ତି ଦଶ ପନ୍ଦର ମିନିଟ୍ ପାଇଁ । ଅନ୍ୟମାନେ, ବିଶେଷତଃ ସ୍ତ୍ରୀ ଉର୍ମିଳା ଦେବୀ ଭାବନ୍ତି ଯେ, ରିଟାୟାର୍ କରିବା ପରେ ତାଙ୍କର ଆଉ କିଛି କାମ କରିବା ଉଚିତ ଥିଲା, ଘରେ ବସି ରହିବା ଭଲ ହୋଇ ନାହିଁ । କିନ୍ତୁ ମୁହଁ ଖୋଲି କେହି କିଛି କହିପାରନ୍ତି ନାହିଁ । କାରଣ ଦିବାକର ବାବୁ କେତେଥର ସ୍ପଷ୍ଟ ଭାବରେ କହାଇ ଦେଇଛନ୍ତି,—ଷାଠିଏ ବର୍ଷ ବୟସ ହେଲା । ମୁଁ କଣ ସବୁଦିନେ ଖଟୁଥିବି ? ମୋ ଜୀବନରେ କଅଣ ଆଉ କିଛି ନାହିଁ ? ମୁଁ କାହାର ଗଳଗ୍ରହ ହୋଇ ପଡ଼ିନାହିଁ, ଭଗବାନ୍ ମୋତେ ଯଥେଷ୍ଟ ଦେଇଛନ୍ତି । ଇତ୍ୟାଦି ।

ଆଖି ଖୋଲିଲାପରେ ସେ ଦେଖିଲେ ଯେ, ରମ୍ପା କୁକୁର ତାଙ୍କ ଗୋଡ଼ ପାଖରେ ବସି ଧଇଁଉଛି । ଏବଂ ଦେଖିଲେ ଯେ, ତାଙ୍କ ସ୍ତ୍ରୀ ଚଟାଣରେ ଦପ ଖଣ୍ଡେ ପକାଇ ତା' ଉପରେ ମୁହଁମାଡ଼ି ଶୋଇଛନ୍ତି । ପୁଣି ଗୃହିଣୀ,—ଦଶ ବାର ବର୍ଷର ଝିଅ—ତାଙ୍କ ଖୋଲା ପିଠିରେ ବିଧା ମାରୁଛି ।

ସେ ପରିପାର୍ଶ୍ୱକୁ ଦେଖିଲେ । ଦେଖୁ ଦେଖୁ ତାଙ୍କର ମନେ ହେଲା,—ରମ୍ପା ମଣିଷ ହୋଇଥାଆନ୍ତା କି ! କାରଣ ସେ ରମ୍ପାର ଗୃହିଣୀରେ ଗୃହିଁବାର ଆବେଗ ଓ ଦମ୍ଭତି ଦେଖିପାରିଲେ । ଯେପରି କି କୌଣସି ଉତ୍ତମ ଜିନିଷ ପାଇଲେ ସେ ତାକୁ ସ୍ୱୀକାର କରିବ, ଗ୍ରହଣ କରିବ, ତା'ର ଜୟଗାନ କରିବ, ଓ ସେଥିରେ ତା'ର ମନକୁ ପ୍ରୁଶାନ୍ୱିତ ଫଳବନ୍ତ କରି ଦେଖାଇବ । ଆଜିକାଲି କେଉଁଟା ମଣିଷଙ୍କ ପାଖରେ ଏପରି ଗୁଣ ଦେଖିବାକୁ ମିଳେ ?

ଦିବାକର ବାବୁ ତୁଳନା କଲେ ନାହିଁ । କିନ୍ତୁ ଜଣା ପଡ଼ିଲା ଯେ, କାଳେ ତୁଳନା କରିବାକୁ ପଡ଼ିବ, ସେଥିପାଇଁ ସେ ତାଙ୍କ ସ୍ତ୍ରୀଙ୍କ ଅଡ଼କୁ ଗୃହିଁ ନାହାନ୍ତି । କାରଣ ସେଠି ସେ ଦେଖିବାକୁ ପାଇବେ କେବଳ ଗୋଟିଏ ପିଠି,—ବିସ୍ତୃତ ଓ ପୁରାତନ, ଭାବହୀନ ଓ ଗୁଣହୀନ । ତା' ଠାରୁ ଭଲ ଏହି ରମ୍ପାର ଗୃହିଣୀ ।

(ସ୍ନୋଦେବ)

ଯଥାକ୍ରମେ ଖାଇବାକୁ ବସାହେଲା । ଉର୍ମିଳା ଦେବୀ ପାଖରେ ବସି ଝଟରେ ବୁଝିଲେ । ଏବଂ ଦିବାକର ବାବୁ ତାଙ୍କ ସ୍ନୋଦେବ ପ୍ରମାଣ ଦେଲେ । ହେଲେ କଟି ସୁଆଁଗ ସେଥିରେ ଶଙ୍କି ଗଲା ନାହିଁ, କିମ୍ବା ଉର୍ମିଳା ଦେବୀ ମୁହଁ ଶୁଖାଇଲେ ନାହିଁ । ଶ୍ରାବଣରେ ଅସରାଏ ବର୍ଷା ପରି ସେମାନେ ଏହି ଅବସ୍ଥାକୁ ପୂର୍ବରୁ ଅନୁମାନ କରିଥିଲେ, ଓ ସେଥିପାଇଁ ପ୍ରସ୍ତୁତ ଥିଲେ । ଥରକୁ ଥର ସେହି ଏକା କଥା ଶୁଣି ଟିକିଏ ବିରକ୍ତ ଆସିପାରେ । ଆସୁ,—ଏ ହେଉଛି ଗୃହଧର୍ମ ।

ତେବେ କର୍ତ୍ତବ୍ୟ ଅନୁରୋଧରେ ଉର୍ମିଳା ଦେବୀଙ୍କୁ ପୁରୁଣା ଉତ୍ତର ଦେବାକୁ ପଡ଼ିଲା,—'ମାଗୁର ମାଛ ବଜାରରେ ନାହିଁ । ମୁଁ କଣ କେଉଁଠୁ ଜନ୍ମ କରିବି ?' ଦିବାକର ବାବୁ କେବଳ ଭ୍ରୂକୁଞ୍ଚନ କରି ଜଣାଇ ଦେଲେ ଯେ, ସେ ଉତ୍ତର ଗ୍ରହଣୀୟ ନାହାନ୍ତି । ତାଙ୍କ ରାଗିବାର କାରଣ ଅଛି, ସେହି ଯଥେଷ୍ଟ । ସେତିକ ଜାଣନ୍ତି ସମସ୍ତେ ।

ଖାଇସାରି ସେ ଦାଣ୍ଡପିଣ୍ଡାକୁ ଗଲେ ଓ ଅନ୍ୟତମ ଆରାମ ଚଉକିରେ ଆଉଜି-ଗଲେ । ସକାଳେ ପଢ଼ିଥିବା ଖବର କାଗଜକୁ ହାତରେ ଧରି ଶିରୋନାମାଗୁଡ଼ିକୁ ପୁଣିଥରେ ଦେଖିଲେ ଓ ଦେଶ ବିଦେଶର ସମସ୍ୟା ସମ୍ପର୍କରେ ଭାବିଲେ ।

ଚିନ୍ତା । ପୃଥିବୀ ଓ ଦେଶକୁ ନେଇ ଚିନ୍ତା । ସେ ନିଜକୁ କହିଲେ ଯେ, ସେ ଅନ୍ୟମାନଙ୍କ ପରି ନୁହନ୍ତି, ଯେଉଁମାନେ ଗୁଡ଼ାଏ ନିଜର ଘରବାଡ଼ି, ଗାଈ ଗୋରୁ, ନାତି ନାତୁଣୀଙ୍କୁ ନେଇ ବ୍ୟସ୍ତ ହୁଅନ୍ତି । ଜୀବନରେ କ'ଣ ଆଉ କିଛି ନାହିଁ ? ଖବର-କାଗଜରେ ବାହାରିଛି ଯେ ଦେଶରେ ଘୋର ଖାଦ୍ୟସଙ୍କଟ, ସୀମାନ୍ତରେ ଶତ୍ରୁସେନା ପୁଣି ଠୁଳ ହେଲେଣି, ଇତ୍ୟାଦି । ଏ ସବୁ ବିଷୟରେ ଅନେକ କିଛି ଭାବିହେବ, କହି-ହେବ । ଅନ୍ୟମାନଙ୍କୁ ବୁଦ୍ଧି ଦେଇହେବ ।

ଦିବାକର ବାବୁ ଖବରକାଗଜ ଝାଡ଼ିଲେ, ମନୋଯୋଗ ଦେଇ ପଢ଼ିଲେ ଓ ଗମ୍ଭୀର ଭାବରେ ଚିନ୍ତା କଲେ । କିନ୍ତୁ ସେହି ପଳମାଣରେ ସେ ଅଶାନ୍ତିର ତାଡ଼ନା ଅନୁଭବ କଲେ । ଯେପରି କି ତାଙ୍କ ପ୍ରବଣତା ସୀମାନ୍ତରେ ଠୁଳ ହୋଇଥିବା ଶତ୍ରୁ-ସେନା ପରି ଛଟପଟ ହେଉଛି । ସୀମା ଟପିଗଲେ ସଂଘର୍ଷ ଓ ଅଧିକାର, କେତେ କଣ କରିହେବ । କିନ୍ତୁ ତା' ପୂର୍ବରୁ ଏହି ଅପେକ୍ଷା । ଆରାମ ଚଉକି ଓ ଅପେକ୍ଷା ।

କେହି କାହିଁକି ଆସୁନାହାନ୍ତି ?

ଦାଣ୍ଡ ଆଗରେ ବାଁପଟକୁ ଗୋଟିଏ ଉଚ୍ଚ ଭୂଇଁ । ସେଠି ଛଅ ସାତଜଣ ସାହିର ପିଲ ଖାଲିଦେହରେ ହାଫ୍‌-ପ୍ୟାଣ୍ଟ ପିନ୍ଧି ଗୋଡ଼ାଗୋଡ଼ି ହେଉଛନ୍ତି । ପାଖ ଗୃହଘରର ପକ୍‌କା ପିଣ୍ଡାରେ ଜଣେ ସଫା ଧୋତି ଓ ଗେଞ୍ଜିପିନ୍ଧା ଯୁବକ ଦିବାକର ବାବୁଙ୍କ

ଘରଆଡ଼କୁ ଗୃହିଁ ଅନବରତ ସିଗାରେଟ୍ ଫୁଙ୍କିଗୃଲଛ । ଯେପରି କି ସେ ତା'ର ଏହି ସିଗାରେଟ୍ ଫୁଙ୍କାର ଆନନ୍ଦ ଜଣାଇବାକୁ ଗୃହୁଁଛ—ବିଶେଷତଃ ସମ୍ମୁଖରେ ଥିବା ଆଗ୍ରମଚଉକିଲାଗା ଭଦ୍ରଲୋକଙ୍କୁ । ପଡ଼ୋଶୀ କୋଠାଘରର ଉପର ମହଲରେ କିଶୋରୀ କନ୍ୟା ସ୍ୱର ସାଧନା କରୁଛି । ତା'ର ଚିତ୍କାର ମଧ୍ୟାହ୍ନର ବିପୁଳତାକୁ ମାପୁ ଛି କୁରାଢିରେ ଦାଗ ଦେଲାପରି । ବୁଲବିକାଳି ଟୋକେଇ ମୁଣ୍ଡେଇ ଅଗ୍ରସର ହେଉଛି । ରମ୍ଭା ପୁଷି ଆସି ପାଖରେ ବସିଲାଣି, ମୁହଁ ଟେକି ଜିଭ ଲହ ଲହ କରୁଛି ।

ବାହାରର ଏହି ଅଦରକାରୀ ଧ୍ୱନି ଓ ଚଞ୍ଚଳତାକୁ ଆଡ଼େଇ ଦେଇହେଲା ନାହିଁ । କିନ୍ତୁ ଦିବାକର ବାବୁ ତାକୁ ଉପେକ୍ଷା କଲେ । ସେମାନେ ଇତର ଓ ପର ।

ତା'ପରେ ସେ ଭାବିଲେ,—ମୋର ବନ୍ଧୁମାନେ ଆସିବେ ନାହିଁ, କାରଣ ସେମାନେ ମୋର ବନ୍ଧୁ ନୁହନ୍ତି । ସେମାନେ ମୋ ପରି ଭାବନ୍ତି ନାହିଁ, ସେମାନେ କିଛି ଭାବନ୍ତି ନାହିଁ । ସେମାନେ ଘରେ ବସି ନାତି ନାତୁଣୀଙ୍କୁ ପିଠିରେ ଲଉ କରୁଛନ୍ତି, ଦଲିଲ୍ ସଜାଡ଼ୁଛନ୍ତି, ମାଳା ଜପୁଛନ୍ତି । 'ଧାତ୍' ଏହି ଭାବରେ ଦିବାକର ବାବୁ ଖବରକାଗଜର ଗୋଟିଏ ବିଜ୍ଞାପନକୁ ପଢ଼ି ବସିଲେ ।

ବିଜ୍ଞାପନର ମା ଓ ପୁଅଙ୍କ ମୃଦୁ ହସିତ ଛବି ଦେଖୁ ଦେଖୁ ତାଙ୍କ ମନରେ ଆସିଲା ଯେ ତାଙ୍କର ଗୋଟିଏ ପରିବାର ଅଛି,—ସ୍ତ୍ରୀ, ଯୋଡ଼ିଏ ଝିଅ ଓ ତିନୋଟି ପୁଅ । ଏବଂ ତାଙ୍କର ଗ୍ରନ୍ଥ ବିକୃତ ଗର୍ବ ଓ ବେଦନାରେ ରୁଦ୍ଧ ହେଲାପରି ଲାଗିଲା, ଯେପରି କି ସେ ନିଜେ ଆଙ୍କିଥିବା ଗୋଟିଏ ତୁଳୀଚିତ୍ରକୁ ଦେଖୁଛନ୍ତି । ଚିତ୍ର ପୂର୍ଣ୍ଣ ହୋଇଯାଇଛି, ସେଥିରେ ଅନେକ ରଙ୍ଗ ଲାଗିଛି, ସେ ନିଜ ଅଧିକାରରେ ଅନାଇ ରହୁଛି, କିନ୍ତୁ—। କିନ୍ତୁ ସେ ମନକୁ ପାଉନାହିଁ, ମନକୁ ଛୁଉଁ ନାହିଁ । ସେ କଷ୍ଟ ଦେଉଛି ।

ସେମାନେ ବାହାସାହା ହୋଇ ଭଲରେ ଅଛନ୍ତି, ବଡ଼ ଗୃକିରୀ କରୁଛନ୍ତି, ବ୍ୟବସାୟ କରୁଛନ୍ତି । କିନ୍ତୁ ସେମାନେ ଅନ୍ୟ ମଣିଷ । ସେମାନଙ୍କ ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ ।

ବଡ଼ପୁଅ ମୋଟା ଚଷମା ପିନ୍ଧି ମୁହଁ ତଳକୁ କରିଛି । ତା'ର ପେଟ ବାହାରି-ଲାଣି । ସେ ମୋ ସାଙ୍ଗରେ ବେଶି କଥା କୁହେ ନାହିଁ, ତା'ର ମାଆକୁ କୁହେ ଯେ, ସେ ଗୋଟାଏ ମଡ଼ର୍ଣ୍ଣ ଘର ତିଆରି କରିବ । ମଝିଆଁ ପୁଅ ଘରକୁ ଆସିଲେ ଦିନଯାକ ବାହାରେ ବୁଲେ । ହାତରେ ସବୁବେଳେ ଖଣ୍ଡିଏ ବହିଥାଏ, ମଲାଟରେ ବନ୍ଧୁକ, ନ ନ ହେଲେ ଅଧାଲଙ୍ଗଳା ମାଇକିନିଆଙ୍କ ଛବି । ସାନପୁଅ ବହୁତ କଥା କୁହେ, ଓ ପୃଥିବୀସାରା ଲୋକଙ୍କୁ,—ଘରକାମଠାରୁ ଆରମ୍ଭ କରି ମୂଲିଆମାନଙ୍କ ପର୍ଯ୍ୟନ୍ତ,—

ସମସ୍ତଙ୍କୁ ନିନ୍ଦାକରେ । ସେ ଦିନ ଅଶୀଟା ବେଳକୁ ଉଠେ ଓ କୁହେ ଯେ, ସେ ଅମେରିକାକୁ ଯାଇ ବିଜିନେସ୍ କରିବ । ଝିଅ ଦୁଇଜଣଯୋକ ଏକାପରି ହୋଇଗଲେଣି, ମୋଟେଇ-ଗଲେଣି । ଦୁହେଁ ପିଲା ଜନ୍ମକରି ଗୃହିଛନ୍ତି, ତାଙ୍କ ଗୃହକରମାନଙ୍କୁ ଅଭଦ୍ର ଭାଷାରେ ଗାଳି ଦିଅନ୍ତି, କଥା କଥାକେ ଚକେଇ ହୁଅନ୍ତି, ଓ ଶେଳିଇ ହେବାର ଢଙ୍ଗ କରନ୍ତି ।

ସେମାନେ ମୋ ପାଖକୁ ଆସିବେ ନାହିଁ । ସେମାନେ ମୋ'ଠାରୁ କିଛି ଗ୍ରହଣ କରିବେ ନାହିଁ । କରିପାରିବେ ନାହିଁ ।

ଦିବାକର ବାବୁ ଆଉ ଖବରକାଗଜ ପଢ଼ିପାରଲେ ନାହିଁ । କହିବାକୁ ଗଲେ ସେ ନିଜ ଭିତରେ କାନ୍ଦିଲେ । —ଡେରି ହୋଇଗଲାଣି, ଅନେକ ଡେରି । ଆଉ କିଛି କରିହେବ 'ନାହିଁ । ମୁଁ ମଧ୍ୟ ଗୋଟିଏ ସାଧାରଣ ବୁଢ଼ା । ଆରାମଚଉକିରେ ପଡ଼ି ରହିଥିବ, ମାଗୁର ମାଛ ପାଇଁ ପାଟି କରିବ, ଓ ନାତି ନାତୁଣୀଙ୍କୁ ଧରି ଖେଳିବ ।···

ଏହି ଅବସ୍ଥାରେ ଊର୍ମିଳା ଦେବୀଙ୍କର ଆସିବାକୁ ହେଲା । ସେ ପାଖକୁ ଆସି ଗୋଟିଏ ଚିଠି ପଢ଼ି କହିଲେ,—ଶୁଣୁଛ ? ରେଖା ଲେଖିଛି । ସେ ତା' ପୁଅକୁ ନେଇ ଆସିବ, ଆର ହପ୍ତାକୁ । ଦୁଇ ତିନି ମାସ ରହିବ । ମୁନୁ କୁଆଡ଼େ ଲଗାଇଛି ଅଜା ପାଖରେ ରହିବ···ତା ଦେହ ଭଲ ରହୁନାହିଁ ।

ମୁଁ ବୁଝିଛି, ଆଉ କିଛି କହିବା ଦରକାର ନାହିଁ,—ଏହି ଭାବ ନେଇ ଦିବାକର ବାବୁ ତାଙ୍କ ସ୍ତ୍ରୀଙ୍କ ଆଡ଼କୁ ପ୍ରଭୁତ୍ୱର ଦୃଷ୍ଟି ନିକ୍ଷେପ କଲେ, ଓ କହିଲେ "ବେଶ୍ ।"

( ୨ )

ସାନ ରୋହି ମାଛ ମୃତ ଅବସ୍ଥାରେ ଶୋଇଛି । (ଆଜିକାଲି ମାଗୁର ମାଛ ପ୍ରତି ଗୁରୁତ୍ୱ ଦିଆଯାଉ ନାହିଁ । ) ମୁନୁ ତା'କୁ ନଇଁପଡ଼ି ଦେଖୁଥିଲା । ଦେଖୁ ଦେଖୁ କହିଲା, "ଅଜା ମାଛର ଆଖି ଗୋଲ କାହିଁକି ?"

ଦିବାକର ବାବୁ ପାଖରେ ଛିଡ଼ା ହୋଇଥିଲେ; କିଛି କହିଲେ ନାହିଁ, କେବଳ ସ୍ମିତହାସ ଦେଲେ ।

କିଛି ସମୟ ପରେ ରଘୁଆ ଗୃହକର ମାଛ କାଟିବସିଲା । ମୁନୁ ପୁଣି ଅଜାଙ୍କୁ ଡାକିଲା, "ଅଜା, ରଘୁଆ ତା' ଅଖିକୁ ଖୋଳି ଫୋପାଡ଼ିଦେଲା । ବଦ୍‌ମାସ୍‌ଟା ।"

"ଛି, ସେମିତି କହନ୍ତି ନାହିଁ ।" ଦିବାକର ବାବୁ ନାତିକୁ ଧମକାଇଲେ । କିନ୍ତୁ ତାଙ୍କ ମୁହଁ ଝଲି ଦିଶିଲା । ସେ ଭାବିଲେ,—ମୁଁ ପିଲାଦିନେ ଠିକ୍ ଏମିତି ଭାବୁଥିଲି ।

ବୁଝୁଛି ଯେ ମାଛ ମରିଗଲାଣି, ତାକୁ କାଟିବ ନାହିଁ । ତଥାପି ତାର ଜଅନ୍ତା ଗୋଲ ଆଖିକୁ କାଢ଼ି ଦେବାର ନିଷ୍ଠୁରତା ସହ୍ୟ ହେଉ ନାହିଁ ।

ଦିବାକର ବାବୁ ମୁନୁର ମୁଣ୍ଡରେ ହାତ ରଖିଲେ ଓ ବାଳକୁ ସାମାନ୍ୟ ଚହଲାଇ ଦେଇ କହିଲେ, "ଚାଲ, ଏଥର ଗୀତ ଶିଖିବୁ । କାଲି ଯାହା ଶିଖେଇଥିଲି ମନେଅଛି ନା ?"

ଦୁହେଁ ଦିବାକର ବାବୁଙ୍କର ଛୋଟିଆ ବଖରାକୁ ଗଲେ । ଏଠିକୁ ସେ କ୍ୱଚିତ୍ ଆସନ୍ତି । ଏଠି କେବଳ ଗୋଟିଏ ଲମ୍ବା ବାଉଁଶ ଖଟ, ଥାକରେ ଅଭିଧାନ ସମେତ କେତେଖଣ୍ଡ ବହି ଓ ଚାକିରି ଜୀବନର ପରିତ୍ୟକ୍ତ କାଗଜପତ୍ର ଛଡ଼ା ଆଉ କିଛି ନାହିଁ । ତେବେ ସମସ୍ତେ ଜାଣନ୍ତି ଯେ, ଏ ତାଙ୍କର ଖାସ୍ ଘର, ଏଇଠି ସେ ଅବେଳାରେ କାମ କରନ୍ତି ।

ମୁନୁ ସିଧା ଯାଇଁ ଖଟ ଉପରେ ଚକାମାଡ଼ି ବସିପଡ଼ିଲା ଓ ଆରମ୍ଭ କଲା,—

"ଜନନୀ ମା ଜନମ ଭୂମି
ପବିତ୍ର ଭାରତ ଭୂମି

ତୋହର ସନ୍ତାନ ଆମେ ଅଟୁ ସରବେ—"

"ଗୁଡ଼୍, ଭେରି ଗୁଡ଼୍ । ତା' ମାନେ କଅଣ ବୁଝେଇଥିଲି ମନେ ଅଛି ?"

ତରବର ହୋଇ ମୁନୁ କହିଲା, "ତା' ମାନେ ହେଉଛି ଯେ, ଆମେସବୁ ଏଇଠି ଜନ୍ମହୋଇଛୁ । ଅମେ ସବୁ ଭାରତର ପିଲା ।···ଅଜା, ତୁମେ ବି କଅଣ ଭାରତର ପିଲା ?"

ଦିବାକର ବାବୁ ମୁନୁର କୌତୂହଳକୁ ସମ୍ମାନ ଦେଲେ । ତା' ପ୍ରଶ୍ନରେ ଥିବା ପ୍ରଚ୍ଛନ୍ନ ଗମ୍ଭୀରତାକୁ ସ୍ୱୀକାର କଲେ । ବସେଇ ବସେଇ କହିଲେ, "ହଁରେ ପୁଅ" ଆମେ ସମସ୍ତେ ପିଲା । ଆମେ ଏ ଦେଶର ପିଲା । ଆମେ ଭଗବାନଙ୍କ ପିଲା । ଏଇ ଆକାଶ, ଚନ୍ଦ୍ର, ସୂର୍ଯ୍ୟ, ଏମାନେ—ମୂଳରୁ ଅଛନ୍ତି, ଚିରୁଦିନେ ଅଛନ୍ତି । ଆମେସବୁ ତାଙ୍କ ଆଗରେ ଜନ୍ମହେଉଛୁ ଓ ମରିଯାଉଛୁ ।"

ମୁନୁ ଅଜାଙ୍କ ମୁହଁକୁ ଅନାଇଲା । ମନେ ହେଲା ଯେ; ସେ ସାମାନ୍ୟ ଭୟ ପାଉଛି କିନ୍ତୁ ମୁଗ୍ଧ ହେଉଛି; ଯେପରି କି ମନ୍ଦିର ଉପରେ ଉଡ଼ୁଥିବା ପତାକା ତା'

ଦେଖିବାକୁ ଲୁଚିଉଛି, କିମ୍ବା ଗୋଟିଏ ନଭଶ୍ଚୁମ୍ବୀ ବୃକ୍ଷର ଡାଳ ନଇଁଆସି ତାକୁ କଣ କହୁଛି । ପ୍ରଭାକର ବାବୁ ସ୍ଥିର ହୋଇ ନାହାନ୍ତି, ତାଙ୍କ ବଡ଼ ମୁହଁର ଗାରଗୁଡ଼ିକୁ କେତେ ତଳକୁ ଧସିଗଲା ପରି ଲାଗୁଛି, ତାଙ୍କ ମୁଣ୍ଡର କେତେ ଧଳା ବାଳ ଅଣ୍ଟ-ଢିଲା ଓ ଅନେକ ଉପରକୁ ଉଡ଼ୁଥିଲାପରି ଦିଶୁଛି । ଏଜା ତ ଏମିତି ଆଗରୁ ଦେଖାଯାଉ ନଥିଲେ ।

ଏବଂ ପ୍ରଭାକର ବାବୁ ମୁନୁର ମୁହଁକୁ ଚାହିଁଲେ । ସାନ, କହାଣ ଦାନ । କଅଁଳ ଘାସ, କାଲି ସକାଳେ ମାଟିରୁ ଉଠିଛି । ତା'ର ଆଖିରେ ଜଳପାଣି ଛଳ ଛଳ ହେଉଛି, ଯାହାର ସ୍ୱଚ୍ଛତାରେ ଜୀବନର ସବୁ ଗୁଢ଼ କଥା,—ଜନ୍ମ ଓ ମରଣର ଛବି—, ନକ୍ଷତ୍ର ହୋଇ ଫୁଟିଉଠୁଛି । ସେ କିଛି ଜାଣି ନାହିଁ; କିନ୍ତୁ ସବୁ ଜାଣିପାରିବ, ସବୁ ଗ୍ରହଣ କରିବ । ପ୍ରଭାକର ବାବୁ ଉଲ୍ଲସିତ, ଉଦ୍ଦୀପ୍ତ ହେଲେ । ଯେପରି କି ଆଉ ମୁହୂର୍ତ୍ତେ ଡେରି କରିବା ଉଚିତ ହେବ ନାହିଁ, ମୁନୁ ବଡ଼ ହୋଇଯିବ ।

ସେ ପୁଣି କହିଲେ, "ଆଜି ସନ୍ଧ୍ୟାବେଳେ କୁଆଡ଼େ ବୁଲିଯିବା ଜାଣିଛୁ ? ମୁଁ ତୋତେ ନଈକୂଳକୁ ନେଇଯିବି । ତମର ସେଆଡ଼େ ନଈ ନାହିଁ । ତୁ ଦେଖିବୁ ଆମ ନଈ କେତେ ବଡ଼, ସମୁଦ୍ର ପରି । ସେଥିରେ କେତେ ବଡ଼ ବଡ଼ ଡଙ୍ଗା । ଡଙ୍ଗାରେ କାଟଗଡ଼ ଆଉ କେତେ କଣ ବୋଝେଇ ହୋଇଥାଏ । ଡଙ୍ଗା ଚାଲିଥାଏ ଅସ୍ତେ, ଆ-ସ୍ତେ— ।" ପ୍ରଭାକର ବାବୁ ଉଚିତ ଭାବରେ ହାତ ତଳକୁ ଉପରକୁ କରି ଧୀରଗମନର ସୂଚନା ଦେଲେ ।

"ଆମେ ସେ ଡଙ୍ଗାରେ ଯାଇପାରିବା ?" ମୁନୁ ଆଗ୍ରହରେ ପଚାରିଲା ।

ପ୍ରଭାକର ବାବୁ ତାକୁ ନିରାଶ କରିବାକୁ ଚାହିଁଲେ ନାହିଁ । କହିଲେ, "ଅଚ୍ଛା ହେଉ, ଦେଖିବା ।"···ଏବଂ ତାଙ୍କର ମନେପଡ଼ିଲା ଯେ, କେଉଁ ସୁଦୂର ଅତୀତରେ ସେ ଥରେ ଡଙ୍ଗାରେ ଯାଇଥିଲେ । ସେତେବେଳେ ତାଙ୍କୁ କେତେ ବୟସ ହୋଇଥିଲା ? ମୁନୁଠାରୁ ବଡ଼ ନିଶ୍ଚୟ, ଦଶ କିମ୍ବା ବାର ବର୍ଷ ହୋଇଥିବ । ଝଡ଼ ବତାସ କିଛି ନ ଥିଲା, କିନ୍ତୁ ପବନ ଟିକିଏ ଜୋର୍‌ରେ ବହୁଥିଲା । ବାପା ସିଧା ହୋଇ ମଝିରେ ବସିବାକୁ ପାଟି କରୁଥିଲେ । ହେଲେ ତାଙ୍କ କଥା ମାନି ହେଉ ନ ଥିଲା । କାରଣ ଡଙ୍ଗାରେ ଆଉ ଜଣେ ଥିଲା, ପ୍ରେମବନ୍ଧୁଟି,—ତା' ନାଁ ଜେମା । ଜେମା ଦୁଷ୍ଟ, ଭାରି ହସକୁରା, ତା' ଦାନ୍ତଗୁଡ଼ିକ ସୁନ୍ଦର । ସେ ଝୁଙ୍କିପଡ଼ି ପାଣିରେ ଗାର କାଟୁଥିଲା, ଗୀତ ବୋଲୁଥିଲା, ଓ କାନ୍ଧରୁ ଭୁଜା କାଢ଼ି ଖାଉଥିଲା । ସେଦିନ ତାଙ୍କର ଇଚ୍ଛା ହୋଇଥିଲା ଯେ, ସେ ଜେମାକୁ ସାଙ୍ଗରେ ନେଇ ପାଣିକୁ ଡେଇଁ-ପଡ଼ିବେ, ପବନରେ ଭାସି ଭାସି ଯିବେ, ଆଉ ଜେମା ସବୁବେଳେ ହସୁଥିବ । ପୁଣି ତାଙ୍କର ମନେ ପଡ଼ିଲା ଯେ, ସେ ସହି ନ ପାରି, କରିବ କି ନ କରିବ ହୋଇ

ଜେମାର ଗାଲରେ ଗୋଟିଏ ଖୁନ୍ଦା ମାରିଥିଲେ ଓ ଜେମା ତାକୁ ଶୁଟେଇ ଦେଇଥିଲା ।

ସେ ମନକୁ ମନ ହସିଲେ । ମୁନୁର ଉପସ୍ଥିତି ଓ ଜିଜ୍ଞାସାକୁ ଆଖିରେ ରଖି ହସିଲେ । ତାଙ୍କ ମନରେ ଆସିଲା,—ଏ ଟୋକା ମୋଠାରୁ ବି ଦୁଷ୍ଟ ହେବ । ତା' ଚେହେରାରୁ ଜଣାପଡ଼ୁଛି । ସେ ବି ତାର ପାଣିପବନର ଜେମାକୁ ଖୋଜିଆଣିବ ଓ ତା' ଗାଲରେ ଖୁନ୍ଦା ମାରିବ ।

ଦିବାକର ବାବୁଙ୍କର ସ୍ମିତହାସ୍ୟ କ୍ଷୀଣ ହେଲା ନାହିଁ । ମୁନୁ ମଧ୍ୟ ଅଜାଙ୍କୁ ଏମିତି ହସିବାର ଦେଖି ତା' ଓଠକୁ ଲମ୍ବେଇଦେଲା, ଟାକି ରହିଲା ପରି,—ଏହିକ୍ଷଣି ଅଜା ତାକୁ ଆଉ କିଛି କହିବେ ଓ ସେ ହସି ହସି ଗଡ଼ିଯିବ ।

ଭିତରଘର ଆଡ଼ୁ ମୁନୁର ମାଆ ରେଖା ଦେବୀଙ୍କର ପାଟି ଶୁଣାଗଲା,—
"ଦିନ ଦି'ପହର ହେଲାଣି, ମୁନୁ ଏପର୍ଯ୍ୟନ୍ତ ଗାଧୋଇ ନାହିଁ । ସେ କଣ ଏଠି କାହା କଥା ମାନୁଛି ?"

ପାଖରେ ପହଞ୍ଚିଯାଇ ସେ ଦୁଇଜଣଙ୍କୁ ଦେଖିଲେ ଓ ସ୍ନେହରେ ହାରିଗଲା ପରି ଚୁପ୍‌ହୋଇ ଛିଡ଼ାହୋଇଗଲେ । ତା'ପରେ କହିଲେ,—"କଅଣ ଅଜାଙ୍କ ପାଖରେ ବସି ଗେହ୍ଲେଇ ହେଉଛୁ ନା ?

"ଆଜି ଗାଧୁଆ ହେବ ନାହିଁ ?"

ମୁନୁ ଦୋଷୀଙ୍କ ପରି ଉଠିପଡ଼ିଲା ଓ ମାଆ ଆଡ଼କୁ ମୁହଁକଲା । ତତ୍‌କ୍ଷଣାତ୍ ଦିବାକର ବାବୁ ରାଗିଗଲେ । ଝିଅ ପ୍ରତି ଘୋର ବିରକ୍ତି ଜଣାଇ କହିଲେ, "ତମେ ସବୁ ଖାଲି ପିଲାଙ୍କୁ ଗେହ୍ଲା କରି ଜାଣିଛ । ନ ହେଲେ ଗାଳି ଦେଇ ଜାଣିଛ, ମାରି ଜାଣିଛ । ପିଲାଙ୍କୁ ଟିକିଏ ମଣିଷ କରିବାକୁ ଶିଖ !"

ବାପାଙ୍କ ତିରସ୍କାରକୁ ଆଡ଼େଇଦେବାର ନୁହେଁ—ଏହି ଭାବରେ ରେଖାଦେବୀ ଦୃଷ୍ଟି ତଳକୁ କଲେ । ଏବଂ ଯଥାକ୍ରମେ ପୁଅର ହାତ ଧରି ଗାଧୁଆ ଘରକୁ ନେଇଗଲେ ।

···ମୁନୁ ନଈ ଦେଖିଲା, ଡଙ୍ଗା ଦେଖିଲା । ଡଙ୍ଗାରେ ଚଢ଼ି ହେଲା ନାହିଁ, କିନ୍ତୁ ସେ ନଈ ବାଲିରେ ଖେଳିଲା; ଓ ପାଣିରେ ଗୋଡ଼ ଓଦାକଲା । ଦିବାକର ବାବୁ ତା' କଥାରେ ପଡ଼ି ପାଣିକୁ ଗଲେ, ଓ ପିଲାଦିନେ ସେ କେମିତି ଥରେ ନଈରେ ବୁଡ଼ିଯାଉଥିଲେ, ତା'ର ବର୍ଣ୍ଣନା କଲେ ।

...ଆଉ ସଦନେ ସେ ମୁନୁକୁ ନଈକୂଳରେ ଚଲାଇ ନେଇ ସହର ମୁଣ୍ଡରେ ଥିବା ଗୋଟିଏ କାଳୀମନ୍ଦିରକୁ ଗଲେ । ଧୁହେଁ ଦେବୀଙ୍କୁ ଭୂମିଷ୍ଠ ପ୍ରଣାମ କଲେ । ତା'ପରେ ସଦାକର ବାବୁ କିଛି ସମୟ କଣ ଭାବିଲାପରି ହୋଇ ବସିରହିଲେ ଓ ମୁନୁ ସେହି ଅବସରରେ କାଳୀଙ୍କୁ ଠିକନକ କରି ଦେଖିଲା । ସେଥି ସମ୍ବନ୍ଧରେ ମୁନୁର ପ୍ରଶ୍ନ ଆସି ପହଞ୍ଚିଲା, "ଅଜା କାଳୀ କଣ ମଣିଷଙ୍କୁ ମାରନ୍ତି ? ତାଙ୍କ ଦେହସାକ ଏତେ ମଣିଷ ମୁଣ୍ଡ କାହିଁକି ?" "କେ-ତେ ରକ୍ତ ବହିପଡ଼ୁଛି !"

"ହଁ, ସେ ଖରାପ ଲୋକମାନଙ୍କୁ ମାରିଦିଅନ୍ତି ।"

ମୁନୁ ପୁଣି ସେହି ଭୀତ-ମୁଗ୍ଧ ଦୃଷ୍ଟିରେ ସଦାକର ବାବୁଙ୍କୁ ଚାହିଁଲା । ଅଜା କାଳୀଙ୍କୁ ଜାଣନ୍ତି, ଅଜା ସବୁ ଜାଣନ୍ତି ।

ସଦାକର ବାବୁ ତା' ମୁହଁର ଭାବ ଦେଖିପାରିଲେ ଓ ଆଶ୍ୱାସନା ଦେଲେ, "ତୁ କାହିଁକି ଡରୁଛୁ ? ତୁ ତ ଆମର ଭଲପିଲା—ନୁହେଁ ।"

ମନ୍ଦିରରୁ ବାହାରିଆସି ବରଗଛ ଚଉତରାରେ ବସି ସେ ମୁନୁର ହାତକୁ ହାତରେ ରଖିଲେ, "ତୁ ଡରିବୁ ନାହିଁ, ମୋତେ ଡରିବୁ ନାହିଁ । ବୁଝିଲୁ ?" ତାଙ୍କର ମନେହେଲା ଯେ, ମନ୍ଦିର ବଗିଚାର ଯେତେକ ପତ୍ର, ଅଦୂରବର୍ତ୍ତୀ ନଈର ଯେତେକ ଛୋଟ ଛୋଟ ଢେଉ, ଓ ଭୂଇଁରେ ଚାଲୁଥିବା, ଖୁସ୍‌ଖାସ୍ ହେଉଥିବା ଯେତେକ ପ୍ରାଣୀ, ସମସ୍ତେ ମିଳିମିଶି ସାନକଥାର ବୃହତ୍ ମର୍ମଟିଏ ଗଢ଼ି ତୋଳୁଛନ୍ତି । ତାଙ୍କୁ ସାହସ ଦେବାପାଇଁ, ମୁନୁକୁ ଶିଖାଇବା ପାଇଁ । ଏ ଜୀବନର ଗୋଟିଏ ମୂଲ୍ୟବାନ ତଥ୍ୟ ।

ସଦାକର ବାବୁ ଅନୁପ୍ରାଣିତ ହୋଇ କହିଚାଲିଲେ, "ତୁ ଅନ୍ଧାରକୁ ଡରିବୁ ନାହିଁ । ଅନ୍ଧାରରେ ଭୂତ ନ ଥାଆନ୍ତି, ସେ ସବୁ ମିଛ କଥା ।...ତୁ ସମସ୍ତଙ୍କୁ ଭଲପାଇବୁ,—ଗଛ ପତ୍ର, ଆକାଶ ପବନ, ଆଲୁଅ ଅନ୍ଧାର, ସାଙ୍ଗସାଥୀ । ଠିକ୍ ଯେମିତି ଭଲପାଇବୁ, ସେତିକି ଭଲପିଲା ହେବୁ । କେହି ତୋତେ ଡରାଇପାରିବେ ନାହିଁ । ଅନ୍ଧାର, କାଳୀ ଠାକୁରାଣୀ, ତୋ ମାଷ୍ଟର କେହି କିଛି କରିପାରିବେ ନାହିଁ ।"

ଫେରନ୍ତା ବାଟରେ କିଏ ବେଶି ଖୁସି ଥିଲା,—ମୁନୁ କି ସଦାକର ବାବୁ— କହିବା କଷ୍ଟ । ତେବେ ସଦାକର ବାବୁଙ୍କର ମନେ ହେଉଥିଲା ଯେ, ଆଜି ତାଙ୍କୁ ଭାରି ହାଲୁକା ଲାଗୁଛି । ଯେପରି କି ସେ ଆଜି ଶୋଇଲାବେଳେ ସେହି ପୁରୁଣା କଳା କମ୍ବଳଟାକୁ କାଢ଼ି ଫୋପାଡ଼ି ଦେବେ, ଘୋଡ଼େଇ ହେବେ ନାହିଁ । ଏବଂ କାଳୀଙ୍କ ମୁହଁରେ ଲାଖିଥିବା ହସଟିକୁ ଦେଖୁ ଦେଖୁ ଶୋଇପଡ଼ିବେ ।

ଘର ପାଖ ହୋଇ ଆସିଲାଣି । ଏହି ସମୟରେ ପ୍ରଭାକର ବାବୁ ହଠାତ୍ ରସିକତା କଲେ । କହିଲେ, "ମୁନୁ, ତୁ କାହାକୁ ବାହାହେବୁ କହିଲୁ ?"

"ଆଇଙ୍କୁ"

"ଦୂର୍ । ଶୁଣ୍, ତୁ ଯାହାକୁ ବାହାହେବୁ ସେ ଭାରି ସୁନ୍ଦରୀ ହୋଇଥିବ । ସୁନ୍ଦରୀ ମାନେ ଖାଲି ନାକ ଆଖି ଭଲ ହୋଇଥିବ, ତା' ନୁହେଁ । ସେ ଏମିତି ହୋଇଥିବ ଯେ, କେବେହେଲେ ବୁଢ଼ୀ ହେବ ନାହିଁ । ତା'ର ଆଖି ସବୁବେଳେ ଜଳୁଥିବ, ତାର ମୁହଁ ସବୁବେଳେ କଥା କହିଲା ପରି ଦିଶୁଥିବ—ଠିକ୍ ତୋ'ର ପରି । ତୁ ପଦେ ଗୀତ ବୋଲିଲେ ସେ ଆଉ ପଦେ ବୋଲିବ । ସେ ସବୁଦିନେ ବଞ୍ଚିଥିବ । ତୁ ତା'କୁ ଭଲ ପାଇବୁ ନୁହେଁ ?"

ସବୁ ବୁଝିପାରିଲା ପରି ମୁନୁ ଆଉ ଥରେ ମୁଣ୍ଡ ହଲାଇଲା । ଯେପରି କି ସେ ଠିକ୍ କରିଛି ଯେ, ଅନ୍ୟ ତା' ପାଇଁ ଯାହା ବାଛିଦେବେ ସେଥିରେ ସେ ଷୋଳ ଅଣା ରାଜି ।

ଏହିପରି ଭାବରେ ପ୍ରଭାକର ବାବୁ ତା'କୁ କେତେଆଡ଼େ ବୁଲାଇଲେ, କେତେକଥା ଶିଖାଇଲେ, ଓ କେତେ ବଡ଼ କର ସନ୍ଧାନ ଦେଲେ, ଯେଉଁଠି ସେ ଦିନେ ନା ଦିନେ ରାଜା ହୋଇ ବସିବ । ଖରାବେଳେ ପାର୍କ୍‌ର ବେଞ୍ଚରେ ବସାଇ ଚିନାବାଦାମ ଖୁଆଇଲେ ଓ କହିଲେ ଯେ, ଯେଉଁମାନେ ଘାସରେ ଛିଣ୍ଡା ଲେଙ୍ଗୁଡ଼ା ପିନ୍ଧି ଶୋଇଛନ୍ତି ସେମାନେ ଶ୍ରେଷ୍ଠ ନୁହନ୍ତି । ପୃଥିବୀରେ କେହି ଶ୍ରେଷ୍ଠ ନୁହେଁ । ତାଙ୍କ ପୁରୁଣା ଅଫିସ ଘର ଦେଖାଇଲେ ଓ କହିଲେ ଯେ, ଅଫିସରେ ହାକିମ ହୋଇ ବସିବା ସହଜ ନୁହେଁ । ମଣିଷଙ୍କୁ ପାଳନା କଣ କମ୍ କଥା ? ଆକାଶରେ ଉଡ଼ାଜାହାଜ ଦେଖାଇ କହିଲେ ଯେ, ଉଡ଼ିବାର ସୀମା ନାହିଁ; ଆକାଶ ସ୍ୱର୍ଗର ଅଧା ବାଟରେ । କଲେଜ ଦେଖାଇଲେ, ଡାକ୍ତରଖାନା ଦେଖାଇଲେ, ସିନେମା ଦେଖାଇଲେ । ସବୁ ପଥରର ଭିତରେ ସେ ମୁନୁକୁ ଚିହ୍ନାଇ ଦେଲେ ଯେ, ସେ ସେଇଠି ଅଛି । ଭବିଷ୍ୟତରେ ଖୁସିହୋଇ ବସିଛି—ରାଜାଙ୍କ ପରି, ଭଗବାନଙ୍କ ପରି ।

ମୁନୁ ରାତିରେ ଅନ୍ୟାଙ୍କ ପାଖରେ ଶୁଏ । ପ୍ରଭାକର ବାବୁ ଖବରକାଗଜ ପଢ଼ି ମୁନୁକୁ ପଲିଟିକ୍‌ସ୍‌ର ପଦେଅଧେ କହିବାକୁ ପାଶ୍ଚାତ୍ପଦ ହୁଅନ୍ତି ନାହିଁ । କହନ୍ତି ଯେ, ଅସମ୍ଭବ ନୁହେଁ, ସେ ବଡ଼ହେଲେ ଜଣେ ନେତା ହୋଇପାରେ । ଏବଂ ସେ ତାକୁ ସନ୍ଧ୍ୟାବନ୍ଦନାର ପ୍ରାର୍ଥନା ଶିଖାନ୍ତି । କହନ୍ତି ଯେ, ପ୍ରାର୍ଥନା ଅତି ମୂଲ୍ୟବାନ ଓ ଦରକାରୀ ଜିନିଷ, ଟନିକ୍ ଖାଇଲା ପରି । ସ୍ୱୟଂ ଭଗବାନ ମଧ୍ୟ ପ୍ରାର୍ଥନା କରୁଥିବେ ।

ଶୋଇଲା ପୂର୍ବରୁ ସେ ବେଳେବେଳେ ଅଯଥାରେ କହିପକାନ୍ତି—"ମୁନୁ ଡରୁନାହୁଁ ତ ? ଅନ୍ଧାରକୁ ଡରିବୁ ନାହିଁ, ମୋତେ ଡରିବୁ ନାହିଁ । ବୁଝିଲୁ ?"

( ୩ )

ଯେଉଁଦିନ ମୁନୁର ବିଦା ହେବାର କଥା, ସେଦିନ ଦିବାକର ବାବୁ ସକାଳୁ ସକାଳୁ ଉଠିଲେ ଓ ମୁନୁକୁ ସାଙ୍ଗରେ ଧରି ଯଥାବିଧି ବୁଲି ବାହାରିଲେ । ତାଙ୍କର କୌଣସି ଭାବାନ୍ତର ପରିଲକ୍ଷିତ ହେଉ ନ ଥିଲା । ବରଂ ସେ ଆଜି ତାଙ୍କୁ ଅନେକ ଉପଦେଶ ଦେଲେ, ପୂର୍ବଦିନଠାରୁ ଯଥେଷ୍ଟ ବେଶୀ । କିନ୍ତୁ ମୁନୁ ଯେତେବେଳେ କହିଲା,—"ଅଜା ଖରା କାଟୁଛି, ଘରକୁ ଯିବା" ସେତେବେଳେ ସେ ଟିକିଏ ବିବ୍ରତହେଲେ । କହିଲେ—ବେଶୀ ବେଳ ହୋଇନାହିଁ ତ, ଏତେ ବ୍ୟସ୍ତ ହେଉଚୁ କାହିଁକି ? ଏ ଖରା ଭଲ । ଦେଖିଲୁ, କେତେ ଲୋକ, ତୋ' ଭଳିଆ କେତେ ପିଲା ବାହାରେ ବୁଲୁଛନ୍ତି । ଏଇ ଦେଖ୍ ଏ ଚଢ଼େଇ ଦି'ଟା କେମିତି ଲୁଚକାଳି ଖେଳୁଛନ୍ତି ।"

...ମୁନୁର ଟ୍ରେନ ରାତି ସାଢ଼େ ନଅଟାରେ । ସେତେବେଳେ ମୁନୁକୁ ସାଙ୍ଗରେ ନେଇ ବଜାରକୁ ଯିବାର କୌଣସି ଆବଶ୍ୟକତା ନ ଥିଲା । ପୁଣି ସେତେବେଳେ ଆକାଶରେ ମେଘ ଉଠିଥିଲା । ତଥାପି ଦିବାକର ବାବୁ ବାହାରିଲେ । କହିଲେ ଯେ, ମୁନୁ ଓ ତା' ମାଆପାଇଁ ଆହୁରି କେତେ ଔଷଧପତ୍ର ଅଣିବାର ଅଛି । ସେ ତାଙ୍କ ପୁରୁଣା ସାଙ୍ଗ ଡାକ୍ତର ଗୁରୁ ମାହାନ୍ତି ଦୋକାନରୁ ନେଇଆସିବେ, ଶସ୍ତାରେ ମିଳିବ । ଆଉ କାହାକୁ ପଠାଇଲେ ଚଳିବ ନାହିଁ ।

...ଡାକ୍ତର ଗୁରୁ ମାହାନ୍ତି,—ଲମ୍ବା ହୃଷ୍ଟପୁଷ୍ଟ ଲୋକ, ମୁଣ୍ଡ ସମ୍ପୂର୍ଣ୍ଣ ଚନ୍ଦା, ନାକ ତଳେ ସରୁ ଟେଲା ନିଶ । ସେ ଦିବାକର ବାବୁଙ୍କର ସହପାଠୀ ଥିଲେ । କିନ୍ତୁ ତାଙ୍କର ସମତୁଲ ନକଲି ଦାନ୍ତର ହସ ବନ୍ଧୁତ୍ୱ ସୁଲଭ ନୁହେଁ । ଏ ଦୁହିଁଙ୍କୁ ଦେଖିବାମାତ୍ରେ ସେ ଉଚ୍ଚ ହସରେ ଅଭିବାଦନ ଜଣାଇଲେ,—"କିରେ ଦିବାକର, ତୋର ଦେଖା ନାହିଁ । ଏ କିଏ, ତୋର ନାତିମଣି ? ଆଉ କଣ କରୁଚୁ ଆଜିକାଲି ? ନାତି ସାଙ୍ଗରେ ବସି ଚୁଉକୁମ୍ଭି ଖେଳୁଚୁ ? ହେଃ ହେଃ—"

ଦିବାକର ବାବୁ ଯଥାସମ୍ଭବ ହସିଲେ । କିନ୍ତୁ ମନେ ମନେ ସେ ଗୁରୁ ମାହାନ୍ତିଙ୍କ ସମେତ ତାଙ୍କର ବନ୍ଧୁମାନଙ୍କୁ ପୁନର୍ବାର ଘୃଣା କଲେ । ଏମାନେ କିଛି ବୁଝନ୍ତି ନାହିଁ । ଗୁରୁ ମାହାନ୍ତିପରି ଲୋକ । ସେ ଜୀବନଯାକ ଖାଲି ଟଙ୍କା ରୋଜଗାର କଲା, ଔଷଧ ଶିଶି ସଜାଡ଼ିଲା ଓ ଦାନ୍ତର ଶୋଭା ଦେଖାଇଲା । ସେ କେଉଁଠୁ ବୁଝିବ ଯେ, ନାତି ଗୋଟିଏ ଗେହ୍ଲିଆ ମଣିଷ, ଖେଳିବାର ବସ୍ତୁ ନୁହେଁ ?

ଯାହାହେଉ ଔଷଧପତ୍ର କିଣାହେଲା । ଗୋଟାଏ କେଉଁ ଔଷଧ ଷ୍ଟକ୍‌ରେ ନ ଥିଲା । ଡାକ୍ତର ମାହାନ୍ତି କହିଲେ ଯେ, ତାଙ୍କ ଘରେ ଅଛି, ସେ ଆଣି ଦେବେ

ପାରିବେ —ଯଦି ଜରୁରୀ ହୋଇଥାଏ । ଦିବାକର ବାବୁ କହିଲେ, "ହଁ, ତୁ ଆଣ୍ । ନ ଆଣିଲେ ହେବ ନାହିଁ ।" ମେଘ କଳା ହୋଇଗଲାଣି ଓ ଘଡ଼ଘଡ଼ି ମାରିଲାଣି, ସେଥିପ୍ରତି ତାଙ୍କର ଲକ୍ଷ୍ୟ ନ ଥିଲା ।

...ଡାକ୍ତର ମାହାନ୍ତି ରୋଗୀ ଦେଖି ବାହାରିଲେ, ସେଆଡ଼ୁ ଔଷଧ ନେଇ ଆସିବେ । କିନ୍ତୁ ତାଙ୍କର ଫେରିବାକୁ ଡେରି ହେଲା । କାରଣ ଇତି ମଧ୍ୟରେ ବର୍ଷା ଆରମ୍ଭ ହୋଇଯାଇଥିଲା ।

ଦିବାକର ବାବୁ ଅପେକ୍ଷା କଲେ । ମେଘର ଗର୍ଜନ ଓ ବର୍ଷାର ମୂଷଳ ଧାରାରୁ ଆରମ୍ଭ କରି ଟୁପ୍ ଟୁପ୍ ଯାଏଁ । ଦୋକାନରେ କେହି ଗରାଖ ନ ଥିଲେ, ଜଣେ ଦୁଇଜଣ କର୍ମଚାରୀ କେଉଁ ଆଡ଼ୁଆଳରେ ରହିଯାଇଥିଲେ । ଗଳିରାସ୍ତାରେ କେବେ କେମିତି ଗୋଟାଏ ରିକ୍ସା ଓ ଛତାଧାରୀ ଲୋକ ଗାଲିଦେଲା ପରି ଚବର ଚବର ହୋଇ ଚାଲିଥିଲେ ।

ବର୍ଷାର କେଉଁ ଏକ ଅନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଦିବାକର ବାବୁଙ୍କର ମନେହେଲା ଯେ, ଆଉ ଅପେକ୍ଷା କରିହେବ ନାହିଁ । ଔଷଧ ମିଳିବାର ଅପେକ୍ଷା ନୁହେଁ, ଜୀବନର ସମଗ୍ର ଅପେକ୍ଷା । ଏହି ଓଦା ଧୂସର ଦଣ୍ଡରେ ସେ ମୁନୁକୁ ସାଙ୍ଗରେ ଧରି ଏକୁଟିଆ ଏହି ଔଷଧ ଦୋକାନରେ ବସିଛନ୍ତି । କାହିଁକି ?

ଆଉ ଦୁଇ ତିନି ଘଣ୍ଟା ପରେ ମୁନୁ ଚାଲିଯିବ । ତାକୁ ଅଟକାଇ ହେବ ନାହିଁ ।

ହଠାତ୍ ତାଙ୍କ ବ୍ୟାକୁଳତାର ସୁଅ ଅଜାଡ଼ିହୋଇପଡ଼ିଲା, ବାଟବଣା ହୋଇ । ସେ ତାଙ୍କ କୋଳରେ ଢଳେଇ ପଡ଼ିଥିବା ମୁନୁକୁ ଜାକି ଧରିଲେ । ମୁନୁ ଅଧା ନିଦରେ ଗୁଁ ଗୁଁ ହେଲା, ତା'ର ଗୋଡ଼ ହାତ ଗୁଟିବାର ପ୍ରୟାସ କଲା । କିନ୍ତୁ ଦିବାକର ବାବୁ ନିରସ୍ତ ହେଲେ ନାହିଁ । ସେ ତା'ର ଜାମାତଳେ ହାତ ଗଳାଇ ତା' ପିଠି ଓ ତା' ଗୁନ୍ଥିର କଅଁଳ ମାଉଁସକୁ ପୁଳା ପୁଳା କରି ଧରିଲେ । ଯେପରି କି ସେ ନିଆଁରେ ହାତକୁ ପୋଡ଼ିବାକୁ ଦେଇ ଉଷୁମ ଖୋଜୁଛନ୍ତି । ଶେଷଥର ପାଇଁ । କମ୍ପା ଛୁଟନ୍ତା ଶେଷ ବୟସର ଦେହକୁ ମୁଠେଇ ଧରୁଛନ୍ତି ।

ମୁନୁ ନିଦରୁ ଉଠିପଡ଼ି କାନ୍ଦିଲାପରି ହେଲା । କିନ୍ତୁ ଦିବାକର ବାବୁ ତା'ର କାନ୍ଦଣାକୁ ଦବେଇଦେଲେ । ମନେ ମନେ କହିଲେ, "ମୁଁ ତୋତେ ମଣିଷ କରିବି, ତାଙ୍କ ହାତର ଚାପ କୋହଳ ହେଲା ନାହିଁ ।

ଏହି ସାମାନ୍ୟ ସାନ ଲୋକଟାକୁ ଅଧିକାର କରିହେବ ନାହିଁ ? ମୁନୁର କାନ୍ଦଣା ସାଙ୍ଗରେ ତାଙ୍କର ଆତୁରତା ବଢ଼ି ଚାଲିଲା । ଏପରି କି ତାଙ୍କ ମନରେ ଆସିଲା ଯେ, ଯଦି ହାତରେ ଚାପ ଆଉରି ଟାଣ ହୁଏ, ତାହା ହେଲେ ହୁଏତ— । ତାହାହେଲେ ମୁନୁ ଏମିତି ଥିବ; ମୁନୁ ବଢ଼ିବ ନାହିଁ, ମୁନୁ ଚାଲିସିବ ନାହିଁ ।

କିନ୍ତୁ ଅଳ୍ପ ସମୟ ମଧ୍ୟରେ ଡାକ୍ତର ମାହାନ୍ତି ଆସି ପହଞ୍ଚିଗଲେ । ଔଷଧ ଆସିଲା ଏବଂ ଶିକ୍ଷା ଡକାହେଲା ।

ବାଟଯାକ ମୁନୁ ଅକାରଣରେ କାନ୍ଦି ଚାଲିଥାଏ । ଦିବାକର ବାବୁ ଯନ୍ତ୍ରଚାଳିତ ପରି ତା'ର ପିଠିକୁ ଥାପୁଡ଼େଇ ଦେଇ ରହିଯାଉ ଥାଆନ୍ତି ଓ ଶିକ୍ଷାର ଓଦାକନା ଛାତିକୁ ଚାହିଁ ଥାଆନ୍ତି ।



# ନୀତ ଓ ମଣିଷ

ବଟଗ ଦବାକର ବାବୁ ! ଆହା, କେଡ଼େ ବକଲରେ ନୀଡ଼ ଝୋକାକୁ ଜାବୁଡ଼ି ଧରଲେ, ତାକୁ କଛୁ ଦେବେ କ ତା'ଠାରୁ କଛୁ ପାଇବେ ବୋଲ ! କାହିଁକନା ଆଉ କେଉଁଠୁ କଛୁ ଆଶା କର ହେବ ନାହିଁ, କନ୍ତୁ ଯେହେତୁ ମୁନୁ ପିଲଟିଏ, ତାକୁ ସହଜରେ ବଶ କର ହେବ, ତା'ର କଅଁଳ ମନରେ ଶାରକାଟି ହେବ (କଅଣ ନା ମୁଁ ତାକୁ ମଣିଷ କରୁଛ) ଏବଂ ମନେ ହେବ ଜୀବନ ଉପରେ ଏବେ ମଧ୍ୟ କଛୁ ଗୋଟାଏ ଅଧିକାର ଜମେଇ ହେଉଛୁ । ପୂଜନୀୟ ଅଜା, ତମେ ସାନ ପିଲଟା ଉପରେ କଭଳ ଅତ୍ୟାଚ୍ୟର କରୁଛ ବୁଝି ପାରୁଛ ?

ମୁଁ ହୋଇଥିଲେ କ'ଣ କରଥାଆନ୍ତି ଜାଣ ? ଅସ୍ତାଚଳ-ଗାମୀ ସୂର୍ଯ୍ୟ ସାଙ୍ଗରେ ସାଥୀ ହୋଇ ମୁଁ ନଜକୁ ଆହୁର ଭାଗ୍ୟବାନ୍ ମନେ କରଥାଆନ୍ତ । ସେ ତେଜ ଗଲଣି ବୋଲ ମୁଁ ନସ୍ତେଜ ନୁହେଁ । ମୁଁ ନବଢ଼-ସୁନ୍ଦର, ସାରାଜୀବନର ସାରାଂଶରେ ଦୀପ୍ତ, ତୃପ୍ତ, ଭାବଦଗ୍ଧ । ଲାଲେ ଲଲ୍ ! ମୁଁ କାହିଁକ କାହା ଉପରେ ଅଧିକାର ଜମେଇବାକୁ ବସିବ ? ମୁଁ ଘରର ମାଲକ ବୋଲ ରୁଚ୍ଛାଟାକୁ ରଗିବ ଯେ ମୋ ପାଇଁ ମାଗୁର ମାଛ ଅଣା ହୋଇନାହିଁ ? ଜନା ପିଲଟାକୁ ଏମିତ ହାଇରାଣ କରବ ? ନା, ମୁଁ ମୋର ଏକୁଟିଆ ବସିବ ସୂର୍ଯ୍ୟାସ୍ତକୁ ଚାହିଁ । ଏକୁଟିଆ ଭାବବ । ଏକୁଟିଆ ଗୁଣୁ ଗୁଣୁ ହେବ । ପଢ଼ିବ, ଲେଖିବ, ପ୍ରାର୍ଥନା କରବ, ମୋର ଯାହା ଖୁସି କରବ । ମୋର ସଂସାର କାମ ସର-ଗଲଣି । ଏଣିକ କେହ ମୋ ଉପରେ ଦାବୀ କର ପାରବ ନାହିଁ ଯେ ତା' ପାଇଁ ସମାଜ ପାଇଁ ଏଇଆ କରବା ଉଚତ । ମୁଁ ମଧ୍ୟ କାହାର ଉପରେ କଛୁ ଦାବୀ କରବାକୁ ଚାହେଁ ନାହିଁ ! ଏଣିକ

ମୋର କଥାଭାଷା ହେବାର ଅଛି, "ଦୁ' ଜଣେ ମୁହାଁମୁହିଁ ଗମ୍ଭୀର ଦୁଃଖେ ଦୁଃଖୀ" ହୋଇ ସୂର୍ଯ୍ୟଙ୍କ ସାଙ୍ଗରେ । ରମାକାନ୍ତ ରଥଙ୍କ ଭାଷାରେ ତାଙ୍କ ସାଙ୍ଗରେ । ଆଃ ! କି ଚମତ୍କାର ଏଇ ଅନୁଭବ !

ଧର ମୁଁ ଲେଖକ ନୁହେଁ କି ଭାବୁକ ନୁହେଁ । ତା'ହେଲେ କଣ କରିଥାଆନ୍ତି ଜାଣ ? ମୁଁ ଖେଳି ଥାଆନ୍ତି । ସେଇ ମୁନୁ କି ତା'ର ପରି କେଉଁ ପଡ଼ୋଶୀର ନାତିନାତୁଣୀଙ୍କୁ ନେଇ । ନିର୍ବୋଧ ଆନନ୍ଦର ଖେଳ । ପିଲା ନ ହେଲେ ପୁଣି ବିଲେଇ, କୁକୁର, ମୂଷା, ଫୁଲ, ପ୍ରଜାପତି, ଇତ୍ୟାଦି । କିଛି ନ ହେଲେ ଠାକୁର-କଣେଇ । ପ୍ରାପ୍ତବୟସ୍କ ମଣିଷକୁ ବାଦ୍ ଦେଇ ଜୀବନ୍ତ କାଳ୍ପନିକ ପ୍ରାଣୀ କଣ କମ୍ ଅଛନ୍ତି ପୃଥିବୀରେ ଯେଉଁମାନଙ୍କ ସାଙ୍ଗରେ ଖେଳି ହେବ, ଅଥଚ ଦିଆନିଆର ପ୍ରଶ୍ନ ଉଠୁ ନାହିଁ ? ତେଣୁ ନ ପାଇ ହାରିଯିବାର ଅବକାଶ ନାହିଁ ?

ଧର, ମୁଁ ଏଭଳି ହତଭାଗା ଯେ କେବଳ ଲୋକମାନଙ୍କ ସାଙ୍ଗରେ ମିଶିବାକୁ ଭଲପାଏ, ତାହାହେଲେ ? ତାହାହେଲେ ମୋତେ କେହି ନ ପଚାରିଲେ ବି ମୁଁ ସେମାନଙ୍କୁ ମନେ ମନେ ଭଲ ପାଇବି, ଖୁସି ହେବି । ଅର୍ଥାତ୍ ମନେ ମନେ ଗୁଡ଼ ଖାଇବି । କେବଳ ମନେ ମନେ । ବୁଝିଲ ଦିବାକର ବାବୁ ? ମନଟା ତ ମୋଅର, ଶେଷଯାଏଁ—ଏତିକି ବୁଝିପାରୁ ନାହଁ ?

କିନ୍ତୁ ଯେତେବେଳେ ଆଖିକୁ ଦିଶିବ ନାହିଁ, କାନକୁ ଶୁଭିବ ନାହିଁ, ଚଳପ୍ରଚଳ ହୋଇ ପାରିବ ନାହିଁ, ରୋଗ-ବଇରାଗରେ ସଢ଼ୁଥିବି···ହାଁପ ହବୁ ଗୁଳିଯିବି, ଖାଲି ଥିବ ଏଇ ନଉଛୁଣା ମନଟା, ଯେତିକି ଦୁଃଖକଷ୍ଟ ଗ୍ଲାନି ଅପମାନକୁ ସହିବା ପାଇଁ ? ହେଇଠୁ !?

ଆଃ ! ଏତେ ଦୂରକୁ ଭାବୁଛ କାହିଁକି ? ପଚାରୁଚ ଯଦି, କହିବି କଣ କରିବା ଉଚିତ ? ବୁଢ଼ା ସିଂହ ପରି ମାନେ ମାନେ ଗୁଳିଯାଅ କେଉଁ ବନସ୍ତକୁ, ଯେଉଁଠି କେହି ନ ଥିବେ, ଖାଲି ତୁମେ, ତୁମ ମରଣ, ଆଉ ତୁମ ଭଗବାନ୍···

ଦିବାକର ବାବୁଙ୍କୁ ଯେତିକି ବୟସ ହୋଇଥିଲା, ଆଜି ମୋ ବୟସ ସେତିକି କି ତା'ଠୁଁ ବେଶି ହେବ । ସେଇଥିପାଇଁ ଏଇ ଆସ୍ଫାଳନ । ଯେ ମୁଁ ବୁଢ଼ା ହେଲେ ମଧ୍ୟ ତାଙ୍କ ପରି ଦୁର୍ବଳ ଦୟନୀୟ ହେବାକୁ ଚାହେଁ ନାହିଁ । ସତେକି ମୁଁ ଶାକ୍ୟମୁନି ସିଦ୍ଧାର୍ଥଙ୍କ ଠାରୁ ବେଶି ବୁଦ୍ଧିମାନ୍ ! ସାମାନ୍ୟ ଲେଖକ ହୋଇଛି ବୋଲି ମୁଁ ଭବିତବ୍ୟ ଦୃଶ୍ୟଟିକୁ ନାହିଁ କରିଦେଇ ପାରିବ !

କଟକ

ଅକ୍ଟୋବର ୧୪, ୧୯୮୭



# ଦୁଃଖର ସାଥୀ

ପ୍ରତ୍ୟୁଷ । ଶ୍ରୀଯୁକ୍ତ ବିମଲ ରାୟ ବିଛଣାରୁ ଉଠିଲେ ।

ବିମଲବାବୁ ଯୁବକ ନୁହନ୍ତି । କିନ୍ତୁ ତାଙ୍କ ଶରୀର ସୁସ୍ଥ ଓ ସୁଗଠିତ, ମୁହଁରେ ବୟସର ରେଖା ଦେଖିବାକୁ ମିଳେ ନାହିଁ, ଏବଂ କେଶରେ ଶୁଭ୍ରତାର ଅନୁପ୍ରବେଶ ନାହିଁ । ତା' ଛଡ଼ା ତାଙ୍କ ଓଠ ସରୁ ଓ ଅନେକ ସମୟରେ ଦରବୁଜା ହୋଇ ପାଇବାର ଇଚ୍ଛା ଜଣାଏ । କିନ୍ତୁ ତାଙ୍କୁ ଯଦି କେହି କହେ ଯେ; ଆପଣ ଚିରଯୁବକ ହେତେବେଲେ ସେ ଅଳ୍ପ ହସି ମୁହଁ ତଳକୁ କରିଦିଅନ୍ତି ଓ ଝିବାଲ୍ୟପର ହୁଅନ୍ତି । ଯେପରି କି ସେ କହିବାକୁ ଚାହୁଁଛନ୍ତି, କହି ପାରୁନାହାନ୍ତି ଯେ, ତାଙ୍କର ଗୋଟିଏ ଦୁଃଖ ଅଛି । ସେହି ଦୁଃଖ ଭାବରେ ତାଙ୍କର 'ତାରୁଣ୍ୟ' ଆହୁରି ଫୁଟିଉଠେ, କାରଣ ସେଥିରେ କରୁଣତା-କମନୀୟତା ଦେଖାଦିଏ ।

ଗୋଟିକିଆ ବିଛଣା । ବିମଲବାବୁ ତାଙ୍କ ବିଛଣାକୁ ଭଲ ପାଆନ୍ତି । ବେଡ଼୍‌କଭର୍‌ରେ ଘୋଡ଼ା ହୋଇଥିଲେ ମଧ୍ୟ କିଏ ତା ଉପରେ ବସି ପଡ଼ିଲେ, ସେ ବ୍ୟସ୍ତ ହୋଇଉଠନ୍ତି । ତାଙ୍କର ମନେହୁଏ ଯେ ଗୋଟିଏ ଅବାଞ୍ଛିତ ଅପର ଦେହ ତା'ର ସନ୍ତକ ରଖିଦେଇ ଗଲା, ତାକୁ ଝାଡ଼ିଦେବାକୁ ହେବ ।

ବିମଲବାବୁ ତାଙ୍କ ବିଛଣାକୁ ସଜାଡ଼ିଲେ । ତକିଆ ତଳୁ ଯୋଡ଼ିଏ ବହି କାଢ଼ି ଆଣି ଥାକରେ ରଖିଲେ,—ଗୋଟିଏ ଦର୍ଶନ ସମ୍ବନ୍ଧୀୟ ଓ ଅନ୍ୟଟି ରାଜନୀତି-ମୂଳକ । ତା'ପରେ ସେ ବହିଥାକରେ ଟିକିଏ ଆଖି ବୁଲାଇନେଲେ, ଓ ଭଗବଦ୍-ଗୀତାକୁ ହାତରେ ଆଣି ପୃଷ୍ଠା ଓଲଟାଇଲେ । ଗୋଟିଏ ଶ୍ଳୋକ ପଢ଼ୁଥିବା ଅବସ୍ଥାରେ ସେ ଝରକାବାଟେ ବାହାରକୁ ଅନାଇଲେ, ଦେଖିଲେ ଯେ, କାନ୍ଥ ଚଛରେ ଲଟାଲଗି ହୋଇ ଛନୋଟି ନାଲି ଫୁଟିଛି । ଏବଂ ଦେଖିଲେ ଯେ, ଗଛ ଡାଳରେ ଯୋଡ଼ିଏ କାଉ କା କା କରୁଛନ୍ତି, ଜଣକ ପରେ ଜଣେ । ଜଣକର ଦୁର୍ବଳ ସ୍ୱର, ଅନ୍ୟଟିର ତୀକ୍ଷ୍ଣ ସ୍ୱର ।

ନୂଆ ଦିନର ବର୍ଣ୍ଣ ଓ ଧ୍ୱନି ତାଙ୍କ ମନକୁ ଛୁଇଁଲା । ସେ ଗୀତାକୁ ହାତରେ ଧରି ଭାବିଲେ । ଭାବିଲେ ଯେ, ସେ ଏହି ସଙ୍କେତଟାକୁ ଗ୍ରହଣକରି ପାରୁଛନ୍ତି, ପାରିବେ । କାରଣ ସେ ଅମଳିନ, ତାଙ୍କର ଯୌବନ ସରିଯାଇ ନାହିଁ ।

କିନ୍ତୁ ଦିନ ପରେ ଦିନ ପରି ତାଙ୍କ ସେହି ନୈସର୍ଗିକ ଦୁଃଖ ଆସିଲା,—ଯେ ସେ ଏହି 'ଯୌବନ'ର ଉଚିତ ଅନୁଭବ ପାଇପାରୁ ନାହାନ୍ତି, ଏବଂ ସେଥିପାଇଁ ସେ ଦାୟୀ ନୁହନ୍ତି । ଦୁଃଖ ସହିତ ଅଶାନ୍ତି । ଗୋଟିଏ ପିଲା ଯେପରି କହେ ଯେ ତା'କୁ ଏ ଘରେ କେହି ଭଲ ପାଉ ନାହାନ୍ତି, ହେଲେ ମନଭିତରେ ଥାଏ ଯେ, ଅନ୍ୟମାନଙ୍କୁ ବୁଝାଇହେବ ନାହିଁ, ସେମାନେ ତାଙ୍କୁ ହିଁ ଦୋଷ ଦେବେ ।

ଯାହାହେଉ, ସେ ଭାବନାକୁ ବଢ଼ିବାକୁ ନ ଦେଇ ତତ୍ପର ହେଲେ । ନିତ୍ୟ କର୍ମ,—ବାଥ୍‌ରୁମ୍, ତା'ପରେ ଯୋଗାସନ; ସ୍ନାନ, ବ୍ରେକ୍‌ଫାଷ୍ଟ ଓ ଚିଠିଲେଖା । ତା' ପରେ ଅଫିସ ।

ପାଖ ବିଛଣାରେ ରଞ୍ଜନା ଦେବୀ ଶୋଇଛନ୍ତି । ବିମଳବାବୁ ତାଙ୍କୁ ଉଠାଇବା ପାଇଁ କୌଣସି ଉଦ୍ୟମ କଲେ ନାହିଁ ।

ବ୍ରେକ୍‌ଫାଷ୍ଟ ପାଇଁ ପ୍ରସ୍ତୁତ ହେଲା ବେଳକୁ ରଞ୍ଜନାଦେବୀ ଉଠିଲେ । ବିଛଣାରେ ବସିରହି ବିଶୃଙ୍ଖଳ କେଶବସନକୁ ସଜାଡ଼ି ନ ଦେଇ ପ୍ରଶ୍ନ କଲେ,—"କେତୁଟା ବାଜିଲାଣି ?"

"ସାଢ଼େ ନଅଟା"

"ମୋ ମୁଣ୍ଡ ଭୀଷଣ ବିନ୍ଧୁଛି—"

"ଆଚ୍ଛା ! ପୁଣି ବିନ୍ଧୁଛି ?"

କିଛି ସମୟ ପରେ ବିମଳବାବୁ ଦର୍ପଣରୁ ମୁହଁ ଫେରାଇ ସ୍ତ୍ରୀଙ୍କ ଆଡ଼କୁ ଅନାଇଲେ ଓ ସେହି ପ୍ରଶ୍ନର ପୁନରୁକ୍ତି କଲେ,—"ପୁଣି ବିନ୍ଧୁଛି ? ଯେପରି କି ମୁଣ୍ଡବିଥା ବଡ଼ କଥା ନୁହେଁ, କିନ୍ତୁ ଏହି ଥରକୁଥର ହେବା, ଏହି ବାରମ୍ବାର ଦୁର୍ଦ୍ଦଶା ସମସ୍ତଙ୍କ ଜୀବନରେ ଘଟେ ନାହିଁ । କହିଲେ, "ଏହି ଗଲା ସୋମବାର ପରି—?"

ରଞ୍ଜନା ଦେବୀ ତାଙ୍କର କ୍ଳିଷ୍ଟ ମୁଖଭଙ୍ଗୀ ସତ୍ତ୍ୱେ ହସିବାକୁ ଚେଷ୍ଟାକଲେ ଓ କହିଲେ, "ସେଦିନ ମୋର ମୁଣ୍ଡ ବିନ୍ଧୁ ନ ଥିଲା, ଦେହହାତ ବିନ୍ଧୁଥିଲା, ଜରପରି ଲାଗୁଥିଲା । ଅନ୍ୟ ଜର ନାହିଁ, କିନ୍ତୁ—।" ସେ ଦୁଇ ହାତରେ ମୁଣ୍ଡକୁ ଧରି ତାଙ୍କ ଅସହ୍ୟ ବେଦନାର ସୂଚନା ଦେଲେ ।

ବିମଳବାବୁ କେବଳ ଅନାଇ ରହିଲେ । ମନେ ହେଉଥିଲା ଯେ, —ସ୍ତ୍ରୀଙ୍କ ବେଦନା ତାଙ୍କ ମୁହଁରେ ପ୍ରତିଫଳିତ ହେଉଛି । ଧରିବାକୁ ପଡ଼ୁଛି, ଧରିବାକୁ ହେବ । ଅନାଇ ଅନାଇ ସେ କହିଲେ, "ମୁଁ ଯାଉଛି ଡାକ୍ତର ବାନାର୍ଜିଙ୍କ ସାଙ୍ଗରେ ଆଉ ଥରେ କଥାବାର୍ତ୍ତା କରିବି । ତାଙ୍କ ପରାମର୍ଶ ନେଇ ଜଣେ ସ୍ପେଶାଲିଷ୍ଟ ଠିକ୍ କରିବାକୁ ହେବ । ପୁରା ଚେକ୍-ଅପ୍ କରି କିଛି ଗୋଟାଏ ଚିକିତ୍ସା ନ କଲେ ହେବ ନାହିଁ ।"

ସେ ସ୍ତ୍ରୀଙ୍କ ପାଖକୁ ଗଲେ । ତାଙ୍କ କପାଳରେ ହାତଦେଇ କହିଲେ, "ଜର ନାହିଁ । କିନ୍ତୁ ତୁମେ ଶୋଇରହ । ଯୋଡ଼ିଏ ଆସ୍‌ପିରିନ୍ ଟେବ୍‌ଲେଟ୍ ଖାଇଦେଇ ବିଶ୍ରାମ ନିଅ । କିଛି କାମ କରିବା ଦରକାର ନାହିଁ ।"

ଶୋଇବାଘରୁ ଚାଲିଆସି ବିମଳବାବୁ ଫୋନ୍ କଲେ । ପ୍ରଥମେ ଫୋନ୍ କଲେ ଅଫିସ୍‌କୁ ବଡ଼ କର୍ତ୍ତାଙ୍କ ପାଖକୁ । କହିଲେ, "ମୋର ପହଞ୍ଚିବାକୁ ଟିକିଏ ଡେରିହେବ । ସ୍ତ୍ରୀଙ୍କ ଦେହ ଖରାପ, ଡାକ୍ତର ପାଖକୁ ଯିବାକୁ ହେବ ।"

ସେ ପାଖରୁ ଶୁଣାଗଲା, "ନିଶ୍ଚୟ, ନିଶ୍ଚୟ, ଠିକ୍ ଅଛି । କିନ୍ତୁ ମୁଁ ଶୁଣି ଦୁଃଖିତ··· ।" ବିମଳ ବାବୁ ସହାନୁଭୂତି ଗ୍ରହଣ କଲେ ଓ କହିଲେ, "ଧନ୍ୟବାଦ୍, ଧନ୍ୟବାଦ୍ ।"

ପରବର୍ତ୍ତୀ ଫୋନ୍ ଡାକ୍ତର ବାନର୍ଜିଙ୍କ ପାଖକୁ । କହିଲେ 'ମିସେସ୍ ରାୟ ପୁଣି ଅସୁସ୍ଥ । ମୁଁ ଭାବୁଛି ଆପଣଙ୍କ ସାଙ୍ଗରେ ଏବେକ୍ଷଣି ଯାଇ ଦେଖାକରିଆସିବି । ଅପଣ ଥିବେ ନା ?" ଡାକ୍ତର ବାନାର୍ଜି ସମର୍ଥନ ଜଣାଇଲେ । ବିମଳବାବୁ ଆଶ୍ୱସ୍ତ ହୋଇ ଫୋନ୍ ରଖିଦେଲେ ।

ସେ ବ୍ରେକ୍‌ଫାଷ୍ଟ ଟେବୁଲ ସାମନାରେ ବସିରହି ଶୂନ୍ୟକୁ ଅନାଇଲେ ଓ ଭାବିଲେ ଯେ, ରଞ୍ଜନାର ଦେହ ପୁଣି ଖରାପ । ଏମିତି ହୋଇଆସିଛି । ବାହାହେବା ପରଠାରୁ ଆଜିଯାଏଁ, କେବେ ବେଶି କେବେ କମ୍ । ଏମିତି ଚାଲିଥିବ ହୁଏତ‌ନେ, ଉପାୟ ନାହିଁ ।

ଏହି ଦୁର୍ଭାଗ୍ୟ ନିଜକୁ ପ୍ରମାଣିତ କରିଦେଇ ଏବଂ ତା' ତଳେ ମୋଟାଗାର ଟାଣି ସାରିଲାପରେ ବିମଳବାବୁ ଖାଇବାରେ ମନ ଦେଲେ । ସୁଭାଷ ଚାପୁ ପଚାରିଲେ, "ଫ୍ରାଏ ନା ଆମ୍‌ଲେଟ ?" ବିମଳବାବୁ ଉତ୍ତର ଦେଲେ, "ଅମ୍‌ଲେଟ୍" । ଖାଇବାକୁ ହେବ । ବଞ୍ଚିବାର ଦାବୀକୁ ଅବହେଳା କରିହେବ ନାହିଁ ।

···ବଞ୍ଚିବାର ଦାବୀକୁ ଅବହେଳା କରିହେବ ନାହିଁ । ଡାକ୍ତର ବାନାର୍ଜିଙ୍କ ସାଙ୍ଗରେ କଥାବାର୍ତ୍ତା କରି ଅଫିସ୍‌ରେ ପହଞ୍ଚି ବିମଳବାବୁ ଦ୍ୱିଗୁଣ ଉତ୍ସାହରେ କାମ

କରି ଯାଉଥିଲେ । ଆମ୍‌ଲେଟ୍‌ର ବିପୁଳତା ପରି ଫାଇଲ୍‌ର ପ୍ରଚୁରତାକୁ ଆକ୍ରମଣ କରିବାକୁ ଇଚ୍ଛା ହେଉଥିଲା । ଜୀବନକୁ ଭରିବାକୁ ହେବ । ଏ ଜୀବନରେ ଦୁଃଖ ଅଛି, ଥାଉ । ସେ ଦୁଃଖକୁ ଘୁଞ୍ଚାଇଦେବା ନାହିଁ କିନ୍ତୁ ତାକୁ ପଛରେ ରଖି କାମ କରିବାକୁ ହେବ, ପୃଥିବୀର ଉତ୍ସବରେ ଯୋଗ ଦେବାକୁ ହେବ । ମିଷ୍ଟର୍ ଯୋଗେଲକାରଙ୍କ ବଡ଼ପୁଅ ମରିଯାଇଛି; ସେ ଜଣେ ସୁଦକ୍ଷ ଅଫିସର୍ ଓ ଉତ୍କୃଷ୍ଟ କଳାବିତ୍ । ମିଷ୍ଟର୍ ଭୌମିକ୍‌ଙ୍କ ତାଙ୍କ ସ୍ତ୍ରୀ ଛାଡ଼ିକରି ଚାଲି ଯାଇଛି; ସେ ଭଲ ବ୍ରିଜ୍ ଖେଳନ୍ତି ଓ ନାଟକ ଲେଖନ୍ତି । ସେହିପରି— ।

ମୋଟ ଉପରେ ତାଙ୍କ ମନରେ ତେଜସ୍ୱୀ ଭାବ ଆସୁଥିଲା ।

ଉପସ୍ଥିତ ଫାଇଲ୍‌ର ବୋଝ ହରିଗଲା । ବିମଳବାବୁ ପୁନର୍ଗଠନର ଗୋଟିଏ ନିଜସ୍ୱ ଯୋଜନା କଥା ଭାବିଲେ, ଆଜି ତା'ର ଚିଠା ତିଆରି କରିବାକୁ ହେବ । ସେ କଲମ କାଗଜରେ ତା'ର ରୂପ ରେଖା ଆଙ୍କିଲେ । ଶିଳ୍ପୀର ଆନନ୍ଦରେ ତାଙ୍କ ମୁହଁ ଝଲସିଉଠିଲା ।

ଏହି ସମୟରେ ଘର ଭିତରକୁ ପ୍ରବେଶ କଲେ ମିସ୍ ଦେ—ଅଫିସର ଜଣେ ଆସିଷ୍ଟାଣ୍ଟ । ବିମଳବାବୁ ମୁଣ୍ଡ ଟେକିଲେ । ବିରକ୍ତ ନାହିଁ । ବରଂ ତାଙ୍କର ମନେହେଲା ଯେ, ସେ ମିସ୍ ଦେ କମ୍ବା ସେହି ଜାତୀୟ ଲୋକଙ୍କୁ ଦେଖିବାକୁ ଚାହୁଁଥିଲେ । ପ୍ରଥମଥର ପାଇଁ ତାଙ୍କର ଧାରଣା ହେଲା ଯେ, ସେ ହୁଏତ ସୁନ୍ଦରୀ ନୁହେଁ, କିନ୍ତୁ ତା'ର ଧୋବ ଶାଢ଼ୀ, ତା'ର ସରୁ ହାତରେ ଦୁଇପଟ ଚୁଡ଼ି ଓ ରୁପେଲି ଓ୍ୱାଚ୍; ତା'ର ହାଡ଼ୁଆ ମୁହଁର ମନଯୋଗୀ ଗୃହଣୀ, ତା'ର ଏହି ନିର୍ଦ୍ଦିଷ୍ଟ ରୁଚିମନ୍ତ ପରିଚୟ ତାଙ୍କ ଆଖିରେ ପଡ଼ୁଛି । ଏ ମଧ୍ୟ ଗୋଟିଏ ଷ୍ଟାଇଲ । ଏହାର ଜ୍ୟୋତି ଅନୁଭବ କରିବା ଉଚିତ, ଆଜି ତାଙ୍କର ସେହି ଅଧିକାର ଅଛି ।

ମିସ୍ ଦେ ବୋଧହୁଏ ତାଙ୍କର ଏହି ଅସାଧାରଣ ଆଗ୍ରହଭାବ ଦେଖି କଥାଟା ଉଠିକ ସଜାଡ଼ିପାରିଲେ ନାହିଁ । ତରତର ହୋଇ କହିପକାଇଲେ, 'ଅମୁକ ଜରୁରୀ କାମ ଯୋଗୁ ଆସିଛି । ଆଗରୁ ଆସିଥିଲି, କିନ୍ତୁ ଆପଣ ନ ଥିଲେ, ବଡ଼ ସାହେବ କହିଛନ୍ତି କାଲିକା ମିଟିଂ ପାଇଁ କାଗଜ ଠିକ୍ କରିବାକୁ ହେବ' ଇତ୍ୟାଦି ଇତ୍ୟାଦି । ବିମଳବାବୁ ସବୁ ଶୁଣିଲେ ଯଥାବିଧି ନିର୍ଦ୍ଦେଶ ଦେଲେ । ଶେଷକୁ କହିଲେ, "ମୁଁ ସକାଳେ ନ ଥିଲି, କାହିଁକି ନା ମୋର ଆସିବାକୁ ଡେରିହେଲା । ସ୍ତ୍ରୀଙ୍କ ଦେହ ଖରାପ ।"

"ଓ, ମୁଁ ଦୁଃଖିତ—" ମିସ୍ ଦେ ସହାନୁଭୂତି ଦେବାପାଇଁ ଟିକିଏ ଅଟକିଗଲେ ଏବଂ ସେତେବେଳକୁ ତାଙ୍କ ମନରେ ଆସିଲା,— "ସେ ମୋତେ ଏକଥା କାହିଁକି କହିଲେ ?"

ଆବେଦଭୂମି ବଦଳିଗଲା । ଚଟା ଅସମ୍ପୂର୍ଣ୍ଣ ରହିଲା । କମଳବାବୁ ଭାବିଲେ ନାରୀମାନଙ୍କ କଥା । ଯେଉଁମାନେ ରଚନାପର ନୁହନ୍ତି, ଯେଉଁମାନଙ୍କଠାରେ କିଛି ଅଛି, ଯାହା ଫୁଟିଉଠେ । ରୂପର ଧାର, ବୁଦ୍ଧିର ଧାର, ଚହଟିବା ଗୁଣ । ସେ ମାନିଲେ ଯେ ରଚନାର ଦୋଷ ନାହିଁ । ବରଂ ସବୁଦିନେ ବେଗରେ ବେଗୁଛି । କିନ୍ତୁ ମୁଁ ?

ସେହିଠୁଁ ସେ ନିଜକୁ ପ୍ରଶଂସା କଲେ । ସେ ସେ ରଚନା ଦ୍ୱାରା ବିଶ୍ୱାସଘାତକ କରି ନାହାନ୍ତି । ସେ ସେମାନଙ୍କ ସାଙ୍ଗରେ ମିଶିଛନ୍ତି, ସେମାନଙ୍କର ସ୍ନେହ ଓ ସହାନୁଭୂତି ପାଇଛନ୍ତି, କିନ୍ତୁ ଦେହକୁ ଦୂରେଇ ରଖିଛନ୍ତି । ମିସେସ୍ ମିଶ୍ର ଓରଫ ଯାମିନୀ ଦେବୀ ଦିନେ ଲୋଭ କରିଥିଲେ । ଆଧୁନିକ କବିତା ବିଷୟରେ ଅଲୋଚନା କରୁ କରୁ କହିଲେ, "ଦେହ କଣ ପ୍ରେମଠାରୁ ଅଲଗା ରହିପାରେ ?" କିଛି ସମୟ ପରେ ସେ ସୋଫାରେ ଧାଇଁକୁ ଲଗିଆସିଲେ, ବିକଳ ଚାହାଣୀରେ ଅନାଇଲେ ଓ ଓଠକୁ ମାଗି ନପରି କଲେ । ଏ କ୍ଷେତ୍ରରେ ଆଉ କିଏ ହୋଇଥିଲେ—କିନ୍ତୁ ମୁଁ କେବଳ ଗୋଟିଏ ଚୁମ୍ବନ ଛଡ଼ା ଆଉ କିଛି ଦେଇନାହିଁ । ପୁଣି ସେଥିପାଇଁ କ୍ଷମା ମାଗିଛି ।

କମଳବାବୁ ଭାବିଚାଲିଲେ । ମିସେସ୍ ମିଶ୍ର ପୂର୍ବପରି ନାହାନ୍ତି । ଆଜି କାଲି ସେ ଆଧୁନିକ କବିତାର ପାଖ ମାଡ଼ୁ ନାହାନ୍ତି । କେବଳ କହୁଛନ୍ତି ସ୍ୱାମୀଙ୍କ କଥା, ନୂଆ ଗହଣା ବାସନ, ନୂଆ ପରଦା କଥା । କିନ୍ତୁ ଅନ୍ୟମାନେ ଅଛନ୍ତି,—କିଏ ଏଠି ଅଛି, କିଏ ଦୂରରେ । ···ଉମାଖୁଡ଼ି । ପ୍ରଶସ୍ତଦେହା, ସ୍ନିଗ୍ଧା । ସେ ମାଆ ପରି । କେତେ ଶରୀର ବିଷୟରେ ଆଲୋଚନା କରନ୍ତି, ନରମ ଉପଦେଶ ଦିଅନ୍ତି ଓ ଫେରିଲା ବେଳକୁ ତାଙ୍କ କରୁଣାଭରା ଚାହାଣୀର ଆଶୀର୍ବାଦ ଦିଅନ୍ତି । ସେ ମୋତେ ପାଖରେ ପାଇବାକୁ ଚାହାନ୍ତି । ··· ଶୈଳ ଅପା । ସରଳା, ଆନନ୍ଦମୟୀ । ସେ କେବଳ ହସେ, ଖୁଆଇବାକୁ ଭଲ ପାଏ ଓ ନୂଆ ନୂଆ ରୁମାଲ୍ ସିଲେଇକରି ଦିଏ । ସେ ଭାବେ, ମୁଁ ଗୋଟିଏ ପଣ୍ଡିତ-ମୂର୍ଖ ସାନଭାଇ, ମୋତେ ଖୁସି ରଖିବା ତା'ର ଦାୟିତ୍ୱ । ··· ପ୍ରେମା । ସେ ଉଚ୍ଚଶିକ୍ଷିତା, ଅତି-ଅଧୁନିକା । ସେ ହେୟାର-ଡ୍ରେସିଙ୍ଗ୍ ଓ ଫିଜିକସ୍ ଉଭୟଙ୍କୁ ଉପଯୁକ୍ତ ସମ୍ମାନ ଦିଏ । ସେ ଚାହେଁ ମୁଁ ତା' ପାଖରେ ବସିଥିବି ଓ ସେ ଅନର୍ଗଳ ଗପିଯାଉଥିବ । ଥରେ ସେ ହଠାତ୍ ତା'ର କଥା ମଝିରେ ରହିଯାଇ କହିଲା, 'କମଳ ଭାଇ, ମୁଁ ତୁମକୁ ଆଙ୍କିବି । ଯେଉଁଦିନ ମୁଁ ତୁଳି ଧରିବି ତୁମକୁ ପ୍ରଥମେ ଆଙ୍କିବି । ତୁମର ଆଖି କାନ ନାକ ନୁହେଁ, ତୁମର ଆତ୍ମା,—ଯାହାକୁ କେବଳ ମୁଁ ଚିହ୍ନିଛି, ଅଉ କେହି ଚିହ୍ନିପାରିବେ ନାହିଁ ।' ପ୍ରେମାର ଉଦ୍ଦେଶ୍ୟ କଣ ଥିଲା କେଜାଣି, ମୋର ସେଠୁ ଉଠି ଆସିବାକୁ ଇଚ୍ଛା ହେଲା ନାହିଁ । ମନେହେଲା ମୁଁ ତା'ର ଆଙ୍କିବା ପାଇଁ ଅପେକ୍ଷା କରି ରହିବି ସବୁଦିନ ପାଇଁ ସେହି ମୋ ଜୀବନର

ସଫଳତା । ··· ମିସେସ୍ ସାକ୍‌ସେନା ଓରଫ ଶ୍ରମ୍ପାଦେବୀ । ଶ୍ୟାମଳୀ, କୃଶାଙ୍ଗୀ ଓ ବୁଦ୍ଧିମତୀ । ପ୍ରଥମ ପରିଚୟରୁ ସେ ମୋର "ଭଉଣୀ" ସ୍ନେହଶୀଳା ଭଉଜବୋଦ୍ । ତାଙ୍କ କଥାରେ ଶାଣ ଅଛି । ବେଳେ ବେଳେ କାଟେ, କିନ୍ତୁ ଭଲ ଲାଗେ । ତା'ର କାରଣ କଣ ତାଙ୍କର ଟଣା ଆଖି ତାଙ୍କ ଧର୍ପିଲ ଦେହର ମୋହମୟତା ନା ତାଙ୍କର ଶୁଭ୍ର ଧାଡ଼ିବନ୍ଧା ଦାନ୍ତର ବିଜୁଳି ହସ ? ଯାହାହେଉ ସେ ମୋତେ ଭଲ ପାଆନ୍ତି । ତାଙ୍କ ସଂସ୍ପର୍ଶରେ ଆସିଲେ ମନେ ହୁଏ ଯେ, ଗୋଲାପରେ କଣ୍ଟା ଅଛି, ଓ ସେଥିପାଇଁ ସେ ବାସେ ··· ।

ଲଞ୍ଚ୍ ବେଳ ହୋଇ ଆସିଲଣି । ବିମଳବାବୁ ଘରକୁ ଫୋନ୍ କଲେ । ରଞ୍ଜନାଦେବୀ ଜଣାଇଲେ ଯେ, ମୁଣ୍ଡବଥା କମି ନାହିଁ । ତା' ସାଙ୍ଗରେ ଦେହ ଅବଶ ଲାଗୁଛି, ବାନ୍ତି ବାନ୍ତି ପରି ଲାଗୁଛି, ପ୍ରଜାପୁତି ବେଳକୁ ଯେମିତି ହୋଇଥିଲା । ରଞ୍ଜନା-ଦେବୀ ଆଶଙ୍କାର ପ୍ରଶ୍ନ କଲେ—"ପେଟରେ ଅଲ୍‌ସର ହୋଇନାହିଁ ତ ? କିନ୍ତୁ ତା' ହେଲେ ମୁଣ୍ଡ ବଥାଉଛି, କାହିଁକି ?"

ବିମଳବାବୁ ଆଶା ଦେଲେ,—"ଡାକ୍ତର ବାନାର୍ଜି କହିଛନ୍ତି, ସେ ଉଚିତ ବ୍ୟବସ୍ଥା କରିବେ । ବର୍ତ୍ତମାନ ପାଇଁ କିଛି ଔଷଧ ଲେଖିଦେଇଛନ୍ତି, ମୁଁ ଅଫିସ୍‌ରୁ ଫେରିଲା ବେଳକୁ ନେଇ ଯିବି । ତୁମେ ଶୋଇ ରହ ··· ।"

ଫୋନ୍ କରିସାରିଲା ପରେ ସେ ମିନିଟିଏ ବସିରହିଲେ । ଯେପରିକି ସେ ସମବେଦନାର ବେଦନାକୁ ଗ୍ରହଣ କରୁଛନ୍ତି, ଶେଷ ବିନ୍ଦୁ ପର୍ଯ୍ୟନ୍ତ । ତା'ପରେ ସେ ଗୋଟିଏ ଦୀର୍ଘନିଃଶ୍ୱାସ ନେଲେ, ହାତଘଡ଼ିକୁ ଦେଖିଲେ ଓ ହଠାତ୍ ଠିକ୍ କଲେ ଯେ, ସେ ମିସେସ୍ ସାକ୍‌ସେନାଙ୍କ ଘରକୁ ଯିବେ । ଫୋନ୍ କରିବା ଦରକାର ନାହିଁ, ସେମିତି ଯାଇ ପହଞ୍ଚିଯିବେ ।

ମୋର ଯଥେଷ୍ଟ ଅଧିକାର ଅଛି । ମୁଁ ଦୁଃଖୀ । ବାଟରେ ଗାଡ଼ି ଚଳଉ ଚଳଉ ବିମଳବାବୁ ବାରମ୍ବାର ସେହି କଥା ନିଜକୁ କହିଲେ । ଯଦ୍ୟପି ସେ ଭାବୁଥିଲେ ଯେ, ତା'ର ପୁନଃନିର୍ଣ୍ଣୟ ଅନାବଶ୍ୟକ, ସମସ୍ତେ ବୁଝିବେ । ରଞ୍ଜନା ନିଜେ ବୁଝିବ ।

ଏବଂ ସେଥିସହ ତାଙ୍କ ମନକୁ ଅସୁଥାଏ ଭଉଣୀଙ୍କ ସାନ୍ନିଧ୍ୟ । ତାଙ୍କର ଛୋଟିଆ ଡାଣ୍ଡିଘର । ତା'ର ଝରକାରୁ ଦେଖାଯାଏ ଅଉ କାହା ଘରର ଶିଉଳୀ ପାଚେରି, ଉପର ମହଲା ବାରଣ୍ଡାରେ କେଜାଣି କେତେ ପିଲାଙ୍କ ବାଳକ୍ରୀଡ଼ା, କେଁ କୌଁ, କଜିଆ, ହସ, କାନ୍ଥରେ ଚନ୍ଦନ ସିନ୍ଦୁରମଖା ଲକ୍ଷ୍ମୀଙ୍କ ଫଟୋ, ଅନାବନା ଟେବୁଲ ଉପରେ ଭଙ୍ଗାପିଲ୍‌ଟ, ପଢ଼ାପଢ଼ି ଓ ଗାମୁଛା, ପାଉଡ଼ରପେଣ୍ଟ୍ ଉପରେ କେଉଁଠି ଫୁଲକୁଣ୍ଡ,—ସେଥିରେ ଫୁଲ ଫୁଟେ ।

ଏ ପାଖରେ ଭବାଙ୍କ ଗ୍ରେଜିଆ ଦାଣ୍ଡଘର,— ଯେଠି ଆଡ଼ମ୍ବ ଓ ଉଷ୍ମ କୋଳାହଳ ନାହିଁ, ବିଶୃଙ୍ଖଳତା ନାହିଁ । କିନ୍ତୁ ଭବା ଅଛନ୍ତି । ତାଙ୍କର କଟୁ-ମଧୁର ବ୍ୟକ୍ତିତ୍ୱ । ସେଥିରେ ଅଛି ଜୀବନର ଅକ୍ଳାନ୍ତ ଅନୁଭବ, ପୁଣି ପାଇବାର ଲୋଭ । ବେଳେବେଳେ ମନେହୁଏ ଯେ, ସେ ଏହି ପରିବାର-ମୁଖର ପଡ଼ାର ଅଧିଷ୍ଠାତ୍ରୀ ଦେବୀ । ବୋଧହୁଏ ମନ୍ଦିର ଅବା ପାନ୍ତର ମଝିରେ ରହିଥିଲେ ସେ ସେଠିକାର ଦେବୀ ହୋଇ ଅନ୍ୟ ପ୍ରକାର ହୋଇଥାଆନ୍ତେ,—କେଜାଣି ।

ତାଙ୍କର ମେନ୍ଧ ଘିଅ ଓ ମଶଲାର ଉଗ୍ର ସୁଗନ୍ଧ ମନେପଡ଼ୁଛି । ଲବଙ୍ଗ ଓ ଡାଲ ଚିନିର ବାସ୍ନା । କିମ୍ବା ହୁଏତ ବର୍ଷାଧୁଆ ସକାଳେ ଗହଳିଆ ଘାସ ପତର ଭିତରେ ଥିବା ପ୍ରବୀଣୋକ୍ସ ଫୁଲର ବାସ୍ନା । ବିମଳବାବୁ ଉତ୍ତେଜିତ ହେଉଥିଲେ ।

ବର୍ଦ୍ଧିଷ୍ଣୁ ଉତ୍ତେଜନା ମଝିରେ ଗୋଟିଏ ଅଶୋଭନୀୟ ଭାବ ଆସି ଚାଲିଗଲା । ଯେ ରଞ୍ଜନାର ଦେହ କାଲିକୁ ଭଲ ହୋଇଯିବ ନାହିଁ, ଅନେକ ଦିନଧରି ଭଲ ହେବ ନାହିଁ, ଆଜିର ଏ ଅଧିକାର-ସୁଖ ମଳିନ ହେବ ନାହିଁ । ଏ ଦୁଷ୍ଟତାକୁ 'ଛି' ବୋଲି କହିବାକୁ ସମୟ ମିଳିଲା ନାହିଁ । ଭବାଙ୍କ ଘର ପାଖେଇ ଆସିଲାଣି । ତାଙ୍କ ଟିପୁ କୁକୁର ଦାଣ୍ଡ ବାରିଗଦା ଉପରେ ଖେଳୁଛି ।

ଗ୍ରୁପ୍ସାଦେବୀ ଘରେ ଥିଲେ । ନିଜେ ଆସି କବାଟ ଖୋଲିଦେଲେ । ବୋଧହୁଏ ନିଦରୁ ଉଠିଛନ୍ତି । ତାଙ୍କ ଦୃଷ୍ଟିରେ ହୃଦ୍ୟତା, ଓ ଗୃହାଣୀରେ ଆବେଗ,—ଦେବୀମାନେ ଯେମିତି ଦେଖାଯାଆନ୍ତି । ଏମାନଙ୍କୁ ବିଶ୍ୱାସ ନାହିଁ । ବିମଳବାବୁ ମନେ ମନେ ଭଜନଙ୍କୁ ଅଠା କଲେ ଓ ଆନନ୍ଦରେ ନିଜକୁ ପ୍ରସ୍ତୁତ କଲେ ।

···ସେହି ଗୋଟିଏ ଘଣ୍ଟା କେମିତି କଟିଲା ? କୌଣସି ବଡ଼ କଥାର ଆଲୋଚନା ହୋଇ ନାହିଁ, ଭବରେ ମେକ ଲାଗି ନାହିଁ, ଅନୁଭୂତ ତାତ୍ତ୍ୱ ଉଠି ନାହିଁ । କିନ୍ତୁ ବିମଳବାବୁଙ୍କୁ ଭଲ ଲାଗିଲା ।

କାରଣ, ଭବାଙ୍କ ବ୍ୟକ୍ତିତ୍ୱ ହିଁ ଯଥେଷ୍ଟ । ତହିଁରୁ ଯେଉଁ ସାନକଥାଗୁଡ଼ିକ ବାହାରିଆସୁଛି, ଗୋଟିକ ପରେ ଗୋଟିଏ, ସେଥିରେ ମଧ୍ୟ ସେହି କଟୁ-ମଧୁର ବାସ୍ନା ଅଛି,—ଶ୍ଳେଷ, ଦର୍ଶନ ଓ ନାରୀତ୍ୱ । ଯଥା,—ବଡ଼ଲୋକମାନେ କେମିତି ରସଗୋଲା ଖାଆନ୍ତି, ପ୍ରତିବେଶୀଙ୍କର ସାନଝିଅ ଆମ୍ବ ଟାକୁଆକୁ ଚୂଚୁମି ଚୂଚୁମି ସାରିପାରେ ନାହିଁ ସାକ୍‌ସେନା ସାହେବ ବାହାଘର ପରେ ପରେ ପ୍ରେମ କବିତା ଲେଖୁଥିଲେ, ଟିପୁ କୁକୁରର ଅକ୍ଷମଣୀୟ ପ୍ରେମଜୀବନ; ବିମଳବାବୁ ସବୁବେଳେ କାହିଁକି ବୁସ୍‌ସାର୍ଟର ଦିଗାଦ୍ଧି ବୋତାମ ଲଗାଇବାକୁ ଭୁଲିଯାଆନ୍ତି, ଭବାଙ୍କ ସାନପୁଅ ସଦାସର୍ବଦା ଘରେ 'ଟାଇ' ପିନ୍ଧି ବସିବାକୁ ଭଲପାଏ; ତାଙ୍କ ଭଉଣୀର ଝିଅ ଠିକ୍ କରିଛି ବାହାଘର ବେଳେ କାନ୍ଦିବ ନାହିଁ, ତାଙ୍କର ଇଚ୍ଛା ସେ ମଲାବେଳେ କାନ୍ଦିବେ···ଇତ୍ୟାଦି । ତା'

ସାଙ୍ଗକୁ ବାମ୍ଫୁଆ ଫେଣୁଆ କଫି, ଭାବୀଙ୍କର ଉଡ଼ନ୍ତା ଅଞ୍ଚଳ, ତାଙ୍କ ଶ୍ୟାମତନୁର ସ୍ୱଚ୍ଛନ୍ଦ ଗତି, ତାଙ୍କର ସ୍ପଷ୍ଟ ସୁସ୍ମିତ ହସ । ବିମଳବାବୁ କଥାରେ ଲଥା ଯୋଡ଼ୁଥିଲେ ଓ ଉପଭୋଗ କରୁଥିଲେ ।

ଏହି ସମୟରେ ଗୁପ୍ତାଦେବୀ ଅତି ପାଖରେ ଥାଇ ଅକାରଣରେ ମନ୍ତବ୍ୟ କଲେ,—"ବିମଳବାବୁ, ଆଜି ଭାରି ଖୁସି ଅଛ ଜଣାପଡ଼ୁଛ । କଥା କଅଣ ? ବଡ଼ ସାହେବ କହିଲେ କି,—ଗୁଡ୍ ବଏ ?"

ବିମଳବାବୁ ଚେଇଁଉଠିଲେ । ତୁରନ୍ତ ପ୍ରତିବାଦ କରିବାକୁ ଇଚ୍ଛା ହେଲା,—କି ଆଶ୍ଚର୍ଯ୍ୟ ! ମୁଁ ଖୁସିଅଛି ? କିନ୍ତୁ ସେ କେବଳ ଗୋଟିଏ ଦୁର୍ବଳ ସ୍ମିତହାସ ଦେଇ ଚୁପ୍ ରହିଲେ । ଭାବିଲେ ଯେ, କିଛି କହିବାର ପ୍ରୟୋଜନ ନାହିଁ ।

କିନ୍ତୁ ଆହୁରି ସକାଳବେଳକୁ ଆଉ ଗୋଟିଏ ପ୍ରଶ୍ନ ହେଲା—"ରଞ୍ଜନା କେମିତି ଅଛି ?" ଏଥର ବିମଳବାବୁ ଉତ୍ତର ଦେଲେ । ତାଙ୍କର ମୁହଁ ଦାୟିତ୍ୱଶୀଳ ଓ ଗମ୍ଭୀର ହୋଇଗଲା । ନିଜର ଦୁଃଖ ଜଣାଇବାକୁ ହେବ । କହିଲେ, "ରଞ୍ଜନାର ଦେହ ଭଲ ନାହିଁ । ମୁଁ ଆଜି ସକାଳେ ଯାଇଥିଲି ଡାକ୍ତର ବାନାର୍ଜିଙ୍କ ପାଖକୁ— ।"

ତାଙ୍କ କଥା ସରିବାକୁ ନ ଦେଇ ଗୁପ୍ତାଦେବୀ କହିଲେ, "ତା' ଦେହ ଭଲ ରହୁନାହିଁ । ତୁମେ ତାର ଯତ୍ନ ନେଉନାହଁ ।"

ଏବଂ ବିମଳବାବୁ କିଛି କହିବା ଆଗରୁ ସେ ପୁଣି କହିଲେ "କିନ୍ତୁ ତୁମେ ଯତ୍ନ ନେବ କେମିତି ? ତୁମେ ନିଜକୁ ଏତେ ଭଲପାଅ ଯେ, ଆଉ କାହାକଥା ଭାବିବାକୁ ଫୁରୁସତ୍ କାହିଁ ?"

ଗୁପ୍ତାଦେବୀ ହସିଉଠିଲେ । ବିମଳବାବୁ ତାଙ୍କ ସାଙ୍ଗରେ ହସିଲେ । ସତ ନୁହେଁ, ପରିହାସ । ଭାବୀ ଏମିତି କୁହନ୍ତି ସବୁଦିନେ ।

ଆଘାତକୁ ସରସ କରିଦେବା ପାଇଁ ଗୁପ୍ତାଦେବୀ ଆଉ ପଦେ କହିଲେ, "ମୁଁ ଯଦି ରଞ୍ଜନା ଜାଗାରେ ଥାଆନ୍ତି, ତାହାହେଲେ ତୁମକୁ ଶିଖେଇଦିଅନ୍ତି କେମିତି ସ୍ତ୍ରୀର ଯତ୍ନନେବାକୁ ହୁଏ ।"

ବିମଳବାବୁ କହିଲେ, "ମୋର ସୌଭାଗ୍ୟ ।" ଏବଂ ପୁଣି ଦୁହେଁ ହସିଉଠିଲେ ।

…ଉପର ବେଳା ଅଫିସ୍ କାମ କଲାବେଳେ ଥରେ ଦୁଇ ଥର ସେହି ରସମୟ ଭର୍ତ୍ସନା ମନେପଡ଼ିଗଲା ଓ ବିମଳବାବୁଙ୍କୁ କୁତୁକୁତୁ କଲା । ଭାବୀ ଯଦି ମୋର

ସ୍ତ୍ରୀ ହୋଇଥାଆନ୍ତେ. ତାହାହେଲେ ସେ ମୋତେ କଅଣ ଶିଖାଇଥାଆନ୍ତେ ! ନା ମୁଁ ତାଙ୍କୁ କିଛି ଶିଖାଇଥାଆନ୍ତି ?

ବିମଳବାବୁ ଭାବିଥିଲେ ଘରକୁ ଫେରିବା ବାଟରେ ପ୍ରେମାର ଘର ହୋଇ ଯିବେ । ପ୍ରେମାର ଭାଇ ହଦ୍ୟ ଆମେରିକାରୁ ଫେରିଛି । କେତେ ଉଚ୍ଚାଙ୍ଗ ଆଲୋଚନା ହେବ, ପ୍ରେମା ହୁଏତ ପୁଣି କେତେ ବିଚିତ୍ର ଭାବର ନମୁନା ଯୋଗାଇବ । କିନ୍ତୁ ସେ ଗଲେ ନାହିଁ । ଗାଡ଼ିକୁ ସିଧା ବାଟରେ ଚଳାଇ ନେଲେ ।

ତା'ର କାରଣ ମନେହେଲା ଯେ, ଭାବୀଙ୍କ କଥାର କୁତୁକୁତୁ ବନ୍ଧବାକୁ ଆରମ୍ଭ କଲଣି । ଉଦର ଫମ୍ପଦ ହରିଗଲଣି, ଭର୍ତ୍ସନା ଜଳଜଳ ହୋଇ ଦିଶିଯାଉଛି । ଭାବୀ ସେମିତି କାହିଁକି କହିଲେ ? ସେ ମୋ ବିଷୟରେ କଅଣ ଜାଣନ୍ତି ? ରଞ୍ଜନା ତାଙ୍କର କିଏ ?

କ୍ରମଶଃ ତାଙ୍କ ମନରେ ଆସିଲା ଯେ, ମିସେସ୍ ସାକ୍‌ସେନା, ମିସେସ୍ ମିତ୍ର, ପ୍ରେମା ଇତ୍ୟାଦି ଇତ୍ୟାଦି ସମସ୍ତେ ବାହାର ଲୋକ । ଯେତେହେଲେ ବାହାର ଲୋକ । ମୋର ବିବାହିତା ସ୍ତ୍ରୀ । ତାଙ୍କର କେହି ନୁହେଁ ।

ହେହି ମମତ୍ୱରେ ପ୍ରଭାବିତ ହୋଇ ବିମଳବାବୁ ଗୋଟିଏ ଜାଗାରେ ଗାଡ଼ି ଅଟକାଇଲେ । ଛନଛନିଆ ଲମ୍ବା କାକୁଡ଼ି ବିକା ହେଉଛି, ରଞ୍ଜନା ଭଲପାଏ । କିନ୍ତୁ ରଞ୍ଜନାର ଦେହ ଭଲ ନାହିଁ । ଆଗରେ ଫଳ ଦୋକାନ, ଅଙ୍ଗୁର ଝୁଡ଼ିକା ଦେଖାଯାଉଛି । ସେ ଅଙ୍ଗୁରକୁ ଭଲପାଏ । ଟିକିଏ ବେଶି ଦାମ୍ ହୋଇଥିବ, ହେଉ ।

ସେ ରଞ୍ଜନାଦେବୀଙ୍କ ପାଇଁ ପେଣ୍ଡାଏ ଅଙ୍ଗୁର କିଣିଲେ ।

× × × ×

ସେଦିନ ରଞ୍ଜନା ଦେବୀ ଘୋର ମୁଣ୍ଡବିଥା ସତ୍ତ୍ୱେ ଗୋଟିଏ ଅଧାପଢ଼ା ହୋଇଥିବା ଡିଟେକ୍‌ଟିଭ୍ ଉପନ୍ୟାସ ଧାରିଦେଇ ଦ୍ୱିତୀୟଟିକୁ ଆରମ୍ଭ କଲେ । ସଞ୍ଜବେଳକୁ ତାଙ୍କର ଅନ୍ୟାନ୍ୟ ଉପସର୍ଗ ଦେଖାଗଲା ଓ ସେ କ୍ଳାନ୍ତ ବୋଧ କଲେ । ବିମଳବାବୁ ଫୋନ୍ କଲାରୁ ସେ ସବୁକଥା କହିଲେ ଓ ପରେ ପରେ ଶୋଇପଡ଼ିଲେ ।

୪୫ ନମ୍ବରର ମିସେସ୍ ବର୍ଦ୍ଧନ ବନ୍ଧୁ ନୁହନ୍ତି । ସେ ଅତି ପଣ୍ଡିତା, ଦରବୁଢ଼ୀ । ସେ ରଞ୍ଜନାଦେବୀଙ୍କ ପାଖକୁ ଅନେକଥର ଆସନ୍ତି, ହାନିଲାଭ ବୁଝନ୍ତି ଓ ଅଯାଚିତ ପରାମର୍ଶ ଦେଇଯାନ୍ତି । ଶୁଣାଯାଏ ଯେ ସେ ଅନ୍ୟମାନଙ୍କ ଘରକୁ ମଧ୍ୟ ସେହିପରି ଯାଆନ୍ତି ଏବଂ ନିଜକୁ ଉପସ୍ଥାପିତ କରନ୍ତି ।

ଆଜ ସେ ଉପରବେଳା ଏଠି ପହଞ୍ଚିଗଲେ । ଆସି ରଞ୍ଜନାଦେବୀଙ୍କୁ ନିଦରୁ ଉଠାଇଲେ । କହିଲେ "ଭାବିଲି, ବହୁତଦିନ ହେଲା ରଞ୍ଜନାକୁ ଦେଖି ନାହିଁ, ଯାଏ ଟିକିଏ ଦେଖିଆସେ ।...କଣ ଦେହ ଭଲ ନାହିଁ କି ?"

ରଞ୍ଜନାଦେବୀ ସମ୍ମତିରେ ମୁଣ୍ଡ ହଲାଇଲେ । ନାନାଦି ଭଙ୍ଗୀଦ୍ୱାରା କ୍ଲାନ୍ତ-ପୀଡ଼ିତ ଦେହର ପରିଚୟ ଦେଲେ । ତାଙ୍କର ଇଚ୍ଛା ଥିଲା ଆଗନ୍ତୁକା ଚାଲିଯାଆନ୍ତୁ । କିନ୍ତୁ ମିସେସ୍ ବର୍ଦ୍ଧନ୍ ଗୋଟିଏ ଆଧାର ମିଳିଗଲା ପରି ଚଉକିରେ ବସିପଡ଼ି କହିଲେ, "କଣ ଏତେ ଦେହ ଖରାପ ହେଉଛି ମ ! ସତ ନା ମିଛ ?" ଏତିକି କହି ସେ ଖଲଖଲ ହୋଇ ହସିଉଠିଲେ ଓ ପୁଣି କହିଲେ, "କିଛି ମନେକରିବ ନାହିଁ । ମୁଁ ଥଟ୍ଟାରେ କହୁଛି । କାହିଁକି ନା ମୋର ମନେ ପଡିଗଲା ମୋର ଗୋଟିଏ ଦାଦିଝିଅ ଭଉଣୀ କଥା । ତା'ର ପ୍ରତି ସପ୍ତାହରେ କିଛି ନା କିଛି ହୁଏ । ଶେଷକୁ ମୁଁ ଦେଖିଲି ଯେ, ତା'ର ଗୋଟିଏ କାରଣ ଅଛି । ସେ ବେମାର ନ ହେଲେ ତା' ଘରଲୋକ ତା' କଥା ଶୁଣନ୍ତି ନାହିଁ, କ୍ଲବ୍ ସିନେମାରେ ସମୟ ନଷ୍ଟ କରନ୍ତି ।" ତା ପରେ ସେ ମୁରୁକିହସା ଦେଇ କହିଲେ, "ଅବଶ୍ୟ ମୁଁ ଜାଣେ, ତୁମର ସେ ସେମିତି ନୁହଁନ୍ତି...।"

ଏହି କ୍ରମରେ କିଛି ସମୟ ଗପିସାରି ଓ ଶୋଇ ରହିବାକୁ ପରାମର୍ଶ ଦେଇ ମିସେସ୍ ବର୍ଦ୍ଧନ ବିଦାୟ ନେଲେ । କିନ୍ତୁ ରଞ୍ଜନାଦେବୀଙ୍କ ଉପନ୍ୟାସ ପଢ଼ା ଆଗେଇ-ପାରିଲା ନାହିଁ । ମିସେସ୍ ବର୍ଦ୍ଧନ୍‌ଜନିତ ଦୁର୍ଭାବନା ତାଙ୍କ ମନକୁ ଆସିଲା ।

ମିସେସ୍ ବର୍ଦ୍ଧନ୍ ଗୋଟିଏ ହିଂସୁକୁଟୀ ବୁଢ଼ୀ । ସେ କାହାର ସୁଖ ସହିପାରେ ନାହିଁ । ଆଉ କାହା ଘର କଥାରେ ମୁଣ୍ଡ ପୂରାଇବାକୁ ତା'କୁ କିଏ କହୁଛି ?

ତା' ଭଉଣୀ ପରି କଣ ସମସ୍ତେ ହୋଇଛନ୍ତି ? ବୁଢ଼ୀ କେତେ ଢଙ୍ଗରେ କଥାଗୁଡ଼ାକ କହିଗଲା ! 'ସେ' ମାସକୁ ଥରେଅଧେ ସିନେମା ଦେଖି ଯାଆନ୍ତି, ଆଉ ମୋତେ ସାଙ୍ଗରେ ନେଇ ଯାଆନ୍ତି । 'ସେ' କେଉଁ କ୍ଲବ୍‌କୁ ଯାଆନ୍ତି ନାହିଁ ।

ହଁ, ମୋ ଦେହ ଏତେଥର ଖରାପ ହେଉଛି । ବେଶି ଖରାପ ହେଉଛି, କିନ୍ତୁ ମୁଁ କଣ କରିବ ?

ମିସେସ୍ ବର୍ଦ୍ଧନ୍ ଯାହା କହିଲେ, ଅନ୍ୟମାନେ କଅଣ ସେମିତି ଭାବୁଥିବେ ? ସେମାନେ ହୁଏତ ଭାବନ୍ତି ଅଥଚ ଭଦ୍ରତାରେ କହିପାରନ୍ତି ନାହିଁ । 'ସେ' ମଧ୍ୟ କଣ ସେମିତି ଭାବୁଥିଲେ ? ତାହାହେଲେ ତାଙ୍କର କଣ ଧାରଣା ଯେ ମୁଁ—!

ରଞ୍ଜନା ଦେବୀଙ୍କ ଭାବନା ଅଧାବାଟରେ ରହିଗଲା । ଏବଂ କ୍ରମଶଃ ତାଙ୍କୁ ଭୟ ଲାଗିଲା । ତାଙ୍କର ମନେହେଲା ଯେ, ସେ ଗୋଟିଏ ଦୁର୍ଲଙ୍ଘ୍ୟ ଭାବର ମୁହାଁମୁହିଁ ହେଲେଣି, ଆଉ ଫେରିବାକୁ ହେଉ ନାହିଁ । ସେତେବେଳେ ତାଙ୍କୁ ଦେଖିଲେ ମନେହେବ

ଯେ, ସେ ସୁନ୍ଦର । ନିବିଡ଼ ଅନୁଭୂତିରେ ସୁନ୍ଦର । ତାଙ୍କର ଫୁଲିଲା ଆଖିପତା, ଓହ୍ଲାଇଲା ଗାଲ, ନିବୃତ୍ତ ଶୁଖିଲା ଓଠ, ଶେତା-ଶୋଗ ରଙ୍ଗ, ତାଙ୍କର ବାର୍ଦ୍ଧକ୍ୟ ଓ ରୋଗର ଆବରଣ ଭେଦକରି ଗୋଟିଏ ଅପୂର୍ବ ପ୍ରାଣୀତ୍ୱର ଗରିମା ଫୁଟିଉଠିଲା । ସେଥିରେ ହୁଏତ ଅଛି ଯେତିକି କ୍ରୋଧ, ସେତିକି ଅଭିମାନ, ଯେତିକି ହିଂସା, ସେତିକି ଭୟ । କିନ୍ତୁ ସେଥିରେ ଅଛି ଜ୍ୱାଳାମୁଖୀର ପହିଲି ଆଲୁଅ । ରଞ୍ଜନାଦେବୀ ଆଉ ସମ୍ଭାଳି ପାରିଲେ ନାହିଁ । ମନ ଭିତରେ ସେମାନେ ଅଜାଡ଼ିହୋଇ ପଡ଼ିଲେ,—ବନ୍ଧି ଶିଖାର ବାକ୍ୟାବଳୀ !

'ସେ' କାହିଁକି ସେମିତି ଭାବିବେ ?

ତାଙ୍କର କି ଅଧିକାର ଅଛି ଯେ ସେମିତି ଭାବିବେ ?

ମୋର ଦେହ ଖରାପ ହେଲେ ତାଙ୍କର କଣ ଯାଉଛି ? ତାଙ୍କୁ କିଏ କହୁଛି ବ୍ୟସ୍ତ ହେବାପାଇଁ ?

ମୁଁ ଯେତେବେଳେ ବାହାହୋଇ ନ ଥିଲି, ମୁଁ ଯେତେବେଳେ ବାହାହୋଇ ଆସିଲି, ସେତେବେଳେ ମୋ ଦେହ କଣ ଏମିତି ହେଉଥିଲା ? ସେ କଣ ଜାଣନ୍ତି ନାହିଁ ?

ସେ କଅଣ ଜାଣନ୍ତି ନାହିଁ ଯେ, ମୁଁ ତାଙ୍କୁ ବାହାହେବାକୁ ଚାହିଁଥିଲି ? ଆଉ କେତେ ଝିଅ ଚାହିଁଥିଲେ,—ଦମୟନ୍ତୀ, ସୁଚରିତା, ବିନୁ ଅପା, ନିନା,··· । କିନ୍ତୁ ମୁଁ ଜିତିଲି, ସେମାନେ ହାରିଗଲେ ।

ମୁଁ କଅଣ ଜିତିନାହିଁ ? ଜିତିବା ଜଣ କେବେହେଲେ ମୋ ଭାଗ୍ୟରେ ନାହିଁ ? କାହିଁକି,—ମୁଁ କି ଦୋଷ କରିଛି ?

ସବୁକଥା ସରି ନ ଥିଲା । କିନ୍ତୁ ରଞ୍ଜନାଦେବୀ କାନ୍ଦିପକାଇଲେ । କାରଣ ତାଙ୍କର ମନେପଡ଼ିଲା ଯେ, ବାହାଘର ଷୋଳବର୍ଷ ହୋଇଗଲାଣି । ଆଉ କେତେଦିନ ଗଲେ ସେ ହୁଏତ ନିଜେ ମିସେସ୍ ବର୍ଦ୍ଧନଙ୍କ ପରି ହୋଇଯିବେ ।

ଏହି ସମୟରେ ବିମଳବାବୁ ଆସି ପହୁଞ୍ଚିଲେ । ସ୍ତ୍ରୀ ଲୋକମାନଙ୍କ କାନ୍ଦଣା ସେ ଦେଖିପାରନ୍ତି ନାହିଁ । କିନ୍ତୁ ବର୍ତ୍ତମାନ ସେ ଔଷଧ ଓ ଅଙ୍ଗୁର ପେଣ୍ଡାକୁ ହାତରେ ଧରି ଛିଡ଼ାହୋଇ ରହିଲେ । ପୁଣି ଭାବିଲେ,—ମୋର ରୁଗ୍ଣା ସ୍ତ୍ରୀ, ଅହୋଭାଗ୍ୟ ।

ଯଥାକ୍ରମେ ବିମଳବାବୁ ରଞ୍ଜନାଦେବୀଙ୍କ ପାଖରେ ବସିଲେ ଓ ଗୋଟି ଗୋଟି କରି ଅଙ୍ଗୁର ତାଙ୍କ ହାତକୁ ଦେଲେ । ଯୁଗପତ୍ ଦୁହିଁଙ୍କ ମନରେ ଆସିଲା— ଆମ ଦୁଃଖ ଆମର । ଆଉ କେହି ବୁଝିପାରିବେ ନାହିଁ ।

କହିବାକୁ ଗଲେ ସେହି ମୁହୂର୍ତ୍ତିରେ ଦୁହେଁ ପରସ୍ପରକୁ ଭଲପାଇଲା ପରି ଲାଗିଲା ।

···ରାତିରେ ଯେଝା ଯେଝା ବିଛଣାରେ ଶୋଇ ଦୁଇଜଣଯାକ ବହି ପଢ଼ିଲେ, ଯେମିତି ସବୁଦିନେ ପଢ଼ନ୍ତି । ରଞ୍ଜନାଦେବୀଙ୍କ ମୁଣ୍ଡବ୍ୟଥା କମିଯାଇଥାଏ । ତେଣୁ ସେ ଦ୍ୱିତୀୟ ଡିଟେକ୍‌ଟିଭ୍‌ ଉପନ୍ୟାସକୁ ପୃଷ୍ଠା ପରେ ପୃଷ୍ଠା ପଢ଼ିଚାଲିଲେ । କିନ୍ତୁ ବିମଳବାବୁ ଅନେକ ସମୟ ଭାବିଲେ ସେ କଣ ପଢ଼ିବେ, ଆର୍ଟ, ରାଜନୀତି ନା ସାହିତ୍ୟ । ଶେଷକୁ ସେ ଗୋଟିଏ ନୂଆ ଇଂରାଜୀ ଉପନ୍ୟାସ ଆରମ୍ଭ କଲେ । କାରଣ ତାଙ୍କର ମନେ ପଡ଼ିଲା ଯେ, ପ୍ରେମା ତାର ପ୍ରଶଂସା କରୁଥିଲା ଓ କହୁଥିଲା ଯେ, ସେଥିରେ ଗୋଟିଏ ଲୋଭନୀୟ (ପ୍ରେମାର ଭାଷାରେ 'ଡାର୍ଲିଙ୍ଗ୍‌,) କ୍ୟାରିକ୍ଟର୍‌ ଅଛି, ସେ କୁଆଡ଼େ ଅନେକଟା ତାଙ୍କପରି—।



# ଦୁଃଖର ସାଥୀ

ବିମଳବାବୁ ରଞ୍ଜନାଙ୍କର (ତଥା ରଞ୍ଜନା ବିମଳବାବୁଙ୍କର) ଦୁଃଖର ସାଥୀ ନ ହୋଇ ସୁଖର ସାଥୀ ହୋଇଥିଲେ କଣ ଶ୍ରେୟସ୍କର ହୋଇଥାଆନ୍ତା ? ଦେଖିବାକୁ ଗଲେ 'ସୁଖ' ଜିନିଷଟା ସ୍ୱଭାବତଃ ଭଙ୍ଗୁର, କ୍ଷଣସ୍ଥାୟୀ ହେବୁବେଳେ ମନକୁ ଦୁଡ଼ୁଦୁଡ଼ୁ କରୁଥାଏ । କବିଗୁରୁଙ୍କ ଭାଷାରେ 'ପେୟେଛି ଯାହାରେ ତାଲେ କଖନୋ ହାରାଇ' । ଅଥଚ ଦୁଃଖୀର ସେ ଭୟ ନାହିଁ, ସେ ଧରି ନେଇଛି ଯେ ଏଇଆକୁ ନେଇ ତ ସେ ଜୀବନ ସାଙ୍ଗରେ ବନ୍ଧୁ ବାନ୍ଧିଛି, ତେଣୁ ଜୀବନ ସରିଗଲେ କି ଦୁଃଖ କଟିଗଲେ ଏକା କଥା । ଆଶଙ୍କା ନାହିଁ କି ଅପେକ୍ଷା ନାହିଁ···ଚାଲିଛି, ଚାଲିଛି, ଚାଲିଥିବ ଏଇ ଚିରନ୍ତନୀ ଗାଗମାର ଅଭିଶାପ, ଯାହାର ପ୍ରସାଦରେ ମଣିଷ ବୁଦ୍ଧଙ୍କ ପରି କରୁଣ ସୁନ୍ଦର ହସ ହସି ପାରିବ,—ଯେ ଜୀବନ ଦୁଃଖମୟ ହେଲେ ହେଉ ମୁଁ ତା'କୁ କେମିତି ଗ୍ରହଣ କରି ନେଇଛି ତୁମମାନଙ୍କ ପାଇଁ ଦେଖିପାରୁଥିବ । କେଉଁ ସୁଖ ଏଭଳି ମହାନତା ଆଣି ଦେଇ ପାରିବ କହିଲେ ? ବିମଳବାବୁଙ୍କ ହସରେ ମଧ୍ୟ କଣ ଅନୁରୂପ ମହାନତା ନ ଥିଲା ? ନା ସ୍ୱାମୀଙ୍କ ହାତରୁ ଗୋଟି ଗୋଟି କରି କେତୋଟି ଅଙ୍ଗୁର ଖାଇ ସାରିଲା ପରେ ରଞ୍ଜନାଙ୍କ ଓଠରେ ଯେଉଁ ହସ ଫୁଟି ଉଠିଥିବ, ସେଥିରେ ତତ୍ସମ ଗୁଣ ଲାଗି ନ ଥିବ ? ଅତଏବ ବିମଳ-ରଞ୍ଜନାଙ୍କ ପ୍ରତି ଦୟା ଦେଖାଇବା କେବଳ ଅନୁଚିତ ନୁହେଁ, ଅକାରଣ । ଅପରନ୍ତୁ ସେମାନେ ଆମର ସମ୍ମାନ-ସୂଚକ ଈର୍ଷାର ଅଧିକାରୀ । କାଅଣ ଭୁଲ୍ କହିଲି ?

ଆପଣ ବୋଧହୁଏ ମୋ କଥା ଶୁଣି କହିବେ—ଧ୍ୟାତ୍ ! ଏଇ ହେଉଛି ଲେଖକର କଥା-ଚାତୁରୀ । ଯେଉଁ ସମ୍ପର୍କରେ

ଭଲପାଇବାର ନାଆଁ ଗନ୍ଧ ନାହିଁ ତାକୁ ସୁଖ କୁହ ବା ଦୁଃଖ କୁହ ଯାଏ ଆସେ ନାହିଁ, କିନ୍ତୁ ତା'କୁ କୋଉ ବୁଦ୍ଧିରେ ନମସ୍କାର କରିବାକୁ ବସିଛ ? ନା । ଆମେ ଏଭଳି ଓଲଟା ମନୋବୃତ୍ତିର ଅଭିଳାଷୀ ନୋହୁଁ । ଆମେ ସ୍ୱଚ୍ଛ । ଆମେ ବୁଝୁଁ ଯେ ବାହା ହୋଇ ଘର ସଂସାର କରିବାର ମୂଳକଥା ହେଉଛି ଭଲପାଇବା । ସେତିକି ନ ଥିଲେ ଆଉ ରହିଲା କ'ଣ ? ତମର ଏଇ ମୁହଁଶୁଖା ଗୌରବ, ମହାନତା ? ଆଉ ଧନ୍ୟବାଦ ।

ଆଚ୍ଛା, ଭଲପାଇବାର ଦୋହାଇ ଦେଇ ମୋ ତତ୍ତ୍ୱକଥାକୁ ଏମିତି ଉଡ଼େଇ ଦିଅନ୍ତୁ ନାହିଁ । ଆପଣ ଆପଣଙ୍କ ସ୍ତ୍ରୀଙ୍କୁ ଭଲ-ପାଆନ୍ତି । ଉତ୍ତମ । କିନ୍ତୁ ଆପଣ କେତେଥର ତାଙ୍କ ସାଙ୍ଗରେ କଳି କରିଛନ୍ତି, ତାଙ୍କ ଉପରକୁ ହାତ ଉଠେଇଛନ୍ତି (ଅନ୍ତତଃ ମନେ ମନେ) ଏବଂ ସେହି ମୁହୂର୍ତ୍ତରେ ଘୃଣା କରିଛନ୍ତି ମନେ ପକାନ୍ତୁ । ନିଃସନ୍ଦେହରେ ଆପଣ ତାଙ୍କୁ ବହୁବାର ପ୍ରଗାଢ଼ ଚୁମ୍ବନ ଦେଇଛନ୍ତି, ଏବଂ ତାଙ୍କୁ ସମ୍ଭୋଗ କଲା ପରେ ତାଙ୍କ ସହିତ ମନରେ-ଆତ୍ମାରେ ମିଳିତ ହେଲା ପରି ମନେ ହୋଇଛି, ସେଇଥିଁ ଆପଣ ଏଇ ହେଉଛି ସ୍ୱର୍ଗ ବୋଲି ଭଗବାନଙ୍କୁ ବଧେଇ ଦେଇଛନ୍ତି । କିନ୍ତୁ ଭଲପାଇବାର ଏଇ ଭୋଜବାଜି ଭିତରେ ବିଷାଦର ଅନୁଭବକୁ, ତାହା ଯେତେ ଅଳ୍ପସ୍ୱଳ୍ପ ହେଉ ନା କାହିଁକି, ମିଛ ବୋଲି କହି ପାରିବେ କି ? ପୁଣି ଭାବନ୍ତୁ, ଅପର ନାରୀ ପ୍ରତି ଆପଣ କଣ କେବେ କେମିତି ଢଳି ଯାଇନାହାନ୍ତି ? ଟିକେ ଅଧେ ସେହି ନିଷିଦ୍ଧ ଫଳକୁ ଚାଖି ଥିଲେ ବି କ୍ଷତି ନାହିଁ । ତଦ୍ୱାରା ସ୍ତ୍ରୀଙ୍କ ପ୍ରତି ଆପଣଙ୍କର ଭଲ-ପାଇବା ନଷ୍ଟ ହୋଇଗଲା ବୋଲି ଆପଣ କଦାପି ମନେ କରି ନାହାନ୍ତି; ମୁଁ ମଧ୍ୟ ମନେ କରୁ ନାହିଁ । ମୋର କହିବା ଉଦ୍ଦେଶ୍ୟ କେବଳ ଏତିକି ଯେ ଭଲପାଇବାକୁ ନେଇ ବଡ଼େଇ କରନ୍ତୁ ନାହିଁ । ଯେଉଁ ସ୍ୱାମୀ ସ୍ତ୍ରୀକୁ ନ ଭଲପାଇବା ସତ୍ତ୍ୱେ ତା'ର ସାଥୀ ହୋଇ ପାରିଛି, ଅପର ସ୍ତ୍ରୀର ସଂସର୍ଗରୁ (ସାନ୍ନିଧ୍ୟ ଭିନ୍ନ) ନିଜକୁ ଦୂରେଇ ରଖିଛି ସ୍ତ୍ରୀର ସମ୍ମାନ ପାଇଁ, ସ୍ତ୍ରୀର ମୁଣ୍ଡବଥାକୁ ନେଇ ଏତେ ଚିନ୍ତିତ, ଯଦିଓ ଏଇ ଚିନ୍ତା ତା' ଦୁଃଖ-ଗୌରବର ଏକ ଅଶିଷ୍ଟ ଅଂଶ ବୋଲି ସେ ମନେ କରେ, ତା'ର ବୀରତ୍ୱକୁ ମଧ୍ୟ ସ୍ୱୀକାର କରନ୍ତୁ । ଏବଂ ଯେଉଁ ସ୍ତ୍ରୀ ଭଲପାଇବା

ନ ପାଇବାରୁ କମ୍ବା ଦେଇ। ପାଇଁ ଅକ୍ଷମ ହେଲାରୁ ବେଗବଇସ୍ୱରେ ଏଭଳି ପରୀକ୍ଷା ଦେଖାଇ ନିଜକୁ କଷ୍ଟ ଦେଇ ପାରୁଛି ସେ ମଧ୍ୟ ପ୍ରଶଂସାର ଯୋଗ୍ୟ ।

ମାନୁଛି ଯେ ମୋ ଗପରେ ବ୍ୟଙ୍ଗ ଅଛି, ବିଦ୍ରୂପ ଅଛି । ହୁଏତ ବିମଳବାବୁ ଓ ରଞ୍ଜନାଙ୍କ ଚରିତ୍ର ମୋର କୌଣସି ଅମ୍ବୀୟ-ଦମ୍ପତିଙ୍କ ଚରିତ୍ର ଉପରେ ପ୍ରତିଷ୍ଠିତ, ଯେଉଁମାନେ କେଉଁ ଖଣ୍ଡରେ, ଅର୍ଥାତ୍ କପଟ ଭାବରେ ନିଜକୁ ନେଇ ଅପ୍ରେମର ଦୁଃଖକୁ ଗୌରବର ମୁକୁଟ ପିନ୍ଧେଇବାକୁ ଚେଷ୍ଟା କରୁଛନ୍ତି, ତା'ର ଅନୁଧ୍ୟାନ କରି ମୋତେ ହସ ଲାଗିଲା । ଏବଂ ଆହା ଚୁ' ଚୁ' କରିବାକୁ ମନ ହେଲା । କିନ୍ତୁ ଆଜି ଏଭଳି ଅନେକ ବିମଳ-ରଞ୍ଜନାଙ୍କ ଦାମ୍ପତ୍ୟ ଦେଖିସାରିଲା ପରେ, ଏବଂ ନିଜକୁ ଆହୁରି ଭଲଭାବରେ ଚିହ୍ନି ସାରିଲା ପରେ ମୋର ପ୍ରକୃତରେ ମନେ ହୁଏ ଯେ ନାରୀ-ପୁରୁଷର ଭଲପାଇବା ପରି ବନ୍ଧୁର ତଥା ପିଚ୍ଛିଳ, ଦୁଃଖ ପ୍ରଶ୍ନବାଚୀ ଓ ପରମୁଖାପେକ୍ଷୀ ଭାବାବେଗର ମାଲିକ ହୋଇ ବସି ହେବ ନାହିଁ, ତା'କୁ ନେଇ ଦଉଡ଼ିଇ କରିବା ଦୂରର କଥା । ତେଣୁ ଯେଉଁ ଦମ୍ପତି ତା'ର ପାଖ ମାଡ଼ି ନାହାନ୍ତି ସେମାନେ ଦୟନୀୟ ନୁହଁନ୍ତି । ଏବଂ ଯେଉଁମାନେ କୌଣସିମତେ ତା'ର ଦୁଃଖକୁ ଅତିକ୍ରମ କରି ପରସ୍ପରକୁ ସାଥୀ ହେବାକୁ ଚେଷ୍ଟା କରୁଛନ୍ତି, ତାଙ୍କର ନିଷ୍ଠା ଓ ଅଧ୍ୟବସାୟକୁ କଦାପି ଘୃଣା କରି ହେବ ନାହିଁ ।

ଆଜ୍ଞା, ଏଇ ଜୀବନଟା ହିଁ ତ ସବୁଠାରୁ ନିର୍ଘେଡ଼ବନ୍ଧା ସାଥୀ, ଜନ୍ମର ଠେକୁଆ କରି । ତାକୁ ଭଲ ପାଇବାକୁ କେହି ବାଧ୍ୟ କରୁନାହିଁ ଅମକୁ । କିନ୍ତୁ ତା'ର ଅଦଉତରେ ହାରି ନ ଯାଇ ତା'କୁ ନଭେଇବାର ପଣ କରିବା ଓ ସେଥିରେ ଲାଗି ଲାଗି ପଡ଼ିବା କଣ ଯଥେଷ୍ଟ ପୁରୁଷତ୍ୱ ବା ନାରୀତ୍ୱର ଲକ୍ଷଣ ନୁହେଁ ?

ମହାପାତ୍ର ଦମ୍ପତିଙ୍କ ଦ୍ୱାରା ରଚିତ ଏହାର ଇଂରାଜି ଅନୁବାଦ "Companions in Sorrow" ମୋର ଦ୍ୱିତୀୟ ଇଂରାଜୀ ଗଳ୍ପ ସଙ୍କଳନ "Wild peacock and other stories"ରେ ସ୍ଥାନ ପାଇଛି ।

କଟକ—୯ ଅକ୍ଟୋବର ୧୯୮୬

●

# ବୋମା ପଡ଼ିବ !

ଗୋପାଳବାବୁଙ୍କୁ ବ୍ଲାକ୍-ଆଉଟ୍‌ର ଅନ୍ଧାର ମାଡ଼ିବସିଲା । ଗୋଟିଏ ଧରଣର ଭୟଥାଏ, ବୋଧହୁଏ ଭୟର ଶେଷକଥା, ଯେତେବେଳେ ଲୁଚିଯିବାକୁ ପଳେଇ-ଯିବାକୁ ଇଚ୍ଛା ହୁଏ ନାହିଁ । ଲୋଳିତଜିହ୍ୱା ରୁଧିରଗ୍ରସ୍ତ ବାଘ ମୁହଁକୁ ଦେଖି ବିଶ୍ୱରୂପ ଦେଖିଲା ପରି ମନେ ହୁଏ । ହିଂସାର ବିରାଟତା ଓ ମୋହନୀୟତା ମନକୁ ଗୁଡ଼େଇ ଗୁଡ଼େଇଦିଏ, ଘାରିଦିଏ । ଏହିକ୍ଷଣି ସେ ମୁନିଆଁ ଆଖି ଧାଇଁଆସିବ, ଧୋବ ଲମ୍ବା ଦାନ୍ତ ତଣ୍ଟିକୁ କଣା କରିଦେବ । ତା'ପରେ ସବୁ ଶେଷ, ଭୟର ଶେଷ !

ସେଦିନପରି ଗୋପାଳବାବୁ ଅନ୍ଧାରକୁ ଛାଡ଼ି ଚାଲି ଯାଇପାରିଲେ ନାହିଁ, ବିଛଣାରେ ଚାଦର ଘୋଡ଼େଇ ଚୁପ୍‌ଚାପ୍ ଶୋଇପାରିଲେ ନାହିଁ । ସେ ଘନ-ନିବିଡ଼ ବ୍ଲାକ୍‌ଆଉଟ୍‌କୁ ଚାହିଁରହିଲେ, ଗୋଟିଏ ଦୁର୍ବଳ ତାରାର ଜୁକୁଜୁକୁକୁ ଓ କେଉଁ ଛୋଟିଆ ଘର ଅଲୁଅର ଦୁକୁଦୁକୁ ଶୁଣି ରହିଲେ, ଏବଂ ଭାବିଲେ ଯେ, ଆଜି ବୋମା ପଡ଼ିବ ।

ଏ ସହରର ଆରପାଖରେ ବୋମା ପଡ଼ିଛି, କେତେ ଲୋକ ମଲେଣି । ଆଜି ଏହିଠି ବୋମା ପଡ଼ିବ । ଏହି ସହରକୁ ଛାରଖାର କରିଦିଆଯିବ ବୋଲି ଧମକ ଦିଆହୋଇଛି ।

ସେ ଅତର୍କିତରେ ଗର୍ଜନ କରି ଆସିବ । ନିମିଷରେ ଏ ଘର, ଏ ସଂସାରକୁ ଗିଳିଦେବ, ଖଣ୍ଡିଆଖାବରା କରି ନଷ୍ଟ କରିଦେବ । ଆମେ ମରିଯିବୁ । ମୁଁ ମରିଯିବି ।

କାହିଁକି ? କାହିଁକି ?? କାହିଁକି ???

ଏଥିରୁ ବୁଝିବାକୁ ହେବ ନାହିଁ ଯେ, ଗୋପାଳବାବୁଙ୍କ ମତରେ ଯୁଦ୍ଧ ଅକାରଣ । କିମ୍ବା ଯୁଦ୍ଧରେ ବୋମା ପଡ଼ିବା ଓ ଲୋକ ମରିବା ଅନୁଚିତ । ସେ ଖବରକାଗଜ ପଢ଼ନ୍ତି, ଇତିହାସ ପଢ଼ିଛନ୍ତି । ତଥାପି ସେ 'କାହିଁକି'ର ଚିତ୍କାର

କଲେ; କାରଣ ସେ ଗୋଟାଏ ସ୍ୱେଚ୍ଛାଚାରୀ ଓ ଅତ୍ୟାଚାରୀ । ସେମାନଙ୍କ ଉଦ୍ଦେଶ୍ୟ ଓ କାର୍ଯ୍ୟର ସମ୍ବନ୍ଧ ସ୍ପଷ୍ଟ ହୋଇଯିବ । ଯେ ଗୋପାଳ ଦାସ ବୋଲି ଜଣେ ନାଗରିକ ଯାହାର ସ୍ତ୍ରୀ ଓ ତିନୋଟି ପିଲା ଅଛନ୍ତି, ଯେ ଆଖି ଖୋଲିଲେ ପୃଥିବୀର ଅନେକ କଥା ଶୁଣନ୍ତି, ଯେ ଅଫିସ୍‌ରେ ଠିକ୍ ସମୟରେ ରେଜିଷ୍ଟର୍ 'କ୍ଲୋଜ୍' କରିପାରେ, ଯେ ପିଲାଦିନେ ପ୍ରଜାପତି ବିଷୟରେ କବିତା ଲେଖି ପୁରସ୍କାର ପାଇଥିଲା, ସେ ଏମିତିକା ଜଣେ ଲୋକ ଯେ, ତାକୁ ଶୀଘ୍ର ବୋମା ପକାଇ ମାରିବା ଉଚିତ ।

ବୋମା ପଡ଼ିବା ଆଗରେ ପିଲାଦିନର ପ୍ରଜାପତି କବିତା କାହିଁକି ମନେପଡ଼ିଲା କେଜାଣି ! ସେ ଯାହାହେଉ, ଉତ୍ତର ଦରକାର । ଗୋପାଳବାବୁ ନିଜକୁ କହିଲେ ଯେ, ସେ ଭୟ କରୁ ନାହାନ୍ତି, ସେ ମରିବାକୁ ପ୍ରସ୍ତୁତ ଅଛନ୍ତି । ମରଣ ଆଖି ଆଗରେ ଜଳ ଜଳ ହୋଇ ଦେଖାଯାଉଛି । କିନ୍ତୁ ଉତ୍ତର ନ ମିଳିବାରୁ ଛଟପଟ ଲାଗୁଛି ।

...ଏହି ସମୟରେ ଅନ୍ଧାର ଶରୀର ଧାରଣ କଲା । ତା'ର ଆଖି ଅଛି, ନାକ ଅଛି, ଏବଂ ସେ ଅତି ପାଖକୁ ଆସି ନିଃଶ୍ୱାସ ଛାଡ଼ୁଛି ।

ପୁଣି ମନେହେଲା ଯେ, ଏମିତି ଡରାଇଦେଇ ସାରିଲା ପରେ ସେ ହସିଉଠୁଛି, ଛୋଟ ପିଲାକୁ ମିଛିମିଛିକା ଆଖି ଦେଖାଇ ହସିଦେଲା ପରି ।

ଗୋପାଳବାବୁ ରାଗିଲେ ।—ମୁଁ କେତେଥର କହିବି ଯେ, ମୁଁ ଡରୁନାହିଁ ? ମୁଁ ବଞ୍ଚିଛି, ତେଣୁ ମୁଁ ମରିବି । କିନ୍ତୁ ମୁଁ ଉତ୍ତର ଚାହେଁ ।

କିନ୍ତୁ ଗୋପାଳବାବୁ ଦେଖିଲେ ଯେ, ସେ ତାଙ୍କ କଥାରେ କର୍ଣ୍ଣପାତ କରୁନାହିଁ, ଅଧିକ ଉତ୍ସାହରେ ହସିଚାଲିଛି । ଯେତେ ଯେପରି ତାର ହସିବା ଛଡ଼ା ଅନ୍ୟ ଉପାୟ ନାହିଁ । ଗୋପାଳବାବୁ ଭାବିଲେ,—ସେ କଣ ମୋ ପ୍ରଜାପତି କବିତା ଉପରେ ହସୁଛି ? ମୁଁ କେଉଁ ପିଲାଦିନେ ସ୍କୁଲରେ ପଢ଼ିଲାବେଳେ ଲେଖିଥିଲି ! ସୁନ୍ଦର, ହେ ସୁନ୍ଦର ! ଚକିତ ହେ ଚଞ୍ଚଳ ! ଫୁଲରୁ ଫୁଲକୁ ଉଡ଼ି ଉଡ଼ି ଯାଇ ଜୀବନକୁ କେତେ ଭଲପାଉ ତୁମେ... । ପିଲାକଥା କବିତା, ବଡ଼ମାନେ ହସିଥିଲେ । କିନ୍ତୁ ସେ ମୋର ପ୍ରଥମ କବିତା । ଏବେ କେଉଁ ପୁରୁଣା ଟ୍ରଙ୍କ୍‌ରୁ ମେ କାଗଜ ବାହାରିଥିଲା, ମୁଁ ମଧ୍ୟ ହସିଥିଲି । ତେବେ ସେଦିନ ସଞ୍ଜବେଳେ ମୁଁ ଗୋଟିଏ ଦୃଶ୍ୟରେ ଦୃଶ୍ୟ ଦେଖିଥିଲି, ଯାହା ମୋତେ ପ୍ରଜାପତି ପରି ଲାଗିଲା । ପଶ୍ଚିମ ଆକାଶରେ ରଙ୍ଗ ବେଶୀ ନାଲି ହୋଇ ନାହିଁ । ତା'କୁ ଆଉଜି କରି ଗୋଟିଏ ଗଛର ଖୋଲା ଡାଳସବୁ ଓ ଗୋଟି ଗୋଟିକିଆ ଛୋଟ ଛୋଟ ପତ୍ର । ପତ୍ରମାନେ ପବନରେ ହଲୁଛନ୍ତି,—

ଆକାଶର ରଙ୍ଗକୁ ଖେଳାଇ ଅନ୍ଧାର ହାଲୁକା କରିଦେଲା ପରି । ରଙ୍ଗରେ ଡେଣା ଲାଗିଛି, ଆନନ୍ଦ ଲୋପି ହୋଇଯାଉଛି । ମୋର ମନେହେଲା ଯେ, ପ୍ରଜାପତି କବିତାରେ ଏହି ଉପମାଟିକୁ ଯୋଡ଼ିଦେଇଥିଲେ ଭଲ ହୋଇଥାଆନ୍ତା । ସଚ୍ଚା କବିମାନେ ଏମିତିକା ଉପମା ଦିଅନ୍ତି ।

ମୁଁ ଉପମା ଦେବାକୁ ଭଲପାଏ । ମୋର ଭାଷାଜ୍ଞାନ ଯଥେଷ୍ଟ ନାହିଁ, ନ ହେଲେ ମୁଁ କବି ହୋଇପାରିଥାଆନ୍ତି । ଏହି ମର୍ମରେ ଗୋପାଳବାବୁ ସେହି ପ୍ରଥମ ଓ ଶେଷ କବିତା ପାଇ ନିଜକୁ ଧନ୍ୟବାଦ ଦେଲେ ଓ କହିଲେ ଯେ, ତାକୁ ହସି ଉଡ଼େଇବା ଉଚିତ ନୁହେଁ । ତାଙ୍କର ପୁଣି ଗୋଟିଏ ଉପମା ମନେପଡ଼ିଲା; ଦିନେ ହଠାତ୍ ମେଘୁଆ ଆକାଶରୁ ଅପ୍ ଅପ୍ ବିନ୍ଦୁ ଝରିପଡ଼ିଲା ଶୁଖିଲା ଅଗଣା ଉପରେ । ଅଗଣାରେ ବିନ୍ଦୁଗୁଡ଼ିକର ପହିଲି ଚିହ୍ନ ଅଙ୍କିହୋଇଗଲା । ମୋତେ ଲାଗିଲା ଯେ, କିଏ ଯାଦୁ କଲାପରି ଏହି ଫୁଲଗୁଡ଼ିକ ସହସା ଫୁଟିଉଠିଲେ, କାଣ୍ଡ ନାହିଁ, କଳେବର ନାହିଁ, କେବଳ ମୁହଁ ଦେଖାଇ ହସିଉଠିଲେ । କ୍ଷଣକରେ ପାଣିରେ ପାଣି ମିଶିଗଲା, ମୁହୂର୍ତ୍ତିର ଫୁଲଗୁଡ଼ିକ ମରିଗଲେ । ଏହି କଣ ଉପମା ନୁହେଁ ? କବିତ୍ୱ ନୁହେଁ ?

କିନ୍ତୁ ଏ ଅନ୍ଧାରର ରସଜ୍ଞାନ ନାହିଁ । ସେ ନିଗ୍ରିଟ ନୀରସ ଅନ୍ଧାର । ସେ କେବଳ ମାରିପାରେ ଓ ହସେ । ଗୋପାଳବାବୁ ବିରକ୍ତ ହେଲେ ।

ପୁଣି ଗୋପାଳବାବୁ ବୋମା କଥା ଭାବିଲେ । ଏହି ଦୁଇ ଦିନ ତଳେ ସଦର ବଜାରଆଡ଼େ ଯେଉଁ ବୋମାମାଡ଼ ହୋଇଥିଲା, ସେଥିରେ ପନ୍ଦର ଜଣ ଲୋକ ମରିଗଲେ । ସେମାନଙ୍କ ନାଁ ଖବରକାଗଜରେ ବାହାରିଥିଲା । ନାଁ ସବୁ ସାଧାରଣ, ମୋ ନାଁ ପରି । କିନ୍ତୁ ସେମାନେ କେହି କଣ ମୋ ପରି ? ତାଙ୍କ ମନକୁ କଣ ଏମିତିକା ଉପମା ଆସେ ?

ଶେଷକୁ ଗୋପାଳବାବୁ ସ୍ଥିର କଲେ ଯେ, ଉପମା କବିତାରେ କିଛି ମହତ୍ତ୍ୱ ନାହିଁ । ନ ଥାଉ । ଆହୁରି କେତେ ଜିନିଷ ଅଛି, ଆହୁରି କେତେ ଗୁଣ,—ସେହିଥିପାଇଁ ମୁଁ ମରିବି । ମୁଁ ସେହି ଉତ୍ତର, ସେହି ସନ୍ଦେଶଟିକୁ ଶୁଣିବି, ଏହି ନିର୍ବାକ୍ ଅନ୍ଧାରର ମୁହଁରୁ ହାସଲ କରିନେବି । ଏହିପରି ଭାବି ସେ ଚଉକିରୁ ଉଠି ପିଣ୍ଡା ତଳକୁ ଆସିଲେ, ଅନ୍ଧାରର ମଝିକୁ ପ୍ରବେଶ କଲେ, ଓ ପୁଣି ଥରେ ଘୋଷଣା କଲେ,—ମୁଁ ଉତ୍ତର ଚାହେଁ ।

ପିଣ୍ଡା ତଳକୁ ଖସିଲାବେଳେ ତାଙ୍କର ରୂପ ବାରିହେଉଥିଲା । ଜଣାପଡ଼ୁଥିଲା ଯେ, ସେ ଜଣେ ମଣିଷ ପରି ମଣିଷ । ଲମ୍ବା ଚଉଡ଼ା ଚେହେରା, ବୟସ ଅନୁଯାୟୀ ପେଟ ସାମାନ୍ୟ ଆଗକୁ ବାହାରିଆସିଛି, ଓ ମୁହଁରେ ଭଦ୍ରତା ତଥା ଅଭିଜ୍ଞତା ଥିବ

ବୋଲି ମନେହେଉଛି । ଅନୁମାନ କରାଯାଇପାରେ ଯେ, ସେ କଲମପେଷା କାମରେ ପେଟ ପୋଷନ୍ତି । ଦ୍ୱିତୀୟତଃ ତାଙ୍କର ଜଣେ କୋମଳସ୍ୱଭାବ ସାଧାରଣତଃ ସୁସ୍ଥା-ଅସୁସ୍ଥା ସ୍ତ୍ରୀ ଥିବେ, ଯେ ସବୁ ଘରକାମ କରିପାରନ୍ତି, କିନ୍ତୁ ଅବସର ସମୟରେ ଖଟରେ ଶୋଇରହିବାକୁ ଭଲପାଆନ୍ତି, ଯେ ଖବରକାଗଜରେ ଯୁଦ୍ଧର ଦାରୁଣ-କରୁଣ ଦୃଶ୍ୟ ଦେଖି କାନ୍ଦ କାନ୍ଦ ହୋଇଯାଆନ୍ତି, ଓ ତା'ପରେ ତରକାରିରେ କେଉଁ ମସଲା ଦେଲେ ଭଲହେବ, ସେକଥା ଭାବନ୍ତି ଏବଂ ଯୋଡ଼ାଏ ତିନୋଟି ସ୍କୁଲ ପଢ଼ୁଆ ପିଲା ଥିବେ ଯେଉଁମାନେ ଏ ଯୁଦ୍ଧରୁ ଯଥେଷ୍ଟ ଉତ୍ତେଜନା ପାଇ ଥରକୁ ଥର ପଚାରୁଥିବେ,—"ବାପା, ବୋମା କେତେବେଳେ ପଡ଼ିବ ?" ଗୃହସ୍ୱାମୀ ଓ ରକ୍ଷାକର୍ତ୍ତାର ଗୌରବ ତାଙ୍କ ମନରେ ଅସୁଥିବ, ସନ୍ଦେହ ନାହିଁ ।

ସାଇରେନ ବାଜୁଛି ? ଗୋପାଳବାବୁଙ୍କ ଗୁଣ୍ଡରୁ କଣ ଖସିଗଲା ପରି ମନେହେଲା । ଅନ୍ଧାର ତା'ର ଅସ୍ତ୍ର କାଢ଼ିଲାଣି । ତା'ର ହୃଦର ଅଧ୍ୟାୟ ସମାପ୍ତ । ଏଥିଥର ସେ ଜଳିଉଠିବ ଓ ବିନାଶ କରିବ । ମୋତେ ବିନାଶ କରିବ ।···ନା, ସାଇରେନ୍ ନୁହେଁ, ଟ୍ରେନର ସିଟି । ତଥାପି ଗୋପାଳବାବୁ ଆଶ୍ୱସ୍ତ ହେଲେ ନାହିଁ, ଭାବିଲେ ଯେ ଏ ପୂର୍ବାଭାସ । ବୋମା ପଡ଼ିବାକୁ ଡେରି ନାହିଁ ।

ହେହିଠୁ ସେ ଅନ୍ଧାରର କାନରେ ଜୋର୍‌ରେ ଓ ତରତର ହୋଇ କହିଲେ, ସମସ୍ତ ନ ଥିଲା ପରି—ତା' ଛଡ଼ା ମୁଁ ଭଲପାଏ ।

ତାଙ୍କର ମନେହେଲା ଯେ, ଚତୁର୍ଦ୍ଦିଗର ମିଞ୍ଚିମିଞ୍ଚି ଅଲୁଅ, ଘରୋଇ ଓଢ଼ଣାଦିଆ ଆଲୁଅ ତାଙ୍କ ଉକ୍ତିକୁ ସ୍ୱୀକାର କଲେ । ସେମାନେ ଜାଣନ୍ତି । ଏ ପ୍ରେମ ପାଇଁ ବାଜା ବାଜେ ନାହିଁ, ବହି ଲେଖା ହୁଏ ନାହିଁ । ଏ ପ୍ରେମ ସାନ, ଘରୋଇ, କିନ୍ତୁ ମହାନ୍ । ଏହାର ପାହାଚରେ ଉଠି ଉଠି ମଣିଷ ଭଗବାନଙ୍କ ପାଖକୁ ଯାଏ ।

ଗୋପାଳବାବୁ ନିଜକୁ କହିଲେ, ଓ ଅନ୍ଧାରକୁ କହିଲେ,—ମୁଁ କେତେ ଉପରକୁ ଆସିଗଲାଣି । ପିଲାଦିନୁ ଆଜିଯାଏଁ କେତେ କରେଲା ପ୍ରେମର ଉପଗ୍ରହ, ଗୋଟିଏ ନୁହେଁ ଯୋଡ଼ାଏ ନୁହେଁ···ଯେଉଁଥିରେ ପେଟ ପୂରିଯାଏ, କିନ୍ତୁ କହିବାକୁ ଲାଜ ଲାଗେ । କାଲେ ଅନ୍ୟମାନେ ଭାବିବେ ବଡ଼େଇ କରୁଛି କିମ୍ବା ମୁଁ ଗୋଟିଏ ଭିନ୍ନ ଧରଣର ଜୀବ ।

ଏହି ଏବେକା କଥା,—ଗୋପାଳବାବୁ ମନେପକାଇ ନିଜର ହୋଇଗଲେ,—ମୁଁ ଗୃହଯାଇ ମୋ ସ୍ତ୍ରୀ କଉଣେ ଦେହ ଅଉଁସି ଦେଲି, ତା' ମୁଣ୍ଡ ଚିପିଦେଲି । ତା' ଦେହ ଖରାପ ଲାଗୁଥିଲା; କିନ୍ତୁ ସେଥିପାଇଁ ନୁହେଁ । କାହିଁକନା ମୋତେ

ଭଲକରିଲା, ମୁଁ ତାକୁ ଭଲପାଏ । ସେ ନିଦରେ ଶୋଇଥିଲା, କିଛି ଜାଣିପାରି ନାହିଁ । ମୁଁ ତାକୁ କିଛି କହିନାହିଁ ।

ପିଲାଦିନରୁ ଆଜିଯାଏଁ । ମୁଁ ଯାହାକୁ ଭଲପାଏ, ତା'ର ଅଜାଣତରେ ମୁଁ ତାର ମଙ୍ଗଳ ମନାସେ, ତା'ର କପାଳ ଅଉଁସିଦିଏ । ବହୁତଦିନ ପରେ ଅରବର୍ଷ ଖରାଛୁଟିରେ କୃଷ୍ଣା ସାଙ୍ଗରେ ଦେଖା ହୋଇଥିଲା । ସେ ସ୍ୱାମୀସନ୍ତାନ ଭୂଷିତା ହୋଇ ଶିବମନ୍ଦିରକୁ ଆସିଥିଲା, ଠାକୁରଙ୍କୁ ପ୍ରଣାମ କରୁଥିଲା । ମୁଁ ପଛରୁ ଦେଖିଲି, ଓ ତା'ର ପ୍ରଣାମରେ ନିଜକୁ ମିଶାଇଦେଲି । ମୁଁ ତା ପାଇଁ, ତା'ର ହୋଇ, ଠାକୁରଙ୍କୁ ଡାକିଲି,—କୃଷ୍ଣାର ସବୁ ଭଲ ହେଉ, ତା'ର ହସ ଓ ସିନ୍ଦୁର ଉଜ୍ଜ୍ୱଳ ରହୁ ।

କାହିଁକିନା ମୁଁ କୃଷ୍ଣାକୁ ଭଲପାଏ । କୃଷ୍ଣାର ସ୍ୱାମୀ ଗୋଟିଏ ଗୁଣ୍ଡାପରି ଦେଖାଯାଏ । କୃଷ୍ଣାର ଗାଲ ଓହଳି ଗଲଣି । ସେ ଦେଖାହେଲେ ବେଶି କଥା କୁହେ ଓ ବାଜେ କଥା କୁହେ । ତଥାପି ମୁଁ ତାକୁ ଭଲପାଏ । କାରଣ ଦିନେ ସେ ମୋ କୋଳରେ ଶୋଇଥିଲା, ମୋ ମୁହଁକୁ ଚାହିଁରହିଥିଲା ଓ କହିଥିଲା,—ମୋତେ ମନେ-ରଖିବ ନା ?

ମୁଁ କେବଳ ଯେ କେତେଗୁଡ଼ିଏ ନାରୀମାନଙ୍କୁ ଭଲପାଏ, ତା ନୁହେଁ । ବୃଦ୍ଧ ବାପାଙ୍କୁ ଦେଖି ମୋର ପିଲାଦିନ କଥା ମନେପଡ଼େ, ଯେତେବେଳେ ସେ ମୋତେ ନୀତିକଥା ଶିଖାଉଥିଲେ, ମାଆ ସାଙ୍ଗରେ ରସିକତା କରୁଥିଲେ ଓ ହଠାତ୍ ରାଗିଯାଉଥିଲେ । ମୋର ମନେ ପଡ଼େ ଯେ, ଯେଉଁଦିନ ମୁଁ ପ୍ରଥମେ ଘର ଛାଡ଼ି ଦୂରକୁ ପାଠ ପଢ଼ିବାକୁ ଗଲି, ସେଦିନ ସେ ଷ୍ଟେସନ୍ ପ୍ଲାଟ୍‌ଫର୍ମରେ କାନ୍ଦିପକାଇଲେ । ସେହି କେତୋଟି ମୁହୂର୍ତ୍ତକୁ ନେଇ ମୁଁ ତାଙ୍କୁ ଆହୁରି ଭଲପାଏ । ମୋର ବିଶ୍ୱାସ ହୁଏ ଯେ, ଆମେ ଦୁଇଜଣ ଏବେ ମଧ୍ୟ ସେହି ଭାବମଣ୍ଡିତ ତୋରଣ ତଳେ ରହିଛୁ । କିଛି ବଦଳି ନାହିଁ, ବଦଳି ପାରିବ ନାହିଁ ।

ଭଲ ପାଇବାର ବିଭିନ୍ନ ଦିଗ, ବିଭିନ୍ନ ରୂପ । ଗୋପାଳବାବୁ ଥକିଗଲେ ନାହିଁ । ସେ ଅଗଣା କାନ୍ଥକୁ ଲଗିଥିବା କେଇଲ ଘର ଉପରେ ଆଉଜି ଆକାଶ ପୃଥିବୀକୁ ଚାହିଁଲେ, ଅନ୍ଧାରକୁ ଆଡ଼େଇଦେଇ ଅଦୃଶ୍ୟ ଅଗଣିତ ମଣିଷ ପ୍ରାଣୀମାନଙ୍କ ସହିତ ଆତ୍ମୀୟତାର ଭାବ ଆଣିଲେ, ଓ ଅତ୍ୟଧିକ ଅନୁରାଗର ଦୃଷ୍ଟାନ୍ତକୁ ଗଣିଚାଲିଲେ ।

ମୁଁ ଦେଶବାସୀଙ୍କୁ ଭଲପାଏ, ମଣିଷଜାତିକୁ ଭଲପାଏ । ଜାତୀୟ ସଙ୍ଗୀତ ବୋଲା ହେଉଥିବାବେଳେ ମୋର ରୋମ ଟାଙ୍କୁରି ଉଠେ । ବେଳେ ବେଳେ ମୁଁ ପ୍ରାର୍ଥନାର ଗୋଟିଏ ପଦ ମନେ ପକାଏ,—ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ ।

ଯେତେବେଳେ ସହରରେ ଦେଖିଥିବା, ବସ୍‌ଷ୍ଟାଣ୍ଡରେ ଛିଡ଼ାହୋଇଥିବା କେଉଁ ଗୋଟିଏ ଏକୁଟିଆ ଲୋକର ମୁହଁ ଆଖି ଆଗରେ ଭାସିଯାଏ । । ମୁଁ କାମନା କରେ ଯେ, ତା'ର ଦୁଃଖ ଘୁଞ୍ଚିଯାଉ ।

ଏହିପରି ଭାବିବାବେଳେ ଉପର ଘର ରେଡ଼ିଓରୁ ସ୍ଥାନୀୟ ଖବର ଗୋପାଳ-ବାବୁଙ୍କ କାନରେ ବାଜିଲା । ଖବର ମଝିରେ ସେ ଶୁଣିବାକୁ ପାଇଲେ ଯେ, ଗତ ବୋମାମାଡ଼ରେ ଯେଉଁମାନେ ଆହତ ହୋଇ ଡାକ୍ତରଖାନାରେ ଥିଲେ, ତାଙ୍କ ଭିତରୁ ଆଉ ଦୁଇଜଣ ମରିଗଲେ ।

ଯେଉଁ ଦୁଇଜଣ ମରିଗଲେ, ସେମାନେ କିଏ ? ତାଙ୍କ ନାଁ ଖବରକାଗଜରେ ବାହାରିପାରେ । କିନ୍ତୁ ତାଙ୍କର ପରିଚୟ ? ସହର ସହିତରେ ତାଙ୍କର ସମ୍ପର୍କ କଣ ଥିଲା ? ସେମାନେ କଣ ଭାବୁଥିଲେ, କଣ ଚାହୁଁଥିଲେ ? ବୋମା ତାଙ୍କୁ କାହିଁକି ମାରି ପକାଇଲା ?

ମୁଁ ବି ସେମିତି ମରିବି । ନା-ନା-ନା—!! ଗୋପାଳବାବୁ ନିଷେଧ କଲେ, ଓ ଅସହାୟତାର ଭଙ୍ଗୀରେ ହାତକୁ ମୁଠା କଲେ ।

ସେ ମନ ଭିତରେ ପାଟିକରି ଉଠିଲେ,—ମୁଁ ଆଉ ଜଣେ ନୁହେଁ, କେବଳ ଆଉ ଜଣେ ନୁହେଁ । ମୁଁ ଭଲପାଏ, ଏତେ ଭଲପାଏ ।··· ମୁଁ ଠିକ୍ ସମୟରେ ରେଜିଷ୍ଟରର 'କ୍ଲୋଜ୍' କରିବା ଛଡ଼ା କେତେ ଅଧିକା କାମ କରେ । ବଡ଼ ସାହେବ ଥରେ ପ୍ରଶଂସା କରି କହିଥିଲେ ଯେ, ମୁଁ ଭାରି ସିନ୍‌ସିୟର୍ ।··· ମୁଁ ଶାହାନାଇ ବାଜା ଶୁଣିବାକୁ ଭଲପାଏ । ବଂଶୀ ବଜାଇପାରେ ।··· ମୁଁ ବୌଦ୍ଧଧର୍ମ ବିଷୟରେ ବହୁତ ପଢ଼ିଛି । ··· ମୁଁ ଗଛ ଲଗାଏ, ସେ ମରେ ନାହିଁ, ଫୁଲ ଫଳରେ ଭରିଉଠେ ।···ମୁଁ ସ୍କୁଲ ପିଲାଙ୍କୁ ଭଲ ପାଠ ପଢ଼ାଇପାରେ । ··· ତେଣୁ ମୋର ଆଜି ମରିବା କଥା, ବୋମା ମୋତେ ମାରିବା ଉଚିତ ।

ଗୋପାଳବାବୁ କୋଇଲଘରର ସ୍ଲେଟ ଛାତ ଉପରକୁ ଚଢ଼ିଗଲେ । ତା' ଉପରେ ଧ୍ୟାନ କଲାପରି ଚକାମାଡ଼ି ବସିଲେ, ଓ ଦୁଇହାତ ପାପୁଲିରେ ମୁହଁ ଘୋଡ଼ାଇ କହିଲେ,—ମୁଁ ଜାଣେ, ମୁଁ ଶୁଣିବି ନାହିଁ । କାରଣ ଯେତେବେଳକୁ ରେଡ଼ିଓ ବନ୍ଦ ହୋଇ ଯାଇଥାଏ, କିନ୍ତୁ ଅନ୍ଧାରର ହସ ବଜେଇ ହୋଇ ଶୁଭୁଥାଏ । ବଜେଇ ଅର୍ଥାତ୍ ବେସୁରୁଆ ଗୀତ ବୋଲିଲାପରି ।

ସେ ସେହି ହସ ଉଦ୍ଦେଶ୍ୟରେ କହିଲେ,—ମୁଁ ଶୁଣିବି ନାହିଁ । ମୁଁ ଜାଣେ ତୁ କାହିଁକି ହସୁଛୁ, ମୂଳରୁ ଜାଣେ । ବୋମା ଆଜି ପଡ଼ିପାରେ କିମ୍ବା ନ ପଡ଼ିପାରେ । ମୁଁ ଆଜି ମରିପାରେ କିମ୍ବା ନ ମରିପାରେ । କିନ୍ତୁ ମୋର ଭାବନା ଅବାନ୍ତର । ବୋମା

ମୋତେ ଚହ୍ନିବ ନାହିଁ, ସମ୍ମାନ ଦେବା ଦୂରର କଥା । ହୁଏତ ମୁଁ ତା' ଗୋଡ଼ରେ ଦଳି ହୋଇଯିବି,—କେବଳ ଆଉ ଗୋଟିଏ ଘଣ୍ଟା ।

## ମୁଁ କିଛି ନୁହେଁ !

ନିରାଶା । ପରାଭବ । ଭୟ,—ହୀନମାନ୍ୟ ଭୟ । ଗୋପାଳବାବୁ ଅଶାନ୍ତ ହେଲେ । ରାସ୍ତାର ଏ. ଆର୍. ପି. ହେଡ୍ ତଳେ ଠୁଳ ହୋଇଥିବା ଆଳୁଅ ଉପରେ ଜଣେ କିଏ ଗଳୁଥିବାର ଦେଖାଗଲା । କେଜାଣି କାହିଁକି ତାଙ୍କର ଇଚ୍ଛା ହେଲା ଯେ, ସେ ତା' ଉପରକୁ ଗୋଟାଏ ଟେଲା ପକାଇବେ । ଲୋକଟା ଝଲ ଉଡ଼ିବ, ମରିଯିବ । କିଛି ଯାଏ ଆସେ ନାହିଁ ।

...ହଠାତ୍ ଗୋପାଳବାବୁ ନିରାଶା, ପରାଭବ ଓ ଭୟକୁ ଛୁଆଡ଼ି ଦେଇ ପାରିଲେ । ଅନ୍ତତଃ ତାଙ୍କୁ ସେମିତି ଲାଗିଲା । ତାଙ୍କର ମନେହେଲା ଯେ, ସେ ଗୋଟିଏ ହିଂସାତ୍ମକ ପ୍ରାଣୀ । ଏବଂ ସେହି ନବଜାତ ଚେତନାର ବଳରେ ସେ ବୋମାଗର୍ଭ ଅନ୍ଧାରକୁ ସିଧାହୋଇ ଅନାଇଲେ ଓ କହିଲେ,—ମୁଁ ଗୋଟିଏ ଶଇତାନ୍, ତୋର ପରି । ଏଥର ତୁ ମୋତେ ଚହ୍ନିବୁ । ନିଶ୍ଚୟ ବୁଝିବୁ ଯେ, ମୋର ମରିବା ଉଚିତ ।

ସେ ଅନ୍ଧାରକୁ ଖତେଇହେଲା ପରି ବିଦ୍ରୂପଭରା ହସ ହସିଲେ, ଶଇତାନ୍-ମାନେ ଯେମିତି ହସନ୍ତି । ସେହି ହସରେ ଜଣାଇଦେଲେ,—ମୁଁ ତୋର ପ୍ରତିରୋଧୀ ଦେବତା ନୁହେଁ, ମୋର ଭଲପଣ କିଛି ନାହିଁ । କିନ୍ତୁ ମୁଁ ତୋର ପ୍ରତିଦ୍ୱନ୍ଦୀ ରାକ୍ଷସ । ଏହି ହେଉଛି ସତକଥା । ତାହାହେଲେ ତୁ ମୋତେ ନ ମାରି ଯିବୁ କୁଆଡ଼େ ?

ହିଂସା, ନିରଙ୍କୁଶ ହିଂସା । ଗୋପାଳବାବୁ ତାକୁ ଉଚ୍ଚାରଣ କଲେ, ଉଦ୍‌ବୋଧନ କଲେ । ଏବଂ ସେ ଅନୁଭବ କଲେ ଯେ; ତାଙ୍କ ଶିରାରେ ଶିରାରେ ଶକ୍ତି ସଞ୍ଚାରିତ ହେଉଛି ।

ସେ ଅନ୍ଧାରକୁ ଆହ୍ୱାନ କଲେ,—ମୁଁ ବର୍ତ୍ତମାନ କହିଯାଉଛି ମୋ ନିଜକଥା, ସତକଥା । ଶଇତାନର ନିର୍ଭୁଲ ପ୍ରମାଣ । କାହାର ସାଧ୍ୟ ଅଛି କହିବ ଯେ ସେ ସବୁ ମିଛ ? ଆଜିଯାଏଁ ମୁଁ ସ୍ୱୀକାର କରି ନାହିଁ, ସମାଜ ମୋତେ ସ୍ୱୀକାର କରିବାକୁ ଦେଇନାହିଁ । ଆଜି ମାନୁଛି; କାରଣ ମୁଁ ତା ସାଙ୍ଗରେ ମୁକାବିଲା କରିବାକୁ ଯାଉଛି ।

ତାଙ୍କର ସେହି ଭୀମତ୍ୱକୁ ଦେଖି ଅନ୍ଧାର ବୋଧହୁଏ ଟିକିଏ ଶଙ୍କିଗଲା । ତା'ର ହସ ଥମିଗଲା, ସେ ଚୁପ୍ ହୋଇଗଲା । ମନେହେଲା ଯେ; ସେ ଗୋପାଳବାବୁଙ୍କ ସ୍ୱରୂପକୁ କଳୁଛି, ତା'ର ସତମିଛ ବାରିବାକୁ ଚେଷ୍ଟା କରୁଛି ।

ଏହି ସମୟରେ ଶୋଇବାଘରେ ଆଲୁଅ ଜଳିଉଠିଲା । ଗୋପାଳବାବୁ ଦେଖିଲେ ଯେ, କରଣ ଘରଭିତରୁ ବାହାରି ଆସୁଛି । ସେ ଭାବିଲେ,—କରଣଙ୍କୁ ଶଯ୍ୟାରେ ନିଦ ହେଉନାହିଁ, ସେ ମରିବା ଚାହେଁ ନାହିଁ । ସେ ମୋତେ ଦେଖିକରି କହିବ, "ସେଠି ସେମିତି କାହିଁକି ବସିଛ ମ ! ନିଦ ହେଉ ନାହିଁ ? ଆସ ଶୋଇବ ଆସ । ଯାହାହେଲେ ହେବ ଭଗବାନ୍ ଅଛନ୍ତି ।'

ତା'ର ଅଲଗା ଦରଦକୁ ମୁଁ ଘୃଣାକରେ । ମୁଁ ତାକୁ ଘୃଣାକରେ ଆଜି ନୁହେଁ, ବାହାଘର ଦିନୁ ।

ଅନୁମାନ ଅନୁଯାୟୀ କରଣମୟୀ ଦେବୀ ନିଦୁଆ ଆଖିରେ ସ୍ୱାମୀଙ୍କୁ ଖୋଜିଲେ, ଓ ସନ୍ଧାନ ପାଇ ଶୋଇବାକୁ ଅନୁରୋଧ କଲେ । ଗୋପାଳବାବୁ ରୁକ୍ଷସ୍ୱରରେ କହିଲେ,—ତୁମେ ଯାଅ, ମୁଁ ଏଠି ଅଛି ।

ଏହାପରେ ଗୋପାଳବାବୁ ଅମାନ୍ୟରେ ଚିଡ଼ିଚାଲିଲେ, ଓ ବଖାଣିଗଲେ । କିନ୍ତୁ ଏକ ଅପୂର୍ବ କଥୋପକଥନର ସୃଷ୍ଟି ହେଲା । ଯେପରି କି ସେ ପଦେ କହିଲା ବେଳକୁ ତାଙ୍କ ଭିତରେ ସେହି ଅନ୍ଧାର ଶଇତାନ୍ ପ୍ରତିବାଦ କରି ଆଉ ପଦେ କହୁଛି । ଗୋପାଳବାବୁ ପ୍ରତ୍ୟୁତ୍ତର ପାଇ ଉତ୍ତେଜିତ ହୁଅନ୍ତି ଓ ନୂଆ ପ୍ରମାଣ ଯୋଡ଼ିଦିଅନ୍ତି । ସେହି କଥୋପକଥନର ସାରାଂଶ ଏହି ପ୍ରକାର:—

"ମୁଁ କରଣକୁ ଭଲପାଏ ନାହିଁ । ତା'ର ସେହି ଆଶ୍ରିତାର ଢଙ୍ଗ ମୋ ଦେହରେ ଯାଏ ନାହିଁ ।"

(କିନ୍ତୁ ତୁ ତା'ର ନରମ ଚୁହାଣୀକୁ ଭଲପାଉ । ତା'ର ଆଖିରେ କଜ୍ଜଳ ଲାଗିଥିଲେ ତୋତେ ଏ ସଂସାର ସୂକ୍ଷ୍ମ ସୁନ୍ଦର ଦେଖାଯାଏ,—ନୁହେଁ ?)

"ବାଜେ କଥା । ସେ ମୋତେ ବାନ୍ଧିବାକୁ ଚାହେଁ । ମୁଁ ବାନ୍ଧିହେବା ଜୀବ ନୁହେଁ । ସେଥିପାଇଁ ମୁଁ ଛଟପିଟ ହୁଏ, କୃଷ୍ଣ କଥା ମନେ ପକାଏ । ଏବଂ ସାବିତ୍ରୀ, ଶୋଭନା, ମିସେସ୍ ଦତ୍ତ—।"

(ବେଶ୍, ବେଶ୍ । ସେମାନେ ଅନେକ ଅଛନ୍ତି । କିନ୍ତୁ ତୁ ସବୁବେଳେ କରଣ ପାଖକୁ ଫେରିଆସୁ, ସମ୍ପୂର୍ଣ୍ଣ ମନରେ ଫେରିଆସୁ ।)

"ଚିଡ଼ିକରି ଫେରିଆସେ । ହେକ୍ସ ପାଇଁ ଫେରିଆସେ । ଅଧିକାର କରିବା ପାଇଁ, ନିଜକୁ ଓ ତା'କୁ କଷ୍ଟ ଦେବାପାଇଁ ।"

(ତା'ର ଅର୍ଥ ସେକ୍ସ୍ ତୋତେ ଶାନ୍ତି ଦିଏ ନାହିଁ । ତୁ ଶାନ୍ତିର ମଣିଷ ।)

"ହଁ,—ନା । ମୁଁ ଅଶାନ୍ତ ନୁହେଁ, ସଂସାର ଅଶାନ୍ତ । ବୁଝିପାରୁ ନାହୁଁ ? ମୁଁ ପିଲାଦିନେ ଚନ୍ଦ୍ରୋଦୟ ଦେଖୁଥିଲି କେମିତି ଝିଟିପିଟି ପୋକମାନଙ୍କୁ କଳବଲ କରି ଖାଉଛି । କେମିତି ଗେହ୍ଲା ପୁଷି ବଲେଇ ଗୁଣ୍ଡି ଚମୁସାକୁ ମାରିପକାଉଛି । ମୁଁ ମନେ ମନେ କାନ୍ଦେ, କିନ୍ତୁ ଦେଖି ରହେ, ସଂସାର ଦୃଶ୍ୟକୁ ଶେଷ ପର୍ଯ୍ୟନ୍ତ ଦେଖି ରହେ । ତଥାପି ବୁଝିପାରୁ ନାହୁଁ ?"

(ବୁଝୁଛି । ତୁ ସଂସାରେ ପ୍ରକୃତ ଆନନ୍ଦ ପାଉନା । କାରଣ ତୁ ଶଇତାନ୍ ନୁହଁ, ଗୋଟିଏ ଦୁର୍ବଳ ମଣିଷ ।)

"ଭୁଲ୍, ପୁରାପୁରି ଭୁଲ୍ । ସେମାନଙ୍କ ପରି ନୁହେଁ । ମୁଁ ଗୋଟିପଣେ ଶଇତାନ୍, କିନ୍ତୁ ଚତୁର । ଦୁର୍ବଳତା ମୋର ଛଳନା ।...ଜାଣିଛୁ ? ମୁଁ ଯେବେ ସାଙ୍ଗ ସାଥିମାନଙ୍କ ହାଙ୍ଗରେ କେଉଁ ରେସ୍ତୋରାଁରେ ପେଟ ପୁରାଇଖାଏ,ଅସେ, ସେଦିନ ରାସ୍ତାର କେଉଁ ଭିକାରୀଟିକୁ ଦେଖିଲେ ମୁଁ ଦୟାପରବଶ ହୁଏ, ଦଶ ପଇସା ପକାଇଦିଏ । ଜନରକ୍ଷା ପ୍ରବଳ ପରି ମନେହୁଏ । ଅନ୍ୟ ଦିନ ସେମାନଙ୍କୁ ଦେଖିଲେ ମୁଁ ଭାବେ,—ଏମାନେ ଏତେ କାହିଁକି ଅଛନ୍ତି ? ମେଲ ପାଇ ମଆନ୍ତେ ନାହିଁ !"

(ଉତ୍ତମ । ଭଲପାଇବାର ଲକ୍ଷଣ । ନ ହେଲେ ତୁ ଭୁରିଭୋଜନ ପରେ ସେମାନଙ୍କ ଆଡ଼େ ଛେପ ପକାଇଥାଆନ୍ତୁ, ଓ ଅନ୍ୟଦିନ ସେମାନେ ତୋର ଆଖିରେ ପଡ଼ନ୍ତେ ନାହିଁ ।)

"ତୁ ଥଟ୍ଟା କରୁଛୁ । ମୁଁ ଜାଣେ ତୁ ମୋତେ ଥଟ୍ଟା କରୁଛୁ । ତୁ ମୋତେ ଭୁଲାଇଦେବାକୁ ବସିଛୁ । କିନ୍ତୁ ଲଭ ନାହିଁ, ମୁଁ ନିଜକୁ ଚିହ୍ନିଛି । ମୁଁ ମୋର ଦେଶପ୍ରେମ କଥା କହୁଛି—ନା ? ଯେ ମୋର ପ୍ରେମ ଟାଙ୍କରେ ଉଠେ ଇତ୍ୟାଦି । ମିଛ ନୁହେଁ । କିନ୍ତୁ ମୋର ପ୍ରେମ କଥା କଥାକେ ଟାଙ୍କୁଉଠେ । କାରଣ ମୁଁ ଅନୁଭୂତି-ପ୍ରବଣ । ଶଇତାନ୍‌ମାନଙ୍କର ଏହି ଗୁଣଟି ଥିବା ଉଚିତ, ନ ହେଲେ ସେମାନେ ବିନାଶର ଆନନ୍ଦ ପାଇପାରିବେ ନାହିଁ ।"

(ତୁ ଗୋଟିଏ ଗ୍ରେଟ ସେଣ୍ଟିମେଣ୍ଟାଲ ପ୍ରାଣୀ । ତୋର ଶଇତାନ ପାଇଁ ଦରକାର ସଙ୍ଗୀତ, ଭଜନ, ଆଟ୍‌ମସ୍‌ଫିଅର୍ !)

ଏହି ଭର୍ତ୍ସନା ଗୋପାଳବାବୁଙ୍କ ଦେହକୁ କାଟିଲା । ସେ ଶୀଘ୍ର ଉତ୍ତର ଦେଇପାରିଲେ ନାହିଁ ।

ସେ ବଗିଚାର ଟାଣୁଆ ଜବାବ୍ ଖୋଜୁଛନ୍ତି; ଏହି ସମୟରେ ଗୋଟିଏ ବାରବର୍ଷିଆ ଅପରିଚ୍ଛନ୍ନଆ ଟୋକାର ମୁହଁ ଅନ୍ଧାର ଦର୍ପଣରେ ଦେଖାଗଲା । ମୁହଁରେ

ବସନ୍ତ ଦାଗ ଅଛି, ପୌଗଣ୍ଡର ରୁକ୍ଷତା, ଓ ଦାନ୍ତୁରା ହସ । କିନ୍ତୁ ଗୃହାଣୀରେ ଅଛି ନିଜକୁ ସଁପିଦେବାର କରୁଣତା, —ତା' ମାଆ ପରି । ସେ କହିଲା, "ବାପା, ମୁଁ ମରିବି ନାହିଁ, ବୋମା ଏଠିକି ଆସିବ ନାହିଁ ।"

ଗୋପାଳବାବୁ ତା'କୁ ଦେଖି ଆଶ୍ଚର୍ଯ୍ୟ ହେଲେ । କହିଲେ, "ତୁ କାହିଁକି ଆସିଛୁ ଏଠିକି ? ତୁ ଏଠୁ ଚାଲିଯାଆ । ତୁ ମରିପାରିବୁ ନାହିଁ, ମୁଁ ମରିବି । ମୁଁ ହେଉଛି ଶଇତାନ୍ ।"

"ତାହାହେଲେ ତୁମେ ମୋତେ ଭଲପାଅ ?"

"ଓଃ, ପୁଣି ସେହି ଭଲପାଇବା କଥା ?" ଗୋପାଳବାବୁ ବିକଳ ହେଲେ । କାହିଁକି ସମସ୍ତେ ମୋ ପଛରେ ଲାଗିଛନ୍ତି ? ମୋର ଭଲପାଇବା, ଭଲପଣ, ମୋ ବଇଁଶୀ, ମୋ ରେଜିଷ୍ଟର୍—ଚୁଲିକୁ ଯାଉ, ମୁଁ ଶଇତାନ୍ ହେବାକୁ ଚାହେଁ ।"

ମୁଁ କ'ଣ ଶଇତାନ୍ ହୋଇପାରିବି ନାହିଁ ?···

ସୌଭାଗ୍ୟବଶତଃ ଏତିକିବେଳେ ସତସତିକା ସାଇରେନ୍ ବାଜିଉଠିଲା । ତା'ର ବାହୁନା ସ୍ୱର ଶୋଇଲା ସହର ଉପରେ ଲମ୍ବେଇହୋଇଗଲା ।

ଗୋପାଳବାବୁ ବସିବାଜାଗାରୁ ଲମ୍ଫଦେଇ ତଳକୁ ଆସିଲେ । ତାଙ୍କ ଦେହ ମନରେ ଶକ୍ତିର ସୁଅ ପୁଣି ଖେଳିଗଲା । ଏବଂ ସେ କହିଲେ,—ଅନ୍ତତଃ ମୁଁ ଶତ୍ରୁକୁ ଘୃଣାକରେ, ତୀବ୍ର ଭାବରେ ଘୃଣାକରେ । ଏକଥା କେହି ମନାକରିପାରିବେ ନାହିଁ । ସେ ଅତି ହୀନ, ପାଷାଣ୍ଡ, ବର୍ବର— ।

ସେ ଘର ଭିତରକୁ ଦୌଡ଼ିଯାଇ ସ୍ତ୍ରୀ ପିଲାଙ୍କ ନାଁ ଧରି ପାଟି କରିଉଠିଲେ, "ଉଠ, ଉଠ ସମସ୍ତେ । ଉଠିଆସ । ଶଳାଏ ଆସିଗଲେଣି । ଆଲୁଅ ଲଗା ନାହିଁ, ମାଟିଘରକୁ ଚାଲିଆସ । ଡର ନାହିଁ ।"

ସେ କଳ୍ପନାରେ ଦେଖିଲେ ଯେ, ସେ ଆକାଶକୁ ଉଠିଯାଇଛନ୍ତି । ଶତ୍ରୁ ଉଡ଼ାଜାହାଜରେ ବସିଥିବା ଲୋକଟାର ପେଟରେ ଛୁରୀ ଭୁଷି ଦେଇଛନ୍ତି, ଓ ତାର ଛୁରୀ ନିଜ ପେଟରେ ଭୁଷି ହୋଇଯାଉଛି । ଦୁଇଜଣଙ୍କର ରକ୍ତ ଟପ୍ ଟପ୍ ହୋଇ ପୃଥିବୀ ଉପରେ ଝରିପଡ଼ୁଛି ।



# ବୋମା ପଡ଼ିବ !

"ଲକ୍ଷ ବିହଙ୍ଗ" ବହିର ଏଇ ଶେଷ ଗପଟି ପ୍ରଥମ ଗପ "ଲକ୍ଷ ବିହଙ୍ଗ" ପରି ଅଣକଥା । କାହାଣୀ ଘରେ ଶୂନ୍ । କେବଳ ଜଣକର ମନକୁ ଛାଡ଼ି ଦିଆ ହୋଇଛି ଅବାଧରେ କିଛି ସମସ୍ୟ ଭୁଲି ଆସିବା ପାଇଁ । ଉଦ୍ଦେଶ୍ୟ ଯେ ସେ କିଛି ନା କିଛି ଦର୍ଶନ ଅବା ସାରତତ୍ତ୍ୱ ଶୁଣେଇବ ଆମକୁ ଓ ମୁଁ କହିବି—ଦେଖନ୍ତୁ, ଏଇ ହେଉଛି ମୋର ଶେଷକଥା, ଆଖିକୁ ଝଲସେଇଲା ପରି ଝଲକ, କ୍ଲାଇମାକ୍ସ, ଚୂଡ଼ାନ୍ତର ଚୁମ୍ବକ । ତଥାପି କଣ ଆପଣ ଏହାକୁ ଗପ ନୁହେଁ ବୋଲି ଫେରାଇ ଦେଇ ପାରିବେ ?

କିନ୍ତୁ କ'ଣଟା ହେଲା ? "ଲକ୍ଷ ବିହଙ୍ଗ"ର ନାୟିକା ନିଷ୍କ୍ରିୟତାର ଚରମରେ ପହଞ୍ଚି କେବଳ ଆଖି ବୁଜିଦେଲେ, ରେଫ୍ରିଜରେଟର୍ ଉପରେ ବସିଥିବା ମାଛିକୁ ଧ୍ୟାନ କଲାପରି ଏବଂ "ବୋମା ପଡ଼ିବ" ର ନାୟକ ମିଛିମିଛିକା ସକ୍ରିୟତାର ଭେଲିକି ଦେଖାଇଲେ, ବୀରତ୍ୱର କାଢ଼ ଦେଖାଇଲେ ପିଲାଙ୍କ ପରି ଏବଂ ଆମକୁ ହସାଇଲେ । ଏଇ ହେଲା ଝଲକ ? ଦର୍ଶନ ଚିନ୍ତାମଣି ?

ଦୁଇଟିଯାକ ଗପ ଯଥେଷ୍ଟ ଆଦୃତ ଏବଂ ପ୍ରଶଂସିତ ହୋଇଛି । ତଥାପି କେତେକ ପାଠକ ବନ୍ଧୁ ମୋତେ ଉପରୋକ୍ତ ପ୍ରଶ୍ନ ପଚାରିଛନ୍ତି । ଭଲ ଲାଗିଲା, କିନ୍ତୁ କାହିଁକି ଭଲ ଲାଗିଲା ବୁଝି ହେଉ ନାହିଁ, ଛଟପଟ ଲାଗୁଛି,—ଏହି ଭାବରେ ଲାଗିପଡ଼ି ଅନେଇଛନ୍ତି ମୋ ଆଡ଼କୁ ସତସତକା ଝଲକ, ସ୍ପଷ୍ଟୀକରଣର ଚନ୍ଦ୍ରୋଦୟ ପାଇବା ପାଇଁ ।

ଦୁଃଖର ବିଷୟ ମୁଁ ସେମାନଙ୍କୁ ମନଲାଖି ଉତ୍ତର ଯୋଗାଇ ପାରି ନାହିଁ । ଆଜି ମଧ୍ୟ ପାରୁ ନାହିଁ । ତେବେ ମୋର ମନେ ହେଉଛି ମୁଁ ଅନ୍ତତଃ ତାଙ୍କ ପ୍ରଶ୍ନର ଅସନ୍ତୋଷକୁ ଅଳ୍ପ ବହୁତ ଟହ୍ଳେଇ ଦେଇ ପାରିବି । ଯଥା : ପରିତୁଷ୍ଟା ମିସେସ୍ ପୁରୀଙ୍କ ପ୍ରତି ଯଥେଷ୍ଟ କ୍ରୋଧ ଆସିଲେ ମଧ୍ୟ ଅହେତୁକ ଈର୍ଷାର ଭାବ ଆସୁ-ନାହିଁ କି ? ସତେକି ବିହଙ୍ଗମାନେ ଯାହା କହୁଛନ୍ତି ସେଥିରେ କିଛିଟା ସତ ରହିଛି, ତାଙ୍କର ଅଳସ ଶଯ୍ୟା ହେଉଛି ସଭ୍ୟତାର ସ୍ୱର୍ଗ, ସୀମିତ ଓ ସୁରକ୍ଷିତ, ଯେଉଁଠୁ ମଧୁମାଳାଙ୍କୁ ତଡ଼ିଦେଇ ନ ପାରିଲେ ମନରେ ଶାନ୍ତି ଆସିବ ନାହିଁ । କ୍ରୋଧପରବଶ ହୋଇ ଜଣେ ଅଧେ ତାଙ୍କୁ ଧର୍ଷଣ କରିବାକୁ ଚାହିଁବା ମଧ୍ୟ ବିଚିତ୍ର ନୁହେଁ । ଅସନ୍ତୋଷର ମୂଳ କଥା ହେଲା,—ମୁଁ କାହିଁକି ମୋ ଭାବ-ଭାବନାରେ ଘାର୍ଣ୍ଣି ହେଉଥିବି ଏମିତି ? ଏଥିରୁ କ'ଣ ମୁକ୍ତି ନାହିଁ ? "ବୋମା ପଞ୍ଜିବ"ର ଗୋପାଳବାବୁଙ୍କ ପ୍ରତି କ୍ରୋଧ ହୁଏନାହିଁ, କିନ୍ତୁ ମନଟା ଅପରିସୀମ ଦୟାରେ ମନ୍ଥିତ ହେଉଛି । ସତେକି ଦୟାର ପାତ୍ର ଗୋପାଳବାବୁ ନୁହନ୍ତି, ମୁଁ ନିଜେ । ହାୱେହାଇ ସର୍ବସାଧାରଣ ମଣିଷଟିଏ, ଯେ ଭାବିବାକୁ ଚାହେଁ ସେ 'କେହି ଜଣେ', ଯେଉଁଥିରେ ତା'ର ବଞ୍ଚିବା-ମରିବା ସାର୍ଥକ ବୋଲି ମନେ ହେବ । ତେଣୁ ତା'ର ଅସନ୍ତୋଷ ଆଉ ପ୍ରକାରେ ହେଲେ ମଧ୍ୟ ଏକାଭଳି ଶୁଭେ—ମୁଁ କଣ ହତରେ ଅନ୍ୟତମ ଗୋପାଳବାବୁ ? ଏଇ ଇତର ଅନାମଧେୟତା ଅର୍ଥାତ୍ ନାସ୍ତିତ୍ୱରୁ କ'ଣ ମୋର ମୁକ୍ତି ନାହିଁ ? ମନେହେବ ଯେ ମିସେସ୍ ପୁରୀ ଓ ଗୋପାଳବାବୁ ସଲସୁତର ହୋଇ ସମ୍ଭାବନା ଓ ବାସ୍ତବର ଦୁଇ ଦିଗରେ ଥାଇ ମୋ ଉପରେ ଆକ୍ରମଣ ଚଳାଇ-ଛନ୍ତି କାହିଁକନା ମୁଁ ଗୋଟିଏ ସୁସ୍ଥ ସାଧାରଣ ମଣିଷ । ଅଯଥାରେ କହୁଛନ୍ତି ଯେ ମୁଁ କେହି ନୁହେଁ, କିଛି ନୁହେଁ, ଲକ୍ଷ ସହସ୍ର ଜୀବଜନ୍ତୁ କୀଟପତଙ୍ଗ ଭିତରୁ ଗୋଟିଏ, ଯେ ରହିଲେ କେତେ ମଲେ କେତେ ଯାଏ ଆସେ ନାହିଁ । ମିଛ ମିଛ ! ମୁଁ ଡରୁଆ ନୁହେଁ, ମୁଁ ନର୍ମାଲ୍ ! ଭାବଭାବନାକୁ ଜବତ୍ କଲା ପରି, କିମ୍ବା ଶରୀରର ପେଟରେ ଛୁରୀ ଭୁଷିଲା ପରି ବିରୋଧ ନ ଥିଲେ ନାହିଁ, ମୁଁ ନର୍ମାଲ୍ !

ଟହ୍ଳେଇ ଦେଇ ପାରିବ ସିନା, ମୁଁ କେମିତି ଭଲ ଏଇ ଅସନ୍ତୋଷ ଘୁଞ୍ଚେଇ ଦେଇ ପାରିବି ? ଅବଶ୍ୟ ମୁଁ ବେଳେବେଳେ

ନିଜକୁ ଠକେଇବାକୁ ଚେଷ୍ଟା କରେ ଯେ ଇତର ସାଧାରଣ ହେଲେ ମଧ୍ୟ ମୁଁ ପୁରାପୁରି ନମିଲ୍ ନୁହେଁ, ଯେହେତୁ ମୁଁ ଲେଖକ । ଯେ ମୁଁ ମଧ୍ୟ ଅତି ଅନୁଭବର ଚେଢେଉ ଦେଖି ପାରୁଛି, ଯାହା ଦେଖୁ ଦେଖୁ ମିଳେଇ ଯାଉଛି । ଉତ୍ତରେ ବାଟ ମୋର ଅଜଣା ନୁହେଁ, କିନ୍ତୁ ସେଥିରେ ପାଦ ଦେଉଁ ଦେଉଁ .....କ୍ଷମା କରନ୍ତୁ, ମୁଁ ଖାଲି ଲେଖକ ହୋଇ ରହିଗଲି, ନ ହେଲେ ଆପଣଙ୍କୁ ଠିକେ ଠିକେ ନେଇ ଯାଇଥାଆନ୍ତି ହେଇ ବାଟେ !

ଉତ୍ତରରେ ବାଟ ନ ଦେଖେଇ ପାରିଲେ ନାହିଁ, ତା'ର ଅସହନୀୟ ଆବେଗ ଆକୁଳତାଟିକୁ କଣ ମୋ ଉପର ବାଞ୍ଛିତ ଫଳକ, ଶେଷକଥା ନୁହେଁ ? ସେଇଥିରେ କ'ଣ ତାକୁ ମୂଲ୍ୟ ଦେବାର ନୁହେଁ ?

ଶ୍ରୀ ବିଜୟକୁମାର ସାହୁଙ୍କ ଦ୍ୱାରା ରଚିତ ଏହାର ଇଂରାଜୀ ଅନୁବାଦ Bomb ng ! କଟକରୁ ଏକ ସମୟରେ ବାହାରୁଥିବା 'Expression Ind a' (1979 vol. I) ରେ ପ୍ରକାଶିତ ହୋଇଛି । ମହାପାତ୍ର ଦମ୍ପତିଙ୍କ ଦ୍ୱାରା ରଚିତ ଇଂରାଜୀ ଅନୁବାଦ 'Waiting for the ombing' ବରୋଦାରୁ ବାହାରୁଥିବା ଇଂରାଜୀ ପତ୍ରିକା ' tu' ରେ ପ୍ରକାଶିତ ହୋଇଛି ଏବଂ ଏହି ଗଳ୍ପଟି ମୋର ଦ୍ୱିତୀୟ ଇଂରାଜୀ ଗଳ୍ପସଙ୍କଳନ 'Wild Peacock and other Stories' ରେ ସ୍ଥାନ ପାଇଛି ।

ଭୁବନେଶ୍ୱର
୨୨ ଅକ୍ଟୋବର ୧୯୮୬



# ମଣିହରା

ନାହିଁ । ଚାଲିଯାଇଛୁ ।

ସେ ଏହିକ୍ଷଣି ଥିଲା ପରା ! ସେ ତା' ମୁହଁ ମୋ ଗାଲ ପାଖରେ ରଖିଲା । ମୁଁ ତା' ବେକ ଆଉଁସି ଦେଉଥିଲି, ଘିମିରି ମାରୁଥିଲି, । ତା' ମୁଣ୍ଡ ଝାଳଉଥିଲା, ଝାଙ୍କୁଆ ବାଳରୁ କଅଁଳିଆ ଫୁରୁକୁଟିଆ ବାସ୍ନା ଆସୁଥିଲା । ସେ ତା'ର ଶୋଇଲା ଆଖିରେ ମୋ ଆଡ଼କୁ, ଏକା ମୋରି ଆଡ଼କୁ ଚାହିଁଥିଲା । ସେମାନେ କେମିତି ବୁଝିବେ ? ସେମାନେ କଣ ତାକୁ ଜନ୍ମ କରିଥିଲେ ?

"ଭଉଜବୋଉ ଉଠ—ଚା' ଖାଇବ ନାହିଁ ? ଉଠ ପ୍ଲିଜ୍ । ହେଇ, ପାଞ୍ଚଟା ବାଜିଲାଣି, ଭାଇଙ୍କ ଆସିବା ବେଳ ହୋଇଗଲାଣି ।"

"ଭାଇ ଆସିଲେ ମୁଁ କଣ କରିବି ?" ନିର୍ମଳା ଦେବୀ ଚହିଁକି ଉଠିଲେ । କିନ୍ତୁ ତାଙ୍କର ଧ୍ୟାନ ଭାଙ୍ଗିଗଲା ଓ ସେ ଖଟ ଉପରେ ସିଧା ହୋଇ ବସିଲେ । ସାନ ନଣନ୍ଦ ଛବି ଏକଦୃଷ୍ଟିରେ ଚାହିଁଛି । ତା'ର କାମ ସରିନାହିଁ, ତା'କୁ କୁହାହୋଇଛି ଯେ ଭଉଜବୋଉଙ୍କୁ ଚା' ଖୋଇବାକୁ ହେବ । ସମସ୍ତେ ବୋକା, ଅଗୁଆଁର । ନା, ନା, ଜାଣିପିଆଣିଆ । ଏ ପିଲା ବି' ତାଙ୍କରି ଭିତରୁ ଜଣେ, ମଜା ଦେଖୁଛି । ଫେରିଯାଇ ବନେଇ ଚୂନେଇ କହିବ ଯେ ଭଉଜବୋଉ ଏମିତି ଶୋଇଥିଲେ, ଏମିତି ଦେଖା-ଯାଉଥିଲେ, ଏଇଆ କହିଲେ, ଅଉ ନିଜର ବାହାଦୁରି ନେବ । ଭଉଜବୋଉଙ୍କର ଗୋଟାଏ ଘଟଣା ଘଟିଛି, ଭଉଜବୋଉଙ୍କ ମୁଣ୍ଡରେ ସିଙ୍ଗ ଉଠିଛି—ମୁଁ ଦେଖିଆସିଲି, ମୁଁ ତାଙ୍କୁ କହିଲାରୁ ସେ ଚା' ଖାଇଲେ ।

ଆହୁରି କେତେ ଆସିବେ; ବଡ଼ରୁ ସାନ ଯାଏଁ, ଜଣକ ପରେ ଜଣେ । ଆଖି ଛଳଛଳ କରିବେ, ଦେହରେ ହାତ ବୁଲାଇବେ, ଦୟା ଦେଖାଇବା ପାଇଁ ଧସ୍ତପସ୍ତ ହେବେ ।

ମୋ ପୁଅ ନାହିଁ । ମୁଁ ଥିଏଟର କରୁଛି ।

ନିର୍ମଳା ଦେବୀ କ୍ରୋଧ ଓ ଅକ୍ଷମତାରେ ହସିଲେ ଏବଂ ପରେ ପରେ କାନ୍ଦିଲେ । ଆଣ୍ଠୁରେ ମୁହଁ ରଖି କୋହ ଚାପି କାନ୍ଦିଲେ । ମୁଁ ଥିଏଟର୍ କରିବି ନାହିଁ । ମୁଁ ତୁମମାନଙ୍କ ସାଙ୍ଗରେ ଜଣେ ହୋଇ ରହିବି, ହସିବି, ବସିବି, ପିଠା କରିବି, ଘରିବା କାଟିବି । କିନ୍ତୁ ତାକୁ ମୋ ପାଖକୁ ଆଣିଦିଅ । ଥରେ, ଦ'ମିନିଟ୍ ପାଇଁ । ମୁଁ ଟିକିଏ ଖାଲି ତାକୁ ଦେଖିବି, ତା' ସାଙ୍ଗରେ କଥାଭାଷା ହେବି, ତା' ଝାଙ୍କୁଆ ମୁଣ୍ଡକୁ ପୋଛିଦେବି, ତା'ପରେ କହିବି ତୁ ଯାଆ । ଏତିକିରେ କଣ କାହାର କିଛି ହରିଯାଉଚି ?

ସେ କଣ ଥରେ ହେଲେ ଆସିବ ନାହିଁ ? କାହିଁକି ? ମୁଁ କଅଣ ଦୋଷ କରିଚି ? ନିର୍ମଳା ଦେବୀ ପରାସ୍ତ ବିକଳ ଗୃହାଣୀରେ ମୁଣ୍ଡ ଠେକିଲେ । ରାଗିବାକୁ ନ ଥିଲି ପରି ନରମ କାତର ହୋଇ କହିଲେ, 'ତୁମେ କାହିଁକି ଛିଡ଼ା ହୋଇଚ ?'

······ଛବି ଫେରିଗଲା । ଗ୍ରୀ' ଥଣ୍ଡା ହେବାକୁ ବସିଲା । ପୁନର୍ବାର ଚେଷ୍ଟା କରିବା ପାଇଁ ବୋଧହୁଏ ଆଉ କେହି ଆସିଥାଆନ୍ତେ—ପୁରାତନ ଭୃତ୍ୟ ବାଞ୍ଛା, ଘଅର ରମୁ କିମ୍ବା ଫୋଡ଼୍ ଶାଶୁ । କିନ୍ତୁ ତା' ପୂର୍ବରୁ ସେ ଆସି ପହଞ୍ଚିଲେ,— ଉମେଶବାବୁ, ଯୁବକ ସ୍ୱାମୀ । ସେ ଶୋଇବା ଘରକୁ ପଶିଯାଇ ସ୍ତ୍ରୀଙ୍କୁ ଦେଖିଲେ ଏବଂ ତତ୍‌କ୍ଷଣାତ୍ ଦୃଷ୍ଟି ଫେରାଇଆଣି ଜାମାପଟା ବଦଳାଇବାକୁ ଲାଗିଲେ । ପଙ୍ଖା ଜୋରରେ ଚାଲୁଚି କି ନାହିଁ ବୋଲି ଉପରକୁ ଅନାଇଲେ । ଯେପରିକି ସେ ସାହସ କରି ଭାବୁଚନ୍ତି ଯେ ଏହିକ୍ଷଣି ଭାରି ଗରମ ହେଉଚି । କାଲେ ଭାଙ୍ଗିପଡ଼ିବେ ସେଇଥିପାଇଁ ବାହ୍ୟିକ ଓ ବର୍ତ୍ତମାନର ଚେତନାକୁ ଜାବୁଡ଼ି ଧରୁଛନ୍ତି । ତାଙ୍କର କୁଞ୍ଚିତ କପାଳ, ଓହଳା ନରମ ମୁହଁକୁ ଦେଖିଲେ ମନେହେବ ଯେ ସେ ଆଉ ପାରୁନାହାନ୍ତି, ସେ ମଧ୍ୟ ମଣିଷ, ସର୍ବଂସହ ନୁହନ୍ତି ।

ନିର୍ମଳା ଦେବୀ ସ୍ୱାମୀଙ୍କୁ ଦେଖିଲେ କିନ୍ତୁ ଭାବ ଅବା ଭାଷାର ଉତ୍ତର ଦେଲେନାହିଁ । ବୋଧହୁଏ ତାଙ୍କ ମନରେ ଥିଲା ଯେ ଏ ଲୋକଟିକୁ ସେ ଜାଣନ୍ତି । ଲୋକଟି ଅତି ଜଣାଶୁଣା, ତା'ସାମନାରେ ଦେହର ଶାଢ଼ୀକୁ ସଜାଡ଼ି ଦେବାର ପ୍ରୟୋଜନ ହେଉନାହିଁ, ତେବେ ସେ କେବଳ ସ୍ୱାମୀ ଶ୍ରେଣୀର ଜଣେ । ତେଣୁ ତାଙ୍କୁ ଦେଖିଲେ ଦୁଃଖ ବଢ଼ୁନାହିଁ କି କମୁନାହିଁ । ସେ କେବଳ ଜୋତା ମୋଜା ଉତାରୁଛନ୍ତି, ଶୁଟର ବୋତାମ ଖୋଲି ପବନ ଖାଉଛନ୍ତି, ଦୀର୍ଘନିଃଶ୍ୱାସ ପକାଉଛନ୍ତି— ସବୁ ସ୍ୱାମୀମାନଙ୍କ ପରି । ତା' ଛଡ଼ା ଆଉ କଣ କରିପାରନ୍ତେ ?

କିଛି ସମୟ ପଙ୍ଖାତଳେ ଛିଡ଼ା ହେଲାପରେ ଉମେଶବାବୁ ଗ୍ରୀ' ଙ୍କ ପାଖକୁ ଗଲେ ଓ କହିଲେ 'କଅଣ ଗ୍ରୀ'ଥଣ୍ଡା ହୋଇଗଲଣି ? ତୁମେ ଖାଇ ସାରିଲଣି ?

"ନା ।"

ହେଉଥୁ ସେ ସ୍ତ୍ରୀଙ୍କ ପାଖକୁ ଯାଇ ଖଟ ଉପରେ ବସିଲେ ଓ ଧୀରୁ କଣ୍ଠରେ ପଚାରିଲେ; 'ଆଉ ଚା' ଅଣେଇବ ?"

ନିର୍ମଳା ଦେବୀଙ୍କ ଲୁହବୋଳା ଆଖିରୁ ନିଆଁ ବାହାରିଲା । ସେ ତୀକ୍ଷଣ ସ୍ୱରରେ କହିଲେ, 'ଚା—ଚା—ଚା— ! ଏ ଘରେ ଆଉ କାହାର କିଛି ଚିନ୍ତା ନାହିଁ । ଟିକିଏ ମଣିଷକୁ ଶାନ୍ତିରେ ରହିବାକୁ ଦେବିବେ ନାହିଁ ।"

କ୍ଷଣକ ପାଇଁ ମନେ ହେଲା ଯେ ଉମେଶବାବୁ ଏହାର ଉତ୍ତର ଦେବେ, ଚୋଟ ଫେରାଇ ଦେବେ । କିନ୍ତୁ ତା'ପରେ ତାଙ୍କର କପାଳ ଅଧିକ କୁଞ୍ଚିତ ହୋଇଗଲା, ଓଠ ଚୁପି ହୋଇଗଲା, ଏବଂ ସେ କିଛି କହିଲେ ନାହିଁ ।

ଗୋଟିଏ ଦୁଃଖ, ଦୁଇଜଣଙ୍କର ଗୋଟିଏ ଦୁଃଖ । ନିମୁ କାହିଁକି ବୁଝୁନାହିଁ ଯେ ସେ ଏକୁଟିଏ ନାହିଁ, ଯେ ମୁଁ ତା' ପାଖରେ ଅଛି ? ସେ କେତେଦିନ ଏମିତି ନିଜକୁ ହିନ୍ତସନ୍ତ କରୁଥିବ ?

ବଳୁ ମୋ ପୁଅ । ସମସ୍ତେ କହୁଥିଲେ ଯେ ସେ ବାପ ପରି ଦେଖିବାକୁ, ବାପ ପରି କାଳିଆ, ହେମିଠିକା ଚେପଟା ନାକ, ମୁଣ୍ଡରେ ଗୋଛାଏ କହରା ବାଳ । ସେ ବଡ଼ ହୋଇ ଆଆନ୍ତା । ମୁଁ ତାକୁ ହାତ ଧରି ବୁଲେଇ ନେଇଥାନ୍ତି, ତା ସାଙ୍ଗରେ ବଲ୍ ଖେଳ ଥାଅନ୍ତି, ତାକୁ ଦେବେବେଦେରେ କେତେ କଥା ଶିଖେଇ ଥାଆନ୍ତି । ସେ ଖେଳରେ ଜଖମ ହୋଇ ବିଛଣାରେ ପଡ଼ିଥିବାବେଳେ ମୁଁ ତାକୁ କେତେ ମଜାଗପ କହିଥାଆନ୍ତି, ସେ ଦୁଷ୍ଟାମି କଲେ ମୁଁ ତା' କାନ ମୋଡ଼ି ଚଟକଣି ମାରିଥାଆନ୍ତି ଆଉ ସେ ତା' ମାଆ ପାଖରେ ଗେହ୍ଲେଇ ହୋଇ ଥାଅନ୍ତା । ବାପ ଓ ପୁଅ । ଉମେଶବାବୁ ଖଟରେ ବସିରହି ସେହି ସମ୍ବନ୍ଧର ମର୍ଯ୍ୟାଦା ଅନୁଭବ କଲେ, ଏବଂ ନିଜର ଅଭାବକୁ ଖୋଜିଲେ । ନିର୍ମଳା ଦେବୀ ଗୃହକଣ୍ଠେ ଅନ୍ତରରେ ଥିଲେ । ତାଙ୍କ ଶାଢ଼ୀର ଘେର ଉଡ଼ି ଉଡ଼ି ଉମେଶବାବୁଙ୍କ ଦେହରେ ବାଜୁଥିଲା ।

ସାନ୍ନିଧ୍ୟ । ଖାଲି ହେଉନି ନୁହେଁ । ଥରେ ନିର୍ମଳା ଦେବୀଙ୍କର ମନେ ହେଲା ଯେ ଦୁହିଁଙ୍କ ଦୀର୍ଘନିଃଶ୍ୱାସ ଏକା ସାଙ୍ଗରେ ଅସୁଚି । ତାକୁହିଁ କଣ ସହି ହେଲା ନାହିଁ ? ଯାହାହେଉ ନିର୍ମଳା ଦେବୀ ହଠାତ୍ ତରତର ହେଲା ପରି ବିଛଣାରୁ ଉଠି ପଡ଼ିଲେ ଓ ବେପରୁଆ ବାଣିରେ ପଚାରିଲେ, "ଆଜି ବଜାରକୁ ଯିବାର ଥିଲା ପରା ? ଚାଲ ।" ତାଙ୍କ କଣ୍ଠରେ ଶ୍ରଦ୍ଧା ନ ଥିଲା ।

···ପିନ୍ଧାପିନ୍ଧି କରି ଦୁହେଁ ତଳକୁ ଗଲେ, ତା'ପରେ ଦାଣ୍ଡ ଫାଟକ ଦେଇ ଖୋଲା ରାସ୍ତାରେ ପହଞ୍ଚିଲେ । ଯାହାର ଗୁରୁତ୍ୱ ଉପଲବ୍ଧି କଲାପରି ପରିବାରର ପ୍ରତି ଲୋକ

ତାଙ୍କ ଆଡ଼କୁ ଥରେ ଅଧେ ଚାହିଁଲେ, ଗମ୍ଭୀର ହୋଇଗଲେ, ଓ ଚୁପ ରହିଲେ । କେବଳ ଉମେଶବାବୁଙ୍କ ବାପା କହିବାକୁ ଚାହୁଁଥିଲେ ଯେ ଚାଲିକରି ନ ଯାଇ କାର୍‌ରେ ଗଲେ ଭଲ ହେବ, କାହିଁକିନା ସାହରେ କେତେ ପ୍ରକାରର ପରିଚିତ ଲୋକ, ସମସ୍ତଙ୍କ ଦୃଷ୍ଟିକୋଣ ସମାନ ନୁହେଁ— । କିନ୍ତୁ ସେ କିଛି କହିବାକୁ ଭରସା ପାଇଲେ ନାହିଁ । ମନେ ମନେ ଅଶୀର୍ବାଦ କଲେ ।

●

ଟ୍ରାଜେଡ଼ିର ପରେ ଏହି ପ୍ରଥମ ସେ ଦୁହେଁ ଏକାଠି ପଦାକୁ ବାହାରିଛନ୍ତି । ଅନ୍ତତଃ ନିଜ ଆଖିରେ ଆଜି ଦୁଚୁଣିଆ ନ ହେବାର ଉପାୟ ନାହିଁ । ଉମେଶବାବୁ ଅବସ୍ଥା ବୁଝିଥିଲେ, ଏବଂ ନମୁର ବୋଝକୁ ହାଲୁକା କରିଦେବା ପାଇଁ ଚେଷ୍ଟା କରୁଥିଲେ । ମଝିରେ ମଝିରେ ଅଦରକାରୀ ମାମୁଲି କଥା ପକାଉଥିଲେ,—ଅଜି ପାଗଟା ବେଶ ଭଲ ହୋଇଚି, ନୁହେଁ ?...ନମର ଶାଢ଼ୀ ପାଇଁ କେଉଁଠିକୁ ଯିବା ? କସନ୍ ଲଲ୍ ନା ଲେଡ଼ିଜ୍ ଏମ୍ପୋରିୟମ୍ ? (ନମି ଉମେଶବାବୁଙ୍କ ସାନ ଭଉଣୀ, ବାହା ହୋଇଯାଇଚି । ତା'ର ପୁଅନେଇ ବେହରା ପାଇଁ ଶାଢ଼ୀ ଦରକାର)...ମୋର ଅସନ୍ତା ହପ୍ତାକୁ ଟୁରରେ ଯିବାର ଥିଲା, କିନ୍ତୁ ନିଜେ ଘେଷେଷେରି ମୋ ବଦଳରେ ଆଉ ଜଣକୁ ଯିବାକୁ କହିଲେ, ଇତ୍ୟାଦି ।

ଦୁହେଁ ପାଖାପାଖି ଚାଲୁଥିଲେ । ଦୁହିଁଙ୍କ ପାଦ ଏକାଠି ପଡ଼ୁଥିଲା ମାର୍ଚ୍ଚିଙ୍ଗ୍ କଲାପରି । କ୍ଲକ୍-ଟାଓ୍ୱାରର ଚଉମୁହାଣିରେ ଯେଉଁଠି ମଣିଷ ଗାଡ଼ି ଘୋଡ଼ାର ପ୍ରବଳ ଭିଡ଼, ସେଠି ମଧ୍ୟ ଉମେଶବାବୁ ନିପୁଣତା ସହ ଡେଇଁ କରି ସ୍ତ୍ରୀଙ୍କର ହାତ ଛାଡ଼ିଲେ ନାହିଁ । ତାଙ୍କର ଖିଆଲ ଆସୁ ନ ଥିଲା ଯେ ତାଙ୍କର ଏଇ ବ୍ୟବହାର ନୂଆ କିମ୍ବା ଅସାଧାରଣ ।

ବଜାର । କଣାବିକାର ଚହଲ । ସେମାନଙ୍କ ପାଇଁ ସମୟର ଘଣ୍ଟା ଅଟକି ଯାଇନାହିଁ । ଫୁଟ୍‌ପାଥର ଗୋଟିଏ ଜାଗାରେ ଶସ୍ତା ନାଲିନେଳି ରୁମାଲ ଗଦା ହୋଇଚି, ମଫସଲ୍ଲ ଝିଅଟିଏ ସେଥିରୁ ଗୋଟିଏ ହାତରେ ଧରି ଖୁସି ହେଉଚି, ତା' ମାଆ ତାକୁ ପଛରୁ ଟାଣୁଚି । ଆଉ କେଉଁଠି ଡନଗ୍ରହୋଟି ମଇନା ଚଢ଼େଇ ପିଞ୍ଜରା ଭିତରେ ଅସ୍ଥିର ହେଉଛନ୍ତି, ତାଙ୍କ ମାଲିକ ପିଞ୍ଜରାଗୁଡ଼ିକୁ ରଖି ରଖି ଚଲନ୍ତା ଲୋକମାନଙ୍କ ସାମନାରେ ହଲାଇ ଦେଉଚି । କେଉଁ ଶିଖ୍ ଭଦ୍ରଲୋକଙ୍କ ଜୁଡ଼ାବନ୍ଧା ଛୋଟ ପୁଅ ଭେଁ କରି କାନ୍ଦ ଛାଡ଼ିଚି, ତା'ର ଲିପ୍‌ଷ୍ଟିକ୍-ନାଇଲନ୍ ମାଆ ଦୋକାନରୁ ଦୌଡ଼ି ଆସୁଚି ତା'କୁ ବୁଝାଇବା ପାଇଁ । କେଉଁଠି ବଡ଼ିବଲା ଚାଲିଚି, କାରିଗର ଯୁବକ ଦୁଇଜଣ ତହିଁରୁ ଅସୀମ ଆନନ୍ଦ ପାଇଲା ପରି ମନେ ହେଉଚି । ବୁଢ଼ାଟିଏ ଆମ୍ବ କିଣିବ ବୋଲି ବସିଚି, ମନୋଯୋଗ ସହ ପ୍ରତି ପାଚିଲା ଆମ୍ବକୁ ଚିପୁଚି । ହଠାତ୍ କିଏ ଜଣେ ଯାଦୁମଲମର ବିଜ୍ଞାପନ ପତ୍ର ହାତରେ ଧରାଇ ଦେଇ ଗଲାଣି ।

ସେମାନେ କିଛି ଜାଣନ୍ତି ନାହିଁ ! ଜାଣନ୍ତି ନାହିଁ ଯେ ମୋ ପୁଅ ସାତଆଠ ଦିନ ହେଲା ମୋତେ ଛାଡ଼ି କରି ଚାଲି ଯାଇଛି । ନିର୍ମଳା ଦେବୀଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ଯେ ଏମିତି ହୋଇପାରେ, ହୋଇପାରୁଛି । କିନ୍ତୁ ତା' ସହିତ ସେ ତାଙ୍କ ଦୁଃଖରେ ନୂଆ ଗୁଣର ସତ୍ତା ଅନୁଭବ କଲେ । ଗୋପନତାର ଗୌରବ । —ମୁଁ ଜ୍ଞାନୀ ଏମାନେ ଅଜ୍ଞାନୀ । ମୁଁ ଜଣେ ଅଚିହ୍ନା ଭଗବାନଙ୍କର ମେଳରେ ଚାଲୁଚି । କିମ୍ବା ମୁଁ ଜଣେ ଅଚିହ୍ନା ପାପିନୀ, କଳଙ୍କିତା, ମୃତ୍ୟୁର ଷଡ଼ଯନ୍ତ୍ରରେ ଦୂଷିତା, ଇଚ୍ଛା କଲେ ଏମାନଙ୍କୁ ଛୁଇଁ ନଷ୍ଟ କରିଦେବି ।···ପଛକୁ ଫେରି ଏ ପିଲାଟି ମୋତେ ଏମିତି ବଲବଲ କରି ଚାହୁଁଚି କାହିଁକି ? ମୁଁ କଅଣ ଚିହ୍ନା ପଡ଼ିଯାଉଚି ?

"ନମୁ, ସେ ବାଟେ ନୁହେଁ । ପଣବାହାଟ ଆଡ଼କୁ ଯାଉଚ କାହିଁକି ? ଆମେ ଲୁଗା ଦୋକାନକୁ ଯିବାପରା ।"···"ଦେଖି କରି ଚାଲ, ସେଠି ଗୁଡ଼ାଏ କଣ ଅଳିଆ ଗଦା ହୋଇଚି ।" "ତୁମେ ବୋଧହୁଏ ଥକି ଗଲଣି, ଚାଲ କେଉଁଠି ଟିକିଏ ବସି କରି କୋଲଡ୍ ଡ୍ରିଙ୍କ ଖାଇବା ।"···ଉମେଶବାବୁ ଯାହା କହିବାର କଥା କହୁଥିଲେ ।

ଶେଷକୁ ଯେତେବେଳେ ଏକାଠି ବସି କୋଲଡ଼ ଡ୍ରିଙ୍କ ଖାଇବାକୁ ପଡ଼ିଲା ନିର୍ମଳା ଦେବୀ ସ୍ୱାମୀଙ୍କର କ୍ଲେଶହୀନ, ଭଦ୍ର ମୁହଁକୁ ଚାହିଁଲେ ଓ ତାଙ୍କୁ ହଠାତ୍ ଥକା ଲାଗିଲା । —ଏ ଲୋକଟି କେବଳ ସ୍ୱାମୀ ନୁହେଁ, ପୁରୁଷ । ତା'ର ସ୍ଥୂଳ ବେଢଙ୍ଗ ପୁରୁଷ ମନ । ପୁରୁଷ ଦେହ । ସେ ମୋର ବାଟ ଓଗାଳୁଚି ଓ କହୁଚି ସେ ସବୁ ଜାଣେ । ମୋ ଦୁଃଖରେ ଗୋପନତା ନାହିଁ, ବଡ଼ପଣ ନାହିଁ କାରଣ ସେ ମୋ ଦେହରେ ତା ଦେହ ଲଦିଥିଲା ଓ କହୁଚି ଯେ ସେ ମୋ ପୁଅର ବାପା ।

ଶୋଇବା ଘର ଓ ବଜାର ଭିତରେ କିଛି ତଫାତ୍ ନାହିଁ । ମୋର ଏ ଜଣକଠାରୁ ନିସ୍ତାର ନାହିଁ ।

ନିର୍ମଳା ଦେବୀଙ୍କର ଇଚ୍ଛା ହେଲା ଯେ ସେ ପିଇବା ଗିଲାସ 'ତାଙ୍କ' ଉପରକୁ ଫୋପାଡ଼ି ଦେଇ ପଳେଇଯିବେ, ବଜାରର ଲୋକଗହଳି ଭିତରେ ଲୁଚିଯିବେ । ସେଠି ମୁଁ ଏକୁଟିଆ ମନେ ମନେ ହସିବି, କାନ୍ଦିବି । ମୋର ନିଜଗଢ଼ା ଘର ଭିତରେ ଲଙ୍ଗଳା ହୋଇ ନାଚିବି, କେହି ମୋତେ ଦେଖିବାକୁ ନ ଥିବେ । କେବଳ ମୁଁ, ମୋର ଦୁଃଖ ଓ ମୋ' ପୁଅ । ଅନ୍ତତଃ ତୁମେ ନ ଥିବ, ବାହ୍ୟା ପୁରୁଷ । ··· ପୁଅ ଚୁପ୍ କରି ଅସି ମୋ ଭରି ଛାତିକୁ ମୁଣ୍ଡିଆ ମାରିବ । ସେ ତିନି ବର୍ଷର ହୋଇଥିଲା ? କିଏ କହିଲା ? ସେ ତ ମୋଠୁଁ ଦୁଧ ଖାଉଥିଲା । ତୁମେ କଅଣ ଜାଣିଚ ? ତୁମେ କିଏ ?

ଉମେଶବାବୁ ସ୍ତ୍ରୀଙ୍କର ଭାବାନ୍ତର ଲକ୍ଷ୍ୟ କଲେ । ତାଙ୍କୁ ଭୟ ଲାଗିଲା । ସେ ନମୁ ହୁଏତ ହଠାତ୍ ଦୋକାନ ମଝିରେ କାନ୍ଦି ପକାଇବ, କିମ୍ବା କଡ଼ା କଡ଼ା କଥା

କହିବ । ନମୁର ବୁଦ୍ଧି ବୃତ୍ତି ନଷ୍ଟ ହୋଇ ଯାଇନାହିଁ, ତଥାପି— । ବୁଢ଼ା ଡାକ୍ତର ଗୋବର୍ଦ୍ଧନବାବୁ ବସେଇ ବସେଇ କହୁଥିଲେ, "ବାବୁ, ତମେ ଇମିତି ବ୍ୟସ୍ତ ହେଲେ ଚଳିବ ନାହିଁ । ତୁମେ ଧୈର୍ଯ୍ୟ ଧରି ନମୁକୁ ବୁଝେଇବ, ତାକୁ ଦମ୍ଭ ଦବ । ଏହି ସମୟରେ ସ୍ତ୍ରୀଲୋକମାନଙ୍କୁ ଖୁବ୍ ସାବଧାନରେ ହ୍ୟାଣ୍ଡଲ କରିବାକୁ ହୁଏ ।" କାହିଁକି ? ମୁଁ ପୁରୁଷ ବୋଲି କଣ ମୋର ଦୁଃଖନାହିଁ ? ମୁଁ କଣ ପୁଅର ବାପ ନୁହେଁ ? ଲେକ୍‌ଚର ଦେବା ଭାରି ସହଜ ଉମେଶବାବୁ ଡାକ୍ତର ଗୋବର୍ଦ୍ଧନ ବାବୁଙ୍କ ଉପରେ ବିରକ୍ତ ହେବା ସଙ୍ଗେ ସଙ୍ଗେ ନିର୍ମଳା ଦେବୀଙ୍କୁ ଗୁହିଁ ରହିଲେ, ବ୍ୟଥିତ ହେଲେ ଓ ଆଶା କଲେ ଯେ ମୁହୂର୍ତ୍ତ କଟିଯିବ ।

ଯାହାହେଉ କୋଲ୍‌ଡ୍ ଡ୍ରିଙ୍କ୍ ସରିଲା, ଶାଢ଼ୀ କିଣା ସରିଲା ଓ ଦୁହେଁ ଘରକୁ ଫେରିଲେ । ଫେରନ୍ତା ବାଟରେ ନୀରବତା ଘୋଟିଥିଲା । ନିର୍ମଳା ଦେବୀ ଠିକ୍ କରିଥିଲେ ଯେ ସେ ଆଜିଠାରୁ ରାତିରେ ଘରେ ଶୋଇବେ ନାହିଁ ଏକୁଟିଆ ବାରଣ୍ଡାରେ ସପ ପକାଇ ଶୋଇବେ ।

...ସେଦିନ ରାତିରେ ଜହ୍ନ କେଉଁ କୋଣରେ ଥିଲା, ଥିଲା କି ନ ଥିଲା, କିଛି ହେଜନାହିଁ । କିନ୍ତୁ ମନେ ହେଉଥିଲା ଯେ ରାତି ନିଷ୍ଫଳ ଓ ଅସହାୟ । ତା'ର କିଛି କରିବାର ନାହିଁ । ଯାହା କରିବ ମଣିଷ ନିଜେ କରିବ । ଖାଲି ଅନ୍ଧକାରେ କଷ୍ଟ ସହିବ, ନ ହେଲେ କଷ୍ଟକୁ କାଟିଦେଇ ବାହାଫୋଟକା ମାରିବ । ଉମେଶବାବୁଙ୍କର ଆଖିରେ ପଡ଼ିଲା ଯେ ଶୋଇବା ଘର ଫୁଲଦାନରେ ଫୁଲ ଫୁଟିଚି ନିଷ୍ପତ୍ର, ଝାଉଁଳି ଯାଇନାହିଁ, କିନ୍ତୁ ପଙ୍ଗୁ ହୋଇ ଛିଡ଼ା ହୋଇଚି ।

ଉମେଶବାବୁ ଛଟପଟ ହେଉଥିଲେ । ଶୂନ୍ୟତାକୁ ହାତ ମୁଠାରେ ଅଣିବାକୁ ଚେଷ୍ଟା କରୁଥିଲେ, ପାରୁ ନ ଥିଲେ । -ପୁଅ ନାହିଁ, ନମୁ ପାଖରେ ଶୋଇନାହିଁ । କଣ ହେଲା ସେଥିପାଇଁ ? ସ୍ୱୀକାର କରିବାର ଦାୟିତ୍ୱ ମୋର, ଅଧିକାର ମୋର । ଏହି ପୁରୁଣା ଅଥଚ ରାତି, ଆଉ ସେମିତି ପୁରୁଣା ଓ ଅଥଚ ହୋଇ । ମୁଁ କାହାଠାରୁ ସାହାଯ୍ୟ ମାଗୁନାହିଁ । ମୁଁ ପୁଅର ବାପା, ସ୍ତ୍ରୀର ସ୍ୱାମୀ... ।

ତାହେଲେ ସେ କାହିଁକି ରାତିଅଧରେ ବାରଣ୍ଡାକୁ ଗଲେ ? ଗ୍ଭଲି କରି ଗଲେ ନା ଗୁରୁଣ୍ଡି ଗୁରୁଣ୍ଡି ଗଲେ ? ଏବଂ ଯାହା ପାଖକୁ ଗଲେ ସେ ତାଙ୍କର କିଏ ବୋଲି ମନେ ହେଲା ?

ଯିବା ବା ଗଲେ ସେ ସେହି ଶାୟିତା ଦଗ୍ଧାପିତା ନାରୀର ବ୍ଲାଉସ୍ ଖୋଲି ଛାତିର ତଳମଝିରେ ମୁହଁ ଗୁଞ୍ଜି ଉପରକୁ ଅନାଇଲେ କାହିଁକି ?

ଏ ସବୁ ପ୍ରଶ୍ନର ଉତ୍ତର ଦେବା ଅନାବଶ୍ୟକ । କାରଣ ନିଦ ବାଉଳାରେ ନିର୍ମଳା ଦେବୀ ତାଙ୍କୁ ଦେଖିଲେ ଓ ଗ୍ରହଣ କଲେ । କ୍ଷୀର ଦେଲାପରି ସେହି ମାଗିଲା

ମୁହଁକୁ ହାତରେ ଟେକି ଧରିଲେ ଓ ଓଠର ଚୂମାରେ ଲଗାଇଦେଲେ । ସ୍ୱପ୍ନ ଓ ଜାଗରଣ ମଝିରେ ସେ ଅନୁଭବ କଲେ,—ବାବୁ ଫେରି ଆସିଛି । ଦୁଷ୍ଟ ଚଗଲା ଟୋକା, ମୋତେ ହଇରାଣ କରୁଥିଲୁ ଏତେବେଳ ଯାଏଁ !

କ୍ଷଣକରେ ଚେତା ଆସିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ନିର୍ମଳା ଦେବୀ ତଥାପି ସେହି ମୁହଁକୁ ଆଉଁସିବାକୁ ଲାଗିଲେ । ସେପଣକ ତାଙ୍କର ବଳବତୀ କରୁଣା ସ୍ୱପ୍ନର ମିଛକୁ ଛାଡ଼ିବାକୁ ଚାହୁଁ ନାହିଁ—ବାବୁ ବଡ଼ ହୋଇଯାଇଛି, କିନ୍ତୁ ସେ ମୋ ପୁଅ । ସେହି ମୁହଁ, ସେହି ନାକ, ଓଠରେ ସେହି ଲାଲବୋଳା ଲେଉ… ।

ଦେହରେ ଦେହର ସଙ୍କ୍ରମଣ । ପୁଅ ନୁହେଁ ସ୍ୱାମୀ । ପୁରୁଷ । ଛିମୁ, ଏ କଣ ହେଉଛି ? ଏ ଛଳନା, ଏ ଭଣ୍ଡାମି କାହିଁକି ? କଣ ପାଇବୁ ବୋଲି ନିଜକୁ ଭୁଲଉଛୁ ?

ଆଉ ଶୁଣି ହେଲା ନାହିଁ, ସହି ହେଲା ନାହିଁ । ନିର୍ମଳା ଦେବୀ ପ୍ରଚଣ୍ଡ ବେଗରେ ସ୍ୱାମୀଙ୍କୁ ପାଖରୁ ଠେଲି ଦେଲେ । ପୁନର୍ଜୀବିତ ଓ ଦ୍ୱିଗୁଣ ଉଗ୍ରତାରେ କହିଲେ—

"ଛିକିଏ ଲାଜ ନାହିଁ ତମକୁ ? ଏଠିକି ଆସିବାକୁ କିଏ କହିଲା ?"

## ଦୁଇ

ଏହାର ପ୍ରାୟ ଦଶଦିନ ପରେ ।

ସକାଳୁ ବର୍ଷା ହୋଇ ଛାଡ଼ିଯାଇଛି । ଅଗଣା ଓଦା ହୋଇ ରହିଛି । ନିର୍ମଳା ଦେବୀ ଉପର ଘର ପାରାପେଟ୍ ଉପରୁ ତଳକୁ ଚାହିଁଛନ୍ତି । ଏବଂ ତାଙ୍କ ମନରେ ଆସୁଛି ଯେ ଏ ଗୋଡ଼ମାଟିର ଅଗଣା ନିଦା ଓ ହବୁଦିନିଆ । ଏଂକୋଟାର କାନ୍ଥ, ଶହିର, ପାଚେରୀ, ପାରାପେଟ୍ , ସିନ୍ଦୁକ, ଲମ୍ବା ଆଲମାରୀ, ଶାଧୂଆ କୁଣ୍ଡ, ଗହଣିଆ ନଳା, ଫାଟ । ଫୁଲକୁଣ୍ଡ ଅନ୍ଧାରୁଆ ଚଢ଼େଇ ଖୋପ, ନୂଆ ବାର୍ନିସ୍, ନୂଆ ରେଡ଼ିଓ-ଗ୍ରାମ୍—ଏସବୁ ହେଉଛି ଅବିଚଳିତ ପୃଥିବୀର ଛାଣ ଓ ଶବ । ମୁଁ ନୁହେଁ, ମୋ ପୁଅ ନୁହେଁ ।

ପୁଅ ମରିବାର କେତେ ଦିନ ହେଲାଣି । ଦିଶଦିନ, ପନ୍ଦର ଦିନ ନା ବର୍ଷେ ?

ମୁଁ ଆଗ ପର ବାରୁ ନାହିଁ, କାନ୍ଦୁ ନାହିଁ । ହୁଏତ ଆଉ କିଛିଦିନ ଗଲେ ମୁଁ ହସି ହସି ତାସ ଖେଳିବି, ନୂଆ ଶାଢ଼ୀ ପିନ୍ଧି ଫୁଟିଲେଇ ହେବି, ଖୋଲି ହାପୁଡ଼ି ଗପ ଯୋଡ଼ିବି । ହଁ, କେବେ କେମିତି ମୋର ପୁଅ ମନେ ପଡ଼ିବ, ନିଷ୍ଟସ୍ଥ ମନେ

ପଡ଼ିବ । କିନ୍ତୁ ମୁଁ ବକଲ ହୋଇ କାନ୍ଦିବ ନାହିଁ । ମୋ ଆଖି କୋଣରେ ସ୍ମୃତିର ସୁନ୍ଦର ଲୁହ ଢଳ ଢଳ ହେବ । ମୋ ପୁଅ ଥିଲା !

ନା—ନା—। ମୁଁ ସେମିତି ହେବ ନାହିଁ । ମୁଁ ରେଡ଼ିଓଗ୍ରାମର କଭର୍ ଉଠାଇ କରିବ ନାହିଁ । ମୁଁ ଆଜି ମାଂସ ତରକାରି ରାନ୍ଧିବ ନାହିଁ । ମୁଁ କୁଆଡ଼େ ଭଲ ସିଟିଲେଇ କରିପାରେ, ଭଲ ରାନ୍ଧିପାରେ । ଥାଉ, ମୋର ଦରକାର ନାହିଁ । ମୋତେ ଆଉ କିଛିଏ ସମୟ ଦିଅ, ମୁଁ ନେଷ୍ଟୁର ହେଉଚି । ମୁଁ ଜାଣେ ମୁଁ ତାକୁ ଭୁଲିଯାଉଚି, ଭୁଲିଯିବି । ମୋତେ ସୁଅ ଟାଣି ନେଉଚି, ପବନ ଉଡ଼ାଇ ନେଉଚି । କିନ୍ତୁ ତୁମେ ସବୁ ମୋତେ ଠେଲିଦିଅ ନାହିଁ । ଦୟା କର ।

"ବଲୁ ଲେ—ଓ ! ବଲୁ—ଉ !"

ଶାଶୁ ଶରଧାରେ ଡାକୁଛନ୍ତି । ମାଂସ ତରକାରି ପାଇଁ ମସଲା ବଟା ହୋଇଗଲାଣି, ରାନ୍ଧିବା ପାଇଁ ଡାକରା ପଡ଼ିଚି । କିମ୍ବା ଶ୍ୱଶୁରଙ୍କ ପାଇଁ ହରଦଉ । ପୁଣି କାମ କଲା ଭିତରେ ସେ ମୋ ପାଟିରେ ରସଗୋଲା ଗେଞ୍ଜିବେ, ମନା କଲେ ହଜାର ଥର ସ୍ୱର ପକାଇବେ । ହେଲେ ତାଙ୍କର କଣ ସବୁ ଦୋଷ ? ମୋତେ କ'ଣ ରସଗୋଲା ମିଠା ଲାଗୁନାହିଁ ? ଖୁଆଇ ହେବାକୁ ଭଲ ଲାଗୁ ନାହିଁ ?

'ଯା—ଉ—ଚି' କହି ନିର୍ମଳା ଦେବୀ ସିଡ଼ିମୁହଁକୁ ଗଲେ ଓ କାନ୍ଥକୁ ଲାଗି ଲାଗି ହୋଇ ଧୀରେ ଧୀରେ ପାହାଚ ଓହ୍ଲାଇଲେ । ସେପରିକି ସେ ନିଜକୁ ଜଣାଉଥିଲେ ଯେ ଏ ଦ୍ୱିଧା ଓ କୁଣ୍ଠାର ଗତି । ଦୁଃଖ ସହେଯାଇ ନାହିଁ ।

ତଳ ପାହାଚରେ ପହଞ୍ଚିଲା ବେଳକୁ ସେ ଦେଖିଲେ ସୁରପାଞ୍ଚ ହଳ ଚଟି ଓ ଦୋତା ପିଣ୍ଡାର ଗୋଟିଏ କୋଣରେ ଥୁଆ ହୋଇଚି । ସେଥିମଧ୍ୟରୁ ହଳେ ଜରାଜୀର୍ଣ୍ଣ ଧୂସର-ମାଟିଆ ଜୋତା ଫୁଟି ଉଠୁଚି । ତାଙ୍କର ବୁଝିବାକୁ ବାକି ରହିଲା ନାହିଁ ଯେ ମଝିଘରେ ପରିବାମାନଙ୍କର ସଭା ବସିଚି ଏବଂ କ୍ରେଷ୍ଟାଂଶରେ ଅଛନ୍ତି ଡାକ୍ତର ଗୋବର୍ଦ୍ଧନ ବାବୁ,—ସେହି ସୁଦୁର୍ଗମ ଜୋତାର ଅଧିକାରୀ, ପରିବାରର ପୁରୁଣା ଓ ପୁରୁଖା ଡାକ୍ତର ଶୁଭାକାଙ୍କ୍ଷୀ, ଶ୍ୱଶୁରଙ୍କର ଡାହାଣ ହାତ ।

ଶାଶୁ ପାଖକୁ ଡାକି କହିଲେ, 'ଦି'ଖଣ୍ଡ ପାନ ଭାଙ୍ଗି ଦେବୁଟି । ବଡ଼ଦାଦାଙ୍କର ଅଧିକା ଦୁଇଖଣ୍ଡ, ସାଦା ଅଖରିଆ,—ଜାଣିଚୁ ତ ?···ଆଉ ତୋତେ ଏତେ କରି କହିଲି ଯେ କାଲିଠୁ ଖୀର ଥୁଆ ହୋଇଚି— ।"

ନିର୍ମଳା ଦେବୀ ଉତ୍ତର ନ ଦେଇ ପାନ ଭାଙ୍ଗି ବସିଲେ । ବସିବା ଜାଗାରୁ ମଝିଘରର କଥା ଶୁଣାଯାଉଥିଲା ଏବଂ ଗୋବର୍ଦ୍ଧନ ବାବୁଙ୍କ ହାଡ଼ୁଆ ଶୁକ୍ଳକେଶ-ମଣ୍ଡିତ ମୁହଁର ଫାଳେ ଦେଖାଯାଉଥିଲା ।

ଗୋବର୍ଦ୍ଧନ ବାବୁ ଛୁଟିଣେଇ ଦେଲା ପରେ କହୁଥାଆନ୍ତି, "ବୁଝିଲ ଦାଶରଥି ବାବୁ। ଡାକ୍ତର ବଇଦ ବାପମାଆ ଜେଜେବାପା ଜେଜେମାଆ ଏମାନେ ସମସ୍ତେ ଗୋଟାଏ ଆଡ଼େ, ନିଜଘରେ ଭରସା ବି' ହେବେ ନାହିଁ, ଆଉ ସେପାଖରେ ଭାଗ୍ୟ।' ତୁମେ ଦେଠି ଅଛ, ଏହି ଭାବରେ ସେ ସସମ୍ମାନରେ ହାତ ଉପରକୁ କଲେ ଓ ଭାଗ୍ୟର ଦିଗ ଦର୍ଶାଇଲେ। 'ଏ ଟୋକାଟା ପାଇଁ କଣ ଚେଷ୍ଟା କଲି ନ ହେଲା ? ଦୁଇଅଣା ଆଶା ଥିବା ଯାଏଁ ମୁଁ ତମକୁ ଦମ୍ଭ ଦେଉଥିଲି, କିନ୍ତୁ ତା' ପରେ ଦେଖିଲି ସେ ସେ ଆମ ହାତର ବାହାରେ। ସେ ବାଟକାଟି ଗ୍ଲଲିଯିବ, ଆମେ ଅଟକେଇ ପାରିବା ନାହିଁ। ତମର ମନେ ଅଛି ? ସେଦିନ ସଞ୍ଜବେଳେ, ତା' ମରିବାର ସାତ ଆଠଦିନ ଆଗରୁ, ମୁଁ ତମକୁ କଣ କହିକରି ଗଲି ?...'

କେଉଁଦିନ ସଞ୍ଜବେଳେ ? ମୋତେ କାହିଁକି କେହି କହିଲେ ନାହିଁ ? ବିଜୁ ବଞ୍ଚିବ। ତାର ଶେଷ ନିଶ୍ୱାସ ଯାଏଁ ତମେ ସମସ୍ତେ ମୋତେ ଦେହି ଆଶା ଦେଇ ଆସୁଥିଲ। ତମେ ନିଜେ ଗୋବର୍ଦ୍ଧନ ବାବୁ, ତମେ ଶେଷଦିନ ତା' ମୁଣ୍ଡରେ ହାତ ରଖି କହିଲ,—ଭଗବାନ୍ ଅଛନ୍ତି। କାହିଁକି ସ୍ପଷ୍ଟକରି କହିଲ ନାହିଁ ଯେ ଭଗବାନ୍ ଅଛନ୍ତି, କିନ୍ତୁ ମୋ ପୁଅ ରହିବ ନାହିଁ ?...ପାନ ଭାଙ୍ଗୁ ଭାଙ୍ଗୁ ନିର୍ମଳା ଦେବୀ ଗୋବର୍ଦ୍ଧନ ବାବୁଙ୍କର ସେହି ଅବିନାଶୀ ଆଦିମ ମୁଣ୍ଡକୁ ଗ୍ଲହିଁଲେ ଓ ଭାବିଲେ ଯେ ବିଜୁ ତାଙ୍କୁ ମୋଟେ ଭଲ ପାଉ ନ ଥିଲା।

'ମୋ ଶାଳୀ ସୁବର୍ଣ୍ଣ। ତା ଝିଅର କଣ ହେଲା ଜାଣିଛ !' ବଟଦାଦା ଆରମ୍ଭ କଲେ, "କେଡ଼େ ସୁନ୍ଦର ତଉଲ ଡାଉଲ ଝିଅ, ଦେଖିଲେ ପେଟ ପୂରିଯିବ। ସକାଳୁ କହିଲା ଯେ ତା' ପେଟ ଟିକିଏ ଟାଣୁଚି, ସଞ୍ଜ ବେଳକୁ ଶେଷ।"...

ଓଃ,—ଏ କଅଣ ଇତିହାସର ଗପ ? ମୋ ପୁଅର ମରିବା କଣ ଏତେ ପୁରୁଣା ହୋଇଗଲାଣି ଯେ ଏମାନେ ଏ ସବୁ କଥା ମୋ ଆଗରେ ଗପିବେ ? ଏମାନଙ୍କର ବୁଦ୍ଧି ବିଗ୍ଭର ଦୟାମାୟା, କିଛି ହେଲେ ନାହିଁ ?

ତାଲିକା ଶେଷ ହୋଇ ନାହିଁ। ସେମାନେ ସବୁ ମୃତ ସନ୍ତାନମାନଙ୍କୁ ଡାକିହାକି ନିଜ ବଡ଼ପଣରେ କରୁଣା ଓ ଆଶୀର୍ବାଦ ଦେବାକୁ ସ୍ଥିର କରିଛନ୍ତି। ଏଥର ନିଜେ ଶଶୁର ଦାଶରଥି ବାବୁ କଣ କହିବାକୁ ଯାଉଛନ୍ତି। ତାଙ୍କ ଗମ୍ଭୀର କଣ୍ଠର ସ୍ୱର ଶୁଣାଯାଉଚି। ନିର୍ମଳା ଦେବୀ କାନ ଡେରିଲେ।

'...ମୋର ବାପାଙ୍କର ଜଣେ ବଡ଼ଭାଇ ଥିଲେ। ସେ କୁଆଡ଼େ ଛନିମାହିର ନ ହେଉଣୁ ମରିଯାଇଥିଲେ। ପିଲାଦିନେ କାହାଣୀ କହିଲା ବେଳେ ମୋ ଜେଜେମା କେତେବେଳେ କେମିତି ତାଙ୍କ କଥା ପକାଏ। ଆଉ ତମେ ଆଶ୍ଚର୍ଯ୍ୟ ହେବ ଯେ

ସେଇଡବେଳେ ତା' ଆଖି ଛଳ ଛଳ ହୋଇଯାଏ । ସତେ ଯେପରି ଦୀ ଦିନ ତଳର କଥା । ···ମାଆର ମନ ଅପୂର୍ବ । ଯାହାକୁ ସେ ଜନ୍ମ କରିଚି, ଦଶମାସ ପେଟରେ ରଖିଚି, କୋଳଂର କାଖରେ ମଣିଷ କରିଚି ତାକୁ ସେ ଭୁଲିପାରେ ନାହିଁ । ବଞ୍ଚିଥିବା ଯାଏଁ ଭୁଲିପାରେ ନାହିଁ ।"

ଦାଶରଥିବାବୁ ନୀରବ ହେଲେ ଓ ଅନ୍ୟମାନେ 'ତା ଠିକ୍' 'ତା ଠିକ୍' ବୋଲି କହିଲେ ।

ନିର୍ମଳା ଦେବୀ କିଞ୍ଚିତ୍ ଅଶ୍ୱସ୍ତ ହେଲେ । ସେ ଶଶୁରଙ୍କୁ ଦେଖିପାରୁ ନ ଥିଲେ, କିନ୍ତୁ ଅନୁମାନ କଲେ ଯେ ତାଙ୍କର ଉଦାର ମାଂସଳବୃଦ୍ଧ ମୁହଁରେ ମାତୃହୃଦର ବ୍ୟଥା ଆଶ୍ରା ନେଇଚି । ସେ ଅନ୍ୟମାନଙ୍କ ପରି ନୁହନ୍ତି । ସେ ବୁଝି ପାରୁଛନ୍ତି ।

କିନ୍ତୁ ଏହି ସମୟରେ ଡାକ୍ତର ଗୋବର୍ଦ୍ଧନ ବାବୁଙ୍କୁ କହିବାକୁ ହେଲା, ଏବଂ ସେ କହିଲେ, "ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ । ତାଙ୍କ ଇଚ୍ଛା ବୁଝିବ କିଏ ? ତେବେ ସେ ଗୋଟିଏ ହାତରେ ନେଇଗଲେ ଆର ହାତରେ ଦେଇପାରନ୍ତି । ଅକାଳରେ ଫଳଟିକୁ ଛଡ଼ାଇ ଓଟାରି ନେଲେ ଶୀଘ୍ର ଆଉ ଗୋଟିକୁ ଫୁଟି ଦିଅନ୍ତି । ଏଇ ହେଉଚି ବାଇଓଲଜି, ସୃଷ୍ଟିର ନିୟମ । ···ମୁଁ ଲେଖି ଦେଉଚି ଯେ ବର୍ଷେ ନ ପୂରୁଣୁ ବଗୁର ନମ୍ବର ଅଉ ଗୋଟିଏ ପିଲା ହେବ । ଦାଶରଥିବାବୁ ପୁଣି ନାତି କିମ୍ବା ନାତୁଣୀର ମୁହଁ ଦେଖିବେ । ବୁଢ଼ାଙ୍କ ପରମାୟୁ ଅନ୍ତତଃ ଦଶବର୍ଷ ବଢ଼ିଯିବ ।"

ନିର୍ମଳା ଦେବୀ ଅପ୍‌କିଅ ରହିଗଲେ । ଏହି ଭର୍ତ୍ସନା, ଏହି ଭୀମଗଦାର ପ୍ରହାର ପରେ ସ୍ଫୁରଣ, ଆଲୋଡ଼ନ, ଆନ୍ଦୋଳନ କିଛି ସମ୍ଭବ ନୁହେଁ । ଜୀବନର ଫଲ୍‌ଗୁ ହଠାତ୍ ଶୁଖିଗଲା, ଭୟରେ ଶୁଖିଗଲା ।

ସେ ଏମିତି କାହିଁକି କହିଲେ ?

ଚରମ ନିଷ୍ଠୁରତା । କିନ୍ତୁ ଏ ନିଷ୍ଠୁରତା କେବଳ ଡାକ୍ତର ଗୋବର୍ଦ୍ଧନ ବାବୁଙ୍କର ନୁହେଁ । ନିର୍ମଳା ଦେବୀଙ୍କର ମନେ ହେଲା ଯେ ଦୟାବାନ୍ ଶ୍ୱଶୁରଙ୍କ ମୁହଁରେ ପ୍ରସନ୍ନତା ଆଙ୍କି ହୋଇଯାଇଛି । ସେ ଗୋବର୍ଦ୍ଧନ ବାବୁ ଓ ବାଇଓଲଜିକୁ ପସନ୍ଦ କରୁଛନ୍ତି । ବଟଦାଦା ଧାନ ଗ୍ରେବାଇ ଗ୍ରେବାଇ ଆନନ୍ଦରେ ପୁଣି ଗୋଟିଏ ଉଦାହରଣ ଦେବାକୁ ବସିଲେଣି । ଆଉ ଜଣେ କିଏ ଅଛନ୍ତି, ଆଉ ଜଣେ ବରିଷ୍ଠ ଗୁରୁଜନ, ସେ ମଧ୍ୟ ଉପଦେଶ କରୁଥିବେ । ପ୍ରବୀଣମାନେ, ଜନ୍‌ମାନେ ଏକାଠି ଅମୂଲ୍ୟ ରାୟ ଦେଇଛନ୍ତି, ଓ ରାୟ ଦେଇସାରି ଓଠ ଘୁଟୁଛନ୍ତି । ସୃଷ୍ଟି, ବାଇଓଲଜି, ନିଆଁ, ଚୂଲି !

ଭଙ୍ଗାପାନ ଥାଳିଆରେ ୍ନ ଜାଡ଼ି ସେମାନଙ୍କ ପାଖକୁ ଯିବାକୁ ପଡ଼ିଲା । ଆନତ ଦୃଷ୍ଟି ରେ ସେ ସେମାନଙ୍କୁ ଦେଖିଲେ ଓ ନିଜର ଅନୁମାନ ସତ ପରିଲାଗିଲା । ସେମାନେ କୈଳାଶରେ ବସିଛନ୍ତି, ଗୋଟି ଗୋଟି ହୋଇ । ମୁଁ ଜଣେ ସାମାନ୍ୟ ନର୍ତ୍ତକୀ ସ୍ୱଧର୍ମ ପାଳନ କରି ସେମାନଙ୍କୁ ଖୁସି କରୁଚି ।

ନିର୍ମଳା ଦେବୀ ରହି ପାରିଲେ ନାହିଁ । ସ୍ନାନଘରର ଲଜ୍ଜା ମାଡ଼ି ବସୁଚି, ରହିବାକୁ ଦେଉ ନାହିଁ । ଯେପରିକି ସେହି ଦାରୁଣ ବରଅଭିଶାପ ପାଇଲା ପରେ ସେ ଅନ୍ତଃସତ୍ତ୍ୱା ହୋଇଗଲେଣି । ଏହିକ୍ଷଣି ଭାରୀ ପେଟରେ ସେମାନଙ୍କ ସାମ୍ନାରେ ସିଡ଼ି ମଝିରେ ଯିବାକୁ ପଡ଼ୁଚି ।

ଭଗବାନ୍ ! ଗୋଟିଏ ଖେଳଣା ପରେ ଆଉ ଗୋଟିଏ ଖେଳଣା । ଗୋଟିଏ ଫଳ ପରେ ଗୋଟିଏ ଫଳ । ମୁଁ ପିଲା ନୁହେଁ, ପ୍ରକୃତିର ଗଛ ନୁହେଁ ! ମୁଁ ଜଣେ ମଣିଷ !

କିନ୍ତୁ କିଏ ଶୁଣୁଚି ? ସେପେଇ ଘରକୁ ଉପେକ୍ଷା କରି, ଶାଶୁଙ୍କୁ 'ମୁଁ ଟିକିଏ ଆସୁଚି' ବୋଲି କହି ଚାଲିଗଲା ବେଳକୁ ସେ ଦେଖିଲେ ଯେ ସ୍ନେହମୟୀ ଶାଶୁ ମଧ୍ୟ ତାଙ୍କ ଆଡ଼କୁ ଅଧିକ ସ୍ନେହରେ ଚାହୁଁଛନ୍ତି, ବୋଧହୁଏ ଆସନ୍ତା 'ଫଳ'ର ସ୍ୱପ୍ନ ଦେଖୁଚନ୍ତି ।

ଉପରମହଲକୁ ଯିବାର ଅଧାବାଟରେ ସିଡ଼ିର ମଝିରେ ସେ ଅଟକି ଗଲେ ଓ ଧଇଁସଇଁ ହେଲେ । ଭାବିଲେ ଯେ ସେ କାହାକୁ ହେଲେ କହିବେ । କହିବେ ଯେ ସେ ମଣିଷ ।

ଉମେଶ ବାବୁ କୋଟ୍ ପ୍ୟାଣ୍ଟ ପିନ୍ଧି ତଳକୁ ଓହ୍ଲାଇ ଆସୁଥିଲେ, ଖାଇସାରି ଅଫିସକୁ ଯିବେ । ନିର୍ମଳା ଦେବୀ ତାଙ୍କୁ ଦେଖି ଭାବିଲେ ଯେ ସେ ତାଙ୍କୁହିଁ ଖୋଜୁଥିଲେ । କାରଣ ସେ ସମଦୁଃଖୀ, ଦୟାମୟ । ସ୍ୱାନ ଓ ତରୁଣ, ପ୍ରକୃତିର ହାତବାରିସି ।—କିନ୍ତୁ ମୁଁ ତାଙ୍କୁ ସାହସ ଦେବି, ଆମେ ଦୁହେଁ ଜବାବ୍ ଦେବା ଯେ ସେମାନେ ଭୁଲ କହୁଛନ୍ତି, ସେମାନେ ଜାଣନ୍ତି ନାହିଁ । ସେ ଆତୁର ପାହାଚେ ଉପରକୁ ଗଲେ । ଉଦ୍‌ବିଗ୍ନ ଉଦ୍‌ଗ୍ରୀବ ହେଲେ ।

ନିମିଷକରେ ତାଙ୍କ ମନରେ ଆସିଲା ଯେ 'ସେ' ରୁଷିଛନ୍ତି, ସେଥିପାଇଁ ହାତ ବଢ଼ାଉ ନାହାନ୍ତି, ଚାହାଣୀ ମିଳାଉ ନାହାନ୍ତି । ମୁଁ ତାଙ୍କ ପ୍ରତି ଅନ୍ୟାୟ କରିଚି, ତାଙ୍କୁ ଫେରାଇ ଦେଇଚି । ଅଯଥାରେ ଫେରାଇ ଦେଇଚି । ପହିଲି କେତେଦିନ ସେ ପାଖରେ ଅଛନ୍ତି ବୋଲି ମୁଁ ଜାଣିପାରି ନାହିଁ । ଯେବେ ଜାଣିଲି ମୁଁ ଅଲଗା

ଦୋଇଗଲ, ସେ କଣ କହିବାକୁ ଆସିଥିଲେ ନ ଶୁଣି ପାଖରୁ ଚାଲି ଦେଲ । ସେଦିନଠାରୁ ସେ କଅଣ ମନେ ମନେ ରାଗିଛନ୍ତି ? ହୃଦୟରେ ରାଗିଛନ୍ତି ?

ନିର୍ମଳା ଦେବୀ କହିବାକୁ ଚାହିଁଲେ,—ଆମେ ଦୁହେଁ ଅସହାୟ । କେହି କାହା ଉପରେ ରାଗିବା ଉଚିତ ନୁହେଁ । ଏବଂ ସେ ଅଧିକତର ସନ୍ତୁଷ୍ଟ ହୋଇ ଉଠିଲେ ।

ସ୍ତ୍ରୀଙ୍କର ବାର୍ତ୍ତା ଯେ ଉମେଶବାବୁଙ୍କ ପାଖରେ ନ ପହଞ୍ଚିଲ ନୁହେଁ । କିନ୍ତୁ ସେ ଅପେକ୍ଷା କଲେ । ନିଜକୁ ଚେତାଇ ଦେଲେ ଯେ ଏ ପୂର୍ବର ନିମୁ ନୁହେଁ ଏଥି ମଧ୍ୟରେ ଅନେକ କିଛି ଘଟି ଯାଇଚି । ସେ ଆଡ଼େଇ ହୋଇ ଧୀର ସାବଧାନ ଗତିରେ ଆଗେଇଲେ ।

ଯେଉଁଠି ସିଡ଼ିକାନ୍ଥରେ ଝରକା ଲଗିଛି ଓ ଝରକାରୁ ହାତର ବଡ଼ ଫାଟକ ଦେଖାଯାଏ, ସେଇଠି ସେମାନେ ମୁହାଁମୁହିଁ ହେଲେ । ସେଇଠି ଖୋଲା ସଡ଼କରେ ଆଲୁଅ ଓ ଆଲୁଅରେ ଉଦ୍ଭାସିତ ବାଳଗଦା, ବନ୍ଧା ହୋଇଥିବା କୁକୁର, ଭ୍ରାମ୍ୟମାଣ ମୂଲିଆ ଇତ୍ୟାଦିଙ୍କୁ ଭ୍ରୂକ୍ଷେପ ନ କରି ନିର୍ମଳା ଦେବୀ ସ୍ୱାମୀଙ୍କ ଉପରେ ଝାସ ଦେଲେ, ତାଙ୍କୁ ଜାବୁଡ଼ି ଧରିଲେ ଓ କହିଲେ, "ମୁଁ ଏଠି ରହିପାରିବି ନାହିଁ । ମୋତେ ଛାଡ଼ି ଦିଅ ।"

ଉମେଶବାବୁ ଶଙ୍କିତ ହୋଇ ସ୍ତ୍ରୀଙ୍କ ମୁହଁକୁ ଟେକି ଧରିଲେ ଓ ପଚାରିବାକୁ ଯାଉଥିଲେ,—କଣ ହେଲ ? କାହିଁକି ? କିନ୍ତୁ ତା' ଆଗରୁ ନିର୍ମଳା ଦେବୀ ଅଙ୍ଗ ଅଙ୍ଗ ହୋଇ କହିଲେ, "ତୁମେ ସତ କୁହ । କୁହ ଯେ ତୁମେ ଆଉ ପିଲା ଚାହୁଁ ନାହିଁ । ସତ କୁହ, ତୁମକୁ ମୋ ରାଣ ।"

ଏହି ଅଧୀର ପ୍ରଶ୍ନରେ ଅର୍ଥ ନାହିଁ, ଆବେଗ ଅଛି । ଏବଂ ଉତ୍ତର ଅତି ସହଜ । ଉମେଶବାବୁ ପ୍ରୀତିଭରା କଣ୍ଠରେ ସ୍ତ୍ରୀଙ୍କ ମୁଣ୍ଡ ଉପରେ ଚିବୁକ ରଖି କହିଲେ, "ମୁଁ ପିଲା ଚାହେଁ ନାହିଁ କିଛି ଚାହେଁ ନାହିଁ । ମୁଁ ତୁମକୁଇ ଚାହେଁ ।"

···ଆଖି ଖୋଲିଲ ବେଳକୁ ନିର୍ମଳା ଦେବୀ ଦେଖିଲେ ଯେ ଫାଟକ ପାଖରେ ଡାକ୍ତର ଗୋବର୍ଦ୍ଧନବାବୁ ଓଗେର ବିଦାୟ ନେଉଛନ୍ତି ।·ଗୋବର୍ଦ୍ଧନ ବାବୁ ଛତା ମେଲୁଛନ୍ତି । ସେମାନଙ୍କୁ ଦେଖି ପୁଣି ନିଜକୁ ସାନ ଲଗିଲ, କିନ୍ତୁ ମନେ ହେଲ ଯେ ଏହି ସାନପଣରେ ମାଧୁରୀ ଅଛି—ଭଅଁର ପରି, ପ୍ରଜାପତି ପରି, ନାଲିମାଛ ପରି ।

## ତିନି

ସେହି ଦିନ ରାତ୍ରି ଉତ୍ସବର ନ ହେଉଣୁ ଦୁହେଁ ଯୋଡ଼ି ଖଟରେ ଏକାଠି ହେଲେ ଓ ପରସ୍ପରକୁ ଗ୍ରହିବାର ପ୍ରମାଣ ଦେଲେ । ଦେହ ମନର ପ୍ରତିଟି ଅଂଶକୁ ନେଇ ମିଳନ ପରିପୂର୍ଣ୍ଣ ହେଲା ।

ତେବେ ସମାପ୍ତିର କିଛି ସମୟ ପରେ ଗୋଟିଏ ଅଛିଣ୍ଡା ଶେଷ କଥା ନିର୍ମଳା ଦେବୀଙ୍କ ମନକୁ ଆସିଲା, ଓ ସେ ଜାଣିବା ପାଇଁ ବ୍ୟସ୍ତ ହେଲେ :

ସେମାନେ ମୋ ପୁଅକୁ ପୋଡ଼ି ଦେଲେ ନା ପୋତି ଦେଲେ ? ତା'ର ଗ୍ରେଟିଆ ଜାମାର ଛାତିପକେଟ୍‌ରେ ଗୋଟିଏ ଲଜେନସ୍ ଥିଲା । ଦରଚୁଚୁମ ଲଜେନସ୍, ପକେଟ୍‌ର କୋଣରେ ଲାଗି ଯାଇଥିବ—

ସେ ସ୍ୱାମୀଙ୍କୁ ପଚାରିବାକୁ ଯାଇ ଦେଖିଲେ ଯେ ସେ ନିଦରେ ଶୋଇ ଯାଇଛନ୍ତି ।



# ମଣିହରା

ମୋର ଚତୁର୍ଥ ଗଳ୍ପ ସଙ୍କଳନ 'ମଣିହରା' ୧୯୭୦ ରେ ପ୍ରକାଶିତ ହୁଏ । ଏହାକୁ ନେଇ ଦଶଟି ଗଳ୍ପର ସମାହାର । ଓଡ଼ିଶା ସାହିତ୍ୟ ଏକାଡ଼େମୀ '୧୬୯ ଠାରୁ '୭୩ ମଧ୍ୟରେ ପ୍ରକାଶିତ ହୋଇଥିବା ସମସ୍ତ ଓଡ଼ିଆ ବହିମାନଙ୍କ ମଧ୍ୟରେ ଏହି ବହିଟିକୁ ଗଦ୍ୟ ସାହିତ୍ୟରେ ସର୍ବୋତ୍କୃଷ୍ଟ ବୋଲି ନିର୍ଣ୍ଣୟ କରି ଲେଖକଙ୍କୁ ପୁରସ୍କୃତ କରିଛନ୍ତି ।

'ମଣିହରା' ଗପ ବିଷୟରେ କଣ କହିବି ? କହିବାକୁ ଗଲାକ୍ଷଣି ମୋର ମନେ ହୁଏ ଯେ ନିର୍ମଳା ଦେବୀ ପାଖରେ ଆସି ଛିଡ଼ା ହୋଇଛନ୍ତି, ଏବଂ ତାଙ୍କର ଇଣ୍ଟେଲେକ୍‌ଚୁଆଲ୍ ସ୍ୱାମୀ କିଭଳି ନିଷ୍ଠୁର ହୋଇ ପାରନ୍ତି, ତା'ର ପ୍ରମାଣ ମୋରି ହାତରେ ଧରେଇ ଦେଉଛନ୍ତି । ଜଣାଇ ଦେଉଛନ୍ତି ଯେ ବାପର ସ୍ନେହ-ମମତା ବି' ଇଣ୍ଟେଲେକ୍‌ଚୁଆଲ୍, ତେଣୁ ଅସାର । ସେଥିରେ କୋହ ନାହିଁ, ଖାଲି ଗୋଟାଏ ପୋଷାକି ଦୁଃଖ । ଗଳ୍ପର ଗୋପନୀୟତା ନାହିଁ, ଅଛି ଗୋଟାଏ କାଳ୍ପନିକ ଟ୍ରାଜେଡ଼ିର ବଡ଼ପଣ, ଯାହା ସର୍ବସାଧାରଣଙ୍କୁ ନ ଦେଖେଇଲେ ତାଙ୍କର ପେଟ ପୂରିବ ନାହିଁ । ନହେଲେ ତାଙ୍କର କେମିତି ସତ ବଳିଲା ଏମିତି ଗୋଟିଏ ଗପ ଲେଖିବା ପାଇଁ ? ଲେଖିଲେ ତ ଲେଖିଲେ, ତା'କୁ ନିଜର (ଆମର) କରି ରଖି ପାରିଲେ ନାହିଁ, ଛପେଇବା ପାଇଁ ଦେଇ ଦେଲେ ? ସତେ କି ସେ ବାପଠାରୁ ବଳି ବୁଝିଦେବ, କହୁଛନ୍ତି ଯେ ସବୁ ପୁଅ ସମାନ, ସବୁ ମାଆ ସମାନ, ଏମିତି ହୁଏ, ହାୟ ଏମିତି ହୁଏ, କିନ୍ତୁ ସୃଷ୍ଟି ଗୁଳିଥିବ ତା' ବାଟରେ··· ନନ୍‌ସେନ୍‌ସ !

ହଁ, ମୋର ଆଠମାସର ପୁଅ ଚାଲିଗଲା ପରେ ମୁଁ ଯେଉଁ ଅନୁଭୂତି ଭିତର ଦେଇ ଯାଇଥିଲି, ଏ ତା'ର ରୂପାୟନ, ଏବଂ ମୋତେ ମାନିବାକୁ ପଡ଼ୁଛି ଯେ ମୋ ଦୁଃଖ ତା' ମା'ର କୋହ-କ୍ରୋଧର ପାସଙ୍ଗରେ ପଡ଼ିବ ନାହିଁ । କିନ୍ତୁ ମୁଁ କଣ ସତେ ନିଷ୍ଠୁର ? ଆମେରିକାର ବିଶିଷ୍ଟ ଲେଖକ ଟ୍ରୁମାନ୍ କାପୋଟ୍ କହିଛନ୍ତି ପରା—ନିଜେ କାନ୍ଦି କାନ୍ଦି ଲୁହଯାକ ପୁରାପୁରି ଶୁଖେଇ ଦେଲା ପରେ ଯାଇଁ ଲେଖ, ତା'ହେଲେ ସିନା ଆଉ କାହାକୁ କନ୍ଦେଇ ପାରିବ ! ତେଣୁ ଏଇ ଗପକୁ ପଢ଼ିଲା ପରେ ମୋର ଅନେକ ବନ୍ଧୁ ଯେତେବେଳେ କହନ୍ତି ଯେ ସେ ତାଙ୍କ ଆଖିର ଲୁହକୁ ଧରି ରଖି ପାରିଲେ ନାହିଁ, ସେଇ ସଫଳତାର ପଛରେ ମୋର ସରିଯାଇଥିବା ଶୁଖିଯାଇଥିବା ଲୁହ-ଦରିଆର ଅବଦାନ ଅଛି ବୋଲି କହିଲେ କଣ ଭୁଲ୍ ହେବ ? ହେଲେ ନିର୍ମଳା ଦେବୀ ମାନିବେ ନାହିଁ, ତିକ୍ତ ହସଟିଏ ହସିବେ । କହିବେ ଯେ ଜୀବିତ ଅବା ମୃତ ପୁଅ ଠାରୁ ମୁଁ ମୋର ସର୍ଜନାଙ୍କୁ ବେଶୀ ଭଲପାଏ, ସେଥିପାଇଁ ଯେଉଁ ଟିକିଏ ଲୁହ ଥିଲା କି ନଥିଲା ମୋ ଆଖିରେ, ତା'କୁ ନ ଶୁଖେଇବା ଯାଏଁ ମୋର ତର ସହିଲା ନାହିଁ, ଇତ୍ୟାଦି । କାହାର ସାଧ୍ୟ ଅଛି ତାଙ୍କୁ ବୁଝେଇ ପାରିବ ?

ହେଉ । ତେବେ ମୁଁ ସବିନୟରେ ଏତିକି କହିବି ଯେ ମୁଁ ଯେତେ ନିଷ୍ଠୁର ହୁଏ ନା କାହିଁକି ଓ ତମେ ଯେତେ ରାଗ ପଛକେ, ନିଷ୍ଠୁର ସତ୍ୟ ହେଉଛି ଯେ, ଯେ କୌଣସି ମୃତ୍ୟୁଠାରୁ ଆପଣା ଜୀବନ ଅଧିକ ମୂଲ୍ୟବାନ୍ । ତେଣୁ ତମେ ବଜୁର ମୃତ୍ୟୁକୁ ବଞ୍ଚେଇ ରଖି ପାରି ନ ଥାଅନ୍ତ । ଯାହା ବଞ୍ଚି ରହିଛି ଏବଂ ବଞ୍ଚି ରହିବା ଉଚିତ, ତାହା କେବଳ ସ୍ମୃତି, ଜିକି ଜିକି ଅଶ୍ରୁକଣା, କୋହ ଲୁହେଁ । ବଜୁର ମୃତ୍ୟୁ ଜଳପୋଡ଼ି ଅବା ପୋତି ହୋଇ ଯିବାକୁ ବାଧ୍ୟ, ତା' ପକେଟ୍‌ରେ ଦରଚୁଚୁମା ଲଜେନ୍ସ ଥାଉ ବା ନ ଥାଉ । ମୋତେ ଦୋଷ ଦିଅ ନାହିଁ, ଦୋଷ ଦିଅ ପ୍ରକୃତିକୁ ।

ଏଇ ଚରମ ନିଷ୍ଠୁରତା ଆମକୁ ଅହରହ ଚିହ୍ନେଇ ଦେଇ ଯାଉଛି ଯେ ଇଏ ସବୁ ମାୟା, ଅର୍ଥାତ୍ ଭ୍ରମ । ପ୍ରକୃତି ଆମକୁ କେମିତି ନଚେଇ ପାରେ, ଛୁଗୁଲେଇ ପାରେ ତା'ର ପ୍ରଦର୍ଶନୀ ।

ତେଣୁ ବିବେକାନନ୍ଦଙ୍କ ଭାଷାରେ ପ୍ରକୃତିର ନିୟମକୁ ନ ଜାଣିଲା ଯାଏଁ ଆମର ଶାନ୍ତି ନାହିଁ । ନହେଲେ ସେ ସବୁଦିନେ ଆମକୁ ଏମିତି ବୋକା ବନଉଥିବ, ଆମକୁ ଭଗବାନ୍ କରେଇ ଦେବ ନାହିଁ ।

ସେତେ ଦୂରକୁ ଯିବାର ଆସ୍ପର୍ଦ୍ଧା ନ ଥିଲେ ମଧ୍ୟ ମୁଁ କଣ ଏତିକ କହି ପାରିବି ନାହିଁ ଯେ ଲେଖକ ହୋଇ ମୋ ଦୁଃଖକୁ ଗପରେ ବଦଳେଇ ଦେଲାରୁ ମୁଁ ଅଳ୍ପବହୁତ ଅବା ମିଛିମିଛିକା ଭଗବାନ୍ ହୋଇ ପାରିଛି ? କିନ୍ତୁ ନିର୍ମଳା ଦେବୀ ତଥାପି ମାନିବେ ନାହିଁ । କହିବେ ମୁଁ ଯେତେହେଲେ ବାପଟାଏ···

ଏଇ ଗପଟି ମହାପାତ୍ର ନିତ୍ୟାନନ୍ଦଙ୍କ ଦ୍ୱାରା ଇଂରେଜୀରେ ଅନୂଦିତ ହୋଇଛି । ତା'ର ନାଆଁ "Dispossessed" ଏବଂ ତାହା ମୋର ଇଂରାଜୀ ଗଳ୍ପ ସଙ୍କଳନ Wild peacock and other stories ରେ ସନ୍ନିବେଶିତ ହୋଇଛି ।

କଟକ
୧୯ ନଭେମ୍ବର ୧୯୮୭



# ଘେରାଉ

ଘେରାଓ ଶବ୍ଦଟା କେଉଁଠୁ ଆସିଲା ? ଦେବଭାଷାରୁ ଆସିନାହିଁ ନିଶ୍ଚୟ । ତେବେ ଯେଉଁଠୁ ଆସିଥାଉ, ସେଥିରେ ସଙ୍ଗୀତ ନାହିଁ କି ଶାଳୀନତା ନାହିଁ । ମାନେ ଯାହାକୁ ଇଂରେଜୀରେ କହନ୍ତି ସ୍ଲେଗ୍ୟାନ୍ସ୍ । ଶୁଣିଲାବେଳକୁ ମନେ ହେଉଛି ଯେ ଗୋଟାଏ ଜନ୍ତୁ ହାଉଁ ହାଉଁ କରି ଗିଳିଦେବାକୁ ବସିଛି, କିମ୍ବା ଗୁଡ଼ାଏ କୁଆ ରାଉ ରାଉ ହୋଇ ମାଡ଼ି ଆସୁଛନ୍ତି କିମ୍ବା···। ରମାବଲ୍ଲଭ ବାବୁ ଗାଳି ଦେଲାପରି ଏମିତି କେତେ ବୀଭତ୍ସ ଦୃଶ୍ୟର କଳ୍ପନା କରିଗଲେ । ତଥାପି ତାଙ୍କ ମନରେ ଶାନ୍ତି ଆସିଲା ନାହିଁ । ଘେରାଉ ଆସିବ । ସୁର୍ପଣଖା ଆସିବ, ଆଜି ତା'ର ପାଳି । ରମାବଲ୍ଲଭ ନାଏକର ଜୀବନରେ ଏମିତି ଗୋଟାଏ ଦିନ ଆସିବାକୁ ଥିଲା ।

ଯଥାମତ ନୋଟିସ ଦିଆ ହୋଇଛି । ଟାଇପ କରା ହୋଇଥିବା ଦୀର୍ଘ ତିନି ପୃଷ୍ଠା ଦାବୀର ତାଲିକା ତଳେ ସଂଯୁକ୍ତ ଶ୍ରମିକ ଓ କିରାଣୀ ୟୁନିଅନର ସାଧାରଣ ସଂପାଦକ ଲମ୍ବା ଦସ୍ତଖତ କରିଛନ୍ତି । ଜଣାଇଛନ୍ତି ଯେ ଅଦ୍ୟାବଧି କୌଣସି ଦାବୀ ପୂରଣ ନ ହୋଇଥିବା ଯୋଗୁ ସେମାନେ ଆଜି ତାରିଖରେ ଦଳବଦ୍ଧ ହୋଇ ଆସିବେ । ନିର୍ଭର ପ୍ରତିଶ୍ରୁତି ନ ପାଇବା ଯାଏଁ ଫେରିବେ ନାହିଁ । ଘେରାଉ ଆଉ କାହାକୁ କୁହାଯାଏ ?

ପି. ଏ. ଅଭିରାମ ଘର ଭିତରକୁ ପଶି ଆସିଲା । ସେ ନୂତନ ଯୁଗର ପି. ଏ,— ଯେଉଁମାନେ ଅଳ୍ପକଥା କୁହନ୍ତି, ଅଳ୍ପ ମୁଣ୍ଡ ନୁଆଁନ୍ତି ଓ ଭାବ ପ୍ରକାଶ କରିବାକୁ କୁଣ୍ଠାବୋଧ କରନ୍ତି । ସେ ଚେତାଇ ଦେବାର କର୍ତ୍ତବ୍ୟ ପାଳନ କଲା । କହିଲା— "ସେମାନେ ଏଗାରଟା ବେଳକୁ ଆସିବେ ।" କହିସାରି ଆଦେଶ ଲୋଡ଼ିବାର ଭଙ୍ଗୀରେ ମୁହୂର୍ତ୍ତେ ଛିଡ଼ା ହୋଇ ରହିଲା ଓ ତା'ପରେ ଫେରିଗଲା ।

ସେମାନେ ଆସିବେ । ଘେରାଉ କରିବେ ବୋଲି କହିବାକୁ କ'ଣ ଲାଜ ମାଡ଼ୁଥିଲା ? ଏମାନଙ୍କର ସତ୍‌ସାହସ ନାହିଁ । ୟୁନିଅନ ସେକ୍ରେଟେରୀଙ୍କର ନାହିଁ,

ମି. ଏ ର ନାହିଁ କି କାହାର ନାହିଁ । କଲ୍ ଏ ସ୍ପେଡ୍ ଏ ସ୍ପେଡ୍ । ମୁଁ ମିଲ୍ ନୁହେଁ । ମୁଁ ଜାଣେ କ'ଣ କରିବାକୁ ହେବ ।

ରମାବଲ୍ଲଭବାବୁ ଓରଫ୍ ମି: ନାୟକ କାନ୍ଥ ଘଡ଼ିକୁ ଅନାଇଲେ । ଅଫିସର ସତଚାଳିଶ ମିନଟ୍ ଅଛି । ନା, ଛୟାଳିସ ମିନଟ୍ ଅଛି । କିଛି ଯାଏ ଆସେ ନାହିଁ । ମୁଁ ପ୍ରସ୍ତୁତ ।

ମିଷ୍ଟର ନାୟକ ଚଉକିରେ ସିଧାସଳଖ ହୋଇ ବସିଲେ, ଓଠରେ ଉଚିତ ରୂପ ଆଣିଲେ ଓ ଛାତିକୁ ସାମାନ୍ୟ ଫୁଲାଇଲେ । ଯେପରିକି ବର୍ତ୍ତମାନ ଫେରିଉ ଅସି ପହଞ୍ଚିବେ ଓ ସେ ପଚାରିବେ—ୟେସ୍ ?

କିନ୍ତୁ ଏତିକିବେଳେ ମୌସୁମୀର ଖଣ୍ଡେ ମେଘ ଖୋଲା ବଡ଼ ଝରକା ଭିତରେ ଦେଇ ଦେଖାଗଲା ଓ ମିଷ୍ଟର ନାୟକଙ୍କର ମନେ ପଡ଼ିଲା ଓ୍ୱାର୍ଡ଼ସ୍‌ୱାର୍ଥ—I wandereod lonely as a cloud···(ମେଘ ପରିଏ ମୁଁ ବୁଲିଲି ଏକାକୀ ···) । ସେ ମେଘକୁ ଅନାଇଲେ ଓ ବ୍ୟଥିତ ହେଲେ । ଯେ ମେଘକୁ ଏପରି ଭାବରେ ଉତ୍ତର ଦେଇ ପାରୁଛି, ବହୁ ବହୁ ଦେଶର ମାଳା ପିନ୍ଧାଇ ବରଣ କରି ପାରୁଛି, ସେ ଦେଶଟିର ଦମ୍ଭ କ୍ଷୀଣ ହେବ କାହିଁକି ? ତା'ପରେ ସେ ଦେହ ବ୍ୟଥାକୁ ମଧ୍ୟ ବରଣ କଲେ । ଭାବିଲେ—ଏମିତି ହୁଏ । କାରଣ ତାଙ୍କର ମନେ ପଡ଼ିଲା ଦାର୍ଶନିକ ଜର୍ଜ ସାନ୍ତାୟନା । ସେ କହିଥିଲେ—Life is not a spectacle, nor a feast, it is a predicam nt. (ଜୀବନ ଗୋଟାଏ ତାମସା ନୁହେଁ, ଭୋଜି ନୁହେଁ, ବଢ଼ିଶି ।)

ମିଷ୍ଟର୍ ନାୟକ ପ୍ରବୀଣ, ବୟସ ପଞ୍ଚାବନ ହେବ । କିନ୍ତୁ ତାଙ୍କର ଶରୀର ସୁଗଠିତ, କେତେ ସାମାନ୍ୟ ଶୁଭ୍ରତା କେଉଁଠି କେମିତି ଚକ୍ ଚକ୍ କରୁଛି, ଅମଳିନ ଚାହାଣୀ, ଧାରୁଆ ମୁହଁରେ ପରିପୂର୍ଣ୍ଣ ଓଠ, ଲମ୍ବା ହାତ ଓ ସରୁ ଆଙ୍ଗୁଳି । ପରିଧାନ ସୂକ୍ଷ୍ମ ଓ ସୌଖୀନ । ମୋଟ ଉପରେ ତାଙ୍କୁ ଦେଖିଲେ ମନେହୁଏ ଯେ ସେ ନିଜକୁ ଯତ୍ନରେ ରଖିଛନ୍ତି, ଜୀବନକୁ ଭଲ ପାଆନ୍ତି, ଏବଂ ପ୍ରତି ଅବସ୍ଥା ସହିତ ଗୋଟିଏ ଉପାଦେୟ କୋଟେସନ୍ ଅର୍ଥାତ୍ ସୂକ୍ତି ଯୋଖିଦେଇ ନିଶ୍ଚିନ୍ତ ହୋଇ ପାରିବେ ।

ତାହାହେଲେ ଆଜି ସେ ବିଚଳିତ ହେଉଛନ୍ତି କି ନାହିଁ, କିଛି, ଲକ୍ଷଣ ଜଣାପଡ଼ୁ ନାହିଁ ତ । ଆଜି ମଧ୍ୟ ସେ ସୁବେଶ ଓ ସସ୍ମିତ । ଆଜି ମଧ୍ୟ କୋଟେସନ୍‌ଗୁଡ଼ିକ ଅନାୟାସରେ ମନେ ପଡ଼ୁଛି, ଦେବଦତ୍ତ ପୁଷ୍ପ ପରି ଯଥାସ୍ଥାନରେ ଫିଟ୍ ହୋଇ ଯାଉଛି । ତଥାପି ମନ ଭିତରେ ଏହି ଅଶାନ୍ତ ଏବଂ ଆଶଙ୍କା । ଫେରିଉ !

କାହିଁକି ? ଗୋଟିଏ କାରଣ ସହଜେ ଅନୁମେୟ । ମିଷ୍ଟର ନାୟକ ତାଙ୍କର ଦୀର୍ଘ ଜୀବନରେ ମଣିଷଙ୍କ ସହିତ ବ୍ୟବହାର କରିଛନ୍ତି । ବାପମାଆ ଭାଇଭଉଣୀ, ପ୍ରିୟାକାନ୍ତା, ପୁତ୍ରକନ୍ୟା, ବନ୍ଧୁ ବାନ୍ଧବ, ଅଧିକାରୀ କର୍ମଚାରୀ, ମନ୍ତ୍ରୀ ଓ ଉପରାଣି । ଗୋଟିକିଆ ମଣିଷ । ଯେଉଁମାନଙ୍କର ସ୍ୱରୂପ ଅଛି, ସ୍ୱଗୁଣ ଅଛି । କିନ୍ତୁ ଏହି ପ୍ରଥମଥର ପାଇଁ ଏକ ସହସ୍ର ପାଦମୁଣ୍ଡବିଶିଷ୍ଟ ଜନତା ସହିତ ମୁହାଁମୁହିଁ ହେବାକୁ ପଡ଼ୁଛି । ତା'ର ଚେତନା କେଉଁ ଧାତୁରେ ଗଢ଼ା ? ହଁ, ମିଷ୍ଟର ନାୟକ ସଭାରେ ବକ୍ତୃତା ଦେଇଛନ୍ତି, ସେ ଭଲ ବକ୍ତୃତା ଦେଇପାରନ୍ତି । କିନ୍ତୁ ସେତେବେଳେ ଲୋକମାନେ ଧାଡ଼ି ଧାଡ଼ି ହୋଇ ସଜା ହୋଇଥିବା ପ୍ରକୃତିର ଗଛ ପରି ବସନ୍ତି । ସେମାନେ ଓଲଟି ଆସନ୍ତି ନାହିଁ । ପାଖରେ ଛିଡ଼ାହୋଇ ଦାବୀ କରନ୍ତି ନାହିଁ, ନିଃଶ୍ୱାସ ଛାଡ଼ନ୍ତି ନାହିଁ । ମିଷ୍ଟର୍ ନାୟକ ଶୁଣିଛନ୍ତି ଯେ ଘେରାଉର ଲୋକମାନେ ଟେବୁଲ୍‌ର ଦୂରତାରେ ରହିବାକୁ ଭଲପାଆନ୍ତି ନାହିଁ, ଉଚ୍ଛ୍ୱାସର ହାବୁକାରେ ଲଗି ଲଗି ଆସନ୍ତି, ଚତୁର୍ଦ୍ଦିଗରେ ବ୍ୟାପି ଯାଆନ୍ତି; ଏପରିକି ଟେବୁଲ ଉପରେ ବସି ପଡ଼ିବା ବିଚିତ୍ର ନୁହେଁ ।

ତା' ଛଡ଼ା ମିଷ୍ଟର ନାୟକ ଜଣେ ଅଧିକାରୀ । ତାଙ୍କ ଭାବନାରେ ରାଜା ଲୁଇସ୍ ଦ' ସିକ୍‌ସ୍‌ଟିନ୍‌ଥ୍, ଜାର୍ ନିକୋଲସ ଦ' ସେକେଣ୍ଡ୍, ମୁସୋଲିନୀ ପ୍ରଭୃତିଙ୍କ ଛାୟା ପଡ଼ିବା ସ୍ୱାଭାବିକ । ହୁଏତ ସେମାନେ ଦୁର୍ବଳ ଅଥବା ଖଳପ୍ରକୃତିର ଲୋକ ଥିଲେ । ମିଷ୍ଟର ନାୟକ ସେମିତି ନୁହନ୍ତି । କିନ୍ତୁ ଗଣ କଅଣ କିଛି ବାଛ ବିଚାର କରେ ? ଆଖି କାନ ନାହିଁ, ବାଜିଗଲେ ଦୋଷ ନାହିଁ··· । ମିଷ୍ଟର ନାୟକଙ୍କର କଳ୍ପନାରେ ଏହି ସରକାରୀ ଦପ୍ତର ସାମାନ୍ୟ ସରକାରୀ ଦପ୍ତର ହୋଇ ରହିପାରୁ ନ ଥିଲା । ଏଠି କଣ ରାଜତ୍ୱ ନାହିଁ ? ଶାସନ ନାହିଁ ? ନାହିଁ ପ୍ରଜାପାଳନ ? ଏଠି ମଧ୍ୟ ପ୍ରଜାମାନେ ବିକ୍ଷୋଭ କରିବେ, ଆନ୍ଦୋଳନ କରିବେ । କାହିଁକି ନ କରିବେ ? ଏବଂ ତା'ର ମୁକାବିଲା କରିବାକୁ ହେବ । "Uneasy lies the head that wears a crown" (ମୁକୁଟ ମଣ୍ଡିତ ଶିର ନୁହଁଇ ଶାନ୍ତ ଅଶ୍ରୁଦ) ଏହି କୋଟେସନ୍ ମଧ୍ୟ ତାଙ୍କ ମୁନକୁ ଆସୁଥିଲା । ତେଣୁ ଗୌରବର କପୋଳରେ ଭଙ୍ଗୁର ସ୍ୱେଦବିନ୍ଦୁ ଫୁଟୁଥିଲା ।

ଦଶଟା ପଇଁଚାଳିଶ । ଆଉ ପନ୍ଦର ମିନିଟ ଅଛି । ମିଷ୍ଟର ନାୟକ ପୁଣି ସିଧା ହୋଇ ବସିଲେ ଏବଂ ଏହି ସମୟରେ ଘର ଭିତରକୁ ପଶି ଆସିଲେ ନିତ୍ୟାନନ୍ଦ ନାୟକ, ଆକାଉଣ୍ଟସ୍ ଅଫିସର୍ । ସେ ତାଙ୍କର ସ୍ୱାଭାବିକ ଭଙ୍ଗୀରେ ସମ୍ପୂର୍ଣ୍ଣ ନମସ୍କାର କଲେ ଓ ପ୍ରସାରିତ ହସ ହସିଲେ । କିଛି କଥା କହିଲେ ନାହିଁ କେବଳ ହସିଲେ । ଯେପରିକି ସାହେବଙ୍କ ପାଖ ଲୋକ ହିସାବରେ ସେ ଏହି କଥାକୁହା ଦାୟିତ୍ୱରୁ ବର୍ତ୍ତି ଯାଇଛନ୍ତି । ଅନାବିଳ ହସ ଦ୍ୱାରା ସେ ତାଙ୍କ ଆଗମନ ଓ ଅନୁରାଗ ଜଣାଇ ଦେଲେ ।

ନିତ୍ୟାନନ୍ଦ ବାବୁଙ୍କୁ ଦେଖିଲେ ମିଷ୍ଟର ନାୟକଙ୍କ ମନରେ ଆସେ ଯେ ଏ ଜଣେ 'ନାୟକ', ହେଲେ଼ଥିପାଇଁ ବୋଧହୁଏ ଭାବୁଛନ୍ତି ଯେ— । ଯୌକନ୍ୟ ଭାବ ପ୍ରଣୋଦିତ ହୋଇ ସେ କିଛି କହି ପାରନ୍ତି ନାହିଁ, ଦୁର୍ବଳ ହସରେ ପ୍ରତିଦାନ ଦିଅନ୍ତି ।

ଆଜି ତାଙ୍କର କିଛି ପ୍ରତିଦାନ ଦେବାକୁ ମଧ୍ୟ ଇଚ୍ଛା ହେଲାନାହିଁ । ଅଧିକନ୍ତୁ ଏଇ ଧୋତିପିନ୍ଧା ପୁଷ୍ଟପ୍ରସନ୍ନ ଲୋକଟିକୁ ଦେଖି ତାଙ୍କର ମନେ ପଡ଼ିଲା—"He who is low needs fear no fall" (ଯେ ଶ୍ରେଷ୍ଠ ତା'ର ଖସି ପଡ଼ିବା ଭୟ ଆସିବ କେଉଁଠୁ ?)

ଚଉକିରେ ଧୀରେ ସୁସ୍ଥେ ବସି ଯାଇବା ପରେ ନିତ୍ୟାନନ୍ଦ ବାବୁ ହଠାତ କହି ଉଠିଲେ । ସମ୍ବାଦ ପରିବେଷଣର ଭଙ୍ଗୀରେ କହିଲେ, "ଲେବର୍ ଅଫିସର୍ ଆସିବେ ନାହିଁ । ଅସୁସ୍ଥ ।"

"ଏଁ ?"

ମିଷ୍ଟର ନାୟକ ଏହି ଖବର ପାଇଁ ପ୍ରସ୍ତୁତ ନ ଥିଲେ । ଯେସବୁ ହେବ, ଅଥଚ ଯାହାର ପରାମର୍ଶ ଦେବା ଆବଶ୍ୟକ, ସେ ଆସିବ ନାହିଁ । ମନ୍ତ୍ରୀ ଅନୁପସ୍ଥିତ । କେବଳ ରାଜା ଓ ପ୍ରଜା । ସମୟ ମାଗିଲେ କିଛି ଲାଭ ନାହିଁ, ତାରିଖ ଆଗରୁ ଦିଆ ହୋଇଛି ।

ତାଙ୍କ ମନରେ କ୍ରୋଧ ଆସିଲା । 'ମୁଁ ବୁଝିଲି,' ଏହି ଭାବରେ ସେ ମୁଣ୍ଡ ଟିକିକୁ ଉପରକୁ କଲେ ଓ ତା' ପରେ ନିତ୍ୟାନନ୍ଦ ବାବୁଙ୍କର ହସିଲା ମୁହଁକୁ ଉପେକ୍ଷା କରି ଦୂରକୁ ଚାହିଁଲେ । ଅନେକ ଦୂରକୁ । କାନ୍ଥର କ୍ୟାଲେଣ୍ଡରରେ ତାଙ୍କର ଦୃଷ୍ଟି ଅଟକି ଗଲା ନାହିଁ । ଲମ୍ବା ଝରକାଭିତରେ ଦେଇ ପେଣ୍ଟୁଆ ମେଘ, ଉଡ଼ନ୍ତା ଚଢ଼େଇ ବା ରାସ୍ତାର ଦୃଶ୍ୟରେ ସୀମିତ ହେଲା ନାହିଁ । ସେ ଦିଗନ୍ତ ଖୋଜିଲେ । ଯେଉଁ ଦିଗନ୍ତରୁ ଗୋଟିଏ ଜନ୍ମ ଆସିଲା ଗୋଟିଏ ମୃତ୍ୟୁ ପାଇଁ । ଗୋଟିଏ ସୃଷ୍ଟି । ଜଣେ ମଣିଷ, ମାତ୍ର ଜଣେ । ରମାବଲ୍ଲଭ ନାୟକ ।

ମେଘ ମୁହଁରୁ ଥଣ୍ଡା ପବନ ଘର ଭିତରକୁ ଧାଇଁ ଆସୁଛି । ଉର୍ଦ୍ଦିପିନ୍ଧା ଚପରାଶି ମୁହଁ ଦେଖାଇ ପଚାରିଲା,—ଆଜ୍ଞା, ଝରକା ବନ୍ଦ କରିଦେବି ? ମିଷ୍ଟର ନାୟକ ବାରଣ କଲେ । ସେ ଆହୁରି ଦେଖିବାକୁ ଚାହୁଁଥିଲେ । ଏହି ଦୂର ଦେଖାରେ କ୍ରୋଧକୁ ଚାପି ଏକ ବଳିଷ୍ଠ ଉତ୍ତେଜନା ତାଙ୍କ ମନକୁ ଆକ୍ରମଣ କରୁଥାଏ । ହଠାତ୍ କି ଏହି ଏକକର ଏକୁଟିଆ ପଣ ନେଇ ସେ ବିଶ୍ୱ ବୁକୁରେ କେଉଁଠି ହେଲେ ଗୋଟାଏ ଲମ୍ବା ଦସ୍ତଖତ୍ କରିଦେବେ । ଦସ୍ତଖତ୍ କରିବାକୁ ହେବ ।

ନିଜକୁ ବ୍ୟକ୍ତ କରିବାର ସମ୍ପୂର୍ଣ୍ଣ ବେଦନା ଓ ଆବେଗ ଏ ପର୍ଯ୍ୟନ୍ତ ଆସି ନଥାଏ । କିନ୍ତୁ ଏହି ହେଲା ତା'ର ପ୍ରଥମ ପଦକ୍ଷେପ । ଯେତେବେଳେ ସେ ଶୁଣିଲେ ଲେବର୍ ଅଫିସର ଆସିବେ ନାହିଁ ।

...ଯଥା ସମୟରେ ସେମାନେ ଆସିଲେ । ଏକାଠି ହୋଇ ପଶିଲେ । ସର୍ବାଗ୍ରେ ପ୍ରେସିଡ଼େଣ୍ଟ୍ ସତ୍ୟବ୍ରତ ସିଂହ, ପାଖରେ ସେକ୍ରେଟେରୀ ରଜାକ୍ ଅଲି, ଏବଂ ପଛକୁ ସୈନ୍ୟଦଳ...ଶହେ କି ଦୁଇଶହ ହେବେ, ନା ଆହୁରି ବେଶି ?

ନିବିଡ଼ ଧ୍ୱନିଗତ ଚଞ୍ଚଳତା । ଗୁରୁ ଗୁରୁ ଗୁରୁ । ସେମାନେ ତଥାପି ଆସୁଛନ୍ତି । ଘର ଭିତରକୁ ଆସିବା ପାଇଁ ଗୋଟିଏ ଶ୍ରେଷ୍ଠ ଦରଜା ଥିଲା କି ନାହିଁ ବୋଲି ଜାଣି ହେଉନାହିଁ । ନିତ୍ୟାନନ୍ଦ ବାବୁ କେଉଁଠି ବୁଡ଼ି ଯାଇଛନ୍ତି, ବର୍ତ୍ତମାନ ତାଙ୍କ ମୁହଁର ଭାବ କେଉଁ ପ୍ରକାର ଲକ୍ଷ୍ୟ କରି ହେଉନାହିଁ । ହେଲେ କାହାରି ପାଇଁରେ କଥା ନାହିଁ । ଅବଶ୍ୟ ଅନେକଙ୍କର ଆଖି ଘରି ବୁଲୁଛି,—ଦେବତନ ଗୋରା ସାହେବଙ୍କ ଫଟୋ (ଆଉ ଅଛି । ) ଶ୍ରେଣୀ ଗତ ଏକାଧିକ ଫୋନ୍ (ଚିନଟାଯାକ ଏକାଠି ବାଜିଲେ କ'ଣ ହୁଏ ?)...ଏୟାର୍ କଣ୍ଡିସନର୍ (ଅଛି ନା ନାହିଁ ? ଦେଖି ହେଉ ନାହିଁତ ?)... ଇତ୍ୟାଦି । କିନ୍ତୁ ସେହି ଦୃଶ୍ୟଦେଖା କ୍ଷଣକରେ ଫେରି ଆସୁଛି ସମ୍ମାନୀୟ କର୍ତ୍ତାଙ୍କର ଚଉକିକୁ ଓ ଟେବୁଲକୁ । ଉପସ୍ଥିତ କର୍ତ୍ତବ୍ୟର ଗୁରୁତ୍ୱ ଚଳଚଳବା ଦୂରର କଥା, ନିର୍ମମ ବେଗରେ ବାନ୍ଧି ହୋଇ ଯାଉଛି, ଜମି ଯାଉଛି । ଲମ୍ବରର ଫଣା ଗଢ଼ି ଉଠୁଛି । ପ୍ରେସିଡ଼େଣ୍ଟ ବସିବା ମାତ୍ରେ ଗୁଡେଇ ହୋଇଥିବା କାଗଜ ଖଣ୍ଡକୁ ଟେବୁଲ୍‌ରେ ଉପସ୍ଥାପିତ କଲେ ଓ ଆରମ୍ଭ କଲେ—"—ସାର୍... ।"

ଏଭଳି ଏକାଗ୍ରତାସତ୍ତ୍ୱେ କେହି କ'ଣ ଲକ୍ଷ୍ୟ କରି ପାରି ନ ଥିବେ ଯେ ସାର୍ ମଧ୍ୟ କିଛି କହିବାକୁ ଚାହାନ୍ତି ? ଯେ ତାଙ୍କର ଏହି ପ୍ରଦୀପ୍ତ ମୁଖମଣ୍ଡଳରେ ଭୟ ଏବଂ କ୍ରୋଧ ଛଡ଼ା ଆଉ କିଛି ଭାବର ସ୍ୱରୂପ ଜଣା ପଡ଼ୁଛି ?

ହୁଏତ ସେମାନେ ଧରି ନେଇଥିଲେ ଯେ ଆସିଲେ ଆସିବ କୋଟେସନ୍ । କେବଳ କୋଟେସନ୍ । ଅନାବିଳ ଦୁର୍ଲ୍ଲଭ କୋଟେସନ୍ ଏବଂ ସୁମଧୁର ହସ ।

ଦୁର୍ଭାଗ୍ୟ ! ପ୍ରକୃତରେ ଯେତେବେଳେ ୟୁନିୟନ୍ ପ୍ରେସିଡେଣ୍ଟ୍ ଜଳଦଗମ୍ଭୀର ସ୍ୱରରେ କହି ଚାଲିଲେ, 'ସାର୍, ଏହି ହେଉଛି ଆମର ଦାବୀପତ୍ର, ଚାର୍ଟର୍ ଅଫ୍ ଡିମାଣ୍ଡସ୍, ଏହି ଦାବୀଗୁଡ଼ିକ ପୂରଣ ନ ହେବା ପର୍ଯ୍ୟନ୍ତ କିମ୍ବା ନିର୍ଦ୍ଦିଷ୍ଟ ତାରିଖ ପୂରଣ ହେବାର ନିର୍ଭର ପ୍ରତିଶ୍ରୁତି ନ ପାଇବା ପର୍ଯ୍ୟନ୍ତ...", ସେତେବେଳେ ମିଷ୍ଟର୍ ନାୟକଙ୍କର କୌଣସି କୋଟେସନ୍ ମନେ ପଡ଼ୁ ନ ଥିଲା । ଅଥଚ ସେ ଟଳିଧ ବହୁଳ ନିକଟ-ନୀରବ ମୁହଁମାନଙ୍କୁ କୁଆ ଦେଖିଲା ପରି ଦେଖୁଥିଲେ ଏବଂ ତାଙ୍କର ଓଠ ଥରି ଉଠୁଥିଲା ।

…"ସେ ପର୍ଯ୍ୟନ୍ତ ଆମେ ଏହି ଘର ଛାଡ଼ି ଯିବୁନାହିଁ (ସମବେତ କରତାଳି)। ଆମର ଏ ଦାବି ପଛରେ ନ୍ୟାୟ ଅଛି । ଅଛି ମଣିଷ ହୋଇ ମଣିଷ ପରି ବଞ୍ଚି ରହିବାର ଅଧିକାର । ଏହାକୁ ପାଇବାପାଇଁ ଆମେ ବର୍ଷ ବର୍ଷ ଧରି ଅପେକ୍ଷା କରି ରହିଛୁ, କର୍ତ୍ତୃପକ୍ଷଙ୍କ ଦରବାରରେ ଭିକ୍ଷା କରିଛୁ, ବୁକୁ ଫଟାଇ କାନ୍ଦିଛୁ, ଅଭିମାନ କରିଛୁ । କିନ୍ତୁ କେଉଁଥିରେ କିଛି ଫଳ ହୋଇନାହିଁ । ତେଣୁ ଆଜି ଆମେମାନେ ଆସିଛୁ ଆମର ଦାବୀ ହାସଲ କରିନେବୁ । ଛଡ଼ାଇ ନେବୁ…"

ଜମାଦାର (ମୁଖ୍ୟ ଅର୍ଦ୍ଦଳି) ଭଗତ୍‌ରାମ୍ ମିଷ୍ଟର ନାୟକଙ୍କର ପଛଆଡ଼େ ଛିଡ଼ା ହେଲା । ତା'ର ନବୋଧ-ଉଜ୍ଜ୍ୱଳ ଗ୍ରୀବାଣୀରୁ ମନେହେଲା ଯେ ତା'ର ଆଉ କିଛି ଥାଉ ନ ଥାଉ, ସାହସ ଅଛି । ସେ ମଧ୍ୟ ଏଇଠି ଛିଡ଼ା ହୋଇ ରହିବ । କିଛି କରି ନ ପାରିଲେ ମଧ୍ୟ ଛିଡ଼ା ହୋଇ ରହିବ, ସାକ୍ଷ୍ୟ ଦେବ ।

ଏଣେ ମୌସୁମୀର ବର୍ଷା ଝରିବାକୁ ଆରମ୍ଭ କଲା । ଘର ଭିତରକୁ ପାଣି ଛିଟିକା ଆସିଲା । କିନ୍ତୁ ଝରକା ବନ୍ଦ କରିଦେବା ଜରୁରୀ ବୋଲି କେହି ମନେ କଲେ ନାହିଁ ।

ବାଗ୍ମୀତାର ଧାର ଉଠୁଛି ପଡ଼ୁଛି, ଥମି ଯିବାର ଲକ୍ଷଣ ଦେଖା ଯାଉନାହିଁ । ପ୍ରେସିଡେଣ୍ଟ୍ ସତ୍ୟବ୍ରତ ସିଂହ ବଳିଷ୍ଠ, ଦୀର୍ଘକାୟ । ତାଙ୍କର ବଡ଼ମୁଣ୍ଡ, ଚଉଡ଼ା କପାଳ ଓ ଚିମା ଚିମା ଆଖିରେ ଅଭିବ୍ୟକ୍ତି ସାମାନ୍ୟ ନୁହେଁ, ସାଧାରଣ ନୁହେଁ । ତାଙ୍କୁ ଦେଖିଲେ ମନେ ହେବ ଯେ ସେ ମଞ୍ଚ ଓ ମଥାନ ପାଇଁ ଜନ୍ମ ହୋଇଛନ୍ତି,— ସେ ଯଦି ବକ୍ତୃତା ନ ଦେବେ ଆଉ ଦେବ କିଏ ?

ସେ କର୍ତ୍ତୃପକ୍ଷଙ୍କ ଅନନ୍ତ ଦୁରବସ୍ଥା ସୂଚାଇବାକୁ ଯାଇ ରବିଠାକୁରଙ୍କୁ ସ୍ମରଣ କଲେ ଓ ଆବୃତ୍ତି ଢଙ୍ଗରେ କହିଲେ, "…ଯାଦେର କରେଚ୍ଛୋ ଅପମାନ, ଅପମାନେ ହତେ ହବେ ତାହାଦେର ସବାର ସମାନ ।"

ଏହି ସମୟରେ ମିଷ୍ଟର ନାୟକ ଓଠ କାମୁଡ଼ିବାର ଦେଖାଗଲା । କପାଳରେ କୁଞ୍ଚନ ଦିଶିଲା ଓ ଅଖିଏଣ୍ଟା ଆଘାତରେ ବ୍ରଣ ଆସିଲା ପରି ମନେ ହେଲା । କାହିଁକି ନା ସେ ନିଜକୁ ସମ୍ଭାଳି ଥିଲେ । —ରବୀନ୍ଦ୍ରନାଥ ! କବିତା ! ମୁଁ ସେ ଫାନ୍ଦରେ ପଡ଼ିବି ନାହିଁ । ମୁଁ ତା'ର ଉତ୍ତର ଦେବ ନାହିଁ । ମୁଁ କହିବ ।

ପ୍ରେସିଡେଣ୍ଟ୍ ନୁହେଁ, ସେକ୍ରେଟେରୀ ନୁହେଁ । ଏମାନେ । ଏମାନଙ୍କୁ ମୁଁ କହିବ ।

ଲୋକମାନେ ଅତି ପାଖକୁ ଆସିଗଲେଣି ବୋଲି କହିଲେ ଯଥେଷ୍ଟ ହେବ ନାହିଁ । ଅଜାଡ଼ି ହୋଇ ପଡ଼ିବେ କି କଅଣ । ଜଣେ କିଏ ବକ୍ତୃତା ଶୁଣି ଥକିଗଲା ପରି

ହାଇ ମାରୁଛି । ତା'ର କଳା କହରେ ଦାନ୍ତ ଓ କଣ୍ଠା ଭିତର ଗହ୍ୱର ଦୃଷ୍ଟିକୁ ଗ୍ରାସ କରୁଛି । ଆଉ ଜଣେ କିଏ ମଜା ଦେଖିଲା ପରି ମୁରୁକି ମୁରୁକି ହସୁଛି । ତା'ର ଫାପୁଲା ଶେତା ମୁହଁର ହସଟିକ ଦ୍ୱିତୀୟା ଜହ୍ନର ସରୁ ଗାର ପରି ଦିଶୁଛି, ଯାହାକୁ ପୋଛି ଦେବାକୁ ହାତ ବଳାବ ନାହିଁ । ପୁଣି କିଏ ଦୁର୍ଦ୍ଧର୍ଷ ଶତ୍ରୁ ପରି କାମିଜର ହାତକୁ ବାରମ୍ବାର ଉପରକୁ ଟେକୁଛି । ତା' ହାତରେ ଶିରା ଗୋଟି ଗୋଟି କରି ଗଣି ହେଉଛି, ରୁଢ଼ ଓ ଛିଦ୍ର ବିଶିଷ୍ଟ ମୁହଁ ଅଚଞ୍ଚା ସଢ଼େଇ ପରି ଦିଶୁଛି । କାହାର ଚଳ ଚଳ ନାଲି ଆଖି—ସେ ରାଗିଛି ନା କାନ୍ଦିବାକୁ ବସିଛି ? କାହାର ମୁହଁ ଥରକୁ ଥର ରୁମାଲରେ ପୋଛା ହେଉଛି ଯଦିପି ଝାଳ ନାହିଁ । କାହାର ଟ୍ରିମିକ ପଣ ଛତୁରି ଆସୁଛି । ବଳା ଲମ୍ବା ମୁହଁ ଚକ୍ ଚକ୍ କରୁଛି, ମୁଣ୍ଡରେ ଗେରୁଆ ଗାନ୍ଧି ଟୋପି । କାହାର କସଣୀ ପଣ ଉବୁଜି ପଡ଼ୁଛି, କାମିଜ ପକେଟରେ ମେଞ୍ଚାଏ କାଳି ଦାଗ ।

ଏମାନଙ୍କ ପାଇଁ ସ୍ନେହ ଓ ସହାନୁଭୂତି ଜାଗି ଉଠି ନ ଥିଲା । ବୋଧହୁଏ ଜାଗିବା ସମ୍ଭବପର ନ ଥିଲା । ସେହି କଠୋର ନିକଟତା, ସର୍ବବ୍ୟାପୀ ମଣିଷଭରା ଉଷ୍ମତାର ଉପରେ କୋମଳଭାବ ଅଙ୍କୁରିବ କେମିତି ? କିନ୍ତୁ ମିଷ୍ଟର ନାୟକ ଏହି ସୁସ୍ପଷ୍ଟ ପ୍ରାଣୀମାନଙ୍କୁ ଦେଖିଲେ, ଦେଖିବାରେ ଏକ ଅଭୂତପୂର୍ବ ପ୍ରେରଣା ପାଇଲେ ଓ ତାଙ୍କର କହିବା ଇଚ୍ଛା ପ୍ରବଳ ହେଲା । କହିବେ, ଅର୍ଥାତ୍ କହିଲା ପରି କହିବେ ଯେମିତି ସେ ଆଗରୁ କେବେହେଲେ କହି ନ ଥିଲେ । ସେ ବିକଳ ହୋଇ ୟୁନିଅନ୍ ପ୍ରେସିଡେଣ୍ଟଙ୍କ ଭାଷଣ ସରିବାକୁ ଅପେକ୍ଷା କଲେ । ସ୍ଫୁରନ୍ତ ଓଠ ସାଙ୍ଗରେ ତାଙ୍କର ସରୁ ଆଙ୍ଗୁଳି ମଧ୍ୟ ଚଞ୍ଚଳ ହେଲା, ଟେବୁଲର ଗ୍ଲାସ-ଟପ୍ ଉପରେ ଅସ୍ଥିର କ୍ରୀଡ଼ା କଲା । ସତେ କି ଏ ସୁଯୋଗ ଚାଲି ଗଲେ ପୁଣି ଆସିବ ନାହିଁ ।

କ୍ରମଶଃ ସେ ସମ୍ପୂର୍ଣ୍ଣ ଭୟଶୂନ୍ୟ ହେଲେ ।

ପ୍ରେସିଡେଣ୍ଟ ସତ୍ୟବ୍ରତ ସିଂହ ଭାଷଣ ଶେଷ କଲାପରେ ହୁଙ୍କାର ଦେଲେ, ବୀରବିକ୍ରମରେ ହାତ ବୁଲାଇ କହିଲେ, "ଇନ୍ କିଲାବ୍ ।" ସମଗ୍ର ଜନତା ସମସ୍ୱରରେ ଚିତ୍କାର କଲେ, "ଜିନ୍ଦାବାଦ୍ ।"

ଡାଇରେକ୍ଟରଙ୍କ କମରାରେ ଏପରି ଦୃଶ୍ୟ, ହାଟ ବଜାରର ଦୃଶ୍ୟ ଦେଖିବାକୁ ମିଳିବ ବୋଲି କିଏ ଭାବିଥିଲା ? ନକେ ଭଗତ୍‌ରାମ ଜମାଦାର ଝାଉଁଳି ଗଲାପରି ଦିଶିଲା । କିନ୍ତୁ ମିଷ୍ଟର ନାୟକ ଟିକିଏ ହସିଲା ପରି ମନେ ହେଲା । କହିବାର ବିପୁଳ ଆବେଗ ଓ ଉତ୍କଣ୍ଠା ମଧ୍ୟରେ ଏହି ଇନ୍‌କିଲାବର ଧ୍ୱନି ତାଙ୍କୁ କୁତ୍ କୁତ୍ ହେଲା । ବେଶ୍ ତ ! ମୋର ଧ୍ୱନି । ମୋର ଇତିହାସ । ଅବିସ୍ମରଣୀୟ ସ୍ମରଣିକା ।

ଥ୍ରି ଚିଅର୍ସ ଫର୍ ଇନ୍‌କ୍ଲାବ୍ (ରମା) ବକ୍ଷଭ । ଆସ, ପାଙ୍କୁ ଲାଗିଆଛି— ଆମେ କହୁଛୁ, କହିବୁ (ଗାବ୍ର ଚଡ଼ାଉ ଚମ୍ବନ)—ଇନ୍‌କ୍ଲାବ ଜିନ୍ଦାବାଦ୍ । ଶ୍ୱଶୁରଙ୍କ ଜଗୋଲା ଲାଇବ୍ରେରୀ ଘର । ମୋଟା ମୋଟା ଆଇନ ବହି ସାଙ୍ଗରେ କ୍ଲାସିକାଲ ମନୀଷିମାନଙ୍କର ସୁବୃହତ୍ କଳେବର—'ରାଇଜ୍ ଏଣ୍ଡ ଫଲ୍ ଅଫ୍ ଦ' ରୋମାନ୍ ଏମ୍ପାୟର; ସେକ୍‌ସପିୟର, ସାମୁଏଲ ଜନ୍‌ସନ୍ ଇତ୍ୟାଦି ଇତ୍ୟାଦି । ମୋଟା ପରଦା ଘେରା ଅନ୍ଧାରଭିତରେ ପୁରୁଣା କାଗଜ ଓ ନୂଆ ବନ୍ଧେଇର ବାସ୍ନା ରୁଚି ଓ ମର୍ଯ୍ୟାଦାର ବାସ୍ନା । ତଥାପି, ତଥାପି ମୁଁ କହୁଲି ଇନ୍‌କ୍ଲାବ ଜିନ୍ଦାବାଦ୍ । ଥରେ ନୁହେଁ, ଦୁଇଥର ନୁହେଁ । ଛାତି ପଡ଼ୁଥାଏ ଉଠୁଥାଏ । ଇଲି ନର୍ଭସ୍ ହୋଇ ଆସୁଥାଏ ! ......

ମିଷ୍ଟର ନାୟକଙ୍କର ମନେ ପଡ଼ିଲା । ସମାଜର ବାରଣ ନ ମାନି ମୁଁ ଇଲିକୁ ବାହା ହେବାକୁ ଚାହିଁଲି । ବାହା ହେଲି ନା ଗ୍ଲାଡ଼ିଲି !

ଅମ୍ଳାନ ଇନ୍‌କ୍ଲାବ୍‌ର ଶୃଙ୍ଗ ଉପରେ ଚଢ଼ି ମିଷ୍ଟର ନାୟକ ଅଦ୍ଭୁତ ଆତୁର ହେଲେ । ହଠାତ୍ କା ତାଙ୍କର କଳ୍ପନାର ଦ୍ରବଣତାରେ ମୁନ ଆସିଗଲା, ସିଧା ଦେଖି ଏହି ଲୋକମାନଙ୍କ ହୃଦୟରେ ଲାଗିଯିବ । ସେମାନେ ବୁଝିବେ ।

କିନ୍ତୁ ପ୍ରେସିଡେଣ୍ଟ ସତ୍ୟବ୍ରତ ସିଂହ ବସୁ ନ ବସୁଣୁ ସେକ୍ରେଟେରୀ ରଜାକ୍ ଆଲି ଉଠି ଛିଡ଼ା ହେଲେ । ତାଙ୍କର କୋଣିଆଳ ମୁହଁ ଅଗକୁ ଭିଡ଼ି ଆସିଲା ଏବଂ ସେ ଉଦ୍‌ଗାରି ପରି କହିଲେ, "ବୋନସ୍ ଆମର ପ୍ରଥମ ଦାବୀ !"

କହିବା ବାହୁଲ୍ୟ ମିଷ୍ଟର ନାୟକ ନିରାଶ ହେଲେ । ତାଙ୍କର ଇଚ୍ଛା ହେଲା ରଜାକ୍ ଆଲିଙ୍କ ଉଦ୍‌ଗତ ମୁହଁକୁ ହାତରେ ଚାପି ଧରିବେ ଓ କହିବେ,—ମୁଁ ଜାଣିଛି । ମୁଁ ମୂଳରୁ ଶେଷଯାଏଁ ସବୁ ଜାଣିଛି । ମୁଁ ଟିକିଏ କହି ପାରେ, ପଦୁଟିଏ, ଦୁଇ ମିନିଟ୍··· । ହେଲେ ସେ ସେକ୍ରେଟେରୀଙ୍କୁ ରୋକି ପାରିଲେ ନାହିଁ । ଭାଷଣରେ ଫାଙ୍କ ଥାଏ, ଯାହା ଭିତରକୁ ହୁଏତ କିଛି ପଶିବାକୁ ଚେଷ୍ଟା କରି ହୁଅନ୍ତା । କିନ୍ତୁ ସେକ୍ରେଟେରୀ ଭାଷଣ ଦେଉ ନାହାନ୍ତି । ସେ ନିର୍ଦ୍ଦିଷ୍ଟ ନିରନ୍ତର ଗୁଳିବର୍ଷଣ କରୁଛନ୍ତି । କଥାର ବୋଉଗୁଡ଼ିକ ସମତାଳରେ ନିର୍ଗତ ହେଉଛି ଓ ଖଡ଼ା ହୋଇ ଯାଉଛି । ବାଧା ଦେବା ଅସମ୍ଭବ ।

ସେକ୍ରେଟେରୀ କହୁଛନ୍ତି—"୧୯୫୮ ମସିହାରେ ପ୍ରଥମେ ପ୍ରଶ୍ନର ଉତ୍ଥାପନ କରାଗଲା । ସେତେବେଳେ କର୍ତ୍ତୃପକ୍ଷ କହିଲେ ଯେ ସରକାର ଶିଳ୍ପପତି ନୁହନ୍ତି, ତେଣୁ ସେ ବୋନସ୍ ଦେଇ ପାରିବେ ନାହିଁ । କିନ୍ତୁ ତା' ବଦଳରେ ଅନ୍ୟାନ୍ୟ ସୁବିଧା ଯୋଗାଇବେ । ଆମେ ଅପେକ୍ଷା କଲୁ । ତା'ପରେ ଆସିଲା ୧୯୫୯ । ଆମେ ପୁଣି ଆବେଦନ କଲୁ । ଏଥର କର୍ତ୍ତୃପକ୍ଷ କହିଲେ ଯେ ବୋନସ ସାମାନ୍ୟ କଥା, ସରକାର

ଆମକୁ ଘର ଭଡ଼ା ଦେବେ, ପିଲାଙ୍କ ପଢ଼ିବାପାଇଁ ଖର୍ଚ୍ଚ ଦେବେ, ଏପରିକି ଆମ ଝିଅ ବାହାଘରରେ ସାହାଯ୍ୟ କରିବେ (ପଚ୍ଛକୁ ଭୁଲ ପଢ଼ ଚତୁର ସିଂଘ ହସ) । ସେଇଠୁ ୧୯୬୦ । ଆମ ଡିପାର୍ଟମେଣ୍ଟରେ ବେପାର ବଣିଜ କାମ ଆରମ୍ଭ ହୋଇଗଲା । ଆମ ଦପ୍ତରରେ ଦାମିକା ଟେବୁଲ ଚଉକି କିଣାଗଲା, କର୍ମଚାରୀ ବଢ଼ିଲେ, ଶ୍ରେଷ୍ଠ ସାହେବ ବଡ଼ ସାହେବ ହେଲେ । କିନ୍ତୁ ଆମେ ଯେତେବେଳେ ବୋନସ ମାଗିଲୁ ଆମକୁ କୁହାଗଲା ଯେ ଆଲୋଚନା କରାଯିବ । ଆଲୋଚନା ! ୧୯୬୧ ମେ ମାସ ପନ୍ଦର ତାରିଖରେ ଆମେ ଧର୍ମଘଟ କଲୁ ।"

ମିଷ୍ଟର ନାୟକ ଅନ୍ୟମନସ୍କ ହୋଇ ପଡ଼ିଲେ । ୟୁନିଅନ୍ ସେକ୍ରେଟେରୀ କ'ଣ କହୁଛନ୍ତି ପୁରାପୁରି ଶୁଣି ପାରିଲେ ନାହିଁ । ବୋଧହୁଏ ବର୍ତ୍ତମାନ ପଡ଼ୁଛି ଚକିତ୍ସା ଭତ୍ତାର କଥା—୧୯୫୭ ରେ କର୍ତ୍ତୃପକ୍ଷ କହିଲେ ଯେ··· । କଲଗାଇଡ଼ଣର ଘୋଷା ଶୁଣିଲା ପର ଲାଗୁଛି କ'ଣ ମିଳିବ ଏଥିରୁ ? ମିଷ୍ଟର ନାୟକ ଧୀରେ ଧୀରେ ଅପସରି ଗଲେ ଓ ନିଜର ଭାବନାକୁ ନିରେଖି ଦେଖିଲେ, କିନ୍ତୁ ସେ ପାରିଲେ ନାହିଁ । ତାଙ୍କର ମନେହେଲା ଯେ କେତେଗୁଡ଼ିଏ ନିଅନ୍ତା ଦେହର ଆଖି ଏକାଠି ହୋଇ ତାଙ୍କୁ ଉପ୍‌ଭେଇଉଛି । ପୃଥିବୀ ଘେରାଉ କରୁଛି । କଥା କୁହ । କଥା କୁହ ।

ମୁଁ କହିବ । ମୁଁ ଦେବ । ···ମିଷ୍ଟର ନାୟକଙ୍କର ଆଖି ବୁଜି ହୋଇ ଆସିଲା ଏବଂ ଆଖି ବୁଜିବାର ସେହି ଅଳ୍ପ କିଛି ସମୟ ମଧ୍ୟରେ ସେ ତୀବ୍ରତମ ବେଦନା ଅନୁଭବ କଲେ । ଏଇ ଶେଷ ମୁହୂର୍ତ୍ତ । ଡେଣାଭଙ୍ଗା ଚଢ଼େଇ ତା ଡେଣା ସଜାଡ଼ି ସାରିଲାଣି । ଜେଟ୍ ଉଡ଼ାଜାହାଜ ଗର୍ଜି ସାରିଲାଣି । ଏଥର ଉଠ, ଉଠ—ଦଶ, ନଅ, ଅଠ, ସାତ— ।

କଥା କହିବାର ଅର୍ଥ କ'ଣ ସେ ପୂର୍ବରୁ ଭାବିପାରି ନ ଥିଲେ, କିନ୍ତୁ ବର୍ତ୍ତମାନ ତା'ର କାଯ୍ୟାକଳେବର ତାଙ୍କ ମନକୁ ଆସିଲା, ଚେତନାକୁ ଛୋଇଦେଲା । ଏଇ ତା'ର ରୂପ, ଏଇ ତା'ର ଧ୍ୱନି, ଏଇ ତା'ର ରଙ୍ଗ—

ଯେମିତି କଅଁଳା ପିଲା ମାଆର ସ୍ତନକୁ ଜାବୁଡ଼ି ଧରେ ।

ଯେମିତି ଶଙ୍କରର ଜ୍ରୁଟରେ ବର୍ଚ୍ଛା ଭୁଷି ହୋଇଯାଏ ।

ଯେମିତି ଭକ୍ତ ଭଗବାନଙ୍କ ପାଦତଳେ ଲୋଟିଯାଏ ।

ଯେମିତି ମେଘ ଫାଟିଯାଏ, ବର୍ଷା ଝରେ ।

ମାନେ ଯାହାକୁ ପ୍ରେମ କହନ୍ତି ! ମିଷ୍ଟର୍ ନାୟକ ଆପଣା ଆବିଷ୍କାରର ଆଶ୍ଚର୍ଯ୍ୟରେ ପୁଲକିତ ହେଲେ । ବେଦନା ଉଭେଇଗଲା । ସେ ଆଖି ଖୋଲିଲେ । ସେକ୍ରେଟେରୀ ଏଥର କେଉଁ କ୍ୟାଣ୍ଟିନ୍, କେଉଁ ପାଇଖାନା କଥା କହୁଛନ୍ତି, ସେ ବୁଝି

ପାରିଲେ ନାହିଁ । ଅବାନ୍ତର । କେବଳ ଶବ୍ଦ, ଶବ୍ଦ । ପ୍ରେମର ସଙ୍ଘାତରେ କଟିଯିବ, ନିର୍ମୂଳ ହୋଇଯିବ । ପ୍ରଫୁଲ୍ଲ ବଦନରେ ମିଷ୍ଟର ନାୟକ ହସିଲେ । ସେହି ହସର ତୁଳନା ଦେବାକୁ ହେଲେ କୌଣସି ମହାତ୍ମା ଓ କୌଣସି ମହାପ୍ରେମିକର ହସକୁ ଏକାଠି କରି ଦେଖିବାକୁ ହେବ ।

ହସିବା ସଙ୍ଗେ ସଙ୍ଗେ ସେ ୟୁନିଅନ୍ ସେକ୍ରେଟେରୀଙ୍କୁ ଦବେଇ ଦେଇ ପାରିଲେ । କେବଳ ହାତଟେକି ମୃଦୁଗମ୍ଭୀର ସ୍ୱରରେ କହିଲେ—"ଶୁଣନ୍ତୁ । ମୁଁ ଦୋଷୀ ।"

ସେକ୍ରେଟେରୀ ରିଜାକ୍ ଆଲ ଅପ୍ କରି ରହିଗଲେ । ଟେଣ୍ଡ ତାଙ୍କର ପାଟି ଇଷତ୍ ମେଲା ହୋଇଗଲା । ବିସ୍ମୟର ଗ୍ୟପରେ ପ୍ରେସିଡ଼େଣ୍ଟ ସତ୍ୟବ୍ରତ ସିଂ ଚଉକିରୁ ଅଧା ଉଠି ପୁଣି ବସି ପଡ଼ିଲେ । ଜନତା ସ୍ତବ୍ଧ ।

ମିଷ୍ଟର ନାୟକ ବନା ଦ୍ୱିଧାରେ ଆଗେଇ ଗଲେ । ସହଜ ସ୍ୱଚ୍ଛନ୍ଦ ଗତିରେ କହି ଗ୍ଲଲେ—

"ମୁଁ ଦୋଷୀ । କାହିଁକିନା ମୁଁ ଆଜଯାଏ ଆପଣମାନଙ୍କୁ କହିପାରି ନାହିଁ । ମୁଁ କେବଳ ଚଉକିରେ ବସିଛୁ, ଫାଇଲରେ ଅର୍ଡ଼ର ଦେଇଛୁ, କେତେବେଳେ କେମିତି ଉପଦେଶବାଣୀ ଶୁଣାଇଛୁ ଏବଂ ସଦା ସର୍ବଦା ଭାବିଛୁ ଯେ ଦପ୍ତରର ଉନ୍ନତି ହେଉ, ଆପଣମାନଙ୍କର ମଙ୍ଗଳ ହେଉ, ମୋର ପ୍ରମୋସନ୍ ହେଉ । ଏଇ କ'ଣ ଯଥେଷ୍ଟ ?"

ପ୍ରଶ୍ନର ଯଥାର୍ଥତା ବୁଝି ପାରିଲା ପରି କେତେଗୁଡ଼ାଏ ମୁଣ୍ଡ ଉଠିଲା ପଡ଼ିଲା ।

"ନୁହେଁ, ଶତବାର ନୁହେଁ । ମୋର ଆପଣଙ୍କୁ କହିବା ଉଚିତ ଥିଲା । ଆପଣ-ମାନଙ୍କର ନିଜ ନିଜର ଦେହମନ, ଘରଦ୍ୱାର, ଭୋକଶୋଷ, ହସକାନ୍ଦ ମୋ ଆଖିରେ ଦିଶି ଯାଉଥିଲା—ସକାଳୁ ସଞ୍ଜଯାଏ—ତଥାପି ମୁଁ କିଛି କହିପାରିଲି ନାହିଁ, ଦେଇପାରିଲି ନାହିଁ । କାହିଁକି ?···ମୁଁ ଦୋଷ କରିଛି । ତା'ର ବିଗ୍ୟର ଆପଣଙ୍କ ଉପରେ,···କିନ୍ତୁ ମୁଁ ଆଜି କହିବି ।"

ଯେଉଁ ଲୋକଟିର ଚଳଚଳ ନାଲି ଆଖି, ସେ ଠେଲି ହୋଇ ଆଗକୁ ଆସିବାକୁ ଚେଷ୍ଟା କଲା । ସତେ କି ମିଷ୍ଟର ନାୟକ ଯାହା କହିବେ ତାକୁ ସେ ଆଗରୁ ସି ଗୋଟେଇ ନେବ । ତା'ର ଅଭାବ ସବୁଟାରୁ ବେଶି । ଯେଉଁ ଶ୍ରମିକ ଗାନ୍ଧିଟୋପି ପିନ୍ଧିଥିଲା ସେ ଟୋପିକୁ କାଢ଼ି ଦେଇ ତା' ଚନ୍ଦାମୁଣ୍ଡକୁ ନିଷ୍ଠୁର ଭାବରେ କୁଣ୍ଡେଇ ହେଲା । ମୋଟ ଉପରେ ପ୍ରତ୍ୟେକ ଲୋକ କିଛି ନା କିଛି କରିବାର ଦେଖାଗଲା ଓ

ସେମାନେ ଆଣ୍ଠୁର ପାଖକୁ ଲାଗି ଆସିଲେ । ଏହିକ୍ଷଣି ଦୂରରୁ ଦେଖିଲେ ମନେହେବ ଯେ ସେଗୁଡ଼ର ଏକ ସଙ୍ଗୀନ ଅବସ୍ଥା ଆସିଯାଇଛି; ସେମାନେ କର୍ତ୍ତୃପକ୍ଷଙ୍କ ଅଙ୍ଗହାନି କରିବାକୁ ବସିଲେଣି ।

ମିଷ୍ଟର ନାୟକ ଅବିଚଳିତ । ବରଂ ତାଙ୍କର ମନେହେଲା ଯେ ଏମାନେ ଯେତେ ପାଖକୁ ଆସିବେ, ସେ ସେତେ ଅଧିକ ଦେଖିପାରିବେ । ପ୍ରତି ଲୋକର ଅସଂଖ୍ୟ ଇନ୍ଦ୍ରିୟ, ପ୍ରତି ଇନ୍ଦ୍ରିୟକୁ କହିବା ଭଲପାଇବାରେ ଭରି ଦେଇ ହେବ ।

ଟଳଟଳ ନାଲି ଆଖି ତାକୁ ଦେଖିଲେ ମନେହୁଏ ଯେ ସେ ଯେଉଁ ଜଳରେ ଥାଏ ସେଠି ଖାଲି ଧୂଆଁ । କୋଇଲା ଚୁଲିର ଧୂଆଁ, ଘସିଜଳାର ଧୂଆଁ, ବିଡ଼ି ଓ କଲାପିଙ୍କାର ଧୂଆଁ । ସେହି ଧୂଆଁର ଆବରଣ ଭିତରେ କେଉଁ ଗୋଟିଏ ଭଡ଼ାଘର ବଖରାରେ ଦଉଡ଼ି ଝୁଲୁ ଥିବ । ଆଜି ସେ ଗାଧୋଇ ସାରି ହେଇଠୁ ଏଇ ନୂଆରିଆ ଜାମାକୁ ଓଟାରି ଆଣି ତା ଗୋରା ଥୁଲୁଥୁଲିଆ ଦେହରେ ଗଳାଇଥିବ, ଆଉ ସୁଡ଼ୁ ସୁଡ଼ୁ କରି ଚା' ପିଇଥିବ । ତରତର ହେବାର ଭଙ୍ଗୀରେ ଅଧା ଖୁଆ ପିଇ ସ୍ତ୍ରୀ ଆଡ଼କୁ ହାତ ହଲାଇ କହିଥିବ—ଆଜି ଜଲ୍‌ଦି ଯିବାକୁ ହେବ । ଘେରାଉ ଅଛି, ଘେରାଉ । ବଡ଼ ସାହେବଙ୍କ ଘରେ ଘେରାଉ । ସେତେବେଳେ ତା'ର ଚେହେରା ଉଠିଥିବ । ଚେହେରା ଦେଖି ତା' ସ୍ତ୍ରୀ ତାକୁ ନିଶ୍ଚୟ ଭଲପାଇଥିବ ।··· ହାଡ଼ୁଆ ମରଦ । ସେ ଏହିକ୍ଷଣି ତା'ର କାମିଜର ହାତକୁ ଟେକୁ ନାହିଁ, କିନ୍ତୁ ତା'ର ଓଠର ଫାଳେ ଟାଣି ହୋଇଯାଇଛି । ମନେହେଉଛି ଯେ ସେ ନିଜକୁ ଟାଣିଧରୁଛି, କାଲେ ହୁଗୁଳା ହୋଇଯିବ, କାଲେ ନରମିଯିବ । ସେ ତା' ବିସ୍ତୃତ ପାଦର ପଞ୍ଝାକୁ ଭଲପାଏ । ତାକୁ ପୋଖରୀ ଗୁଡ଼ରେ ଘସିମାଜି ସଫା କରେ ରଙ୍ଗ ଖେଳାଇ ଦିଏ । ଏବଂ କ୍ଷଣକରେ ଧୂଳିଧୂସର କରିଦିଏ । ତା'ର ଗୁଡ଼ାଏ ପିଲା ଅଛନ୍ତି । ତା' ସାଥିରେ ମଣିଷ ସାଲୁବାଲୁ, କୁକୁର ହାଉକାଉ; ବାରି କବାଟକୁ ବାରିକବାଟ ପାଇଖାନାକୁ ପାଇଖାନା ଅନେଇଛି । ସେ ଆଜି ବାରିପଟେ ଖାଲି ପାଦରେ ଚଟାଣ ମାଡ଼ି ଛିଡ଼ା ହୋଇଥିବ, ଅଣ୍ଟାରେ ହାତଦେଇ ଛିଡ଼ା ହୋଇଥିବ ଓ କେଉଁ ଝଣ୍ଡୀ କୁକୁରକୁ ଚରୁଡ଼ାଏ ରୁଟି ପକାଇଦେଇ ଆଉ ଚହ୍ଲୁଡ଼ାଏ ପକାଉଥିବ,—ଆଜି ଶଳା ଘେରାଉ, ଜବରଦସ୍ତ ଘେରାଉ···ସେ ରୁମାଲରେ ମୁହଁ ପୋଛୁଛି । ସେ ଭ୍ରାମ୍ୟମାଣ ଜୀବ । ସେ ପଡ଼ିଆରେ ବୁଲେ, ବଜାରରେ ବୁଲେ । ସିନେମା ପୋଷ୍ଟର୍‌ର ଅର୍ଦ୍ଧନଗ୍ନା ନାରୀମାନଙ୍କୁ ଗୁହିଁରହେ ଓ ମୁହଁ ପୋଛେ; ପାନଦୋକାନର କୁହୁଡ଼ିଆ ଦର୍ପଣରେ ନିଜର ପ୍ରତିବିମ୍ବ ଦେଖେ ଓ ମୁହଁ ପୋଛେ; ଖୁଆ ଦୋକାନରେ ବନ୍ଧୁମାନଙ୍କ ସହିତ ଘୋର ପୁଲକରେ ଓ ଘନ ଘନ ମୁହଁ ପୋଛେ । ସେ ବାମପନ୍ଥୀ, ଫ୍ରଏଡ଼୍ ବାଦୀ ଓ ନାସ୍ତିକ । ହଁ, ମୁଁ ତାକୁ ଜାଣିଛି । ସେ ସକାଳେ ତା'ର କେତେଜଣ ବନ୍ଧୁଙ୍କୁ ଖୋଜି ଖୋଜି ବାହାର କରିଥିବ ଓ ଜଣାଇଥିବ,—"ମୁଁ" ଆଜି ଘେରାଉ

କରିବ । ଆମେ ଆଜି ଘେରାଉ କରିବୁ । ନିଜର ଦାବୀ ନିଜ ହାତରେ ଓଟାରି ନେବାକୁ ହେବ । ଏବଂ ସନ୍ଦେହ ନାହିଁ, ସେ ଜୋରରେ ମୁହଁ ପୋଛୁଥିବ ।···ଟୋପି ପିନ୍ଧା ଶ୍ରମିକ । ବର୍ତ୍ତମାନ ତା' ମୁଣ୍ଡରେ ଟୋପି ନାହିଁ, କିନ୍ତୁ ଥିବା ଉଚିତ । ଟୋପିଟି ଧଳା, ତୋଫା ଧଳା । ବାକିସବୁ କଳା । ସେ ଯେଉଁ ବସ୍ତିରେ ଥାଏ, ସେଥିର ନର୍ଦ୍ଦମା କଳା ଓ ବହଳ । ତା ସାଙ୍ଗକୁ କଳା ଗୋବରର ସ୍ତୂପ । କିନ୍ତୁ ସେଠି ଅଛୁ ନିସ୍ତେଜ ବାମ୍ପ, ଉତ୍ତପ୍ତ ଓ ଧର୍ମ । ନର୍ଦ୍ଦମା ପାଣି ଉପରେ ହସ୍ତେନ୍ଦପର ଆଲୁଅ ଜୁକୁଜୁକୁ କରେ ଓ ଶ୍ରମିକବର ତା' ମାଟି ପିଣ୍ଡାଉପରେ ବସି, ମୁଣ୍ଡରେ ଟୋପି ଲଗାଇ ତୁଳସୀ ରାମାୟଣ ପଢ଼େ । ମୁଁ ଜାଣେ, ମୁଁ ଜାଣେ । ଆଜି ସେ କାମକୁ ବାହାରିବା ଆଗରୁ ପରମ ଯତ୍ନରେ ଟୋପି ପିନ୍ଧିଥିବ, ଓ ରାମାୟଣକୁ ଛୁଇଁ ଆସନ୍ନ ଘେରାଉକୁ ସ୍ମରଣ କରିଥିବ । ଅପର ଲୋକଙ୍କୁ ଜଣାଇବାକୁ ଚାହିଁ ନ ଥିବ, କାଳେ ତା'ର ମାହାତ୍ମ୍ୟ ନଷ୍ଟ ହୋଇଯିବ ।···ବାବୁରି ବାଳ, ପାନ ଖାଇ ପାଟି ନାଲିକରିଛୁ । ସେ ବଜାର, ଅସଲ ବଜାରି । ସେ ଯାହାକୁ ପ୍ରେମରେ ଆକ୍ରମଣ କରେ, ତା'କୁ ଅଶ୍ଳୀଳ କଥା କୁହେ । ସେତେବେଳେ ତା'ର ପ୍ରେମିକା ଖିଲ୍ ଖିଲ୍ ହୋଇ ହସେ ।··· ଶେତା ଫାଟୁଲ ମୁହଁଟା ଅଳସୁଆ । ଯାଉଁଶୁ ଅପୁଣୁ ଖାଏ, ଆଖିର ଗୁଡ଼ ଖୁରୁଡ଼ ନଡ଼ିଆ ଯାହା ପାଇବ ପାଟିରେ ପକାଏ । ନ ହେଲେ କି ତା' ଭଉଣୀମାନେ (ପାଞ୍ଚ ଭଉଣୀ) ତାକୁ ଏତେ ଚିଡ଼ଉଥାଆନ୍ତେ, ଏତେ କାମ ବଢ଼ାଉଥାଆନ୍ତେ ! କିନ୍ତୁ ସେ ଠିକ୍ କରିଛୁ ଯେ ବାହାହେବ ନାହିଁ, ଭଉଣୀମାନଙ୍କୁ ବାହା ଦେଇ-ସାରିଲେ ବଡ଼ ବଡ଼ ରେସ୍ତୋରାଁରେ ଭଲ ଭଲ ଜିନିଷ ଖାଇବ,—ଗୃଉମିନ୍, ରୋଗନ୍ ଜୋସ୍, ସିକ୍ କବାବ୍ ।···

ଇସ୍ ମୁଁ ଏମାନଙ୍କ ବିଷୟରେ କ'ଣ ନ ଜାଣେ ! ମୋର କଳ୍ପନା ଭୁଲ୍ ନୁହେଁ । ମୁଁ ଏମାନଙ୍କୁ ଦେଖିଛି, ନହେଲେ ଏମାନଙ୍କ ଜାତି ଭାଇଙ୍କୁ ଦେଖିଛି । ମୁଁ ତାଙ୍କର ସେହି ଗୁଣ ଅବଗୁଣଗୁଡ଼ିକୁ ଭଲ ପାଏ । ସେଥିର ଅଣ୍ଡା, ସେଥିର ଗରମ, ସେଥିର ପୃଥିବୀଟୁଆଁ ଷଡ଼ରସ, ଅମୃତ । ପିଲାଦିନୁ ଭଲପାଏ । ମୁଁ ଏମାନଙ୍କୁ କହିବି ନାହିଁ ତ କହିବି କାହାକୁ ?

ଏ ଭଳି ଭାବରେ ଆପ୍ଳୁତ ହୋଇ ମିଷ୍ଟର ନାୟକ ଯାହା କହି ଗଲେ, ତା'ର ଭଗ୍ନାଂଶ ଏହିପ୍ରକାର—

"···ଆପଣମାନେ ସଂସାରକୁ ଧରି ରଖିଛନ୍ତି । ଆପଣମାନଙ୍କର କାମ,—କେବଳ ଅଫିସ କାମ ନୁହେଁ—, ଘର କାମ ବାହାର କାମ, ଦଣ୍ଡଧାର ନ୍ତ୍ରାଖେଳା ନେଇ ଚକ ଘୂରୁଛି । ଏଇ ହେଉଛି ସତକଥା । ଏ ଚକ ଆହୁରି ଘୂରିବ । ତା'ର ଷ୍ଟୁଲିଙ୍ଗ ଦୂର ଦୂରାନ୍ତରେ ଛୁଟିକି ପଡ଼ିବ, ମଣିଷକୁ ଡେଇଁ ପହଞ୍ଚିବ କେଉଁ ସୂର୍ଯ୍ୟ,

କେଉଁ ଭାଗ୍ୟାଖରେ । ମଣିଷ ଜାତିର ଅଭ୍ୟୁତ୍ଥାନର । ମାନେ ଆପଣମାନଙ୍କର କାମ । ତାକୁ କିଏ ରୋକିପାରିବ ?

"କିଏ ବାଧା ଦେବ··· ?"

"ଏଇ ବୋନସ୍ । ଏଇ ଚିକିତ୍ସା ଭତ୍ତା । ରହିବାର ବ୍ୟବସ୍ଥା । ଇତ୍ୟାଦି ଇତ୍ୟାଦି । ଏସବୁ ଆପଣମାନଙ୍କର ଦାବୀ ନୁହେଁ, ସଂବର୍ତ୍ତିନର ଦାବୀ । ଏ ଦାବୀକୁ ମେଣ୍ଟାଇବାକୁ ହେବ । ନ ହେଲେ ଚକ ଧୁମେଇଯିବ, ଗତିର ଆନନ୍ଦ କମି କମି ଯିବ ( ସେ ଗୋରି କୋମଳାଙ୍ଗ କିରାଣୀ ସୁଡ୍ଡ୍ ସୁଡ୍ଡ୍ କରି ଚ୍ହା ପିଇପାରିବ ନାହିଁ, ଚ୍ହାପାଇଁ ଚିନି ନାହିଁ···ସେ ହାଡୁଆ ମରଦ ଘରେ କବାଟ କିଳି ଶୋଇବ, କୁକୁରମାନେ ଫେରିଯିବେ···ବାମପନ୍ଥୀ ଲୁଚି ଲୁଚି ବୁଲିବ । ବନ୍ଧୁକୁ ଦେଖିଲେ ତା ମୁହଁ ପ୍ରକୃତିରେ ଝାଳେଇବ···ଧଳା ଟୋପି ମଇଳା ହୋଇଯିବ, ହୁଏତ ନର୍ଦ୍ଦମାରେ ଖସିପଡ଼ିବ···ବଜାର ଅଶ୍ଳୀଳ କଥା କହିପାରିବ ନାହିଁ । ଗୁଚ୍ଛାଟାକୁ ବଡ଼ ବଡ଼ ହେବ···ଫାପୁଲ ମୁହାଁର ଭେକ ମରିଯିବ··· ) । ଅସମ୍ଭବ ! ମୁଁ ତା ହେବାକୁ ଦେବି ନାହିଁ ।

"ମୁଁ କର୍ତ୍ତୃପକ୍ଷ ନୁହେଁ, ସରକାର ନୁହେଁ, ଭଗବାନ ନୁହେଁ, ମୁଁ ମଧ୍ୟ ମଣିଷ । ମୁଁ ଆପଣମାନଙ୍କୁ ଜାଣେ, ଭଲଭାବରେ ଜାଣେ, ଭଲପାଏ···"

ଏଇଠି ମିଷ୍ଟର ନାୟକ ଅଟକିଲେ । ସମ୍ମୁଖକୁ ଚାହିଁ ତାଙ୍କର ମନେହେଲା ଯେ ଜନତା କେବଳ ଆଗ୍ରହୀ ନୁହେଁ, ଲୁବ୍ଧ । ଯେତିକି କଥା କହିବାକୁ ଅଛି, ତା ବୋଧହୁଏ ଅଣ୍ଟିବ ନାହିଁ । ତା'ପରେ ?

ଯାହାହେଉ ସେ କ୍ଷଣକରେ ନିଜକୁ ସୁଧାରି ନେଲେ । ଜନତାକୁ ଡେଙ୍ଗିଦେଲା ପରି ତାଙ୍କ ପରବର୍ତ୍ତୀ କଥାଗୁଡ଼ିକୁ ନଚାଇ ଦେଲେ—

"ଆସନ୍ତୁ ପ୍ରେସିଡ଼େଣ୍ଟ ସାହେବ ।

"ଆସନ୍ତୁ ସେକ୍ରେଟେରୀ ସାହେବ ।

"ଆଣନ୍ତୁ ଆପଣଙ୍କ ଦାବୀପତ୍ର । ମୁଁ ଗୋଟି ଗୋଟି କରି ଦେଖିବି । ଦେଖିବି କାହାର ସାଧ୍ୟ ଅଛି ତାକୁ ଟାଳି ଦେବ । ଦରକାର ହେଲେ ମୁଁ ନିଜେ ଦିଲ୍ଲୀ ଯିବି । ଦିଲ୍ଲୀ କାହିଁକି, ଲଣ୍ଡନ ଯିବି, ଓ୍ୱାସିଂଟନ ଯିବି, ମସ୍କୋ ଯିବି । ବୁଝାଇ ଆସିବି ଯେ ଆମ ଦେଶର କର୍ମୀ କେଉଁଥିରେ ଊଣା ନୁହନ୍ତି, ତାଙ୍କୁ କେଉଁଥିରେ ଊଣା କରିବାର ନୁହେଁ ।"

ସହସା କରତାଳି ବାଜି ଉଠିଲା । ଡାଇରେକ୍ଟରଙ୍କ କାମରା ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ କମ୍ପିତ ହେଲା ଏବଂ ମିଷ୍ଟର ନାୟକ ଥମି ଗଲେ ।

ଏଥର ମିଷ୍ଟର ନାୟକ ବେଶ୍ କିଛି ସମୟ ରହିଗଲେ । ଏମାନେ ତାଳି ମାରିଲେ । ମୋ କଥାରେ ତାଳି ମାରିଲେ ସତେ କି ମୁଁ ତାଙ୍କର ଦଳର ଲୋକ, ଦଳପତି, ବଡ଼ପଣ୍ଡା ! କାଲି ସକାଳେ ମୋତେ ତାଙ୍କ ସାଙ୍ଗରେ ପତାକା ଧରିବାକୁ କହିବେ, ଇନ୍କିଲାବ୍‌ର ଡାକ ଛାଡ଼ିବାକୁ କହିବେ !!

ହେଉ—କ୍ଷତି କଅଣ ? ମୁଁ କଣ ଏଇଆ ଚାହିଁ ନ ଥିଲି ?

ନା, ମୁଁ ମୋ ଚାକିରିକୁ ଡରୁଛି ? ଚାକିରି ଚାଲିଗଲେ ମୋ ପେଟ ଅପୋଷା ରହିବ ନାହିଁ । ପିଲାଏ ହୁଏତ ଟିକିଏ କଷ୍ଟ ପାଇବେ । ପାଇଲେ ପାଇବେ,—କଣ କରାଯିବ ? ତା' ବୋଲି ମୁଁ ପଛଘୁଞ୍ଚା ଦେବ ନାହିଁ । ଯାହା କହିବାକୁ ଠିକ୍ କରିଛି, ନିଶ୍ଚୟ କହିବି ।

ନିଶ୍ଚୟ । ନିଶ୍ଚୟ । ···ମିଷ୍ଟର ନାୟକ ନିଜର ସଂକଳ୍ପକୁ ଦୋହରାଇଲେ । କିନ୍ତୁ ତାଙ୍କୁ ଏକା ସାଙ୍ଗରେ ହସିବାକୁ ଓ କାନ୍ଦିବାକୁ ଇଚ୍ଛା ହେଲା । ଯେପରିକି ସେ କିଛି ପାଇବାକୁ ବସିଛନ୍ତି ଯାହା ସେ କେବେହେଲେ ପାଇବେ ବୋଲି ଆଶା କରି ନ ନ ଥିଲେ, ଓ କିଛି ଛାଡ଼ି ଦେବାକୁ ଯାଉଛନ୍ତି ଯାହା ଆଜିଯାଏଁ ତାଙ୍କ ଜୀବନକୁ ଆବୃରି ରଖିଥିଲା ।

ଏହି ଆନ୍ଦୋଳନକୁ ଅତିକ୍ରମ କରି ମିଷ୍ଟର ନାୟକ ପୁଣି କଥାର ଖିଅ ଧରିଲେ—

"ମୋତେ ଆପଣମାନେ ସାହାଯ୍ୟ କରନ୍ତୁ । ମୁଁ ଏକା ପାରିବି ନାହିଁ । ମୋତେ କୁହନ୍ତୁ କେଉଁଟାକୁ ଆଗେ ଧରିବି । ବୋନସ ? ମହଙ୍ଗା ଭତ୍ତା ? ଲିଭ୍ ରୁଲସ୍ ? ନା ଆଉ କିଛି ? ଯାହା କହିବେ ସେଇଆ କରିବି । ତା'ପରେ ଆମେ ଏକାଠି ବସିବା, ଆଲୋଚନା କରିବା, ଉପାୟ ଠିକ୍ ହେଲା ପରେ ମୁଁ ନିଜେ ତା'ର ଦାୟିତ୍ୱ ନେବି । ଦେଖିବି ଯେ ଅର୍ଡ଼ର କିପରି ହେବ, ଟଙ୍କା ଆସିବ । ଯଦି ନ ହୁଏ, ତାହାହେଲେ ମୁଁ—ମୁଁ—

"ମୋତେ ଆପଣମାନେ ସାହାଯ୍ୟ କରନ୍ତୁ ।"

ଯଦି ନ ହୁଏ ତାହାହେଲେ ମିଷ୍ଟର ନାୟକ କଣ କରିବେ ତାହା ସ୍ପଷ୍ଟ ହେଲାନାହିଁ । କିନ୍ତୁ ତାଙ୍କର ପେଲବ-ପ୍ରବୀଣ ମୁହଁ ସକରୁଣ ହେଲା । ସେ ନିଜେ ତାର ମଧୁରତା ଅନୁଭବ କଲେ । ଅନୁଭବ କଲେ ଯେ ସେ ପ୍ରକୃତରେ ଆଉ କିଛି କହି ପାରିବେ ନାହିଁ । ସେ ଭଲ ପାଇବାର ସେହି ଅବସ୍ଥାରେ ପହଞ୍ଚିଲେଣି ଯେତେବେଳେ

ଆଉ କିଛି କହି ହୁଏ ନାହିଁ । ନିଜକୁ ସଁପି ଦେବାକୁ ଇଚ୍ଛା ହୁଏ । ଏଥର ମୁଁ ତୁମର । ଯାହା କହିବ କୁହ । ଯାହା କରିବ କର ।

କିନ୍ତୁ ତାଙ୍କ ମନରେ ଏକ କ୍ଷୀଣ ସନ୍ଦେହର ଗ୍ରାର ପଡ଼ିଲା । ଏ ମୋର ଦୁର୍ବଳତା ନୁହେଁ ତ ? ହାରି ଯିବାର ସରିଯିବାର ଲକ୍ଷଣ ନୁହେଁ ତ ?

ଏହି ସମୟରେ ଫାପୁଲା ମୁହଁାରେ ସୁମିଷ୍ଟ 'ହାର୍' ବା ସେହିପରି କୌଣସି ଧ୍ୱନି ନିର୍ଗତ ହେଲା । ମିଷ୍ଟର ନାୟକ ତା' ଆଡ଼କୁ ଚାହିଁଲେ, ପରେ ପରେ ଅନ୍ୟ-ମାନଙ୍କୁ ଚାହିଁଲେ । ଏବଂ ତାଙ୍କର ଧାରଣା ହେଲା ଯେ ପ୍ରିୟଜନଗଣ ଅତ୍ୟନ୍ତ ପାଖେଇ ଆସୁଛନ୍ତି । ଅବଶ୍ୟ ଆହୁରି ପାଖେଇ ଆସିବାକୁ ସ୍ଥଳେ ହେଲେ ଜାଗା ନାହିଁ, ତେଣୁ ସ୍ଥାନଚ୍ୟୁତ ଘଟି ନାହିଁ । କିନ୍ତୁ ମୁହଁ ଗୁଡ଼ିକ ଲାଗି ଆସିଲା ପରି ମନେ ହେଉଛି । ଅତଲେସ୍ପୀ ମୁହଁ—ଆଖି, ଓଠ, ନାକପୁଡ଼ା ସେମିତିକା ଏମାନେ ଶେଷ କିନାଷଟିକୁ ଲେଭେଇଲେଣି । ପାମାସ୍ପ ଗ୍ରୁଡ଼ ପାନପାନକୁ ଚାହିଁଲେଣି ।

ସତେତ ଏମାନେ ମୋତେ ଚୁମ୍ବନ କରିବେ ?

ଅଦଭୁତ ଆଶଙ୍କା । ମସ୍ତିଷ୍କ ବିକୃତ । ଏହି ଭାବରେ ମିଷ୍ଟର୍ ନାୟକ ନିଜକୁ ତିରସ୍କାର କଲେ । କିନ୍ତୁ ତାଙ୍କର ଦେହ ଶିହରି ଉଠିଲା । ତାଙ୍କ କାନରେ କିଏ ବାରମ୍ବାର କହିଲା ପରି ଲାଗିଲା,—ଏଇ ହେଉଛି ଯୌବନ, ଯୌବନର ଶେଷ କଥା । ଏଥର ?

ସେ ପୁଣି ଅଣ୍ଟା ଭିଡ଼ିଲେ, କିଛି କହିବେ ବୋଲି ଗଳା ସଫା କଲେ । ହେଲେ ବଳ ପାଇଲା ନାହିଁ । ···ଆଉ କିଛି କହିବାର ନାହିଁ । ମୁଁ ଅନେକ ଦୂରକୁ ଚାଲି ଆସିଲଣି । ଯାହା ହେବାର ହେବ ।

ମିଷ୍ଟର୍ ନାୟକ ନୀରବ ରହିଲେ । କିନ୍ତୁ ତାଙ୍କ ଭୟର ମାତ୍ରା ଅଧିକରୁ ଅଧିକତର ହେଲା । ଚାକିରି ଚାଲିଯିବାର ଭୟ ନୁହେଁ । ନିର୍ଯାତନାର ଭୟ ନୁହେଁ । ଭୟର କାରଣ ସେହି,—ଚୁମ୍ବନ । ଅର୍ଥାତ୍ ସଂଯୋଗ, ସମ୍ମିଶ୍ରଣ । ··· ହାଣି ହୋଇ ଯାଉଛି । ଆଉ ରକ୍ଷା ନାହିଁ ।

ମୁଁ ସେମାନଙ୍କୁ କହୁଛି—ଭଲ ପାଇଛି । ସତ କଥା । ତା'ର ପରେ ଆଉ କଅଣ ହୁଅନ୍ତା ?

କିନ୍ତୁ—କିନ୍ତୁ—। ଇଲା । ସକାଳ ଚା'ର ଲଜାସ୍ନିତ ଧୂଆଁ । ମାନ ସରୁ ଗାର ଗୋଟିଏ ଯୋଡ଼ିଏ । ତା' ସାଙ୍ଗକୁ ସରସ ଉଡ଼ି ବୁଲୁଥିବା ଗପ । ଏ ମାଲୀଟା କାମକୁ ଧିସଉଛି···ଏ ଚା' ଗୁଡ଼ାକରେ ଫ୍ଲେଭର୍ ନାହିଁ, ମିସେସ୍ ମାଲ୍‌କାନୀ

କହୁଥିଲେ ତାଙ୍କ ମିଲ୍‌ଟାରି କ୍ୟାଣ୍ଟିନ୍‌ରୁ ଶସ୍ତାରେ ଲପ୍‌ଚୁ ଚା' ଅଣେଇ ଦେବେ— ଚୀନା କଅଣ ସତରେ ଯୁଦ୍ଧ କରିବ ? କାଲି ରାତିଠୁ ଦେହଟା କସ୍‌ମସ୍ ଲାଗୁଛି—। କାଲି ରାତିରେ କ'ଣ ହୋଇଥିଲା ମନେ ପଡ଼ୁଛି, ପଡ଼ୁନାହିଁ, ମନେ ପକାଇବାକୁ ଇଚ୍ଛା ହେଉନାହିଁ । ସ୍କାଇ ଲାଇଟ୍‌କ କେଉଁଠୁ ଝାପ୍‌ସା ଆଲୁଅ ଆସି ଯୋଡ଼ାଦେହ ଉପରେ ପଡ଼ୁଥାଏ, ଭଲ ଦିଶୁନଥାଏ । ତା'ପରେ ଇଲା ଘଣ୍ଟାଏ ଧୋଇ ପୋଛି ହେଲା, ସବୁଥର ପରି ଇଲା ମଇଳା ଅସନାକୁ ଘୃଣା କରେ × × ବଉଳିଅ ପ୍ରୀତିର କଲେଜ ଫେରନ୍ତା ଗପ ।—ବାପା, ଇଣ୍ଡିଆ ଏତେ ପୁଅର୍ ନ ହେଲେ କ'ଣ ଚଳନ୍ତା ନାହିଁ ? ପିଲାଟାର ହୃଦୟ ଅଛି । ଆଉ କାହାର ଝିଅ ଏମିତି ଭାବି ପାରିବ ନାହିଁ । × × ବଡ଼ପୁଅ ପ୍ରେମ୍ । କ'ଣ ଝଣ୍ଡେ ବହି ଧରିଥିଲା, ମୋତେ ଦେଖି ଲୁଚେଇ ପକାଇଲା । ପଚାରିଲାରୁ କହିଲା—ଏକ୍‌ଜିଷ୍ଟେନ୍‌ସିଆଲିଜମ୍ । ତା' ମୁଣ୍ଡରେ ବଡ଼ ବଡ଼ କଥା ଖେଳେ । କିନ୍ତୁ ବହିଟାକୁ ଲୁଚେଇଲା କାହିଁକି ? × × ବନ୍ଧୁମାନେ । ଟ୍ରେଡ଼ିଆ ଗପ ।—ଶୁଣିଛନ୍ତି ? ନ୍ୟାସନାଲ୍ କେମିକାଲ୍‌ସ୍‌ରେ ଘେରାଉ । ଏ ଗଭର୍ଣ୍ଣମେଣ୍ଟର କିଛି ଗୋଟାଏ ପଲିସି ନାହିଁ,—ହେବ କଅଣ ?···ବନ୍ଧୁ ପତ୍ନୀ ମିସେସ୍ ଦଲାଲ୍ ଯୋଡ଼ିଦେଲେ, ଅଫଲ ହେଉଛି ଡିସିପ୍ଲିନ୍ । ଦେଶରୁ ଡିସିପ୍ଲିନ୍ ଚାଲିଗଲାଣି । ମିସେସ ଦଲାଲ୍‌ଙ୍କର ପେଟ ବାହାରିଛି ସିନା, କିନ୍ତୁ ତାଙ୍କର ଖୋଲା ପିଠି ଗୋରା ସୁନ୍ଦର ।

ସେମାନେ କଅଣ ଭାବିବେ ? ମୁଁ ତାଙ୍କୁ କଅଣ କହିବି ? ନା, ନା—ମୁଁ ପାରିବି ନାହିଁ । ମୋତେ କ୍ଷମା କର । ମୁଁ ତାଙ୍କରି ଭିତରୁ ଜଣେ । ମୁଁ ତୁମ୍ଭମାନଙ୍କୁ ଭଲପାଏ, ହଜାରବାର ଭଲପାଏ, କିନ୍ତୁ ମୋତେ ଚୁମ୍ବନ ଦିଅ ନାହିଁ, ତୁମ ଭିତରକୁ ଟାଣି ନିଅ ନାହିଁ । ମୁଁ ପାରିବି ନାହିଁ ।

ମୋତେ ମାଟିରେ ପାଦ ଲଗାଇବାକୁ ଭଲଲାଗେ । କିନ୍ତୁ ମାଟି ତାତେ ଓ ହେମାଳ ହୁଏ । ଗୋଡ଼ ଟେକି ଛଟପଟ ହୋଇ ନାଚିବାକୁ ପଡ଼େ । ମୁଁ ସେ ଆନନ୍ଦ ନୃତ୍ୟ କରି ପାରିବି ନାହିଁ, ପାରିବି ନାହିଁ ।

ମୁଁ ପାରିଥାଆନ୍ତି । ଯେବେ ମୁଁ ଶ୍ୱଶୁରଙ୍କ ଲାଇବ୍ରେରୀ ଘରେ ଇଲାର ହାତ ଧରି ଇନକିଲାବ୍ କହିଥିଲି । ହେଲେ ଏବେକ୍ଷଣି କିଏ ପାରିବ ? ଇଲା ପାରିବ ? ମୋର ଭାଇ ବନ୍ଧୁ କୁଟୁମ୍ବ କେହି ପାରିବେ ? ତାହାହେଲେ ମୋର ମୁଣ୍ଡରେ କ'ଣ ଶିଙ୍ଗ ଛୁଟିଛି ?

କିନ୍ତୁ ମୁଁ ଏମାନଙ୍କୁ ଅନେକ କଥା କହୁଛି । ଦେଇଛି । ଫେରି ଆସିବି କେମିତି ? ଏଇ ଦେଖୁନା, ସେହି ବାମପନ୍ଥୀ କେମିତି ଚାହିଁଛି । ବାମପନ୍ଥୀ ପରି ଦିଶୁନାହିଁ, ମୁହଁ ପୋଛୁ ନାହିଁ । ଭୁଲିଯାଇଥିବା ମାଆକୁ ଦେଖିଲା ପରି ମନେ ହେଉଛି ।

ଆଉ ସେହି ବାବୁରବାଲ ବକ୍ଳାଶ—, ସେ ଏମିତି ଆହ୍ଲାଦରେ ହାତ ମଳୁଛୁ କାହିଁକି ? ସତେ କି ମତେ ଦୋସ୍ତ ବୋଲି ଡାକି ନେବ କେଉଁ ବଜାରଗଳିକୁ, ଓ ତା'ର ନୂଆ ପ୍ରେମିକା-ସାଙ୍ଗରେ ଚହ୍ନା କରାଇ ଦେବେ !

ଓଃ ! ମୁଁ କେମିତି ଫେରି ଆସିବି ? କ'ଣ କରିବି ? ମିଷ୍ଟର ନାୟକ ଗଭୀର ଅବସାଦରେ ଦବିଗଲେ । ଷଣେ ଷଣେ ଆଖି ବୁଜିଲେ ଓ ଖୋଲିଲେ ଏବଂ ଦୃଷ୍ଟି ତଳକୁ କଲେ ।

ଯାହାହେଉ ଅଧିକ ବିଳମ୍ବ ହେବା ଆଗରୁ ସେ ନିଜର ଭଙ୍ଗୀକୁ ଜାଣି ପାରିଲେ । କାହିଁକି ନା ଆସି ପହଞ୍ଚିଗଲା ଦୋଟେସନ୍—ଅଉ କେତେ ସମୟ ଆତ୍ମଗୋପନ କରି ରହିଥାଆନ୍ତା ? ଏଥର ଫ୍ରଣ୍ଟ । ଭଗବଦ୍ ଗୀତା । "କୁତସ୍ତ୍ୱାଂ କଶ୍ମଳ ମିଦଂ ବିଷମେ ସମୁପସ୍ଥିତଂ, ଅନାର୍ଯ୍ୟଜୁଷ୍ଟମ ସ୍ୱର୍ଗଂ ଅକୀର୍ତ୍ତିକରମର୍ଜୁନ ।"

ମିଷ୍ଟର ନାୟକ ପାଟି ଫିଟାଇଲେ । ତେବେ ସେ ଗୀତାର ପାର୍ଥସାରଥୀଙ୍କ ପରି ଦେଖା ନ ଯାଇ ଗୋପପୁରର ଶ୍ରୀକୃଷ୍ଣଙ୍କ ପରି ଦେଖାଗଲେ । ସେହି ପୁରୁଣା ସ୍ମିତହାସ, ସେହି ସୌମ୍ୟ ବଦନ । ପୁଣି ସେହି ପ୍ରଲମ୍ବିତ ଗ୍ରୀବା, ପଲ୍ଲବିତ ଓଠ, ଯାହାକୁ ଦେଖିଲେ ମନେ ହେବ ଯେ କୋଟେସନ ଅସୁଛି, ଏଇ ଅସୁଛି । କିନ୍ତୁ ସର୍ବୋପରି ଏକ ଅଭିନବ ଆମୋଦ ଖେଳି ବୁଲୁଥିବାର ଜଣାଗଲା ।

ମିଷ୍ଟର ନାୟକ ପୂର୍ବରୁ କହିଥିବା କଥାଗୁଡିକ ମନେ ପକାଇଗଲେ, ବିଚକ୍ଷଣ ଅଫିସର ପରି ତା'ର ସାରାଂଶକୁ ପରଖି ନେଲେ ଓ ଦେଖିଲେ ଯେ ଠିକ୍ ଅଛି । ସବୁ ଠିକ୍ ଅଛି । ଶବ୍ଦ ଓ ବାକ୍ୟରେ କିଛି ଯାଏ ଆସେ ନାହିଁ । ତା'ର ମଙ୍ଗ ମୋଡ଼ି ଦେଇ ହେବ । ନୂଆ ଅର୍ଥ କରି ହେବ । କହିବାରୁ କରିବାଯାଏଁ, ସ୍ଥିତିରୁ ବିପ୍ଳବ ଯାଏଁ କେତେ କନ୍‌ଫରେନ୍‌ସ, କେତେ ଘେରାଉ, କେତେ ବୁଝାମଣା । ରମାବଲ୍ଲଭ ନାୟକ ଶେଷ ପର୍ଯ୍ୟନ୍ତ ନ ଥିବ, କୈଫିୟତ ଦବାକୁ ନ ଥିବ । କେବଳ ଦେଖ ବର୍ତ୍ତମାନର ମନୋରଞ୍ଜକ ଦୃଶ୍ୟ,—

କର୍ତ୍ତୃପକ୍ଷ ଜାଣିଛୁ । ସେମାନେ ହାରିଛନ୍ତି, ଅଥଚ ଭଲ ପାଉଛନ୍ତି ।

ଏହି ହେଲା ଆମୋଦର ତଥ୍ୟ । ଏହି ହେଲା ତାଙ୍କ ବେପରୁଆ ପଣ ଅର୍ଥାତ୍ ଆତ୍ମବିଶ୍ୱାସର ମନ୍ତ୍ର । ଏହିଭାବରେ ସେ ତାହାପରେ ଲଗାମ୍ ଛାଡ଼ିଦେଲେ, 'ପ୍ରେମରେ) ସେମାନଙ୍କୁ ଖଟେଇ ହେଲେ, ଚମୁଚିଲେ, ଖେହ୍ଲେଇ ହେଲେ । ପୁଣି ଯଥା ସ୍ଥାନରେ କୋଟେସନ୍‌ଗୁଡ଼ିକ ଯୋଖିଦେଲେ,—

"L fe is m de up of sobs, sniffles, and sm les, with sn ffl s p edominatir g" (ଜୀବନ କୋହ, ସୁଁ ସୁଁ ଓ ହସକୁ ନେଇ ଗଢ଼ା, ସୁଁ ସୁଁ ହିଁ ସର୍ବପ୍ରଧାନ ।)—ଓ ହେନ୍‌ରି ।

"There are two tr gedies in l fe One is not to get your heart's desire The oth r s to get it". (ଜୀବନରେ ଯୋଡ଼ିଏ ଟ୍ରାଜେଡ଼ି । ଗୋଟିଏ ହେଉଛି ହୃଦୟର କାମନାକୁ ନ ପାଇବା, ଅନ୍ୟଟି ତାକୁ ପାଇବା ।)—ବର୍ଣ୍ଣାଡ଼୍‌ଶ' ।

"Trifl s make perfection, and pe fection is not a trifle; (ଛୋଟ କଥାଗୁଡ଼ିକ ନେଇ ପୂର୍ଣ୍ଣତା ଆସେ, ପୂର୍ଣ୍ଣତା ଛୋଟ କଥା ନୁହେଁ ।)—ମାଇକେଲ୍ ଆଞ୍ଜେଲୋ । ଇତ୍ୟାଦି ଇତ୍ୟାଦି··· ।

ଜାଣି ବୁଝିଥାଆନ୍ତା ଯେ ଏ ବାଜେ ଗପ ନୁହେଁ, ଜୀବନର ରହସ୍ୟ କଳା ଓ ଧଳା ମଧ୍ୟରେ ପାର୍ଥକ୍ୟ ନାହିଁ । ଦାବୀ ପୂରଣ ଓ ଦାବୀ ଦଳନ, ଆରୋହଣ ଓ ଅବରୋହଣ ଏକା ଧାତୁରେ ଗଢ଼ା ।

କିନ୍ତୁ ସେମାନେ ମନେକଲେ ଯେ ଏ ହେଉଛି ପ୍ରେମର ଉପଦେଶ । ସେମାନେ ଆହ୍ଲାଦିତ ହେଲେ, କେତେମତେ ଓ ପାଟ୍ଟିପଷେଯନ୍ତେ ହସିଲେ । କାହିଁକି ନ ହସିବେ ? ପ୍ରେମରେ କ'ଣ କେବଳ ଗମ୍ଭୀରତା ଅଛି, ଲଘୁତା ନାହିଁ ? କାବ୍ୟ ଅଛି, କଉତୁକ ନାହିଁ ?

ନିଜେ ଜନତାର ମହାମେରୁ ପ୍ରେସିଡେଣ୍ଟ ସତ୍ୟବ୍ରତ ସିଂ ମୃଦୁ ମୃଦୁ ହସିଲେ । ଏବଂ ଅନ୍ୟମାନଙ୍କ ଅଡ଼କୁ ଚାହିଁ ଜଣାଇଦେଲେ ଯେ ସେ ପ୍ରେସିଡେଣ୍ଟ ହେଲେ ମଧ୍ୟ ମଣିଷ ।

ଚୁଟର୍ସ ଅଫ୍ ଡିମାଣ୍ଡ୍‌ର ଫର୍ଦ୍ଦ ଗୁଡ଼େଇ ହୋଇ ଯାଇଥିଲା । ହୁଏତ ବିସ୍ମୃତ ହୋଇ ରହିଯାଇ ଥାଆନ୍ତା । କିନ୍ତୁ ଜଣେ ତାକୁ ମନେ ପକାଇଦେଲା । ଦେହ ଢଳ ଢଳ ନାଲି ଅଣ୍ଟି କୋମଳାଙ୍ଗ ତରୁଣ । ତା'ର କ'ଣ ହେଲା କେଜାଣି ସେ ସେ ପ୍ରେସିଡ଼େଣ୍ଟଙ୍କ ହାତକୁ ଧରିପକାଇଲା ଓ ଚକ୍ରବାରୁଣ କଣ୍ଠରେ କହିଲା, "ଆଜ୍ଞା ସେ ପାଇଖାନା କଥା କିଛି କରନ୍ତୁ ! ଯେପରିକି ସେ ଚୁହେଁ ଯେ ଚୁଟର୍ସ ଅଫ୍ ଡିମାଣ୍ଡ୍‌ସ୍‌ର ଅନ୍ତତଃ ଏତିକି ଉଦ୍ଧାର କରନେବ, ତା' ସ୍ତ୍ରୀକୁ କହିବ ।

ମିଷ୍ଟର୍ ନାୟକ ଓ ୟୁନିଅନ୍‌ର ପ୍ରେସିଡ଼େଣ୍ଟ ଏକାଠି ହସି ଉଠିଲେ । ତା'ପରେ ମିଷ୍ଟର୍ ନାୟକ ତତ୍ପରତାର ଭଙ୍ଗୀରେ ବେଲ୍ ବଜାଇଲେ, କହିଲେ "ନିଷ୍ଟୟ, ନିଷ୍ଟୟ । କେଉଁଅଡ଼ୁ ହେଲେ ଆରମ୍ଭ କରିବାକୁ ହେବ ।"

ଷ୍ଟେନୋ ଆସିଲା ଓ ଡିକ୍‌ଟେସନ୍ ନେଲା ।—ଡିରେକ୍‌ଟରଙ୍କ ଆଦେଶ । ଦୁଇଦିନ ମଧ୍ୟରେ ପାଣି ଗଳିବା ବନ୍ଦ ହେବ, ଦୁର୍ଗନ୍ଧ ଦୂରୀଭୂତ ହେବ ।

...ଏହିପରି ଭାବରେ ସେଦିନ ଘେରାଓ ସମ୍ପନ୍ନ ହେଲା, ଗ୍ରିଭର୍ସ୍ ଅଫ୍ ଡିମାଣ୍ଡସ୍ ପୂରଣ କରିବାରେ ଶୁଭ ଦିଆଗଲା, କର୍ତ୍ତୃପକ୍ଷ ଓ ଜନତା ହାତ ମିଳାଇ ପରସ୍ପରଠାରୁ ବିଦାୟ ନେଲେ ।

...ସେମାନେ ଚାଲିଗଲା ପରେ ମିଷ୍ଟର ନାୟକ ଚଉକିକୁ ଆଉଜି ଗଲେ । ବର୍ଷା ଛାଡ଼ି ଯାଇଥିଲା । ଆସାରସିକ୍ତ ଶୀତ ପବନ ତାଙ୍କ ପାଖକୁ ଆସିଥିଲା ଓ ତାଙ୍କ କପୋଳ ଛୁଉଁଥିଲା ।

ମିଷ୍ଟର ନାୟକ ଶ୍ରାନ୍ତିପୋଷ୍ଟ ଶାନ୍ତି ଅନୁଭବ କଲେ । ଉପଭୋଗ କଲେ । ଉପଭୋଗରେ କିଛି ବାରିବାକୁ ନ ଥାଆନ୍ତା, କିନ୍ତୁ ଦୁଃଖର ବିଷୟ ତାଙ୍କ ଆଖିରେ ପଡ଼ିଲା ଯେ ନିତ୍ୟାନନ୍ଦ ନାୟକ ବର୍ତ୍ତମାନ ସୁଦ୍ଧା ଖାଲି ଘରେ ବସି ରହିଛନ୍ତି ଓ ଦାନ୍ତ ନିକୁଟୁଛନ୍ତି । କେବଳ ସେତିକି ନୁହେଁ ସେ ତୋଷାମଦ ଆରମ୍ଭ କଲେ—

"ଅଧ୍ୟକ୍ଷ ବୋଲି ଅବସ୍ଥାକୁ ସମ୍ଭାଳି ନେଲେ । ବେଶ୍ କୌଶଳରେ ସମ୍ଭାଳି ନେଲେ । ଆଉ କେହି ହୋଇଥିଲେ—"

ସେହିଠୁ ମିଷ୍ଟର୍ ନାୟକଙ୍କ ମନରେ ଗ୍ଲାନି ଆସିଲା ଏବଂ ସେ ଗ୍ଲାନିର ପାତ୍ର ରୂପେ ନିତ୍ୟାନନ୍ଦ ବାବୁଙ୍କ ଆଡ଼କୁ ମନେ ମନେ ତର୍ଜ୍ଜନୀ ଦେଖାଇଲେ,—ଏହି ଲୋକ । ଏମିତିକା ଲୋକ । ଏମାନେ ଅନୂଢ଼ା କୁମାରୀକୁ ଭୁଲେଇ ଦିଅନ୍ତି, ପ୍ରେମର ବଡ଼ ବଡ଼ କଥା କହି ନଗ୍ନତିଆ ପୌଖରୀ କୂଳକୁ ଟାଣି ଆଣନ୍ତି ଓ ତା' ପରେ ବିଜୟ ହାସଲ କରନ୍ତି । ରେମ୍ କରନ୍ତି । ରେପ୍ ! ରେପ୍ !

ମନ୍ଦ ମଧୁର ପବନ ତଥାପି ବହି ଆସୁଥିଲା । ମିଷ୍ଟର୍ ନାୟକଙ୍କ ଅନୁଭୂତିରେ ଆସିଲା ଯେ ନାରୀ ଧର୍ଷଣ ପରେ ଆକାଶରୁ ଯେଉଁ ପବନ ବହେ, ତାହା ବୋଧହୁଏ ଏମିତି ଲାଗେ ।



# ଘେରାଉ

କହିବା ବାହୁଲ୍ୟ ଯେ ମୋର ଚାକିରି ଜୀବନର ଅନୁଭୂତି ସହିତ ଏଇ ଗପର ସମ୍ପର୍କ ଅଛି । କାରଣ ଅନେକେ ଜାଣିଥିବେ ଯେ ବିଭିନ୍ନ ପ୍ରାନ୍ତର ମହାଲେଖାକାର (ଆକାଉଣ୍ଟାଣ୍ଟ ଜେନେରାଲ) ପଦରେ ରହି ମୋତେ ବହୁସଂଖ୍ୟକ 'ପ୍ରଜା' ବିଶିଷ୍ଟ 'ରାଜ୍ୟ' ଚଳାଇବାକୁ ପଡ଼ିଥିବ ଏବଂ ମୋର ରାଜତ୍ୱରେ ପ୍ରଜାମାନେ ଆଦୌ ବିକ୍ଷୋଭ କରି ନ ଥିବେ, ଏଭଳି ଆଶା କରିଯାଇ ନ ପାରେ ବରଂ ସେପରି ଭାବିବା ଅନ୍ୟାୟ—ସତେକି ମୋ ହାତରେ ଦଣ୍ଡ ନଥିଲା କି ମୋ ପ୍ରଜାଙ୍କ ମେରୁଦଣ୍ଡ ନ ଥିଲା ! ନା, ମୋ ଅମଳରେ ଏବଂ ମୋ ଇଲାକାରେ ମଧ୍ୟ ନାନାବିଧ ଧର୍ମଘଟ, ଧାରଣା, ସ୍ଲୋଗାନ୍-ବାଜି ଏବଂ ଘେରାଉ ଅନୁଷ୍ଠିତ ହୋଇଥିଲା ଓ ମୋତେ ତା'ର ମୁକାବିଲା କରିବାକୁ ପଡ଼ିଥିଲା । ତଥାପି ମୋର ଧାରଣା ଯେ ପ୍ରଜାମାନେ ମୋତେ ଉଚିତରୁ ଅଧିକ କ୍ଷମା କରି ଦେଇ ପାରୁଥିଲେ; ଅନେକେ ଭଲ ପାଉଥିଲେ । ଯତେକି ମୁଁ ଶାସକ-ଶୋଷକ ଦଳର ସଭ୍ୟ ହେଲେ ମଧ୍ୟ ଏତେଟା ଦୋଷୀ ନୁହେଁ । କାରଣ ମୋର ନିଜଗୁଣ ଭିନ୍ନ । ଏଇଠି ମୋତେ ଭାବିବାକୁ ପଡ଼େ– ସେମାନେ ମୋତେ ଭିନ୍ନ ବୋଲି ବିଚାରୁଛନ୍ତି କାହିଁକି ? ମୁଁ କଣ ପ୍ରକୃତରେ ତାଙ୍କ ସୁଖଦୁଃଖର ଭାଗୀ ହୋଇ ପାରିଛି, ସେମାନଙ୍କର ନ୍ୟାଯ୍ୟ ଦାବୀ ପୂରଣ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଛି, ଯାହା ଅନ୍ୟମାନେ କରି ପାରି ନାହାନ୍ତି ? ନା ସେମାନେ ମୋର କଅଁଳ କଥା (କୋଟେସନ୍ ବି' ମୋତେ କିଛି କମ୍ ଜଣା ନାହିଁ) ଏବଂ ଲେଖକ-ଇମେଜ୍‌ରେ ଭୁଲି ଯାଇଛନ୍ତି ?

ସଂଶୟରୁ ଆତ୍ମଗ୍ଲାନି କେତେ ଦୂର ? ତେଣୁ ଘେରାଉରେ ପଡ଼ିଥିବା ରମାବଲ୍ଲଭ ନାୟକ, ଯେ ତାଙ୍କ ଲୋକମାନଙ୍କୁ ଭୟ

କଲେ, ସାମ୍ବାଦର ସହିତ ଭଲ ପାଇଲେ, ସେଦିନରୁ ଜାଣିଲେ, ଅଥଚ ଯୁଦ୍ଧ ଶେଷରେ ମୁଁ ଅବଲାକୁ ଧର୍ଷଣ କରିଛୁ ବୋଲି ମନେ ମନେ ରାଗିଲେ ଓ କାନ୍ଦିଲେ, ତାଙ୍କ ସାଙ୍ଗରେ ମୋତେ ତୁଳନା କରାଗଲା ତ କ'ଣ ଭୁଲ୍ ହୋଇଗଲା ? ତଥାପି ମୋତେ ବାଧିଲା । ମୁଁ ମିଷ୍ଟର୍ ନାୟକଙ୍କ ପରି କଦାପି ଏତେ ଦାମ୍ଭିକ ନୁହେଁ, ଯେତେବେଳେ ମୁଁ ଜଣେ ଲେଖକ, ମୁଁ ହରେକ କାମର ଚରିତ୍ର ଗଢ଼ି ପାରିବି, ତେଣୁ ମିଷ୍ଟର ନାୟକ ମୋର ପ୍ରତିବିମ୍ବ ବୋଲି ମନେ କରିବା ହାସ୍ୟାସ୍ପଦ. ଏହିପରି ଭାବରେ ମୁଁ ଉପରୋକ୍ତ ବିଭ୍ରମଧାରାକୁ ସମୂଳ ନାଶ କରିବାକୁ ଚାହିଁଲି । କିନ୍ତୁ କାହାକୁ କହିବି ? କେମିତି କହିବି ? ଘଟଣାଟି ଏହି ପ୍ରକାର—

ମୁଁ ଯେତେବେଳେ ପଶ୍ଚିମବଙ୍ଗର ଆକାଉଣ୍ଟାଣ୍ଟ୍ ଜେନେରାଲ୍ ଭାବରେ କଲିକତାରେ ଥିଲି । ଆମ ଅଫିସ୍ କର୍ମଚାରୀମାନଙ୍କ ୟୁନିଅନ୍ ଗୋଟିଏ ରାଜନୈତିକ ଦଳର ସମ୍ପୂର୍ଣ୍ଣ ଅଧୀନରେ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ପରିପ୍ରେକ୍ଷୀରେ ତାଙ୍କ ନେତାମାନେ ମୋତେ ବ୍ୟକ୍ତିଗତ ଭାବରେ ସମ୍ମାନ ଦେଲେ ମଧ୍ୟ ସରକାରୀ ସ୍ତରରେ ମୋ ସାଙ୍ଗରେ ମାଟି ଫିଟାଉ ନ ଥିଲେ । କାରଣ ମୁଁ ଥିଲି କ୍ଷମତାଧୀନ ତଥା ବିପକ୍ଷ ଦଳର ଅନ୍ୟତମ ନୌକର ଓରଫ୍ ଦଲାଲ । କିନ୍ତୁ ୟୁନିଅନ୍‌ର ବାହାରେ ଯେଉଁମାନେ କଳା ଓ ସଂସ୍କୃତି ନେଇ ମାତିଥିଲେ, ସେମାନେ ମୋ ସାଙ୍ଗରେ ଆଳାପ ନକରି ରହି ପାରିଲେ ନାହିଁ । ସେହି କ୍ରମରେ ସେମାନଙ୍କ ପ୍ରଥମ ସାହିତ୍ୟ ପତ୍ରିକା 'ଅବସର'ର ସମ୍ପାଦନରେ ମୋତେ ମୁଖ୍ୟ ଭୂମିକା ନେବାକୁ ପଡିଥିଲା, ଓ ତା'ର ପ୍ରଥମ ସଂଖ୍ୟାରେ ଏଇ 'ଘେରାଉ' ଗପର ବଙ୍ଗଳା ଅନୁବାଦ ପ୍ରକାଶିତ ହୋଇଥିଲା । ଫଳ କଣ ହେଲା ଜାଣନ୍ତି ? ଏହାର କିଛିଦିନ ପରେ ଯେତେବେଳେ କୌଣସି ଗୋଟାଏ ବ୍ୟାପାର ନେଇ ୟୁନିଅନ୍ ଲିଡରଙ୍କୁ ଡାକରା ଦେଲି, ସେତେବେଳେ ଥୋକେ ଏଇ ଗପରେ ନଜର୍ ଦେଇ କହିଲେ ସେ ଲିଡର ହେଲେ ହେଉ ଦଳୀର କର୍ତ୍ତୃପକ୍ଷଙ୍କ ସାଙ୍ଗରେ, ଯା'ଙ୍କ ସାଙ୍ଗରେ ନୁହେଁ, କାରଣ ସେ ନାଆଁକୁ କର୍ତ୍ତୃପକ୍ଷ—ବିରସ ମିଷ୍ଟର ନାୟକଟିଏ ! ଏମାନଙ୍କ କଥା ହେଲା ନାହିଁ ସିନା, ସେଇଦିନଠୁଁ ୟୁନିଅନ୍‌ରେ ଗୋଟିଏ ଅସନ୍ତୁଷ୍ଟ ଗୋଷ୍ଠୀ ଗଢ଼ି

ଉଠିବ । ଦିଲ୍ଲୀ କର୍ତ୍ତୃପକ୍ଷ ଖୁସି ହେଲେ ଯେ ମୁନ୍ଦଅନ୍‌ରେ ଫାଟ ଧରିଲଣି, ଏବଂ କେତେକେ ମୋତେ ଅଭିବାଦନ ଜଣାଇଲେ । କିନ୍ତୁ ମୁଁ କାନ୍ଦିଲି । କର୍ତ୍ତୃପକ୍ଷଙ୍କୁ ବୁଝେଇ ପାରିଲି ନାହିଁ ଯେ ସେଥିରେ ମୋର ହାତ ନ ଥିଲା, ମୁଁ ଘୃଣକ୍ୟ ନୁହେଁ । ଏଣେ ମୋର 'ସମର୍ଥକ' ମାନଙ୍କୁ କହିହେଲା ନାହିଁ ଯେ ତୁମେମାନେ ଭୁଲ୍ ବୁଝିଛ. ମୁଁ ମିଷ୍ଟର୍ ନାୟକଙ୍କ ପରି ଏତେ ଦୁର୍ବଳ, ଭାବପ୍ରବଣ ନୁହେଁ । ହୋଇପାରେ ମୁଁ ତୁମକୁ ଭଲପାଏ, ତା' ବୋଲି···

ଅବଶ୍ୟ ଭାବପ୍ରବଣ ନ ହେଲେ ମଧ୍ୟ ମୁଁ ଭାବକାତର, କ୍ଷଣିକ ଭଲ ପାଇବାରେ ଭାସି ନ ଗଲେ ମଧ୍ୟ ମୁଁ ତୁମମାନଙ୍କୁ ହାସ୍ୟ-ହାସ୍ୟରୁ ଅଧିକ ଭଲପାଏ ତେଣୁ ମୁଁ ମିଷ୍ଟର ନାୟକଙ୍କର ଉନ୍ନତ ସଂସ୍କରଣ ହୋଇ ପାରିଥାଆନ୍ତି···

ହସନ୍ତୁ ନାହିଁ । ଆଜିଯାଏଁ ମୁଁ ଗୋଟାଏ ଅଛୁଆଁ ପ୍ରଶ୍ନର ଉତ୍ତର ଦେଇ ପାରି ନାହିଁ—କଳାକାର ଅବା ଭାବୁକ, ଶେକ୍‌ସ୍‌ପିଅର୍ ଅବା ହ୍ୟାମ୍‌ଲେଟ୍ କିଏ ରାଜଗାଦିରେ ବସିବାର ଯୋଗ୍ୟ ? ପ୍ଲାଟୋଙ୍କ ଆଦର୍ଶକୁ କିଏ ବାସ୍ତବ କରି ହେବ ନା କରିବା ଉଚିତ ?

କଟକ
୨୧ ନଭେମ୍ବର ୧୯୮୬



# ଗୋଟିଏ ଲାଲ୍ ସନ୍ଧ୍ୟା

"ରହନ୍ତୁ ।"

"ଆସନ୍ତୁ । ମୁଁ ଅଛୁ । ଡରିବାର କୌଣସି କାରଣ ନାହିଁ ।"

"ନା—ନା—ଡରିବାର ପ୍ରଶ୍ନ ଉଠୁ ନାହିଁ । ମୋର ଜୋତାଫିତା ଖୋଲି ଯାଇଛି କି ନା—"

"ଠିକ୍ ଅଛି । ବାନ୍ଧି ନିଅନ୍ତୁ ।" ଏହା କହି ସେ ଛିଡ଼ା ହୋଇ ରହିଲେ । ପ୍ରକୃତରେ ଜୋତାଟା ମୋ ଗୋଡ଼କୁ କାମୁଡ଼ୁଥିଲା । ମୁଁ ସେକଥା ନ କହି ଫିତା ଖୋଲି ଯାଇଛି ବୋଲି କାହିଁକି କହିଲି କେଜାଣି ! ଯାହାହେଉ ମୁଁ ଜୋତାଫିତା ଖୋଲିକରି ବାନ୍ଧିଲି ଓ ତାଙ୍କ ସୁଟ୍ ପିନ୍ଧା ସଲଖ ଠାଣିରେ ପଛ ଆଡ଼କୁ ଗୃହିଁ ଡେ଼ଡେ଼ ହେଲି,—ଡ୍ୟାମ୍···ମସ୍ତିଷ ଆଗରୁ ଜାଣିଥିଲେ···

ଏହି ସମୟରେ ପୁଣି ଗୋଟାଏ "ଗୁଡ଼ୁମ୍"ର ଶବ୍ଦ ଶୁଭିଲା ଏବଂ ଗୁଡ଼ାଏ ଲୋକ ମାଡ଼ି ଆସୁଥିବାର କୋଲାହଳ ତୀବ୍ରତର ହେଲା । ମୁଁ ଭୀତତର ହୋଇ ଅଗେଇ ଗଲାବେଳକୁ ଫୁଟ୍‌ପାଥ୍ ମଝିରେ ଥିବା ଗୋଟାଏ ଟୋକେଇରେ ଧକ୍କା ଲାଗି ଝୁଣ୍ଟି ପଡ଼ିଲି । ଟୋକେଇଟାଏ ଏତିକିବେଳେ କ'ଣ କରୁଛି ? ସେ ମୋ ଆଡ଼କୁ ବୁଲି ପଡ଼ି ଅନାଇଲେ, ଓ ମୋର ଅନୁମାନ ଭୁଲ୍ ବୋଲି ପ୍ରମାଣିତ କଲେ । ଅର୍ଥାତ୍ ମୁଁ ତାଙ୍କ ଓଠରେ ବକ୍ର ହସ ବା କୌଣସି ପ୍ରକାରର ହସ ଲାଗି ଥିବାର ଦେଖିଲି ନାହିଁ । ଉପରନ୍ତୁ ସେ ଭଦ୍ର ବିନୀତ ଭଙ୍ଗୀରେ କହିଲେ, "ଆଇ ଆମ୍ ସରି । ଆଉ ବେଶି ଦୂର ନାହିଁ । ଏଇ ଯେଉଁ ବାଟା ଦୋକାନ ଦିଶୁଛି, ତାର ମୋଡ଼ରେ ମୋ କାର୍ ଅପେକ୍ଷା କରୁଛି ।"

ତମେ ତ କଲିକତାର ପୋକ ହୋଇ ଗଲଣି । ତମକୁ କାହିଁକି କିଛି ଲାଗିବ ? ଅବଶ୍ୟ ମୁଁ ଯଦି ଆଗରୁ ଜାଣିଥାଆନ୍ତି ଏତେ ହାଲିଆ ହେବାକୁ ପଡ଼ି ନ

ଥାଆନ୍ତି । ଏହି ମର୍ମରେ ନିଜକୁ ପ୍ରବୋଧନା ଦେଇ ମୁଁ ତାଙ୍କ ପାଖକୁ ଲାଗି ଆସିଲି ଓ ତାଙ୍କର ପ୍ରଚ୍ଛନ୍ନ ଦାର୍ଶନିକତା ସହିତ ପାଦ ମିଳାଇଲି ।

ବାଟା ଦୋକାନ ମୋଡ଼ ନିହାତି ନିଘୁଞ୍ଚିଆ ଦିଶୁଛି । ପଡ଼ ଦୋକାନରେ ତାଟି ପଡ଼ିଛି । ନିଭୁଜ କାନ୍ଥ କାବାଟରୁ କିଛି ହେଲେ ଝୁଲୁ ନାହିଁ । ରାସ୍ତା ଉପରେ ଝିଣ୍ଟୀ କୁକୁରଟାଏ ଛିଡ଼ା ହୋଇ ଲାଙ୍ଗୁଡ଼ି ହଲାଉଚି, ଶୂନ୍ୟତାର ବାନା ଉଡ଼ାଉଛି । ବେଶ୍ । କିନ୍ତୁ ଅଲୁଅ ପାଖରେ ଲୁଙ୍ଗି ପିନ୍ଧା ଲୋକ ଜଣକ ଛିଡ଼ା ହୋଇ କଣ କରୁଛି ? ହାତରେ ଠେଲାଟାଏ ଧରିଛି ନା କଅଣ ?

କ୍ରମଶଃ ମୁଁ ଜାଣିଲି ଯେ ଏହି ଶୂନ୍ୟତା ହାସ୍ୟଜନକ, କାରଣ ଏହାର ବିଭିନ୍ନ ସନ୍ଧିରେ ଲୁଙ୍ଗି ପିନ୍ଧା ଗାମୁଛାଭିଡ଼ା ଲୋକମାନେ ଚାକ ବସିଛନ୍ତି । ବେଳଉଣ୍ଡି ମାଡ଼ି ଆସୁଥିବା କୋଳାହଳ ସାଙ୍ଗରେ ମିଶିଯିବେ ଓ ବିପ୍ଳବ ସୃଷ୍ଟି କରିବେ ।

ବିପ୍ଳବ ! ମୁଁ ଉତ୍ତେଜନାର ଶେଷନିଃଶ୍ୱାସ ଛାଡ଼ିଲି । ମୋ ସାଙ୍ଗରେ ଗ୍ଲୁଥିବା ଏହି ଭଦ୍ରଲୋକ ସେଥିରେ ବିଶ୍ୱାସ କରନ୍ତି ନାହିଁ । ସ୍ୱାଭାବିକ । ସେ ହେଉଛନ୍ତି ନ୍ୟସ୍ତ-ସ୍ୱାର୍ଥ ଶୋଷକ ଦଳର ଲୋକ । ତାଙ୍କ ଦୃଷ୍ଟିକୋଣ ଭିନ୍ନ ।

ଗ୍ଲୁ ଗ୍ଲୁ ସେ ମୋ ପିଠିରେ ହାତ ରଖିଲେ । ମୁଁ ଅବଲମ୍ବେ ସେହି ଚଡ଼ପରେ ସ୍ପର୍ଶକୁ ଝାଡ଼ି ଦେଲି । ଧନ୍ୟବାଦ, ମୁଁ ଆପଣଙ୍କର ସହଯାତ୍ରୀ ନୁହେଁ ।

ସେ ପୁଣି ମୋ ପିଠିରେ ହାତ ପକାଇଲେ । ମୁଁ ମୋର ଇଙ୍ଗିତକୁ ଦୃଢ଼ତର କରି ନିଜକୁ ଛଡ଼ାଇ ଆଣିଲି, ଏବଂ ତତ୍‌କ୍ଷଣାତ୍ ଦେଖିଲି ଯେ ମୋତେ ଦୌଡ଼ିବାକୁ ହେବ ।

କାରଣ ଦେଖିଲି ଯେ କୋଳାହଳରୁ ଖଣ୍ଡ ଖଣ୍ଡ ଉଲ୍‌କାମାନ ଖସି ଆସୁଛି । ଏ ବାଟେ ସେ ବାଟେ ଶୂନ୍ୟରାସ୍ତାର ଦଗ୍‌ଦଗରେ ଜଣ ଜଣ କରି ଧାଉଁଛନ୍ତି । ଧାଉଁଛନ୍ତି ମାନେ ପଳାଉଛନ୍ତି ।···ମୁଁ ଦୌଡ଼ିଲି ।

ମୋର କ୍ଳେଶଦାୟକ ଜୋତା ମୋତେ ବେଶି ଦୂରକୁ ନେଇ ପାରିଲା ନାହିଁ । ମିଷ୍ଟର୍ ଦାସ୍ ମୋତେ ଅନାୟାସରେ ଝିଙ୍କି ଆଣି ମୋ ଗ୍ଲୁହାଣିରେ ଗ୍ଲୁହାଣି ମିଳାଇଲେ ଓ ଆଦେଶ ଦେଲା ପରି କହିଲେ, "ସିଧା ହୋଇ ଗ୍ଲନ୍ତୁ । ଦୌଡ଼ିଲେ ମାଡ଼ ବସିଯିବ ।"

ମୁଁ ମାଡ଼ୁଆମାନଙ୍କୁ ଦେଖିଲି ଓ ନିଜକୁ ଧିକ୍‌କାରିଲି । ମୋର ଜୋତାଟା କାଟୁଛି ବୋଲି ସିନା, ନ ହେଲେ ମୁଁ ମଧ୍ୟ ସେମାନଙ୍କ ସାଙ୍ଗରେ ଉନ୍ମତ୍ତ ହୋଇ ଦୌଡ଼ୁଥାନ୍ତି । ପୁଲିସ୍ ପଛରେ ଗୋଡ଼େଇଛି । ପୁଲିସ ଠେଙ୍ଗା ଧରିଛି, ବନ୍ଧୁକ

ଦେଖାଉଛୁ, ଲୁହଭୁହା ଗ୍ୟାସ୍ ଗୁଡ଼ୁଛୁ । କେତେ ଗୋଡ଼େଇବ ? କେତେ କାହାକୁ ମାରବ ? ଆମେ ଜଣେ ନୁହେଁ ପଣେ, ଗୋଟି ଗୋଟି ହୋଇ ପଗୁଣ କୋଟି । ଆମେ ପଡ଼ିବା, ଉଠିବା, ମଳକର ଶୋଇଯିବା, ପୁଣି ଭୂତ ପଣ୍ଡ ମାଡ଼ ଯିବା—

ଗୁଡ଼୍ମ୍ । ଘୋଡ଼ା ଟାପୁ ।

ଧୂଆଁ, ଆଖି ପୋଡ଼ୁଛୁ ।

ସେମାନେ ଘୃଷ୍ଟାଯାକ ଭବ ଗଡଲେଣି । ହାତକୁ ଉପରକୁ ଟେକିଛନ୍ତି ଓ ଚହି ରହି ପଛକୁ ଗ୍ରହୁଁଛନ୍ତି । ଆମ ଆଗରେ, ଆମ ପଛରେ କେତେ କୁଆଡ଼ୁ ଆସି ଭିଡ଼ଗଲେଣି ।

ସହସା ଘୋଡ଼ାଏ ପୋଲିସ୍‌ବାଲା ସବେଗରେ ଲଠି ଓ ଢେଲଧରା ଢାଲ ଧରି ଆମର ବାଟ ଦେଇ ଧାଇଁଗଲେ । ମୋର ଗୁଣ୍ଡ ନିଷ୍ଟସ୍ଥ ଦମ୍ ଦମ୍ ପଡ଼ୁଥିଲା । ତା' ସତ୍ତ୍ୱେ ମୁଁ ନିଜକୁ ବ୍ୟକ୍ତ କଲି । ଜନମତ ଅନୁଯାୟୀ ପଛରୁ ଦେହ ଦୁଇଟାଙ୍କ ପ୍ରତି ଛେପ ପକାଇଲି । ସମସ୍ତେ ଦେଖନ୍ତୁ ।

କିନ୍ତୁ କିଏ ଦେଖିବ ? ବିକ୍ଷିପ୍ତ ଜନତାର ଆଖି ନାହିଁ, କାନ ନାହିଁ··· । ଆଉ ଏହି ଭଦ୍ର ଲୋକ ଜଣକ କିଲ ମଣିଷ ! ମିଟିଂକୁ ଡକା ହେଲା ପରି ସିଧା ହୋଇ ବାଟ ଚାଲୁଛନ୍ତି !

ମୁଁ ଆଉ ସହି ପାରିଲି ନାହିଁ । ଗୁଣ୍ଡର ଦମ୍ ଦମ୍ ଓ ପ୍ରାଣର ଛଟପଟରେ ହନ୍ତାଳ ହୋଇ, ଧୂଆଁ ଓ ଧାବନର ଚକରେ ଘୂରି ଘୂରି ମୁଁ ସ୍ୱଗତ ବାହୁ ଟେକିଲି । ଭଗବାନଙ୍କୁ ନୁହେଁ; ମୁଁ ତାଙ୍କୁ ବିଶ୍ୱାସ କରେ ନାହିଁ । ମୁଁ ଇତିହାସର କାଳପୁରୁଷକୁ ଡାକିଲି । ଡାକିଲି ଯେ ମୋତେ ଉଠାଇ ନିଅ, ମୋତେ ତୁମ ରଥରେ ବସେଇ ଦିଅ । ମୋତେ କିଛି କରିବାକୁ ଦିଅ !

ମିଷ୍ଟର୍ ଦତ୍ତ ! କାହିଁ ଆପଣଙ୍କର କାର୍ ? ମୁଁ କାର୍ ଚାହେଁ ନାହିଁ, ମୁଁ ଚାହେଁ ଲଢ଼ୁଆ ଉଡ଼ାଜାହାଜ, ମୁଁ ଚାହେଁ ହେଲିକୋପ୍‌ଟର୍ । କିନ୍ତୁ ସ୍ୱାନମାନଆ ଚାଲିବା ଠାରୁ ଆପଣଙ୍କର ଗାଡ଼ିରେ ବସିବା ଶତଗୁଣେ ଭଲ ।

କାହିଁ ? କାହିଁ ? ? ···ପୁଣି ଗୁଡ଼ୁମ୍ । ପୁଣି ଧୂଆଁ । ···କାର୍ କାହିଁ ? ବାଟ କାହିଁ ?

ମିଷ୍ଟର୍ ଦତ୍ତ ନିପୁଣ ଖେଳାଳିର ଖେଳ ଦେଖାଇଲେ । ଅତି ଚମତ୍କାର ଭାବରେ ସେ ମୋତେ ସେହି ଦୁର୍ବୃତ୍ତ ଓ ଧର୍ଷିତ ଜନଗଣଙ୍କ ମଝିରେ ବାଟ କଢ଼େଇ ବାଟା ଦୋକାନ ମୋଡ଼ରେ ଥିବା ତାଙ୍କର କାର୍ ପାଖରେ ପହଞ୍ଚାଇ ଦେଲେ । ଥ୍ୟାଙ୍କ୍‌ସ୍ ।

...କାର୍‌ଟି ସଂଘର୍ଷର ଆଢୁଆଳରେ ଗଛତଳେ ବସିଛୁ । ମୋ ଦମ୍ ଅଟକିଗଲା । କିନ୍ତୁ କାରକୁ ଭଲଭାବରେ ଦେଖି ସାରିଲା ପରେ ମୋର ମିଷ୍ଟର୍ ଦତ୍ତଙ୍କ ପ୍ରତି କ୍ରୋଧ ଆସିଲା । ଆଜିକା ଦିନରେ ଏତେ ବଡ଼ କାର୍ ଚଢ଼ି ବୁଲିବା ଦରକାର ? ଟାଇ-ସୁଟ୍‌ର ଆଡ଼ମ୍ବର କଣ ଯଥେଷ୍ଟ ନୁହେଁ ଯେ ତା' ସାଙ୍ଗକୁ ଯୋଡ଼ିବାକୁ ଥିଲା ଏହି ବିଦ୍ଘୁଟ ବିଦେଶୀ କାର୍‌ର ଅଷ୍ଟାଳିକା ? ମିଷ୍ଟର୍ ଦତ୍ତ ନିଜକୁ କଣ ବୋଲି ଭାବନ୍ତି କି ?

ମିଷ୍ଟର୍ ଦତ୍ତ, ଆପଣ ପୁଞ୍ଜିବାଦର ପ୍ରତୀକ । ସେଥିପାଇଁ ଆପଣ ଦାୟୀ ଏବଂ ଦଣ୍ଡନୀୟ । ଏତିକି ବୁଝିବାର କ୍ଷମତା କଣ ଆପଣଙ୍କର ନାହିଁ ? ନା, ଆପଣ ବୁଝନ୍ତି । କିନ୍ତୁ ଆପଣଙ୍କର ଦାମ୍ଭିକତା ବୁଦ୍ଧି ଠାରୁ ବଳି ପଡ଼ୁଛି ।

ଠିକ୍ ଅଛି, ମୋର କିଛି କହିବାର ନାହିଁ । ମୁଁ ଆପଣଙ୍କୁ ଚେତାଇବାକୁ ଯିବି ନାହିଁ ।

ସିଟ୍‌ର ଗଦି ଭେଲ୍‌ଭେଟ୍ କି କେଉଁଥିରେ ତିଆରି କେଜାଣି ମୋର ମନେ ହେଲା ଯେ ମୁଁ ଶୋଇ ପଡ଼ିବି । ବସନ୍ତ ଋତୁର କୋମଳ ଅଙ୍ଗରେ ଲଟେଇ ଯାଇ ପ୍ରତ୍ୟକ୍ଷ ସଂଗ୍ରାମକୁ ମୁହଁ ମୋଡ଼ିଦେବି । କିନ୍ତୁ ତତ୍‌କ୍ଷଣାତ୍ ମୁଁ ନିଜକୁ ତିଆରିଲି,—ଛିଃ ! ମୋର କଅଣ ହୋଇଛି ? ଘଟଣା ଚକ୍ରରେ ମୁଁ ମିଷ୍ଟର ଦତ୍ତଙ୍କ ସାଙ୍ଗରେ ବୁଲୁଛି ବୋଲି କଅଣ ମୁଁ ମୁହୂର୍ତ୍ତିକ ପାଇଁ ମୋର ନିଜତ୍ୱକୁ ଲିଭାଇ ଦେଇ ପାରିବି ? ମୁଁ ବର୍ତ୍ତମାନ ଏହି ନରମ ଗଦିରେ ବସିଛି । କାରଣ ମୁଁ ନିରୁପାୟ । ଯଥାର୍ଥରେ ମୋର ସ୍ଥାନ ଏଠି ନୁହେଁ, ଆଖି ଆଗରେ ମାଡ଼ ଖାଉଥିବା ଏଇ ମଜଦୁର ଶ୍ରମିକଙ୍କ ସାଙ୍ଗରେ । ମୁଁ ବେଶି ପାଠ ପଢ଼ିଛି, ତେଣୁ ମୁଁ କଲମ ପେଷୁଛି । ତା' ବୋଲି ମୁଁ ମିଷ୍ଟର ଦତ୍ତଙ୍କ ଦଳର ନୁହେଁ । ନୁହେଁ, ନୁହେଁ, କଦାପି ନୁହେଁ !

କାର୍‌ରେ ବସିଲା ପରେ ଯେଉଁ ଆରାମ ମିଳିଲା ତାକୁ ତିରସ୍କାର କରି ମଧ୍ୟ ପେଟ ପୂରିଲା ନାହିଁ । ମୁଁ ଆତୁର ହୋଇ କାର୍‌ର ମୋଟା ଝରକା କାଚ ଭିତର ଦେଇ (ମିଷ୍ଟର୍ ଦତ୍ତ କାଚଟିକେ ଦେଇଥିଲେ ) ସେମାନଙ୍କ ଆଡ଼କୁ ଚାହିଁଲି । ନଟେଇ କରି ଚାହିଁଲି । ମୋ ଆଡ଼କୁ ଦେଖ । ମୋର ଆତ୍ମୀୟତାର ତରଙ୍ଗ ତଡ଼ିତ୍ କଅଣ ତୁମମାନଙ୍କୁ ଛୁଇଁ ପାରୁ ନାହିଁ ? ଛୁଇଁଲେ ତୁମେ ନିଶ୍ଚୟ ବୁଝିବ ଯେ ମୁଁ ତୁମଠାରୁ ଦୂରେଇ ଯାଇ ନାହିଁ । ମୁଁ ଉପେନ୍ଦ୍ର ଦାସ । ଆଗେ ମଫସଲରେ ମାଷ୍ଟର୍ ହୋଇଥିଲି, ଏବେ କଲିକତାରେ କିରାଣୀ-ଗିରି କରୁଛି ।... ଅଜାଣତରେ ମୋର ଦୃଷ୍ଟି କାର୍ ଦର୍ପଣରେ ପଡ଼ିଲା, ଏବଂ ମୁଁ ମୋର ଚେହେରାକୁ ନିରୀକ୍ଷଣ କଲି । ସେହି ହାଡ଼ୁଆ ଗାଲ, ସେହି କଳନ୍ତା ଗ୍ରେଟ-ଆଣ୍ଡି ଗୃହଣୀ, ସେହି ଚିତ୍ରିତ କଣ୍ଟାଳିଆ କେଶ । ମିଷ୍ଟର୍ ଦତ୍ତଙ୍କର ସ୍ନେହପାରସିକ ଚବିଲ ଚେହେରା ପାଖରେ ମୋତେ ମିଶୁନାହିଁ । ସେମାନେ କଣ ବୁଝିବେ ନାହିଁ ?...

ମିଷ୍ଟର୍ ଦତ୍ତ ଭୁଁ କନ ଗାଡ଼ି ଚଲାଇବାକୁ ଆରମ୍ଭ କଲା ବେଳକୁ ମୁଁ ଗୋଟିଏ ନୂତନ ଦୃଶ୍ୟ ଦେଖିଲି । ଗାଡ଼ି ଆସିଥିବା ରାସ୍ତାର ସୁଦୂର ସୀମାରେ, ଯେଉଁଠି ପୁଲିସ୍ ବୋଧହୁଏ ପହଞ୍ଚି ନାହାନ୍ତି, କଅଣ ଗୋଟାଏ ହୁରୁହୁରୁ ହୋଇ ଜଳୁଛି । କାର୍ ହେବ ପରା । ମୁଁ ମିଷ୍ଟର୍ ଦତ୍ତଙ୍କ ହାତକୁ ଧରି ପକାଇଲି ଓ କମ୍ପିତ ତୀକ୍ଷ୍ଣ ସ୍ୱରରେ କହିଲି—ଏଇ—ଏଇ, ଦେଖନ୍ତୁ ।

ତଥାପି ଲୋକଟାର ଚୈତନ୍ୟୋଦୟ ହେଲା ନାହିଁ । କାର୍‌କୁ ତଳେମାନ ଅଟକାଇ ନରଖି ସେ କହିଲେ, "ମୁଁ ଜାଣେ । କିନ୍ତୁ ଅମେ ଅନ୍ୟ ବାଟେ ଯିବା ।"

ସେ ବେପରୁଆ ହସ ହସିଥିଲେ ମୁଁ ତା'ର ଠିକଣା ଜବାବ୍ ଦେଇଥାନ୍ତି । ଥଟେହେଲେ ରାଗିଥିଲେ ଦି'ପଦ ଶୁଣେଇ ଥାଆନ୍ତି । କିନ୍ତୁ ତାଙ୍କର ଏହି ଅଣ୍ଡା ଗନ୍ଧା ଅହଙ୍କାରକୁ ନେଇ କଣ କରିବି ?

ଭାବିଲି,—ଶୀଘ୍ର ଏହି ଯାତ୍ରା ପାର ହୋଇ ଯାଉ । ଆମର ଏହି ବିଷମ ଯୋଡ଼ି ଖଣ୍ଡିକ କଟି ଯାଉ ।

ବାଟା ଦୋକାନ ମୋଡ଼ ଗୋଟିଏ ଛକ ମୁହାଣି ଛକ । ବଡ଼ ରାସ୍ତାରେ ସଂଗ୍ରାମ ଚାଲିଛି । ମୁଁ ଆଉ ସେ ଆଡ଼କୁ ଚାହିଁଲି ନାହିଁ । ଆମ କାର୍ ଚାଲୁଥିବା ରାସ୍ତାରେ ଜନତା ଛୁଟିକି ହୋଇ ଆସିଛି, ପାଟିରୁ ଣ୍ଡ ହେଉଛି, କିନ୍ତୁ ପୁଲିସ୍ ନାହିଁ । ତା'ଛଡ଼ା ଆଉ ଗୋଟିଏ ଅଣଓସାରିଆ ତୃତୀୟପଥ ଥିଲା । ସେଠି ଜୀବନର କେତୋଟି ଅଞ୍ଚଳ ଗୋଳିଆ ପାଣିର ଟପ୍ ଟପ୍ ମୋ ଆଖିରେ ପଡ଼ିଥିଲା । କେତୋଟି ଛିମ ଆଖି ଲଗଲା ପିଲା, ଗୁଲି ଦୋକାନରୁ ଝୁଲୁଥିବା କେତୋଟି ପାଚିଲା କଦଳୀ ଓ ପୁଳଆ ଗୁ', ଦାଣ୍ଡି ପିଣ୍ଡାରେ ଛିଡ଼ା ହୋଇଥିବା କେଉଁ ଗୋଟିଏ ମଳିନାର ମୁକୁଳା କେଶ । କାର୍‌କୁ ସେଇଠି ନକେଉଁଠି ରଖି ଦେଇ ଗୋଟିଏ ଝରକା ସୁଶୀତଳ ଗୁହାରେ ମୁଣ୍ଡ ଗୁଞ୍ଜି ନେଇ ଥିଲେ ହୋଇ ନଥାଆନ୍ତା ? ନା, ଭାବି ଲାଭ ନାହିଁ । ସେ ଗଲି କେତେବେଳଠୁଁ ଚାଲିଗଲଣି ।

ମିଷ୍ଟର୍ ଦତ୍ତଙ୍କ କାର୍ ଗୁରୁଗମ୍ଭୀର ଠାଣିରେ ଅଗ୍ରସର ହେଉଛି । ସାରଥୀ ଶଙ୍ଖ ବଜାଉ ନାହିଁ । 'ମୁଁ ଆସିଛି' ବୋଲି ଘୋଷଣା କରୁନାହିଁ । ହେଲେ ଏହି ନନ୍ଦିଘୋଷଟି କାହା ଆଖିରେ ପଡ଼ିବ ନାହିଁ କେମିତି ? ଯେଉଁମାନେ ସଂଗ୍ରାମରେ ବ୍ୟାପୃତ ଅଛନ୍ତି ସେମାନେ ଅବଶ୍ୟ ପଛରେ ପଡ଼ିଲେଣି । କିନ୍ତୁ ଯେଉଁମାନେ ନେପଥ୍ୟରେ ଅଛନ୍ତି ? ଯେଉଁମାନେ ଛାତ ଉପରେ ଦଳ ବାନ୍ଧି ଛିଡ଼ା ହୋଇଛନ୍ତି ? ତା' ଛଡ଼ା ଯେହେତୁ ଏ ମଧ୍ୟ ବଜାର ରାସ୍ତା, ଏଠି ଜଣକଜଣିକଆ ଲୁଙ୍ଗି ପିନ୍ଧା ଗାମୁ ଛଡ଼ା ଭଡ଼ା ଯୁବକମାନଙ୍କର ଆବିର୍ଭାବ ହେବ ନାହିଁ ବୋଲି କିଏ କହିବ ? ମିଷ୍ଟର୍ ଦତ୍ତ ଗ୍ୟାରେଣ୍ଟି ଦେଇ ପାରିବେ ?

ଯାହାହେଉ ଆମ ସାଙ୍ଗକୁ ଆଉ କୌଣସି କାର୍ ଚଳପ୍ରଚଳ ହେବାର ଦେଖାଗଲା ନାହିଁ । ଟ୍ରାମ୍ ବସ୍ ତ ସହଜେ ବନ୍ଦ । କେବଳ ଗୋଟାଏ ପୋଲିସ୍ ଜିପ୍ ଓ ତା' ପଛେ ପଛେ ଗୋଟାଏ ଆମ୍ବୁଲାନ୍ସ ଗାଡ଼ି ଧାଇଁ ପଳାଇଲା । କ୍ରମଶଃ ମୁଁ ବିସ୍ମିତ ହେଲି—

ଗୁଡ଼୍ ମର ଶବଦ୍ ଆଉ ଶୁଭୁ ନାହିଁ ତ ।

ଆକାଶ ମଧ୍ୟ ନୀଳ ଦିଶୁଛି । ଧୂଆଁର ଚିହ୍ନବର୍ଣ୍ଣ ନାହିଁ ।

ପଡ଼ିଆରେ ଗାଈ ହମ୍ବାରଡ଼ି ଛାଡ଼ୁଛି !

ତାହାହେଲେ କଣ ମୋର ଆଶଙ୍କା ଅମୂଳକ ? ଅର୍ଥାତ ମିଷ୍ଟର୍ ଦଉ ଜିତି ସିବେ ? ଏଭଳି ଉଦ୍ଧତ ଭାବରେ ଝଡ଼କୁ କାଟି ଦେଇ ଆପଣା ବୈଠକଖାନାରେ ପହଞ୍ଚିସିବେ ? ପ୍ରମାଣ କରିଦେବେ ଯେ ପିମ୍ପୁଡ଼ିମାନଙ୍କଠାରୁ ହାତୀ ବଡ଼ ଯାହାର ପୁଚ୍ଛି ହଳ ମେଦ ଏବଂ ଶୁଣ୍ଢ ଅଛି ? ଦାନ୍ତ ଅଛି ? ତାଙ୍କର ଜିତିସିବାର ସମ୍ଭାବନା ମୋତେ ଉସ୍‌କେଇଲା । ଉପେନ୍ଦ୍ର ଦାସ, ଏହି ଜିତାପଟରେ ତୋର ଭାଗ ଅଛି । ଜନଦରବାରରେ ବଗ୍ୟର କଲାବେଳେ ସେମାନେ ଯଥାର୍ଥରେ କହି ପାରନ୍ତି ଯେ ଭୁ ଦଉଙ୍କ ଲଙ୍ଗୁଡ଼ିକୁ ଧରି ତପ୍ତ ବୈତରଣୀ…

କାର୍ ଯେତିକି ଆଗଉଥାଏ, ଶାନ୍ତିର ମନ୍ଦ ସମୀରଣ ଯେତିକି ବହୁଥାଏ, ସଂଘର୍ଷର ଗନ୍ଧ ଯେତିକି ଅପସରି ଯାଉଥାଏ, ମୋର ହିଂସାଭାବ ସେତିକି ବଢ଼ୁଥାଏ । ଜିଘାଂସା କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଗୋଟିଏ ମୁହୂର୍ତ୍ତରେ ମୋର ବିପ୍ଳବୀ ଚେତନାର ତଳେ ଛପି ରହିଥିବା ସଂହାରବାଦ ମୁଣ୍ଡ ଟେକିଲା । ସେତେବେଳେ ପୋଖରୀରେ ହଂସକୁ ପହଁରିବାର ଦେଖି ମୋର ଇଚ୍ଛା ହେଲା ଯେ ମୁଁ ମିଷ୍ଟର୍ ଦଉଙ୍କର ସୁକୁମାର ଗ୍ରୀବାଟିକୁ ମୋଡ଼ି ଦେବି ! ସମସ୍ତେ ଜାଣିବେ । ଜାଣିବେ ଯେ ଜନୈକ ସାଧାରଣ ବ୍ୟକ୍ତି ଦୁଃସାହସ କର୍ମ କରିଛି, ବିଦେଶୀ କାର୍‌ର ଗଦି ଉପରେ ଗୋଟିଏ ପୁଞ୍ଜିବାଦୀକୁ ହତ୍ୟା କରିଛି ।

ହଠାତ୍ ଗୋଟିଏ ଦଶବର୍ଷିଆ ପିଲା ଅବୋଧ କୁହାଟ କରି ଆମ ଆଗେ ଆଗେ ପଳାଇଲା ।

ମୋର ମନେ ହେଲା ଯେ ସେ ମଧ୍ୟ ଜଣେ ବିପ୍ଳବୀ । ଅସ୍ତ୍ର ଧରି ନାହିଁ, କିନ୍ତୁ ଡାକ ଛାଡ଼ିଛି ।

ନୀରବତା ଚୂନା ହୋଇଗଲା ସେହି ପିଲାର ଡାକରେ (ତା' ଛଡ଼ା ଆଉ କଣ ହୋଇପାରେ ? ) । ଗୋଟାଏ ଟେକା ଛାଏ କରି ଆମ କାର୍‌ରେ ବାଡ଼େଇ ହେଲା । କୁଆଡ଼ୁ ଅସିଲା ବୋଲି ଖୋଜିଲା ବେଳକୁ ଆଉ ଗୋଟାଏ ଟେକା ଆର ପାଖରୁ ଛୁଟି

ଆସିଲା । ମୋର ଆଡ଼କୁ । ମୁଁ ମୁଣ୍ଡ ତଳକୁ କରିଦେଲି । ରକ୍ଷା ! ଟେକା କାଚରେ ନବାଜ ଲୁହରେ ବାଜିଲା ।

ଦ୍ୱିତୀୟ ଟେକାର ଚାଳକକୁ ଦେଖି ପାରିଲି । ଲୁଙ୍ଗି ନୁହେଁ, ଗାମୁଛା ନୁହେଁ, ସରୁ ଟ୍ରାଉଜର୍ସ୍ । ବାଳଗୁଡ଼ା ଝଡ଼ ପରି ଝୁଙ୍କି ଆସିଛି । ଏବଂ ତା ଆଖି ଦୁଇଟା ! ଗୋଟାଏ ଶାଗୁଆ ଜନ୍ତୁର ଆଖି ପରି ଦିଶୁଛି । ଯେତିକି ଡରୁଛି, ସେତିକି ଡରାଉଛି, ଜୀବନର ଅବଶିଷ୍ଟ ରାଗ ଓ ନିଆଁକୁ ବାନ୍ତି କରୁଛି । ଇସ୍ ! ସାମାନ୍ୟ ଝଲକରେ ମୋର ଦେହ ସିର ସିର ହୋଇ ଉଠିଲା ।

ମୋର ଦେହ ସିର ସିର ହୋଇ ଉଠିଲା । କିନ୍ତୁ ମିଷ୍ଟରର୍ ଦାଉଙ୍କ ଆଡ଼କୁ ଅନେଇ ମୋର ମନେ ହେଲା ଯେ ତାଙ୍କର ରୋମ ଟାଙ୍କୁର ଉଠ୍ ନାହିଁ । କାରଣ ସେ ଓଠ କାମୁଡ଼ୁଛନ୍ତି, ସତେ କି ଘୃଣିତ ଜନ୍ତୁଟାକୁ ଦଳି ଦେବେ ।

ସେଇଠୁ ମୋର ଜିଜ୍ଞାସା ପ୍ରବଳତର ହେଲା । ମୁଁ ଚାହିଁଲି ଯେ ଆହୁରି ଟେକା ପଡ଼ୁ । ମୋ ମୁଣ୍ଡ ଫାଟୁ, କିନ୍ତୁ ଏହି ଲୋକଟା କାନ୍ଦୁ । ମୋତେ ମାରନା ମାରନା କହି ଖତମ୍ ହୋଇ ଯାଉ ।

ମୋର ଇଚ୍ଛା ପୂରଣ ହେଲା । ସହସା ଆଉ ଗୋଟିଏ ମସ୍ତବଡ଼ ଟେକା କାଚ ଝରକା ଉପରେ ବାଡ଼େଇ ହେଲା । ମୁଁ ପୁଣି ମୁଣ୍ଡ ତଳକୁ କଲି । ଭାବିଲି ଏହିକ୍ଷଣି କାଚ ପଶିଯିବ, ରକ୍ତ ପିଚକି ଉଠିବ । କିନ୍ତୁ ଆଶ୍ଚର୍ଯ୍ୟ କଥା କିଛି ହେଲା ନାହିଁ । କାଚ ଧାର ଧାର ହୋଇ ଫାଟିଗଲା, ଭାଙ୍ଗିଲା ନାହିଁ । ମିଷ୍ଟର ଦାଉ ଦାନ୍ତ ଚପା ସ୍ୱରରେ କହିଲେ, "ଆପ ଜାଣନ୍ତି ନାହିଁ । ଏ ହେଉଛି ଟ୍ରିପ୍‌ଲେକ୍‌ସ କାଚ ।"

ମୁଁ କିଛି କହି ପାରିଲି ନାହିଁ ସିନା, କିନ୍ତୁ ମୋର ସର୍ବାଙ୍ଗ ଶରୀରରେ କମ୍ପନ ଜବାବ୍ ଦେଲା—ଭୁଲ୍, ଭୁଲ୍ । କାଚ ଠାରୁ ଟେକା ବଡ଼ । ଏତିକିରେ ସରିନାହିଁ, ଆହୁରି ଆସିବ । ମିଷ୍ଟର ଦାଉ, ତୁମେ ମରିବ । ତୁମ ସଙ୍ଗରେ ମୁଁ ମଧ୍ୟ ମରିବି । ମଲେ ମରିବି, ମୁଁ ପରୁଆ କରେ ନାହିଁ ।

ଏହି ସମୟରେ ମୁଁ ଦେଖିଲି । ମୋର ଅହ୍ଲାଦୀନ ଦୀପର ଦାନବ କାର୍ ସାମନାରେ ଆସି ଛିଡ଼ା ହୋଇଛି । ତା ହାତରେ ଗୋଟାଏ ଗୋଲାକାର ବସ୍ତୁ ।

ପଥର ନୁହେଁ, ବୋମା :

ବୋମା ! ତା ମାନେ ରକ୍ତର ନାଳକୁ ଦେଖିବା ପାଇଁ ସମୟ ମିଳିବ ନାହିଁ । ଛଟପଟ କରିବାକୁ ବେଳ ନାହିଁ । ମୁହୂର୍ତ୍ତିକରେ—। ନା ନା ! ନା !! ଶୁଣ, ମୁଁ କଣ

କହୁଛୁ ଶୁଣ । ମୁଁ ତୁମର ଦଳରେ ଅଛି । ମୁଁ ମରିବାକୁ ଖାତିର୍ କରେ ନାହିଁ । କିନ୍ତୁ ଏଇ ବୋମା ବାଜେ, ଅଧରକାଣ୍ଡ—

ମୁଁ 'ଷ୍ଟପ୍' ବୋଲି ପାଟିକଲି । ହେଲେ ତାଙ୍କୁ ଶୁଭି ନ ଥିବ । ସେ ହାତ ଟଳେଇଲା, ବୋମାକୁ ଘୁରେଇଲା ।

ତତ୍ ସହ ମିଷ୍ଟର ଦତ୍ତଙ୍କ ମୁହଁରୁ ଏକ ପ୍ରକାର ଶବ୍ଦ ବାହାରିଲା, ଦପାଦାନ୍ତ ଭିତରୁ ଏକ ପ୍ରକାର ଅଶ୍ଳୀଳ ଫୁତ୍କାର, ଯାହାକୁ ଶୁଣିଲେ ସାପ ଭୟ ପାଇବ । ସେ ଗାଡ଼ି ଚଳାଇ ନେଲେ ।

ଏଁ,—ସେ ତା' ଉପରକୁ ମାଡ଼ିଯିବେ ନା କଅଣ ? ମାରିବେ ଆଉ ମରିବେ ।

ଲୋକଟା ପାଗଳ, ବଦ୍ଧ ପାଗଳ । ମୁଁ ତାଙ୍କ ହାତକୁ ଧରି ପକାଇଲି ଓ ସେ ତାକୁ ଛଡ଼ାଇ ଦେଲେ । ତାପରେ ମୁଁ ଦୁଇ ହାତ ଟେକିଲି ଓ ମୁଁ ମଧ୍ୟ ଏକ ପ୍ରକାର ଶବ୍ଦ କଲି । ଶେ ଅଥବା ଚିଡ଼ି । ଯାହାଦ୍ୱାରା ମୁଁ ସେମାନଙ୍କୁ କାଟିଲି, ସମ୍ପିଲି ଓ ପ୍ରଚଣ୍ଡ ଭାବରେ ମନା କଲି । ତାହାଦ୍ୱାରା ମୁଁ କହିଲି—ତୁମେ ଦୁଇଜଣ ମୂର୍ଖ ଓ ପାଗଳ । ମୂର୍ଖ ଓ ପାଗଳ ।…

ତା' ପରେ କଣ ହେଲା ଠିକ୍ ଠିକ୍ ବର୍ଣ୍ଣନା କରି ହେଉ ନାହିଁ । ବୋଧହୁଏ ଗୋଟାଏ ପୋଲିସ ଗାଡ଼ି ଆସିଲା, ଗୋଟାଏ ଗୁଳି ଫୁଟିବାର ଶବ୍ଦ ହେଲା । ବୋଧହୁଏ କିଏ ପଳାଇଲା ବା ଟଳି ପଡ଼ିଲା । ବୋଧହୁଏ ମିଷ୍ଟର ଦତ୍ତ ଚିତ୍କାର କଲେ କିମ୍ବା ମୋତେ ଗୋଟାଏ ଚାପୁଡ଼ା ମାରିଲେ । ବୋଧହୁଏ ମୁଁ ରକ୍ତ ଛୁଟୁଥିବାର ଦୃଶ୍ୟ ଦେଖିଲି ଓ କାରରୁ ଲମ୍ଫ ଦେଲି । ଯାହାହେଉ କ୍ଷଣିକ ବିଭ୍ରମର ଅନ୍ଧାର ପରେ ମୁଁ ଦେଖିଲି ଯେ ମୁଁ ଗୋଟିଏ ଖୋଲା ଟିଣ ଘର ଭିତରେ ଖଟିଆ ଉପରେ ଶୋଇଛି ଓ ମିଷ୍ଟର ଦତ୍ତ ମୋ ପାଖରେ ବସି ହଅଁ ହଅଁ ହେଉଛନ୍ତି । ଯେତେ କି ସମ୍ପୂର୍ଣ୍ଣ ଶକ୍ତି ଖଟାଇ ଧାଇଁଲା ପରେ ସେ ହଫଲତାର ଦମ ନେଉଛନ୍ତି । ଏବଂ ଦେଖିଲି ଯେ ଖଟ ପାଖରେ ଜଣେ ଶିଖ ଭଦ୍ରଲୋକ ମୋ ଆଡ଼କୁ ଚାହିଁ ମୃଦୁ ମୃଦୁ ହସୁଛନ୍ତି ।

ମୋର ମୁଣ୍ଡ ଭିତରେ ତୀବ୍ର ଯନ୍ତ୍ରଣା ହେଉଥାଏ । ତଥାପି ମୁଁ ସେହି ଦୃଶ୍ୟ ଓ ଅବସ୍ଥାକୁ ଅସ୍ୱୀକାର କଲି । ତୁରନ୍ତ ବସି ପଡ଼ି କହିଲି, "ମୋର କିଛି ହୋଇ ନାହିଁ । ଚାଲନ୍ତୁ ଯିବା ।" ଶିଖ୍ ଜଣକେ ହସ ହସ ଭାବରେ ମୁଣ୍ଡ ହଲାଇଲେ ଓ କହିଲେ "ଖୁଦାକା ଶୁକ୍ର ହୈ ଆପ୍ ବଚ୍ ଗୟେ ।" କିନ୍ତୁ ମିଷ୍ଟର୍ ଦତ୍ତ ତାଙ୍କର ସଅଁ ହଅଁ ଭାବକୁ ସେମିତି ଦେଇ ମୋ ପିଠିରେ ହାତ ରଖିଲେ ଓ ଗମ୍ଭୀର ମୁଦ୍ରାରେ କହିଲେ, "ହଁ ଯିବା । ନିଶ୍ଚୟ ଯିବା ।"

ତାଙ୍କର ସେହି ସ୍ପର୍ଶ ସ୍ଥିତର ସ୍ପର୍ଶ ଭୋଳି ମନେ ହେଲା, ବହୁବାର ଆଶ୍ୱାସନା ଆଣି ଦେଲା । ପ୍ରଥମ ଥର ପାଇଁ ମୋର ଧାରଣା ହେଲା ଯେ ଏଭଳି ମଣିଷଟିକୁ ଗଢ଼ି ବିଧାତା, ମାନେ ପ୍ରକୃତି; ନିଶ୍ଚିତ ଭୁଲ କରି ନାହିଁ ।

……ଶୀଘ୍ର ସଞ୍ଜ ହୋଇ ଆସିଲା । ମିଷ୍ଟର ଦତ୍ତ ମୋତେ ଟଳେଇ ଟଳେଇ ପାଖରେ ଥିବା ତାଙ୍କ ଶାଳୀଙ୍କ ଘରକୁ ନେଇଗଲେ । କହିଲେ ଯେ ଅନ୍ୟ ଉପାୟ ନାହିଁ, କାରଣ ତାଙ୍କ ନିଜ ଘର ଅନେକ ଦୂର ଓ ତାଙ୍କ କାର୍ ଭାଙ୍ଗି ଯାଇଛି । ବୁଝିଲି ଯେ କାର୍ ସେହି ଧର୍ମରାଜଙ୍କ ଜିମାରେ ରହିବ ଯେ ଆମକୁ ତାଙ୍କ କାଠ ଗୋଦାମରେ ଆଶ୍ରା ଦେଇଥିଲେ । ଏହାଛଡ଼ା ମୁଁ ଅସ୍ପଷ୍ଟ ଭାବରେ ବୁଝିଲି ଯେ କଅଣ ଗୋଟାଏ ଘଟିଗଲା ଯେଉଁଥିରେ ଧର୍ମରାଜ ହୋଇଥିଲେ ଭୀମ, ମିଷ୍ଟର ଦତ୍ତ ହୋଇଥିଲେ ଅର୍ଜୁନ । କଣ ଗୋଟାଏ ଘଟିଗଲା ଯେଉଁଥିରେ ମିଷ୍ଟର ଦତ୍ତ ଧର୍ମରାଜଙ୍କ ସହିତରେ ହାର ବୋଲି ଗଣା ହେଲେ ।

ମୋତେ ଭୋକ କରୁଥିଲା କି ମୁଁ ଥକି ଯାଇଥିଲି କହି ପାରୁ ନାହିଁ, ମୁଁ ସେହି ହାରଜିତର ହଟମିଛ ଅବିଷ୍କାର କରିବାକୁ ଚାହିଁଲି ନାହିଁ ।

ତାଙ୍କ ଶାଳୀଙ୍କ ନାଁ ଅନୁରାଧା । ବେଲ୍ ବଜାଇଲାରୁ ସେ ନିଜେ ଆସି କବାଟ ଖୋଲି ଦେଲେ । ପ୍ରଥମ ଦୃଷ୍ଟିରେ ମୋର ମନେ ହେଲା ଯେ ଶ୍ରୀମତୀ ଅନୁରାଧା ମିଷ୍ଟର ଦତ୍ତଙ୍କର ଶାଳୀ ହେବାର ଉପଯୁକ୍ତ । ଲମ୍ବା ଗଢ଼ଣ, ଝରପେଷ ଶଙ୍ଖର ଗ୍ରୀହଣୀ, ଅଭଙ୍ଗା ଧୀର ଗମନ, ଅଭଙ୍ଗା ମୃଦୁ ବଚନ । ସତେ କି ସେ ଚମକାଇବାକୁ ଚାହାନ୍ତି ନାହିଁ, କାଳେ ତୁମେ ଚମକି ପଡ଼ିବ । ସତେ କି ସେ ନିଜ ରୂପଗୁଣର ବିସ୍ଫୋଟକୁ ଧରି ରଖିଛନ୍ତି, ନ ହେଲେ ଅପର (ସାଧାରଣ) ବ୍ୟକ୍ତିଟି ହାରିଯିବ ।

କେବଳ ଗୋଟିଏ ପ୍ରଭେଦ । ଅନୁରାଧା ନାରୀ । ତେଣୁ ତାଙ୍କ ନିବୃତ ଦୃପ୍ତ ଭଙ୍ଗୀର ସନ୍ଧିରେ ଅଳସ ବିଳାସ କୁଳୁ କୁଳୁ ହେଉଛି । ପୁରୁଷ ମିଷ୍ଟର ଦତ୍ତ ଘଣ୍ଟଣା ଚକରେ ହଁ ହଁ ହୋଇପାରେ । ତାଙ୍କର ସେ ଭୟ ନାହିଁ । ସେ ଦତ୍ତଙ୍କର ଶାଳୀ ।

ଯାହାହେଉ ଅନୁରାଧା ମିଶ ତାଙ୍କ ଭିଣେଇଙ୍କ ଆଡ଼କୁ ଚାହିଁ ଯେଉଁ ସ୍ମିତ ହାସ ଦେଲେ ମୋତେ ଦେଖି ସେଥିରୁ କିଛି ଉଣା କରିଦେଲେ ବୋଲି ମୁଁ ଭାବି ପାରିଲି ନାହିଁ ।

ପୁଣି ସେ ଯେତେବେଳେ ବୁଲି ପଡ଼ି ତାଙ୍କ ଫାଳେ ପିଠିର ମସୃଣ ନଗ୍ନତାକୁ ଦେଖାଇଲେ, ତାହା ମୋ ପ୍ରତି ଉଦ୍ଦିଷ୍ଟ ନଥିଲା ବୋଲି ମୁଁ ମାନି ପାରିଲି ନାହିଁ ।

ପ୍ରାୟ ଦଶ ମିନିଟ୍ର ବସାଉଠା କଥାବାର୍ତ୍ତା ପରେ କ'ଣ ମନେ ହେଲା କହିବି ? ମନେ ହେଲା ଯେ ସେ ମଧ୍ୟ ମୋର ଶାଳୀ ! କାହିଁକି ନୁହେଁ ? ଆଜିର

ସନ୍ଧ୍ୟାରେ, ଆଜିର ଅବିସ୍ମରଣୀୟ ଯୁଗ୍ମ ଅନୁଷ୍ଠାନ ପରେ ମିଷ୍ଟର ଦତ୍ତ ଯେପରି ଭାବରେ ତାଙ୍କ ହାତରୁ ସନ୍ଦେଶ ଖାଉଛନ୍ତି, ମୁଁ କଣ ଠିକ୍ ସେମିତି ଖାଉନାହିଁ ? ସେତିକି ଉପଭୋଗ କଣ ମୋର ପାଉଣା ନୁହେଁ ?

ଅନୁରାଧା କାହିଁକି ମୋର ଶାଳୀ ହୋଇ ପାରିବେ ନାହିଁ ?

କହିବାକୁ ଗଲେ ଏହି ଶାନ୍ତ ମଧୁର ପରିବେଶ, ଏହି ଅଣ୍ଡା ଘରର ପରିପାଟି, ଏହି କାଯଦା କାଇଦାରେ ସଜା ହୋଇଥିବା ଫୁଲଦାନୀ, ଏହି ଭାନ୍‌ଗଗ୍ ଓ ମୋଗଲ ପେଣ୍ଟିଙ୍ଗ୍, ଏହି ଟଲଷ୍ଟୟଙ୍କର ଓ୍ୱାର୍ ଏଣ୍ଡ୍ ପୀସ୍ ଏସବୁର ତତ୍ତ୍ୱ କଣ ମୁଁ ଜାଣେ ନାହିଁ ? ମିଷ୍ଟର ଦତ୍ତ ମୋ ଠାରୁ ବେଶି ଜାଣନ୍ତି ? ହେଲେ ଏଇଠି ସେ ବହି ଅଛି, ବୋଧହୁଏ ଶାଳୀକୁ ପଢ଼ିବା ପାଇଁ ଦିଆ ହୋଇଛି । କ୍ଲାସିକାଲ୍ ଡ୍ରାମା ଉପରେ ଲେଖା ହୋଇଥିବା ନବର ବହି, ଯାହା ମୁଁ ତାଙ୍କୁ କିଣେଇ ଦେଇଥିଲି । ସେଦିଥିରୁ ତ ପ୍ରଥମେ ଆମର ଚିହ୍ନା ହୋଇଥିଲା । ସେ କଲେଜ୍ ଷ୍ଟ୍ରୀଟ୍ ବହି ଦୋକାନରେ ମନ ମୁତାବକ ସାହିତ୍ୟ ବହି କିଣିବା ପାଇଁ ଧନ୍ଦାଳିଆ ହେଉଥିଲେ । ମୁଁ ତାଙ୍କୁ ଭଲମନ୍ଦ ବଛେଇ ଦେଇଥିଲି, ଠିକଣା ଜାଗାକୁ ନେଇ ଯାଇଥିଲି । ସେଇଠୁ ସେ ମୋତେ ଧନ୍ୟବାଦ ଦେଇଥିଲେ । ମୁଁ କେଉଁଠି କାମ କରୁଛି ବୋଲି ପଚାରିଥିଲେ ଓ ବୁଝି ନେଲା ପରେ କହିଲେ, "ଆଚ୍ଛା ! ତାହାହେଲେ ତ ଆପଣ ମୋର ସହକର୍ମୀ । ଭଲ । ଏଥର ଆପଣଙ୍କୁ ସାଙ୍ଗରେ ନେଇ ବହି କିଣିବି । ଆପତ୍ତି ଅଛି ?"

ବାସ୍ତବିକ—ମୁଁ ନିଜକୁ ବାରମ୍ବାର କହିଲି—ଶାଳୀ ଯେମିତି ଏହି ଘରର ଉତ୍କର୍ଷ ଓ ମାଧୁର୍ଯ୍ୟ ମୋର ମନୋବୃତ୍ତିର ମାରଫତରେ ଅଛି । ମୁଁ ଇଚ୍ଛା କରିଥିଲେ—

"ଆଉ ଗୋଟିଏ ସନ୍ଦେଶ ଆଣିଦେବି ?"

"ନୋ, ଥ୍ୟାଙ୍କ୍‌ସ" କହି ମୁଁ ଭଦ୍ରୋଚିତ ବାରଣ କଲି ।

"ଖାଆନ୍ତୁ ନା ! ଅନୁର ସନ୍ଦେଶ ପୃଥିବୀ ବିଖ୍ୟାତ । ମୁଁ ବାହାହେବା ଆଗରୁ ଜାଣିଥିଲେ—" ମିଷ୍ଟର ଦତ୍ତଙ୍କ ଓଠରେ ଦୁଷ୍ଟ ହସ ।

"ଆଗରୁ ଜାଣିଥିଲେ କଣ କରିଥାଆନ୍ତେ ? କୁହନ୍ତୁ ଲଜ୍ଜା କରନ୍ତୁ ନାହିଁ ।" ଅନୁରାଧାଙ୍କ ଓଠରେ ଚତୁର ହସ ।

ଲଜ୍ଜାରେ ଅରୁଣ ଆଖି ମୁଁ କାହାରି ମୁହଁରେ ଦେଖିଲି ନାହିଁ । କିନ୍ତୁ ସେହି ଦୁଷ୍ଟତା-ଚତୁରତାର ଖେଳ ମୋତେ ଭଲ ଲାଗିଲା ।

ମିଷ୍ଟର ଦତ୍ତ ଆବୃତ୍ତିର ସ୍ୱରରେ କହିଲେ, "ଅୟି ଗରବିଣୀ ନାରୀ ! ମୋର ଲଜ୍ଜା ଘୁଞ୍ଚାଇ ଦିଅ, ମୋତେ ହୃଦୟର କଥାଟିକୁ କହିବାକୁ ଦିଅ ।"

ଅନୁରାଧା ଅନୁରୂପ କଣ୍ଠରେ କହିଲେ, "ଉଠ ହୃଦୟବାନ୍ କଥା କୁହ । ତୁମେ ଖାଲି ନୁହଁ । ତୁମେ ଯୁଦ୍ଧ ଭୂମିରୁ ଫେରିଛ, ତୁମେ କାର୍ ଷ୍ଟ୍ରଙ୍ଗ୍ ଦେଇ ଆସିଛ ।"

ଦୁହେଁ ଖିଲ ଖିଲ ହୋଇ ହସି ଉଠିଲେ ଏବଂ ମୁଁ ସେମାନଙ୍କ ସହିତ ଯୋଗ ଦେଲି । କିନ୍ତୁ ପର ମୁହୂର୍ତ୍ତରେ ମୋ ଭିତରୁ ଆଉ ଜଣେ ଆବୃତ୍ତିର ପାଦ ପୂରଣ କରିବାକୁ ଚାହିଁଲା—

"ତୁମେ ମଣିଷକୁ ମାରି ଆସିଛ..."

ଧାତ୍ ! ବେସୁରା ବେରସିକ ହେବା କଣ ମୋର ସ୍ୱଧର୍ମ ? ମୁଁ ଅଜ୍ଞାନ ହୋଇ ଯାଇଥିବି । କିଏ ମଲା କିଏ ଜୀଇଁଲା ମୁଁ ତାର ହିସାବ ରଖି ନାହିଁ ।

"କଫି ଖାଇବେ ନିଶ୍ଚୟ ? ପ୍ଲେନ୍ ନା ଏସ୍‌ପ୍ରେସୋ ?" ଅନୁରାଧା ଦେବୀଙ୍କର ଶ୍ୟାମଳ ଗ୍ରୀବାନତ ଗ୍ରୀବା କଫି ପରି ବାସୁଛି ।

"ଥ୍ୟାଙ୍କ ୟୁ । ଏସ୍‌ପ୍ରେସୋ ।" ମୋତେ ଏସପ୍ରେସୋ ଭଲଲାଗେ ।

କଫି ଆସୁ ଆସୁ ପୁଣି ସେହି ନିର୍ବୋଧ ଭୂତ ମୋତେ ଖେଞ୍ଚିଲା । ଏଥର ମୁଁ ତାକୁ ଚାଣୁଆ ଜବାବ ଦେଲି—ଯେ ବୋମା ପକାଇବାକୁ ଆସିଥିଲା, ସେ ମଲା । କଣ ହେଲା ସେଇଠୁ ? କେହି ହେଲେ ତ ମରି ଥାଆନ୍ତା ? ତା' ଛଡ଼ା ମନେରଖ, ମିଷ୍ଟର ଦତ୍ତଙ୍କ ହାତରେ ବନ୍ଧୁକ ନ ଥିଲା, ପୁଲିସ ହାତରେ ଥିଲା ।

ମୋର ଇଚ୍ଛା ହେଲା ମୁଁ ମିଷ୍ଟର ଦତ୍ତଙ୍କୁ ପଚାରିବି । ପ୍ରକୃତରେ କଣ ହେଲା, ଠିକଣାକୁ ପଚାରିବି । ପଚାରିବି ସେ ବୋମାଧାରୀ କୁଆଡ଼େ ଗଲା, ମୋର କଅଣ ହେଲା, ରକ୍ତ କେଉଁଠୁ ଆସିଲା, ସର୍ଦ୍ଦାରଜୀ କଅଣ କଲେ... । ଆଉ ଥାଉ ଥାଉ । ବିଶେଷ କିଛି କହିବାର ଥିଲେ ସେ ନିଶ୍ଚୟ କହି ଥାଆନ୍ତେ । ସେ ତାଙ୍କ ଶାଳୀଙ୍କୁ ମଧ୍ୟ ଜଣେଇ ନାହାନ୍ତି । କେବଳ କହିଛନ୍ତି ଯେ ଆମେ ଦୁହେଁ ଯୁଦ୍ଧ କରି ଆସିଛୁ, କାର୍ ଷ୍ଟ୍ରଙ୍ଗ୍-ଯାଇଛୁ, ଖାଇବାକୁ ଦିଅ । ତା' ହେଲେ ମୋର କାହିଁକି ଗରଜ ପଡ଼ିଛି ? ମୋର କଫି କାହିଁକି ଅଣ୍ଡା ହୋଇଯିବ ? ମୁଁ କାହିଁକି ଭୃରୁ କୁଞ୍ଚେଇବି, ଗାଲ ଓହଳେଇବି ? ଅନୁରାଧା ଦେବୀ କାହିଁକି ଭାବିବେ ଯେ ମୁଁ ଗୋଟିଏ— ? .

ଉପେନ୍ଦ୍ର ଦାସ । ତୁ କଅଣ ହଠରେ ଭାବିଥିଲୁ ଯେ ମିଷ୍ଟର ଦତ୍ତ ତାଙ୍କ କୁତ୍ତିତ୍ୱଟିକୁ ବିଶଦ ବ୍ୟାଖ୍ୟା କରି ବୁଝେଇଦେବେ ? ଅସମ୍ଭବ । ସେ ହେଉଛନ୍ତି ପୁରୁଣା ହିରୋ । ତୁ ନୁହେଁ କି ହୋଇ ପାରିବୁ ନାହିଁ । ପିଇ ଯା', କଫି ପିଇ ଯା' ।

ଉତ୍ତମ । ମୁଁ କଫି ପିଇବି ଆଉ ଏଠି ବସି ରହିବି । ମୁଁ ଏହି ହସ ପରିହାସରେ ଆପଣାକୁ ମିଶେଇ ଦେବି । ମୁଁ ଏହି ଶୋକହୀନ, ଶଙ୍କାହୀନ, ଶାଳୀ ଭଉଣୀଙ୍କ ଗହଣରେ ମଜ୍ଜି ଯିବି । ମୁଁ ମଜ୍ଜିବାକୁ ଚାହିଁଲେ ମଜ୍ଜି ଯିବି ।

ମୁଁ ମଧ୍ୟ ହିରୋ ହୋଇ ପାରିବି ।

ଅସଲ କଥା ହେଲା ଏହି ହିରୋ ହେବାର କାଇଦା ଏକ ଅନୁକୂଳ ପୃଷ୍ଠ ଭୂମି । ଏମିତି ଖଣ୍ଡେ ଘର, ଗୋଟାଏ କାର୍ ଯାହାର କାଚ ସହଜେ ଭାଙ୍ଗେ ନାହିଁ, ଯାହାକୁ ବଞ୍ଚେଇବା ପାଇଁ ପୁଲିସ ଦୌଡ଼ି ଆସେ, ଏମିତି ବହି ଓ ଛବିର ସାଜ, ଏମିତି ଜଣେ ଶାଳୀ········

ଡ୍ରଇଁ ରୁମର ଖୋଲା ଝରକା ମୋ ଆଖିରେ ପଡ଼ିଲା ଓ ମୁଁ କାନେଇଲି । ଗୋଟିଏ ହେଲେ ଧ୍ୱନି ଆସୁ ନାହିଁତ ? ଯୁଦ୍ଧ ସରି ଯାଇଛି ନିଶ୍ଚୟ । ତା' ବୋଲି କଣ କେହି କିଛି ସନ୍ଦେଶ ପଠାଇ ପାରି ନାହାନ୍ତି ? ଧ୍ୱନି ସରି ଯାଇଛି ସିନା—ପ୍ରତିଧ୍ୱନି ନାହିଁ ?···ନାହିଁ । ଖାଲି ପରସ୍ତ ପରସ୍ତ ହୋଇ ଦକ୍ଷିଣୁଆ ପବନ ଭାସି ଆସୁଛି । ହତଦାରିଦ୍ର୍ୟ ନଷ୍ଟସ୍ୱାର୍ଥବାଞ୍ଛିତଙ୍କ ମୋ ଗୃହ ପାଖରେ ଗୁଡ଼େଇ ହେଉଛି, ଚେଇଁ ପଡୁଛି ।···

···କିଓ, ମୁଁ କଣ କରିବି ? ମୁଁ କଣ ଲିଡର୍ ନା ହିରୋ ? ଏତିକି ବୁଝୁ ନାହଁ ଯେ ମୁଁ ତୁମ ଦଳରେ ଥିଲେ କଣ ହେବ ମୋର ଦର୍କାର ଏମିତି ଗୋଟାଏ ଘର, ଏମିତି ଗୋଟାଏ ଡ୍ରଇଁରୁମ୍— । କାହିଁକିନା ମୋର ମଧ୍ୟ ପକ୍କା ବସା ଗୋଟିଏ ଅଛି, ହୁଏତ ସେଥିରେ ପୋର୍ଟିକୋ ନାହିଁ, ବାଲ୍‌କନି ନାହିଁ, ଏୟାର କଣ୍ଡିସନ୍‌ର ଲଗା ହୋଇନାହିଁ ମୋର ମଧ୍ୟ ଡ୍ରଇଁରୁମ୍ ଅଛି ଯଦିଓ ସେଠି ଗାଲି ପଡ଼ିନାହିଁ. ସୋଫାନାହିଁ, ଭଲ ଭଲିକା ଟେବୁଲ ଲ୍ୟାମ୍ପ ସଜା ହୋଇ ନାହିଁ । ହଁ, ମୋ ଘରେ ଇଲେକ୍‌ଟ୍ରିକ୍ ଲାଇଟ୍ ଜଳେ । ଅବଶ୍ୟ ଖର୍ଚ୍ଚ ବେଶି ପଡ଼ୁଛି ବୋଲି ରେଣୁ କଳାଆଖିରେ ବଲ ବଦଳେଇଛି, ସାହିତ୍ୟ କ ଗ୍ରନ୍ଥମାନ କିଛି ପଢ଼ି ହେଉ ନାହିଁ । ମୁଁ ବହିର ମୂଲ୍ୟ ଜାଣେ । ମୋର କଥା ମାନି ମିଷ୍ଟର ଡିଭମାନେ ବହି କିଣନ୍ତି ! ମୁଁ ଆର୍ଟ ଚିହ୍ନି ଜାଣେ । ଏସବୁ ମୋର ହାତ ପାହାନ୍ତାରେ ମୁଁ ଯଦି ଲାଗି ପଡ଼ନ୍ତି । ଏଇ ପାହାଚରେ ଉଠିବା ସହଜ, ତା'ହେଲେ ମୁଁ ଜଲଦି ହିରୋ ହୋଇଯିବି । ଥରେ ହିରୋ ହୋଇଗଲେ ଆଉ କଥା ନାହିଁ । ମୁଁ ବିପ୍ଳବର ଢେଉ ଉପରେ ଚଢ଼ିଯିବି । ଚଢ଼ିଯିବି ଆଉ ତୁମମାନଙ୍କୁ ଧନ୍ୟ କରିବି । ଏତିକି ବୁଝୁ ନାହଁ ?

ମୋର ଆଜି ଯାହା ହେଲା, ପୁଣି କେବେ ହେବ ନାହିଁ । ମୁଁ ତୁମକୁ ପ୍ରତିଶ୍ରୁତି ଦେଉଛି ।

ଏହି ସମୟରେ ମୁଁ ଦେଖିଲି ଯେ ମିଷ୍ଟର ଦତ୍ତ ଓ ତାଙ୍କ ଶାଳୀ, ଦୁହିଁଙ୍କୁ ଦୁହେଁ ଝରକା ବାଟେ ବାହାରକୁ ଚାହିଁଛନ୍ତି । ମିଷ୍ଟର ଦତ୍ତ ହାତ ଘଡ଼ି ଦେଖୁଛନ୍ତି । ମୁଁ

କୌତୂହଳୀ ଦୃଷ୍ଟି ଦେବା ମାତ୍ରେ ମିଷ୍ଟର ଦତ୍ତ ତାଙ୍କ ଶାଳୀଙ୍କୁ କହିଲେ, "ବେଶି ଡେରି ହୋଇନାହିଁ । ଅଉ ଅଳ୍ପସମୟ ଭିତରେ ପହଞ୍ଚିଯିବ ।" ଅନୁରାଧା ଦେବୀ ସମର୍ଥନ ସୂଚକ ମୁଣ୍ଡ ହଲାଇଲେ । କହିଲେ, "ମୁଁ ଜାଣେ । ତା' ଛଡ଼ା ଆଜିତ ଡେରି ହେବାର କଥା । ଆଜି ତାଙ୍କର ମୁଣ୍ଡ ଗଣ୍ଡୁ ଗଣ୍ଡୁ ସମସ୍ୟା ଯାଉଥିବ ।" କହି ସାରି ଫିକ୍ କରି ହସିଲେ ।

କିଏ ଆସିବ ? କିଏ ସେହି ମେଘ ପାଳକ ? ମିଷ୍ଟର ଦତ୍ତ ମୋର ଜିଜ୍ଞାସା ଅନୁମାନ କଲା ପରି କହିଲେ, "ଆମ ଶାଳୀଙ୍କ ସ୍ୱାମୀ ଆସି ପହଞ୍ଚିବେ ଏଇକ୍ଷଣି । ତାଙ୍କଠୁ ପୁରା ଖବର ଜଣା ପଡ଼ିବ । ସେ ହେଉଛନ୍ତି ସିକ୍ୟୁରିଟି ପୁଲିସ ବିଭାଗର ଅଫିସ୍ ମାଲ, ସୁଭାଷ ମିତ୍ର । ତାଙ୍କ ନାଁ ଶୁଣିଥିବେ ବୋଧହୁଏ—"

ନା, ମୁଁ ଶୁଣିନାହିଁ ନା ଶୁଣିବାକୁ ଚାହେଁନାହିଁ । ଏମାନେ ଜାଣି ଶୁଣି ମୋତେ ଏଠୁ ତଡ଼ିବାକୁ ଚାହାନ୍ତି । ସେ-ପରିକା ପୁଲିସ ନାଁ ଶୁଣିଲେ ମୋର ମନେ ପଡ଼ିବ । ଆଜି ସନ୍ଧ୍ୟାବେଳେ ଯାହା ଘଟିଲା, ଯେଉଁ ଅସନା ନାଲିଚିଆ ଆଖି ମାରିବାକୁ ମାଡ଼ି ଆସିଲା ଓ ଟଳି ପଡ଼ିଲା···ତା' ଗ୍ରୀବାରୁ (ଗ୍ରୀବାରୁ ନା ପେଟରୁ ? ନା ବେକରୁ ?) ଗଳଗଳ ହୋଇ ରକ୍ତ ବାହାରି ଆସିଲା । ନା, ମୁଁ ଶୁଣିବି ନାହିଁ । ମୁଁ ଅଯଥାରେ ଘାଣ୍ଟିକରି ନିଜକୁ ଦୁର୍ବଳ କରିବି ନାହିଁ । କାହିଁକି ? ସେହି ରକ୍ତର ରଙ୍ଗ କଣ ଖାଲି ମୋର ରକ୍ତର ରଙ୍ଗ ସାଙ୍ଗରେ ମିଶୁଛି ?

ମୋତେ ରାଗେଇବାକୁ ଚେଷ୍ଟା କରନାହିଁ । ସୁଭାଷ ମିତ୍ର ଆସନ୍ତୁ । ଜୀଅନ୍ତା ମୁଣ୍ଡ ଗଣିକରି ଆସନ୍ତୁ ବା ମଲା ମୁଣ୍ଡ ଗଣିକରି ଆସନ୍ତୁ ମୋର ଯାଏ ଆସେ ନାହିଁ । ଏଇ ଦେଖ ଅନୁରାଧାଙ୍କ ଓଠରେ ଏପର୍ଯ୍ୟନ୍ତ ହସଟିଏ ଲାଗି ରହିଛି, ହେତେକ ସ୍ୱାମୀଙ୍କର ବାଚନ ବୃତ୍ତି ତାଙ୍କୁ ଏପର୍ଯ୍ୟନ୍ତ କୁତୁକୁତୁ କରୁଛି । ମିଷ୍ଟର ଦତ୍ତ ତାଙ୍କ ବକ୍ତବ୍ୟ ଶେଷକରି ମ୍ୟାଗାଜିନ୍ ଓଲଟେଉଛନ୍ତି । ଏମାନଙ୍କର କିଛି ହେଉନାହିଁ । ନିଶ୍ଚିନ୍ତ ଅବିଚଳିତ ହସେ-ମଣିଷ, ହସେ-ଶାଳୀ; ଆସି ପହଞ୍ଚିବେ ହସେ ପ୍ରମୁଖ । ଶିଳ୍ପପତି, ଶିଳ୍ପପତିର ପୁଲିସ, ଶିଳ୍ପପତିର ନାରୀ, ତୁମେ ସମସ୍ତେ ସେହି ଅମଳିନ ହସେଧାତୁରେ ଗଢ଼ା । ମୁଁ କଣ ଜାଣେନାହିଁ ? ମୁଁ ଆଜି ଭଲ ଭାବରେ ଜାଣିଲି, କଦାପି ଭୁଲିବି ନାହିଁ । ମୁଁ ଯିବିନାହିଁ ।

ଆଉ ଥରେ କଫି ଆସୁ ନାହିଁ କାହିଁକି ? ଅନୁରାଧା ଦେବୀ, ଆପଣ ହସୁଛନ୍ତି ନା ଓଠ ଚାଟୁଛନ୍ତି ? ଦୟାକରି ମୋତେ ସେ ହସ ଭେଳିକି ଦେଖାଅ ନାହିଁ ! ମୁଁ ତୁମକୁ ଚାହେଁ, ମାନେ ତୁମର ଏଇ ସଂସାରର ଶୁଭ ସମ୍ପଦଟିକ ଯାହା ମୋ ହାତ ପାହାନ୍ତାରେ ଅଛି, ଅଉ କେଇଟା ପାହାଚ···

ମିଷ୍ଟର ଦତ୍ତ କଣ ଭାବିଲେ କେଜାଣି ମୋ ପାଖକୁ ଆସି ମୋ ଦେହରେ ହାତ ରଖିଲେ ଓ କହିଲେ, "ମିଷ୍ଟର ଦାସ, କେମିତି ଲାଗୁଛି ଏବେକ୍ଷଣି ? ରାତି ବାଜି-ଲାଣି, ଘରକୁ ଯିବେ ନାହିଁ ?" ମୋ ଉତ୍ତରର ଅପେକ୍ଷା ନ କରି କହି ଚାଲିଲେ, "ଅବସ୍ଥା ଅଣ୍ଡା ପଡ଼ି ଗଲାଣି । ଆପଣଗୋଟାଏ କାମ କରନ୍ତୁ । ଏଇ ହତା ପାରହୋଇ ଆସ୍ତେ ଆସ୍ତେ ଚାଲି ଚାଲି ଲୋଅର ସାର୍କୁଲାର ରୋଡ ଧରି,-ଆପଣଙ୍କର ବସା କେଉଁଠି, ମୋମିନ୍‌ପୁର ନା ? ବେଶିଦୂର ନୁହେଁ । ସିଧା ଯାଇଖ ଆସ୍ତେ ଆସ୍ତେ ଚାଲିଯିବେ । ପଛକୁ ଅନେଇବେ ନାହିଁ ।"

ମୁଁ ଶୁଣିଗଲି, କିନ୍ତୁ ସୋଫାରୁ ଉଠିବାକୁ ଉଦ୍ୟତ ହେଲି ନାହିଁ ।

ଯିବାକୁ ହେବ ? ମୋର ଅନ୍ତଃସ୍ଥଳ କାନ୍ଦି ଉଠିଲା । ୪୦ ଘର ଧାଏଁ ଗଲା ଭିତରେ ଯଦି ମୁଁ ଏମାନଙ୍କୁ ଭୁଲିଯାଏ ! ଆଉ ଯଦି ସେମାନେ—ସେଇ ଲୋକଟା—ସେଇ ଲୋକମାନେ ମନେ ପଡ଼ିଯିବେ !

ଉପାୟ ନଥିଲା । ଅନୁରାଧା ଦେବୀ ବଦାନ୍ୟର ବିସ୍ମିତ ସ୍ମିତହାସ ଦେଲେ ଓ ମଝିରେ ମଝିରେ ଆସିବାକୁ କହିଲେ ।

ମିଷ୍ଟର ଦତ୍ତ ମୋତେ ଫାଟକଯାଏଁ ପାରେଇ ନେଲେ । କଲୁଟିଆ ରାସ୍ତାରେ ଲୋକବାକ କେହି ଜଣେ ନଥିଲେ । କେବଳ ବତୀ ଖୁଣ୍ଟର ଆଲୁଅ ତଳେ ଅଳିଆ ଟୋକା ଓ ଭଙ୍ଗା କାଚଗୁଡ଼ା ଆକାଶକୁ ଅନେଇ ଦାନ୍ତ ଦେଖାଉଥିଲେ ।

ଶେଷକୁ ମିଷ୍ଟର ଦତ୍ତ ପୁଣି ଥରେ ଚେତାଇ ଦେଲେ—ଆସ୍ତେ ଆସ୍ତେ ଘରମୁହାଁ ଚାଲିବେ । ପଛକୁ ଅନେଇବେ ନାହିଁ । ବୁଝିଲେ ?



# ଗୋଟିଏ ଲାଲ୍ ସନ୍ଧ୍ୟା

ମନେଥିବ ଯେ ଆମେରିକାରେ ପ୍ରାୟ ତିନି ବର୍ଷ ରହିଲା ପରେ ମୁଁ ଯେତେବେଳେ ସ୍ୱଦେଶକୁ ଫେରି ଆସିଲି, ସେଇ ଘର-ବାହୁଡ଼ାର ଦାରୁଣ ସଙ୍ଘାତକୁ ମୁଁ ରୂପ ଦେଇଛି ମୋର 'ଘର-ବାହୁଡ଼ା' ଗପରେ । କିନ୍ତୁ ବେଳେ ବେଳେ ଭାବେ ଯେ ପ୍ରଥମେ କଲିକତାକୁ ବଦଳି ନ ହୋଇ ଆଉ କେଉଁଠିକି ଯାଇଥିଲେ କଣ ମୋ ମନରେ ଏଭଳି ଝଡ଼ତୋଫାନର ସୃଷ୍ଟି ହୋଇ-ଥାଆନ୍ତା ? ମୁଁ ମୋ ମାତୃଭୂମିକୁ କଣ ସତରେ ଭଲପାଏ, ଅବଶ୍ୟ ଭଲ ପାଏ କିନ୍ତୁ ତା'ହେଲେ ଏତେ ଦୁଃଖ, ଏତେ କ୍ରୋଧ ଓ ଘୃଣା କାହିଁକି—ଏହିପ୍ରକାର ପରମନିନ୍ଦନୀୟ ସନ୍ଦେହ, ସନ୍ଦେହ ନୁହେଁ ବିଦ୍ରୋହର ମୁକାବିଲା କରିବାକୁ ପଡ଼ିଥାଆନ୍ତା ?

ମୋର ମନେ ହୁଏ ଯେ କଲିକତା ଏଭଳି ଗୋଟିଏ ମହାନଗରୀ ଯେଉଁଠି ବିଦ୍ରୋହ ସ୍ୱଭାବତଃ ଗୁମୁରି ଉଠେ, ହେଲେ ପ୍ରତ୍ୟେକ ଗୁ ରୁଗୁ ରୁ ଗର୍ଜନକୁ ସୁନ୍ଦର ଏବଂ ଶାସ୍ତ୍ରସମ୍ମତ ବୋଲି କହିହେବ ନାହିଁ । ଏଠିକାର ସମାଜ-ସଂସାରରେ ଡାଏଲେକ୍ଟିକ୍ସର ଲୀଳା ବୋଧହୁଏ ଏତେ ପରିବ୍ୟାପ୍ତ ଯେ ପ୍ରତି ପଦରେ 'ନାହିଁ, ମାନିବି ନାହିଁ' ବୋଲି ଧାଟି କରିବାକୁ ଇଚ୍ଛା ହୁଏ । କେବଳ ଶ୍ରେଣୀ ବିରୁଦ୍ଧରେ, ସରକାର ବିରୁଦ୍ଧରେ ନୁହେଁ, ନିଜର ନିଜତ୍ୱ ବିରୁଦ୍ଧରେ ।

ନ ହେଲେ କି ଉପେନ୍ଦ୍ର ଦାସ ନିଜର ସ୍ୱାଭିମାନୀ ବିପ୍ଳବ ଚେତନା ବିରୁଦ୍ଧରେ ସ୍ୱର ଉଠେଇଥାଆନ୍ତା, କହିଥାଆନ୍ତା ଯେ ମୋର ଏମିତି ଗୋଟିଏ ଘର ଗୃହ, ଡ୍ରଇଂରୁମ ଗୃହ, ଶାଳୀ ଗୃହ, ସେଇଠୁଁ ଯାଇଁ ମୁଁ ବିପ୍ଳବ କରିବି ? ମୋର ବକ୍ତବ୍ୟ

ହେଉଛି ଯେ ତା'କୁ ଚଟ୍‌କନ ବିପ୍ଳବୀର ଗୋଟିଏ ବ୍ୟଙ୍ଗଚିତ୍ର ବୋଲି ଭାବନ୍ତୁ ନାହିଁ, ସାନ ବୁର୍ଜୁଆ (Petit bourgeoise) ହୋଇଥିବା ହେତୁ ତା'ର ଇନ୍‌କିଲାବ୍ ଚେତନା ପ୍ରଣବଅଶୁଦ୍ଧ ବୋଲି ଧରିନିଅନ୍ତୁ ନାହିଁ । ମନେକରନ୍ତୁ ଯେ ଇଏ ମହାନଗରୀର ଦୋଷ, ଯାହାର ହାଉଆରେ ଅଛି ବୈଷମ୍ୟର ବିଷପୁଷ୍ପ, ପରସ୍ପର ବିରୋଧର ଚମତ୍କାରିତା । ସେଥି-ପାଇଁ କଲିକତାର ନିତ୍ୟପ୍ରତ୍ୟହ ଦୃଶ୍ୟ-ଘଟଣାକୁ ଦୋଷୀ କରିବ ନା କଲିକତାବାସୀଙ୍କର ଅତିଶସ୍ତ ବୌଦ୍ଧିକତା ଅବା ଭାବପ୍ରବଣତାକୁ ବାହାବା କରିବ, ସେକଥା ଭିନ୍ନ ।

ମୋର ବନ୍ଧୁମାନେ ହୁଏତ କହିବେ ଯେ ଏଭଳି ତଥ୍ୟବିହୀନ ଥିଓରି ମୋର ଅଗଭୀର ବୁର୍ଜୁଆଚେତନାର ପରିଚୟ ଦେଉଛି, ଯେ ଏହା ଉପେନ୍ଦ୍ର ଦାସ ତରଫରୁ ସଫେଇ ଦେବାର ଅପଚେଷ୍ଟା ଛଡ଼ା ଆଉ କିଛି ନୁହେଁ । ହଉ, ତା'ହେଲେ ଶୁଣନ୍ତୁ ମୋର ତାତ୍ତ୍ୱିକ ବିଚାର । ମୁଁ ଆପଣଙ୍କର ଚିରପରିଚିତ ସ୍ଲୋଗାନ୍ "ଇନ୍‌କିଲାବ୍ ଜିନ୍ଦାବାଦ୍‌ର" ସମର୍ଥନ ଜଣାଉଛି ପରି,—ଏଣିକି ବୁଝୁନାହାନ୍ତି ? ମୁଁ କହିବାକୁ ଚାହେଁ ଯେ ପ୍ରତ୍ୟେକ ବିପ୍ଳବୀ ତୁଣୋଅଧିକେ ଉପେନ୍ଦ୍ର ଦାସ, ଯେ ଯେତେଶୀଘ୍ର ପାରେ ତା' ଲକ୍ଷ୍ୟଲବ୍ଧର ପ୍ରାଇଜ ପାଇବାକୁ ଚାହେଁ । କିଏ ହୁଏତ ଆଗରୁ ଧମଧମ ହୁଏ, କିଏ ହୁଏତ ଶେଷଯାଏଁ ଧୈର୍ଯ୍ୟ ଧରିଥାଏ । କିନ୍ତୁ ଅପେକ୍ଷା କରିଥିବା ଲୋକ ମଧ୍ୟ ଅଳ୍ପ ବହୁତ ସୁଫଳ (ସମ୍ଭ୍ରମ ଐଶ୍ୱର୍ଯ୍ୟ ଆଦି) ଚାଖି ନ ଚାଖୁଣୁ ରକ୍ଷଣଶୀଳ ହୋଇଯାଏ, ଏତେ କଷ୍ଟରେ ଲଭିଥିବା ଧନକୁ ସହଜେ ହାତଛଡ଼ା କରିବାକୁ ଚାହେଁ ନାହିଁ । ତେଣୁ ନୂତନତମ ବିପ୍ଳବୀ ଉପରକୁ ଅନେଇ ଦେଖେ ଯେ ସବୁ ମୁହଁ ଏକା ଭଳି ଦିଶୁଛି, "An mal Form"ର ଶେଷଧାଡ଼ିରେ କହିଲା ପରି କିଏ କିଏ ଶିଷ୍ଟ ଘୁଷୁରି ଓ କିଏ ଦୁଷ୍ଟ ମଣିଷ ବୁଝି ହେଉ ନାହିଁ । ସେ ଅବସ୍ଥାର ପରେ ଯେ ରାଜା-ପ୍ରଜାଗତ କ୍ଷମତାର ସଞ୍ଚାର ମଉଳି ଝଡ଼ିଯିବା ଦୂରର କଥା, ଆହୁରି ଟାଣ ହୋଇ ଉଠୁଛି । ତେଣୁ ପୁଣି ବିଦ୍ରୋହ ଆବଶ୍ୟକ ହୁଏ । ଇନ୍‌କିଲାବ୍ ଜିନ୍ଦାବାଦ୍ । ଅବଶ୍ୟ ଆପଣ ଯଦି ଭାବୁଥାଆନ୍ତି ଯେ ଚଳନ୍ତି ପୃଥିବୀରେ କେଉଁଠି ହେଲେ ସାମ୍ୟ-ସ୍ୱର୍ଗର ସମନ୍ୱୟ

(Synthesis) ଆସିଗଲାଣି ଡାଏଲେକ୍‌ଟିକ୍‌ସ ସମାହିତ ହୋଇଗଲାଣି, ତାହାହେଲେ ମୋର କିଛି କହିବାର ନାହିଁ ।

ତେବେ ମୋର ଖାଲି ଆଶା ଏତିକି ଯେ ଯଦି କେବେ ବିପ୍ଳବର ସ୍ୱର୍ଗରୁ ଭୋଗବିଳାସର ଦଳେ ପୁରପୁର ଖସିଯାଇ ପାରନ୍ତି, ଖାଲି ତିଷ୍ଠି ରହନ୍ତା ମଣିଷ ହୋଇ ରହିବାର ମର୍ଯ୍ୟାଦା ଓ ମଣିଷପଦରୁ ଊର୍ଦ୍ଧ୍ୱକୁ ଉଠିବାର ଅଭିଳାଷ ଓ ସ୍ୱାଧୀନତା, ତାହାହେଲେ ହୁଏତ...କେଜାଣି ।

ମୋର କଲିକତା ଅନୁଭୂତରେ 'କ୍ଲଷ୍ଟ' ଏଇ ଗପଟି ଦେଶବିଦେଶରେ ବିଶେଷ ଲୋକପ୍ରିୟ ହୋଇ ପାରିଛି । ଏହାର ସ୍ୱକୃତ ଇଂରାଜୀ ଅନୁବାଦ "Red Evening" Penguin Books London ଙ୍କର "New Writing in India" (Fourth Edition, 19[illegible]4) ରେ ସ୍ଥାନ ପାଇଛି, ଏବଂ ବିଭିନ୍ନ ସମୀକ୍ଷାମୂଳକ ସାହିତ୍ୟ ପତ୍ରିକାରେ ପ୍ରଶଂସିତ ହୋଇଛି । ଶ୍ରୀମତୀ ପ୍ରଜ୍ଞା ପାରମିତାଙ୍କ ଦ୍ୱାରା ରଚିତ ଏହାର ଇଂରାଜୀ ଅନୁବାଦ "A Crimson Evening" ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପାଠ୍ୟପୁସ୍ତକ ଭାବରେ ଗୃହୀତ ଏବଂ କଟକ ଷ୍ଟୁଡେଣ୍ଟ୍‌ସ ଷ୍ଟୋରଙ୍କ ଦ୍ୱାରା ପ୍ରକାଶିତ ଏକ ଇଂରାଜୀ ଗଳ୍ପସଙ୍କଳନରେ ସନ୍ନିବେଶିତ ହୋଇଛି । ପୁଣି ମହାପାତ୍ର ଦମ୍ପତିଙ୍କ ଦ୍ୱାରା ରଚିତ ଅନ୍ୟ ଏକ ଅନୁବାଦ "A Scarlet Evening" ମୋର ଇଂରାଜୀ ଗଳ୍ପ ସଂକଳନ "Wild Peacock and other stories"ରେ ଦେଖିବାକୁ ପାଇବେ ।

କଟକ
୨୩ ନଭେମ୍ବର ୧୯୮୬



# ଅସ୍ତ୍ର।

ଶ୍ରୀଯୁକ୍ତ ଘଏ ଯାହା କହିଲେ—

ସକାଳୁ ଉଠିଲା ବେଳେ ମୁଁ ପ୍ରସନ୍ନ ଥିଲି । ନିଦଟା ଭଲ ହୋଇଥିଲା ପରି ଲାଗୁଥାଏ । ପୁଣି ନିଦର ଧାରରେ କଣ ଗୋଟାଏ ସ୍ୱପ୍ନ ଲାଗିଥିଲା କେଜାଣି, ମୋର ମୁହଁ ଧୋଇବାକୁ ଇଚ୍ଛା ହେଉ ନ ଥିଲା, କାଳେ ମନର ସୁଆଦିଆ ଭାବ ଧୋଇ ହୋଇଯିବ ।

ମୁହଁକୁ ଧୋଇ ପୋଛି ତଉଲିଆରେ ରଗଡ଼ି ସାରିଲା ପରେ ମୁଁ ସ୍ୱପ୍ନକୁ ମନେ ପକାଇବାକୁ ଚେଷ୍ଟା କଲି । ପରିଶ୍ରମରେ ବିଶେଷ କିଛି ଲାଭ ହେଲା ନାହିଁ । ତେବେ ଗୋଟିଏ କ୍ଷୀଣ ଅଥଚ ଉଜ୍ଜଳ ଅନୁଭୂତିର ଆଭାସ ମିଳିଲା ଯେ ସ୍ୱପ୍ନରେ ଶ୍ରୀମତୀ ଓ ତାଙ୍କ ଘର ଆଉ କେତେଜଣ ନାରୀ ମୋତେ ପ୍ରଶଂସା କରୁଥିଲେ । ପ୍ରଶଂସାର ପଦ ମନେ ପଡ଼ିଲା ନାହିଁ । ଏବଂ ଦୁଃଖର ବିଷୟ ଯେ ଶ୍ରୀମତୀଙ୍କ ବ୍ୟତୀତ ଆଉ କାହାର ନିଃସ୍ୱ ମୁହଁ ବାରି ହେଲା ନାହିଁ ।

ଏଥିରେ ତାଙ୍କର ଦୋଷ ଥିଲା ବୋଲି ମୁଁ କହୁ ନାହିଁ । ସେ କଣ ଏତେ ପ୍ରତାପଶାଳିନୀ ଯେ ମୋ ସ୍ୱପ୍ନକୁ ଲେସି ଦେଇ ନିଜ ଚେହେରାର ଠିଅ ବୁଲେଇ ଦେଇ ଚାଲିଯିବେ ! ମୁଁ ହସିଲି ଓ ହସ ହସ ମୁହଁରେ ଶୋଇବା ଘର ଭିତରକୁ ଯାଇ ଶ୍ରୀମତୀଙ୍କ ମୁଣ୍ଡ ପାଖରେ ବସିଲି । ତା' ପରେ ତାଙ୍କୁ ଉତ୍ତମରୂପେ ଚେହ୍ଲା କଲି ।

ଅବଶ୍ୟ ତାଙ୍କର ନିଦ ଭାଙ୍ଗିଲା ନାହିଁ । ସକାଳର ପ୍ରଥମ ଚୁମ୍ବନରେ ତାଙ୍କ ନିଦ ଭାଙ୍ଗେ ନାହିଁ । ସେ ପ୍ରଥମ ଚା'କପ୍ ପାଇଁ ଅପେକ୍ଷା କରନ୍ତି । ଆଜିକାର ଚୁମ୍ବନରେ ଯେଉଁ ବିଶେଷ ଗୁଣ ଥିଲା ତା'ର ଅଙ୍ଗୀକାର ମିଳିଥିଲେ ବୋଧହୁଏ ମୁଁ ଅଧିକ ଆନନ୍ଦିତ ହୋଇ ଥାଆନ୍ତି । କିନ୍ତୁ ସେଥିପାଇଁ ମୁଁ ତାଙ୍କୁ ଦୋଷ ଦେଉ ନାହିଁ । ସେ କଣ ସର୍ବଜ୍ଞ ହୋଇଛନ୍ତି ଯେ ମୋ ନିଜ ଓ ସ୍ୱପ୍ନର ଭିତର କଥା ଜାଣିପାରନ୍ତେ ?

ଯାହାହେଉ ସେ ଯଥା ସମୟରେ ଉଠିଲେ ଓ ତତ୍‌କ୍ଷଣାତ୍ ଘର କରଣାର ନହବତ୍ ବାଜି ଉଠିଲା ସବୁଦିନ ପରି । ଅଳସେଇ ଝିଅର ନିଦ ଭାଙ୍ଗିଗଲା । ଘର ଓଳେଇବାର ଶବ୍ଦ ଦ୍ରୁତ ହୋଇଉଠିଲା । ଦ୍ୱିତୀୟ ପର୍ଯ୍ୟାୟର ଚା’ପାଣି ଗବ୍ ଗବ୍ ଫୁଟିଲା । ଜଲି କୁକୁର ନିଜକୁ ଦୁଇ ତିନିଥର ଝାଡ଼ିଝୁଡ଼ି ଦେଇ ଆଟେନ୍‌ସନ୍‌ର ଭଙ୍ଗୀରେ ଛିଡ଼ା ହୋଇଗଲା—ମୁଁ ସକାଳ ଭ୍ରମଣପାଇଁ ପ୍ରସ୍ତୁତ । ମନେହେବ ଯେ ମୁଁ ମଧ୍ୟ ସେହି ସିଗନାଲ୍‌ର ଅପେକ୍ଷାରେ ଥିଲି ଓ ତର ତର ହୋଇ ଖିଅର ହେବା ଜିନିଷ ଆଣି ଟେବୁଲ ଉପରେ ସଜାଡ଼ି ଦେଲି ।

ସେ ମୋ ମୁହଁକୁ ଚାହିଁ ସାମାନ୍ୟ ଓଠଚପା ସ୍ମିତହାସ ଦେଲେ । ସତେକି ସେ ଘରକରଣାର ଏହି ଉପଯୁକ୍ତ ତତ୍ପରତା ଦେଖି ମୋତେ ଧନ୍ୟବାଦ ଜଣାଉଛନ୍ତି । ନା, ମୋର ଏଭଳି କଳ୍ପନା ପାଇଁ ସେ ଦାୟୀ ନୁହନ୍ତି । ସେ କର୍ମକୁଶଳ ଏବଂ ତାଙ୍କ ପ୍ରଭାବରେ କର୍ମର ପ୍ରବାହ ଚଞ୍ଚଳ ହୋଇ ଉଠେ—ଏଥିରେ ଦୋଷ ଦେବାର କିଏ ଅଛି ?

ଚାହୁଁ ଚାହୁଁ ବ୍ରେକ୍‌ଫାଷ୍ଟର ସମୟ ଆସିଗଲା । ପ୍ରଥମେ ମୁଁ । ମୁଁ ବ୍ରେକ୍‌ଫାଷ୍ଟ ଅଫିସକୁ ଯାଇ ସାରିଲା ପରେ ଅନ୍ୟମାନଙ୍କ ପାଳି । ତେଣୁ ମୁଁ ଯଥାବିଧି ଏକୁଟିଆ ମଝି ଚଉକିରେ ବସିଲି ଓ ଅପେକ୍ଷା କଲି ।

ଦିନର ଏହି ପ୍ରଥମ ଆହାରଟିକୁ କିଏ ଭଲ ନ ପାଏ ? ଆଗକୁ ଜଞ୍ଜାଳ ଅଛି, ସଙ୍ଘର୍ଷ ଅଛି, ଥାଉ । ମୁଁ ସୁସ୍ଥ, ମୁଁ ସଦ୍ୟସ୍ନାତ, ମୁଁ ଜୀବନକୁ ସ୍ୱୀକାର କରୁଛି । ତାର ପ୍ରତୀକ ଏହି ମୋର ବ୍ରେକଫାଷ୍ଟ । ବିପୁଳ ଓ ବର୍ଣ୍ଣ ବିଚିତ୍ର ! ଫେନିଳ ଓ ଧୂମାୟିତ !

ଏବଂ ଜଣେ ବୋଲି ମୁଁ ତା’ର ଅପେକ୍ଷା କରୁଛି । ଶ୍ରୀମତୀଙ୍କର ନେତୃତ୍ୱରେ ଅନ୍ୟମାନେ ପରିବେଷଣ କରିବେ । ମୁଁ ଗ୍ରହଣ କରିବି ।

ମୁଁ ଆଙ୍ଗୁଳିରେ ଆଙ୍ଗୁଳି ଯୋଡ଼ିଲି । ଗୁଣୁ ଗୁଣୁ ହେଲି, ଅପେକ୍ଷା କଲି ।

ଆହାର ଦ୍ରବ୍ୟ ସବୁଦିନେ ସମାନ । କିନ୍ତୁ ମୋତେ ତିକ୍ତ ଲାଗେ ନାହିଁ । ବିଶେଷତଃ ଆଣ୍ଡା ଫ୍ରାଏର ନିତ୍ୟନୂତନ ରୂପ ମୋତେ ମୁଗ୍ଧ କରେ । କୋମଳ ଧଳାର ପରିଧି ଭିତରେ ଗୋଲ୍ ହଳଦିଆଟି ଟଳ ଟଳ ହେଉଛି । କହିପାରି ଗୋଟିଏ ଜାଗ୍ରତ ଆଖି କିମ୍ବା ଗୋଟିଏ ପ୍ରସ୍ଫୁଟିତ ଗୋଲାପ ଫୁଲ । କିନ୍ତୁ ଉପମାର ପ୍ରୟୋଜନ ନାହିଁ । ଉଚିତ ଭାବରେ ପ୍ରସ୍ତୁତ ହୋଇଥିବା ଅଣ୍ଡା-ଫ୍ରାଏର ଏକ ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ ଅଛି ଯାହା ଏକାଧାରରେ ପଞ୍ଚ ଇନ୍ଦ୍ରିୟକୁ ଆକ୍ରମଣ କରେ, ତୁରନ୍ତ ତା’ ପ୍ରତି ପ୍ରତିଆକ୍ରମଣ ଚଳାଇବାକୁ ଇଚ୍ଛା ହୁଏ । ବ୍ରେକ୍‌ଫାଷ୍ଟର୍ ଅଣ୍ଡା ପ୍ରତ୍ୟେକ ଶ୍ରୀମତୀ ତିଆରି

କରି ଆଣନ୍ତି । କାରଣ ସେ ଜାଣନ୍ତି ଓ ମୋର ବିଶ୍ୱାସ ଯେ ତାଙ୍କ ଛଡ଼ା ନିଖୁଣ ଅଣ୍ଡା-ଫ୍ରାଏ କରିବାର ଦକ୍ଷତା ଆଉ କାହାର ନାହିଁ ।

ଟୋଷ୍ଟ ସହିତ ଅଣ୍ଡା-ଫ୍ରାଏ ଆସିଲା । କିନ୍ତୁ ଏ କଣ ? ଆଜି ଏ କଅଣ ହୋଇଛି ? ଧଳାର ସୀମା ଉଦ୍‌ବୃତ୍ତ ଘିଅରେ ଦଗ୍ଧ ହୋଇ ମୋଡ଼ି ମୋଡ଼ି ହୋଇ ଯାଇଛି ଏବଂ ହଳଦିଆଟି ନାହିଁ ! ଆଠାଳ୍‌ ଅମୁହାଁ ହୋଇ ଗୋଟାଏ କଡ଼କୁ ଲେସି ହୋଇ ଯାଇଛି । ଏଭଳି ଗୋଟିଏ ବସ୍ତୁ ଉପରେ ଛୁରୀକଣ୍ଟା ଚଳାଇଲେ କି ସୁଖ ମିଳିବ ?

ହେତୁ ତାଙ୍କୁ ଦୋଷ ଦେବାକୁ ପଡ଼ିଲା । ଦୋଷ ଦେବାର କଣ ଯଥେଷ୍ଟ କାରଣ ନ ଥିଲା ?

କିନ୍ତୁ ମୁଁ ରାଗିଲି ନାହିଁ । କିଛି କହିଲି ନାହିଁ । ବିରାଗ ସହକାରେ ଅଣ୍ଡାକୁ କିଛି ସମୟ ଅନାଇଲି ଓ ତା' ପରେ କୁଣ୍ଠିତ ଭଙ୍ଗୀରେ କାଟିବାକୁ ଆରମ୍ଭ କଲି ।

ଭୁଲ୍‌ତ୍ରୁଟି କାହାର ହୁଏ ନାହିଁ ? କାର୍ଯ୍ୟରେ ହୁଏ, ଚିନ୍ତାରେ ହୁଏ । ବ୍ୟବହାରରେ ହୁଏ, ବାକ୍ୟରେ ହୁଏ । ଅତଏବ ଯେ ଭୁଲ କଲା ତାଙ୍କୁ ତର୍ଜମା ଦେଖାଇ ଛୁଃ ବୋଲି କହିବା ଉଚିତ ନୁହେଁ, ତା' ମନରେ ଗ୍ଲାନି ଆଣିବା ଉଚିତ ନୁହେଁ । ସେଥିରେ ତାର ଆତ୍ମବିଶ୍ୱାସ ବିକ୍ଷତ ହୁଏ, ଏବଂ ଭବିଷ୍ୟତରେ ଭୁଲ୍ କରିବାର ପ୍ରବଣତା ବଢ଼ିଯାଏ ମୁଁ ଏହି ଧାରଣା ସର୍ବଦା ପୋଷଣ କରି ଆସୁଛି । ତେଣୁ ମୋର ରାଗିବାର କୌଣସି କାରଣ ନ ଥିଲା ।

ଅବଶ୍ୟ ଯେ ଭୁଲ୍ କଲା ତା'ର ଜାଣିବା ଉଚିତ । ଜାଣିବା ଉଚିତ ଯେ ସେ ସାବଧାନ ସୁଚତୁର ପ୍ରମାଣ ହେଉ ନା କାହିଁକି, ତାର ମଧ୍ୟ ଭୁଲ୍ ହୋଇପାରେ । ସେଇଥିପାଇଁ ମୁଁ ରହି ରହି ମନ୍ଦ ଗତିରେ ଅଣ୍ଡାଟିକୁ ଖାଇବାକୁ ଲଗିଲି ।···ତୁମର ଭୁଲ୍ ହୋଇଛି, ତାର ଫଳ ମୋତେ ଭୋଗିବାକୁ ପଡ଼ୁଛି । କିନ୍ତୁ କଣ କରାଯିବ ? ଏମିତି ହୋଇଥାଏ ।

ଶ୍ରୀମତୀ ପାଖକୁ ଲଗି ଆସି ପଚାରିଲେ, "ଅଣ୍ଡାଟା ଖରାପ ହୋଇଗଲା—ନା ?"

ମୁଁ ନିରୁତ୍ତର ରହିଲି । ପ୍ରତ୍ୟକ୍ଷ ସତ୍ୟକୁ ଚହଲାଇବା ଦରକାର କଅଣ ?

ସେ ପୁଣି ପଚାରିଲେ, "ଆଉ ଗୋଟିଏ କରି ଆଣିବି ?"

ମୁଁ ଦୃଢ଼ ଭାବରେ ମୁଣ୍ଡ ହଲାଇ ମନା କଲି । କହିଲି, "ଠିକ୍ ଅଛି । ଏମିତିକା ଅଣ୍ଡା କଅଣ କେହି ଖାଆନ୍ତି ନାହିଁ ?"

ମୁଁ କେବଳ ଏତିକି କହିଲି ତାହା ନୁହେଁ, ଶ୍ରୀମତୀଙ୍କ ଫେଟେଣ୍ଟା ବାଟିକୁ କଣେଇ କଣେଇ ଗୃହିଁଲି । କାରଣ ମୋର ସନ୍ଦେହ ହେଲା ଯେ ମୋର ବାରଣ ନ ମାନି ଆଉ ଗୋଟିଏ ଅଣ୍ଡା ଢଆଣ କରି ଅଣି ପାରନ୍ତି । ଅସମ୍ଭବ ନୁହେଁ । ସେମିତି କହିଥଲେ ମୁଁ ହୁଏତ ଲମ୍ଫ ଦେଇ ଚଉକିରୁ ଉଠିଯାଇଥାଆନ୍ତି ଓ ଝପ୍ କରି ତାଙ୍କ ହାତକୁ ଧରି ପକାଇ ଥାଅନ୍ତି । ଭୁଲ୍‌କୁ ସୁଧାରି ନେବା କଣ ଏତେ ସହଜ, ଏତେ ସାମାନ୍ୟ ?

ମୁଁ ଅଶ୍ୱସ୍ତ ହେଲି ଯେ ସେ ସେଭଳି ବିରୋଧ ପ୍ରକାଶ କରୁନାହାନ୍ତି । କିନ୍ତୁ ମୁଁ ତାଙ୍କ ମୁହଁର ଚେହେରାରେ ଦୁଃଖ ବା ପରାଜୟର ଚିହ୍ନ ଦେଖିଲି ନାହିଁ, କେବଳ କଳ୍ପିତ ଭାରାପଣରେ ଅନୁମାନ କଲି । ଭାବିଲି ଯେ ସେଇ ଯଥେଷ୍ଟ । ଏ ଭାରାପଣ ହେଉଛି ଦୁଃଖକୁ ଘୋଡ଼ାଇବାର ପଲମ ।

ଖାଇ ସାରିବା ପୂର୍ବରୁ ସେ ଆଉ ଥରେ ଯନ୍ତ୍ରଚାଳିତ ଭାବରେ ପଚାରିଥଲେ,—
"କଣ କହୁଛ ? ଆଉ ଗୋଟାଏ କରିଦିଏ ?"

ମୁଁ ଅନୁରୂପ କଣ୍ଠରେ ଦ୍ୱିରୁକ୍ତି କରିଥଲି, "ନା-ନା ଠିକ୍‌ଅଛି ।"

ଏହାପରେ ବ୍ରେକ୍‌ଫାଷ୍ଟ ସମାପ୍ତ ହେଲା । ଶ୍ରୀମତୀଙ୍କର ଭୁଲ୍ ଓ ଭୁଲ୍‌ର ପରିଣତି ବାକି ରହିଲା ।

ଏହାର କ୍ରମଶଃ ଏପରି ହେବ ବୋଲି କିଏ ଜାଣିଥିଲା ? କିଏ ଜାଣିଥିଲା ଯେ ଗୋଟିଏ ଭୁଲ୍‌ର ଆବିଷ୍କାର ପରେ ଏତେଗୁଡ଼ିଏ ଭୁଲ୍ ଜଳ ଜଳ ହୋଇ ଆଖିରେ ପଡ଼ିବ ?

ଶ୍ରେଷ୍ଠ ଶ୍ରେଷ୍ଠ କଥା । କିନ୍ତୁ ନ କହିଲେ କାହାଣୀ ପୂରା ହେଉ ନାହିଁ । ଡ୍ରଇଁ ରୁମ୍‌ର ଯେଉଁ ଫର୍ନିଚରଗୁଡ଼ିକ କାଲି ରଙ୍ଗ ଓ ପାଲିସ କରି ଯାଇଥିଲା, ଆଜି ଦେଖୁ ମାଟିଆ ମଳଚଆ ଦେଖା ହେଉଛି । ଅଥଚ ମୁଁ ଆଶା କରିଥଲି ଯେ ଶ୍ରୀମତୀଙ୍କ ଧାରଣା ଅନୁଯାୟୀ ମୁଁ ସେଥରେ ମୁହଁ ଦେଖିପାରିବି । ହୁଏତ ନିଜ ମୁହଁ ଦେଖିଲାବେଳକୁ ଶ୍ରୀମତୀଙ୍କର ସସ୍ମିତ ସମୁଜ୍ଜ୍ୱଳ ମୁଖମଣ୍ଡଳ ତା' ଉପରେ ଲେପି ହୋଇଯିବ, ଯଥା ଜ୍ଞାନର ଦର୍ପଣ । କିନ୍ତୁ ଏ କଣ ହେଲା ? ଗତ କାଲି ମୁଁ ତାଙ୍କ କଥାକୁ କାଟି ନ ଦେଇ ରୁଚିପ୍ରଦ ଭାବରେ ଆରମ୍ଭ କରିଥିଲି ଯେ ବୋଧହୁଏ ଏଭଳି କାଠରେ ରଙ୍ଗ ଚମକିବ ନାହିଁ । କିନ୍ତୁ ମୁଁ ମୋ କଥା ପୂରା କରି ପାରିଲି ନାହିଁ । ସେ ବଢ଼େଇକୁ ଆଦେଶ ଦେଲେ । ଏବଂ ମୋ ପ୍ରତି ଉଦାର ହସରେ ଛୁଟିକାଏ ଛାଡ଼ି ଦେଲେ ।

ବ୍ରେକ୍ ଫାଷ୍ଟ୍ ପରେ ଆମେ ଦୁହେଁ ଡ୍ରଇଁରୁମ୍‌କୁ ଆସିଥିଲୁ । ମୁଁ ନୀରବରେ ଫର୍ନିଚର ଆଡ଼କୁ ଅଙ୍ଗୁଳି ଦେଖାଇଲି । ସେ ନିଷ୍ଟୟ ବୁଝିଥିବେ, କିନ୍ତୁ କିଛି କହିଲେ ନାହିଁ ।

ହାୟ ! ନିଜ ଦୋଷ ସ୍ୱୀକାର କରିବା କଅଣ ଭୀରୁତାର ଲକ୍ଷଣ ?

କିନ୍ତୁ ମୁଁ କହିଁତ ବିସ୍ମିତ ହେଲି ଯେ ସେ ସ୍ୱୀକାର ନ କରିବାର ଟାଣପଣ ମଧ୍ୟ ଦେଖାଉ ନାହାନ୍ତି । ମୁହଁଟା ସେମିତି ଭାରି ହୋଇଅଛି । ନା, ଦୁଃଖ ଯୋଡ଼ାଇ-ବାର ପଲମ ପବ ଦିଶୁ ନାହିଁ । ତା' ଠାରୁ ଆହୁରି ଗମ୍ଭୀରଥା, ଆହୁରି ବର୍ତ୍ତୁଳ । ସତେ କି ସେ କିଛି ଯୋଡ଼ାଇବାକୁ ଯାଉ ନାହାନ୍ତି, ସମ୍ପାଧ ରଖିଛନ୍ତି, ଜମାଉଛନ୍ତି । ଯଥା ସମୟରେ ପ୍ରକାଶ କରିବେ, ପ୍ରମାଣ ଦେବେ, ଆଖି ଝଲସାଇ ଦେବେ । ଯାହାହେଉ ମୁଁ ସେଥିରେ କିଛି ଗୁରୁତ୍ୱ ଦେଲି ନାହିଁ । ବ୍ରେକ୍ ଫାଷ୍ଟର ଅଣ୍ଡା ପରେଠାରୁ ମୋର ଧାରଣା ବଢ଼ି ଚାଲିଲା ଯେ, ସେ ବୁଝିବେ । ହୁଏତ ଆଜିକାର ଦିନ ସରିବା ଆଗରୁ,— କିଏ କହିବ ?

କେବଳ ନିଜ ଭୁଲ୍ ବୁଝିବା କଥା କହୁନାହିଁ । ମୋତେ ବୁଝିବେ ଯେ ମୁଁ ତାଙ୍କ ଭୁଲ୍‌ର ପରିଚୟ ଦେଇ ପାରିବି, ପ୍ରତିକାର କରି ପାରିବି ।

କଥା ହେଉଛି ଯେ ଖାଲି ଭଲପାଇବା କଣ ଯଥେଷ୍ଟ ? ଯଦ୍ୟପି ମୁଁ ସେଥିରେ କେବେହେଲେ ଊଣା କରି ନାହିଁ । ସବୁଦିନ ପରି ସେଦିନ ମଧ୍ୟ ଅଫିସ୍ ଯିବା ଆଗରୁ ମୁଁ ତାଙ୍କ କପୋଳରେ ଯଥାବିଧି ଚୁମା ଦେଲି ।

...ଅଫିସକୁ ଯାଇ ମୁଁ ଯାରବନ୍ଦମରେ କାମ କରି ବସିଲି । କେଜାଣି କାହିଁକି ମୋତେ କାମ କରିବାକୁ ଭାରି ହାଲୁକା ଲାଗୁଥାଏ ।

ପ୍ରତ୍ୟେକ ଦିନ ଲଞ୍ଚ୍ ପରେ ମୁଁ ତାଙ୍କ ପାଖକୁ ଫୋନ୍ କରେ । ଆଜି ମଧ୍ୟ କଲି । କିନ୍ତୁ ଆଜି ବୋଧହୁଏ ଟିକିଏ ଡେରି ହୋଇଗଲା । କାରଣ ଶ୍ୟାମଳୀ ଦତ୍ତ ନାମରେ ଜଣେ ଜୁନିୟର ମୋ ପାଖକୁ ଆସି କୌଣସି ବିଷୟରେ ପରାମର୍ଶ ମାଗିଲେ ଓ ମୁଁ ମୋର ପରାମର୍ଶଟିକୁ ଉତ୍କୃଷ୍ଟ କରିବାକୁ ଚେଷ୍ଟା କଲି । କେତେବେଳକେ ମୋର ଚେତା ପଶିଲା ଯେ ଠିକଣା ଟାଇମ୍‌ରୁ ପାଞ୍ଚ ମିନିଟ୍ ପାର ହୋଇ ଗଲଣି । ତେଣୁ ମୁଁ ମିସ୍ ଦତ୍ତଙ୍କ ପାଖରୁ କ୍ଷମା ମାଗି କହିଲି ଯେ ବାକିତକ ପରେ କହିବି, ଘରକୁ ଗୋଟିଏ ଜରୁରୀ ଫୋନ୍ କରିବାକୁ ଅଛି ।

ଶ୍ରୀମତୀ ମୋର ବିଳମ୍ବ ଉପରେ ଆକ୍ଷେପ କରି କିଛି କହିଲେ ନାହିଁ । କିନ୍ତୁ ପ୍ରକୃତରେ କେତେ ସମୟ ଯାଏଁ ମୁଁ ମୋର ଅନୁଚିତ ବିଳମ୍ବ ପାଇଁ ଦୁଃଖ କଲି ।

ଏବଂ କେତେ ସମୟ ଯାଏଁ ମୋର ମନରେ ଏକ ଅପୂର୍ବ ଭାବ ଆସିଲା ଯେ ଆଜି ଶ୍ୟାମଳୀକୁ ଭଲ ଭାବରେ ଦେଖିଲି ! କେଉଁ ଅଂଶଟିକୁ ଆଗରୁ ଦେଖି ନ ଥିଲି ଯାହା ଆଜି ଦେଖିଲି ଏ ଭଳି ପ୍ରଶ୍ନ କଲେ ମୁଁ ଅସୁବିଧାରେ ପଡ଼ିବି । ତେବେ ମୋଟା ମୋଟି ଏତିକି କହିହେବ ଯେ ପ୍ରଥମଥର ପାଇଁ ମୁଁ ତାକୁ ଜଣେ ପୂର୍ଣ୍ଣାଙ୍ଗ ନାରୀ

ରୂପରେ ଦେଖିଲି । ବୋଧହୁଏ ଆହୁରି ଟିକିଏ ବ୍ୟାଖ୍ୟା କରିବା ଆବଶ୍ୟକ । ଆମ ଅଫିସରେ ଅନେକ ନାରୀ ଅଛନ୍ତି । ଅଫିସ୍‌କୁ ଆସିବା ଓ ଅଫିସ୍‌ରୁ ଫେରିବା ବାଟରେ ମଧ୍ୟ କେତେ ନାରୀମୂର୍ତ୍ତି ଆଖିରେ ପଡ଼ନ୍ତି । କାହାର ଟଣା ଟଣା ଆଖି, କାହାର କେଶ ବିନ୍ୟାସ, କାହାର ଭଗ୍ନ ନିତମ୍ବ, ଅବା କାହାର ଉଚ୍ଚ ଗ୍ରୀବା ମୋ ମନରେ ଉଦ୍ଦୀପନା ଆଣେ, ଧପ୍ କରି ନାରୀତ୍ୱର ମୋହରଟିଏ ବାଡ଼େଇ ଦେଇ ଚାଲିଯାଏ । ବେଶ୍ ସେତିକି ସେଇ ଚେନାଏ । ସେଇ ଚେନାକରୁ ଆଗେଇ ଯାଇ ସମ୍ପୂର୍ଣ୍ଣ ନାରୀ-ମଣିଷକୁ ଦେଖିବାକୁ ଅର୍ଥାତ୍ ବ୍ୟକ୍ତି ବିଶେଷରୂପେ ଗ୍ରହଣ କରିବାକୁ କେଜାଣି କାହିଁକି ଡର ଲାଗେ । ସତେ କି ମୋତେ ମନା କରାଯାଇଛି । ସତେ କି ଶ୍ରୀମତୀ ଜାଣି ପାରିବେ ଓ ଜାଣିଲା ପରେ ହସିବେ । କିନ୍ତୁ ମୁଁ ଆଜି ମିସ୍ ଦାସଙ୍କ ପ୍ରତ୍ୟେକ ସ୍ଫୁରଣ, ଉନ୍ମେଷ ଓ ଉନ୍ମୀଳନକୁ ଦେଖିଲି, ନିତେଇ କରି ଦେଖିଲି ଓ ଖୁସିହେଲି । ବାରମ୍ବାର ନିଜକୁ ଚହ୍ଲାଇଲି ଯେ ଏ ମଧ୍ୟ ଜଣେ ନାରୀ । ଏବଂ ମୋର ଇଚ୍ଛା ହେଲା ଯେ ଏମିତି ଗୋଟି ଗୋଟି କରି ସମସ୍ତ ନାରୀମାନଙ୍କୁ ଦେଖିବି ।

ଆଜିକାର ଘଟଣା ସହିତ ମୋର ଏପରି ଭାବର୍ବାର ସମ୍ପର୍କ ନ ଥାଇ ପାରେ । କିନ୍ତୁ ଯଦିବା ସେଥିରେ କିଛି ଭୁଲ ଥାଏ, ଶ୍ରୀମତୀ କଣ ଏମିତିକା ଭୁଲ୍ କରନ୍ତେ ନାହିଁ ? ନା ସେହେତୁ ମୁଁ ତାଙ୍କୁ ହୀନ ଚକ୍ଷୁରେ ଦେଖନ୍ତି ?

…ଅଫିସରୁ ଫେରିବା ବାଟରେ ମୁଁ ଦରଜୀ ଦୋକାନକୁ ଯାଇ ମୋର ଗୋଟିଏ ପ୍ୟାଣ୍ଟ୍‌ର ଡେଲିଭରି ନେଲି । କନାଟିକୁ ଶ୍ରୀମତୀ ବାଛି ଥିଲେ (ଅଉ କିଏ ବାଛନ୍ତା ?) । ପ୍ୟାଣ୍ଟ୍‌ର ମାପ ମଧ୍ୟ ଶ୍ରୀମତୀଙ୍କ ନିର୍ଦ୍ଦେଶ ଅନୁଯାୟୀ ନିଆ ହୋଇଥିଲା, ଯଦ୍ୟପି ମୁଁ ମୋର ଆଶଙ୍କା ଜଣାଇଥିଲି ଯେ ମୋର ଅଣ୍ଟା ଚପି ହୋଇ ଯାଇପାରେ । ଦେଖିଲା ବେଳକୁ ମୁଁ ଯାହା ଭାବିଥିଲି ସେଇଆ । କେବଳ ଅଣ୍ଟା ନୁହେଁ, ମୋର ନିମ୍ନ ଅଙ୍ଗ ସମସ୍ତ ଚପି ହୋଇ ଯାଉଛି !

ମୁଁ ନୂଆ ପ୍ୟାଣ୍ଟ୍ ପିନ୍ଧି ଶ୍ରୀମତୀଙ୍କୁ ମୋର ଦୁରବସ୍ଥା ଦେଖାଇଲି । ସେ ଉଚ୍ଚ ବାଚ୍ୟ ନ କରି ପଚାରିଲେ, "ତୁମେ ଦରଜୀକୁ ଦେଇ ଅସୁ ନାହିଁ ? ସେ ଠିକ୍ କରିଦେବ ।"

ମୁଁ କହିଲି "ନା ଠିକ୍ ଅଛି । ଏକଦମ୍ ଫିଟ୍ ନ ପିନ୍ଧିଲେ କଣ ଚଳିବ ନାହିଁ ?"

ଅର୍ଥାତ୍ ପୁଣି ଜଣାଇ ଦେଲି ଯେ ତୁମର ଭୁଲ୍, ତାକୁ ଏହି ପରିତେ, କିନ୍ତୁ ମୁଁ ସେଥିରେ ବିଚଳିତ ହେବାର ଲୋକ ନୁହେଁ ।

ଶ୍ରୀମତୀ ନମା ଆଡ଼କୁ ସ୍ଥିର ଦୃଷ୍ଟିରେ ଚାହିଁଲେ । ସତେ କି ସେ ମୋର ଉତ୍ତରକୁ ହୃଦୟଙ୍ଗମ କରିବାକୁ ଚେଷ୍ଟା କରୁଛନ୍ତି । ବୁଝିସାରି ତାଙ୍କ ଗମ୍ଭୀର ମୁହଁର ପଲମ ଭିତରେ ସଜାଡ଼ିଦେବେ । ତାଙ୍କର ଏହି ଅଧ୍ୟବସାୟ ଦେଖି ମୋ ମନରେ ଦୟାର ଉଦ୍ରେକ ହେଲା । ଏ କଷ୍ଟସାଧନ କେଉଁଥିପାଇଁ ? ମୋର ଇଚ୍ଛା ହେଲା ତାଙ୍କୁ ଆଶ୍ୱାସନା ଦେବି । କହିବି ଯେ ମଣିଷ ଭୁଲ୍ କରି ବଡ଼ ହୁଏ । ଭୁଲ୍ କରି ଶିଖେ । ଛଟିଆ ବଙ୍କା ହୋଇ ସିଧା ହୋଇ ଯିବାରୁ ସିନା କେତେ କୂଳ ଛୁଇଁ ଛୁଇଁ ଯାଏ, କେତେ ଭୂଇଁ ନିଭିଜାଇ ଯାଏ !

କହି ଥାଆନ୍ତି । କହି ପାରିଲି ନାହିଁ । କାଳେ ସେ ଭାବିବେ ଯେ ମୁଁ ତାଙ୍କ ଭୁଲ୍‌ର ସୁଯୋଗ ନେଇ ନଜର ବଢ଼େଇ କରୁଛି ।

ଦୁର୍ଭାଗ୍ୟ ! ସେଦିନ ସନ୍ଧ୍ୟାବେଳେ ଅଉ ଗୋଟିଏ ଘଟଣା ଘଟିଲା । ଅବସ୍ଥାର କରିଗଲା ଯେ ଆମର ନୂଆ ବଲେଇ ଛୁଆଟି ମରି ଯାଇଛି । ସେଥିପାଇଁ ଶ୍ରୀମତୀଙ୍କୁ ଦୋଷୀ ବୋଲି ସାବ୍ୟସ୍ତ କରିଯାଇପାରେ ନାହିଁ । କିନ୍ତୁ ହୁଏତ ସେ ଯଦି ତାକୁ ଆଲମାରୀ ଭିତରେ ନ ରଖି ଝୋଲା ଟୋକେଇ ଭିତରେ ରଖିଥାଆନ୍ତେ, ତାହାହେଲେ ସେ ବଞ୍ଚି ଯାଇ ଥାଆନ୍ତା । ମୁଁ ମୋର ଆଶଙ୍କା ଜଣାଇଥିଲି, କିନ୍ତୁ ସେ ସେଥିରେ ଗୁରୁତ୍ୱ ଦେଇ ନ ଥିଲେ । ଫଳତଃ— ।

ଏଥର ମୁଁ ତାଙ୍କ ଭୁଲ୍ ଦେଖାଇବାର ଚେଷ୍ଟା କଲି ନାହିଁ । ମୋର ହୃଦୟ ସହାନୁଭୂତିରେ ଭରିଗଲା । ସନ୍ଧ୍ୟାର ଧୂସର ଛାଇରେ ତାଙ୍କ ମୁହଁରେ ଯେଉଁ ଘନୀଭୂତ ଭାବ ପ୍ରକଟିଲା (ସେଥିରେ ଦୁଃଖ, କ୍ଷୋଭ, ଗ୍ଲାନି ଯାହା ଥାଉ ପଛକେ , ତାକୁ ଦେଖି ମୋର ପ୍ରେମପ୍ରବଣ ମନ ପୁଣି କିଛି କହିବାକୁ ଖୁଜୁବୁଜୁ ହେଲା । ଏଇଥର କହିବାକୁ ଯେ—

ଆସ, ମୁଁ ତୁମକୁ ଏଇ ସନ୍ଧ୍ୟାର ପରିଭାଷା ବୁଝେଇ ଦେବି । କବିତାରେ ଶୁଣେଇବି । ବିଜ୍ଞାନରେ ବଖାଣିବି ।

ଆସ, ମୁଁ ତୁମକୁ ଦେଶର ଆର୍ଥିକ ପରିସ୍ଥିତି ବିଷୟରେ ପଦେ ଅଧେ କହିବି । ଯେଉଁଥିରୁ ତୁମେ ଜାଣି ପାରିବ ଯେ କେବଳ ସରକାରକୁ ଗାଳି ଦେଲେ ଏତେ ବଡ଼ ଜଟିଳ ସମସ୍ୟାର ସମାଧାନ କରିଯାଇ ପାରିବ ନାହିଁ ।

ଆସ, ମୁଁ ତୁମକୁ ଶିଶୁ ମନସ୍ତତ୍ତ୍ୱ ସମ୍ପର୍କରେ କିଛି କହିବି । ସେଇଠୁଁ ତୁମେ ବୁଝିପାରିବ ଯେ ପାଞ୍ଚବର୍ଷର ଝିଅଟାକୁ ଏମିତି ଗାଳି ଦେବା ପିଟିବା ଉଚିତ ନୁହେଁ ।

ଆସ, ମୁଁ ତୁମକୁ ଅନେକ କଥା କହିବି । ଅନେକ କଥା । ତୁମରି ଭଲ ପାଇଁ, ତୁମର ଭ୍ରମ ଦୁଃଖ ଘୁଞ୍ଚାଇବା ପାଇଁ । ଜାଣିଛ, ସେଥିରେ ଆମର ପ୍ରେମ କେତେ ବଳିଷ୍ଠ କେତେ ଉନ୍ନତ ହୋଇ ଉଠିବ ?

ମୋର ଅନ୍ତରର ନିମନ୍ତ୍ରଣ ଅବ୍ୟକ୍ତ ରହିଲା । ରହୁ, ଆଜି ଦିନଟା କଟିଯାଉ । ନ ହେଲେ ସେ କାଲେ ଭାବିବେ ଯେ— । କିନ୍ତୁ ସେହି ଭାବର ପ୍ରରୋଚନାରେ ମୁଁ ଗୋଟିଏ ଅସାଧାରଣ କାମ କଲି । ମୁଁ ରାତି ସାଢ଼େ ଆଠଟା ବେଳେ ତାଙ୍କୁ ଚମକାଇ କୁଣ୍ଢାଇ ପକାଇଲି (ସେତେବେଳେ ସେ ମନ ମାରି ଦେଇ କଣ ଗୋଟାଏ ମ୍ୟାଗାଜିନ୍ ପଢ଼ୁଥିଲେ) ଓ ତାଙ୍କ ବିସ୍ମୟ-ବିହ୍ୱଳ ଗୃହିଣୀକୁ ସମ୍ମାନ ଦେଲା ପରି ଆଖି ପତାରେ ଚୁମା ଦେଲି ଓ ତାଙ୍କର ହାତ ପାପୁଲିକୁ ମୁଠାଇ ଧରିଲି ।

ତାଙ୍କର ଭାଷା ମୁହଁ ନିଷ୍ପନ୍ଦ ନରମ ହୋଇ ଆସିଲା । ପାଇବାର ଅପ୍ରତ୍ୟାଶିତ ସଙ୍ଘାତରେ ସେ ନିଷ୍ପନ୍ଦ ଜାଗ୍ରତ ହେଲେ, ଉଦ୍ଦୀପ୍ତ ହେଲେ । ତାଙ୍କର ଦେହ ହାତ ଓ ଓଠ ଚଞ୍ଚଳ ହେଲା ପରି ଦିଶିଲା । ମୋର ମନେ ହେଲା ସେ ଯେ କୌଣସି ମୁହୂର୍ତ୍ତରେ ମୋର ଛାତିରେ ଲେଟି ପଡ଼ିବେ ଓ କହିବେ,—ମୁଁ ତୁମକୁ ଚାହେଁ । ମୁଁ ତୁମ କଥା ଶୁଣିବାକୁ ଚାହେଁ ।

ସେ ନତମୁଖୀ ହୋଇ ତାଙ୍କ ହାତକୁ ଧୀରେ କାଢ଼ି ଆଣିଲେ । କିନ୍ତୁ ମୋର ଦୃଢ଼ ଧାରଣା ହେଲା ଯେ ସେ ଅନ୍ତରେ ଆପଣାକୁ ସଁପି ଦେଇ ଥାଆନ୍ତେ ଯଦି ଗୋଟାଏ ଦିନରେ ଏତେଗୁଡ଼ାଏ ଘଟଣା ଘଟି ନ ଥାଆନ୍ତା, ପୁଞ୍ଜୀଭୂତ ପରାଭବର ଖୋଲପା ଏତେ ଟାଣ ହୋଇ ନ ଥାଆନ୍ତା । ହେଉ, ଆଜିକା ଦିନଟା କଟିଯାଉ ।

ସେଦିନ ରାତିରେ ଶୋଇବା ବେଳକୁ ମୁଁ ତାଙ୍କ ଓଠରେ ଏକ ସ୍ୱଗତ ହସର ସଞ୍ଚାର ଦେଖିଲି । ମୁଁ ତାର ରୂପଗୁଣ ଠଉରେଇ ପାରିଲି ନାହିଁ ।

× × ତା' ପରଦିନ ସକାଳେ । ଅଉ ଗୋଟିଏ ବ୍ରେକ୍‌ଫାଷ୍ଟ୍ । ଆଉ ଗୋଟିଏ ଅଣ୍ଡା-ଫ୍ରାଏ । —ମୁଁ ଅଭ୍ୟସ୍ତ ଅପେକ୍ଷାରେ ଥିଲି । ଗତକାଲିର ବ୍ୟତିକ୍ରମ ମୋ ମନରେ ନଥିଲା ।

ତା'ପରେ ମୁଁ ଅନ୍ୟମନସ୍କ ଭାବରେ ଦେଖିଲି ଓ ଦେଖି କରି ଚହଙ୍କି ଉଠିଲି । ସତ ନା ମିଛ ? ଦ୍ୱିତୀୟ ବାର ! କ୍ରମାନ୍ୱୟରେ ଦ୍ୱିତୀୟ ବାର ସେହି ବିକୃତ ବିକଳାଙ୍ଗ—ଅଣ୍ଡା-ଫ୍ରାଏ !

ମୁଁ ପ୍ରଥମେ ଆଶ୍ଚର୍ଯ୍ୟ ହେଲି । ସେହିଠୁଁ ମୋ ମନରେ ସନ୍ଦେହ ହେଲା । ସନ୍ଦେହ ହେଲା ଯେ ଶ୍ରୀମତୀଙ୍କ ଦ୍ୱାରା ବାରମ୍ବାର ଏପରି ଭୁଲ୍ ହୋଇ ନ ପାରେ । ତାହାହେଲେ—କଣ ସେ ଜାଣିଶୁଣି··· ? ମୁଁ ବିମୂଢ଼ ହେଲି । କେଉଁ ଏକ ଅସ୍ପଷ୍ଟ ବିଦ୍ରୂପର ସୁର ମୋ ମନକୁ ଛେଙ୍କିଲା ଓ ହସିବାକୁ କହିଲା । ମୋର ମନେ ହେଲା ଯେ ନ ହସିଲେ ମୋର ସମସ୍ତ ମଣିଷପଣିଆ ସମସ୍ତ ସ୍ୱାମୀପଣ ବ୍ୟର୍ଥ ହୋଇଯିବ ।

ତେଣୁ ମୁଁ ରାଗିଲି । ଚିତ୍କାର କରି ହାତ ଗୋଡ଼ ବାଡ଼େଇବାର ଅଡ଼ମ୍ବର କଲି ନାହିଁ । କେବଳ ତାଙ୍କ ଆଡ଼କୁ କଟମଟ କରି ଚାହିଁଲି । ବୋଧହୁଏ ମୁଁ ଆଗରୁ କେବେହେଲେ ଏମିତି ରାଗି ନ ଥିଲି, ତାଙ୍କ ଆଡ଼କୁ ଏମିତି ଚାହିଁ ନ ଥିଲି ।

ମୁଁ ଜାଣେ ମୋ ଚାହାଣୀରୁ ତାଜା ନଗେଲା ବିଷ ଝରି ପଡ଼ୁଥିଲା । ତଥାପି ମୁଁ ତାକୁ ଝରିବାକୁ ଦେଲି ।

## ଦୁଇ

ଶ୍ରୀମତୀ ରାଏ ଯାହା କହିଲେ—

ମୋ କଥା ଟିକିଏ ଶୁଣନ୍ତୁ । ନ ଶୁଣିଲେ ଚଳିବ ନାହିଁ ।

ପ୍ରଥମରୁ କହି ରଖେ ଯେ ମୋ ନାଁ ମିସେସ୍ ରାଏ ନୁହେଁ । ମୁଁ ବାରମ୍ବାର ସମସ୍ତଙ୍କୁ କୁହେ ଯେ ମୋର ନିଜର ଗୋଟିଏ ନାଁ ଅଛି—କାମିନୀ, ଯାହାକୁ ବାପ ମାଆ ବାଛି ବାଛି ଦେଇଥିଲେ । ମୁଁ ଅମୁକର ସ୍ତ୍ରୀ ହିସାବରେ ଏ ସଂସାରକୁ ଆସି ନାହିଁ । ତା'ଠାରୁ ବରଂ ମୋତେ ଅମୁକର ମାଆ ବୋଲି ଡାକ, ସେଥିରେ ଅଧିକ ମର୍ଯ୍ୟାଦା ଅଛି, କାରଣ ଲୋକେ ଜାଣିବେ ଯେ ମୁଁ ମୋର ନିଜର ଗୋଟିଏ ଝିଅକୁ ଜନ୍ମ କରିଛି ।

ଅବଶ୍ୟ ଏଥିରୁ ବୁଝିବାକୁ ହେବ ନାହିଁ ଯେ ମୁଁ ତାଙ୍କର ସ୍ତ୍ରୀ ହେବାକୁ ନାପସନ୍ଦ କରୁଛି ବା କରୁଥିଲି । ମୁଁ ସ୍ପଷ୍ଟ ଭାବରେ କହି ଦେଉଛି ଯେ ମୁଁ ନିଜେ ଜାଣିଶୁଣି ତାଙ୍କୁ ବାହା ହୋଇଛି ଏବଂ ସେ ମୋତେ ବାହା ନ ହୋଇ ରହି ପାରି ନ ଥାଆନ୍ତେ । ନାହିଁକି ସେ କଥା ପଚାରନ୍ତୁ ନାହିଁ । ମୁଁ କେଉଁ ଧାତୁରେ ଗଢ଼ା କେଜାଣି, ମୋତେ ଆଗତ ଭବିଷ୍ୟତର ଛବି ଦିଶିଯାଏ । ପିଲାଦିନେ ବାପା କେସ୍ ଜିତିବେ କି ହାରିବେ ସବୁ ମୋତେ ପଚାରୁଥିଲେ ପରା ।

ଏଇ ଧରନ୍ତୁ ସେଦିନ କଥା । ରାତି ପାହିବା ଆଗରୁ ମୁଁ ଜାଣି ପାରିଥିଲି ଯେ କିଛି ଗୋଟାଏ ଘଟିବ । ରାତି ଅଧରେ ଯେତେବେଳେ ଆଲୁଅ ଜଳା ହେଲା ଓ ମୁଁ ତାଙ୍କ ମୁହଁକୁ ଦେଖିଲି, ସେତିକିବେଳେ ମୋର ମନେ ହେଲା ଯେ କାଲି ସକାଳେ ତାର ଚେହେରା ବଦଳିଯିବ, ଏବଂ ସେଥିପାଇଁ ମୋତେ ପ୍ରସ୍ତୁତ ହେବାକୁ ପଡ଼ିବ ।

ରାତି ଅଧରେ ସେ ମୋତେ ନିଦରୁ ଉଠାଇଥିଲେ । ସପ୍ତାହକୁ ପ୍ରାୟ ତିନିଥର ଉଠାନ୍ତି ଓ କାମ ସାରି ଆଲୁଅ ଜଳାଇଲା ବେଳକୁ ଟାଇମ୍‌ପିସ୍‌ର ଘଣ୍ଟା କଣ୍ଟା ବାରଟା ସେ ପାଖକୁ ଚାଲି ଯାଇଥାଏ । କିନ୍ତୁ ଏଥର ଯେମିତି ଘଣ୍ଟାକୁ ଦେଖିଲି ମୋର ସଙ୍ଗେ ସଙ୍ଗେ ତାଙ୍କ ମୁହଁକୁ ଦେଖିବାକୁ ଇଚ୍ଛା ହେଲା । ସତେ କି ଦୁଇଟି ଯାକ ଛାଣ୍ଡ

ରୁଟିନ୍ ଏକା ଧରଣିଆ ବସ୍ତୁ, ଓ ମୁଁ ସେମାନଙ୍କୁ ଯଥାସ୍ଥାନରେ ରଖିଛୁ । ମୁଁ ଦେଖିଲି ଓ ହସି ପକାଇଲି ।

ତା'ପରେ ହଠାତ୍ ମୋର ଆଶଙ୍କା ହେଲା । ମୋତେ ଲାଗିଲା ଯେ ତାଙ୍କର ଭୁଣ୍ଡି ଅତି ଅଧିକ ପାଲିସ୍ ହୋଇଗଲାଣି ଅର୍ଥାତ୍ ଘୋଷ ହୋଇ ଗଲାଣି । ଟିକକରେ ଛିଣ୍ଡି ଯିବ କିମ୍ବା ଭାଙ୍ଗି ଯିବ । ସେଇଠୁଁ କଣ ହେବ ?

ଆଶଙ୍କା ସହିତ ମୋର କୌତୁହଳ ଜାଗି ଉଠିଲା । କ୍ରମଶଃ ଚ୍ୟାଲେଞ୍ଜର ଗୋଟିଏ କଡ଼ାମିଠା ଭାବ ମୋ ମନକୁ ଆସିଲା । ସକାଳେ ନିଦରୁ ଉଠିଲା ବେଳକୁ ମୁଁ ଉଦ୍ୟତ ଥିଲି; ସତେ କି ନିକଟ ଭବିଷ୍ୟତରେ ହୁଏତ ଆଜି, ମୋତେ ଏକ ନୂତନ ପରିସ୍ଥିତିର ମୁକାବିଲା କରିବାକୁ ପଡ଼ିବ । ଭଲ, ଭଲ, ମୁଁ ହେଇସ୍ଥା ଚାହେଁ ।

...ମୋତେ ବିଶ୍ୱାସ କରନ୍ତୁ ଯେ ମୋର ଏହି ମନୋଭାବ ସହିତ ବ୍ରେକ୍‌ଫାଷ୍ଟ ପାଇଁ ଅଣ୍ଡା-ଫ୍ରାଏ ତିଆରି କରିବାର କୌଣସି ସମ୍ପର୍କ ନ ଥିଲା । ତାଉଆର ଦୋଷ ଥିଲା କିମ୍ବା ଅଣ୍ଡାର ଦୋଷ ଥିଲା କହିପାରିବି ନାହିଁ, କିନ୍ତୁ ମୋ ଆଡ଼ୁ ଜାଣିଶୁଣି ଏଭଳି ବ୍ୟତିକ୍ରମ କରିବାର ଉଦ୍ଦେଶ୍ୟ ନ ଥିଲା । ତଥାପି ଆପଣ କହି ପାରନ୍ତି ଯେ ତାଉଆ ଇତ୍ୟାଦିର ହିସାବରେ ଦୋଷ ଥିଲେ ମଧ୍ୟ ଏପରି ଅସମ୍ଭବ ଘଟଣା ଘଟିଲା କେମିତି ? କାମିନୀ ସ୍ୱାମୀ ହାତରେ ଅଣ୍ଡା-ଫ୍ରାଏ ଏତେ କୁରୂପ ହୋଇ ଉଠିବ, ଏହା କଳ୍ପନା-ତୀତ । କିନ୍ତୁ ହେଲା । ତାହାହିଁ ହେବାର ଥିଲା । ମୁଁ ସବୁ ଅଧିରୁ ଜାଣିଥିଲି ।

ଆଉ ଗୋଟାଏ ଅଣ୍ଡା-ଫ୍ରାଏ କରି ଆଣିବି କି ନାହିଁ ବୋଲି ଥରେ ଅଧେ ପଚାରିଥିଲି । କିନ୍ତୁ ଜୋର୍ କଲି ନାହିଁ । ଏହି ଅସ୍ୱାଭାବିକ ଓ ଅପ୍ରୀତିକର ଅଣ୍ଡା ଖାଇବାକୁ ଯାଇ ତାଙ୍କ ଭୁଣ୍ଡ ଟାଇମ୍‌ପିସ୍‌ର ଡାଏଲ୍ ଟି କେଉଁଠି ଫାଟିଯିବ ଓ ତା' ପରେ ସେ କେମିତି ଦେଖାଯିବେ କଅଣ କହିବେ, ତାକୁହିଁ ଦେଖିବାର ଲୋଭ ସମ୍ଭାଳି ପାରିଲି ନାହିଁ ।

ପ୍ରଥମେ ମୁଁ ଭାବିଲି ଯେ ମୋର ଧାରଣା ଠିକ୍ ନୁହେଁ । ମୁଁ ଯାହାକୁ ଏତେ ଯତ୍ନରେ ଘଷିମାଜି ପାଲିସ କରିଛି ତାକୁ ଭଙ୍ଗୁର ବୋଲି ଆଖ୍ୟା ଦେଇ ମନ ମୁତାବକ ଭାଙ୍ଗିବାକୁ ବସିଲେ ଭାଙ୍ଗିବ ନାହିଁ, ବଦଳାଇବାକୁ ଚାହିଁଲେ ବଦଳିବ ନାହିଁ । ମୁଁ ମୋର କୃତିତ୍ୱକୁ ଖାତିର୍ କଲି । ଭାବିଲି ଯେ ସାମାନ୍ୟ ଅଣ୍ଡା-ଫ୍ରାଏର ବିକୃତି ଯଥେଷ୍ଟ ନୁହେଁ ହୁଏତ ଘର ପୋଡ଼ିଗଲେ କିମ୍ବା ତାଙ୍କ ପ୍ରିୟ କାମେରାଟି ମୋ ହାତରୁ ପଡ଼ି ଭାଙ୍ଗିଗଲେ କିମ୍ବା...

ମୁଁ ସ୍ପଷ୍ଟ ଜାଣିପାରିଲି ଯେ ସେ ରାଗୁ ନାହାଁନ୍ତି । ପୁଣି ଜାଣିଲି ଘଟଣାର ଅଭିନବତ୍ୱ ତାଙ୍କୁ କୁତୁ କୁତୁ କରୁ ନାହିଁ । କିନ୍ତୁ ମୁଁ ଏକ ଅପ୍ରାକୃତିକ ଭାବର ଲକ୍ଷଣ

ଦେଖିଲି । ମୋର ମନେ ହେଲା ଯେ ସେ ଜାଣି ଶୁଣି ତାଙ୍କ ମୁହଁକୁ ସାମାନ୍ୟ ଫୁଲାଇଛନ୍ତି ଓ ତା' ସାଙ୍ଗକୁ ତାଙ୍କ ଗ୍ଲୁଡ ମଧ୍ୟ ଅଳ୍ପ ବହୁତ ଫୁଲି ଉଠୁଛି ।

ଏପରିକି ମୋର ଭ୍ରମ ହେଲା ଯେ ଯଦି ମୁଁ ତାଙ୍କର ବାରଣ ନ ମାନି ଆଉ ଗୋଟିଏ ଅଣ୍ଡା-ଫ୍ରାଏ କରିବାକୁ ଯାଇଥାଆନ୍ତି ସେ ପାଗଳଙ୍କ ପରି ଦୌଡ଼ିଆସି ମୋ ହାତକୁ ଧରି ପକାଇ ଥାଆନ୍ତେ ଓ କହିଥାଆନ୍ତେ—ତୁମକୁ ଭଗବାନଙ୍କ ଦୁହାଇ । ମୋତେ ଭଲ ଅଣ୍ଡା ତିଆରି କରି ଦିଅ ନାହିଁ ।

ସତେ କି ଏହି ବିକୃତ ଅଣ୍ଡା ଖାଇବାରେ ତାଙ୍କର କିଛି ବାହାଦୁରି ଅଛି ! ସତେ କି ସେ କେଉଁ ଗଡ଼ ଜିତି ଯାଇଛନ୍ତି !

ମୁଁ ସେହି ଭାବର ତାତ୍ପର୍ଯ୍ୟ ସହଜେ ଉଦ୍ଧାରି ପାରିଲି ନାହିଁ । ବୁଝିଲି ଯେତେବେଳେ ବ୍ରେକ୍‌ଫାଷ୍ଟ ପରେ ଆମେ ଦୁହେଁ ଡ୍ରଇଂରୁମ୍‌କୁ ଆସିଥିଲୁ, ଓ ସେ ଓଠକୁ ଚିପି ହାତକୁ ଦିରଉଠା କରି ଫର୍ନିଚରଗୁଡ଼ିକ ଆଡ଼କୁ ଆଙ୍ଗୁଳି ଦେଖାଇଲେ । ଅର୍ଥାତ୍—ଦେଖ; କେବଳ ଅଣ୍ଡାଫ୍ରାଏ ନୁହେଁ, ଏ ଫର୍ନିଚର୍‌କୁ ମଧ୍ୟ ଦେଖ ।

ବୁଝିଲି । ସେ ମୋତେ ଦୋଷ ଦେଉଛନ୍ତି ଏବଂ ସେହି ସୁଯୋଗ ପାଇଥିବାରୁ ତାଙ୍କ ଗ୍ଲୁଡ ଫୁଲି ଉଠୁଛି ।

ମୁଁ କାବା ହୋଇଗଲି । କ୍ଷଣକ ପାଇଁ ମୋର ଇଚ୍ଛା ହେଲା ଯେ ତାଙ୍କ ବେଲୁନ୍‌ଟିକୁ ଛୁଞ୍ଚିରେ ଫୋଡ଼ି ଦେବି, ଓ ତା'ପରେ ଠୋ ଠୋ ହୋଇ ହସି ଉଠିବି ଯେ ମୋତେ ଦୋଷ ଦେବାର ଏଇ ପିଲାଳିଆମିକୁ ବନ୍ଦ କର; ସେଥିରେ ନଜର ଦିଅ ଦେବ । କହିବି ଯେ ଫର୍ନିଚରରେ ଅନେକ କାମ ବାକି ଅଛି, ଦ୍ୱିତୀୟ ପୁଟ ଓ ବାର୍ନିସ୍ ବାକି ଅଛି । ତା' ପରେ ? ସେହିଠୁ ଯେଉଁ ଚକ୍ ଚକ୍ ଉଠିବ ତାକୁ ସହି ପାରିବ ତ ?

ମୁଁ କହିଲି ନାହିଁ, କାରଣ ମୋର ଆଉ କିଛି ସମୟ ମଜା ଦେଖିବାକୁ ଇଚ୍ଛା ହେଲା ।

କିନ୍ତୁ ସେ ଅଫିସ୍‌କୁ ଚାଲିଗଲା ପରେ ତାଙ୍କର ଅଦ୍ଭୁତ ପ୍ରତିକ୍ରିୟା ମୋର ମନକୁ ଘାରିଲା ଓ ମୋତେ ବାଧିଲା । ବାଧିଲା ଏଇଥିପାଇଁ ଯେ, ଏତେ ବର୍ଷର ଘରକରଣା ଏତେ ଆତ୍ମତ୍ୟାଗ ପରେ ମଧ୍ୟ ସେ ମୋର ଭୁଲ୍ ଖୋଜିବାକୁ ବସିଛନ୍ତି ।

ମୁଁ ତାଙ୍କ ପାଇଁ କଣ ନ କରିଛି ? ତାଙ୍କର ସବୁ ଦାୟିତ୍ୱ ମୋ ମୁଣ୍ଡକୁ ନେଇ ନେଇଛି । ସେ କଣ ପିନ୍ଧିବେ, କଣ ଖାଇବେ, ସଂସାରର ଜଟିଳ ପଥରେ କେମିତି

ନିଜକୁ ଆଗେଇ ନେବେ, ସବୁ ମୋତେ ହିଁ ଭାବିବାକୁ ପଡୁଛି । ଏପରିକି ବେଳେ ବେଳେ ତାଙ୍କ ମନ ଭଲ ନଥିବା ବେଳେ ମୁଁ ଏଭଳି ଅବସ୍ଥା ସୃଷ୍ଟି କରିଛି ଯେଉଁଥିରେ ସେ ଅନ୍ୟ ସୁନ୍ଦରୀମାନଙ୍କୁ ଦେଖିବେ ଓ ଖୁସି ହେବେ ।

ମୋର ମନେ ଅଛି ଦିନେ ସେ ବିରସ ମୁହଁରେ ଅଫିସରୁ ଫେରିଥିଲେ । କିଣ ନା ବଡ଼ ସାହେବ ଏଣୁ ତେଣୁ କହିଛନ୍ତି । ସେଦିନ ମୋ ଦେହ ବିଶେଷ ଭଲ ନ ଥିଲା, ତେଣୁ ମୁଁ ଭାବିଲି ଯେ ଆଉ ଜଣକର ସାହାଯ୍ୟ ନେଲେ ମନ୍ଦ ହେବ ନାହିଁ । ସେହିଠୁଁ ମୁଁ କିଣ କଲି ଜାଣନ୍ତି ? ବିଶ୍ୱାସ କରିବେ ନାହିଁ, ମୁଁ ଆଉ ଆମ ପଡ଼ାର ଛଇଳା, ନାମଜାଦା ବଟର୍ ଫ୍ଲାଏ ମିସେସ୍ ନନ୍ଦାଙ୍କୁ ଚା' ଖାଇବା ପାଇଁ ଡାକିଲି । କେବଳ ସେତିକି ନୁହେଁ; ସ୍ୱାମୀଙ୍କୁ ତା' ପାଖରେ ବସିବା ପାଇଁ କହିଲି । ତା' ଦେହରୁ ଅତରର ଯେଉଁ କଡ଼ା ବାସ୍ନା ଆସୁଥାଏ, ସେଥିରେ ମୋ ମୁଣ୍ଡ ବୁଲେଇ ହୋଇ ଯାଉଥାଏ । ତଥାପି ମୁଁ ସ୍ଥିର କଲି ଯେ ସେଇ ବାସ୍ନାରେ ସ୍ୱାମୀଙ୍କ ପୁରୁଷ ମନ ରହିଲି ଯିବ । ସେ ବଡ଼ ସାହେବର ଗାଳିକୁ ଭୁଲିଯିବେ । କେତେ ଜଣ ସ୍ତ୍ରୀ ଏମିତି କରି ପାରନ୍ତି କହିଲେ ?

ଗୋଟିଏ କଥାରେ ମୁଁ ତାଙ୍କୁ ଗଢ଼ିଛି । ବାପ ମାଆ କେବଳ ଜନ୍ମ ଦେଇଛନ୍ତି । ମୁଁ ଈ ତାଙ୍କୁ ଜଣେ ପୂର୍ଣ୍ଣ ମଣିଷ ଅର୍ଥାତ୍ ପୁରୁଷ—ସ୍ୱାମୀ—ବାପା—ମିଷ୍ଟର୍ ଅମୁକ କରି ଗଢ଼ିଛି ।

କେଉଁଥିରେ କେବେହେଲେ ମୁଁ ତାଙ୍କ ଭୁଲତ୍ରୁଟି ବାଛି ନାହିଁ । ଛିଃ ବୋଲି କହି ନାହିଁ । ନୀରବରେ ସଂଶୋଧନ କରି ନେଇଛି, ଚୁପ୍ ଚାପ୍ ବାଟ କାଢ଼େଇ ନେଇଛି । ତଥାପି···ତଥାପି···!

ଆଉ କେହି ସ୍ତ୍ରୀ ହୋଇଥିଲେ ତା' ଆଖିରେ ଲୁହ ଆସିଥାଆନ୍ତା । କିନ୍ତୁ ମୁଁ ଭିନ୍ନ ଧାତୁରେ ଗଢ଼ା । ମୁଁ ମୋର ସ୍ୱାମୀଙ୍କୁ ଜାଣିଛି । ତେଣୁ କ୍ରମଶଃ ମୁଁ ନିଜକୁ ସଜାଡ଼ି ନେଲି, ଏବଂ ଏହି ଅଭୂତପୂର୍ବ ପରିସ୍ଥିତି ପାଇଁ ନିଜକୁ ପ୍ରସ୍ତୁତ କଲି । ନିଜକୁ କହିଲି ଇଏ ବି' କଣ ଗୋଟାଏ ଧରଣର ଚ୍ୟାଲେଂଜ୍ ନୁହେଁ ? ତାଙ୍କର ପାଲିସ୍‌କରା ଭୃପ୍ତି ଭରା ମୁହଁ ଟିକା ଲାଗି ଯାଇଥିଲା ପରା ! ଘଣ୍ଟାର ଡାଏଲ୍ ପୁରୁଣା ହୋଇ-ଗଲାଣି, ବଦଳାଇବାକୁ ହେବ । ବେଶ୍, ଯେମିତି ଭାବରେ ବଦଳୁ—କିଛି କଅଣ ? ତୁ କଣ ତାକୁ ଯଥା ସମୟରେ ଷ୍ଟୁବ ଦେଇ ଠିକ୍ ଠିକ୍ କରି ପାରିବୁ ନାହିଁ ?

ତୁ କଣ ତୋର ସ୍ୱାମୀକୁ ଭଲ ପାଉ ନାହୁଁ ?

ଆପଣ ମିଛ ମାନିବେ, ଶେଷକୁ ମୁଁ ଉଚାଟ ହୋଇ ଉଠିଲି । ସତେ କି ଯାହା ଗୁହିଁଥିଲି, ହେଇସ୍ତା ହେବାକୁ ଯାଉଛି । ମୁଁ କ୍ଲାଇମାକ୍ସ୍‌କୁ ଅପେକ୍ଷା କଲି ।

କ୍ଲାଇମାକ୍ସ କେମିତି ଆସିବ ତାର ସ୍ପଷ୍ଟ ଧାରଣା ମୋ ମନରେ ନ ଥିଲା, କିମ୍ବା ମୁଁ ଆଣିବାକୁ ଚାହୁଁ ନ ଥିଲି । ବରଂ ସେ ଅତର୍କିତରେ ଆସୁ, ଚମକାଇ ଦେଇ ଆସୁ । ମୁଁ ତାକୁ ସମ୍ଭାଳି ନେବି । କୁରୁଳି ଖାଇ ତାର ଦେଉଳିଆ ଢେଉ ଉପରେ ଡିଆଁ ମାରିବି ।

ଲଞ୍ଚ୍ ଟାଇମ୍ ବେଳକୁ ସେ ଫୋନ୍ କଲେ । ସଚରାଚର ଯେତେବେଳେ କରନ୍ତି ତାର ପାଞ୍ଚସାତ ମିନିଟ୍ ପରେ । ମୁଁ ଏହି ପରିବର୍ତ୍ତନଟିକୁ ସାଦରରେ ଗ୍ରହଣ କଲି ।

ସେ ଅଫିସରୁ ଫେରିଲା ବେଳକୁ ମୁଁ ପ୍ରାୟ ବେଶଭୂଷା ପିନ୍ଧି ସାଜି ସୁଜି ହୋଇ ବସିଥାଏ । କିନ୍ତୁ ଆଜି ଜାଣିଶୁଣି ଧୋଦା ଶାଢ଼ୀ ଖଣ୍ଡିଏ ବେଢ଼େଇ ହୋଇ ମୁଣ୍ଡବାଳ ଖେଳାଇଦେଇ ଶୋଇ ରହିଲି । ଏବେ ଅବଶ୍ୟ ଆଖିରେ ଯତନରେ କଜଳ ଲଗାଇଥାଏ । ସତେ କି ମୋର ଏହି ଅସଂଭୃତ ଅପରୂପ ବେଶ ତାଙ୍କର ବିଚଳିତ ମନୋଭାବ ସହିତ ମୁହାଁମୁହିଁ ହୋଇଯିବ ଓ ସେଇଥିରୁ କ୍ଲାଇମାକ୍ସ ଉପୁଜିବ ।

...ସେ ଫେରିଲେ ।

ମୁଁ ତାଙ୍କର ଦୈନନ୍ଦିନ ପୁନର୍ମିଳନର ରୁଟିନରେ କୌଣସି ପରିବର୍ତ୍ତନ ଦେଖିଲି ନାହିଁ । ଅଧିକନ୍ତୁ ମୋର ମନେହେଲା ଯେ କାରିଗର ନିହଣ ମୁନରେ ଅକ୍ଷର ହେଲା ପରି ତାହା ଅତି ନିଖୁଣ ଅତି ସମ୍ପୂର୍ଣ୍ଣ । ସେଇଠୁଁ ମୁଁ ଭାବିଲି ଯେ ସାମାନ୍ୟ ଅଣ୍ଡାଫ୍ରାଏ ଜନିତ ଗୋଳମାଳିଆ ଭାବ କଟିଗଲାଣି । ଅବସ୍ଥା ଯଥା ପୂର୍ବଂ ତଥା ପରଂ ।

ମୁଁ ନିରାଶ ହେଲି । କିନ୍ତୁ କିଛିକ୍ଷଣ ପରେ ମୋତେ ଟିକିଏ ଚିନ୍ତା କରିବାକୁ ପଡ଼ିଲା । ସେ ମୋ ମୁହଁକୁ ସିଧା ହୋଇ ଚାହୁଁ ନାହାନ୍ତି କାହିଁକି ?

କୌଣସି ନିର୍ଣ୍ଣୟରେ ପହଞ୍ଚିବା ପୂର୍ବରୁ ସେ ତାଙ୍କର ଦରଜି ପାଖରୁ ଆଣିଥିବା ନୂଆ ପ୍ୟାଣ୍ଟ୍ ପିନ୍ଧିକରି ଦେଖାଇଲେ ଓ ଧୀର କଣ୍ଠରେ କହିଲେ "କହ୍ନାତ ଗ୍ରେଟ ହୋଇଛୁ ।" ଦରଜିଙ୍କୁ ଡିଲ୍ କରଦେବା ପାଇଁ କାହିଁକି ଦେଲ ନାହିଁ ବୋଲି ପଚାରିବାରୁ ସେ ନାହିଁ କଲେ, କହିଲେ ଚଳିଯିବ ।

ମୋର ମନ ମାନିଲା ନାହିଁ । ହଠାତ୍ ମୋର ଇଚ୍ଛା ହେଲା ତାଙ୍କ ମୁହଁକୁ ସ୍ଥିର ଦୃଷ୍ଟିରେ ଚାହିଁବି, ତାଙ୍କର ସବୁ ଅକୁହା ଭାଷା ତଳ ଉଠାଇ ନେବି, ତାଙ୍କ ମନର ପୂରା ମାନଚିତ୍ରକୁ ଉତାରି ଦେବି । ମୁଁ ପାରିବି ନାହିଁ ତ ଆଉ ପାରିବ କିଏ ?

ତେଣୁ ମୁଁ ଚାହିଁଲି । ଏବଂ ତାଙ୍କ ପଲକ ନୋଇଁବା ଆଗରୁ ମୁଁ ତାଙ୍କ ମନର ଗହ୍ୱରରେ ପଶିଗଲି । ସେଇଠି ଦେଖିଲି ଯେ ସେ କଷ୍ଟ ପାଉଛନ୍ତି । ପ୍ୟାଣ୍ଟ୍

ପ୍ରସଙ୍ଗ ନେଇ ସେ ଯେ ମୋର ଭୁଲ୍‌କୁ ଚହଲାଉଛନ୍ତି, କେବଳ ତା ନୁହେଁ । (ମୋର ମନେ ପଡ଼ୁଛି ମୁଁ ଦରଜୀକୁ କହିଥିଲି ଯେ ଅଣ୍ଟାକୁ ଚପିଦେବ ନାହିଁ) କଥା ହେଉଛି ଯେ ଅଣ୍ଡାଫ୍ରାଏର ସମୟରେ ସେ ପୁଣି ମୋର ଆଉ ଗୋଟିଏ ଭୁଲ୍‌ର ହାବୁଡ଼ରେ ପଡ଼ିଛନ୍ତି । ତେଣୁ ବଦରାଗୀ ହେଉଛନ୍ତି ।

ସେ ମୋର କଳ୍ପିତ ପରାଭବକୁ ହେଜି କଷ୍ଟ ପାଉଛନ୍ତି । ଯେ ଯାହାର କେବେ କିଛି ଭୁଲ୍ ହୁଏ ନାହିଁ, ଯାହାର ନିର୍ଭୁଲ ସ୍ୱୀପଣ ତାଙ୍କୁ ଆଜିଯାଏଁ ହରସ ସଜୀବ କରି ରଖିଛି, ସେଥିରେ ଏତେଗୁଡ଼ିଏ ଫାଙ୍କ ଦେଖାଗଲାଣି । ତାହାହେଲେ ସେ କୁଆଡ଼େ ଯିବେ ? କେମିତି ମୋ ଆଡ଼କୁ ସିଧାହୋଇ ଚାହିଁ ପାରିବେ ? ତାଙ୍କୁ ଲଜ ଲାଗିବ ନାହିଁ ଯେ ତାଙ୍କର ଦ୍ୱାରା ଏତେଗୁଡ଼ାଏ ଭୁଲ୍ ଧରା ପଡ଼ୁଛି ?

ବିଚରା । ମୋର ଦୟା ଆସିଲା । କିନ୍ତୁ ମୁଁ ସଙ୍ଗେ ସଙ୍ଗେ ଅଭୟ ବାଣୀ ଦେଲି ନାହିଁ । ମୋର ମନରେ ତଥାପି ସେହି କ୍ଲାଇମାକ୍ସର ଭୂତ ଚଢ଼ିଥାଏ । ମୁଁ ଚାହିଁଲି ଯେ ସେ ପ୍ରଥମେ କିଛି କୁହନ୍ତୁ, ତାଙ୍କର ବେଦନା ଦୁଃଖକୁ ମୋ ଆଗରେ ବାଢ଼ି ଦିଅନ୍ତୁ, ଢାଳି ଦିଅନ୍ତୁ । ତହିଁରୁ କ୍ଲାଇମାକ୍ସ ଉପୁଜିବ । ତା'ପରେ ପୁରୁଣା ତୃପ୍ତିର ଡାଏଲ୍ ପରିବର୍ତ୍ତେ ନୂଆ ଡାଏଲ୍ ଖଞ୍ଜି ହୋଇଯିବ । ମୁଁ ତାଙ୍କୁ ନୂତନ ଧାରାରେ ନୂତନ ଗଙ୍ଗାର ତରଙ୍ଗରେ ଭସାଇନେବି ।

ମୁଁ ଅପେକ୍ଷା କଲି । ସେ କିନ୍ତୁ କିଛି କହିଲେ ନାହିଁ । ଅଧିକନ୍ତୁ ମୁଁ ଲକ୍ଷ୍ୟ କଲି ଯେ ଯେତେବେଳେ ଆମ ଗ୍ରେଟ ବଲେଇ ଛୁଆଟି ମରି ଯାଇଛି ବୋଲି ଜଣାପଡ଼ିଲା ତାଙ୍କର ମୁଖମଣ୍ଡଳ ଅଧିକ କରୁଣ ହୋଇ ଉଠିଲା । ସତେକି ମୁଁ ଦୁର୍ବଳ ହୋଇ ପଡ଼ିଛି ବୋଲି ସେ ମରିଗଲା । ହୁଏତ ପରେ ଭାବି ପାରନ୍ତି ଯେ ମୋର ଦୁର୍ବଳତା ହେତୁ ଜହ୍ନର ଆଲୁଅ ଏପରି ନିଷ୍ପ୍ରଭ ଦେଖାଯାଉଛି ।

ମୁଁ ଅପେକ୍ଷା କଲି । କିନ୍ତୁ ମୁଁ ତାଙ୍କୁ ଭଲ ପାଏ । ତେଣୁ ମୁଁ ଛଟପଟ ହେଲି । ସଞ୍ଜର ଧୂସର ଛାଇରେ ତାଙ୍କ ମୁହଁରେ ଯେଉଁ ଘନୀଭୂତଭାବ ପ୍ରକଟିଲା (ସେଥିରେ ଦୁଃଖ, କ୍ଷୋଭ, ଗ୍ଲାନି, ଯାହା ଥାଉ ପଛକେ) ତାକୁ ଦେଖି ମୋର ପ୍ରେମପ୍ରବଣ ମନ ଚଞ୍ଚଳ ହୋଇ ଉଠିଲା । ମୋର ଇଚ୍ଛା ହେଲା କହିବି—

ଆସ ମୁଁ ତୁମକୁ ଟେକି ନେବି, ଉପରକୁ, ଆହୁରି ଉପରକୁ ଏତେ ଉପରକୁ ଯେ ତୁମର ଆଖି ଝୋଟି ହୋଇଯିବ । ଆସ ମୋ ମୁହଁକୁ ସିଧା ଚାହିଁ କିଛି କହିଦିଅ, କାନ୍ଦି ପକାଅ । ଦେଖିବ ଯେ ଭୁଲ୍ ନାହିଁ, ମୁଁ ଅଛି ।

—ଆସ ତୁମ ବହିକୁ ଫିଙ୍ଗି ଦିଅ, ତୁମର ଭାବନା ତୁମର ଖବର କାଗଜ ସବୁ ଫିଙ୍ଗି ଦିଅ । ଦେଖିବ ଯେ ଚିନ୍ତା ନାହିଁ, ମୁଁ ଅଛି ।

କିନ୍ତୁ ମୋର ଅନ୍ତରର ନିମନ୍ତ୍ରଣ ଅବ୍ୟକ୍ତ ରହିଲା । ମୁଁ ଭାବିଲି ଯେ ଆଜି ଦିନଟା କଟିଯାଉ । ଆଜି ସେ କିଛି ନ କହିଲେ ମୁଁ କାଲି ସକାଳେ ନିଜେ ଝାମ୍ପି ଦେବି, ଝଡ଼ ଶ୍ରାବଣ-କ୍ଲାଇମାକ୍ସ ତିଆରି କରିବି, ଡାଏଲଟାକୁ ନିଜ ହାତରେ ଭାଙ୍ଗି ଦେଇ ନୂଆ ଲଗାଇ ଦେବି ।

ମୋର ଧାରଣା ବଳବତ୍ତର ହେଲା ଯେ ଯେମିତି ହେଲେ ଆସନ୍ତା କାଲି ସକାଳେ ଆମ ଜୀବନର ଯୁଗ୍ମ ଜୀବନର ସୂର୍ଯ୍ୟ ନୂଆ ରଙ୍ଗରେ ଝଟକିବ । ତାର ଗୋଟିଏ ପୂର୍ବାଭାଷ ରାତି ସାଢ଼େ ଆଠଟା ବେଳକୁ ମିଳିଲା । ଅତି ଆଶ୍ଚର୍ଯ୍ୟର କଥା ଯେ ଏମିତିକା ଅବେଳରେ ସେ ମୋତେ କୁଣ୍ଢାଇ ଧରିଲେ, ମୋ ଆଖି ପତାରେ ଚୁମ୍ବା ଦେଲେ, ମୋ ହାତପାପୁଲିକୁ ମୁଠେଇ ଧଇଲେ ଇତ୍ୟାଦି । ମୁଁ ଜାଣିଲି ଯେ ସେ ଚାହୁଁଛନ୍ତି, ବ୍ୟାକୁଳ ହୋଇ ଚାହୁଁଛନ୍ତି ଯେ ମୁଁ ତାଙ୍କୁ କିଛି କହିବି । କହିବି ଓ ନୂଆ ଜୀବନର ଆନନ୍ଦ ଚଖାଇବି ।

ତଥାପି ମୁଁ ଧୈର୍ଯ୍ୟ ଧରିଲି । ନିଜକୁ ଉଣିଲି—ଆଜି ନୁହେଁ । ଆସନ୍ତା କାଲି । ଆସନ୍ତାକାଲିର ସୂର୍ଯ୍ୟ ଓ ସକାଳ ।

× × ତା' ପରଦିନ ସକାଳ ।

ସେ ବ୍ରେକ୍‌ଫାଷ୍ଟ୍ ଟେବୁଲରେ ବସିଛନ୍ତି । ମୁଁ ଅଣ୍ଡାଫ୍ରାଏ ତିଆରି କରୁଛି ।

ହଠାତ୍ ମୋର ମନେ ହେଲା ଯେ ଏ ଅଣ୍ଡାଫ୍ରାଏ ବିଗିଡ଼ି ଯିବ । ଯେତେ ଚେଷ୍ଟା କଲେ ମଧ୍ୟ ଠିକ୍ ହେବ ନାହିଁ । ନ ହେଉ, ମୁଁ କଣ କରିବି ?

ମୁଁ ଆଉ ଉଦ୍ୟମ କଲି ନାହିଁ । ସିଧା ଦଳାଖ ତାଙ୍କ ପ୍ଲେଟରେ ସେହି ଅଭେକା ଅସୁନ୍ଦର ଅଣ୍ଡାଫ୍ରାଏଟିକୁ ରଖିଦେଲି । ବେଶ୍ । ଯାହା ଘଟିବାର ଘଟୁ ।

ସେ ପ୍ଲେଟ୍‌କୁ ଦେଖିଲେ, ବିଶ୍ୱାସ ନ କରି ପରି ଆଉ ଥରେ ଦେଖିଲେ ଓ ମୁଣ୍ଡ ଟେକିଲେ । ମୋ ଆଡ଼କୁ କଟମଟ କରି ଚାହିଁଲେ ।

ଏଇଟାକୁ ତ ମୁଁ ଅପେକ୍ଷା କରିଥିଲି । କିନ୍ତୁ ଏ କଅଣ ? ଏଇ କଅଣ କ୍ଲାଇମାକ୍ସ ? ତାଙ୍କ ଚାହାଣୀରୁ ଗରଳ ଧାର ଛୁଟୁଛି । ସାମାନ୍ୟ କ୍ରୋଧ ନୁହେଁ, ତା'ଠାରୁ ଆହୁରି ଅଧିକ ଘନ, ନିବିଡ଼, କଳା—ତାକୁ କଣ କୁହାଯିବ ମୁଁ କହିପାରୁ ନାହିଁ । ବାହାହେବା ଦିନଠାରୁ ମୁଁ ତାଙ୍କର ଏମିତିକା ରୂପ କେବେ ହେଲେ ଦେଖି ନ ଥିଲି କି ଦେଖିବି ବୋଲି ଭାବି ନ ଥିଲି ।

ସେହିଠୁଁ ମୁଁ କଣ କଲି ଜାଣନ୍ତି ? ମୁଁ ପାଟି ତୁଣ୍ଡ ନ କରି ଆଲମାରିରୁ ସବୁ ଅଣ୍ଡାତକ ଆଣିଲି, ଓ ତାଙ୍କର ଆଗରେ ଗୋଟି ଗୋଟି କରି ଭାଙ୍ଗିଲି । ଭାଙ୍ଗିଲି ଓ ନାଳରେ ଭସାଇ ଦେଲି ।

ମୁଁ ଭାବିଲି ଯେ ଅଣ୍ଡାର ଏହି ଧଳା-ହଳଦିଆ ଲଳ ହିଁ ତାଙ୍କ କୁତ୍ସିତ କ୍ରୋଧର ଜବାବ୍ ଦେବ । ମୋର ଘୃଣାକୁ ଚହଲାଇ ଦେବ ।



# ଅଣ୍ଡା

ଗୋଟାଏ ସାମାନ୍ୟ ଅଣ୍ଡାକୁ ନେଇ ଏତେ କଥା ! ଗୁଡ଼ିଏ ବିଶ୍ୱ ବାଘା ଲେଖକ କଅଣ ହାସ୍ୟରସ ଆଡ଼କୁ ମନ ବଳେଇଲେ ? ଭଲ ମଣିଷରେ ମଣିଷରେ ମନୋବୃତ୍ତିର ଟାଙ୍କି ହୋଇ ରହିଥିବା ତନ୍ତୁ-ମାନଙ୍କୁ ଏମିତି ଟିକିଏ ଛୁଗୁଲେଇ ଦେଲେ ଭଲ । ନହେଲେ ତାଙ୍କର (ତଥା ଆମମାନଙ୍କର ) ମୁଣ୍ଡ ଖରାପ ହୋଇ ଯିବାର ସମ୍ଭାବନା ଅଛି । ଏବଂ ଆମେ ବେଶ୍ ବୁଝି ପାରୁଛୁ ଯେ ହାସ୍ୟରସ ବାଣ୍ଟିବାକୁ ଯାଇ ସେ ପ୍ରଥମେ କାହିଁକି ପତିପତ୍ନୀଙ୍କ ଦୈନନ୍ଦିନ ସଂସାରରେ ହାତ ଦେଲେ । କାରଣ ପତିପତ୍ନୀଙ୍କ ପର ଅ.ଜବନ ଛନ୍ଦାଛନ୍ଦି ହୋଇ ପଡ଼ିଥିବା, ପଳେଇଯିବି ବୋଲି ଘୁଞ୍ଚିପିଛି ହେଲେ ମଧ୍ୟ ଖଣ୍ଡେ ଦୂର ନ ଯାଉଣୁ ଫେରିଆସି ପୁଣି ଜଡ଼ାଜଡ଼ି ହେଉଥିବା, ଘଡ଼ିକେ ପ୍ରେମ ଘଡ଼ିକେ ଘୃଣା, ଗୁଲି-ଅଲୁଅ, ଖରା ବର୍ଷାର ଈକ୍ଲାନ୍ତ ଭେଲକି ଦେଖାଉଥିବା ଏଇ ସାମାଜିକ ଯୋଡ଼ିଙ୍କ କାରବାରରେ ହାସ୍ୟରସର କେଉଁ ଅଭାବ ଅଛି ଯେ ଆଉ କେଉଁଠି ଯିବାକୁ ପଡ଼ିବ ? ହଁ, ତାଙ୍କ ଯୁଗ୍ମତାରେ ପ୍ରେମର ସାରତତ୍ତ୍ୱ ଅବଶ୍ୟ ଅଛି । କ୍ଷେତ୍ରବିଶେଷରେ ପ୍ରେମହୀନ ସାଥୀଭାବରେ ଗୌରବ ମଧ୍ୟ ଅଛି—ଯଥା ଲେଖକଙ୍କ । 'ଲକ୍ଷ ବିହଙ୍ଗ' ଗ୍ରନ୍ଥରେ ଥିବା 'ଦୁଃଖର ସାଥି । ଦାମ୍ପତ୍ୟରେ ଘୃଣାର ମହାନ୍ ଭୀମରୂପ ମଧ୍ୟ ଦେଖିବାକୁ ମିଳିବ । ଗୌରବର ବିଷମ ବିପରୀତ ଚେହେରା, ଯାହାପରେ ବାନ୍ଧି ହୋଇ ରହିବା ଅସମ୍ଭବ । କିନ୍ତୁ ସର୍ବସାଧାରଣ ସ୍ତରରେ ଏଇ ଯେଉଁ ଭିଡ଼ାଓଟରା, ପରସ୍ପର ଉପରେ ଅଧିକାର ଜମେଇବାର ଆତୁରତା, ଯୋଡ଼ିଏ ସଚେତନ ଇଗୋ (Ego)ର କୁସ୍ତାକୁସ୍ତି, କେଉଁଠି ହୁଏତ କାମୁଡ଼ା କାମୁଡ଼ି, ଏବଂ ସେଥିରେ ଯେଉଁ ପିଲାଳିଆମି, ଯେଉଁ ନଟୋ ତା ଏବଂ ସାମୟିକ ପାଗଳାମି ଉତୁରି ଆସେ । ତା'କୁ କଣ ପୁସପୁର

ଆଡ଼େଇ ଦେଇ ହେବ ? ଯେ ଏତାଦୃଶ ରୁଚ୍ଛତା ସାହିତ୍ୟର ଉପାଦାନ ନୁହେଁ ? ନା ତା'କୁ ନେଇ ମୁହଁ ହଲେଇବା ଉଚିତ ହେବ ଯେ ଏହି ସନାତନ ସମ୍ପର୍କବିଶେଷ ରସାତଳକୁ ଗଲଣି ? ଭୟ ନାହିଁ, ଆମେ ବେଶ୍ ବୁଝୁଁଛୁ ଲେଖକ କାହିଁକି ଏମିତି ଗୋଟିଏ ଗପ ଲେଖିଲେ । ଇତର ଅଣ୍ଡା-ଫ୍ରାଏକୁ ବାରମ୍ବାର ଆଣି ଥୋଇଲେ ଆମ ଆଗରେ । ଏବଂ ଆମର ପୂର୍ଣ୍ଣ ବିଶ୍ୱାସ ଯେ ଏଥି ଉତ୍ତାରୁ ସେ ସ୍ୱାମୀ ସ୍ତ୍ରୀଙ୍କୁ ନେଇ ଯଥାଶୀଘ୍ର ଗୋଟିଏ ଗହିରିଆ ପ୍ରେମ ଅବା ଘୃଣାର ଗପ ଲେଖି ପାରିବେ । ଆମର ଭାଗ୍ୟ ଭଲ ଯେ ନିନ୍ଦା ନିଷ୍ଟଳ ନିରୁଦ୍‌ବେଗ ଗୋଟିଏ ଦମ୍ପତିଙ୍କ ସୁଖୀ ସଂସାର ଦେଖାଇବାକୁ ଯାଇ ସେ ଆମକୁ ବୋର୍ କରି ନାହାନ୍ତି ।

ଆଃ ! ଏହି ମର୍ମରେ ଗୁଣ୍ଡିରତ ସମାଲୋଚନା ଅବା ଆଶ୍ୱାସନା ଶୁଣିବାକୁ ପାଇଲେ ମୁଁ କେତେ ଖୁସି ନ ହୋଇ ଥାଆନ୍ତି ! ତା' ହେଲେ ଦରଦୀ ବନ୍ଧୁଙ୍କ କାନରେ ଚୁପ୍‌କିନା ଗୋଟାଏ ଗୋପନ କଥା କହି ଦେଇ ଥାଆନ୍ତି, ଯାହା ମୁଁ ମୋ ଗପରେ ପ୍ରକାଶ କରି ନାହିଁ କିନ୍ତୁ ଯେ ହୁଏତ ଅନୁମାନ କରି ପାରିଥିବେ—ଯେ ଯେଉଁଦିନ, ଅର୍ଥାତ୍ ଯେଉଁଦିନ ସକାଳେ ସେ ଅଣ୍ଡାମାନଙ୍କୁ ଭାଙ୍ଗି ଭଜେଇ ଦେଲେ କଡ଼ାରେ, ସେଇ ସୂର୍ଯ୍ୟାସ୍ତର ସନ୍ଧିରେ ମିସେସ୍ କାମିନୀ ସିଏ ଏଭଳି ପ୍ରେମ କଲେ ତାଙ୍କ ସ୍ୱାମୀଙ୍କୁ ଓ ସ୍ୱାମୀଜଣକ ସେଥିରେ ଏପରି ଭାବରେ ଧସିଗଲେ ଯେ ବ୍ରେକ୍‌ଫାଷ୍ଟର ସଂସାର ହିଁ ବଦଳିଗଲା । କାରଣ ଦୁହେଁ ମିଶି ସ୍ଥିର କଲେ ଯେ ଆସନ୍ତା । କାଲିଠାରୁ ବ୍ରେକ୍‌ଫାଷ୍ଟ୍‌ରେ ଆମ୍‌ଲେଟ୍ ତିଆରି ହେବ; ମାମୁଲି ଅଣ୍ଡା-ଫ୍ରାଏ ଠାରୁ ତାହା ଶତଗୁଣରେ ସୁସ୍ୱାଦୁ, ସମୃଦ୍ଧ ଓ ସୁନ୍ଦର ।

କିନ୍ତୁ ଦୁଃଖର ବିଷୟ ଯେ ମୋତେ ସେଭଳି ସୁଯୋଗ ଦିଆଗଲା ନାହିଁ । ସେଥିପାଇଁ ମୋ ଲେଖାର ଦୋଷ କି ମୋ ଗମ୍ଭୀର ଭାବମୂର୍ତ୍ତିର ଦୋଷ କହି ପାରୁ ନାହିଁ । ଜଣେ ଅଧେଙ୍କୁ ଶୁଭ୍ର ବନ୍ଧୁମାନେ କହିଲେ ଓ ଲେଖିଲେ ଯେ ଏଥିରେ ଫୁଟି ଉଠିଛି (ଚମତ୍କାର ଭାବରେ ଫୁଟି ଉଠିଛି) ମଧ୍ୟବିତ୍ତୀୟ ବିଚ୍ଛିନ୍ନତାର କାରୁକାର୍ଯ୍ୟ । ରୁଗ୍‌ଣ ଦୃଷ୍ଟିର ଚିତ୍ରକଳ୍ପ···ରସି ରସି ତିକ୍ତ ଉପହାସର ମାଧ୍ୟମରେ ଦର୍ଶିଯାଉଛି···ଛୁଡ଼ନ୍ତୁ ।

ମୁଁ ଆକାଶରୁ ଖସିଲି ଯେତେବେଳେ ଜଣେ ସମୀକ୍ଷକ ପ୍ରତୀକ ଖୋଜିବାକୁ ଯାଇ ଅବିଷ୍କାର କଲେ ଯେ ଗଳ୍ପର ଶେଷରେ ଅଣ୍ଡାର ଯେଉଁ ଧଳା-ହଳଦିଆ ଜଳ ବହିଗଲା ତାହା ଆଉ କିଛି ନୁହେଁ, ଲେଖକଙ୍କର ଫ୍ରଏଡ଼ୀୟ ସେକ୍ସ ! ଦୁର୍ଦ୍ଧର୍ଷ ଦୁର୍ନିବାର ସେକ୍ସ ! ବୁଝିଲେ ଏଥର ??

ଯାହାହେଉ ଏଇ ଲେଖାଟି ଭିନ୍ନ ସ୍ୱାଦର ହୋଇଥିବାରୁ ବେଶ୍ ଆଖିଦୁରୁଣିଆ ହୋଇପାରିଛି । ସେଥିପାଇଁ ମୁଁ ନିଜକୁ ଧନ୍ୟବାଦ ଦେଉଛି । ଏହାର ସ୍ୱକୃତ ଇଂରେଜି ଅନୁବାଦ "The Egg" ଦିଲ୍ଲୀରୁ ପ୍ରକାଶିତ ଗୋଟିଏ ସାହିତ୍ୟ ପତ୍ରିକା "Mznimax" ରେ ବାହାରିଥିଲା । ଏବଂ ପରେ ମୋର ଇଂରେଜି ଗଳ୍ପ ସଂକଳନ "Death of an Indian" ରେ ସନ୍ନିବେଶିତ ହୋଇଛି ।

କଟକ

ନଭେମ୍ବର ୨୫, ୧୯୮୭



# ତତୋଟି ଦୃଶ୍ୟ

ଦାଣ୍ଡଘର ।

ବାଁ ପାଖରେ ସୋଫା ସେଟ । ଡାହାଣ ପାଖରେ ଟେବୁଲ ଚଉକି ଇତ୍ୟାଦିକୁ ଆଡ଼େଇ ଦେଇ ଗୋଟିଏ ଫିତା ଖଟ ଲଗା ହୋଇଛି, ଖଟ ଉପରେ ଗୋଟିଏ ଚମଡ଼ା ସୁଟ୍‌କେସ୍ । ଗତ କିଛିକ୍ଷଣ ହେଲା ବିନାୟକ ବାବୁ ସେଥିରୁ ପାଇଜାମା କାଢ଼ିବାରେ ବ୍ୟସ୍ତ ଅଛନ୍ତି ।

ହାତକଟା ଜାଲି ଗେଞ୍ଜିର ଆବରଣ ସତ୍ତ୍ୱେ ବିନାୟକବାବୁଙ୍କର ଗୋରା ଚିକ୍‌କଣ ପିଠି ସୁଦୃଶ୍ୟ ହୋଇଛି । କେଶରେ ଶୁଭ୍ରତାର ଅନୁପ୍ରବେଶ ଦେଖାଯାଉ ନାହିଁ । ତେଣୁ ମନେ ହେଉଛି ଯେ ସେ ଯୌବନଠାରୁ ଅଧିକ ଦୂରକୁ ଯାଇନାହାନ୍ତି । ଏବଂ ତାଙ୍କର ପରିଧାନ, ଗେଞ୍ଜି, ଧୋତି ଓ ଚଟି, ଘରୋଇ ହେଲେ ମଧ୍ୟ ସେଥିରୁ ଜଣାପଡ଼ୁଛି ଯେ ସେ ସୌଖୀନ ବସ୍ତ୍ରର ଅଭିଳାଷୀ । ଜୀବନର ମହତ୍ତ୍ୱରେ ଦବିଯାଇ ନାହାନ୍ତି ।

କିନ୍ତୁ ସେ ତଥାପି ପାଇଜାମା ଖୋଜୁଛନ୍ତି । ଶେଷକୁ ସୁଟ୍‌କେସ୍‌ର ଜିନିଷପତ୍ର ଯଥେଷ୍ଟ ଘାଣ୍ଟି ସାରିଲା ପରେ ସେ ମୁହଁ ଫେରାଇଲେ ଓ ବିଫଳତାର ଗୋଟିଏ ଅର୍ଦ୍ଧସ୍ଫୁଟ ଶବ୍ଦ ଉଚ୍ଚାରଣ କଲେ । ଏହି ସମୟରେ ସେ ଦେଖିଲେ ଯେ ଦବିତା ଦେବୀ ଦୁଆର ମୁହଁରେ ଛିଡ଼ା ହୋଇ ଫିକ୍ କରି ହସୁଛନ୍ତି ।

"ବୁଢ଼ାଟିଏ ହେଲଣି, ଆଜଯାଏଁ ସେହି ଫଙ୍ଗୁଲା ଅଭ୍ୟାସ ଯାଇନାହିଁ ? କଅଣ ହଜିଛି,—ଦର୍ପଣ, ପାନିଆ, ସାବୁନ ନା ଡାଏରି ?"

"ପାଇଜାମା । ଡାଏରି ଲେଖା କେବେଠୁଁ ଛାଡ଼ି ଦେଇଛି ।"

"ଡାଏରି ଏଣେ ତେଣେ ପକାଉଥିବ, ପିଲଙ୍କ ଆଖିରେ ପଡ଼ିବ ବୋଲି ଭାଉଜବୋହୂ ଚଡ଼ୁଥିବେ, ସେଇଠୁ ବାବୁ ରାଗରେ ଛାଡ଼ିଦେଇ ଥିବେ । ନା କଅଣ ?"

ବନାୟକବାବୁ ଦୁର୍ବଳ ପ୍ରତିବାଦ କଲେ, "ନା ନା, ତା' ନୁହେଁ ।" ତା' ପରେ ନିଜକୁ ଟାଣି ଅଣିଲା ପରି କହିଲେ, "ବର୍ତ୍ତମାନ ପାଇଜାମା କଥା କଣ କରାଯିବ ?"

ଏଥର ସବିତା ଦେବୀ ସଶବ୍ଦରେ ହସି ଉଠିଲେ ଓ କହିଲେ, "କଣ କରାଯିବ ? ଭାଉଜବୋହୂଙ୍କ ପାଖକୁ ଟ୍ରଙ୍କ କଲ୍ କରାଯାଉ ଯେ ତାଙ୍କ ସ୍ୱାମୀ ବିପଦରେ ପଡ଼ିଛନ୍ତି ।"

ଏହି ପ୍ରକାର ଆଳାପକୁ ବେଶି ସମୟ ବଢ଼ାଇ ହେଲ ନାହିଁ । କାରଣ ସବିତା ଦେବୀଙ୍କର ମନ ସ୍ଥିର ନ ଥିଲ । ଶୋଇବା ପାଇଁ ପିଲାଙ୍କର ସବୁ ସୁବିଧା ହେଲ କି ନାହିଁ ଦେଖିବାକୁ ହେବ । ଅଭି—ଅଭିମନ୍ୟୁର (ନାଁଟା ଭାରି ସୁନ୍ଦର, ରୂପଗୁଣ ବି' ବେଶ୍ ଭଲ, ମୋ ଝିଅମାନଙ୍କ ସାଙ୍ଗରେ ମିଶିଯିବ) ଖବର ବୁଝିବାକୁ ହେବ । ତା'ଛଡ଼ା 'ତାଙ୍କ' ସାଙ୍ଗରେ କଥାବାର୍ତ୍ତା କରିବାର ଅଛି; ଅନେକ କଥାବାର୍ତ୍ତା କରିବାର ଅଛି । ସେ ଦି'ତିନି ଦିନ ଭିତରେ ଟୁର୍‌ରେ ଚାଲିଯିବେ । ସବିତା ଦେବୀ ଆଳାପର କ୍ରମ ହଠାତ୍ ଛିଣ୍ଡାଇ ଦେଇ କହିଲେ "ରୁହ, ମୁଁ ତାଙ୍କର ପ୍ରୋଟାଏ ବାସି ପାଇଜାମା ନେଇ ଆସୁଛି । ତମକୁ ହୁଏତ ଟିକିଏ ଖାଟ ହୋଇପାରେ, ତେବେ ପିନ୍ଧିବା ପାଇଁ ଚଳିଯିବ ।"

ସବିତା ଦେବୀ ତତ୍ପର ହେଲେ । ବାସି ପାଇଜାମା ନେଇ ଆସିଲେ । ବିନାୟକ ବାବୁଙ୍କ ନ ପଚାରି ତାଙ୍କ ସୁଟ୍‌କେସ୍‌ରେ ଖୋଲା ହୋଇଥିବା ଜିନିଷପତ୍ର ସଜାଡ଼ି ଦେଲେ । ବିନାୟକ ବାବୁଙ୍କର ଆପତ୍ତି ନ ଶୁଣି ତାଙ୍କ ଖଟରେ ବିଛଣା ପାରି ଦେଇ, ମୁଣ୍ଡ ପାଖରେ ଟେବୁଲ୍ ଲ୍ୟାମ୍ପ ସଜାଡ଼ିଦେଲେ, ପବନ ଆସିବା ପାଇଁ ଝରକା ଖୋଲି ଦେଇ ଛିଟିକିଣି ଲଗାଇ ଦେଲେ, ଇତ୍ୟାଦି ।

ପ୍ରଫୁଲ୍ଲତା । ଏବଂ ସ୍ନେହ । ବିନାୟକ ବାବୁଙ୍କର ମନରେ ଆସିଲା ଯେ ସବିତା ଯାହା କରୁଛି ଉଚିତରୁ ଅଧିକ କରୁଛି, ଓ ଖୁସି ହୋଇ କରୁଛି । କାରଣ ସେ ଭାବୁଛି ଯେ ବଡ଼ଭାଇ ସବୁଦିନେ ସେମିତି, 'ଅପାରଗ', ଏବଂ ସେ କେହି ନିଜ ଲୋକ (ସ୍ତ୍ରୀ ଲୋକ)ର ସ୍ନେହ ଓ ଯତ୍ନ ସ୍ୱାନ୍ତ । ବିନାୟକବାବୁ ଆମୋଦିତ ହେଲେ,—ତମ ଘରର ରଥିଆ କ'ଣ ଏତକ କରି ପାରି ନ ଥାଆନ୍ତା ? ତମକୁ କଷ୍ଟ କରିବାକୁ କିଏ କହୁଛି ?

ସେ ଭାବିଲେ,—ଘରୁ ବାହାରିବା ପରେ ପରେ ମନରେ ସନ୍ଦେହ ହୋଇଥିଲା ଯେ ହୁଏତ ପାଇଜାମା ସାଙ୍ଗରେ ଆସିନାହିଁ । ଫେରିଯାଇ କଣ ତାକୁ ଆଣି ହୋଇ ନ ଥାଆନ୍ତା ? କିନ୍ତୁ ସେମିତିକା ସନ୍ଦେହ ତ ସବୁବେଳେ ଆସେ ! କୁନ୍ତଳା କଣ ଯାଉଣୁ ଆସୁଣୁ କୁହେ ନାହିଁ ଯେ ମୁଁ ଗୋଟିଏ ଭୁଲ ମଣିଷ ? ହେଲ

ଏବେ ମୋର ଭିତରେ ମନ ଗୁହାରିଲା ଯେ ଦେବତା ଦେଇ ମୋର ଦୁରବସ୍ଥା ଦେଖି ମୋର ଟିକିଏ ବିଶେଷ ଯତ୍ନ ନେବେ, କଣ ହେଲ ଯେଉଁ ?···ବିନାୟକ ବାବୁ ସବିତା ଦେବୀଙ୍କର ସୁଠାମ-ଗୌର ହାତର କୀଡ଼ା ଦେଖି ରହିଲେ ଓ ତାଙ୍କୁ ଭଲ ଲଗିଲା ।

ଅଭି ଏଠି ଭଲରେ ଚଳିବ, ଖୁସିରେ ରହିବ । ମୁଁ ଜାଣେ । ଅବଶ୍ୟ ଅନେକ କାଳେ ଯେ ପୁଅକୁ ଏତେ ଦୂରକୁ ପଠାଇ ଦେବା ଉଚିତ ହୋଇ ନାହିଁ । ସେ ସେ ବାପ ମାଆଙ୍କୁ ଝୁରିବ,—ସେ ଯେମିତିକା ଗେଲବସର ଅଭିମାନିଆ ପିଲା । କିନ୍ତୁ ସେମାନେ ଜାଣନ୍ତି ନାହିଁ । ସବିତା ଅନ୍ୟମାନଙ୍କ ପରି ନୁହେଁ, ସେ କୌଣସି ମାଉସୀ ପିଉସୀ ଖୁଡ଼ୀଙ୍କ ପରି ନୁହେଁ । ସେ ଅଭିର ଯତ୍ନ ନେବ, ନିଜ ପୁଅପରି ଦେଖିବ ।

ନିଜ ପୁଅ ! ବିନାୟକ ବାବୁଙ୍କ ମନରେ କରୁଣାର ଭାବ ଆସିଲା, ଓ ସେ କର୍ମରତା ସବିତା ଦେବୀଙ୍କ ମୁହଁକୁ ନ ଅନାଇ ରହି ପାରିଲେ ନାହିଁ । ଯେପରିକି ସେ ସେହି ପ୍ରଶାନ୍ତ-ପ୍ରଫୁଲ୍ଲ ମୁହଁରେ ବିଷାଦର ଚିହ୍ନ କେଉଁଠି ଅଛି କି ବୋଲି ଦେଖୁଛନ୍ତି । ସବିତାର ପୁଅ ନାହିଁ । ତିନି ତିନୋଟି ଝିଅ, ସାନ ଝିଅକୁ ଆଠ ବର୍ଷ ହେଲଣି, ଆଉ ପୁଅର ଆଶା ନାହିଁ । ବିନଭାଇର ପୁଅକୁ ପାଖରେ ପାଇ ( ଅଭିକୁ ଏଠି କେତେବର୍ଷ ରଖିବାକୁ ପଡ଼ିବ କିଏ ଜାଣେ ? ସ୍କୁଲ୍ ପାଞ୍ଚ ଛଅ ବର୍ଷ, ସ୍କୁଲରୁ କଲେଜ୍— ) ତା' ସଂସାର ହସି ଉଠିବ । ବିନାୟକ ବାବୁ କଳ୍ପନାଚିତ୍ର ଅଙ୍କିବାକୁ ଯାଇ ଦେଖିଲେ ଯେ ବଡ଼ମୁଣ୍ଡିଆ ଡିମାଆଖିଆ ଅଭି ସକାଳୁ ସକାଳୁ ଓଦା ସରସର ମୁହଁରେ ନର୍ଦ୍ଦଭ କଣ୍ଠରେ କହୁଛି, 'ମୋତେ ଭୋକ କଲଣି !' ସବିତା ଚମକି ପଡ଼ି ଶୁଣୁଛି, ଅନେକଦିନରୁ ଏହି ଅକୋମଳ ଅଖାଡ଼ୁଆ ପୁଅ ଭାଷାକୁ ଗୁହାରି ରହିଥିଲା ପରି ଶୁଣୁଛି, ଓ ଝଟ୍କିପଡ଼ି ତା' ସିଦ୍ଧପିନ୍ଧା ଶାଢ଼ୀର ପଣତରେ ଅଭିର ମୁହଁ ପୋଛି ଦେଉଛି । ମାଆ ଓ ପୁଅ । ବିନାୟକ ବାବୁ ପରୋକ୍ଷରେ ସେମାନଙ୍କର ଗଦ୍‌ଗଦ୍ ଭାବ ଅନୁଭବ କଲେ । ଏବଂ ତାଙ୍କର ମନେହେଲା ଯେ ସେହି ସିଦ୍ଧପିନ୍ଧା ଶାଢ଼ୀର ବାସ୍ନା ତାଙ୍କ ଆଘ୍ରାଣରେ ବାଜୁଛି । ସେହି ଗୋରା ହାତର ଶୀତଳତା ଦେହକୁ ଛୁଉଁଛି ।

ସବିତାର ସଜଡ଼ା ସଜଡ଼ି ରଖା ଥୁଆ କାମ ସରି ଗଲାଣି । ଏତେ ଜଲ୍‌ଦି ସରିଗଲା ? ସେ ସାମ୍ନାରେ ଆସି ଛିଡ଼ା ହୋଇଛି । ଅଣ୍ଟାରେ ହାତ ଦେଇ ପ୍ରସାରିତ ଓଠରେ ହସରେ ତା' ଗାଲର ଟିପଚିହ୍ନକୁ ସୁସ୍ପଷ୍ଟ କରି ଦେଇ କହୁଛି—

"ଫିନିସ୍‌ଡ୍ ! ଆଉ କିଛି ଦରକାର ?"

ବିନାୟକ ବାବୁ ତା'ର ଏହି ଠାଣି ପସନ୍ଦ କଲେ ନାହିଁ । ଏ ପିଲାଳିଆ ଢଙ୍ଗ ତା' ବୟସକୁ ଶୋଭା ପାଉ ନାହିଁ । ଯେପରିକି ଏମିତି ହେବା ଦ୍ୱାରା ସେ ନିଜକୁ ଦୂରେଇ ରଖୁଛି, ବିନାୟକ ବାବୁଙ୍କୁ କିଛି ଗୁରୁ ଗମ୍ଭୀର କଥା କହିବାର ସୁଯୋଗ ଦେଉ ନାହିଁ ।

ଯାହାହେଉ ବିନାୟକ ବାବୁ 'ଧନ୍ୟବାଦ' ଦେଲେ ଓ ମୃଦୁ ଗମ୍ଭୀର ଭାବରେ କହିଲେ, "ସବିତା ଦେଇ, ତମ ସାଙ୍ଗରେ ଟିକିଏ କାମ ଅଛି । ପାଞ୍ଚ ମିନିଟ୍ ଦେଇ ପାରିବ ?"

"କେତିମାନ ?"

ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ? ରାତି ଏମିତି କିଛି ବେଶି ହୋଇ-ନାହିଁ, ଗୋକୁଳ ଏପର୍ଯ୍ୟନ୍ତ ଫେରିନାହିଁ । ନା, ସବିତାର ସ୍ୱରବାଣୀରେ ଅଶଙ୍କା ନାହିଁ । ସେ କେବଳ ଜଣାଇ ଦେଉଛି ଯେ ସେ ଗୃହିଣୀ, ତା'ର ବହୁତ କାମ ଅଛି, ବିନଭାଇଙ୍କର ବାଜେକଥା ଶୁଣିବାକୁ ବେଳ ନାହିଁ ।

ତେବେ ସେ ଖଟ ପାଖକୁ ଚଉକିଟିଏ ଆଣି ବସି ସାରିଲଣି, ଓ ପଚାରୁଛି "କଅଣ କୁହ ।"

ବିନାୟକ ବାବୁ ଭାବିଲେ ଯେ ସବିତାର ଏହି ଦେଖାଣିଆ ଭାବ ଭାଙ୍ଗି ଦେବା ଉଚିତ । କାନମୋଡ଼ା ଓ ଚଟକଣି । ସାନ ଭଉଣୀମାନଙ୍କୁ ଠିଆରିବାକୁ ହେଲେ ଯେମିତି କରାଯାଏ । କିମ୍ବା ଆଉ କିଛି । ଯେଉଁଥିରେ ଘରଣୀ ପଣରେ ସାଜ ଖୋଲିଯିବ ଓ ନାଲିଆ ଗ୍ରେଟିଆ ନମସ୍କାରଟିଏ କରି ଅଳସେଇ ହେବ । ( ମୁଁ ସବିତାକୁ ଅଳସେଇ ହେବାର ଦେଖିଛି,—କେଉଁ ଦଶ ବାର ବର୍ଷ ତଳେ ସେ ସମୁଦ୍ରକୂଳ ବାଲି ଉପରେ ପେଟେଇ ପଡିଥିଲା, ଗୋଲୁକଠାରୁ ଆରମ୍ଭ କରି ଅନ୍ୟ ସମସ୍ତଙ୍କ ଆଡ଼କୁ ସମାନ ଭାବରେ ଗୃହୁଁଥିଲା, ଓ ନିଜ ଉପବେଶରେ ଲେଟେଇ ହେଉଥିଲା । ସେତେବେଳେ ସେ ନୂଆ ବାହା ହୋଇଥିଲା, ତା' ଦେହର ରଙ୍ଗ ଅହୁରି ଚମକୁଥିଲା··· )

ଏହିପରି ଭାବିଲା ବେଳେ ତାଙ୍କ ନିଜ ମୁହଁର ରୂପ ବୋଧହୁଏ ଅଳସ ମଧୁର ହୋଇ ଉଠିଥିଲା । କାରଣ ସବିତା ଦେବୀ କୃତ୍ରିମ ରାଗରେ କହିଲେ, "କଅଣ ଭାଉଜବୋହୂଙ୍କ କଥା ମନେ ପଡ଼ୁଛି ? ତାହାହେଲେ ମୋତେ କାହିଁକି ଏଠି ବସେଇ ରଖିଛ, ଶୁଣେ ?" ଏତିକି କହି ସେ ଉଠିବାକୁ ବସିଲେ । ସେଇଠୁ ବିନାୟକବାବୁ ଚେଷ୍ଟା ପଶିଲା ପରି ସବିତା ଦେବୀଙ୍କ ହାତ ଧରି ପକାଇଲେ । ବିଜୁଳି ବେଗରେ ଧରି ପକାଇଲେ । ଯେପରିକି ତାଙ୍କ ମନରେ ଭୟ ହେଲା ଯେ ସେ ଚଞ୍ଚଳ ଖସି ଗୁଲିଯିବ ଓ ସହଜେ ଫେରିବ ନାହିଁ ।

ସବିତା ଦେବୀ ତାଙ୍କ ହାତକୁ ଛଡ଼ାଇ ନେଲେ ନାହିଁ, ଧୀରେ ଧୀରେ କାଢ଼ି ଆଣିଲେ ।

ବିନାୟକବାବୁ ଲଜ୍ଜିତ ହୋଇ ସେଉଁ ମୁହଁକୁ ଅନାଇଲେ ସେଥିରେ ସେ କ୍ରୋଧ ବା ବିରକ୍ତିର କୌଣସି ଲକ୍ଷଣ ଦେଖିଲେ ନାହିଁ । ବରଂ ତାଙ୍କର ମନେ ହେଲା ଯେ ସବିତାକୁ ବାଧିଲା । କାହିଁକି ? ସେ କଣ ନିଜକୁ ମୋ ଭଉଣୀ ବୋଲି ଭାବୁନାହିଁ ? ମୁଁ କଣ ତା' ଦେହକୁ ଆଗରୁ କେବେ ଛୁଇଁ ନାହିଁ ?

ନା ତାକୁ ବାଧିଲା ଏଇଥିପାଇଁ ଯେ···? ସେ ଭିନଭାଇ ସବିତାକୁ ଛୁଇଁଲେ ? କାମନା କଷ୍ଟ ହଏ । ବିନାୟକବାବୁ ପ୍ରତିବେଦନାର ବ୍ୟଥାରେ ପୁଲକିତ ହେଲେ । ସେ କୋମଳ ଅଦ୍ଧ କଣ୍ଠରେ ଉଚ୍ଚାରଣ କଲେ, "ସ-ବି-ତା !"

କହି ସାରିଲା ପରେ ସେ ଅପେକ୍ଷା କଲେ । ପ୍ରତି ମୁହୂର୍ତ୍ତରେ ଅପେକ୍ଷା କଲେ ଯେ ଅନୁରୂପ କଣ୍ଠରେ ସବିତା, କହିବ-"ଭି-ନ-ଭାଇ ।" କିନ୍ତୁ ସେ କିଛି କହୁ ନାହିଁ । କାହିଁକି କିଛି କହୁ ନାହିଁ ? ବିନାୟକ ବାବୁଙ୍କର ସନ୍ଦେହ ହେଲା ଯେ ସବିତା ମନେ ମନେ ହସୁଛି । ସେ ମୋର ସ୍ପର୍ଶରୁ କିଛି ପାଇ ନାହିଁ, ପାଇବାର ଛଳନା କରୁଛି । ସେ ସତୀତ୍ୱର ସ୍ୱର୍ଗରେ ଥାଇ ମୋର କୃତିତ୍ୱ ଦେଖିବ ବୋଲି ବସିଛି । ସତେ ଯେପରି ମୁଁ କୋଡ଼ିଏ ବର୍ଷର ଟୋକା ହୋଇଛି, ପ୍ରେମ-ବିଦଗ୍ଧ ରୋମିଓ,—ମୁଁ ନିଜକୁ ତା' ପଦତଳେ ଅଜାଡ଼ି ଦେବି, ସଁପି ଦେବି, ଝାସ ଦେବି ! (କିନ୍ତୁ ତା' ପାଦ ଦୁଇଟି ଭାରି ସୁନ୍ଦର, ଲକ୍ଷ୍ମୀ ପାଦ ପରି) ଆଉ ସେ ମୋ ମୁଣ୍ଡ ଆଉଁସି ଦେଇ କହିବ, ଭିନଭାଇ, ଛିଃ । ଉଠ । ଏମିତି ପାଗଳଙ୍କ ପରି ହେଲେ ଚଳିବ ? ଆମର ଏ ପବିତ୍ର ସମ୍ପର୍କ, ଇତ୍ୟାଦି ଇତ୍ୟାଦି ।

ସେ ଏତିକି କହି ନାହିଁ, କିନ୍ତୁ କହି ପାରିବ । ତା'ର ସତୀଭାବ ସେତିକି, ଦେବୀଭାବ ସେତିକି । ବୋଧହୁଏ ସେ ଭାବେ ଯେ ତା'ର ସାନ ବର୍ତ୍ତୁଳ ମୁହଁର ଚାରିପାଖରେ ଗୋଟିଏ ଜ୍ୟୋତିର ମଣ୍ଡଳ ରହିଛି । ସବିତା ଦେଈ ! ସବିତା ଦେଈ । ଶୁଣୁଛ ? କିଛି ହେଲେ କୁହ । ଆଉ ସମୟ ନାହିଁ, ଆଜି ବୋଧହୁଏ ଶେଷ ରାତି । ବୁଢ଼ାବୁଢ଼ୀ ହେବାକୁ ଆଉ ବିଶେଷ ଡେରି ନାହିଁ । ସେତେବେଳକୁ ବଞ୍ଚିବା ଶୋଭା ପାଇବ ନାହିଁ, ପ୍ରେମ କରିବା ଦୂରର କଥା ।

ଆଜି ଶେଷ ରାତି । ଆମେ କେତେଥର ଏମିତି ପାଖା ପାଖି ବସିଛୁ । ଦେହ ଦେହକୁ ଡାକୁଛି, ନିଃଶ୍ୱାସରେ ନିଃଶ୍ୱାସ ମିଶିଛି । କିନ୍ତୁ କିଛି ଘଟି ନାହିଁ । ଆଜି ପୁଣି କଣ ସେଇଆ ହେବ ? ନା । ଆଜିର ରାତି ଫଳବତୀ ହେବ, ହେବାକୁ ହେବ । ଆଉ ବେଳ ନାହିଁ ।

(ହାତ ପାପୁଲି ଦୁଇଟି ଗୋଲ୍‌ଗାଲ୍, ହଳଦିଆ ଗୋଡ଼, ନାଲି ପଥରର ମୁଦି, ଚମ୍ପା ଫୁଲରେ ସିନ୍ଦୁର ଛୁଞ୍ଚା)

ଆଜିଠୁଁ ଅଭି ତୁମର ପୁଅ । ତୁମେ ତା'ର ମାଆ ସେହି ଆନନ୍ଦରେ କଅଣ ଆମେ ଅସ୍ୱୀମାରମ୍ଭ କରି ପାରିବା ନାହିଁ ? ସବିତା ଦେଇ !

ବିନାୟକ ବାବୁ ଆତୁର ହେଲେ, ଉତ୍ତରୋତ୍ତର ମୀରବ ହେଲେ ଏବଂ ସବିତା ଦେବୀଙ୍କ ହାତକୁ ଗ୍ରହି ରହିଲେ । 'ସବିତା' ବୋଲି ଦ୍ୱିତୀୟଥର କହି ପାରିଲେ ନାହିଁ କିମ୍ବା ତାଙ୍କ ମୁହଁକୁ ଅନାଇ ପାରିଲେ ନାହିଁ । ଅଥଚ ହାତକୁ ଦେଖି ଦେଖି ତାଙ୍କ ଆଖିରେ ପଡ଼ିଲା ସେହି ଜାନୁ ଦୁଇଟି ଯାହା ଉପରେ ହାତ ଥୁଆ ହୋଇଥିଲା, ସେଥିର କୋମଳ କମନୀୟତା ସବିତାପଣ । ବିନାୟକବାବୁ ନିଜକୁ ତିରସ୍କାର କରି ଫେରାଇ ଆଣିଲେ ଓ ହୃଦୟଭରା ପ୍ରେମର ଡାକକୁ ପୁଣି ଅପେକ୍ଷା କଲେ । ଏ ରାତି କଣ ଆଗେଇବ ନାହିଁ ?

କେତେବେଳେ ତାଙ୍କ ମୁଣ୍ଡରେ ପଶିଲା ଯେ ଅନେକ ସମୟ ହେଲା ସେମାନେ ମୀରବ ହୋଇ ବସିଛନ୍ତି । ଅନ୍ୟଥା ଭାବୁଥିଲେ ସବିତା କିଞ୍ଚିତ୍ ଉଠି ପଳାଇ ପାରନ୍ତାଣି, ବାଆଁରେଇ ଦେଇ ଏଣୁ ତେଣୁ କଥା ପକାଇ ସାରନ୍ତାଣି, କିମ୍ବା ନିରର୍ଥକ ହସ ହସି ସାରନ୍ତାଣି । କିନ୍ତୁ ସେ ମଧ୍ୟ ଚୁପ୍ ହୋଇ ବସି ରହିଛୁ । ତା'ର ଅର୍ଥ ସେ ଗ୍ରହଣ କରିଛି, ଓ ଗ୍ରହି ରହିଛି । ତା'ପରେ ?

ତା' ପରେ କଣ ?

ବିନାୟକ ବାବୁ ଭାବିଲେ ଯେ ଏ ପ୍ରଶ୍ନ ଯୁଗାନ୍ତକାରୀ । କିନ୍ତୁ ଉତ୍ତର ଏତେ ସହଜ ନୁହେଁ । କିଏ କହୁଛି ଯେ ମୁଁ ଅଖିପିଚୁଳାକେ ହେଇ ହାତ ଦୁଇଟିକୁ ଚିପି ଧରି ପାରିବ (ଜାଣି ଶୁଣି), ସେହି କାମ୍ୟ ଦେହକୁ ଟାଣି ଆଣି ଉଷ୍ମତାର ଅତଳତଳ ଖୋଜି ପାରିବ ? କିମ୍ବା ଦେହ ଦୁଷ୍ପ୍ରାପ୍ୟ ଓଠକୁ ? ନା, ସବିତା ସେମିତି ନୁହେଁ ! ସେମିତି ହୁଏ ନାହିଁ, ହୋଇ ପାରିବ ନାହିଁ ! ବିନାୟକ ବାବୁ ଆପଣାକୁ ନିଷେଧ କଲେ । ପ୍ରଚଣ୍ଡ ଭାବରେ ନିଷେଧ କଲେ ।

ଓଃ ! ବିନାୟକ ଓ ସବିତାର ସମ୍ପର୍କ, ସମଗ୍ର ଅତୀତ ବର୍ତ୍ତମାନ ଓ ଭବିଷ୍ୟତର ଦାୟିତ୍ୱ କଣ ଏହି ଗୋଟାଏ ମୂହୂର୍ତ୍ତର ବନ୍ଧୁରେ ଠୂଳ ହେବାର ଥିଲା ? ବିନାୟକ ବାବୁଙ୍କର ମନେ ହେଲା ଯେ ନିସ୍ତବ୍ଧ ଆକାଶ ଓ ପୃଥିବୀର ଅଖଣ୍ଡ ବିରାଟ କଳେବର ଧାରଣା କରି ତାଙ୍କୁ ମାଡ଼ି ବସୁଛି । କହୁଛି ଆଉ ରକ୍ଷା ନାହିଁ । ଏଥର କିଛି କରିବୁ ତ କରି ନିଅନ୍ତୁ । ଛିଃ ! ଆମର ପ୍ରେମ ସୂକ୍ଷ୍ମ ଓ ସୁନ୍ଦର । ତାହା ଏହି ସ୍ଥୂଳତା, ଏହି ଗର୍ଜନ, ଏହି ଆକସ୍ମିକତାର ସଂଘାତ ସହି ପାରିବ ନାହିଁ । ସହି ପାରିବ ନାହିଁ ।

ସହ୍ୟ ନ ପାରିଲା ପରି ସେ ତାଙ୍କ ଗ୍ରୀବାତଳେ ଏକ ଶୂନ୍ୟତା, ଏବଂ ରସନାରେ ଶୁଷ୍କତା ଅନୁଭବ କଲେ । କିନ୍ତୁ କିଛି କହିବାକୁ ହେବ । ଯେତେ ଡେରି ହେଉଛି ଅବସ୍ଥା ଅଧିକ ସାଂଘାତିକ ହୋଇ ଉଠୁଛି । ବନାସ୍ପତି ବାବୁ ତାଙ୍କ ଚେତନାର ସମସ୍ତ ଅଂଶକୁ ଜଗାଇ କିଛି କହିବାକୁ ଚାହିଁଲେ, ଓ ଶେଷକୁ କହି ପକାଇଲେ,—

"ସବିତା । ଅଭି ତୁମକୁ ବାଗିଲା ।" (ସେତେବେଳେ ତାଙ୍କ ଦୃଷ୍ଟି ସାମାନ୍ୟ ଉର୍ଦ୍ଧ୍ୱକୁ ଗଲା, ସବିତା ଦେବୀଙ୍କର ହାତ ଦୁଇଟିରୁ ତାଙ୍କ ବିପୁଳ ବକ୍ଷ ଦେଶକୁ ।)

ତଥାପି ସବିତା ଦେବୀ ନିରୁତ୍ତର ରହିଲେ । କିନ୍ତୁ କ୍ଷଣକ ପାଇଁ । ତା'ପରେ ଏକାଧାରରେ ଅବସ୍ଥାର ଗୌରବ ଓ ହାସ୍ୟକର ବୁଝିପାରିଲା ପରି ସେ ଗୋଟିଏ ହାତ ମୁଣ୍ଡରେ ଲଗାଇଲେ ଓ ରହି ରହି ହସି ଉଠିଲେ । ସେ ହସରେ ଆନନ୍ଦ ଥିଲା ପରି ଲାଗିଲା ନାହିଁ । ଏବଂ ସେହି ଅଦମ୍ୟ ହାସ୍ୟର ଭିତରେ ସେ କହିଲେ, ବନସ୍ପତି । ତୁମେ ବଡ଼ିଆ । ଏଇଥିପାଇଁ ଏତେ ଚିନ୍ତା ? ପିତୃହୃଦୟ ଏତେ କୋମଳ ବୋଲି ମୁଁ ଜାଣି ନ ଥିଲି !"

ହେଉ, ହଁ ସେ ଛୁଡ଼ା ହୋଇ ପଡ଼ିଲେ । ମନେ ହେଲା ଯେ ତାଙ୍କର ଅନତିଦୀର୍ଘ ପୁଷ୍ଟ ପ୍ରବୀଣ ଦେହର ସ୍ତୂପରେ ବନାସ୍ପତି ବାବୁ ପୋତି ହୋଇ ପଡ଼ିବେ । ଗମ୍ଭୀର-କରୁଣ ହୋଇ ସେ କହିଲେ,—

"ବନସ୍ପତି, ଅଭି କଣ ମୋ ପୁଅ ନୁହେଁ ? ହୋଇ ପାରିବ ନାହିଁ ? ହୁଏତ ମୁଁ ତୁମ ପରି ଆଉ ଭଉଜ ବୋହି ନ ପାରି ତା'ର ଯତ୍ନ ନେଇ ପାରିବ ନାହିଁ । ଯେତେ-ହେଲେ ମୁଁ ତାକୁ ଜନ୍ମ କରି ନାହିଁ—।"

"ନା ନା ମୁଁ ସେ କଥା କହୁନାହିଁ । କି ଆଶ୍ଚର୍ଯ୍ୟ ! ମୁଁ କହୁଥିଲି କଣ କି ଅଭିକୁ ତୁମେ ଜାଣ ନାହିଁ । ସେ ଭଲ ପିଲା, କିନ୍ତୁ ବେଳେ ବେଳେ ଭାରି ଜିଦ କରେ । ଯାହା ବୁଝିଥିବ ସେଇଆ ।"

"ଠିକ ଆମ ମୀନୁପରି"—(ଏଥର ତାଙ୍କ କଣ୍ଠସ୍ୱର ସହଜ, ଆଳାପ ଉପଯୋଗୀ )

"ବେଳେ ବେଳେ ଏମିତି ଗୁମାନୀ ହୋଇଯିବ ଯେ ତା' ମନକଥା ବୁଝିବା କାଠିକର ପାଠ । ଯେମିତିକି ସେ ପୃଥିବୀର କେହି ନୁହେଁ ।

ମୁଁ କଣ ଜାଣି ନାହିଁ ? ଏଇ ସେଦିନ ଆମେ ଗୋଟିଏ ପାର୍ଟିକୁ ଯାଇଥିଲୁ । ଘରକୁ ଫେରି ଆସି ଦେଖେ ଯେ ମୀନୁ ମୁହଁ ଫୁଲାଇ ବସିଛି ।"

"ସେ ବାପା ମାଆଙ୍କୁ ଛାଡ଼ି ଯିବାକୁ ଚାହେଁ ନାହିଁ । କିନ୍ତୁ ସେ ଏଠି ଅଟେଇ ଯିବ । ଏଠି ପହଞ୍ଚି ନ ପହଞ୍ଚୁଣୁ ସେ କ'ଣ ପଚାରିଲା ଜାଣିଛ ? କହିଲା,—ମାଁ ଚାହେରକା ମୋତେ ଭାଇ ବୋଲି ଡାକିବେ ନା ? ତା'ର କେହି ସାନଭଉଣୀ ନାହାନ୍ତି ନା, ସେଇଥିଲାଗି—।"

"କିନ୍ତୁ ସେ ଦୁଷ୍ଟ ହେଲେ ତାକୁ ମୁଁ ତାକୁ ଶାସନ କରିବି । ଜାଣି ଥା' । ନ ହେଲେ ସେ ଅବାଗିଆ ହୋଇଯିବ, (ଧୂର୍ତ୍ତ ହସ) ତା' ବାପ ପରି ।"

"ତା' ବାପାକୁ ଏବେ ଶାସନ କରୁନାହିଁ,—କିଏ ମନା କରୁଛି ?"

ହସର ଆଦାନ ପ୍ରଦାନ । ବିନାୟକ ବାବୁ ଆଶ୍ୱସ୍ତ ହେଲେ । ବୋର୍ଡ ଉତ୍ତର ଯାଉଛି, ପୃଥିବୀ ପୁଣି ଗୋଲ୍ ହୋଇ ଯାଇଛି । ପ୍ରିୟପଦ୍ମବତୀ ସବିତା ଦେଇ ଗୋକୁଳର ସ୍ତ୍ରୀ,—ହସୁଛନ୍ତି ଓ ମୁଁ ତାଙ୍କ ସାଙ୍ଗରେ ହସୁଛି । ଗୋକୁଳ ଏହିକ୍ଷଣି ଆସି ପହଞ୍ଚିଗଲେ ଆମ ସାଙ୍ଗରେ ଗପ ଯୋଡ଼ିଦେଇ ପାରିବ, ଅଟରାଛିଆ କଫି ପିଇ ଆମେ ବିଶ୍ୱ ବ୍ରହ୍ମାଣ୍ଡର ଗପ ଗପି ପାରିବା । ଯେଉଁଥିରେ କିଛି ମଳଧୂଳି ନାହିଁ, ଆଞ୍ଚ ଲାଗିବ ନାହିଁ ।

କିନ୍ତୁ ସବିତା ଦେବୀ ଶୀଘ୍ର ପ୍ରସ୍ଥାନ କଲେ । ଗଲା ବେଳକୁ କହିଲେ, "ମୁଁ ଯାଉଛି ବନଭାଇ । ଗୁଡ୍‌ନାଇଟ୍ । ମୁଁ ଦେଖେ ତୁମ ପୁତ୍ରମଣି କଣ କରୁଛନ୍ତି ।

ସବିତା ଦେବୀ ଯିବାପରେ ବିନାୟକ ବାବୁ ଅତି ଅଳ୍ପ ସମୟ ପାଇଁ ଆଲୁଅ ଜଳାଇ ରଖିଲେ, ତା ପରେ ଲିଭାଇ ଦେଲେ । ଯେପରିକି ସେ ନିଜ ଚେହେରା ଦେଖି ପାରିଲେ, ଓ ଦେଖିବାକୁ ଚାହିଁଲେ ନାହିଁ । ତାଙ୍କର ମନେ ପଡ଼ିଲା ଯେ ଥରେ ଟ୍ରେନରେ ଆସିଲାବେଳେ ସେ ଗୋଟିଏ ଛୋଟ ଷ୍ଟେସନ୍ ଦେଖିଥିଲେ—ଯେଉଁଠି ଟ୍ରେନ୍ ରହିଲା ନାହିଁ, ଲୋକବାକ କେହି ଥିଲା ପରି ଦିଶୁ ନ ଥିଲା, କିନ୍ତୁ ତା' ପ୍ଲାଟ୍‌ଫର୍ମରେ ଆଲୁଅ ଜଳୁଥିଲା, ଓ ଲୁହା ବେଞ୍ଚ୍ କେତୋଟି ଅତି ନଗ୍ନ ଓ ଏକୁଟିଆ ଦେଖା ଯାଉଥିଲା ।

ବିନାୟକ ବାବୁ ମନକୁ ଅଣ୍ଡାଳିଲେ । ନିଜକୁ କହିଲେ ଯେ ସେ ମିଛ କହି ନାହାନ୍ତି, ସେ ମୂଳରୁ ଠିକ୍ କରିଥିଲେ ଯେ ଅଭେ ବୟସ୍କ ନେଇ ସବିତା ସାଙ୍ଗରେ କଥାବାର୍ତ୍ତା କରିବେ । ଯେ ମୁଖ୍ୟତଃ ସବିତା ତାଙ୍କର ଭଉଣୀ, ଅଥବା ବନ୍ଧୁପତ୍ନୀ । ଅଥବା ଅନ୍ତରେ "ମାଆ" । ହେଲେ ଅନେକୁ ଥର ତାଙ୍କର ମନକୁ ଅସୁଥାଏ ସେହି ଲୁହା ଗାଗୁଆ ବେଞ୍ଚ୍, ଛାବର ଦାୟିତ୍ୱହୀନ ବେଞ୍ଚ୍ । ଚରିତ୍ରର ଗୋଟାଏ ଝଲକ ।

ମୁଁ କଅଣ ସତରେ ନିଜକୁ ପଦାରେ ପକାଇ ଦେଲି ? ଜଣାଇ ଦେଲି ଯେ ମୁଁ ଭୀରୁ ! ମଣିଷ ନୁହେଁ, ପଦାର୍ଥ ! ମୋର ଏ ପ୍ରେମରେ ସତ ନାହିଁ, ସାହସ ନାହିଁ !!

ବିନାୟକ ବାବୁ ମନେ ମନେ ସବିତା ଦେବୀଙ୍କୁ ଖୋଜିଲେ, ଡାକିଲେ, ଓ କଳ୍ପନାରେ ତାଙ୍କ ଦେହର ଅଗଣାରେ ମୁହଁ ଘଷି କହିଲେ, ସବିତା ଦେବୀ, ମୁଁ ତୁମକୁ ଭଲପାଏ । ମୋର ପ୍ରେମ ପବିତ୍ର, ମହାନ୍ । ନ ହେଲେ ମୁଁ ତୁମକୁ ଅଭିର ମାଆ ରୂପରେ ବାଛି ଥାଆନ୍ତି ?

ତଥାପି ତୁମେ ବୁଝୁ ନାହଁ ? ବିନାୟକ ବାବୁ ସେହି କୋମଳବକ୍ଷର ଅଗଣାରେ ବାରମ୍ବାର କଡ଼ ଲେଉଟାଇଲେ ଓ ଗୁଟିପିଟି ହେଲେ । କେତେବେଳେ ଗ୍ରୀଷ୍ମକୁ ଶୀତଳାଇଲେ, କେତେବେଳେ ହେମାଳକୁ ଉଷ୍ମ କଲେ, ଓ କାମନା କଲେ, ଓ ଯେ ଏ ରାତି ଶେଷ ନ ହେଉ ।

## ଦୁଇ

ଲମ୍ବା ଘର ।

ଏ ଘରଟି କଣ ମୁଣ୍ଡରେ, ଚଉଡ଼ାଠାରୁ ଲମ୍ବା ଅନେକ ବେଶି, ସେଇଥିପାଇଁ ଏହାକୁ ଲମ୍ବା ଘର କହନ୍ତି । ଏଇଠି ପିଲାମାନେ ଧାଡ଼ି ଧାଡ଼ି ହୋଇ ଶୁଅନ୍ତି ।

ଆଜି ଏଠି ଗୋଟିଏ ନୂଆ ପିଲା ଆସିଛି, ସେ ମଧ୍ୟ ସମସ୍ତଙ୍କ ସାଙ୍ଗରେ ଶୋଇଛି । କାନ୍ଥ କଡ଼ରେ ପଡ଼ି ହୋଇଥିବା ଗୋଟିଏ ଅଲଗା ବିଛଣାରେ ଶୋଇଛି । ସେ ହେଉଛି ଅଭିମନ୍ୟୁ; ବିନାୟକ ବାବୁଙ୍କର ପୁଅ ।

ସବିତା ଦେବୀ ଆସି ଦେଖିଲେ ଯେ ଅଭି ଆଖି ବୁଜି ନାହିଁ, ମନଯୋଗ ସହକାରେ ଗୋଟିଏ 'କମିକ୍' ବହି ଧରି ପଢ଼ୁଛି । କିନ୍ତୁ ତା'ର ଅତି ନିବିଷ୍ଟ ଭାବ, ଓ ଗ୍ରହଣୀର ଅସ୍ୱାଭାବିକ ତୀବ୍ରତା ସନ୍ଦେହଜନକ ମନେ ହେଲା । ସବିତା ଦେବୀ ଭାବିଲେ ଯେ ପ୍ରକୃତରେ ପଢ଼ୁ ନାହିଁ, ପଢ଼ିବା ବାହାନାରେ ଆକାଶ ପାତାଳ ଭାବୁଛି । ପୁଣି ସେ ଦେଖିଲେ ଯେ ଅଭି କଡ଼େଇ କଡ଼େଇ ତାଙ୍କ ଆଡ଼କୁ ଚାହୁଁଛି ।

ସବିତା ଦେବୀ ହୁଏତ କିଛି କହି ପକାଇ ଥାଆନ୍ତେ, କିମ୍ବା ତାଙ୍କର ଆମୋଦକୁ ସ୍ପଷ୍ଟ ରୂପରେ ଜଣାଇଦେଇ ଥାଆନ୍ତେ, କିନ୍ତୁ ଏତିକିବେଳେ ତାଙ୍କ ବେଗିଣା ମହିଆଁ ଝିଅ ମୀରା ଭେଁ କରି କାନ୍ଦି ଉଠିଲା । ସଞ୍ଜବେଳଠୁ ସେ କୁନ୍ଥୁଉଛି । ସବିତା ଦେବୀ ତା' ପାଖକୁ ଯାଇ ତାକୁ ଆପୁଡ଼େଇଲେ, ଓ ତା' ମୁଣ୍ଡ ପାଖରେ ବସି ରହି ତା'କୁ ଆଉଁସିବାକୁ ଲାଗିଲେ ।

ଅଭି ସେହି ମାଆ ଝିଅଙ୍କୁ ଗୁହାରିଦେଇ ତା'ର 'ବନ୍ଧପଢ଼ା'କୁ ଫେରି ଆସିଲା । ତା' ଭାବନାର ଗତି ଦ୍ରୁତତର ହେଲା ।

ମୋଟୀ, ବାଙ୍ଗଳୀ ! ସେ କାହିଁକି ମୋ ମାଆ ହେବ ? ମୋ ମାଆ ଏମିତି ନୁହେଁ ।

ସେ ମୋ ମାଆ ନୁହେଁ ! ବାପା ଉଚ୍ଛ୍ୱାସଟାକୁ ଦୁର୍ଗୁଣେଇ ହେଉଥିଲେ,—ବୁଝିଲୁ ଅଭି, ସବତା ମାଉସୀ ଆଉ ସମସ୍ତଙ୍କ ପରି ନୁହେଁ । ସେ ତୋତେ ଖୁ-ଉ-ବ୍ ସ୍ନେହ କରିବ, ତୋ ଖବର ବୁଝିବ, ତୋର କଷ୍ଟ ହେଲେ ଅଭାବ ନାହିଁ···ମାଆ ନା ଛେନା ଗୁଡ଼ ।

ଅଭି ମନ ଭିତରେ ଦୁଇଜଣଙ୍କୁ ପାଖାପାଖି ରଖିଲା ତ ତା'ର ଧାରଣା ଦୃଢ଼ ହେଲା ଯେ ଏ ଲେକଟାର ସବୁ ଭୁଲ୍ । ମୋ ମାଆ ଦେହର ରଙ୍ଗ ଚକ୍‌କଣ ସାବନା, ସେଠି ମୁହଁ ରଖିଲେ ଘର ପରି ଲାଗେ । ଅଳଗୁଣି ପଛରେ ଥିବା ଶାଢ଼ୀ ଗୁଡ଼ାର ଘେରା କାନ୍ଥର ସେହି ଗ୍ରେଟିଆ କୋଣଟି ପରି । ଆଉ ୟାଙ୍କ ଦେହର ଗୋରା ଦାଉ ଦାଉ ହୋଇ ଜଳୁଛି । ···ମାଆର ନାକ ସୁନ୍ଦରିଆ ହୋଇ ଗ୍ରେଟିଆ, ଆଉ ୟାଙ୍କର ଧାରୁଆ ଖଣ୍ଡା ପରି । ୟାଙ୍କ ମୁଣ୍ଡରେ ମେଞ୍ଚାଏ କଳା ବାଳ, ମୁହଁର ଚାରିପାଖରେ ଫୁଲିକରି ରହିଛି, ପୁଣି ନୁଖୁରା ଦେଖା ଯାଉଛି । ମୋ ମାଆ ତେଲ ଲଗାଇ ଜୁଡ଼ା ବାନ୍ଧେ । ······ୟାଙ୍କ ଦେହରେ ପୁଳାଏ ପୁଳାଏ ମାଂସ ଲାଗିଛି । କେଡ଼େ ମୋଟା ବେକ ! ଆଉ କେତେ ବଡ଼ ବଡ଼ ଗୁଡ଼ି ! ମୁଁ କଣ ସେ ଗୁଡ଼ିରେ ଶୋଇ ପାରିବ ? ଛିଃ ଅସନା । ···ୟାଙ୍କର କେହି ପୁଅ ନାହାନ୍ତି । ଧନଟାଯାକ ଝିଅ । ମାଇଚିଆ ଗୁଡ଼ାକ । ମୁଁ ତାଙ୍କରି ସାଙ୍ଗରେ ବସିବ, ଖେଳିବ, ସ୍କୁଲକୁ ଯିବ । ମୁଁ ବି ମାଇଚିଆ ହୋଇଯିବ । ······

ଧାତ୍, ମୁଁ ଏଠି ରହିବ ନାହିଁ । ମୁଁ କାଲି ସକାଳେ ବାପାଙ୍କ ସାଙ୍ଗରେ ଲାଗେଇବ ଯେ ସେ ମୋତେ ଘରକୁ ଫେରେଇନେବେ । କାହିଁକି, ହେଅଡ଼େ, କଣ ସ୍କୁଲ ନାହିଁ ? ଶହ ଶହ ସ୍କୁଲ ଭରି ହୋଇଛି । ବାପାଙ୍କର ଏଠୁ ସେଠିକି ବଦଳି ହେଉଛି, ହେଉ । ମୋତେ କୋଉ ହଷ୍ଟେଲ୍‌ରେ ରଖି ଦେଇ ଆଆନ୍ତୁ । ଏଠି ପଢ଼ିବ ବୋଲି କଣ ଲେଖା ହୋଇଛି ? ବାପାଙ୍କର ଗୋଟାଏ ଜିଦ୍ ଲାଗିଛି— । ମାଆ ପ୍ରଥମେ ନାହିଁ ନାହିଁ କରୁଥିଲା, କହୁଥିଲା ମୋ ପୁଅକୁ ଏତେ ଦୂରକୁ ଛାଡ଼ିବ ନାହିଁ । କିନ୍ତୁ ବାପା ତା' ପଛରେ ଧନ ଗଣ୍ଡି ଏମିତି ଲାଗିଲେ, ଏମିତି ଲମ୍ବା ଲମ୍ବା କଥା କହି ବୁଝେଇଲେ ଯେ ଶେଷକୁ ସେ ହଁ' ବଳି ହୋଇଗଲା । ······ସବତା ମାଉସୀ ବାପାଙ୍କର କଅଣ କି ?

ସବିତା ମାଉସୀକୁ ପୁଣି ଥରେ ଦେଖିବା ପାଇଁ ଅଭି କଡ଼େଇ କରି ଚାହିଁଲା । ଦେଖିଲା ଯେ ସେ ତା' ଆଡ଼କୁ ଜଳଜଳ କରି ଚାହିଁଛନ୍ତି ।

ସେ କଅଣ ମୋ ଆଡ଼କୁ ଏମିତି ଚାହିଁବେ ? ଗିଳିପକାଇଲା ପରି ଚାହିଁଛନ୍ତି । ରାକ୍ଷସୀଙ୍କ ପରି ଚାହିଁଛନ୍ତି । ଅଭିକୁ ଡର ଲାଗିଲା । ଯେପରିକି ଏହି ନୂଆ ମାଆର ମାଆପଣ ତାକୁ ଟାଣି ନେବ ବୋଲି ବସିଛି । ଗୋଟାଏ ଅଜଣା ଦେହ,—ଗୋରା, ମୋଟା ଓ ଲୁଟୁପୁଟୁ,—ଝପେଇଛି ତା'କୁ ମାଡ଼ି ବସିବ, ଆଉ ଗେହ୍ଲେଇ ହୋଇ କହିବ,—ମୁଁ ତୋ ମାଆ ପରା !

ଅଭି କଡ଼ ଲେଉଟାଇଲା । ତା'ର ସେହି ବେଙ୍ଗିଣୀ ଝିଅଟା ଉପରେ ରାଗ ଆସିଲା । କାହିଁକି ସେ ଏମିତି କାନ୍ଦୁଛି ? ମଣିଷକୁ ଟିକିଏ ଶୋଇବାକୁ ଦେବନାହିଁ । ସେ କଣ ରାତିଯାକ ଏମିତି କାନ୍ଦି ଚାଲିଥିବ, ଅଭିଲୁ କେଁ କେଁଇଆ କାନ୍ଦି, ଆଉ ତା ମାଆ ଆଡ଼କୁ ଏମିତି ଚାହିଁ ରହିଥିବ ? ଆଲୁଅ ଲିଭେଇ ଦେବ ? ନା, ଆଲୁଅ ଲିଭେଇ ଦେଲେ ସବିତା ମାଉସୀର ଚାହାଣୀ ଅନ୍ଧାର ପାଖକୁ ଲାଗି ଆସିବ, ମୋତେ ଡରେଇବ, କାବୁ କରିଦେବ ।

"ଅଭି, ବହି ପଢ଼ା ସରିନାହିଁ ? ଆଲୁଅ ଲିଭେଇ ଦେଇ ଶୋଇ ପଡ଼୍ । ଡେରି ହେଲାଣି ପରା ।"

ଅଭି ନିରୁତ୍ତର ।

'ତୁ ଆଜି ଭଲକରି ଖାଇଛୁ ତ ? ତରକାରୀ ପଣ କେମିତି ହୋଇଥିଲା ?"

"ଭଲ ।"

"ତୁ କଣ ଶୋଇବୁ ନାହିଁ ? ଆହୁରି ପଢ଼ୁଥିବୁ ?"

"ହଁ ।"

ସବିତା ଦେବୀ ନିରସ୍ତ ହେଲେ ।

ମୀନାର କାନ୍ଦଣା କ୍ଷୀଣ ହୋଇ ଆସିଲା, ଥମିଗଲା । କିନ୍ତୁ ଅଭି ଶାନ୍ତ ହେଲା-ନାହିଁ । ସେ ବହି ପଢ଼ିଲା ଓ ଘନ ଘନ ପ୍ରତିଜ୍ଞା କଲା ଯେ ସେ ଏ ମାଇଚିଆ ଘରେ ରହିବ ନାହିଁ । ସେ ସବିତା ମାଉସୀକୁ ସହି ପାରିବ ନାହିଁ । ମୋଟେ ସହି ପାରିବ ନାହିଁ ।

ତେବେ ତାକୁ ନିଦ ଲାଗି ଆସୁଥାଏ ଓ ସେ ଅଜାଣତରେ ପୁଣି ଚଢ଼ିଗଲା ଅରପଟକୁ ବହିକୁ ହାତରେ ନେଇ । ସେତିକି ବେଳେ ସେ ସେହି ଅବାଞ୍ଛିତା ଅନ୍ୟ ବ୍ୟକ୍ତିଙ୍କୁ ଆଉ ଥରେ ଦେଖିଲା । ବୋଧହୁଏ ଦେଖିବାର ଲୋଭ ସମ୍ଭାଳି ପାରିଲା ନାହିଁ ।

ସବିତା ମାଉସୀଙ୍କର କଅଣ ହୋଇଛି ? ସେ କଣ କାନ୍ଦୁଛନ୍ତି ?

ଅଭି ଧଗ୍‌ପଡ଼ିବାର ଉପ୍ୟକୁ ଭୁଲିଯାଇ ତାଙ୍କ ଆଡ଼କୁ ସିଧା ହୋଇ ଚାହିଁଲା, ଯଦିଓ ସେ ବହି ଖଣ୍ଡିକ ହାତରୁ ଛାଡ଼ୁ ନ ଥାଏ । ସବିତା ମାଉସୀଙ୍କର କଅଣ ହୋଇଛି ? ନା ସେ କାନ୍ଦୁ ନାହାନ୍ତି । ତାଙ୍କ ଆଖିରେ ଲୁହ ଟୋପାଏ ବୋଲି ନାହିଁ । ସେ ସେମିତି ମୋର ଆଡ଼କୁ ଚାହିଁଛନ୍ତି । କିନ୍ତୁ ତାଙ୍କ ଚାହାଣୀ ଫୋଡ଼ି ଦେଉ ନାହିଁ, ବୋଲି ହୋଇ ଗଲା ଲାଗୁଛି । ମୋ ଦେହ ମୁହଁରେ, ଏ ଘରସାରା ବୋଲି ହୋଇ ଯାଇଛି । ଏବେକ୍ଷଣି ତାଙ୍କ ଗୋରା ରଙ୍ଗ ଦାଉ ଦାଉ ହୋଇ ଜଳୁନାହିଁ, ପାଉଁଶିଆ ପଡ଼ି ଯାଇଛି । ଆଉ ସେ ସୁନ୍ଦର ଦେଖା ଯାଉଛନ୍ତି । ···ଅଭିର ମନେ ହେଲା ତା'ର କିଛି କରିବା ଦରକାର । ଏ ଘରେ ଏକୁଟିଆ ସେ ଦୁଇଜଣ, ଚୁପ୍‌ଚାପ୍, ଅଭି ଓ ତାର ନୂଆ ମାଆ, ସବିତା ମାଉସୀ । ଆଉ କେହି ନାହିଁ । ସେ ହିଁଅଟା ବି' କାନ୍ଦୁ ନାହିଁ । ତାକୁ ଓଜନିଆ ଲାଗିଲା, ଯେପରିକି ସେ ଜଣେ ବଡ଼ ମଣିଷ ହୋଇ ଗଲଣି, ଆଉ ତା ସାମନାରେ ଏହି ସ୍ତ୍ରୀ ଲୋକ ଜଣକ କଷ୍ଟ ପାଉଛନ୍ତି ।

ସବିତା ମାଉସୀ ସୁନ୍ଦର । ଅଭିର ଖିଆଲ ହେଲା ଯେ ସେ ମୂଳରୁ ଏ କଥା ଜାଣିଛି । ବାପା କହୁଥିଲେ ? ନା ମାଆ କହୁଥିଲା ? ନା ମୁଁ ଭାବି ନେଇଥିଲି ? ଯାହାହେଉ ମୁଁ ମୂଳରୁ ଜାଣିଛି ଯେ ସେ ସୁନ୍ଦର । ଅଲଗା । ମାଆଠାରୁ ଅଲଗା । ମାଆଠାରୁ ସୁନ୍ଦର ।

'ଅଭି, ସୁନାଟି ପରା, ବହି ରଖିଦେଇ ଶୋଇପଡ଼୍ ।'

ତା'ର ଗୋପନ ଭାବନା ଓ ପ୍ରବଣତାକୁ କିଏ ଜାଣି ପକାଇଲା ପରି ଅଭି ଚମକି ଉଠିଲା ଓ ରୁକ୍ଷ ସ୍ୱରରେ କହିଲା, "ମୁଁ ଏବେକ୍ଷଣି ଶୋଇ ପାରିବି ନାହିଁ, ମୋତେ ନିଦ ହେଉ ନାହିଁ ।"

"ଅଭି ମନେ ବୁଝିଲା ଯେ ସେ କଡ଼ା କଥା କହିଲା । ତାଙ୍କୁ ଆହୁରି କଷ୍ଟ ହୋଇଥିବ । ହେଉ । ମୁଁ କହିଛି, ବେଶ୍ କରିଛି । ଆହୁରି କହିବି । 'ଅଭି, ସୁନାଟି ପରା !' ସେ କିଏ ମୋତେ ସେମିତି କହିବେ ? ସତରେ ଯେମିତି ମୁଁ ତାଙ୍କ ପୁଅ ! ଧାଉଁଥିଲି ବସି— ।

ସେ ଖୁସି ହେଲା ଯେ ସେ ପୁଣି ରାଗି ପାରୁଛି । ସବିତା ମାଉସୀ ଉପରେ ତା'ର ରାଗିବା କଥା । ସେ ମୋତେ ଫୁସୁଲାଉଛନ୍ତି ଯେ ମୁଁ ଏଇଠି ରହିବି, ତାଙ୍କ ପାଖରେ ରହିବି । ସେ କଥା ହେବ ନାହିଁ । କିନ୍ତୁ ଛାତିଭିତରେ କଣ ଜମିଯାଇଛି ଓ ବଢ଼ୁଛି । ବୋଧହୁଏ ଟିକକରେ ଫୁଟିଫାଟି ପଡ଼ିବ, ମୁଁ ଏଠୁ ପଳେଇ ଯିବି, ସବିତା ମାଉସୀ ଉପରକୁ ବହି ଖଣ୍ଡିକ ଫିଙ୍ଗି ଦେବି, ନ ହେଲେ ସେ ଦୌଡ଼ି ଆସି······ ।

ସେ ଆସୁ ନାହାନ୍ତି କାହିଁକି ? ଏତେ ଦରଦ ଯଦି ସେ ଶୋଇଲା ଝିଅଟାକୁ ଅଉଁସୁଚନ୍ତି କାହିଁକି ?

ସେ ଦୌଡ଼ି ଆସିବେ । ମୋ ପାଖରେ ବସି ପଡ଼ି ମୋ ହାତକୁ ହାତରେ ଧରିବେ, ମୋ ଉପରକୁ ନଇଁଯିବେ, ଆଉ ମୁଁ ଆଉଜିଯିବି । ମାଆ ପରି ନୁହେଁ, ନୂଆ ମାଆ ପରି । ଆଉ ଗୋଟିଏ ଦେହ, ...ଗୋରା ଚଉଡ଼ା...ନରମ । ତାଙ୍କର ସେ ସାନ ପୁରୁଣା ମୁହଁ ମୋତେ ଗେହ୍ଲା କରିବ । (ତାଙ୍କ ଗାଲରେ ଗୋଟାଏ ଖାଲ ଅଛି ?) ମାଆ ଯେମିତି କରେ, ହେଲେ ମାଆଠୁ ଅଲଗା । କହିବେ,—ଅଭି, ତୁ ମୋ ପୁଅ, ନୁହେଁ ? ମୀରା ହେଉଛି ଆମେ ଥୟିବେ, ହଂହା କରୁଥିବେ ! କରନ୍ତୁ । ଖାଲି କଅଣ ସେଇମାନେ ମାଆ ପାଖରେ ଗେହ୍ଲେଇ ହେଉଥିବେ ? ଯୋଉ ସୁନ୍ଦର ଝିଅ ଗୁଡ଼ାକ ତ ! ମୀରାର ଦାନ୍ତ ବାହାରିଛି । ନିରାଟା ଘେଙ୍ଗିଣୀ । ସାନ ଏ ପର୍ଯ୍ୟନ୍ତ ଭଲ କରି କଥା କହି ଶିଖିନାହିଁ । ସେମାନେ କଏ ମୋ ସାଙ୍ଗରେ ବାଦ କରିବେ ?

ସେ ଅସୁନାହାନ୍ତି କାହିଁକି ? ଅଭିର ମନେହେଲା ଯେ ସେ ଯେକୌଣସି ମୁହୂର୍ତ୍ତରେ ଆସିଯିବେ । ଉତ୍କଣ୍ଠା ତୀବ୍ରତର ହେଲା । କମିକ୍ ବହିର ଗୋଟିଏ କାର୍ଟୁନ୍ ଛବି, ଅସୁର ପରି ମୁହଁ,—ସେ ଅଭିର ହୃଦୟର ନିଃଶ୍ୱାସ ଗ୍ରହଣ କରି ଫେରାଇ ଦେଲା ପରି ଲାଗିଲା, ଯେପରିକି ସେ ମଧ୍ୟ ରୁହିଁ ବସିଛି । ସେ ଆସିବେ ଯଦି ଆସୁ ନାହାନ୍ତି କାହିଁକି ?

ଦେବତା ଦେବୀ ଫଟରୁ ଉଠି ଛିଡ଼ା ହେଲେ । ତାଙ୍କ ଓଠରେ ହସର ଗୋଟିଏ କ୍ଷୀଣ ରେଖା ଉଦିତ ହେଲା । ଅଭି ଯଦି ଉପମା ଦେଇ ଜାଣିଥାଆନ୍ତା ତା'ର ବୋଧହୁଏ ମନେ ପଡ଼ିଥାଆନ୍ତା କେଉଁ ଗୋଟିଏ ଦିନର ସକାଳ, ଧଳା ମେଘ ଆକାଶରେ ଛାଇ ହୋଇ ଯାଇଛି, ପାଲିସ୍ ହୋଇ ଝଲସ୍ତ୍ର ହୋଇଛି ମୂଳରୁ ଶେଷ ଯାଏଁ, ଅଉ ତା'ର ତଳେ ଗୋଟାଏ ଧଳା ଚଢ଼େଇ ଡେଣା ପିଟି ପିଟି ଉଡ଼ି ବୁଲୁଛି । ଦେହ ସଞ୍ଚରଣରେ ପ୍ରାଣ ଅଛି, ଗତି ଅଛି କିନ୍ତୁ ତାହା ଫୁଟି ଉଠୁନାହିଁ । ଫୁଟି ଉଠି ପାରିବ ନାହିଁ ।

ଦେବୀପରି ସେ ହସିଲେ । ଅଭି ଆଡ଼କୁ ରୁହିଁ ହସିଲେ । ଅଭି ତା'ର ପ୍ରତିଦାନ ଦେଲା ନାହିଁ । ତା'ର ମନେହେଲା ଦେବତା ମାଉସୀ ଦୂରେଇ ଯାଉଛନ୍ତି, ପାଖକୁ ଆସୁ ନାହାନ୍ତି ।

ସେ ପାଖ ଦେଇ ଗଲେ, କିନ୍ତୁ ପାଖକୁ ଆସିଲେ ନାହିଁ । ସେ ହସିଲେ, କିନ୍ତୁ ସେ ହସ ତାଙ୍କ ନିଜର, ମୋ ପାଇଁ ନୁହେଁ । ସେ ମୋତେ ରୁହାଁନ୍ତି ନାହିଁ ।

ସେ ମୋତେ ଚିହ୍ନାନ୍ତି ନାହିଁ । ହେଲେ କଣ କହୁଛ ଯେ ମୁଁ ତାଙ୍କୁ ଚିହ୍ନେ ? ମୁଁ ବଞ୍ଚିଥିବା ଯାଏଁ ତାଙ୍କ ପାଖ ମାଡ଼ିବ ନାହିଁ । ମୁଁ ବଞ୍ଚିଥିବା ଯାଏଁ ତାଙ୍କ ପୁଅ ହେବନାହିଁ । ସେ ମୋର ମାଆ ନୁହେଁ । ନୁହେଁ, ନୁହେଁ, ନୁହେଁ !

ଅପମାନରେ ଜର୍ଜ୍ଜରିତ ହୋଇ ଅଭି ଠିକ୍ କଲା ଯେ ସେ ଘଡ଼ଯାକ ବନ୍ଦ ପଡ଼ିଥିବ, ଆଲୁଅ ଲଗେଇବ ନାହିଁ ।

## ତିନି

ମଝିଘର ।

ଦୁଇଟି ଯୋଡ଼ା ଖଟ ପଡ଼ିଛି । ଗୋଟିକରେ ଶୁଅନ୍ତି ଗୋକୁଳ ବାବୁ, ଅନ୍ୟଟିରେ ସବିତା ଦେବୀ ।

ସବିତା ଦେବୀ ସେଠି ଆସି ପହଞ୍ଚିଲା ବେଳକୁ ଗୋକୁଳ ବାବୁ ବିଛଣାରେ ଲମ୍ବି ଗଲେଣି । ସେ ସନ୍ଧ୍ୟା ନ ହେଉଣୁ ବାହାରକୁ ଯାଇଥିଲେ, ଜଣକ ଘରେ ବ୍ୟବସାୟସଂକ୍ରାନ୍ତ ମସୁଧା ଓ ଡିନର୍ ଥିଲା । ବର୍ତ୍ତମାନ ତାଙ୍କ ମୁହଁରୁ ଜଣା ପଡ଼ୁଛି ଯେ ଆଳାପ ଆଲୋଚନାର କମ ଓ ଡିନର୍ ଉଭୟ ସନ୍ତୋଷଜନକ ହୋଇଛି । ପୁଣି ସେ ଯେପରି ଭାବରେ ଫେଳାଇ ଖେଳାଇ ମୁହଁରୁ ସିଗାରେଟ ଧୂଆଁ ଛାଡ଼ୁଥିଲେ, ସେଥିରୁ ମଧ୍ୟ ଏହି ଭାବ ପ୍ରକଟିତ ହେଉଥିଲା ।

ସବିତା ଦେବୀ ପାଖ ଖଟରେ ବସି ପଡ଼ି ଉପସ୍ଥାପନାର ଭଙ୍ଗୀରେ ନିଜ ମୁହଁକୁ ଦୁଇ ହାତରେ ତୋଳି ଧରିଲେ ଓ କହିଲେ, "ଶୁଣୁଛ ?"

ହସି ହସି ଉତ୍ତର ମିଳିଲା—"ୟେସ ?" (ମୋର ସୁନ୍ଦରୀ ସ୍ତ୍ରୀ କିଛି କହିବ ବୋଲି ଆସିଛି । କଥାବସ୍ତୁ ଅଦରକାରୀ ହେଲେ ମଧ୍ୟ କିଛି ଯାଏ ଆସେ ନାହିଁ । ଶୋଇବା ପୂର୍ବରୁ ଏହି ଦୁଇଜଣିଆ ସ୍ୱାମୀ-ସ୍ତ୍ରୀ ଟୁଆଁ ଟୁଇଁ ଭାବ ବେଶ୍ ଭଲ ଦେଖାଯାଏ ।)

"ବିନଭାଇଙ୍କ ସାଙ୍ଗରେ ଦେଖା ହେଲାଣି ?"

"ହଁ । ଶୁଣିଲି ସେ ତା' ପୁଅକୁ ଆଣିଛି ଏଠି ପଢ଼ିବ ବୋଲି । ପିଲାଟି କେମିତି (ମୁଁ ଦାଣ୍ଡଘର ଆଲୁଅ ଜଳାଇ ଦେଲି ବେଳକୁ ସେ ମୋ ଆଡ଼କୁ ଏମିତି ଭାବରେ ଚାହିଁଲା, ମୁଁ ଭାବିଲି ଯେ ସେ ମୋତେ ମର୍ଡ଼ର୍ କରିବ । ଯେପରିକି ମୁଁ ତା'ର ଦୁଃସ୍ୱପ୍ନକୁ ଭାଙ୍ଗି ଦେଲି,—ଏବଂ ମୁଁ ଥିଲି ସେହି ଦୁଃସ୍ୱପ୍ନର ପ୍ରଧାନ ଆତତାୟୀ, ଭିଲେନ୍ ! ତା' ପରେ ଅବଶ୍ୟ ସେ ବିନ୍ଦୁ ମିଳନରେ ଗଦ୍ ଗଦ୍ ହେଲା, ପାଖରେ ଡାକି ବସାଇଲା, ଆଉ ତା' ପୁଅ ବିଷୟ ଗପିଲା । ସବିତା ଏହି ଲୋକଟିକୁ କାହିଁକି ଏତେ ପ୍ରଶଂସା କରେ ?)

ସବିତା ଦେବୀ ଚିନ୍ତିତ ହେଲା ପରି କହିଲେ, "ପିଲାଟି ଭଲ, କିନ୍ତୁ ଭାରି ମଇଲୁଆ । ରାତିରେ ନ ଶୋଇ କମିକ୍ ବହି ପଢ଼ୁଥିଲା । ମୁଁ ଯେତେ କହିଲେ ବି' ମୋ କଥା ଶୁଣିବାକୁ ନାରାଜ । ବିନିଭାଇ ତାକୁ ଟିକିଏ ବେଶି ଗେଲବସର କରି ରଖିଛନ୍ତି । ଏମିତି ହେଲେ ସେ କେଉଁଠି ଚଳିବ ?"

ଏଥରକରେ ଗୋକୁଳବାବୁ ହସି ଉଠିଲେ । ସେ ନିଜେ ବୁଝି ପାରିଲେ ନାହିଁ ଯେ ତାଙ୍କୁ କାହିଁକି ହସ ଲାଗିଲା, ହାସ୍ୟାସ୍ପଦ ବସ୍ତୁଟି କଅଣ । ବିନିର ପୁଅ ସବିତାର ବୋଲ ମାନୁନାହିଁ ! ଏହି ସାମାନ୍ୟ କଥାଟିକୁ ନେଇ ଏତେ ମୁଣ୍ଡବିଥା ? ବିନିର ପୁଅ ଏଠି ଆସି ପଢ଼ିବାର ସମଗ୍ର ମୂର୍ଖତା କିମ୍ବା ଏତାଦୃଶ କେଉ ଭାବ ତାଙ୍କୁ କୁତୁକୁତୁ କରି କହି ହେବ ନାହିଁ । କିନ୍ତୁ ତାଙ୍କ ମନରେ ସହାନୁଭୂତି ନ ଥିଲା, ଏବଂ ସେହି ଧାରଣାକୁ ଦୂର କରିବାକୁ ଯାଇ ସେ କହିଲେ, 'ଡୋଣ୍ଟ ଡ୍ୱାରିଂ, ଏଥିରେ ଏତେ ବ୍ୟସ୍ତ ହେଲେ ଚଳିବ ? ଆମେ ଆମର କର୍ତ୍ତବ୍ୟ କରିଯିବା । ତା' ଛଡ଼ା ସେ ଯେତେହେଲେ ବିନିର ପୁଅ, ଆମର ନୁହେଁ । ତା' ଭଲ ମନ୍ଦ କଥା ସେମାନେ ବୁଝିବେ ।"

ଅପ୍ରସ୍ତୁତ ହୋଇଗଲା ପରି ସବିତା ଦେବୀ କିଛି ସମୟ ତଳକୁ ଉପରକୁ ଅନାଉଥିଲେ, ଚୁପ୍ ରହିଲେ । ତା' ପରେ ସେ ନିଜକୁ ସଜାଡ଼ି ନେଇ ନାନାଦି ଅନ୍ୟ କଥା ପକାଇଲେ । ଘରକରଣାର ହାନିଲାଭ, ଅର୍ଥାଭାବ, ସ୍ୱାମୀପରାୟଣତା—ତୁମେ କାହିଁକି ଏତେ ଟୁର୍‌ରେ ଯାଉଛ, ଏଥର କିଛି ଦିନ କଣ ରହିଗଲେ ହୁଅନ୍ତା ନାହିଁ ? ହୋଟେଲରେ ଏଣୁ ତେଣୁ ନ ଖାଇ ରାନ୍ଧିବା ପାଇଁ ଗୋଟିଏ ଲୋକ ଯୋଗାଡ କର··· ବେଶି ରାତି ଯାଏଁ କାମ କରିବ ନାହିଁ, ଇତ୍ୟାଦି । ତା' ସହିତ ଅଭି ସମ୍ବନ୍ଧରେ କେତୋଟି କଥା ଯୋଡ଼ି ହୋଇଗଲା, ଯଥା ସେ କାହା ସାଙ୍ଗରେ ସ୍କୁଲକୁ ଯିବ, ତା ପାଇଁ କେଉଁ ଖର୍ଚ୍ଚ କେମିତି ଭାବରେ କରାଯିବ; ତାର ପଢ଼ା ଟେବୁଲ କେଉଁଠି ପଡ଼ିବ ;

ଗୋକୁଳ ବାବୁ ଶୁଣି ଯାଉଥିଲେ । ଆଜି ସବିତା କଣ ସବୁଦିନ ଠାରୁ ଟିକିଏ ବେଶି ଗମ୍ଭୀର ? ଯାହାହେଉ ବିଉଣ୍ଡ ଆସିବା ଆଗରୁ ତାଙ୍କ ଇଚ୍ଛା ହେଲା ଯେ ସେ ସେହି ଚପଳ ତରଳ କଥାକୁହା ମୁହଁକୁ ବନ୍ଦ କରି ଦେବେ ଓ କହିବେ,—ଥାଉ ସେ ବାଜେ ଗପ । ଚୁପ୍ କରି ବୁଲି ଆସ ଏକାଠି ହେବା ଓ ପ୍ରେମ କରିବା । ସେହି ଇଚ୍ଛାର ଉତ୍ତେଜନାରେ ସେ ନିଜ ସ୍ତ୍ରୀଙ୍କୁ ଅଭଦ୍ର ଭାବରେ ଚାହିଁ ରହିଲେ । ଏପରିକି ସେ ତାଙ୍କ ଓଠର ସ୍ଫୁରଣ ଠାରୁ ଆରମ୍ଭ କରି ଟଙ୍କୁଲ ଅସୁଥିବା ନାଚି ଉଠୁଥିବା ଗୋଟି ଗୋଟି କେଶକୁ ଗଣିବାକୁ ଲାଗିଲେ, ସମସ୍ତ ଗଣିଲା ପରି । ତାଙ୍କର ଅପେକ୍ଷାରେ ଆଗ୍ରହ ଥିଲା, ଅକୁଳତା ନ ଥିଲା । କାରଣ ସେ ଜାଣିଥିଲେ ଯେ ସେ ନିମେଷକରେ ଝାମ୍ପି ଦେଇ ପାରିବେ, ସବିତା ମନା କରିବ ନାହିଁ ।

ସବିତା ବୋଧହୁଏ ବୁଝି ପାରିଲଣି ଯେ ମୁଁ ତା'ର କଥା ଶୁଣିବାକୁ ଚାହେଁ ନାହିଁ, ମୁଁ ତାକୁ ଚାହେଁ । କ୍ରମଶଃ ତା'ର କଥା ଖାପ୍‌ଛଡ଼ା ହୋଇ ଯାଉଛି, ଶବ୍ଦ

ଯୋଜନାରେ ଭୁଲ୍ ହେଉଛି ଓ ବେରଙ୍ଗର ମାତ୍ରା ବଢ଼ିଯାଉଛି । ଶେଷକୁ ସେ କହିବ;—'କଣ ଶୁଣୁଛ ନା ନାହିଁ ?' ନବବଧୂପରି ଲଜ୍ଜ ଲଜ ହେବ, ଛଳନା କରିବ ଯେ ସେ କିଛି ବୁଝି ପାରୁନାହିଁ, ଓ ମିଛ ରାଗରେ ଶୋଇ ପଡ଼ିବାର ଢଙ୍ଗ କରିବ । ସେହିଠୁ ଆରମ୍ଭ ହେବା ପ୍ରେମର ଉପସର୍ଗ,—ଗୋଡ଼ରୁ ମୁଣ୍ଡ ଯାଏଁ, ଧମାଲିର ଶେଷ ବିନ୍ଦୁ ପର୍ଯ୍ୟନ୍ତ ।

ଚଉଦ ବର୍ଷଠାରୁ ଆଜିଯାଏଁ କଣ କିଛି ବଦଳି ନାହିଁ ?

ବ୍ୟବସାୟ ବଢ଼ିଛି । ଲଭ, କମିସନ, ବୋନସ୍, ବେଶୀ ବଢ଼ୁଛି । ପଦର ଉନ୍ନତି ହୋଇଛି, ସେଲସ୍‌ମ୍ୟାନ୍‌ରୁ ସେଲ୍‌ସ୍ ମ୍ୟାନେଜର୍ । ତା ସାଙ୍ଗକୁ ଟୁର୍‌ର ସଂଖ୍ୟା ଓ କ୍ଷେତ୍ର ବଢ଼ି ଚାଲିଛି । ହେଲେ ପ୍ରତି ଟୁର୍ ପରେ ସେଇ ଏକା କଥା, ନୂଆ ହେବ ନାହିଁ । ଘର ବାହୁଡ଼ାର କେତୋଟି ଦିନ ମଧ୍ୟରେ ଜୀବନସୁଧା ସଂଗ୍ରହ କରି ନେବାକୁ ହେବ । ଅକଣ୍ଠ, ଆପ୍ରାଣ । ମରୁଭୂମିର ଓଟ ପରି ! ରବିଲ ବେଳକୁ ଗୋକୁଳବାବୁଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ଏ ସ୍ତ୍ରୀ ଜିନିଷଟି କଅଣ ? ନା, ସମସ୍ତଙ୍କ ସ୍ତ୍ରୀ ଏମିତି ନୁହନ୍ତି । ଏ ବୟସରେ ଏତେ ରୂପ ରଙ୍ଗ କାହାର ଅଛି ? କହିବାକୁ ଗଲେ ଏ ସବିତା ଜିନିଷଟି କଅଣ ?

ଏମିତି ଭାବୁ ଭାବୁ ତାଙ୍କର ଗୋଟିଏ ହାତ ସ୍ୱତଃ ପ୍ରସାରିତ ହେଲା ସବିତା ଦେବୀଙ୍କ ଆଡ଼କୁ । ଏବଂ ସବିତା ଦେବୀ ନିଜ ହାତ ପାପୁଲି ତହିଁରେ ରଖିଲେ, ଜୀବନର ନିୟମାବଳୀ ମାନିନେଲା ପରି । ତାଙ୍କ କଥାର ସୂଅ ଶିଥିଳ ହୋଇ ଆସିଲା, ଗୃହିଣୀରେ ପାଇବାର ଆବେଶ ଦେଖିବାକୁ ମିଳିଲା ।

ଆଲୁଅ ଲିଭିବାକୁ ଡେରି ନାହିଁ । ବିଛଣାରେ ପଡ଼ିଥିବା ସୁସଜ୍ଜିତ ଧୋବ ଚାଦର, କାନ୍ଥ ଡ୍ରେସିଂ ଟେବୁଲ ଇତ୍ୟାଦିରେ ଶୋଭା ପାଉଥିବା ଅବରୁଦ୍ଧ ପ୍ରେମର ଛବି, ଟାଇମ୍ ପିସ୍‌ର କ୍ଲାନ୍ତ ଟିକ୍-ଟିକ୍, ରାସ୍ତାରେ କାଁ ଭାଁ କାର୍ ବସ୍‌ର ପ୍ରଲାପ, ସମସ୍ତେ ଯେପରିକି ସୁଇଚ୍ ଟିପିବାକୁ ହାତ ଟେକି ବସିଲେ । ଯାହା ହେବାର କଥା ହୋଇଯାଉ । ଆମର ଏହି ନିତ୍ୟତାରେ ତୁମର ନିତ୍ୟ ବୈଚିତ୍ର୍ୟର ଲୀଳା ଫୁଟିଉଠୁ !

ବର୍ତ୍ତମାନ ସବିତା ଦେବୀ ଓ ଗୋକୁଳବାବୁଙ୍କ ଯୁଗ୍ମ ହାତପାପୁଲି ବିଷୟରେ କିଛି କହିବାକୁ ପଡ଼ିବ । ସବିତା ଦେବୀଙ୍କ ହାତକୁ ନେଇ ବନାନ୍ଧିବାବୁଙ୍କର ଉପମା-କଳ୍ପନା ପୂର୍ବରୁ ବର୍ଣ୍ଣିତ ହୋଇଛି । ଗୋକୁଳବାବୁଙ୍କ ହାତ ସମ୍ପୂର୍ଣ୍ଣ ଭାବେ ଭିନ୍ନ । ସୁଦୀର୍ଘ, ଶିରାଳ, ଓ କୃଷ୍ଣବର୍ଣ୍ଣ । ମନେହୁଏ ଯେ ସେଥିରେ କାଠିନ୍ୟ ଓ ଶକ୍ତି ଉଭୟ ରହିଛି ଯେପରିକି ତାହା ଅଉଁସିବାରେ ଅଙ୍ଗୁଳି ଚଳାଇବାରେ ଅଭ୍ୟସ୍ତ । କିନ୍ତୁ ସ୍ପର୍ଶ ହାଲୁକା ନୁହେଁ, ତାକୁ ଧାଡ଼ି ଦେହ ଶିହରି ଉଠେ ନାହିଁ । ସେହି ହାତରୁ ତାଙ୍କ

ମୁହଁର ଠାଣି ମଧ୍ୟ ଅନୁମାନ କରି ହେବ । ଦୃଢ଼ ଧାରୁଆ ମୁହଁରେ ଅନୁରାଗ ପଥଭ୍ରାନ୍ତ ହୁଏ; କିନ୍ତୁ କାଦୁଅର ମାଟିଆ ପରି ଅଥବା ଗୁଣ୍ଡିଆ ପରି ନୁହେଁ, ପ୍ରାପ୍ୟ ଦ୍ରବ୍ୟ ପରି । ଏହିକ୍ଷଣି ତାଙ୍କ ବୃଦ୍ଧାଣୀର ସେହି ପ୍ରେମଦ୍ରବ୍ୟ କ୍ରମଶଃ କ୍ଷୀଣ ହୋଇ ଆସିଲା । ପଥର ନୁହେଁ, ବରଫ ବୋଲି କହିଲେ ଉଚିତ ହେବ । କାରଣ ଗୋକୁଳ-ବାବୁ ନିଜକୁ ଧରି ରଖିଲେ ଗୋଟିଏ ବିଜ୍ଞାନୀ ପ୍ରଶ୍ନ ପଚାରିବା ପାଇଁ,—କାହିଁକି ?

କାହିଁକି ଏ ଯୁଗ୍ମ ହାତର ଶୋଭା ? ରାଧାକୃଷ୍ଣର ଛଳନା ?

ମୁଁ ମୋର ପ୍ରଶ୍ନର କରୁଣ ଉତ୍ତର ଚାହେଁ, ଏହି ଭାବରେ ସେ ପାଖ ଖଟକୁ ଗଡ଼ିଗଲେ ଓ ଆନ୍ଦୋଳନକାରିଣୀର ମୁହଁକୁ ନିର୍ନିମେଷ ଦୃଷ୍ଟିରେ ଦେଖିଲେ । ମସୃଣ-କୋମଳ ମୁହଁ, ଗୋରା ଗୋଲାପି ମୁହଁ, ଉଜ୍ଜ୍ୱଳ-ଉଚ୍ଛଳ ମୁହଁ । ମୋର ରୂପଗୁଣ ସମ୍ପନ୍ନା ସ୍ତ୍ରୀର ମୁହଁ । ମୁଁ ତାକୁ ଅସ୍ୱୀକାର କରିବି । ଉତ୍ତର ମାରି ଉଠି ଆସିବି । ବାସ୍ !

ଶାନ୍ତି ଲାଗେ ? ପେଟ ପୂରିଯାଏ ? ଅବଶ୍ୟ । କାରଣ—ସେକ୍ସ, ସାଥୀତ୍ୱ, ପ୍ରକୃତିର ଲୀଳା ଇତ୍ୟାଦି ଇତ୍ୟାଦି । କହିବାକୁ ଗଲେ ଅନେକ କାରଣ ଖୋଜି ଦେଇ ହେବ । କିନ୍ତୁ ସବୁକଥାକୁ ଯୋଡ଼ିଲେ ଲାଭ ନାହିଁ, ଆମେ ଦୁହେଁ ଅଲଗା । ମଣିଷ ଗୋକୁଳ ମଣିଷ ସବିତା ଠାରୁ ପୂରାପୂରି ଭିନ୍ନ ! ଏହି ଯୋଡ଼ି ହାତ ପରି,—ବେଯୋଡ଼ ।

ମୁଁ ତାକୁ ଖୋଜି ଆଣି ନାହିଁ, ପାଇଛି । ଶାସ୍ତ୍ର ଓ ଆଇନ୍ ଅନୁଯାୟୀ ସେ ମୋର, ତେଣୁ ମୁଁ ଯେତେବେଳେ ଯାହା ମାଗିଛି ସେ ଦେବାରେ ତ୍ରୁଟି କରି ନାହିଁ, ପତ୍ନୀ ଧର୍ମ ପାଳନ କରିଛି । କିନ୍ତୁ ମୁଁ ତା' ଲାଗି ନୁହେଁ ।

ହୁଏତ ବିନ ତା' ଲାଗି ହୋଇ ଥାଆନ୍ତା । ବିନ କଲମପେଷା ଅଫିସର । ଦେଖିବାକୁ ସୁନ୍ଦର, ଗୋରା ଗୋଲ୍‌ଗାଲ୍ ଚେହେରା,—ରୋମାଣ୍ଟିକ୍ । ପୁଣି ସେ ଡାଏରୀ ଲେଖେ । (ସବିତା ତା' ଡାଏରୀ ପଢ଼ିଛି ଆଉ କହୁଥିଲା ଯେ ବିନଭାଇ ଗୋଟିଏ ପାଗଳ ଲୋକ ) ସେ ଧୀରେ ଧୀରେ ନରମ ଭାବରେ କଥା କୁହେ, ହୃଦୟ ଭିତରୁ କହିଲା ପରି, ଫୁଲଗୁଡ଼ିକୁ ଗୋଟି ଗୋଟି କରି ସଜାଇଲା ପରି । ହୁଏତ ସେ କବିତା ଲେଖୁଥିବ !

ସବିତା ତାକୁ ପସନ୍ଦ କରେ, ପ୍ରଶଂସା କରେ, ଆଦର କରେ । ସବିତା ତା' ପୁଅକୁ ପାଖରେ ରଖିବାକୁ ଚାହେଁ । ଅର୍ଥାତ୍ ସେ ବିନକୁ ଭଲ ପାଏ । ହୋଇଥିବ,—ଏଥିରେ ଭାବିବାର କଅଣ ଅଛି ?···କିନ୍ତୁ କଳ୍ପନାରେ

ସେ ଦୁଇଜଣଙ୍କୁ ଏକାଠି ଦେଖିଲା ପରେ ଗୋକୁଳ ବାବୁଙ୍କର ହସିବାକୁ ଇଚ୍ଛା ହେଲା । ଯେପରିକି ସେ ବନର ଦୁର୍ଦ୍ଦଶା ଦେଖି ହସୁଛନ୍ତି ।···ସବିତା ଭଲ ପାଏ ! ସେ କାହାକୁ ଭଲ ନ ପାଏ ? ସେ ମୋତେ ବି ଭଲପାଏ ? ସେ ଜଲି କୁକୁରକୁ ଭଲ ପାଏ । ସେ ଝୁମ୍ପୁରୁ ବିଲେଇକୁ ଭଲ ପାଏ, ଗାଈ ଗୋରୁ, ଲତାପତ୍ର, ପିଲାପିଲି ସମସ୍ତଙ୍କୁ ଭଲ ପାଏ । ସମସ୍ତେ ତା'ର ଅଜସ୍ର ଭଣ୍ଡାରରୁ ଦାନ ଦିଏ, ଢାଳିଦିଏ, ବାଣ୍ଟି ଦିଏ । ତା'ର ଯୀନ ଡେକ୍ସରେ ଏତେ ରୂପ ଏତେ ଗୁଣ । କିଏ କାହିଁକି ତାକୁ ନ ଗ୍ରହିବ ? କାହିଁକି ସେ କାହାକୁ କିଛି ନ ଦେବ ? ସେ ସାଧାରଣ ନାରୀ ନୁହେଁ । ସୁର ରମଣୀ ! ବିଶ୍ୱପ୍ରିୟା !

ତାହାହେଲେ ମୁଁ କାହିଁକି ଏହି ସ୍ୱାମୀତ୍ୱର ଜୁଡ଼ ଦେବି ? କଣ ଦରକାର ?

କ୍ରୋଧ, ଇର୍ଷା ଓ ନର୍ମ୍ମ ନିବିଡ଼ ଅନୁରାଗ ନେଇ ଗୋକୁଳବାବୁ ସବିତା ଦେବୀଙ୍କର ଜୀବନ୍ତ ଓଠକୁ ଗ୍ରହିଲେ (ଏହିକ୍ଷଣି ସେ ଓଠ କଥା କହୁ ନାହିଁ, କିନ୍ତୁ ଉଚିତଠୁ ଅଧିକ ଥର ଉଠୁଛି ), ଓ ତାଙ୍କର ଇଚ୍ଛା ହେଲା ଯେ ସେ ତାକୁ କାମୁଡ଼ି ଛିଣ୍ଡାଇ ଦେବେ, କିମ୍ବା— । କିମ୍ବା ଫେରିଯିବେ ।

ସେ ହଠାତ୍ ଫେରିଗଲେ । ଏକା ସଙ୍ଗରେ ହାତ ମୁହଁ ଦେହକୁ ଫେରାଇ ନେଲେ । ନିଜ ଖଟରେ ଲେଟି ପଡ଼ି ସ୍ୱାଗତ କହିଲା ପରି କହିଲେ, "ବେଶି ରାତି ହେଲାଣି । ଶୋଇ ପଡ଼ିବା ।"

× × ସବିତା ଦେବୀ ପୁଣି କଷ୍ଟ ପାଇଲେ, ଏଥରେ ସନ୍ଦେହ ନାହିଁ । ଏଥର ବୋଧହୁଏ ତାଙ୍କୁ ସବୁଠାରୁ ବେଶି ବାଧିଲା, କାରଣ ତନଭୁଁଙ୍କର ପରାଭବ ଏକାଠି ହୋଇଗଲା, ଏକାଧରେ ଦଶିଲା । ସେ ନ ଭାବି ରହି ପାରଲେ ନାହିଁ ଯେ ଏମାନେ ପୁରୁଷ, ତିନିଙ୍କି ତିନିହେଁ ପୁରୁଷ, ପୃଥିବୀସାରା ଖାଲି ପୁରୁଷ, ଓ ନାରୀ ବୋଲି ଜଣେ । ଦୁଃଖିନୀ ।

କିନ୍ତୁ ସେ କାନ୍ଦିଲେ ନାହିଁ । ଭାଙ୍ଗି ପଡ଼ିଲେ ନାହିଁ । ବରଂ କିଛି ସମୟ ପରେ ଏକ ଗୌରବର ଭାବ, ବୀରାଙ୍ଗନା ତଥା ନର୍ସ ତଥା ଗୃହିଣୀର ଉତ୍କଣ୍ଠ ଭାବ ତାଙ୍କୁ ଆକ୍ରମଣ କଲା । ସେ ବିଛଣାରୁ ଉଠି ପଡ଼ିଲେ ଓ ପ୍ରଥମେ ଗଲେ ଦାଣ୍ଡ ଘରକୁ । ସେଠି ବନବିହାରୀଙ୍କ ହାତପାହାନ୍ତା ଟେବୁଲରେ ଭରି ପାଣିର ପାତ୍ର ଓ ଗ୍ଲାସ ରଖି ଦେଇ ଆସିଲେ, ପିଇବା ପାଇଁ । ତା' ପରେ ସେ ଗଲେ ଲମ୍ବା ଘରକୁ । ଶୋଇଥିବା ଅନ୍ଧର ହାତରୁ ବହି ଖଣ୍ଡିକ ଆସ୍ତେ କାଢ଼ି ଆଣିଲେ ଓ ଆଲୁଅ ଲିଭାଇ ଦେଲେ ।

ଶେଷରେ ମଝିଘରକୁ ଫେରି ଅସି ସ୍ୱାମୀଙ୍କ ଦେହରେ ଗୁଦର ଘୋଡ଼େଇ ଦେଲେ— ଝରକାରୁ ଶିର ଶିର ପବନ ଅସୁଛି, ତାଙ୍କ ଦେହରେ ଥଣ୍ଡା ଯାଏ ନାହିଁ ।

ପୁଣି ନିଦ ଲଗିବା ପୂର୍ବରୁ ସେ ଭାବିଲେ ଆସନ୍ତାକାଲି କଥା । ଭାବିଲେ ଯେ ସେ ବଡ଼ି ସକାଳୁ ଉଠିବେ ଓ ଝିଅ ଗୁଡ଼ଲ ବାଟି ପିଠା ତିଆରି କରିବେ । 'ସେ' ପିଠା ଭଲ ପାଆନ୍ତି, ବିନଭାଇ ଭଲ ପାଅନ୍ତି, ଆଉ ସେ ଟୋକାଟା ନିଶ୍ଚୟ ଭଲ ପାଉଥିବ ।

ଏହି ସବୁ ଘରୋଇ ସାନ କଥା ନେଇ ସେ ଯେପରିକି ପରମ ପିତାଙ୍କଠାରେ ଜଣାଣ କରୁଥିଲେ—ଏମାନଙ୍କ ମଙ୍ଗଳ ହେଉ !



# ଓଟେନୋଟି ଦୃଶ୍ୟ

ମୋର ଏଇ ଗପଟିକୁ ମୁଁ ଭଲ ପାଏ ।

କହିଲାକ୍ଷଣି ଲାଜ ଲାଗୁଛି । କାଳେ ଆପଣମାନେ ଭାବିବେ ଯେ ମୁଁ ଗ୍ରୀକ୍ ପୁରାଣର ନାର୍ସିସସ୍, ପାଣିରେ ଆପଣାର ଛାଇ ଥର ହୋଇ ଦେଖିଲାରୁ ମୋର ତା'କୁଇ ପ୍ରେମକରିବାକୁ ମନ ହେଉଛି । ଯଦିଓ ମୁଁ ଆଜିଯାଏଁ ବୁଝିପାରି ନାହିଁ ଯେ ସେଥିରେ ଦୋଷ କଅଣ ଓ ତଦ୍ଦ୍ୱାରା ଆଉ କାହାକୁ ଯଥାବିଧି ଭଲ ପାଇ ହେବ ନାହିଁ, ଏଭଳି ଆଶଂକା ଆସୁଛି କାହିଁକି ।

ଭୁଲ୍ । ବରଂ ମୁଁ କହିବି ଯେ ଏଇ ଓଟେନୋଟି ଦୃଶ୍ୟର ନାୟକମାନେ ନିଜକୁ ଆଉ ଟିକିଏ ଭଲ ପାଇ ପାରିଥିଲେ ଏଭଳି ନିମ୍ନସ୍ତରୀୟ ଟ୍ରାଜେଡ଼ି ଘଟି ନ ଥାଆନ୍ତା ଦରେ ! ନିଜକୁ ମାନେ ନିଜର ଇମେଜ୍‌କୁ । ଯଥା ବିନୋଦିଇ ଯଦି ପ୍ରକୃତରେ ଆପଣା ଚେହେରା-ଚରିତ୍ରର ରୋମାଣ୍ଟିକ୍ ଇମେଜ୍‌କୁ ଭଲ ପାଉ ଥାଆନ୍ତେ (ତାଙ୍କ ଇମେଜର ସୁନାମ ବିଷୟରେ ସେ ଅନଭିଜ୍ଞ, ଏକଥା କୁହାଯାଇ ନ ପାରେ ) ତା' ହେଲେ କଣ ସେ ଧୀରେ କୋମଳ ଉଚ୍ଚାରଣ ପରେ ଅଟକି ଯାଇ ଥାଆନ୍ତେ ? ବୁଝନ୍ତେ ନାହିଁ ଯେ ଯେହେତୁ ସେ ରୋମାଣ୍ଟିକ୍, ସେ ଅନାୟାସରେ ଆଗକୁ ମାଡ଼ି ଯାଇ ପାରନ୍ତେ, ଚୁମ୍ବନରୁ ସେକ୍‌ସ ଯାଏଁ, ଏବଂ ନିଜସମେତ ହିଡତାସମେତ ସାବି ଖାଦାର ତାଙ୍କୁ କ୍ଷମା କରି ଦେଇ ପାରନ୍ତା ? କ୍ଷମାର ସଫେଇ ଦିଅନ୍ତା : କିଓ ସେ କଣ ସାଧାରଣ ବଜାରି ହିଷ୍ଟାରି, କାମୁକ, ଲମ୍ପଟ ହୋଇଛନ୍ତି ? ସେ ପରା ବିନୋଦିଇ, କବିଲାଟୀୟ ମଣିଷଟିଏ, ଅବେଗ ବଳ ପଡ଼ିବାରୁ କଣ ଟିକିଏ କରି ପକେଇଲେ, ଯାହାର ଚିହ୍ନବର୍ଣ୍ଣ ରହିବ ନାହିଁ କାଲି ସକାଳକୁ,

—ସେଥିରେ ଏତେ ମୁଣ୍ଡବଥା କାହିଁକି ? କିନ୍ତୁ ଦୁଃଖର ବିଷୟ ଯେ ବିନୋଦିନୀଟା ଆପଣା ଇମେଜ୍‌କୁ ଯଥେଷ୍ଟ ଭଲପାଇ ପାରିନି ନାହିଁ । ତେଣୁ ସେ ଭୋଗିବ ନାହିଁ ତ ଆଉ ଭୋଗିବ କିଏ ?···ପୁଣି ଦେଖନ୍ତୁ ସେ ଅଭି ପିଲାଟାର ଗୁଣ । କରେ, ତୋର ଇମେଜ୍ ହେଉଛି ଯେ ତୁ ବାପମାଆଙ୍କର ଅଲିଅଳ, ଗେଲବସର, ଅର୍ଥାତ୍ ଅବାଗିଆ ପୁଅ, ସେଇଥିପାଇଁ ତୁ ଜିଦ୍ କରି ଜିତି ଯାଉ—ଏତିକି ତୁ କ'ଣ ଜାଣି ନ ଥିଲୁ ? ବେଶ୍ ଜାଣିଥିଲୁ । ନହେଲେ ତୁ ମୂଳରୁ ସବିତା ମାଉସୀଙ୍କୁ ଏମିତି ଟାଣ ଟାଣ କଥା କହି ନ ଥାଆନ୍ତୁ, ଗୁମାନିଆ ଢଙ୍ଗ ଦେଖେଇ ନ ଥାଆନ୍ତୁ । କିନ୍ତୁ କ୍ରୋଧର ଅଭିନୟଟିକୁ ଆଉ ଟିକିଏ ବଢ଼େଇ ପାରିଲୁ ନାହିଁ ? ମାଆ ମନେ ପଡ଼ିଲା ପରି ଭୁସ୍‌କିନା କାନ୍ଦି ପାରିଲୁ ନାହିଁ, ଯେମିତିକା ଏଇ ସୁନ୍ଦରିଆ ମାଉସୀ ଜଣକ ତୋ ପାଖକୁ ଧାଇଁ ଆସି ଥାଆନ୍ତେ ଓ ତୋତେ ଗେହ୍ଲା କରି ଥାଆନ୍ତେ ? କିନ୍ତୁ ତୁ ଡରିଲୁ, ଯେ ତୋ ଇମେଜ୍ ଏଇ ନୂଆ ଘରେ ଫାଟ୍ କରିବ ନାହିଁ, ନୁହେଁ ?···ସବୁଠାରୁ ହତଭାଗା ହେଉଛନ୍ତି ଆମ ଗୋକୁଳ ବାବୁ, ସୁନ୍ଦରୀଙ୍କ ସ୍ୱାମୀ । ବାବୁ, ତମର କାମିକା ମରଦପଣିଆର ଇମେଜ୍ ତ ଶାସ୍ତ୍ର ସମ୍ମତ, ସ୍ୱାମୀତ୍ୱରେ ସଂସ୍କୃତ, ଯାହାକୁ ତୁମେ ମନଇଚ୍ଛା ଖଟେଇ ଆସିଛ ଆଜି ଯାଏଁ । ଆଜି ପୁଣି ଏଇ କ୍ଲୈବ୍ୟ କାହିଁକି ? ରୋମାଣ୍ଟିକ୍ ଓରଫ୍ ମାଇଚିଆ ବନର ଇମେଜ୍‌କୁ ସୁରୁଢ଼େଇ ଦେଇ ପାରିଲ ନାହିଁ ?

ହୋଇପାରେ ଯେ ତୁମେ ସମସ୍ତେ ଗୋଟିଏ ଗୋଟିଏ ଝୁରୁ କିନ୍ତୁ ବୁଝିବା ଉଚିତ ଥିଲ ଯେ ପ୍ରକୃତରେ ଯାହାଙ୍କୁଅ ପଛେ ଇମେଜ୍-ଅସ୍ତ୍ରକୁ ଆଦୌ ଛୁଡ଼ିବାର ନୁହେଁ । ଜନ୍ମଗତ କି ସଂସ୍କାରଗତ ଦ୍ୱିଧାକୁ ଜିଣିବାକୁ ହେଲେ ସେଇ ଏକା ତାହା ଭରସା ।

କିନ୍ତୁ ସବିତା ଦେବୀ ! ମନେ ମନେ ଗୁଡ଼ ଖାଇ ନାହିଁ ଯେ ଦୁଃଖିନୀପଣରେ ଗୌରବକୁ ନେଇ ତୁମେ ହୃଦନେ ଫୁଲୁଥିବ ଏମିତି, ଏବଂ ଦନ୍ଦ୍ୱନସ୍ତ ପୁରୁଷମାନଙ୍କ ପାଇଁ ପିଠା ତିଆରି କରି ପାରୁଥିବ । ଭାବନାହିଁ ଯେ ନାଟ ହୋଇଛି ବୋଲି ଅପର ପକ୍ଷକୁ ଅପେକ୍ଷା କରି ରହିବା ତୁମର ସ୍ୱଧର୍ମ ଓ ଟ୍ରାଜେଡ଼ି । ଯୁଗ ବଦଳୁଛି ।

ଏଣିକି ତୁମକୁ ବି' ଲୋକେ ନିର୍ବୋଧ ବୋଲି କହିବେ । କହିବେ ସୁନ୍ଦରୀକୁ ସେଇ ଶାସ୍ତି !

ଯାହାହେଉ ମୁଁ ଏଇ ଗପଟିକୁ ଭଲପାଏ, କାରଣ ମୁଁ ମଣିଷ ମନକୁ ନେଇ ଯେତେ ଛବି ଆଙ୍କିଛି, ତା ଭିତରେ ଏହାର କମନୀୟ କାରୁକାର୍ଯ୍ୟ ମୋତେ ବିଶେଷ ଭାବରେ ପ୍ରଲମ୍ବିତ ତଥା ସଂଗୁଳିତ ବୋଲି ମନେ ହୁଏ । ଚନ୍ଦ୍ର ବିଦ୍ୟୁତର ସଂଘାତ ବା ମେକି ନ ଥିଲେ ନାହିଁ, ଇଏ ହେଉଛି ଗୋଟିଏ ନାରୀସୁଲଭ ଛୁଆଁକାମ, ଏତେ କମନୀୟ ଯେ ତା'କୁ କୃତ୍ରିମ ବୋଲି କହି ହେବ ନାହିଁ । ବୋର୍ ହେବା ପାଇଁ ସତ ବଳିବ ନାହିଁ । ଟ୍ରାଜେଡିକୁ ନିମ୍ନସ୍ତରୀୟ ନ କହି କୁନୁମୁନିଆ ବୋଲି କହିବାକୁ ପଡ଼ିବ । ସତେକି ପ୍ରେମର ପୂର୍ଣ୍ଣତାଠାରୁ ତା'ର ଉପଗୃହହିଁ ଅଧିକ ସୁନ୍ଦର, ତାହା ଯେତେ ଅସରନ୍ତି, ଅସନ୍ତୋଷିଆ, ଏପରିକି ବିଫଳ ହେଉ ନା କାହିଁକି !

ଆଉ କେହି ଭଲ ପାଆନ୍ତି କି ନାହିଁ ଜାଣେ ନାହିଁ, ମୋର ପରମ ସୌଭାଗ୍ୟ ଯେ ଏଇ ଗପଟି ମୋର 'ଗୁରୁ' ଗୋପୀବାବୁଙ୍କ ମନକୁ ଛୁଇଁଛି । ଥରେ କହିଲେ ମୋତେ ଯେ ଆପଣଙ୍କ ଏଇ ଗପଟି ନିଖୁଣ; ସତେ ଛବି ଅଙ୍କିଲା ପରି । ସେ ଅବଶ୍ୟ ଅତ୍ୟାଧୁନିକ ଅତିବାସ୍ତବ ବଙ୍କାଟେଢ଼ା (ହୁଏତ ଗଭୀର) ଅର୍ଥରେ ଗୋଲ୍ ଛବି କଥା ଭାବୁ ନ ଥିବେ, ଯେଉଁଥିରେ କମନୀୟ ନାରୀଭାବ ଥିଲା ପରି ଲାଗେ ନାହିଁ ।

ଭୁବନେଶ୍ୱର
ନଭେମ୍ବର ୨୬, ୧୯୮୬



# ସଙ୍ଗୀତାର ବାପା

ସଂଗୀତାର ବାପାଙ୍କ ନାଁ ନବଘନ ଓରଫ୍ ନାଣ୍ଟୁ ବାବୁ । ତାଙ୍କ ବଡ଼ ଝିଅର ନାଁ ହୀରାମଣି, ସେ ବାହା ହୋଇ ଯାଇଛି । ସାନ ଝିଅର ନାଁ ସୀତାମଣି ହୋଇ ରହିଥାଆନ୍ତା; କିନ୍ତୁ ନିଜେ ନାଣ୍ଟୁ ବାବୁ ତାକୁ ବଦଳାଇଲେ । ଦିନେ ସେ ଘୋଷଣା କଲେ ଯେ ଝିଅ କନ୍‌ଭେଣ୍ଟ୍ ସ୍କୁଲରେ ପଢ଼ିବ ଏବଂ ତା'ର ଠିକ୍ ଗୋଟିଏ ଦିନ ପରେ ସେ ପରବର୍ତ୍ତୀ ଘୋଷଣା କଲେ ଯେ ସ୍କୁଲରେ ତା'ର ନାଁ ରଖାଯିବ ସଙ୍ଗୀତା ।

ଏ ହେଉଛି ପାଞ୍ଚ ବର୍ଷ ତଳର କଥା । ସେତେବେଳେ ସେ ହଜାର ଯାହାରେ ଗୋଟିଏ ଫ୍ଲେଟ ଘରଭଡ଼ା ନେଇ ରହିଥିଲେ ।

ପ୍ରଥମେ ସେ ଏକୁଟିଆ ଥିଲେ, ପିଲାପିଲିଙ୍କୁ ଆଣି ନ ଥିଲେ । ଯାହା ମୁଣ୍ଡରେ ଯେଉଁ ଦଳୁଆ ଶାଗୁଆ ପୋଖରୀ ଅଛି, ସେ ସନ୍ଧ୍ୟାବେଳକୁ ତା' କୂଳରେ ଯାଇ ବସୁଥିଲେ ଓ ଭାବୁଥିଲେ,—ଏ ମ୍ଲେଚ୍ଛ ସହରଟାରେ ରହି ଲାଭ କ'ଣ ? ଆଉ କେତେଦିନ ରହିବ ? ତେବେ ଶୋଇବାକୁ ଯିବା ପୂର୍ବରୁ ସେ ଏହି ପ୍ରଶ୍ନ ଏହି ଦ୍ୱିଧାକୁ ନଷ୍ଟ କରି ଦେଇ ପାରୁଥିଲେ । ଭାବନାର କ୍ରମ ପ୍ରାୟ ଏହି ପ୍ରକାର ଥିଲା ।—

···ହରିହାସ ଦାଦା କହୁଛନ୍ତି, "ତୁ ଘରୁ ଟିକିଏ ବୁଲି ଆ । ଏଠି ତୋ ଦେହ ଭଲ ରହୁନାହିଁ ।" ନିଜର ପଛକେ ପେଟ ବେମାର, ଓଳିଏ ଖାଇଲେ ଆଉ ଓଳିକ ଖାଇବେ ନାହିଁ । ଗପ କରୁ କରୁ ହାକୁଟି ମାରିବେ । ମୁହଁ ବିଚକଟିଆ କରି କହିବେ, 'ବୁଝିଲୁ ନାଣ୍ଟୁ, ଏ ବରଫଦିଆ ମାଛ ମୋ ଦେହରେ ଯାଉ ନାହିଁ—' ଆଉ ଲେମ୍ବୁ ସରବତ ପାଇଁ ଡାକ ଛାଡ଼ିବେ । ସରବତକୁ ଢୋକେ ଢୋକେ ପିଇ ସେ ମୋ ବିଷୟ ଭୁଲିଯିବେ, ଏଣୁ ତେଣୁ ବାଜେ କଥା ପକାଇବେ । ଆଜିକାଲିକା ପିଲାଙ୍କର ପଢ଼ାରେ ମନ ନାହିଁ, ସ୍କୁଲ କଲେଜଗୁଡ଼ାକ ଧପ୍‌ପାବାଜି ହେଲେଣି, ଦରଦାମ୍ ହୁ ହୁ ହୋଇ ବଢ଼ି-ଯାଉଛି, ଇତ୍ୟାଦି । କିଓ, ମୋ କଥା କ'ଣ ବୁଝିଲ ? ସବୁଦିନେ ସେହି ଏକା

ଉତ୍ତର, ଟିକିଏ ଧୈର୍ଯ୍ୟ ଧର୍ । ଏ ଦରଖାସ୍ତ ବାରଦାର, କେତେ ଟେବୁଲରେ ପାଣି ଉଠିବ । ବ୍ୟସ୍ତ ହେଲେ ଚଳିବ ନାହିଁ ।' ଶେଷକୁ କ'ଣ ନା ଘରୁ ଯାଇ ବୁଲିଆ । ଘରୁ ବୁଲି ଆସିଲେ ଅଧିକା କ'ଣ ହେବ ?

...ନନ୍ଦବାବୁ ତାସ୍ ଖେଳିବାକୁ ଡାକନ୍ତି । ବୁଢ଼ାର ତାସ୍‌ରେ ଖାସା ସଉକ୍ । ଖାଇବାରେ ସଉକ୍ । ଘର ତୋଳିବାରେ ସଉକ । କଥାକେ କଥାକେ ଗଳା କହିବାରେ ସଉକ । ତାଙ୍କ ଘରକୁ ଅନେକ ହାକିମହୁକୁମା ଯିବା ଆସିବା କରନ୍ତି । ଆଶା ଥିଲ ଯେ ସେ ଦିନେ କେବେ କାହାକୁ ଉଦ୍ଦେଶିଲ ଏଠି କହି ଦିଅନ୍ତେ—"ଏ କିଏ ଜାଣିଛ ? ଏ ହେଉଛି ଆମ ଗାଁର ନାଣ୍ଟୁ । ଖାସା ପିଲ । ବଡ଼ବଡ଼ ଚାକିରୀଖଣ୍ଡେ ପାଇଁ ବଡ଼ ହଇରାଣ ହେଲାଣି । ...ଥ୍ରି ହାର୍ଟ୍ସ୍... ମୋ ଅଫିସ୍‌ରେ କାମ ଖାଲି ନାହିଁ ନ ହେଲେ ତାକୁ କେବେଠୁଁ ରଖେଇ ସାରନ୍ତିଣି । ଗଳା ରମା, ଦାମା, ଶାମା ଚାକିରୀରେ ପଶି ଯାଉଛନ୍ତି, ଆଉ ଏ ଭଲିଆ ପିଲ...।" କିନ୍ତୁ ସେ କାହାକୁ କିଛି କହିବାର ଶୁଣାଯାଇ ନାହିଁ । ପରୁଶଲ ବେଳକୁ କହନ୍ତି 'ମୁଁ କ'ଣ ଚେଷ୍ଟା କରୁ ନାହିଁ ଭାବୁଛୁ ? ଯାହାହେଉ ତୁ ଖାଲି ନ ବସି ଗୋଟାଏ କାମ କର ।' ତା'ପରେ ସେ କାମର ଫର୍ଦ୍ଦ ଦିଅନ୍ତି । ଯଥା—ତାଙ୍କର ଯେଉଁ ନୂଆ ଘର ତିଆରି ହେଉଛି ତା'ର ତଦାରଖ୍ କରିବା, ତାଙ୍କ ଝିଅ ରେଣୁର ବାହାଘର ପାଇଁ ମଧ୍ୟସ୍ଥ ହେବା କିମ୍ବା ତାଙ୍କ ବଗିଚାପାଇଁ ଭଲ ଗୋଲାପଚାରା ଯୋଗାଡ଼ କରିବା । ବେଳେ ବେଳେ ମନେହୁଏ ଯେ ମୋର ଚାକିରୀ ଦରକାର ନାହିଁ । ଏହାଙ୍କର କାମ କରି ଏହାଙ୍କର ସାଙ୍ଗରେ ତାସ୍ ଖେଳି ଦୁ' ନଳିଖିଆ ଖାଇ ସମୟ କଟେଇ ଦେଲେ ମୋ ଜୀବନ ଧନ୍ୟ ! ବର୍ତ୍ତମାନ ବୁଢ଼ାଙ୍କର ନୂଆ ସଉକ ଉଠିଛି ଯେ ସେ ଗାଁରେ ଘର ତୋଳିବେ ଓ କଣ୍ଟ୍ରାକ୍ଟର୍ କରି ସେଇଠି ରହିବେ । ଅଉ ମୁଁ କଣ ହେବି ? ତାଙ୍କର ମନ୍ତ୍ରୀ ?

...ନାରୁ ଭାଇ,—ତାରାମଣିର ଦାଦିପୁଅ ଭାଇ, ବୟସରେ ଦୁ' ତିନି ବର୍ଷରେ ବଡ଼ ହେବ । ଓକିଲାତିରେ ବହୁତ ଟଙ୍କା କରିଛି । ସେ ମୋତେ ଦେଖିଲେ ଏମିତି ଶଙ୍କିଯାଏ କାହିଁକି । ସତେ ଯେପରି ମୁଁ ତା' ଠାରୁ ପୁଳାଏ ଛଡ଼େଇ ନେବାକୁ ଆସିଛି କିମ୍ବା ସଭା ମଝିରେ ତାକୁ ନାରୁ ଭାଇ ବୋଲି ଡାକିଦେଲେ ତା'ର ମାନହାନି ହୋଇଯିବ ! ତା'ର ନୂଆ ଘର । ପାଲିସ୍ ମୋଜେଇକ୍ ଚଟାଣ । କାନ୍ଥ କବାଟ ଝରକା ସବୁଠି ଖାଲି ଲମ୍ବା ଲମ୍ବା କାଚ । ସେ ସବୁବେଳେ ଫିଟ୍‌ଫାଟ୍ ହୋଇଥାଏ, ବଡ଼ ପାଟିରେ ନ ହସି ତା'ର ଧାଡ଼ିବନ୍ଧା ଧଳା ଦାନ୍ତକୁ ଦେଖେଇ ଦିଏ । ତା'ଦେଇ କିଛି ହେବ ନାହିଁ । ସେ ସବୁବେଳେ କାମରେ ବ୍ୟସ୍ତ ଅଛି ବୋଲି ଦେଖେଇ ହୁଏ, ଆଉ କହେ ମୁଁ ତୋତେ ଅମୁକ ପାଖକୁ ନେଇ ଯିବି, ତମୁକ ପାଖକୁ ନେଇଯିବି । ଦୁ' ଦିନ ତଳେ କହିଲା, ମୋ ଘରର କାମ ବଢ଼ି ଯାଉଛି । ସେଥିରୁ କ'ଣ ମିଳିବ ? ତୁ

ଗୋଟାଏ ବ୍ୟବସାୟରେ ଲଗିଯାଉନୁ ? ଯଦି କହିବୁ ମୁଁ ତୋତେ ମାଲଗୋଦାମର ରଘୁନାଥ ସିଂ ପାଖକୁ ନେଇଯିବି ।' ଥାଉ, ଦରକାର ନାହିଁ ବାବୁ । ମୁଁ ନିଜେ ଯାଇ ପାରିବି ।

...ଆଉ କେତେଜଣ ଅଛନ୍ତି, ପୁରୁଷ ଭଣଜାଝିଆମାନଙ୍କ । ସେମାନେ ମୋତେ ମାନ୍ୟ କରନ୍ତି । ନମସ୍କାର କହିବେ କି ନ କହିବେ ଠିକ୍ କରି ନ ପାରି ଶେଷକୁ ଚଟ୍ କରି ହାତ ଯୋଡ଼ି ଦିଅନ୍ତି, ଅଧା ବାଟରେ । କାହିଁକି ନା ମୁଁ ମଫସଲର ମୁରବି ? ମୋଟା ଲୁଗା ପିନ୍ଧେ ? ଗୁଡ଼, ସେମାନେ ପିଲାଲୋକ । କାଲି ସକାଳେ ପାଠ ପଢ଼ା ସାରି ଦି' ପଇସା କମାଉଛନ୍ତି, ନିଜ ରକ୍ଷଣ ଅସମ୍ଭବ । ସେମାନେ କ'ଣ କରି ପାରିବେ ?

ନବଘନ ! ନାଣ୍ଟୁ, ନାଣ୍ଟୁବାବୁ ! ଏ ସହରଯାକ ତୋର ବନ୍ଧୁବାନ୍ଧବ ଭରି ହୋଇଛନ୍ତି, ସମସ୍ତେ ତୋର ଶୁଭାକାଂକ୍ଷୀ । ହେଲେ ସେମାନେ ଭିନ୍ନ ଜଗତର ପ୍ରାଣୀ, ତୋ ପରି ନୁହନ୍ତି । ସେମାନେ ଭାବୁଛନ୍ତି ଯେ ନାଣ୍ଟୁ ସହରକୁ ଆସିଛି କେବଳ ଟଙ୍କା ରୋଜଗାର କରିବା ପାଇଁ, ବୁଝୁ ନାହାନ୍ତି ଯେ ତା'ର ଗୋଟାଏ ହୃଦୟ ଅଛି । ସେ ହୃଦୟ ଗଉଡ଼ ଭଣ୍ଡାରି କମ୍ବା ତେଲୀ ଚଷାର ନୁହେଁ । କିରାଣି ପିଲାର ହୃଦୟ । ଗାଆଁରେ ଜମିବାଡ଼ି ଯାହା ଅଛି ସେଥିରେ କୌଣସି ମତେ ଚଳିଯାଉଛି; କିନ୍ତୁ ସେ କ'ଣ ସବୁଦିନେ ଗୋରୁ ଲଙ୍ଗୁଡ଼ରେ ବାଡ଼େଇ ହେଉଥାଆନ୍ତା, ପଗ୍ଗ ପଚର ଓ ଧାଚଲ ଧାନର ବାସ୍ନାକୁ ସହୁ ଥାଆନ୍ତା, କାଦୁଅ ନଷ୍ଟ ପଷ୍ଟ ହୋଇ ଖୋଉଲ ମାଛକୁ ଚପୁଥାଆନ୍ତା, ଆଉ ରାତିରେ ଡିବିରି ଜଳେଇ କେମାଦେଇଙ୍କ କାନ୍ଦଣା ପଢ଼ୁଥାଆନ୍ତା ? ହୋଇପାରେ ଯେ ସେ ଦେଶି ପାଠ ପଢ଼ି ନାହିଁ, ତାକୁ ବୟସ୍କାଳଣ ବର୍ଷ ହେଲାଣି । ହୋଇପାରେ ଯେ ତା'ର ଡାକ ନାଆଁ ନାଣ୍ଟୁ, ସେ ଗୋବିନ୍ଦ ମହାନ୍ତିର ପୁଅ, ଦେଖିବାକୁ ଲମ୍ବା ଚଉଡ଼ା ନୁହେଁ, ଭୋଟବେଳେ କଂଗ୍ରେସ କି ବେକଂଗ୍ରେସ ନେତା କେହି ତାକୁ ପଚାରନ୍ତି ନାହିଁ; କିନ୍ତୁ ସେ ଚୌଧୁରୀ ବୈକୁଣ୍ଠ ମହାନ୍ତିର ନାତି, ବଡ଼ ଅଂଶର ପିଲା । ତା'ର ସ୍ତ୍ରୀ ତାରାମଣି ଗାଉଁଲି ଝିଅ ନୁହେଁ । ସେ ଟାଟା ନଗରରେ ମଣିଷ ହୋଇଛି, ହିନ୍ଦୀ ବଙ୍ଗଳା ଇଂରେଜି ସବୁ ଜାଣେ । ବଡ଼ ଝିଅ ହାରି ବାହା ହୋଇ ଗଲାଣି । ବାଙ୍କ ଗୋଟିଏ ବୋଲି ସୁନାନାକୀ ଝିଅ, ବୃଶବର୍ଷର କୋଡ଼ପୋଛା ପୁଅ,—ଛଅଟା ନୁହେଁ କି ନଅଟା ନୁହେଁ ।...ନାଣ୍ଟୁ କାହିଁକି ସହରରେ ରହିବ ନାହିଁ ? ସେ କାହିଁକି ବାବୁ ହେବ ନାହିଁ ? ତା'ର ମଧ୍ୟ ହୃଦୟ ଅଛି ।

କୌଣସି ଗୋପନ ଶକ୍ତି ତାଙ୍କୁ ଚାଳିତ କରେ, ପୋଙ୍ଗରି କୂଳରୁ ଉଠି ଆସି ସହରର ବଜାର ଭିତରେ, ଦାଣ୍ଡ ଭିତରେ, ଗଳି ଭିତରେ ବୁଲିବାକୁ କହେ ।

ସେପରିକି ଚାଲି ରହିଲେ କିଛି ବନ୍ଦ ହୋଇଯିବ ନାହିଁ, ଗାଆଁକୁ ଫେରିଯିବାର ଦୁର୍ଭାବନା ଉଭେଇ ଯିବ ।

ତେଣୁ ନାଣ୍ଡୁବାବୁ ଚାଲିବାକୁ ଲାଗନ୍ତି । ପ୍ରଥମେ କାମିଜ ପକେଟରୁ ଗୋଟିଏ ବିଡ଼ି ବାହାର କରି ଗମ୍ଭୀରିଆ ଫୁଙ୍କ ଦିଅନ୍ତି । ମନେ ହୁଏ ଯେ ସେ ଏହି ମ୍ଳେଚ୍ଛ ସହରକୁ ଦେଖି ନେବେ, ତା' ସାଙ୍ଗରେ ବଳ କଷିବେ, ଏହି ଭାବରେ ଆଗେଇଛନ୍ତି ।

ରାସ୍ତା, ଗଳି, ବଜାର । ବଜାର, ଗଳି, ରାସ୍ତା । କେଉଁ ପାନଦୋକାନ ରେଡ଼ିଓରୁ ଗୀତ ଶୁଭୁଛି, ସିନେମା ଗୀତ । ସୀତାର ଟିଠା ଗଲା । ସେ ଏମିତିକା ଗୀତ କ'ଣ ବୋଲି ପାରନ୍ତା ନାହିଁ ? କିନ୍ତୁ ଗାଆଁରେ କିଏ ପଚାରୁଛି ତାକୁ ?··· ପାନଦୋକାନୀ, ଚା' ଦୋକାନୀ, ଭୋଜନାଳୟ, ମନୋହରି ଦୋକାନୀ, ଲୁଗା ଦୋକାନୀ, ଫଟୋ ଦୋକାନୀ,—ସମସ୍ତେ ଇନ୍ଦ୍ରଙ୍କ ପରି ନିଜ ନିଜ ଆସ୍ଥାନରେ ବସିଛନ୍ତି, ଆଉ କଣାବିକା ଚାଲିଛି । କିଏ ଜଣେ କହୁଥିଲି ଯେ ହଜାରେ ସାହାର ବୁଧିଆ ଇଟାବାଲା ଗୋଟାଏ ମଟରସାଇକଲ କିଣିଛି । ମଟର ସାଇକଲ୍ ଚଢ଼ିଲେ କ'ଣ ସେ ଦି'ଇଞ୍ଚ ଉପରକୁ ଉଠିଯିବ ? ସେଇଁ ଇଟାବାଲାକୁ ସେହି ଇଟାବାଲା । ଅସଲ ହେଉଛି ଖାନ୍‌ଦାନ, ବୁନିଆଦ । କଳାକୁଚୁକୁଚୁ ଚେହେରା, ନାଳିଆ ଆଖି, ବାବୁରି ବାଳ, ମୁହଁରେ ଯେତେ ରକମର ଅସଭ୍ୟ କଥା,—ସେ ପୁଣି ବାବୁ ହେବାକୁ ବସିଛି !···ଭୋକ···। ଏତିକିବେଳକୁ ଏତେ ଭୋକ କେଉଁଠୁ ଅସେ ? ନା, ଅଜି ଭୋକକୁ ଦବେଇ ଦେବାକୁ ହେବ । ଗାଆଁରେ ଥିଲେ କେତେବେଳଠୁ ଖାଇପିଇ ଶୋଇ ସାରନ୍ତିଣି । ହେଉ, ବୟାଳିଶ ବର୍ଷ ତ ଏମିତି କଟିଗଲା । ଆଜି ଗୋଟାଏ ଦିନ ନ ଖାଇଲେ କ'ଣ ଚଳିବ ନାହିଁ ? (ଏହି ସମୟରେ ମନକୁ ଅସେ ଯେ ହାରବୋଉ ଦେଇଥିବା ଟଙ୍କା ସରି ଆସିଲାଣି, ହାର ଘରକୁ ପୁଅ ପୁନେଇଁ ଭାର ପଠା ହେବ, ପୁଅପାଇଁ ଛବିବହି ଦରକାର, ଇତ୍ୟାଦି । କିନ୍ତୁ ନାଣ୍ଡୁବାବୁ ଭୋକ ସମେତ ସେସବୁ ଭାବନାକୁ ଦବେଇ ଦିଅନ୍ତି । ) ଅସଲ କଥା ହେଲା ଛାତିର ଦମ୍ଭ । ଚରିତ୍ର । ହୃଦୟ । ଗାନ୍ଧିଜୀ କେତେଦିନ ଉପାସ ରହି ନ ଥିଲେ ?.

ଚା' କପେ ପିଇଦେଲେ ଭୋକ ମରିଯିବ ଆହୁରି ଥୋଡ଼ାଏ ଚାଲିହେବ । ନାଣ୍ଡୁବାବୁ ନିକଟତମ ଚା' ଦୋକାନକୁ ପଶିଯାଇ ଗରମ୍ ଗରମ୍ କପେ ଚା'ର ବରାଦ ଦିଅନ୍ତି । ଏବଂ ଚା' ପିଇସାରି ପୁଣି ଚାଲନ୍ତି ।

ତା'ପରେ ବେଳେ ବେଳେ ଇଚ୍ଛା ହୁଏ ଯେ ଗୋଟାଏ ସିଗାରେଟ୍ ଟାଣିଲେ ମନ୍ଦ ହୁଅନ୍ତା ନାହିଁ । ନାଣ୍ଡୁବାବୁ ଶସ୍ତା ଦେଖି ଗୋଟାଏ କିଣନ୍ତି । ଧୂଆଁଗୁଡ଼ା

ପାଣିଚିଆ ଲାଗେ, ଏବଂ ସେ ଥାକରେ ସଜା ହୋଇଥିବା ଟିଣ ସିଗାରେଟ ଉପରେ ଆଖି ପକାନ୍ତି,—ଏ ସବୁ ବେଶି ଦାମ୍ ସିନା କିନ୍ତୁ ଭଲ ଲାଗୁଥିବ । ନନ୍ଦବାବୁ ଟିଣ ପରେ ଟିଣ ଧ୍ୱଂସ କରି ଦିଅନ୍ତି । ଏତେ ପଇସା କେଉଁଠୁ ଆସେ ?

ରାତି ବଢ଼ୁଛି । ଲୋକ କମି ଆସିଲେଣି । ଲମ୍ବି ଯାଇଥିବା ପିଚ୍ ରାସ୍ତା ବହଳ ମଜବୁତ୍ ଫିତା ଭଳି ଦେଖାଯାଉଛି, ଯେଉଁଥିରେ ସହରଆଙ୍କର ସବୁ କାରବାର ଏକାଠି ବନ୍ଧା ହୋଇଛି । ସେହି ବନ୍ଧନ ଭିତରେ ବଡ଼ ବଡ଼ କୋଠାଘର ଦଳ ଝଳ ଦିଶୁଛନ୍ତି, ଆତ୍ମବଳରେ ବଳୀୟାନ୍ ମୁନିଙ୍କ ପରି । ଦେଖିବାକୁ ଭଲ ଲାଗୁନାହିଁ ? ଭଲ, କିନ୍ତୁ ମନେ ହେଉଛି ଯେ ତାଙ୍କୁ ଛୁଇଁବା ମନା । ସେମାନେ ନିର୍ଜନରେ ନିଜର ପବିତ୍ର ବଡ଼ପଣକୁ ଠିକ୍ ଅନୁଭବ କରିବାକୁ ଚାହାନ୍ତି, ତେଣୁ ସର୍ବସାଧାରଣଙ୍କ ପ୍ରବେଶ ନିଷେଧ । ହୋଇ ରହାସ ଦାଦାଙ୍କ କୋଠା । ଫାଟକରେ ତାଲା ପଡ଼ୁ ବା ନ ପଡ଼ୁ, ତା' ଚେହେରାରେ ବନ୍ଦ ଭାବ ନାହିଁ । ଆଗକୁ ଚାଲିଲେ ନାରୁଭାଇର କୋଠା । ରଫିକ୍ ବଜାରର ନନ୍ଦବାବୁ । କେତେ ଜଣାଶୁଣା କେତେ ଅଜଣାଙ୍କ ନିବାସ-କୁଟୀର-ସୌଧ ମୁଣ୍ଡ ଟେକିଛନ୍ତି ଓ ମୋ ଆଡ଼କୁ ଚାହିଁଛନ୍ତି । ସର୍ବସାଧାରଣଙ୍କ ପ୍ରବେଶ ନିଷେଧ ।

ନାଣ୍ଟୁବାବୁଙ୍କୁ ଏକୁଟିଆ ଲାଗେ । ଏଇକ୍ଷଣି ଯେଉଁମାନେ ବାହାରେ ବୁଲୁଛନ୍ତି ସେମାନେ ସମସ୍ତେ ସର୍ବସାଧାରଣ,—ରିକ୍ସାବାଲା, ଘର ଫେରନ୍ତା ମୂଲିଆ, ଟୋକା ବଜାଙ୍କ ଦଳ, କେଉଁ ନର୍ଭିକା ମଳିନା ଅଳ୍ପବୟସୀ (ଚାକରାଣୀ ? ବଗିଚିଆଳବାଲାର ଝିଅ ? ଖରାପ ମାଇକିନିଆ ?) ଏକୁଟିଆ ବଳେଇ ଓ ଭୁକିଲା କୁକୁର; ମୁଁ ନୁହେଁ ! ମୁଁ ନୁହେଁ । ମୁଁ ଏମାନଙ୍କ ଭିତରୁ ଜଣେ ନୁହେଁ । ମୁଁ ଇଚ୍ଛା କଲେ ଯେ କୌଣସି କୋଠା ଭିତରକୁ ପଶିଯାଇ ପାରିବି ଓ କହି ପାରିବି ଯେ ମୁଁ ହେଉଛି ରଙ୍ଗଣିପୁରର ନବଘନ ମହାନ୍ତି । ନାଣ୍ଟୁବାବୁ । ମୁଁ ଏମିତି ଅବେଳାରେ ରାସ୍ତାରେ ବୁଲୁଛି କାହିଁକି ନା— ।

ଶେଷକୁ ଆଉ ଚାଲି ହୁଏ ନାହିଁ, ଚାଲିବାକୁ ଇଚ୍ଛା ହୁଏ ନାହିଁ । ନାଣ୍ଟୁବାବୁ ରିକ୍ସା ଚଢ଼ନ୍ତି ଓ ହଜାରୀ ତାଙ୍କୁ ଫେରି ଆଣନ୍ତି ।

ଫେରିବା ବାଟରେ ସେ ନିଜେ ଥକିଲା ମନକୁ ଅଶ୍ୱାସନା ଦିଅନ୍ତି, ଅଉ ବେଶିଦିନ ନୁହେଁ, ଆଉ ବେଶିଦିନ ନୁହେଁ । କିଛି ହେଲେ ନୂଟିବ । ଭଗବାନ୍ ଅଛନ୍ତି । ଏବଂ ଭଗବାନଙ୍କୁ ଡାକିବା ପରେ ପରେ ସେ ପୁଣି କୈଫିୟତ୍ ଦେବାକୁ ଚମକି ହୋଇ ଉଠନ୍ତି । ସେ ଗାଆଁରେ ଆଉ ଚଳା ହୋଇ ନ ଥାଆନ୍ତା, ତେଣୁ ସହରକୁ ନ ଆସି ଚାରା ନ ଥିଲା । ଭଗବାନ୍ ଅଥବା ଯେ କେହି ଜାଣିବା ଶୁଣିବା ଲୋକ ବୁଝିବେ ଯେ ଏ ଗୋଟାଏ ବଦ୍‌ଖିଆଲ୍ ନୁହେଁ । ନାଣ୍ଟୁ ସହରରେ ଜଣେ ହୋଇ ରହିବା ଜରୁରୀ ଓ ଉଚିତ୍ ।

ସେହି ସମୟରେ ମନେ ପଡ଼ିଯାଏ ହାର ବାହାଘରବେଳେ କେଉଁ ବରଯାତ୍ରୀର ବ୍ୟଙ୍ଗୋକ୍ତି—'ଏ ଜନକଟି କଅଣ ? ଗୁ' ପିଇବା ବେଲ ନା ସରବତ୍ ପିଇବା କଂସା ?' ନନ୍ଦବାବୁଙ୍କ ପରିବାରବର୍ଗର ଆଗମନ, ତାଙ୍କ ସାନପୁଅ ରମୁର ଘୋର ଆଶ୍ଚର୍ଯ୍ୟ—'ଏଠି କ'ଣ କେହି ଚଉକରେ ବସନ୍ତି ନାହିଁ ?' ତା' ମାଆର ଫୁସ୍ ଫାସ୍ ଉପଦେଶ ।···ଦର୍ପଣ ସାମ୍ନାରେ ହାର ବୋଉର ଏକୁଟିଆ ଦୀର୍ଘ ନିଃଶ୍ୱାସ, କେବେ କେଉଁ ଅତୀତରେ ସେ ଥିଲା ଟାଟା ନଗରର ଯୁବତୀ, ଆଜି ସେ ରଙ୍ଗଣିପୁରର ବୁଢ଼ୀ !··· ବୃଦ୍ଧ ଭଗି ବଡ଼ ବାପାଙ୍କର ପ୍ରଶଂସା —'ବାପ, ବେଶି ପାଠ ପଢ଼ି ନାହୁଁ ଭଲ ହୋଇଛୁ । ସେ ଯୁଅଡ଼େ ପଳେଇଗଲେ, ତୁଇ ଏକା ଏଇ ଗାଆଁ ମାଟିକୁ ଚହ୍ନିଲୁ ।'···ସୀତା ଓ ଜିଲ୍ଲା ମାଜିଷ୍ଟ୍ରେଟ୍ । ସୀତା ଓ ଅଞ୍ଚଳ ନେତା ବିଶ୍ୱମ୍ଭର ଶ୍ରେଷ୍ଠସଙ୍ଘ । ସୀତା ଓ ତା' ଭଉଣୀ । ସମସ୍ତଙ୍କ ମୁହଁରେ ସେହି ଏକା କଥା, —ଏତେ ଗୁଲଖ୍ ଝିଅ ! ଏତେ ସୁନ୍ଦର ! ନ ଜାଣିବା ଲୋକେ କେହି ବିଶ୍ୱାସ କରନ୍ତି ନାହିଁ ଯେ ତା' ବାପା ହେଉଛନ୍ତି ନାଣ୍ଡୁବାବୁ ।

ବସାରେ ପହଞ୍ଚି ପୁଣି ଭୋକ କରିବାକୁ କଦଳୀ ଗୋଟିଏ ଖାଇଦେଇ ନାଣ୍ଡୁବାବୁ ଚିଠି ଲେଖନ୍ତି । ପ୍ରଥମେ 'ଆଦରଣୀୟା ସୀତା···।' ତା' ପରେ 'ପ୍ରାଣେଶ୍ୱରୀ···' ଲେଖିଲାବେଳେ ସେ ଆତ୍ମତ୍ୟାଗର ଗରିମା ଅନୁଭବ କରନ୍ତି । ରାତି ଅଧରେ ଭୋକିଲା ପେଟରେ ମୁଁ ଏହି ମାଆ ଝିଅଙ୍କ ପାଖକୁ ଚିଠି ଲେଖୁଛି ।

ତା' ପରେ କଟକରୁ କିଣିଥିବା 'କଳାମୁଖା' କିମ୍ବା ସେହି ଧରଣରେ ଗୋଟିଏ ଡିଟେକ୍ଟିଭ ଉପନ୍ୟାସ ପଢ଼ୁ ପଢ଼ୁ ତାଙ୍କୁ ନିଦ ଲାଗି ଆସେ ଓ ସେ ଶୋଇ ପଡ଼ନ୍ତି ।

···ଏହିପରି ଭାବରେ ଛଅମାସରୁ ଊର୍ଦ୍ଧ୍ୱ ହୋଇଗଲା । ନାଣ୍ଡୁବାବୁ ଗାଆଁକୁ ତିନିଥର ଯାଇ ବୁଲି ଆସିଲେଣି । ହାରବୋଉ ସ୍ପଷ୍ଟଭାବରେ ଜଣାଇ ଦେଲେଣି—'ହାତରୁ ଖାଇ ଘୋଡ଼ା ଆଗରେ ଦୌଡ଼ିବାପାଇଁ ମୋ ପାଖରେ ଅଉ ଛେଦା ନାହିଁ । ଯାହା ହେଲେ କିଛି ଗୋଟାଏ ବ୍ୟବସ୍ଥା କର ।' ଦଶବର୍ଷର ସୀତା କେତେ ଆବେଗଭରା ପ୍ରଶ୍ନ ପଚାରି ସାରିଲାଣି । ଯଥା—'ନାନୀ ଅପା କହୁଥିଲା ଯେ ସେଠିକା ସ୍କୁଲରେ ମାଷ୍ଟ୍ରାଣୀମାନେ ପାଠ ପଢ଼ାନ୍ତି । ଆଉ କହୁଥିଲା ଯେ ପ୍ରତି ସ୍କୁଲରେ ଅଲଗା ଅଲଗା ରଙ୍ଗର ଫ୍ରକ୍ ପିନ୍ଧନ୍ତି । ଯେଉଁ ସ୍କୁଲରେ ନେଳିଆ ଫ୍ରକ୍ ଥିବ ମୁଁ ସେଠି ପଢ଼ି ପାରିବି ନା ?··· ବାପା ଆମେ କେବେ ଯିବା ?' କିନ୍ତୁ ଅବସ୍ଥା ପୂର୍ବ ପରି ଅଛି । ଅଦୂରରେ କେଉଁ ଆଶାର ବର୍ତ୍ତିକା ଜଳିଲାପରି ଦିଶୁ ନାହିଁ ।

କହିବାକୁ ଗଲେ ଅବସ୍ଥା ତଳେଇ ଯାଉଛି ।

ଅନ୍ତତଃ ନାଣ୍ଡୁବାବୁଙ୍କ ମନରେ ସେହି ଧାରଣା ଆସୁଛି । କେତେ ଦିନତଳେ ଘନ୍ଶ୍ୟାମ ଦାଦାଙ୍କର ଶରୀରପୀଡ଼ା ଘୁଞ୍ଚାଇବାକୁ ଯାଇ ସେ ତାଙ୍କ ଗୋଡ଼ହାତ ଚିପି ଦେଲେ । ଦାଦା ପ୍ରୀତ ହେଲେ । ଆଉ ଦିନେ ନନ୍ଦବାବୁ ଖାଇସାରି ଉଠିଗଲା ପରେ ସେ ସେହି ଥାଳୀରେ ବସି ଖାଇଲେ । ପ୍ରଥମେ ନନ୍ଦବାବୁଙ୍କ ସ୍ତ୍ରୀ ଟିକିଏ ବିସ୍ମିତ ହେଲା ପରି ଲାଗିଲା, କିନ୍ତୁ ତା'ପରେ ସେ ସ୍ନେହରେ ଗଦ୍ ଗଦ୍ ହୋଇ କେତେ ତରକାରି-ପରି ଭଲମନ୍ଦ ବଢ଼ାଇ କରି ଦେଲେ । ଦୁଇଥର ଯାକ ନାଣ୍ଡୁବାବୁ ନିଜକୁ କହିଲେ ଯେ ସେ କିଛି ଶ୍ରେଷ୍ଠକାମ କରି ନାହାନ୍ତି,—ସେମାନେ ବୟୋଜ୍ୟେଷ୍ଠ, ନିଜ ଲୋକ । କିନ୍ତୁ ପରେ ତାଙ୍କର ମନେ ହେଲା ଯେ ଏହି ନିଜ ଲୋକମାନେ ତାଙ୍କର ଉଦାରତା ସ୍ୱୀକାର କରୁ ନାହାନ୍ତି । କାହିଁକି ? ଆଗରୁ କ'ଣ ଏମିତି ହେଉଥିଲା ? ମୁଁ କ'ଣ ସତରେ ସେମାନଙ୍କ ଅନୁଗ୍ରହରେ ପଡ଼ି ରହିଛି ? ଏହିପରି ପ୍ରଶ୍ନର ତାଡ଼ନାରେ ତାଙ୍କର ଧାରଣା ଆସୁଛି ଯେ ଅବସ୍ଥା ବଦଳେଇ ଗଲାଣି ।

ଆଜିକାଲି ସେ ସନ୍ଧ୍ୟା ବେଳେ ବୁଲିଯାଉ ନାହାନ୍ତି । ଘରେ ବସି ଏଣୁ ତେଣୁ ଖବରକାଗଜ ଓ ଉପନ୍ୟାସ ପଢ଼ୁଛନ୍ତି । ଦିନେ—'ପ୍ରେତପୁରୀ' ନାମକ ଗୋଟିଏ ଉପନ୍ୟାସ ପଢ଼ୁ ପଢ଼ୁ ତା'ର ଅନ୍ତରାଳରେ ସେ ସ୍ୱପ୍ନ ଦେଖିଲେ । ଉଁ—ମଧୁର ଭାବନାର ସ୍ୱପ୍ନ । ଦେଖିଲେ ଯେ ସେ ଗୋଟିଏ ରହସ୍ୟଜାଲ ସୃଷ୍ଟି କରି ସେମାନଙ୍କୁ ନିଜ ଅଧୀନରେ ଆଣି ପାରିଛନ୍ତି । ସେମାନେ ଶତ୍ରୁ ନା ମିତ୍ର, ବନ୍ଧୁ ବାନ୍ଧବ ବା ଅପର ଲୋକ ବୁଝି ହେଉ ନାହିଁ; କିନ୍ତୁ ସେମାନେ ସମସ୍ତେ ଅଛନ୍ତି ଗୋଟିଏ ଗୁହାଭିତରେ ଏବଂ ନାଣ୍ଡୁ-ବାବୁ ତାଙ୍କୁ ବୁଝାଉଛନ୍ତି । ଆଶ୍ୱାସନା ଦେଉଛନ୍ତି । ଯେ ତାଙ୍କର କିଛି ଅନିଷ୍ଟ ହେବ ନାହିଁ, କାରଣ ନାଣ୍ଡୁ ନୀଚ ନୁହେଁ, ତା'ର ହୃଦୟ ଅଛି—ବିଶାଳ ହୃଦୟ, ରାଜା ପରି ।

ଖୋଲା କବାଟରେ କିଏ ଖଟ୍ ଖଟ୍ କଲା । ନାଣ୍ଡୁବାବୁ ସଚେତ ହୋଇ ଦେଖିଲେ ଯେ ପ୍ରତିବେଶୀ ଉଦ୍ଧବ ପାଣି ହସ ହସ ବଦନରେ ମାଡ଼ି ଆସୁଛନ୍ତି । ଯେତେ ଯେପରି ସେ ତାଙ୍କ ପୁରୁଣା ସାଙ୍ଗ । ସାମାନ୍ୟ ସ୍କୁଲ ମାଷ୍ଟର୍, ଗୋଟିଏ ଅବାଗିଆ ଅଧାରଚିକିଆ ପିଲା, ପଇସା ପଣରେ କିହାତି ଶ୍ରେଷ୍ଠଲୋକ,—ତା'ର ମୋ ପାଖରେ କ'ଣ କାମ ଅଛି ? ପୁଣି ଏତେ ହସ କାହିଁକି ?

"ନମସ୍କାର ନବଘନ ବାବୁ । କ'ଣ ଖବର ?"

"ଭଲଛି ।" ନାଣ୍ଡୁବାବୁ ଯଥାସମ୍ଭବ ତାଙ୍କର ବିରକ୍ତିକୁ ଦମନ କଲେ ଏବଂ କାମନା କଲେ ଯେ ଲୋକଟା ଶୀଘ୍ର ବିଦାହେବ ଓ ସେ ତାଙ୍କ 'ପ୍ରେତପୁରୀ'କୁ ଫେରି ଆସି ପାରିବେ ।

କିନ୍ତୁ ଅଧଘଣ୍ଟାଏ ନ ଯାଉଣୁ ଦେଖାଗଲା ଯେ ନାଣ୍ଡୁବାବୁ ମନଯୋଗୀ ଛାତ୍ରଙ୍କ ପରି ମାଷ୍ଟର୍ ଉଦ୍ଧବ ପାଣିଙ୍କ କଥା ପିଇ ଯାଉଛନ୍ତି । ମୁହଁରେ ମୁଢ଼ତା,

ଉନ୍ମେଷ, ଓ ଜାଗରଣର ଚଳନ୍ତା ଛବି । କଥୋପକଥନର ଶେଷ ପଦ କେତୋଟି ଏହିପରି ଥିଲା,—

"ମୁଁ ବୁଝି ପାରୁ ନାହିଁ । ସିଧାସଳଖ ବ୍ୟବସାୟ ନ କରି ଏହି ଏଜେଣ୍ଟ୍ ହେବାର କଅଣ ଲାଭ ଅଛି ?"

"ଆପଣଙ୍କୁ କେମିତି ବୁଝେଇବି ?" (ହାର ଯିବାର ଭଙ୍ଗୀରେ ମସ୍ତକ ସଞ୍ଚାଳନ) "ମୁଁ ଆପଣଙ୍କୁ ଦଲାଲ୍ ହେବାକୁ କହୁନାହିଁ; ଏଜେଣ୍ଟ୍ । ସରକାରଙ୍କ ଏଜେଣ୍ଟ୍ ।"

"ଓ—।"

"ନା, ତଥାପି କଅଣ ଠିକ୍ ଧରି ପାରୁ ନାହାନ୍ତି । ସାଧାରଣ ବ୍ୟବସାୟ କଲେ ଆପଣ ପବନରେ ଉଡ଼ିଯିବେ, ତାତିରେ ପୋଡ଼ିଯିବେ, କିନ୍ତୁ ଏମିତିକା ବ୍ୟବସାୟରେ ଆପଣ ଛାଇତଳେରହିବେ, ତଣ୍ଟି କଟା କମ୍ପିଟିସନ୍‌ରୁ ରକ୍ଷା ପାଇବେ ।"

"ଆଚ୍ଛା ।"

"ଆପଣ କିଛି କରିବେ ନାହିଁ, ଆପଣ ନିମିତ୍ତ ମାତ୍ର । ସରକାର ଲୋକଙ୍କଠାରୁ କିଣିବେ, ସରକାର ଲୋକଙ୍କୁ ବିକିବେ; ମଝିରେ ଆପଣଙ୍କର କମିସନ୍ । ସେଥିରେ ତାଙ୍କର କିଛି ଭାଗ ରହିବ, ବାକୀ ସବୁ ଆପଣଙ୍କର ।"

ଉତ୍ତର ନାହିଁ । ଗୃହାଣୀ ପ୍ରଶ୍ନାକୁଳ ।

"ହୁଏତ ଆପଣ ଭାବୁଥିବେ ଯେ କମିସନ୍ କେଇଟା ଟଙ୍କା ମିଳିବ, ସେଥିରେ ଭାଗ ପଡ଼ିଲା ବେଳକୁ ଆଉ କ'ଣ ବା ରହିବ; କିନ୍ତୁ ନବଘନବାବୁ, ଆପଣ ଦେଖିବେ ଯେ ଏ ହେଉଛି ଗୋଟାଏ ସୁନାଖଣି । ମୋ କଥା ଲେଖି ରଖନ୍ତୁ । କମିସନ୍‌କୁ କିଏ ପଚାରେ ? ଆପଣ ହାତକୁ ଯେଉଁ କିଣା ବିକାର ମାଲ ଆସିବ, ସେଥିରୁ କେତେ ପାଣି ପଶି ନଷ୍ଟ ହୋଇଯିବ, କେତେ ମୂଷା ଖାଇଯିବେ, କେତେ ଚୋରି ହୋଇଯିବ । ଆଉ କେତେ ଅଶାସ୍ତ୍ର ଲୋକମାନଙ୍କୁ ଦିଆ ହୋଇଯିବ । ହିସାବ ଖାତାରେ କିଛି ତ୍ରୁଟି ରହିବ ନାହିଁ । ହେଲେ ସେହି ଗୁପ୍ତ ଧନର ମାଲିକ ହେବେ ଆପଣ । କେବଳ ଆପଣ ।

ନାଣ୍ଟୁବାବୁଙ୍କ ପାଟି ଈଷତ୍ ମେଲା ହୋଇଗଲା । ତାଙ୍କର ମନେ ହେଲା ଯେ ଏ ସେହି 'ପ୍ରେତଗୁମ୍ଫା' ଜନିତ କଳ୍ପନାର ଫମଣିଃ; ଉଚ୍ଛେଦ ପାଇ ହେଉଛନ୍ତି ସେଠିକାର ଜଣେ ଗୋଇନ୍ଦା କମ୍ପାନୀ ସର୍ଦ୍ଦାର । ଯାହାହେଉ ସେ ବାସ୍ତବତାକୁ ପରଖି ନେଲା ପରି ଚମକାଇବା ସ୍ୱରରେ ପ୍ରଶ୍ନ କଲେ—

"କିନ୍ତୁ ମୋତେ କାହିଁକି ଏ କାମ ଦିଆଯିବ ? ମୁଁ କିଏ ?"

ଏହାର ଉତ୍ତରରେ ମାଷ୍ଟର୍ ଉଚ୍ଛବ ପାଣି ହସି ଉଠିଲେ । କହିଲେ, "ଆପଣଙ୍କୁ ସେ ବିଷୟ ଭାବିବାକୁ ପଡ଼ିବ ନାହିଁ । ସବୁ ଯୋଗାଡ଼ ହୋଇଯାଇଛି । ଦାତା ନିଜକୁ ଜଣାଇବାକୁ ଚାହେ ନାହିଁ, କିନ୍ତୁ ତା'ର ଅଭାବ କିଛି ନାହିଁ । ଠିକ୍ ହୋଇଛି ଯେ, ପ୍ରଥମେ ଧାନଚାଉଳ, ତା' ପରେ ସିମେଣ୍ଟ୍, ତା' ପରେ— । ଅବଶ୍ୟ ଆପଣ ଯାହା ଚାହିଁ ହିଅନ୍ତି ।"

ନାଣ୍ଡୁ ବାବୁ ଡେରରେ ହସିଲେ, କିନ୍ତୁ ତାଙ୍କ ହସର ସରଳତା, ମଧୁରତା ଓ ବ୍ୟାପ୍ତି ଉଚ୍ଛବ ପାଣିଙ୍କ ମନକୁ ଛୁଇଁଲା । ସେ ବୁଝିଲେ ଯେ ଆଉ କିଛି କହିବାର ନାହିଁ ।

ଉଚ୍ଛବ ପାଣି ଚାଲିଗଲା ପରେ ମଧ୍ୟ ନାଣ୍ଡୁବାବୁଙ୍କ ଓଠରୁ ହସ ଲିଭିଲା ନାହିଁ । ଯେପରିକି ସେ ମୁଗ୍ଧ ହୋଇ ନିଜକୁ, ନିଜର ନୂଆ ରୂପକୁ ଦେଖୁଛନ୍ତି । ନାଣ୍ଡୁ ଗୋଟାଏ ବଡ଼ କାମ, ଅସାଧାରଣ ବ୍ୟବସାୟ କରିବାକୁ ଯାଉଛି ।

ଅଜ୍ଞାତ ଦାତା କିଏ, ସେ ବିଷୟରେ ସେ ମୁଣ୍ଡ ଖେଳାଇଲେ ନାହିଁ । ହୁଏତ ନିଜେ ଗିରିବାସ ଦାଦା, ନନ୍ଦବାବୁ, କିମ୍ବା କେଉଁ ହାକିମ, ଶେଠ, ମିନିଷ୍ଟର୍—କିଏ କହିବ ? କିନ୍ତୁ ତାଙ୍କର ବିଶ୍ୱାସ ଯେ ନାଣ୍ଡୁ ଅପାରଗ ନୁହେଁ । ମୂଳଧନ ଶହେ ନୁହେଁ, ଦୁଇଶହ ନୁହେଁ, ଆଠହଜାର ଟଙ୍କା— ।

ସୀତାର ମୁହଁ ମନେ ପଡ଼ିଲା । ସେ ଆନନ୍ଦରେ ନେଳିଆ ଫ୍ରକ୍ ପିନ୍ଧି ନାଚୁଛି ।

...ଏହାର କିଛି ଦିନ ପରେ ସେ ପିଲାପିଲିଙ୍କୁ ସହରକୁ ଆଣିଲେ । ସୀତାର କନ୍‌ଭେଣ୍ଟ୍ ସ୍କୁଲରେ ନାଁ ଲେଖାଗଲା, ଓ ତା' ନାଁ ଦିଆହେଲା ସଙ୍ଗୀତା ।

## ଦୁଇ

ଆଜି ସଙ୍ଗୀତାକୁ ପନ୍ଦର ପୂରି ଷୋଳ । ସେ ନେଳିଆ ଫ୍ରକ୍ ପିନ୍ଧୁ ନାହିଁ, ନାଇଲନ୍ ଶାଢ଼ୀ ପିନ୍ଧି କଲେଜକୁ ଯାଉଛି ।

ନାଣ୍ଡୁ ବାବୁ ଗୋଟିଏ କୋଠାଘର ତୋଳୁଛନ୍ତି । ତା'ର କାମ ସରିନାହିଁ, ବିଭିନ୍ନ ଜାଗାରୁ କିଆ ଚୂନ ସିମେଣ୍ଟର ବାହ୍ନା ଆସୁଛି । ନନ୍ଦବାବୁ କେତେଥର କହି-ସାରିଲେଣି—'ନାଣ୍ଡୁ, ତୁ ଏ ଘରପିଣ୍ଡୁ ଯେତେ ଟଙ୍କା ଖର୍ଚ୍ଚ କଲୁଣି ଯେତେ ସମୟ ନଷ୍ଟ କଲୁଣି, ମୁଁ ହୋଇଥିଲେ ତିନଟା ଘର ତୋଳି ସାରନ୍ତିଣି ।' ହାର ବୋଉ ମଧ୍ୟ

ବ୍ୟସ୍ତ ହୋଇ ଗଲେଣି । ସେ ଗର୍ବମିଶ୍ରିତ ଦୁଃଖରେ ସଙ୍ଗୀମାନଙ୍କୁ କହନ୍ତି 'କଅଣ ସବୁଦିନେ ଖୁଣ୍ଟରୁ ଖୁଣ୍ଟରୁ ଚାଲିଛି, ଭଗବାନ୍ ଜାଣନ୍ତି । ଠାକୁରଘର ପ୍ଲାନ୍‌ରେ ନ ଥିଲା, ଠାକୁର ଘର ହେଲା । ତା' ପରେ କ'ଣ ନା ଦାଣ୍ଡ ବାରଣ୍ଡାକୁ ଚଉଡ଼ା କର, ଆହୁରି ଚଉଡ଼ା । ହେଇଠୁ ଠିକ ହେଲା ଯେ ଦାଣ୍ଡକୁ ଗୋଟାଏ ପୋର୍ଟିକୋ ଦରକାର, ନାବୁଆଳି ଘରେ ଯେମିତି ଅଛି, କାର୍ ଜଣା ହେଲେ ସେହିଠି ଛିଡ଼ା ହେବ । ବର୍ତ୍ତମାନ ଝୁଙ୍କ ଉଠିଛି ଯେ ବାଗପଛକୁ ଧାଡ଼ିଏ ଧ୍ୟାନଘର ତିଆରି ହେବ, ବୃକ୍ଷକାଣ୍ଡରେ ବନ୍ଧଥାକ ଖଞ୍ଜା ହେବ, ଆଉ ପିଲାଏ ସେଠି ନିରୋଳାରେ ପାଠ ପଢ଼ିବେ । ଝିଅ ବାହାଘର ମୁଣ୍ଡ ଉପରେ, ପୁଅ ମଣିଷ ହୋଇ ନାହିଁ—ତାଙ୍କ ପାଇଁ କିଛି ରଖିଯିବ ନା ନାହିଁ ? ବଡ଼ ଲୋକ ବଡ଼ ଲୋକ ବୋଲି ହୁରି ପଡ଼ିଛି, ଦେଖିଲାବେଳରୁ ଖଡ଼ା ନାହିଁ । ···ତା' ଛଡ଼ା ତମର ବୟସ ହେଲା । ସବୁଦିନେ କ'ଣ ଖଟୁଥିବ ? ଦିନକୁ ଦି' ଘଣ୍ଟା ବିଶ୍ରାମନେଲେ ହୁଅନ୍ତା ନାହିଁ ?'

ପ୍ରକୃତରେ ନାଣ୍ଟୁବାବୁ ବିଶ୍ରାମ ନେଇ ପାରୁ ନାହାନ୍ତି । କହିଲେ ଅତ୍ୟୁକ୍ତି ନାହିଁ ଯେ ଗତ ପାଞ୍ଚବର୍ଷ ହେଲା ସେ ମୁହୂର୍ତ୍ତେ ବିଶ୍ରାମ ନେଇ ନାହାନ୍ତି । କାରଣ ସେଦିନ ରାତିରେ ହଜାରହାଣ୍ଡାର କୁଡ଼ିଆଘରେ ଯେଉଁ ସୁଅର ମୁହଁ ଖୋଲିଗଲା ତାକୁ ରୋଧିବାର ଶକ୍ତି ନ ଥିଲା । ନାଣ୍ଟୁଙ୍କୁ କାମ କରିବାକୁ ହେବ । ଗୁଡ଼ସ୍ କ୍ଲର୍କ ସୋମନାଥ ଆସି କହିଛି ଯେ ରାତି ତିନିଟା ବେଳେ ତିନିନମ୍ବର ହେଡ଼୍ ପାଖରେ ତା' ସାଙ୍ଗରେ ଦେଖା କରିବାକୁ ହେବ ତାହା ହେଲେ ସେଠିକି ଯଥାସମୟରେ ଯିବାକୁ ପଡ଼ିବ । ଶିଳ୍ପପତି ଚଣ୍ଡି ଷଡ଼ଙ୍ଗୀର ଗାଆଁ ଘରେ ଶହେ ବସ୍ତା ଚାଉଳ କୌଣସି ମତେ ପହଞ୍ଚାଇ ଦେବାକୁ ପଡ଼ିବ, ଚବିଶ ଘଣ୍ଟାରୁ ବେଶି ଡେରି ହେବ ନାହିଁ । ସେକ୍ରେଟେରିଏଟର ବିଭିନ୍ନ ମହଲରେ ବିଭିନ୍ନ ଲୋକଙ୍କ ସହିତ କାରବାର ଚାଲୁ ରଖିବାକୁ ହେବ ଏବଂ ନିୟମିତଭାବରେ ଉଚ୍ଛବ ପାଣ୍ଡର ଜରିଆରେ ଦାତାଙ୍କ ଉପଦେଶ ଶୁଣିବାକୁ ହେବ ।

କର୍ତ୍ତବ୍ୟପରାୟଣତା । ଯେତେବେଳେ ଦେଖିବ ସେହି ଗମ୍ଭୀର ଭାବ, ତତ୍ପର ଭଙ୍ଗୀ, ମାର୍କାମରା ବନସ୍ପତି ହସ ଏବଂ କପାଳରେ ଝାଳ । ଯେପରିକି ସେ ଏକାଧାରରେ ସୈନିକ ଓ ସେବକର ବ୍ରତ ଗ୍ରହଣ କରିଛନ୍ତି, ନିଜ କଥା ଭାବିବାକୁ ବେଳ ନାହିଁ । ଉଚ୍ଛବ ପାଣ୍ଡ ଦିନେ ଦୟାପରବେଶ ହୋଇ କହିଲେ 'ନବଘନବାବୁ, ଆପଣଙ୍କୁ ଏତେ ଧାଁଧପଡ଼ କରିବାକୁ କିଏ କହୁଛି ? ଗରଜ କ'ଣ ଖାଲି ଆପଣଙ୍କର ?' ନାଣ୍ଟୁବାବୁ ସହନଶୀଳତାର ଭାବ ଦେଖାଇ କହିଲେ 'ନା, ନା, ମୋତେ କିଛି କଷ୍ଟ ହେଉନାହିଁ । ଏଇ କନ୍‌ସାଇନ୍‌ମେଣ୍ଟ୍‌ଟା ଆସିଗଲେ··· ।'

ଉଚ୍ଛବ ପାଣ୍ଡ ସେତେବେଳେ ବୁଝିଲେ ନାହିଁ । ପରେ ବୁଝିଲେ । ଥରେ କ୍ଲାସରେ ପାଠ ପଢ଼ାଉ ପଢ଼ାଉ ପଛ ବେଞ୍ଚକୁ ଗୋଟିଏ ଉଦ୍‌ଗତ ମୁହଁକୁ ଦେଖି

ତାଙ୍କର ନାଣ୍ଟୁବାବୁଙ୍କ କଥା ମନେ ପଡ଼ିଲା ଏବଂ ତାଙ୍କର ଧାରଣା ହେଲା ଯେ ସାଧୁତା ଗୋଟିଏ ଗୁଣବାଚକ ଶବ୍ଦ, କ୍ରିୟାବାଚକ ନୁହେଁ । ନବଘନବାବୁଙ୍କର ସେହି ଗୁଳ-କୋଣିଆ ଚଟକା ମୁହଁ, କପାଳ ଓ ଚିବୁକ ଉଭୟ ପଶ୍ଚାଦ୍‌ଗାମୀ, ଘଞ୍ଚ ଭ୍ରୂଲତା, ଗହ୍ୱରିଆ ଗୁହାଣୀ, ଚଉଡ଼ା ଗୋଲେଇ ନାକ, ଅର୍ଦ୍ଧପ୍ରସ୍ଫୁଟିତ କମଳପରି ଫ୍ରେଟିଆ କିନ୍ତୁ ମୋଟା ପାଖୁଡ଼ାର ଓଠ,—ଏସବୁରୁ କ'ଣ ଜଣା ପଡ଼ୁନାହିଁ ଯେ ସେ ସାଧୁତାର ପ୍ରତିମୂର୍ତ୍ତି ? ଅର୍ଥାତ୍ ସେ କାମ କରନ୍ତି ନାହିଁ, ନିଜକୁ ନିଯୁକ୍ତ କରନ୍ତି । ସରଳ (ସୁନ୍ଦର) ମୌଳିକ (ମହାନ୍) ଉଦ୍ଦେଶ୍ୟ ଦ୍ୱାରା ପ୍ରେରିତ ଓ ଧାବିତ ହୁଅନ୍ତି । ଯଥା ଚଷାପୁଅ । ଯଥା ଭକ୍ତ । ଯଥା ଦାମ୍ଭା ଚଢ଼େଇ । କିଏ କାହିଁକି ଭାବିବ ଯେ ସେ କଳାବଜାର କରନ୍ତି ?

ଏତେବେଳକେ ସେ ବୁଝିଲେ ଯେ ଦାତା କାହିଁକି ସ୍ୱାଙ୍କୁ ହିଁ ବାଛିଲେ । ଆଉ କାହିଁକି ସୋମାପ୍ପା, ଷଡ଼ଙ୍ଗୀ ଓ ଅନ୍ୟମାନେ ନିଜେ ଆଢ଼ୁଆଳରେ ରହି ସ୍ୱାଙ୍କୁ ପଦାକୁ ଆସିବାକୁ କହନ୍ତି । କାରଣ ନବଘନବାବୁ ଧରା ପଡ଼ିବେ ନାହିଁ । କସ୍ମିନ୍‌କାଳେ ଧରା ପଡ଼ିବେ ନାହିଁ ।

ଭାବୁ ଭାବୁ ଉଚ୍ଛବ ପାଜ ଅଧିକତର ଆଶ୍ଚର୍ଯ୍ୟ ହେଲେ ଓ ତାଙ୍କ ମନରେ ଈର୍ଷାର ଭାବ ଆସିଲା । ତେଣୁ ସେ ଚଟ୍‌କର କଥାଟା ଛୁଣ୍ଟେଇଦେଲେ,—ଧ୍ୟାତ୍, ମଫସଲିଆଟା !

ଯାହାହେଉ ନାଣ୍ଟୁବାବୁ ଅନ୍ୟମାନଙ୍କ ପ୍ରଶଂସାନିନ୍ଦାକୁ ଭ୍ରୂକ୍ଷେପ ନ କରି କାମ କରିଯାଇଛନ୍ତି ଏବଂ ତାଙ୍କୁ ଭଲ ଲାଗିଛି ।

କାମ ହେଉଛି, ଟଙ୍କା ଆସୁଛି । କ୍ରମବର୍ଦ୍ଧିଷ୍ଣୁ ସମ୍ପଦର ସୁଖ । ଭଡ଼ା ଗୁଳଘର ଛାଡ଼ି କୋଠାଘର—ଗୋଟିକ ପରେ ଆଉ ଗୋଟିଏ—ତା'ପରେ ନିଜର ନୂଆ କୋଠା ଘର । ଅଗଣା ବଡ଼ ଦିଶୁଛି, ଝରକାରେ ବେଶି ପବନ ଆସୁଛି, କୁଣ୍ଡରେ ଫୁଲ ଫୁଟୁଛି, ପିଲାମାନେ କେକ୍ ବିସ୍କୁଟ୍ ଖାଉଛନ୍ତି, ହାରବୋଉ ନୂଆ ନୂଆ ରକମର ଶାଢ଼ୀ ପିନ୍ଧୁଛନ୍ତି··· । ସଙ୍ଗୀତା ଚହଟୁଛି । ଅନ୍ଧାରରୁ ଆଲୁଅକୁ ଆସିବାର ଏହି ସୌଭାଗ୍ୟକୁ ହେଜି ନାଣ୍ଟୁବାବୁ ବିଶ୍ୱପିତାଙ୍କ ପାଖରେ ନତମସ୍ତକ ହୁଅନ୍ତି ଏବଂ ବିଶ୍ୱପିତାଙ୍କ ଦୂତ-ସ୍ୱରୂପ ଅଜଣା ଦାତା, ଉଚ୍ଛବ ପାଜ, ସହାସବାଦୀ ଓଗେର ଶୁଭାକାଙ୍‌କ୍ଷୀ ଓ ସହକାରୀ ସହକର୍ମୀମାନଙ୍କ ପ୍ରତି କୃତଜ୍ଞତା ଜଣାନ୍ତି ।

ବାହ୍ୟିକ ଦୃଷ୍ଟିରୁ ଦେଖିବେ ତାଙ୍କର ବଦଳି ନାହିଁ । ସେ ପୂର୍ବପରି ଝଣ୍ଟେ ତୋରିଆ କାମିଜ ଓ ଧୋତି ପିନ୍ଧି, ପାଦରେ ଚଟି ଗଳେଇ ଘୁରିଆଡ଼େ ବୁଲୁଛନ୍ତି । ଅଧିକାଂଶ ସମୟ ବିଡ଼ି ଓ କେବେ କେମିତି ସିଗାରେଟ୍ ଟାଣୁଛନ୍ତି । ଫୁରୁସତ୍ ହେଲେ ଡିଟେକ୍‌ଟିଭ୍ ଉପନ୍ୟାସ ପଢ଼ୁଛନ୍ତି । କିନ୍ତୁ ସେ ନିଜେ ଅନୁଭବ କରୁଛନ୍ତି ଯେ ତାଙ୍କ

ଆମ୍ବାର ଉନ୍ନତ ହୋଇଛୁ, ହୃଦସ୍ୱଗୁଣ ବକଶି ଉଠିଛୁ । ଏମିତ ହେବାର ଥିଲ । ବେଳେ ବେଳେ ଦୁଃଖ ହୁଏ ଯେ ଜୀବନର ପ୍ରାୟ ତିନ ଭାଗରୁ ଦୁଇଭାଗ ବୃଥା କଟିଗଲ ! ରଙ୍ଗଣିପୁରର ମାଟିଗୋଡର ବାସ୍ନା ଶୁଙ୍ଘି, ତେଲଚକଟା ଚକଆ ମସିଣାରେ ଶୋଇ, ଚନ୍ଦ୍ରମାଅର ଗ୍ଭଳରେ ମାଡ଼ିଥିବା ପାଣିକଖାରୁକୁ ଦେଖି ଦେଖି ସମସ୍ତ ଗ୍ଭଲଗଲ । ତେବେ ଅନୁଶୋଚନା ସଂହାର କରି ସେ ଭାବନ୍ତି ଯେ ବେଶି ଡେରି ନ ହେଉଣୁ ସେ ଠିକ୍ ବାଟକୁ ଗ୍ଭଲିଆସି ପାରିଛନ୍ତି !

ଏହି ପାଞ୍ଚବର୍ଷ ଭିତରେ ଯେ କେତେଥର କାହା ଉପରେ ରାଗିଛନ୍ତି ? କେବେ କ'ଣ ତାଙ୍କ ମନରେ ଆସିଛି ଯେ ଅମୁକର ଅନିଷ୍ଟ ହେଉ, ଅମୁକ ବଡ଼ଲୋକର ବଡ଼ଲୋକି ଧ୍ୱଂସ ପାଇଯାଉ, କେଉଁ ଦୁଃଖୀରଙ୍କି ଗରିବର ମଙ୍ଗଳ ନ ହେଉ ? ପୂର୍ବେ ସେ ଏହି ସହରରେ ତାଙ୍କର କେତେଜଣ ବନ୍ଧୁବାନ୍ଧବଙ୍କ ଛଡ଼ା ପ୍ରାୟ ଆଉ କାହାକୁ ଜାଣି ନ ଥିବେ । ବ୍ୟବସାୟ ଆରମ୍ଭ ହେଲଦିନୁ ଅନେକ ପ୍ରକାରର ଅନେକ ଲୋକ କଣ୍ଟ୍ରାକ୍ଟର, କିରାଣୀ, ଦଲାଲ୍, ଗୁମାସ୍ତା, ଚପରାଶି, ହାକିମ, କର୍ମୀ ନେତାମାନଙ୍କ ସହିତ ତାଙ୍କର ପରିଚୟ ହୋଇଛି । କେବେ କ'ଣ ଭୁଲ୍‌ରେ ତାଙ୍କ ମନଟା ପିତା ହୋଇଯାଇଛି ଓ ସେ ଭାବିଛନ୍ତି ଯେ ଅମୁକ ଲୋକ ପୃଥିବୀରେ ଜନ୍ମ ନେଇ ନ ଥିଲେ ଭଲ ହୋଇଥାଆନ୍ତା ? ନା । ଯେ କୌଣସି ନିରପେକ୍ଷ ବିଗ୍ଭରକ କହିବ ଯେ ନାଣ୍ଟୁବାବୁ ବଦଳିଛନ୍ତି ଏବଂ ସହାରନ୍ତେ—ଅନ୍ତତଃ ଏହି ସହରର ସାଧାରଣ ସ୍ତରର ଊର୍ଦ୍ଧ୍ୱକୁ ଉଠି ଯାଇଛନ୍ତି ।

ତାଙ୍କର ଏହି ଭଲମଣିଷପଣିଆ ଘରେ ବାହାରେ କେତେ ଭାବରେ ପ୍ରକଟିତ ହୁଏ । ଧର, ସ୍ୱାହାଦାଦାଙ୍କ ଘରେ । ସ୍ୱାହାଦାଦା ତାଙ୍କ ବଡ଼ପୁଅ ବିରଜା ଉପରେ ମହାବିରକ୍ତ—ସେ ପାଠପଢ଼ାରେ ମନ ଦେଲ ନାହିଁ, ବ୍ୟବସାୟରେ ମଧ ଲଗି ରହୁ ନାହିଁ, ଏହି ସେଦିନ ତା ପାର୍ଟନର୍ ସାଙ୍ଗରେ କଜିଆ କରି ରେଲୱେର ଗୋଟାଏ ବଡ଼ କଣ୍ଟ୍ରାକ୍ଟ ହରାଇଲ ଇତ୍ୟାଦି । ଏ କଥା ଶୁଣି ନାଣ୍ଟୁବାବୁ ଚୁପ୍ ରହି ପାରିଲେ ନାହିଁ, କହିଲେ—'ରେଲୱେର ମିଷ୍ଟର କପୁରଙ୍କ ସାଙ୍ଗରେ ମୋର ଚିହ୍ନା ଅଛି, ତୁମେ ଯଦି କହିବ ମୁଁ ବିରଜାକୁ ସାଙ୍ଗରେ ନେଇଯିବି··· ।' ଏତିକରେ ସ୍ୱାହାଦାଦା କେଜାଣି କାହିଁକି ତାଙ୍କ ଆଡ଼କୁ କଟମଟ କରି ଅନାଇଲେ, ଯେପରିକି ସେ ମିଷ୍ଟର୍ କପୁରଙ୍କର ପରି ବଡ଼ ଅଫିସରଙ୍କ ସାଙ୍ଗରେ ନାଣ୍ଟୁବାବୁଙ୍କ ସମ୍ପର୍କକୁ ସହ୍ୟ କରି ପାରୁ ନାହାନ୍ତି । ତା'ପରେ ସେ ଛୁଆଡ଼ିଲ ପରି କହିଲେ—'ନାହିଁ, ତୋର ଭାବିବା ଦରକାର ନାହିଁ । ମୁଁ ବର୍ମନକୁ କ୍ଲବ୍‌ରେ ଦେଖାହେଲେ କହିବି' । କିନ୍ତୁ ନାଣ୍ଟୁବାବୁ ସେଥିରେ ଅପମାନ ବୋଧ କଲେ ନାହିଁ । ବରଂ ତାଙ୍କର ସ୍ୱାହାଦାଦାଙ୍କ ପ୍ରତି ଦୟା ଆସିଲ । କ୍ଷଣକ ପରେ ସେ ଦାଦାଙ୍କ ପେଟମରି ପାଇଁ ଗୋଟିଏ ଦରକାରୀ ଦାମି

ଔଷଧକୁ 'କଳା'ରେ ଅଥଚ ସୁବିଧା ଦରରେ ଆଣି ଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

କମ୍ପା ନନ୍ଦବାବୁଙ୍କ ବଗିଚ୍ଚରେ । ନାଣ୍ଟୁବାବୁ ସ୍ୱତଃପ୍ରବୃତ୍ତ ହୋଇ ଆନନ୍ଦରେ କୋଡ଼ି ହାଣିଲେ । ତଥାପି ଥଟ୍ଟା ଛଳରେ ନନ୍ଦବାବୁ ପଦେ କହିବାକୁ ଛାଡ଼ିଲେ ନାହିଁ, —'ଯେତେ କୋଡ଼ି ହାଣିଲେ, ଯେତେ ଖଟିଲେ କ'ଣ ହେବ ? କଣ୍ଟ୍ରୋଲ ମାଲର ଚର୍ବି କଅଣ ସହଜେ ଝଡ଼ିବ ?' ଏଥିରେ ନାଣ୍ଟୁବାବୁ ବିବ୍ରତ ନ ହୋଇ ଗୋଟିଏ ଅମାୟିକ ହସ ହସି ଦେଲେ । ଭାବିଲେ,—ନନ୍ଦବାବୁ ସବୁଦିନେ ସେମିତି, ଥଟ୍ଟା-ପରିହାସରେ ତାଙ୍କୁ କେହି ଜିଣି ପାରିବେ ନାହିଁ । ସେହିଦିନ ସେ ବିନା ଦ୍ୱିଧାରେ ନନ୍ଦବାବୁଙ୍କ ଚତୁର୍ଥ ଝୋଠାପାଇଁ ସିମେଣ୍ଟ ଆଣାଇ ଦେବାର ଭାର ଗ୍ରହଣ କଲେ ।

ଘରେ ହାରବୋଉ ବେଳେ ବେଳେ କଥା ନ ଶୁଣି ଛାଡ଼ନ୍ତି ନାହିଁ । ଏଇ ଖଣ୍ଡିଆ ବଡ଼ି ଏଣେତେଣେ ପକାଇବା ଅଭ୍ୟାସ ନେଇ ସେ କେତେଥର ଗାଳି ଦେଇଛନ୍ତି,—'ତୁମକୁ କିଏ କହୁଥିଲା ସହରକୁ ଆସିବାକୁ ? ବାବୁ ହେବାକୁ ? ତମେ ଯେଉଁ ଘୁଷୁରିକୁ ସେଇ ଘୁଷୁରି ।' କମ୍ପା ଆଉ କେଉଁ କଥାରେ—'ଏତେ ବଡ଼ଲୋକଙ୍କ ପଛେ ପଛେ ବୁଲିଲ, ଟିକିଏ ସଭ୍ୟତା ଶିଖି ପାରିଲ ନାହିଁ ?' ଏହିସବୁ କଥା ନାଣ୍ଟୁବାବୁଙ୍କୁ ବାଟେ ନାହିଁ । କାରଣ ସେ ଜାଣିଥାନ୍ତି ଯେ ସାଧାରଣ ଲୋକ,— ହାରବୋଉ ମଧ୍ୟ ସେହି ଦଳରେ—'ବଡ଼ଲୋକ' 'ସଭ୍ୟତା' ଇତ୍ୟାଦି ଶବ୍ଦର ଅର୍ଥ ବୁଝନ୍ତି ନାହିଁ । ସ୍ୱାଭାବିକ । ସେ ହସିଦେଇ ହାରବୋଉଙ୍କ ହାତରେ ଶୋଭା ପାଉଥିବା ନୂଆ ଚୁଡ଼ି ଓ ପିନ୍ଧିଥିବା ଓଡ଼ିଶୀ ଶାଢ଼ୀର ନୂତନତମ ଡିଜାଇନ୍ ପ୍ରତି ଦୃଷ୍ଟି ଦିଅନ୍ତି । ଅପଣା କୃତିତ୍ୱର ସମ୍ମାନ ଅନୁଭବ କରନ୍ତି ।

ଏବଂ ସଙ୍ଗୀତା । ପିଲାଟା ପଢ଼ାଘରେ ଶୁଖିଯାଉଛି । ହାରବୋଉ ଯେତେ-ବେଳେ କହନ୍ତି ଯେ ସେ ସହରକୁ ଆସି ଖାଇବା ପିଇବାରେ ବେଶି ଢଙ୍ଗ ବାହାର କରୁଛି (ବାଇଗଣ ଖାଇବ ନାହିଁ, ଭେଣ୍ଡି ଖାଇବ ନାହିଁ, ମାଛ ମାଂସ ନ ହେଲେ ଚଳିବ ନାହିଁ···), ଓ ସେଥିଲାଗି ଶୁଖିଯାଉଛି, ସେତେବେଳେ ନାଣ୍ଟୁବାବୁ ଅମୋଦିତ ହୁଅନ୍ତି । ହାରବୋଉ ବୁଝି ନାହାନ୍ତି ଯେ ସଙ୍ଗୀତାର ରୁଚି ବଦଳିଛି । ସେ ପଢ଼ାଘରେ ଶୁଖିଯାଉଛି, ଆଉ କିଛି ନୁହେଁ ।

ସଙ୍ଗୀତାର ଗୀତ ଶିଖିବାପାଇଁ ମାଷ୍ଟର୍ ରଖା ହୋଇଥିଲା । ସେଥିରେ ସେ ବିଶେଷ ଆଗେଇଲା ନାହିଁ, କିନ୍ତୁ ସେ ଯେତେବେଳେ ଶାଧୁଅ ଘରେ କମ୍ପା ଅଙ୍କ କଷିଲାବେଳେ ଗୁଣୁଗୁଣୁ ହୋଇ ସିନେମାଗୀତ ବୋଲେ, ନାଣ୍ଟୁବାବୁଙ୍କ ଛାତି କୁଣ୍ଢେ ମୋଟ ହୋଇଯାଏ । ତାଙ୍କର ମନେ ହୁଏ ଯେ ଏ ହେଉଛି ପୃଥିବୀକୁ ଅଜାଣିକୁ ଛାଡ଼ି ଦେଇଥିବା ଗୀତ, ଏଥିରେ ତାଳଲୟ କିଛି ଲୋଡ଼ା ନାହିଁ । ଏ ପ୍ରାଣରେ ଗୁଣୁଗୁଣୁ ।

ମୋର କଳେବର ସୁନ୍ଦର ଝିଅର ପ୍ରାଣ । ସେ ଭାବି ଶିହରି ଉଠନ୍ତି,—ରଙ୍ଗଣିପୁରରେ ପଡ଼ି ରହିଥିଲେ ଝିଅ'ର ଦଶା କ'ଣ ହୋଇଥାଆନ୍ତା ।

ହଠାତ୍ ସେ ଲକ୍ଷ୍ୟ କଲେ ଯେ ସଙ୍ଗୀତା ବୋଧହୁଏ ତା' ଓଠରେ ଟିକିଏ ନାଲି ଲଗେଇଛି । ଲିପ୍‌ଷ୍ଟିକ୍ ? ନାରୁଭାଇର ଝିଅମାନେ ଯାହାକୁ ଲଗାନ୍ତି ? ନାଣ୍ଡୁ-ବାବୁଙ୍କୁ ଯଥାକ୍ରମେ ଅଡ଼ୁଆ ଲାଗିଲା, ମଜା ଲାଗିଲା ଓ ଖୁସି ଲାଗିଲା । ଯେପରିକି ଏ ସଙ୍ଗୀତାର ଗୋଟାଏ ଅଭିନବ ଉଦ୍ୟମ, ନିଜକୁ ଓ ଅନ୍ୟମାନଙ୍କୁ ଆଶ୍ଚର୍ଯ୍ୟ କରିବାର ଗୋଟିଏ ନୂଆ ଫିକର ।

ମୋଟ ଉପରେ ତାଙ୍କୁ ଯଦି ପଚରାଯାଏ ଯେ କାଲି ଓ ଆଜି ଭିତରେ, ରଙ୍ଗଣିପୁର ଓ ଏ ସହର ଭିତରେ, ନ ଥିବା ଓ ଥିବା ଭିତରେ ଯେଉଁ ପ୍ରଭେଦକୁ ନେଇ ତାଙ୍କ ଭଲଗୁଣ ଗଢ଼ି ଉଠିଛି ସେ ଜିନଷଟି କଅଣ ତାହାହେଲେ ସେ ହୁଏତ ପ୍ରଥମେ ଉତ୍ତର ଖୋଜି ପାଆନ୍ତେ ନାହିଁ । କାରଣ ବଡ଼ଲୋକ ଅଖାଡ଼ୁଆ ଲାଗନ୍ତା, ସଭ୍ୟତା ଅଶିଂକ ସତ୍ୟ ବୋଲି ମନେ ହୁଅନ୍ତା, ହୃଦୟ ମନ ଆତ୍ମାର କଥା ବୁଝାଇ ହୁଅନ୍ତା ନାହିଁ । କିନ୍ତୁ ସେ ଶେଷକୁ ହାତ ବଢ଼ାଇ ଆଙ୍ଗୁଳି ଦେଖାଇ କହନ୍ତେ,— ହେଇ, ସଙ୍ଗୀତା !

ସଙ୍ଗୀତାକୁ ଛାଡ଼ି ଯେଉଁମାନେ ଅଛନ୍ତି ସେମାନେ ମଧ୍ୟ ପ୍ରିୟ । ହେଲେ ସେମାନେ ଏହି ନୂତନ ଜୀବନର ପ୍ରତୀକ ହୋଇ ପାରିବେ ନାହିଁ । ନିଜେ ନାଣ୍ଡୁବାବୁ ହୋଇ ପାରିବେ ନାହିଁ, ଯଦ୍ୟପି ସେ ଏହି ଜୀବନର କର୍ତ୍ତା ଓ ଅଧିକାରୀ । ପତାକା ଟେକି ପାରିବ କେବଳ ଜଣେ, ସଙ୍ଗୀତା—ତା'ର ସୌନ୍ଦର୍ଯ୍ୟ, ପ୍ରଥମ ଯୌବନ, ସ୍ୱପ୍ନ ଓ ଅଭିଳାଷ ।

ହାରବୋଉ ବା ଅନ୍ୟମାନେ ଯେ ଯାହା କହନ୍ତୁ ପଛେ କାମ କରିବାକୁ ହେବ । ବ୍ୟବସାୟ କାମ, ଘରତୋଳା କାମ । ଯଥାଯୋଗ୍ୟ ଉପାର୍ଜନ ଓ ବ୍ୟୟର କାମ । ବୟସ ଅଛି, ଉତ୍ସାହ କମିଯାଇ ନାହିଁ ।

ନାଣ୍ଡୁବାବୁ ବଡ଼ ଚାଲାକ ଓ ଆପଣା ପନ୍ଥାରେ ଅଟଳ ହୁଅନ୍ତି ।

## ତିନି

ଶ୍ରାବଣ ମାସର ଗୋଟିଏ ଦିନ । ଥାଇ ଥାଇ ଅଳ୍ପେ ବର୍ଷା ହେଉଛି ଓ ଦେହରୁ ଝାଳବହିବା ବନ୍ଦ ହେଉ ନାହିଁ । ନାଣ୍ଡୁବାବୁ ସୋମାଦ୍ଵାର ନେଲେବାଇ କ୍ଲବରକୁ ଯାଇଥିଲେ—ପ୍ରଥମଥର ପାଇଁ । ସେଠି ସୋମାଦ୍ୱା ତାଙ୍କୁ ବିଅର୍ ପିଇବା ପାଇଁ ବାଧ୍ୟ କଲା; କିନ୍ତୁ ନାଣ୍ଡୁବାବୁ ଠୋକେ ଦି'ଠୋକ ପରେ ଆଉ ପିଇ ପାରିଲେ

ନାହିଁ । କ୍ଷମା ମାଗିଲେ । ଏହି ପିଡା ଦୁର୍ଗନ୍ଧ ପାଣିକୁ ଲୋକେ କାହିଁକି ପିଅନ୍ତି ? ସେ ସୋମାସ୍ୱାକୁ କିଛି କହିଲେ ନାହିଁ, ହେଲେ, ତାଙ୍କ ମନରେ ଦୃଢ ଧାରଣା ହେଲା ଯେ ଏଗୁଡ଼ାକ ନ ପିଉଥିଲେ ସୋମାସ୍ୱାର ମୁହଁ ଏମିତି କାଙ୍କଡ଼ା ଓ ସିଠା ଦିଶୁ ନ ଥାନ୍ତା ଏବଂ ସେ କେତେ ବର୍ଷର ଧନରେ ଗୋଟିଏ ସୁନ୍ଦର ଘର ତୋଳି ସାରନ୍ତାଣି ।

ଯେଉଁ ଫେଲ ତାଙ୍କର ଇଚ୍ଛା ଥିଲା ନାଗପାଲ୍‌ର ଘରକୁ ଯିବେ । ବାରପଟ ଘରପାଇଁ ଅଧିକ ଲୁହା ଛଡ଼ର ବନ୍ଦୋବସ୍ତ କରହେଲା କି ନାହିଁ ସେକଥା ବୁଝିବେ । କିନ୍ତୁ କିଛି ବାଟ ନ ଯାଉଣୁ ହଠାତ୍ ବର୍ଷା ଆରମ୍ଭ ହୋଇଗଲା, ରିକ୍ସା ଡାକିବାକୁ ମଧ୍ୟ ବେଳ ନ ଥିଲା । ଏହି ସମୟରେ ରାସ୍ତା କଡ଼ରେ ଥିବା ଗୋଟିଏ 'ହିନ୍ଦୁ ଭୋଜନାଳୟ'ର ଉଷ୍ମ ତାଙ୍କ ଦୃଷ୍ଟି ଆକର୍ଷଣ କଲା । ବର୍ଷାରୁ ରକ୍ଷା ପାଇବା ପାଇଁ ତଥା ମୁହଁରୁ ବିଅର୍ ଗନ୍ଧ ଛଡ଼ାଇବାପାଇଁ ନାଣ୍ଡୁବାବୁ ତା ଭିତରକୁ ପଶିଗଲେ ଓ କପେ ଚା' ମାଗିଲେ ।

ବାହାର ପିଣ୍ଡାର ଗୋଟିଏ ଟେବୁଲ ପାଖରେ ବସିପଡ଼ି ମୁହଁରୁ ପାଣି ଝାଡ଼ି ପୋଛୁ ନ ପୋଛୁଣୁ ପାଶ୍ୱବର୍ତ୍ତୀ ଜଣେ ଗରାଖ ଉଚ୍ଚସ୍ୱରରେ ସମ୍ଭାଷଣ କଲେ— "କ'ଣ ତିନ୍ତିଗଲେ !" ନାଣ୍ଡୁବାବୁ ଆଶ୍ଚର୍ଯ୍ୟରେ ଅନାଇ ଦେଖିଲେ ଯେ ଜଣେ ପତଳା ଲମ୍ବାମୁହାଁ ଭଦ୍ରଲୋକ ଚା' କପ୍‌ଟିକୁ ମୁଠେଇ ବଙ୍କେଇ କରି ହସୁଛନ୍ତି । ଯେପରିକି ଏହି ବର୍ଷାରେ ତିନ୍ତିବା ଗୋଟିଏ ଶ୍ରେଷ୍ଠ କଥା, ସ୍ୱାସ୍ଥ୍ୟପ୍ରଦ ହେଉ ବା ନ ହେଉ । ପୁଣି ସେ ଦେଖିଲେ ଯେ ହସ ମଉଳିଗଲା, କିନ୍ତୁ ସେ ବନ୍ଦ ତା ସହଜେ ଲିଭୁ ନାହିଁ ।

ନାଣ୍ଡୁବାବୁ ଅପ୍ରସ୍ତୁତ ହୋଇ ହସିବା ପାଇଁ ହସିଲେ, କିନ୍ତୁ ସେ ଦେଖିଲେ ଯେ ଭଦ୍ରଲୋକ ଅମୋଦିତ ନ ହୋଇ ପୁଣି କ'ଣ କହିବେ ବୋଲି ହେଉଛନ୍ତି । ଚେହେରାରେ କେତେ କ'ଣ ଜମାଟ ବାନ୍ଧି ରହିଛି, ବନ୍ଧୁଭାବ ଦିଶୁ ନ ବୋଲି ନାହିଁ ।

"ଏ ବର୍ଷା ସହଜେ ଛାଡ଼ିବ ନାହିଁ । ମରୁଡ଼ି ହୋଇଥିଲା, ଏଥର ବଢ଼ି ହେବ । ଲୋକେ ଅନ୍ନରେ ମରିବେ ।"

ସ୍ୱାସ୍ଥ୍ୟର କ'ଣ ହୋଇଛି ? ନାଣ୍ଡୁବାବୁ ତାଙ୍କୁ ଶାନ୍ତ କରିବା ଉଦ୍ଦେଶ୍ୟରେ କହିଲେ, "ମୁଁ ଶୁଣିଥିଲି ଯେ ଏ ବର୍ଷ ଫସଲ ମନ୍ଦ ହେବ ନାହିଁ। ବର୍ଷା ଭଲ ହୋଇଛି । ଆଉ ବଢ଼ି ଯେମିତି କିଛି ପ୍ରବଳ ହେଲା ପରି ଲାଗୁ ନାହିଁ ତ । ମୁଁ ଶୁଣିଥିଲି—"

ଚା' କପ୍‌କୁ ଠେଲି ଦେଇ ଭଦ୍ରଲୋକ ନାଣ୍ଟୁବାବୁଙ୍କ ଆଡ଼କୁ ନିଘେଇ କରି ଚାହିଁଲେ । ମନେହେଲା ଯେ ତାଙ୍କ ଚାହାଣି ନାଣ୍ଟୁବାବୁଙ୍କ ଚରିତ୍ରକୁ ଚିକିନିକି କରି ମାପୁଛି ।

ତା'ପରେ ସେ ମାଡ଼ିବସିଲେ,—"ହେବ ନାହିଁ କହୁଛନ୍ତି ? ନିଶ୍ଚୟ ହେବ । ଆଜି ନ ହେଲେ କାଲି ହେବ । ଦେଶବାସୀଙ୍କ ସହିବାର ସୀମା ଚାଲିଗଲାଣି; କିନ୍ତୁ ବିଚାରି କିଛି କରିପାରୁ ନାହାନ୍ତି, ଭାବୁଛନ୍ତି ଯେ ସେମାନେ ଦୁର୍ବଳ, ନିରୁପାୟ । ତେଣୁ ତାଙ୍କୁ ମତେଇବାକୁ ହେବ ଏବଂ ସେଥିପାଇଁ ଦରକାର ନାହିଁ ନ ଥିବା ଦୁର୍ଭିକ୍ଷ, ବଢ଼ି । ଯେଉଁଥିରେ ହଜାର ହଜାର ଲୋକ ମରିବେ ଆଉ ବଞ୍ଚିଥିବା ଲୋକ ଇସାରାରେ ଧାଇଁ ଆସିବେ, ଆଙ୍ଗୁଳି ଦେଖେଇଲେ ବାହା ଗଳା ଦେବେ, ସବାଗିଆ କେଲା ପରି ହବୁ ଖାଇଯିବେ, ମାରିବେ ଆଉ ଖାଇବେ । ମାରିବେ ଆଉ···।"

ବକ୍ତା କହି ଚାଲିଛନ୍ତି । ତେଜରେ କହୁଛନ୍ତି, କିନ୍ତୁ ନାଣ୍ଟୁବାବୁ ଭାବିଲେ ଯେ ତାଙ୍କ ରାଗ ଠାରୁ ବ୍ୟଥା ଅଧିକ । ସେ କଷ୍ଟ ପାଉଛନ୍ତି । ନାଣ୍ଟୁବାବୁ ଥମି ଆସିଥିବା ବର୍ଷା ଓ ଥରି ଆସିଥିବା ଚା'କୁ ଅନେଇଲେ, ଅଥଚ ହେତୁ ଉଠି ଅସି ପାରିଲେ ନାହିଁ ।

"···ଦୋଷ ଆମର । ଆପଣଙ୍କର ଓ ମୋର । ଆମରି ପରି ଲୋକମାନଙ୍କର । ଆମେ ଚେଷ୍ଟା କରିଥିଲେ ଦେଶର ଏ ଅବସ୍ଥା ହୋଇ ନ ଥାଆନ୍ତା । ଆପଣ କ'ଣ ଦେଖି ନାହାନ୍ତି ? ନା, ମୁଁ ଦେଖି ନାହିଁ ? ଯେ ସଜ ମୁହଁ ଓ ଧୋବ ପୋଷାକର ପଲସ୍ତରା ତଳେ କେତେ ମୁନାଫାଖୋର୍ କେତେ କଳାବଜାରି କିଭଳି ଲହ ଲହ କରୁଛନ୍ତି । ତଥାପି ଆମେ ତାଙ୍କ ସାଙ୍ଗରେ ବସିଛୁ, ହସିଛୁ, ହାତ ମିଳେଇଛୁ, ଝିଅ ବାହାଘରକୁ ନିମନ୍ତ୍ରଣ କରିଛୁ, ଆଉ ଦରକାରବେଳେ ଦାନ୍ତନିକୁଟି ମାଗିଛୁ । କାହିଁକି ? କାହିଁକି ? କାହିଁକି ଆମେ ତାଙ୍କୁ ବେଇଜତ୍ କରିପାରିଲୁ ନାହିଁ, ତାଙ୍କ ମୁହଁରେ କଳା ବୋଲି ପାରିଲୁ ନାହିଁ ? କିଛି ନ ହେଲେ କାହିଁକି ତାଙ୍କୁ ଚହଲେଇ ଦେଇ ପାରିଲୁ ନାହିଁ ? କହନ୍ତୁ ଆପଣ । କହନ୍ତୁ ।"

ମୁଁ କ'ଣ କହିବ ? ମୁଁ କାହିଁକି କହିବ ? ଲୋକଟା ପାଗଳ । ଏଥର ନ ଉଠିଲେ ହେବ ନାହିଁ ।

ନାଣ୍ଟୁବାବୁଙ୍କ ବ୍ୟସ୍ତତା ଦେଖି ପାରିଲା ପରି ଭଦ୍ରଲୋକ କହିଲେ, "କ'ଣ ଯିବାକୁ ବାହାରିଲେଣି ? ବସନ୍ତୁ ନା, ଆଉ କପେ ଚା, ଖାଇ ଯାଆନ୍ତୁ । ବର୍ଷା ଛାଡ଼ି ନାହିଁ ।" ତାଙ୍କ ଅନୁରୋଧ ଆଦେଶ ପରି ଲାଗିଲା ଏବଂ ନାଣ୍ଟୁବାବୁଙ୍କୁ ଦ୍ୱିତୀୟ କପ୍ ଚା' ମଗାଇବାକୁ ପଡ଼ିଲା ।

"ସେମାନେ କ'ଣ ରାକ୍ଷସ ? ସେମାନେ କଣ ବୁଝନ୍ତି ନାହିଁ ଯେ ତୁମ ସ୍ତ୍ରୀପିଲାଙ୍କୁ ସଜାଇବାପାଇଁ ତୁମ ବାଲ୍‌କନିର ଶୋଭାପାଇଁ, ତୁମ ଭୋଜିଭାତପାଇଁ ତୁମେ କେତେ ଗୁପ୍ତୀ ମୂଲିଆ କରାଣୀ ମାଷ୍ଟର୍ ଗରିବ ବାପୁଡ଼ାଙ୍କର ରକ୍ତ ଶୋଷି ନେଉଛ ? ସେ ରକ୍ତ କ'ଣ ମଣିଷ ରକ୍ତ ନୁହେଁ ? ସେ ରକ୍ତ କ'ଣ ସୁଆଦ ଲାଗେ ?···କିନ୍ତୁ କେତେଦିନ ଚାଲିବ ଏମିତି ? କେତେ ଦିନ ? ଚକ ଘୂରୁଛି···।"

ବକ୍ତା କ୍ଷଣକପାଇଁ ନିଜ ଭାବନାର ଅଦମ୍ୟ ଉତ୍ତାପକୁ ସମ୍ଭାଳି ନେଲା ପରି ଆଖି ବୁଜି ଦେଲେ । ଏବଂ ସେହି ଅବସରରେ ନାଣ୍ଟୁବାବୁ ଚଟ୍‌କରି 'ମୁଁ ଯାଉଛି, ନମସ୍କାର' କହି ପଳାଇ ଆସିଲେ । ଗଲାବେଳେ ତାଙ୍କ ମନରେ ଆସୁଥାଏ,—ସେ ଅଖି ଖୋଲି ମୋତେ ପଛରୁ ଦେଖୁଛନ୍ତି । ଦେଖନ୍ତୁ । ସେ ମୋର କ'ଣ କରିବେ ? ସେ କିଏ କି ?

"ଏ ରିକ୍‌ସା, ଜଲ୍‌ଦି ଚାଲ । କୀର୍ତ୍ତିନଗର । ପ୍ରେସ ପାଖ ଗଳିରେ ସେଇ ଦୁଇମହଲା ନୂଆ କୋଠା । ବୁଝିଲୁ ?" ନାଗ୍‌ପାଲ୍ ପାଖକୁ ଯିବା କଥା ଭୁଲିହୋଇଗଲେଣି । ଘରେ ପହଞ୍ଚିଗଲେ ରକ୍ଷା ।

'ଧ୍ୟାତ୍'—ମୁଁ କ'ଣ ଡରୁଛି ନା କଅଣ ? ଏମିତିକା ଲେକଚର୍ ମୁଁ କ'ଣ ଆଗରୁ ଶୁଣି ନାହିଁ ?···ତା ଛଡ଼ା ସେ ମୋ କଥା କହୁ ନ ଥିଲେ । ମୁଁ ବଡ଼ଲୋକ ନୁହେଁ । ମୁଁ କ'ଣ ନାଗପାଲ୍ ପରି ହୋଇଛି ? ନା ମୁଁ ରଘୁନାଥ, ସିଂ ଶମସୁଦ୍ଦିନ୍, ପାନ୍ନାଲାଲ୍, ଶେଠ ତୁଳସୀ ଦାସ୍—ସେମାନଙ୍କ ପରି ହୋଇଛି ? ଏପରି କି ମୁଁ ସାହାଦୋବା, ନନ୍ଦବାବୁ, ନାରୁଭାଇଙ୍କ ପରି ନୁହେଁ । ମୁଁ ନାଣ୍ଟୁ । ଏଇ କାଲି ସକାଳେ ରଙ୍ଗଣିପୁରରୁ ଆସି ଏଠି ଦି ପଇସା ରୋଜଗାର କରୁଛି । ଘର ଖଣ୍ଡେ ତୋଳିଛି, ପିଲାଏ ଟିକିଏ ଭଲରେ ଚଳୁଛନ୍ତି । ଏଥିରେ କାହାର କ'ଣ କହିବାର ଅଛି ?

ଲହୁ ଲହୁ ଜିଭ···ରକ୍ତ ଶୋଷି ନିଅନ୍ତି···ଲୋକମାନେ ମରିବେ···ମାରିବେ ଆଉ ଖାଇବେ, ମାରିବେ ଆଉ···। ଥିଏଟର୍‌ରେ ଏମିତି କହନ୍ତି । କମ୍ପା ଜଣେ ଜଣେ କଅଁଳିଆ ଟୋକା ପଢ଼ିଆରେ ଏମିତି ବକ୍ତୃତା ଦିଅନ୍ତି । କିନ୍ତୁ ସେ ବକ୍ତୃତା ଦେଉ ନ ଥିଲେ । ତାଙ୍କୁ କଷ୍ଟ ହେଉଥିଲା ।

ହେଉ । ମୋର କାହିଁକି ମୁଣ୍ଡ ବଥଉଛି ? ସେ ପାଗଳ, ମୁଁ ପାଗଳ ନୁହେଁ । ମୁଁ ବ୍ୟବସାୟୀ, ମୁଁ ଗୃହସ୍ଥ, ମୁଁ ନାଣ୍ଟୁବାବୁ । ଓଃ, ଏ ରିକ୍‌ସାବାଲାଟା ଭାରି ଅସ୍ତେ ଚାଲୁଛି । ଘରେ ପହଞ୍ଚିଗଲେ ବହୁତ କାମ ଅଛି ।

···ଏହିପରି ଭାବନା ସମୁଦ୍ରକୁ ଅତିକ୍ରମ କରି ନାଣ୍ଟୁବାବୁ ଘରେ ପହଞ୍ଚିଲେ ଓ ତାଙ୍କୁ ଶାନ୍ତି ଲାଗିଲା । ସେ ଚଟି ଖୋଲି ଦେଲେ, ବହୁତ ସମୟ ହେଲା ଭାରି

ଯାଇଥିଲା ପରି ଅତି ଆଗ୍ରହରେ ବଡ଼ ଟାଣିଲେ, ଓ 'ଆଃ !' ବୋଲି କହିଲେ । ତଳ ବାରଣ୍ଡାରେ ଥିବା କାନ୍ଥ ଦର୍ପଣରେ ମୁହଁ ଦେଖି ମୁଣ୍ଡ ବାଳରେ ହାତ ଚଳାଇ ଆଣିଲେ । ହାର ବୋଉ ବୋଧହୁଏ ଉପର ଘରେ ଶୋଇଛି । ପିଲାମାନେ ସ୍କୁଲ କଲେଜକୁ ଯାଇଛନ୍ତି । ପୂଜାଙ୍ଗ ରୋଷେଇଘରେ କାମ କରୁଛି, ସ୍ତ୍ରୀକରଟେକା ତଳ ଅଗଣାରେ ମାଟି ଖୋଳୁଛି ( କାହିଁକି କେଜାଣି । ) ତାରରେ ଶାଢ଼ୀ ଶୁଖା ହୋଇଛି, ଅଥାନ ଥାନରେ ଧୂଳି ଜମିଛି, କଳା ପିମ୍ପୁଡ଼ି ପାଲିସ୍ ଟେରାଣ ଉପରେ ତରତର ହୋଇ ଗ୍ଲୁଛି ।

'ଆଃ !' ଏହି ଶବ୍ଦଟିକୁ ସେ ବାରମ୍ବାର ମନଭିତରେ କହି ସାରଲେଣି । ଶାନ୍ତି ଓ ଆତ୍ମବିଶ୍ୱାସର ପ୍ରମାଣକୁ ଦୋହରାଇଲେଣି । ମୋର ଘର,—ଜମିଛି, ବସିଯାଇଛି । ତାକୁ କେହି ଟଳେଇ ପାରବେ ନାହିଁ । କାଚ ବାସନ ନୁହେଁ, ମାଟିରୁ ଉଠିଥିବା ଗଛ । ଏ ସହରକୁ ଅସିବାର ପାଞ୍ଚବର୍ଷ ହୋଇଗଲଣି, ଏମିତି ଦଶବର୍ଷ ହେବ ପନ୍ଦର ବର୍ଷ ହେବ । ମୁଁ ନ ଥିବ, ମୋ ପିଲାମାନେ, ନାତି ନାତୁଣୀ ଥିବେ । ସେତେବେଳକୁ କ'ଣ କାହାର ମନେଥିବ ଯେ ଏ କୋଠା, ଏ ସମ୍ପତ୍ତି କେଉଁଠୁ ଆସିଲା ? ମୁଁ ନଥିବ । ଆଉ ଆଜିକାର ସେହି ଲୋକ ମରିହାକ ଭୂତ ହୋଇ ସାରବେଣି !

ତଥାପି କ'ଣ ସେ ପ୍ରଣାମ ଦେଇ ପାରଲେ ନାହିଁ ? ନା ତାଙ୍କର ମନେହେଲା ଯେ ସେହି କଦାକାର ଲୋକଟି ପାଖରେ ଅସି ଛିଡ଼ା ହେଲଣି ? ଯାହା ହେଉ ସେ ହଠାତ୍ ଦ୍ରୁତଗତିରେ ଉପର ମହଲକୁ ଉଠିଲେ, ଓ ନିଜ ଶୋଇବାଘର ଆଡ଼କୁ ମୁହାଁଇଲେ ।

ଶୋଇବାଘରେ ସେ ଦେଖିଲେ ଯେ ହାରବୋଉ ଗୋଡ଼ ହାତ ଲମ୍ବେଇ ଶୋଇଛନ୍ତି, କ'ଣ ଗୋଟାଏ ମ୍ୟାଗାଜିନ୍ ପଢ଼ୁଛନ୍ତି । କେଜାଣି କାହିଁକି ତାଙ୍କୁ ସେ ଦୃଶ୍ୟ ଭଲ ଲଗିଲା ନାହିଁ । ଏତେବେଳେ ହାରବୋଉଙ୍କର ଶୋଇବା ଉଚିତ ନୁହେଁ, ତାଙ୍କ ଜଙ୍ଘ ଦୁଇଟା ଏତେ ମୋଟା ହେବା ଉଚିତ ନୁହେଁ, ତାଙ୍କ ମୁହଁ ଅତି ବଳିଷ୍ଠ ଓ ପ୍ରସନ୍ନ, କିମ୍ବା ସେ ଅଯଥାରେ ବହି ପଢ଼ୁଛନ୍ତି ।

ନାଣ୍ଡୁବାବୁ ସେ ଘରକୁ ପିବାକୁ ଚାହିଁଲେ ନାହିଁ । ହାରବୋଉଙ୍କ ଦୃଷ୍ଟିକୁ ବଞ୍ଚାଇ ଅନ୍ୟଦଗରେ ପାଦ ବଢ଼ାଇଲେ । କ୍ରମଶଃ ଅନ୍ୟମନସ୍କ ହୋଇ ଓ ଟାଣି ହେଲପରି ସେ ପହଞ୍ଚିଲେ ଡାହାଣ ମୁଣ୍ଡରେ ଥିବା ଗୋଟିଏ ଛୋଟିଆ ଘରେ । ସଞ୍ଜୀତାର ଘର । ସେ ଏଇଠି ପଢ଼େ ଓ ଶୁଏ ।

ଟେବୁଲ୍‌ରେ ଅନେକ ବହି, ଅନେକ ଖାତା । ଅନ୍ତତଃ ନାଣ୍ଡୁବାବୁଙ୍କୁ ସେମିତି ଲଗିଲା । କାନ୍ଥରେ ଫୁଲ-ଛବି କ୍ୟାଲେଣ୍ଡର, କ୍ଲାସ୍‌ର ରୁଟିନ୍, ଓ ଗୋଟିଏ

କଣ୍ଟାରେ ଗୁଡ଼ା ହୋଇଥିବା ନାଲିଆ ଡେଲିଆ ରିବନ୍ । ଆଜିରେ ଆହୁରି କେତେ ବହି କେତେ ଖାତା, ପାଉଡ଼ରି ଡବା, ସ୍ନୋ ଡବା, ସ୍ଲେଟ ଦର୍ପଣ, ପାନିଆ, ଆଉ କେତେ କ'ଣ । ନାଣ୍ଟୁବାବୁ କେବଳ ଛିଡ଼ା ହୋଇ ଦେଖି ରହିଲେ, ଓ ତାଙ୍କୁ ଭଲ ଲାଗିଲା । ତାଙ୍କ ମନରେ ଆସିଲା ଯେ ଏ ପାଠ, ପ୍ରସାଧନ ଓ ପ୍ରବଣତାର ବାସ୍ନା ଆଉ କାହାପାଇଁ ନୁହେଁ,—କେବଳ ତାଙ୍କର ପାଇଁ ।

ଦେଖୁ ଦେଖୁ ତାଙ୍କ ଆଖିରେ ପଡ଼ିଲା ଯେ ଗୋଟିଏ ମୋଟା ବନ୍ଧେଇ ଖାତା ଉପରେ ଲେବଲ୍ ମରା ହୋଇଛି, ଓ ଲେଖା ହୋଇଛି 'କବିତା କୁସୁମ' । କୌତୁହଳରେ ସେ ପୃଷ୍ଠା ଓଲଟାଇଲେ,—ଲେଖିକା ସଙ୍ଗୀତା ମହାନ୍ତି । ତା'ପରେ ଗୋଟିଏ ପରେ ଗୋଟିଏ ଦଶ ବାରଟି କବିତା—'କିଏ ତୁମେ ?' 'ଦେବତାର ଅଭିଶାପ', 'ଦୀପଶିଖା', 'ଅଭିମାନ' ଇତ୍ୟାଦି । ଜୀବନ ମରଣ, ପ୍ରେମ, ପ୍ରକୃତି, ଭଗବାନ ସବୁ ସେଥିରେ ଅଛି । ନାଣ୍ଟୁବାବୁ କେତେଗୁଡ଼ିକୁ ପଢ଼ିବାକୁ ଚେଷ୍ଟା କଲେ, ଅର୍ଥ ପୂରାପୂରି ବୁଝି ପାରିଲେ ନାହିଁ । ତଥାପି ତାଙ୍କୁ ଅହୁରି ଦେଖିବାକୁ ଆହୁରି ପଢ଼ିବାକୁ ଇଚ୍ଛା ହେଲା । ଯଥା ସେଥିରେ ମନ୍ତ୍ରର ଶକ୍ତି ଓ ମାଧୁରୀ ଅଛି, ନ ବୁଝିଲେ କିଛି ଯାଏ ଆସେ ନାହିଁ । କ୍ରମଶଃ ଉଦ୍ଦୀପନାର ଶୀର୍ଷରେ ପହଞ୍ଚିଲା ପରେ ସେ ଖାତାକୁ ବୁଜି ଦେଇ ହାତରେ ଧରିଲେ, ଓ ନିଜକୁ କହିଲେ,—

ଝିଅ କବିତା ଲେଖୁଛି !

ଆନନ୍ଦ ଓ ଆଶ୍ଚର୍ଯ୍ୟର ଘୋଷଣା । ସଙ୍ଗୀତା କବିତା ଲେଖୁଛି । ଏଇ କ'ଣ ଯଥେଷ୍ଟ ନୁହେଁ ? ଏଇ କଣ ପ୍ରମାଣ ନୁହେଁ ଯେ ନାଣ୍ଟୁବାବୁ ଯାହା କରିଛି ଭୁଲ୍ କରି ନାହିଁ, ଦୋଷ କରି ନାହିଁ ? ନାଣ୍ଟୁବାବୁ କବିତାବଳୀକୁ ପୁଣି ପଢ଼ିବସିଲେ । ଭଲ, ସୁନ୍ଦର ଓ ମହାନ୍‌ର ସଂଯୁକ୍ତ ଭାବ ତାଙ୍କ ମନକୁ ଛୁଇଁଲା ଓ ସେ ଅସ୍ଥିର ହେଲେ । ଏଇଥିପାଇଁ ଅସ୍ଥିର ହେଲେ ଯେ ବିଶ୍ୱବ୍ରହ୍ମାଣ୍ଡକୁ ଏହି ସମ୍ବାଦ ଦେବାକୁ ହେବ । ଶୁଣିଲା ପରେ ସେମାନେ ନିଶ୍ଚୟ ବୁଝିବେ, ଖୁସି ହେବେ ଓ ବାପଝିଅଙ୍କ କପାଳରେ ଜୟଟୀକା ଲଗାଇ ଦେବେ ।

ସେ ଅସ୍ଥିର ହେଲେ ଓ ବ୍ୟାକୁଳ ହେଲେ । କିନ୍ତୁ ତା'ପରେ ଧୀରେ ଧୀରେ ସେ ବିକଳ ହେଲେ ଓ ହତାଶ ହେଲେ । କହିଲେ ଭୁଲ୍ ହେବ ନାହିଁ ଯେ ତାଙ୍କ ଆଖି ଛଳଛଳ ହୋଇ ଆସିଲା । କାରଣ ତାଙ୍କୁ ଜଳଜଳ ହୋଇ ଦିଶିଗଲା ଯେ ପ୍ରକୃତରେ କେହି ବୁଝିବେ ନାହିଁ । ହାରବୋଉ ହୁଏତ ଟିକିଏ ହସିଦେବେ; କିନ୍ତୁ ତଳ ଓଠ ଲମ୍ବେଇ କରି ହସିବେ ଓ ପୁଣି ଆରମ୍ଭ କରିବେ ଯେ କୋଟାଡୋଳା-ଠାରୁ ଗହଣାଗଢ଼ା ଅଧିକ ଆବଶ୍ୟକ । ସୋମାଆ୍ମା, ନାଗପାଲ୍, ଉଚ୍ଛବ ଧାସ

ଇତ୍ୟାଦି ଭଦ୍ରତାରେ ପ୍ରଶଂସା କରିବେ ଓ ତା' ପରେ ସିମେଣ୍ଟ-ଗୃଢ଼ଳ କ୍ନଟ୍‌ସିମ୍‌ର ଉପଯୋଗୀ କଥା ଆଲୋଚନା କରିବେ । ସୁହାସ ଦାଦା, ନନ୍ଦବାବୁ ଓଗେର ନୀରବରେ ଶୁଣିବେ, ତାଙ୍କ ଓଠର ଉଦାର କୁଞ୍ଚନରେ କୌଣସି ପରିବର୍ତ୍ତନ ଘଟିବ ନାହିଁ—ନୂଆ ଡାହାଣୀ ଘୂଅ ଖାଇ ଶିଖିଛୁ ! ଯେପରିକି ସଙ୍ଗୀତାର କବିତା ଲେଖା ନାଣ୍ଟୁର ଗୋଟିଏ ନୂଆ ବ୍ୟବସାୟ ।

ଏବଂ ଗ୍ର' ଦୋକାନର ସେହି ଲମ୍ବାମୁହାଁ ଭଦ୍ରଲୋକ ଶୁଣି ନ ଶୁଣିଲା ପରି ରହିବେ, ବୃଦ୍ଧଙ୍କ ଧରି କଷ୍ଟ ପାଇବେ ଓ ସେହି ଅଶ୍ଳୀଳ ଭୟାନକ କଥା କହି ଗ୍ଲିବେ—କଳାବଜାର···ଲକ୍ଷ ଲକ୍ଷ ଜିଭ···ରକ୍ତ···ମାରିବେ ଅଉ ଖାଇବେ, ମାରିବେ ଆଉ— ।



# ସଙ୍ଗୀତାର ବାପା

ଆପଣମାନଙ୍କର ନବଘନ ଓରଫ୍ ନାଣ୍ଟୁବାବୁଙ୍କ ପ୍ରତି କିଭଳି ମନୋଭାବ ଗଢ଼ି ଉଠିଛି ଜାଣେ ନାହିଁ, କିନ୍ତୁ ମୁଁ ସ୍ପଷ୍ଟଭାବରେ ଜଣାଇ ଦେବାକୁ ଚାହେଁ ଯେ ଯଦି ତାଙ୍କର ତଥାକଥିତ କଳାକାରର ଧରା ପଡ଼ିଯାଏ ଓ ତାଙ୍କୁ ଆସାମୀ ଭାବରେ କାଠଗଡ଼ାରେ ଠିଆ ହେବାକୁ ପଡ଼େ, ତାହାହେଲେ ମୁଁ ତାଙ୍କ ତରଫରୁ ସଫେଇ ଦେବାକୁ ପ୍ରସ୍ତୁତ ଅଛି । ପ୍ରସ୍ତୁତ ଅଛି କହିଲେ ଯଥେଷ୍ଟ ନୁହେଁ, ତାଙ୍କ ପାଇଁ ମୋର ପ୍ରାଣ କାନ୍ଦୁଛି ଓ ମୋର ବିଶ୍ୱାସ ଯେ ଜଜ୍ ମହୋଦୟଙ୍କ ପ୍ରାଣ ମଧ୍ୟ ନ କାନ୍ଦି ରହି ପାରିବ ନାହିଁ । ମୋର ସଫେଇର ସାରାଂଶ ଏହି ପ୍ରକାର :

ଏକ—ତାଙ୍କର ଉଚ୍ଚାଭିଳାଷକୁ ବାହାବା ନ କଲେ ଜାଣି ରଖନ୍ତୁ ଯେ ଆମର ଏଇ ମହାନ୍ ଦେଶ ସବୁଦିନେ ଦରିଦ୍ର ହୋଇ ରହିଥିବ । ଆଖିଆଗରେ ଯେତେକ ସାନ, ଯବନ, ଅର୍ବାଚୀନ ଦେଶ ଗୁଡ଼ାକ ଉପରକୁ ଉଠୁଥିବେ, ଆହୁରି ଉପରକୁ ଉଠୁଥିବେ ଓ ଆମେ ବରଗଛ ତଳେ ବସି ଧ୍ୟାନ କରୁଥିବା । କାରଣ ପ୍ରଥମେ ଦରକାର ଅନ୍ତଃସ୍ଥଳକୁ ବିନ୍ଧୁଥିବା ଅସହ୍ୟ ତାଡ଼ନା—ମୁଁ ବଡ଼ ହେବି । ଏବଂ କ୍ରୋଧ—କାହିଁକି ବଡ଼ ନ ହେବି ? ଉଭୟରେ ସେ ନିଜକୁ ଊଣା କରି ନାହାନ୍ତି । କହିଲେ, ମୁଁ ଦରପାଠୁଆ ହେଲେ କ'ଣ ହୋଇଗଲା, ମୁଁ ଯେତେହେଲେ ଉଚ୍ଚ ବଂଶ ଉଚ୍ଚ ଜାତିର ପିଲା, ମୋର ଉଚ୍ଚମନକୁ ଖାଦ୍ୟ ମିଳିବ ନାହିଁ ? ମୋର କରୁଣ ହୃଦୟକୁ, ତା'ର ହୃଦୟବର୍ତ୍ତୀ ଦର୍ଶାଇବାର ସୁଯୋଗ ମିଳିବ ନାହିଁ ? କାହିଁକି ମିଳିବ ନାହିଁ ? କେଉଁ ନ୍ୟାୟରେ ସାହାସଦା' ନନ୍ଦବାବୁ ଓରେର ବଡ଼ ବୋଲେଇବେ ଓ ମୁଁ ନଗଣ୍ୟ ହୋଇ ରହିଥିବି ? ଇତ୍ୟାଦି । ଏହିପ୍ରକାର ଚାଡି ନ ଉଠିଲେ ନାଣ୍ଟୁବାବୁମାନେ ହେଲେ ସୁନ୍ଦର ଚଷାପୁଅ ହେଇ

ପଲ୍ଲୀଶ୍ରୀର କୋଳରେ ଶୋଇ ରହିନ୍ତେ ଓ ଆମ ଦେଶ ଶାନ୍ତିରେ ସଢ଼ୁଥାଆନ୍ତା । ଏଥିରେ କିଛି ସନ୍ଦେହ ଅଛି କି ?

ଦୁଇ—ତାଙ୍କର ନିର୍ଭୁଲ୍ ସମାଜ ଦର୍ଶନ । ଯେ ବଡ଼ ହେବା ଏବଂ ବଡ଼ଲୋକ ହେବା ଏକା କଥା । ହୋଇପାରେ ଯେ ଆଜିର ଗଣତାନ୍ତ୍ରିକ ଯୁଗରେ ଗରିବ ଲୋକର ମଧ୍ୟ ଭୋଟ ଦେବାର ଅଧିକାର ଅଛି (ଯାହା ପୂର୍ବରୁ ନ ଥିଲା), କିନ୍ତୁ ବଡ଼-ଲୋକ ନ ହେଲେ ଅମୁକ ଉଚିତ ଲୋକକୁ ଭୋଟ ଦିଅ ବୋଲି କିଏ ନିର୍ଦ୍ଦେଶ ଦେଇ ପାରିବ ? ସିଧାସଳଖ ନିର୍ଦ୍ଦେଶ ନ ଦେଲେ ମଧ୍ୟ କଳ ମୋଡ଼ି ପାରିବ ? ବଡ଼ଲୋକ ନ ହେଲେ ମନ୍ଦିର ତୋଳିବ କିଏ ? ଧର୍ମନିରପେକ୍ଷ ସରକାର ? ବଡ଼ଲୋକ ନ ହେଲେ ସାହିତ୍ୟ, କଳା, ନୃତ୍ୟସଙ୍ଗୀତର ସମୃଦ୍ଧି ପାଇଁ ପାଣ୍ଠି ଆସିବ କେଉଁଠୁ ? ଜନକଲ୍ୟାଣମନ୍ତ୍ରୀ ସରକାରୀ ତହବିଲରୁ ? ମୋଟ ଉପରେ ବଡ଼ଲୋକ ନ ହେଲେ ତମକୁ ଚିହ୍ନିବ କିଏ ଯେ ତମେ କିଛି ବଡ଼କାମ କରିଯାଇପାରିବ ସେମାନଙ୍କ ପାଇଁ ? ନବଘନ ଓରଫ୍ ନାଣ୍ଟୁବାବୁ ଯେତେ ଦରପାଠୁଆ ହେଲେ ମଧ୍ୟ ଏଇ ସାରତତ୍ତ୍ୱଟିକୁ ବୁଝିଥିଲେ, ତେଣୁ ତାଙ୍କର ଉଚ୍ଚମନ ଓ ବିଶାଳ ହୃଦୟକୁ ଯେ କୌଣସି ମତେ ପୁଞ୍ଜି ହାସଲ କରିବାକୁ ବାଧ୍ୟ କରିଥିଲେ । ପ୍ରଥମେ ପୁଞ୍ଜି, ତା'ପରେ ଯେଉଁ କଥା । ପୁଞ୍ଜିର ଉପଯୁକ୍ତ ବିନିଯୋଗ କେଉଁ ବାଟେ ହେଲେ ଭଲ ହେବ, ବ୍ୟାଙ୍କ୍ ବାଲାନସ୍, କୋଠାବାଡ଼ି ନା ଗହଣାଗାଣ୍ଠି ଏ ବିଷୟ ତାଙ୍କର ମତ ତୁମ ଆମଠାରୁ ଭିନ୍ନ, ହୁଏତ ପୁରୁଣାକାଳିଆ ହୋଇ ପାରେ, କିନ୍ତୁ ପୁଞ୍ଜିଲାଭ ପ୍ରତି ତାଙ୍କର ଏକାଗ୍ର ଅଧ୍ୟବସାୟକୁ ଖୁଣି ହେବ କି ?

ତିନି—ଯଥେଷ୍ଟ ଉପରକୁ ଉଠିଲେ ମଧ୍ୟ, ଲୋକମୁଖରେ ବଡ଼ଲୋକ ବୋଲାଇଲେ ମଧ୍ୟ ତାଙ୍କର ମଣିଷପଣିଆ କିପରି ଅବ୍ୟାହତ ରହିଥିଲା, ଦେଖିବେ ତ ? ଆଜି ଉପୁରି ଦି' ପଇସା କମେଇବା, ଆଇନ୍‌କୁ ଫାଙ୍କି ଦେବା, ପ୍ରୀତ୍ୟୁପ୍ରିତ ତୋଷିବା, ଇତ୍ୟାଦି ସରକାରୀ ଦୋଷ ନେଇ କେଉଁ ଲୋକଟିକୁ ଆମ ସମାଜ ମନ୍ଦ ବୋଲି କହୁଛି ନା କହିବ, ଯେ ପର୍ଯ୍ୟନ୍ତ ସେ ମଣିଷପଣିଆକୁ ବଞ୍ଚେଇ ରଖି ପାରୁଛି ? ଅର୍ଥାତ୍ ସ୍ତ୍ରୀ ପିଲାଙ୍କୁ ଭଲ ପାଉଛି, ତାଙ୍କ

ଯତ୍ନ ନେଇଛ, ଭାଇବନ୍ଧୁ କୁଟୁମ୍ବଙ୍କ ଉପକାର କରିଛ, "ଚରିତ୍ର" ହୁଡ଼ି ନାହିଁ, ଏବଂ ବିନୟମଧୁର ହୋଇ ରହିବାକୁ ଭୁଲି ନାହିଁ ? ଏହି ଦୃଷ୍ଟିରୁ ନବଘନ ଓରଫ୍ ନାଣ୍ଡୁବାବୁଙ୍କୁ ଶତକଡ଼ା ଶହେ ମାର୍କରୁ କମ୍ ଦେଇ ହେବ କି ? ଅବଶ୍ୟ ଆଷାଢ଼ ଉପରବେଳାର ସେଇ ଗୋଟାଏ ଦୁର୍ବଳ ମୁହୂର୍ତ୍ତରେ ତାଙ୍କର ମନେ ହୋଇଥିଲା ଯେ ହାରବୋଉଙ୍କର ଜଙ୍ଘ ଦି'ଟା ଏତେ ମୋଟା ହେବା ଉଚିତ ନୁହେଁ ଏବଂ ସେହି କ୍ରମରେ ହୁଏତ କେତେ ମନ୍ଦ ଭାବନା ତାଙ୍କ ମନକୁ ଆସିଥାଆନ୍ତା । କିନ୍ତୁ ଭଗବାନଙ୍କ କୃପାରୁ ତାଙ୍କ ଗେହ୍ଲା ଝିଅ ସଙ୍ଗୀତା (ଅର୍ଥାତ୍ ତା'ର କବିତା ) ତାଙ୍କୁ ଯଥାଶୀଘ୍ର ବାଟକୁ ନେଇ ଆସିପାରିଲା, ସେଇ ମାହାତ୍ମ୍ୟର ବ୍ୟାଖ୍ୟା କରିବା ଅନାବଶ୍ୟକ ।

ସ୍ବର—ତାଙ୍କର ବୈଶିଷ୍ଟ୍ୟ ଇତିହାସ-ଚେତନାକୁ ମଧ୍ୟ ଧନ୍ୟ କହିବ ! ମନେ ଥିବ ସେ କହିଥିଲେ ଯେ କାଳକ୍ରମେ ମୁଁ ନ ଥିବି, କିନ୍ତୁ ମୋ ପିଲାମାନେ, ନାତିନାତୁଣୀ ଥିବେ । ସେତେବେଳକୁ କିଏ କାହାର ମନେଥିବ ଯେ ଏ କୋଠା, ଏ ସମ୍ପତ୍ତି କେଉଁଠୁ ଆସିଲା ? ଅର୍ଥାତ୍ ମୁଁ ଓ ମୋର ଏଇ ସୃଷ୍ଟି କାଳପୁରୁଷର ନିମିତ୍ତ ମାତ୍ର । ଯଦିବା ଏଥିରେ କିଛି ମଳଧୂଳି ଅଛି ବୋଲି ଭାବୁଛ, ସେଥିରେ ଭବିଷ୍ୟତର ଆମ୍ଭାକୁ ବାଧିବ କାହିଁକି ? ଭବିଷ୍ୟତର କବି, ଦାର୍ଶନିକ, ନେତା, ଦାତା, କାହିଁକି ଜାଣିବ (ଜାଣିଲେ ବା ବିଶ୍ୱାସ କରିବ କାହିଁକି) ଯେ ତା'ର ସୂର୍ଯ୍ୟକୁ ଅନେଇଥିବା ମୁଖ ପଦ୍ମର ଅଦୃଶ୍ୟରେ, ବିଗତ ଅତୀତରେ ପୋତି ହୋଇଥିବା ଗୋଡ଼ ତଳକୁ, ବର୍ତ୍ତମାନ ଗଣି ଗଣି ପଙ୍କ ? ସେ ଯଥାର୍ଥରେ ବୁଝିଥିଲେ ଯେ ସଙ୍ଗୀତାର 'ଦେବତାର ଅଭିଶାପ, 'ଦାପଣିଙ୍ଗ' ଆଦି ଅମଳିନ ହୋଇ ରହିବେ, ହୁଏତ ସଙ୍ଗୀତାର ଝିଅ ଅଦ୍ଭୁତ ଚମତ୍କାର କବିତା ଲେଖିବ, ଜାତୀୟ ପୁରସ୍କାର ପାଇବ···ଆଃ ! ସୃଷ୍ଟିର ପହଞ୍ଚ କେଉଁ ସ୍ୱର୍ଗକୁ ଲମ୍ବି ଯାଇପାରେ କିଏ କହିବ ?

ମହାଶୟ ! ଏଭଳି ଦୁର୍ଦ୍ଧାନ୍ତ ଉଚ୍ଚାଭିଳାଷ, ତୀକ୍ଷ୍ଣ ବୁଦ୍ଧିବିଚାର ଓ ମଣିଷପଣିଆରେ ସମୃଦ୍ଧ ଏଇ ନିରୀହ ଲୋକଟିକୁ ଦୋଷୀ ବୋଲି କହିପାରିବେ ଆପଣ ? ଆପଣ ଅଇନ୍‌ର ଦୋହାଇ ଦେଇ

କଠୋର ହୋଇ ପାରନ୍ତ, ହିଂସୁକୁଟିଆ ହୋଇପାରନ୍ତ, କିନ୍ତୁ ଚଳନ୍ତ ସମାଜର ବାସ୍ତବ ସତ୍ୟକୁ ଶାସ୍ତି ଦେଇ ପାରିବେ କି ?···

ଏହି ବହୁଚର୍ଚ୍ଚିତ ଗପଟି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ଶତାବ୍ଦୀର "ଶ୍ରେଷ୍ଠ ଓଡ଼ିଆ ଗଳ୍ପସଂକଳନ" ରେ ଅନ୍ତର୍ଭୁକ୍ତ ହୋଇଛି ଏବଂ ଏହାର ସ୍ୱକୃତ ଇଂରାଜୀ ଅନୁବାଦ "Sangita's father" ମୋର ଇଂରାଜୀ ଗଳ୍ପସଂକଳନ "Death of an Indian"ରେ ଦେଖିବାକୁ ପାଇବେ ।

ଭୁବନେଶ୍ୱର, ନଭେମ୍ବର ୨୭, ୧୯୮୭



# ନିଶାପ

ଆମେ କଲେଜ ହତାର ବରଗଛତଳେ ଏକାଠି ହେଲୁ । ତା' ପରେ ହଷ୍ଟେଲ୍‌କୁ ଯାଇ ଅର୍ଜୁନ ଦାସର ରୁମ୍‌ରେ ଝୁହ୍ଲା ଓ ସିଙ୍ଗଡ଼ା ଖାଇଲୁ । ସେଠୁ ଜୟଗୋପାଳର ପ୍ରାସାଦତୁଲ୍ୟ ଘରକୁ ଯାଇ ତା' ପଢ଼ାଘରେ ରୁଣ୍ଡ ହେଲୁ, ଓ ତା'ର ନୂଆ ସିନେମା ରେକର୍ଡ଼ ବଜେଇଲୁ । ସବୁଥର ପରି ଆମେ ପ୍ରଫେସରମାନଙ୍କ ଦୋଷ-ଗୁଣର ଆଲୋଚନା କଲୁ, ସହପାଠିନୀମାନଙ୍କର ଦେହମନ ପାପପୁଣ୍ୟ ସମ୍ପର୍କରେ ଟୀପ୍‌ପଣୀ ଦେଲୁ, ଓ ମଝିରେ ମଝିରେ ମାର୍କସ୍ ଫ୍ରଏଡ଼୍ ଇତ୍ୟାଦିଙ୍କୁ ସ୍ମରଣ କଲୁ । କିନ୍ତୁ କେଉଁଥିରେ କିଛି ଜମିଲା ନାହିଁ । ଏ ହେଲା ତୃତୀୟ ରବିବାର, ବିଷ୍ଣୁ ଝୁଲିଯିବାର ମାନେ ଆତ୍ମହତ୍ୟା କରିବା ପରଠୁଁ ପ୍ରାୟ ତିନିସପ୍ତାହ ହୋଇଗଲା, ହେଲେ ପୂର୍ବର ଅବସ୍ଥା ଫେରି ଆସୁନାହିଁ ।

ସେ ଆମ ଦଳରେ ଥିଲା । ଅଧିକାଂଶ ସମୟ ଚୁପ୍ ହୋଇ ବସୁଥିଲା (ସେ କେବେ କେମିତି ଯୁକ୍ତି କରେ ଓ ସେତେବେଳେ ତା' ମୁହଁ ଲାଲ ହୋଇଯାଏ), ଆଉ ମାସକୁ ଥରେ ଖଣ୍ଡେ ଆମକୁ 'ବାଦସାହୀ' ହୋଟେଲରେ ଭୂରି ଭୋଜନ ଖୁଆଉଥିଲା । ତା'ର ଘର ଛୋଟ ନୁହେଁ; କିନ୍ତୁ ସେ ସେଠିକି ଆମକୁ ନିଏ ନାହିଁ, କହେ ଯେ ଅସୁବିଧା ହେବ । ଆମେ ସେଥିପାଇଁ ତାକୁ କେତେ ଚିଡ଼େଇଛୁ, ଧମକେଇଛୁ ଯେ ସେ ଆମ ଦଳର ଯୋଗ୍ୟ ନୁହେଁ । ତଥାପି ତା' ଘର ଭିତରକୁ ଯିବାର ସୌଭାଗ୍ୟ ଆମର ହୋଇନାହିଁ । ଯାହା ହେଉ ସେ ଆମକୁ ଜାବୁଡ଼ି ଧରିଥିଲା, ଏବଂ ତା' ଶୁକୁଟା ମୁହଁର ହରିଣୀ-ଆଖି ଅଥବା ବାଦ୍‌ସାହି' ମଟନ୍ ଚପ୍‌ର ମୋହ ଛୁଡ଼ି ହେଉ ନ ଥିଲା । ସେ ଥିଲା ଆମର ଭିତରୁ ଜଣେ ।

ଟୋକାଟା ରୋଗ ବଇରାଗରେ ମରିଯାଇ ଥିଲେ ନିଶ୍ଚୟ ଦୁଃଖ ହୋଇ ଥାଆନ୍ତା, କିନ୍ତୁ ବୋଧହୁଏ ଏତେ ବ୍ୟସ୍ତ ଲାଗୁ ନ ଥାଆନ୍ତା । ଏମିତି ହଠାତ୍ ପଳାଇ ଯାଇ, ଆତ୍ମହତ୍ୟା କରି ପକାଇ ସେ ଆମକୁ ଖୁଞ୍ଚା ଦେଉଛି, ହଇରାଣ କରୁଛି । ଯେପରି କି ଆମର ଏହି ଆଡ଼୍ଡା, ଏହି ଗପଗୀତର କୋଳାହଳ, ଏହି ତର୍କବିତର୍କ, କହିବାକୁ

ଗଲେ ଆମର ଏହି ଅଣ୍ଡରଗ୍ରାଜୁଏଟ୍, ତାରୁଣ୍ୟ ଓ ବନ୍ଧୁତ୍ୱରେ କିଛି ମୂଲ୍ୟ ନାହିଁ । ଅମେ ନିହାତି ଅଣ୍ଡରଗ୍ରାଜୁଏଟ୍ ନିହାତ ତରୁଣ, ନିହାତି କଞ୍ଚା ଓ ଫମ୍ପା ! ଆମେ ତା' ଜୀବନର ବଡ଼ କଥାଟିକୁ ବୁଝି ଲୁ ନାହିଁ । ତାକୁ ଧରି ରଖି ପାରିଲୁ ନାହିଁ ।

ସେଦିନ ଗୋଟିଏ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ଆଶ୍ଚର୍ଯ୍ୟ ଏହି ହିସାବରେ ଯେ ଅମେ ମୁରଲୀଠାରୁ ଏପରି ଉଗ୍ରତା ଓ ଉଦ୍ଦୀପନା ଆଶା କରି ନ ଥିଲୁ । ତା ଛଡ଼ା ବିଷ୍ଣୁ ମରିବାର ଏତେଦିନ ପରେ ତାର ଏପରି ଭାବ କାହିଁକି ଆସିଲା କେଜାଣି ! ମୁରଲୀ ଥଣ୍ଡା ପ୍ରକୃତିର ପିଲା । ଥଣ୍ଡା ଓ ପରିଚ୍ଛନ୍ନ । ତା'ର ପରିଚ୍ଛନ୍ନତା କେବଳ ବେଶଭୂଷାରୁ ଜଣାପଡ଼େ ନାହିଁ, ତା'ର ହାବଭାବ ଚାଲିଚଳଣରୁ ସୂଚିତ ହୁଏ । ସେ କଥା ସଜେଇ କରି କହେ, ଛନ୍ଦୋବଦ୍ଧ କରି କହେ । ସିଧା ହୋଇ ଚାଲେ । ନିଃଶବ୍ଦ ଉପଭୋଗ ସହ ଭୋଜନ ପୂରା କରେ । ଏବଂ ସେ କୌଣସି ପିଲାଳିଅମି ଅଥବା ଦୁଃସାହସ,—ଯଥା ଗର୍ବିଣୀ ମାଳିନୀର ନାଁରେ ବେନାମି ଚିଠି ପଠାଇବା, ଭୁରୁଙ୍ଗାମୁହାଁ ପ୍ରଫେସର୍ ଜି. ଏନ୍‌ଙ୍କ କ୍ଲାସରେ ଢୋଲ ବଜାଇବା ଇତ୍ୟାଦିର ପକ୍ଷପାତୀ ନୁହେଁ ।

ସେହି ମୁରଲୀ ସେଦିନ ରାଗିଲା । ଟେବୁଲ୍ ବାଡ଼େଇ ଚିତ୍କାର କଲା । ନାହିଁ, କିନ୍ତୁ ତା'ର ପ୍ରଚଣ୍ଡ ଆନ୍ତରିକତାରେ ଆମେ ଅବାକ୍ ହୋଇଗଲୁ । ଆମ ଆଖି ଝଲସି ଗଲା । ମନେହେଲା ଯେ ନଷ୍ଟ-ମୃତ ବନ୍ଧୁର କାୟା ବିବେକପରି ଆମ ଆଖି ଆଗରେ ଛିଡ଼ା ହୋଇଛି ଓ ଆମକୁ ତା'ର ପାଉଣା ମାଗୁଛି । ମୁରଲୀକୁ ମନା କରିବାର କ୍ଷମତା ଆମର ନ ଥିଲା ।

ଜର୍ଜିର ଘରେ ଆସର ଜମିଲା ବେଳକୁ ଗୋଟିଏ ଦୁଃଖାତ୍ମକ ଗୀତର ରେକର୍ଡ଼ ବାଜୁଥିଲା । ସେତିକିବେଳେ ମୁରଲୀ ହଠାତ୍ କହିଲା, "ଏ ହେଉଛି ବିଷ୍ଣୁର ରେକର୍ଡ଼ । ତା'ର ଗୀତ । ସେ ଯା'କୁ ଗୁଣୁ ଗୁଣୁ ହୋଇ ଗାଏ, ମୁଁ କେତେଥର ଶୁଣିଛି ।" ଏହା କହି ସେ ଜର୍ଜି ଆଡ଼କୁ ସ୍ଥିର ଦୃଷ୍ଟିରେ ଚାହିଁଲା ।

ତା'ପରେ ଜର୍ଜି ସମେତ ଆମ ସମସ୍ତଙ୍କୁ ଦୋଷ ଦେଲାପରି ସେ କହିଲା, "କେହି କାହିଁକି ତା ଗୀତ ଶୁଣିଲେ ନାହିଁ ? କେହି କାହିଁକି ତାକୁ ବଞ୍ଚିବାକୁ କହିଲେ ନାହିଁ ?"

ପୁଣି,—"ତମେ ବିଷ୍ଣୁକୁ ଯେତିକି ଜାଣିଛ, ମୁଁ ବି' ସେତିକି ଜାଣେ । କିନ୍ତୁ ମୁଁ ସେ ଝିଅକୁ ଜାଣେ, ଯାହାପାଇଁ ସେ ମଲା । ମୁଁ ସେ ଦି' ଜଣଙ୍କ ବାପାମାଆଙ୍କୁ ଜାଣେ । କହିବାକୁ ଗଲେ ମୁଁ ତା'ର ସମାଜର ଲୋକ । ତଥାପି ମୁଁ କିଛି କରି ପାରିଲି ନାହିଁ, କିଛି କରି ପାରିଲି ନାହିଁ— ।"

"ସେ କ'ଣ ବଞ୍ଚିବାକୁ ଚାହିଁ ନ ଥିଲା ? ଚାହିଁ ନ ଥିଲା ଯେ ସେ କାଲି ସକାଳେ ନିଦରୁ ଉଠିବ, ଦଶ୍ରୁଦନ ପରି ଅଙ୍କ କଷିବ, କେଉଁ ଅଜଣା-ଅଶୁଣା ମହା-ପୁରୁଷଙ୍କ ଜୀବନୀ ପଢ଼ିବ, ଆଉ ଚିନିଚମ୍ପା କଦଳୀ ଖାଇ ମନ ଖୁସିରେ ଗୁଣୁ ଗୁଣୁ ହେବ ? ହେଲେ ତା'ର ଚାହିଁବାକୁ କେହି ପଚାରିଲେ ନାହିଁ । ସେମାନେ ତାକୁ ମରିବାକୁ କହିଲେ ।"

"ସେ ମୋର ବେଷ୍ଟ୍ ଫ୍ରେଣ୍ଡ୍ ନୁହେଁ, ମୁଁ ତା' ପାଇଁ କାନ୍ଦୁ ନାହିଁ । ଆମର କାହାର କାନ୍ଦିବା ଦରକାର ନାହିଁ । କିନ୍ତୁ କଥା ହେଉଛି ଯେ ଆମେ କଣ ତା' ପାଇଁ କିଛି କରି ପାରିବା ନାହିଁ ? ଅନ୍ତତଃ ଏତିକି ବୁଝିବା ନାହିଁ ଯେ ସେମାନେ କିଏ,—ଯେଉଁମାନେ ତାକୁ ମାରି ଦେଲେ ?"

"ମୁଁ ବୁଝିବି । ମୁଁ ପ୍ରତିଜ୍ଞା କରୁଛି ଯେ ବୁଝିବି । ମୋ ସାଙ୍ଗରେ ଯିଏ ଅସୁଛ ଆସ । ତା'ପରେ ଆମେ ଏକାଠି ବସି ଅଭିଶାପ କରିବା । ଯେ ଦୋଷୀ ହୋଇଥିବ ତାକୁ,—ତାକୁ—

"ତାକୁ ଅଭିଶାପ ଦେବା ।"

ଆମେ ସମସ୍ତେ ନୀରବରେ ଏହି ନିଷ୍ପତ୍ତି ଗ୍ରହଣ କଲୁ ।

## ଦୁଇ

ତା'ପରେ ଅନେକଦିନ ତଦନ୍ତ ଓ ଅନୁସନ୍ଧାନ, ଅର୍ଥାତ୍ ଇଣ୍ଟରଭିଉ ଓ ଓଭାଏର-ଶଠି ପଢ଼ାରେ କଟିଲା । ମୁରଲୀ ପ୍ରଥମରୁ କହିଲା ଯେ ସେ ଦୂରେଇ ରହିବ, କାରଣ ତାକୁ ସେମାନେ ଜାଣନ୍ତି, ସାକ୍ଷୀପ୍ରମାଣରେ ବାଧା ହେବ । ବେଶ୍ ଭଲ କଥା । ଯେତେହେଲେ ସେ ଏ ବ୍ୟାପାରରେ ଆମର ଲିଡ଼ର୍, ତା'ର କାଦୁଅ ଘାଣ୍ଟିବା ଦରକାର ନାହିଁ ।

କିନ୍ତୁ ଏମିତି ହେଲା ଯେ ମୋ ଛଡ଼ା ଅନ୍ୟମାନେ ମଧ୍ୟ ଅଡ଼େଇ ହୋଇ ଗଲେ । ସେମାନେ ଦେଖିଲେ ଯେ ଏ ପ୍ରଣୟ-କାହାଣୀରେ କିଛି ନୂତନତ୍ୱ ନାହିଁ, ରୋମାନ୍ସ ସାମାନ୍ୟ, କଳା ଓ ନାଟକ ଘରେ ଶୂନ୍ । ସେମାନେ ଭାବିଲେ ଯେ ବସ୍ତୁର ମୃତ୍ୟୁ ପାଇଁ ସେ ନିଜେ ଦାୟୀ କିମ୍ବା ଅନ୍ୟମାନେ ଦାୟୀ, ସେ ବିଚାର ପରେ ହେବ, କିନ୍ତୁ ଏହି ଆତ୍ମହତ୍ୟା ଜିନିଷଟି ମୋଟେ ଖାପ୍ ଖାଉ ନାହିଁ । ଯେପରିକି କାଠର ମାଳରେ କିଏ ଗୋଟିଏ ଉଜ୍ଜ୍ୱଳ ନାଲି ପଥର ଗୁନ୍ଥି ଦେଇଛି । ସେମାନଙ୍କର ବସ୍ତୁ ଉପରେ ଦୟା ହେଲା,—ଲଯ୍ଯାଳମନ୍ତୁ, କେଦାରଗୌରୀ ପଣ୍ଡିତଙ୍କ ଅମ୍ବା ତାକୁ କ'ଣ କେବେହେଲେ ପାଖରେ ପୂରାଇବେ ?

ମୁଁ କିନ୍ତୁ ଠିକ୍ ସେହି କାରଣରୁ ଲାଗି ରହିଲି । କେବଳ ହେଉଛି ନୁହେଁ, ତା'ର ଜୀବନମରଣକୁ ନେଇ ଗୋଟିଏ ଗପ ତିଆରି କଲି । ମୁଁ ବୋଧହୁଏ ଜାଣିବାକୁ ଚାହୁଁଥିଲି, ଜଣାଇବାକୁ ଚାହୁଁଥିଲି ଯେ ଏମିତି ବି' ହୁଏ । ବିଷ୍ଣୁପରି ଗୋଟିଏ ପିଲା ସୁଶୀଳାପରି ଗୋଟିଏ ଝିଅକୁ ନ ପାଇ,—ନା ନା—, ପାଇବ ନାହିଁ ବୋଲି ଭାବି ଆତ୍ମହତ୍ୟା କରେ । ହେ ବିଧାତା ! ଏହି ଅଳୀକ ଅସଙ୍ଗତ ସଂସାରକୁ ନେଇ ମଣିଷ କ'ଣ କରିବ ?

ଯାହାହେଉ ମୁଁ ଯେଉଁ ଗପଟି ଲେଖିଲି ତା'ର ସାରାଂଶ ଏହି ପ୍ରକାର :

ବିଷ୍ଣୁ ବାପମାଅଙ୍କର ମଝିଆଁ ପୁଅ । ତା' ଉପରେ ଦୁଇଜଣ ଭାଇ ବାହାସାହା ହୋଇ ଚାକିରି ବ୍ୟବସାୟ କରି ଦୂରରେ ଅଛନ୍ତି, ତଳେ ଦୁଇଜଣ ଭାଇଭଉଣୀ । ମରିବା ବେଳକୁ ତାକୁ ଉଣେଇଶ ପୂରି କୋଡ଼ିଏ ଚାଲୁଥିଲା । ବିଷ୍ଣୁର ମାଆ ଲୁହ ପୋଛି କହୁଥିଲେ ଯେ ଆଉ ମାସେଟା ପରେ ତାକୁ କୋଡ଼ିଏ ପୂରି ଯାଇ ଥାଆନ୍ତା ।

ବିଷ୍ଣୁର ବାପା ଗୌରହରିବାବୁ ଜଣେ ସରକାରୀ କର୍ମଚାରୀ । ଉଚ୍ଚପଦସ୍ଥ ବୋଲି କହିଲେ ଅଯୁକ୍ତ ହେବ ନାହିଁ, କାରଣ ତାଙ୍କ ଉପରି ହାକିମମାନଙ୍କଠାରୁ ଅଧୀନସ୍ଥ କର୍ମଚାରୀମାନଙ୍କ ସଂଖ୍ୟା ଅଧିକ । କିନ୍ତୁ ତାଙ୍କୁ କେହି କେବେ ତ୍ରିପାଠୀ ସାହେବ ବୋଲି ଡାକିବାର ଶୁଣାଯାଇ ନାହିଁ, ସମସ୍ତେ ଡାକନ୍ତି ଗୌରହରିବାବୁ ନ ହେଲେ ତ୍ରିପାଠୀବାବୁ ।

ଗୌରହରିବାବୁଙ୍କ ଡ୍ରଇଂରୁମ୍ ବସ୍ତୁ ଓ ମର୍ଯ୍ୟାଦାରେ ଭରପୂର । ପ୍ରଥମେ ମନେହେବ ଯେ ବସ୍ତୁର ବହୁଳତା ଘରଟିକୁ ସଙ୍କୀର୍ଣ୍ଣ କରି ଦେଇଛି, ତେଣୁ ପୃଥିବୀ-ସାରର ଆଲୁଅ ପବନକୁ ଡାକି ଆଣିବାକୁ ଇଚ୍ଛା ହେବ । କିନ୍ତୁ କିଛିକ୍ଷଣ ପରେ ଆଗନ୍ତୁକ ବୁଝିବ ଯେ ଘରଟି ସଙ୍କୀର୍ଣ୍ଣ ନୁହେଁ, ସମ୍ପନ୍ନ । ଏଠି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ, ଧର୍ମ, ଅଫିସର ଓ ବଂଶାନୁଭବ, ଫାଇଲ୍ ଓ ଆର୍ଟ,—ସବୁଥିର ମର୍ଯ୍ୟାଦା ଠୂଳ ହୋଇଛି ଏବଂ ଜଣାଇ ଦେଉଛି ଯେ କେଉଁ ଗୋଟିକୁ ବାଦ୍ ଦେଲେ ଚଳିବ ନାହିଁ । ଗୌରହରିବାବୁ ଏକବାଗିଆ ନୁହନ୍ତି । ଏଠି ଦେଖିବାକୁ ପାଇବ ପିତା-ମହଙ୍କର ଉଇଖିଆ ଫଟୋ, ପିତାଙ୍କର ତୈଳଚିତ୍ର, ଅଫିସବାଲାଙ୍କ ସହିତ ଗ୍ରୁପ୍ ଫଟୋ, ଜଗନ୍ନାଥ-ବଳଭଦ୍ର-ସୁଭଦ୍ରା, ଭାରତବର୍ଷର ମାନଚିତ୍ର, ଖେଳଣା ରକେଟ୍, ସ୍ତ୍ରୀଙ୍କ ବାପଘରୁ ଆସିଥିବା ତାଙ୍କ ହାତ ତିଆରି ତୁଳାର ତାଜମହଲ (ତଳେ ଛୁଞ୍ଚି-ସୂତାରେ ଲେଖା,—କି ଥିଲି ଏ ରାଜ୍ୟ, କି ହୋଇଛି ଆଜ), ବଡ଼ପୁଅ ଶାନ୍ତିନିକେତନରୁ ଆଣିଥିବା ପ୍ରକୃତି ଓ ପୁରୁଷ, ଟେବୁଲ ଉପରେ ଗଦା ଫାଇଲ୍ ଓ ଗୋଟିକିଆ ସୋଫା ଉପରେ ଥୁଆ ହୋଇଥିବା ଆଜିକାର ଖବରକାଗଜ । ତେବେ କେହି

ଭଦ୍ରଲୋକ ନ ଆସିଲେ ଗୌରହରିବାବୁ ଦାଣ୍ଡଘରେ ବସନ୍ତି ନାହିଁ, ପାଖବାରଣ୍ଡାର ଆରାମ-ଚଉକିରେ ବସି ଓ ଶୋଇ ଫାଇଲ୍ କାମ କରନ୍ତି କିମ୍ବା ଖବରକାଗଜ ପଢ଼ନ୍ତି, ଖବରକାଗଜ ଛଡ଼ା ଆଉ କୌଣସି ବହିପତ୍ର ପଢ଼ନ୍ତି ନାହିଁ କି ପଢ଼ିବାର ପ୍ରୟୋଜନ ମନେ କରନ୍ତି ନାହିଁ ।

ଦିନେ ରାତି ନଅଟା ବେଳକୁ ସେ ସେହି ଆରାମଚଉକିରେ ପଡ଼ି ସକାଳ ଖବରକାଗଜର ଚର୍ବିତଚର୍ବଣ କରୁଥିଲେ, ଏହି ସମୟରେ ବିଷ୍ଟୁ ସେହି ବାଟ ଦେଇ ଘରଭିତରକୁ ଗଲା । ସେ କାଗଜରୁ ମୁହଁ ଉଠାଇ ପଚାରିଲେ, 'କିରେ ଏତେବେଳ-ଯାଏଁ କୋଉଠି ଥିଲୁ ?"

ତାଙ୍କ ପ୍ରଶ୍ନରେ ତେଜ ନ ଥିଲା, ଜିଜ୍ଞାସା ନ ଥିଲା । ଯେପରିକି ସେ ଗୋଟିଏ ଧରାବନ୍ଧା ପ୍ରଶ୍ନ ପଚାରୁଛନ୍ତି, ପଚାରିବା କଥା, ଯେ କୌଣସି ଉତ୍ତର ଦେଲେ ଚଳିବ । କିନ୍ତୁ ବିଷ୍ଟୁ କ୍ଷଣକପାଇଁ ବାପାଙ୍କ ମୁହଁକୁ ଚାହିଁଲା, ଜଣେ ଅଜ୍ଞାତ ଲୋକର ଅନଧିକାର ଚର୍ଚ୍ଚାରେ ବିବ୍ରତ ହେଲାପରି ଚାହିଁଲା, ଓ ଟାଣୁଆ ସ୍ୱରରେ କହିଲା, "ମୁଁ ଯାଇଥିଲି ମୋର ଜଣେ ସାଙ୍ଗଘରକୁ । ଭଗବାନ ପଣ୍ଡା ।"

"ସେ କିଏ ? କାହା ପୁଅ ?"

—ବାପା ମୋର କେଉଁ ସାଙ୍ଗକୁ ଜାଣନ୍ତି ଯେ ଏତେ କଥା ପଚାରୁଛନ୍ତି ? ଯାହା ହେଉ ମୋର ନ କହିବାର କିଛି ନାହିଁ । ବିଷ୍ଟୁ ସେକ୍ ଠୋକ୍ ଉତ୍ତର ଦେଲା, "ତା' ବାପା ପି. ଡବଲ୍ୟୁ. ଡି. ରେ କାମ କରନ୍ତି । ତାଙ୍କ ନାଁ ପ୍ରଫୁଲ୍ଲ ପଣ୍ଡା ।"

"ଓଃ ..." । ସବୁ ବୁଝିପାରିଲାପରି ଗୌରହରିବାବୁ ପୁଣି କାଗଜ ପଢ଼ି ବସିଲେ ଓ ବିଷ୍ଟୁ ଦେଉ ଚାଲିଆସିଲା ।

ପଢ଼ାଘରେ ପହଞ୍ଚି ବିଷ୍ଟୁ ତା ଟେବୁଲ ପାଖରେ ବସିପଡ଼ିଲା ଓ ଅସମ୍ଭାଳ ହୋଇ ତ୍ରିଭୁଜ ଚତୁର୍ଭୁଜ ଆଦି ଆଙ୍କି ଚାଲିଲା । ବାପା ମୋର କେଉଁ ସାଙ୍ଗକୁ ଜାଣନ୍ତି ଯେ ଏତେକଥା ପଚାରୁଛନ୍ତି ? ତାଙ୍କର କି ଅଧିକାର ଅଛି ? ସେ ମୋ ବିଷୟ କ'ଣ ଜାଣନ୍ତି ?

...ମୁଁ ଯଦି କହେ ଯେ ସେ ମୋର ସାଙ୍ଗ ନୁହେଁ, ସାଙ୍ଗର ସାଙ୍ଗ, ମୁକୁନ୍ଦର ସାଙ୍ଗ । ଆଉ ଯଦି କହେ ଯେ ମୁଁ ସେଠି ତା ଭଉଣୀକୁ ଦେଖିଲି; ତା ନାଁ ସୁଶୀଳା, ସେ ମୋତେ ଜଳଖିଆ ବାଢ଼ିଦେଲା, ଆମେ ଏକାଠି ବସି ତାସ୍ ଖେଳିଲୁ...ଭଗବାନ୍ କହିଲା ଯେ ମୁଁ ଗୋଟିଏ ଭାବୁକ ଲୋକ—ଖାଲି ଭାବେ ଆଉ ଅଙ୍କ କଷେ—ଓ ସେ ତାସ ଉପରୁ ଆଖି ଉଠେଇ ଚାହାଣୀରେ ହସିଲା...ଚାହାଣୀରେ ଏମିତି ହସି ହୁଏ

ବୋଲି ମୁଁ ଜାଣି ନ ଥିଲି ! ପିଲାଟା ଭାରି ଚଞ୍ଚଳ, ତା'ହାତରେ କୁଆଡ଼େ ଅଛି ଯେ ସେ କୋଡ଼ିଏବର୍ଷ ପୂର୍ବରୁ ମରିଯିବ, ଯଦି ବଞ୍ଚିଯାଏ ତାହାହେଲେ ଅଶୀ ବର୍ଷ ବଞ୍ଚିବ (ବାଜେ କଥା !), ସେ ଦେଖିବାକୁ ସୁନ୍ଦର ନୁହେଁ, ପଢ଼ାପଢ଼ିରେ ବିଶେଷ ଭଲ ନୁହେଁ, ତା'ର ଭଲ ଶାଢ଼ୀ ଖଣ୍ଡେ ନାହିଁ. କାହିଁକି ନା ତା'ର ବାପମାଆ ଗରିବ ଓ ଗୁଡ଼ିଏ ଭାଇଭଉଣୀ । ଭଗବାନ୍ ଚଡ଼େଇ କରି କହିଲା ଯେ ସେ ସକାଳେ କେହି ନ ଉଠିବା ଆଗରୁ ଏକାଥରକେ କାହିଁ କିଏ ଓ ଦିନଯାକ ଖେଁ ଖେଁ ହୋଇ ହସୁଥାଏ...

...ଧ୍ୟାତ୍ ! ବାପା ଏଥିରୁ କ'ଣ ପାଇବେ ? ତାଙ୍କୁ କହିଲେ କେତେ ନ କହିଲେ କେତେ ! ବାପା' ମୋତେ ଜାଣନ୍ତି ନାହିଁ । ସେ ଖାଲି ଜାଣନ୍ତି ଯେ ମୁଁ ତାଙ୍କ ମଝିଆଁ ପୁଅ ଓ ଅପେକ୍ଷା କରିଛନ୍ତି ମୁଁ କେବେ ପାଠପଢ଼ା ସାରି "ଯୋଗ୍ୟ" ହେବି ।......

...ଯାହାହେଉ ମୁଁ ସୁଶୀଲା ସାଙ୍ଗରେ ବାପାଙ୍କ କଥା କାହିଁକି ଏତେ ଭାବୁଛି ? ମୁଁ କାଲି ଗ୍ରାଜୁଏଟ୍ ହେବି । ମୁଁ କଅଣ ପିଲା ହୋଇଛି ? ମୋର ବୟସର ପିଲାମାନେ କେତେ କୁଆଡ଼େ ଲଭ୍ କରୁଛନ୍ତି । ମୁଁ ସେମିତିକା ପରିଜାପତିଆ ପ୍ରେମରେ ବିଶ୍ୱାସ କରେ ନାହିଁ, ମୋର ବୁଦ୍ଧି ବିଗ୍ୱର ଅଛି । ତେବେ ମୋର ଇଚ୍ଛା ମୁଁ ଯାହା କରିବି,—ସେଥିରେ ବାପା କଅଣ କରିବେ, କିଏ କ'ଣ କରିବ ? ମୁଁ ସୁଶୀଲା ଘରକୁ ହଜାରବାର ଯିବି, ମୋ ଇଚ୍ଛା ।

ସୁଶୀଲା ଓ ବାପା । ତଥାପି ସେ ଦୁଇଜଣଙ୍କର ବିପରୀତବିରୋଧୀ ଛବି ବିଷ୍ଣୁର ମନକୁ ଆସୁଥାଏ । ଯେପରିକି ଜଣକ କଥା ଭାବିଲେ ଅନ୍ୟ ଜଣକ ସହିତ ମୁକାବିଲା କରିବାକୁ ପଡ଼ିବ । ଯେପରିକି ଆଜିକାଲି ଏ ଝିଅଟି ନୂଆ ଧରଣର ପ୍ରାଣୀ, ତା'ର ପ୍ରାଣ ଏହି ବାପାଙ୍କ ସଂସାର ସାଙ୍ଗରେ ମିଶୁ ନାହିଁ, ଅଖାଡ଼ୁଆ ଲାଗୁଛି । ଏଠି ଲମ୍ବା ସାଦା କାନ୍ଥ, କାନ୍ଥରେ ପୁରୁଣା ଜାପାନୀ ଘଣ୍ଟା—ଦିନରାତି ଟିକ୍ ଟିକ୍ କରି ଚାଲିଛି । ଏଠି ଜଣେ ବାପା, ସେହି ଘଣ୍ଟା ଓ କାନ୍ଥପରି, ଯେ ମଝିରେ ମଝିରେ ପଚାରେ, "କିରେ, କୁଆଡ଼େ ଯାଇଥିଲୁ ?" ଆଉ ସେଠି ଜଣକର ଛଳ ଛଳ ଲୁହ ଖଲଖଲ ହସ । ଦୁଃଖିନୀ କରୁଣା । ଗ୍ରେଟିଆ ପ୍ରାଣ । ଘାସ ଫୁଲ ।

ବିଷ୍ଣୁର ମନେହେଲା ସେ ସୁଶୀଲାକୁ ଏଇଠିକି ଡାକିଆଣିବ, ଏଇ ପଢ଼ାଘରକୁ । ବାପା ତାକୁ ଆବିଷ୍କାର କରିବେ ଓ କାବା ହୋଇ ପଚାରିବେ,—"ଏ କିଏ ? କୋଉଠୁ ଆସିଲା ?" ତା'ପରେ କିନ୍ତୁ ସେ ଦାଣ୍ଡପିଣ୍ଡାକୁ ଚାଲିଯାଇ ଖବରକାଗଜ ପଢ଼ି ପାରିବେ ନାହିଁ ।

ବାପା ଚେଙ୍ଗେ ପାଇବେ । ସମ୍ଭାବିତ ଆନନ୍ଦ-କୋଧରେ ବିଷ୍ଣୁ ତା ଝିଭୁଜ ଚତୁର୍ଭୁଜ ଉପରେ ବଡ଼ ବଡ଼ ଫୁଲ ଅଙ୍କିବାକୁ ଲଗିଲା । ଫୁଲର ପାଖଡ଼ା ହବୁ ଅଗ୍ନିଶିଖା ପରି ଦେଖାଯାଉଥାଆନ୍ତି । ବିଷ୍ଣୁକୁ ଭଲ ଲଗିଲା ।

× × ରାତିରେ ଭାଇଭଉଣୀଙ୍କ ସାଙ୍ଗରେ ଏକାଠି ଖାଇ ବସିଲବେଳେ କେବଳ ସାନଭଉଣୀ ଉମି ଲକ୍ଷ୍ୟ କରିପାରିଲା ଯେ ବିଷ୍ଣୁ ସବୁଦିନ ଅପେକ୍ଷା ବେଶି ତରତର ହୋଇ ଅନ୍ନ ଗିଳିପକାଇଲା ପରି ଖାଉଛି । ସେ ଥଟ୍ଟା କରି ପଚାରିଲା, "କ'ଣ ବିଷ୍ଣୁଭାଇ, ସେକେଣ୍ଡ୍ ଶୋ ସିନେମା ଦେଖିଯିବ ବୋଲି ତରତର ହେଉଛ କି ?"

ବିଷ୍ଣୁ କିଛି କହିଲା ନାହିଁ, କିନ୍ତୁ ଉମିର ଏହି ଚଗଲାମିକୁ ପସନ୍ଦ କରିପାରିଲା ନାହିଁ । —ଗୋଟିଏ କୋଉ ପୁରୁଣା କଥା, ସେଥିକୁ ବସି ଦୋହରେଇ ହେଉଛି । କେତେ ମାସ ହୋଇ ଗଲାଣି, ସେ ସାଙ୍ଗମାନଙ୍କ ସାଙ୍ଗରେ ସେକେଣ୍ଡ୍ ଶୋ ଦେଖି ଯାଇଥିଲା । ବାପା ଜାଣିଲେ ଏବଂ ପ୍ରଥମ ଦେଖାରେ ପଚାରିଲେ, "କିରେ କାଲି ସେକେଣ୍ଡ୍ ଶୋ ଦେଖିଯାଇଥିଲୁ ? କାହିଁକି ?" ଆଉ କିଛି କଥା ନାହିଁ, ଉତ୍ତରର ଅପେକ୍ଷା ନ କରି ଚାଲିଗଲେ । ବିଷ୍ଣୁର ମନେହେଲା ଯେ ବାପା ଗାଳିଦେଲେ ନାହିଁ (ଏଡ଼େ ବଡ଼ ପିଲାକୁ କ'ଣ ଗାଳି ଦିଅନ୍ତେ ?) କିନ୍ତୁ ଜଣାଇଦେଲେ ଯେ ସେକେଣ୍ଡ୍ ଶୋ ଦେଖି ଯିବାର ମୂର୍ଖତା କେବଳ ବିଷ୍ଣୁ ପକ୍ଷରେ ସମ୍ଭବ । ବିଷ୍ଣୁ ନିଜକୁ ସଜାଡ଼ୁଥିଲା, ଏହି ସମୟରେ ଉମି ପଛରୁ ଏହି ଦୃଶ୍ୟର ମଜା ପାଇଲାପରି ତାଳି ମାରିଲା । ଗୋଟିଏ ବୋଲି ଗେଲବସର ଝିଅ କି ନା, ଭାରି ମୁହଁ ବଢ଼ା ହୋଇଯାଇଛି ।

ମାଆ ପ୍ରଭାବତୀ ଦେବୀ ପାଖରେ ଆସି ଛିଡ଼ା ହେଲେ, ଓ ଡାକ ଛାଡ଼ିଲେ, "ବିଷ୍ଣୁକୁ ଆଉ ଦି'ଟା ପୋଟଲ ଭଜା ଆଣି ଦିଅ, ଆଉ ଗଣ୍ଡାଏ ଭାତ ଦେଇଯାଅ— ।"

ବିଷ୍ଣୁ ମନେ ମନେ ମାତୃଗତ ମନୋଭାବର ତର୍ଜମା କଲା—ବିଷ୍ଣୁ ଦୁର୍ବଳିଆ ପିଲା (ବିଚ୍ଛରା ବେମାରିଆଟା !) । ସେ ତା'ର ଭାଇମାନଙ୍କ ପରି ନୁହେଁ, ନିଜ କଥା ନିଜେ ବୁଝିପାରିବ ନାହିଁ (ମଣିଆଁ ପୁଅଟିଏ ।) । ତା'ର ପଢ଼ା ଭଲ କି ସେ ଭଲ (ସେ ଏକାଟିଆବାଗ)··· । ତେଣୁଥିପାଇଁ ସେ ସବୁଦିନେ ଖାଇଲାବେଳେ ମୋ ପାଖରେ ଆସି ଛିଡ଼ାହୁଏ, ଅନ୍ୟଥାରେ ଛିଡ଼ା ହୁଏ, ଆଉ ଅମୁକ ଦିଅ ସମୁକ ଦିଅ ବୋଲି ପାଟି କରେ । ବଦଭ୍ୟାସ !

କିନ୍ତୁ ସେଦିନ ସେହି ପାତଳୀ ଗୋରୀ ସ୍ତ୍ରୀଲୋକ ଜଣକର ପରିଚର୍ଯ୍ୟା ବିଷ୍ଣୁକୁ ଘୃଣିଆ ଲଗିଲା ସିନା, ଖରାପ ଲାଗିଲା ନାହିଁ । ବରଂ ତା ମନ ଖୁଜୁବୁଜୁ ହେଲା । ମାଆକୁ କହି ଦିଅନ୍ତି । କିଛି କହିବାକୁ ନାହିଁ, ନ ଥାଉ, ମୁଁ ଯାହା କହିଲେ ବି ସେ ଶୁଣିବ । ଆଉ ଭାବି ବସିବ ଯେ ମୁଁ କାହିଁକି ଏତେ କଥା କହିଲି, ମୋ ମନରେ

କଅଣ ଅଛୁ । ମୁଁ ଠିକ୍ ଜାଣେ··· । ମାଅର ଚରଣ ହାତମୁଠାରେ, ଓ ତାକୁ ନେଇ ଖେଳ ହେବ,—ଏହି ଭାବରେ ସେ ଉଦ୍ଦୀପ୍ତ ହେଲା । ଯେପରି କି ସେ ଖେଳଟି ମାଆ ପ୍ରତି ଦୟା ଦେଖାଇ ପାରିବ । ଯେତେହେଲେ ମାଆ, ନାନ୍ନୀ ।

ସେଇଠୁଁ ସେ ହାତ ଧୋଇ ନ ସାରୁଣୁ ପ୍ରଭାବତୀ ଦେବୀଙ୍କୁ କହିଲା,—"ମାଆ ମୁଁ ଆଜି ଗୋଟାଏ ଜାଗାକୁ ଯାଇଥିଲି । ସେଠି ସେମାନେ ତୋ କଥା କହୁଥିଲେ ।"

ମାଆର କୌତୂହଳ ଜାଗରିତ କରି ତାକୁ ସାଙ୍ଗରେ ଧରି ବିଷ୍ଣୁ ଧୀରେସୁସ୍ଥେ ଆରମ୍ଭ କଲା, "ତାଙ୍କର ଗୁଡ଼ାଏ ଝିଅ, ଛଅ କି ସାତ । ବଡ଼ ଦୁଇଜଣ ବୋଧହୁଏ ବାହା ହୋଇ ଯାଇଛନ୍ତି, ବାକି ସମସ୍ତେ ସ୍କୁଲ କଲେଜରେ ପଢ଼ନ୍ତି । ଯୋଡ଼ାଏ ପୁଅ, ଜଣେ ମୋ ସାଙ୍ଗ, ମାନେ ଆମ କଲେଜରେ ପଢ଼େ । ତାଙ୍କ ଘର ଗ୍ରେଟ, କିନ୍ତୁ ବାରିପଟେ ବହୁତ ଜାଗା ଅଛି । ବାଇଗଣ, ଶାଗ କେତେ କ'ଣ ଲଗିଛି, ତା ପଛକୁ କେତେ ଗଛ ବୃକ୍ଷ, ଖୋଲା ପବନ—"

ବିଷ୍ଣୁ ସେଇ ବିସ୍ତୃତ ବାରିପଟକୁ ଅନୁମାନ କଲା ଓ ମୁଗ୍ଧ ହେଲା । ସେ ସବୁ ଜାଗା ତାଙ୍କର ନୁହେଁ, ଅନାମିକା । କିନ୍ତୁ ତାଙ୍କର ସବୁ ପୁଅଝିଅ ଆପଣା ସାଙ୍ଗସାଥୀଙ୍କୁ ଧରି ସେଠି ଟେଲେଇ ହୋଇ ଯାଇପାରନ୍ତି, ଖେଳନ୍ତି, ବୁଲନ୍ତି, ବଣଭୋଜି କରନ୍ତି, ବୁଦା ଆଢୁଆଳରେ କୁରୁ କୁରୁ ହୋଇ ହସନ୍ତି, ଓ କେବେ କେମିତି ଗୋଟିଏ ଠୋ ଠୋ ସ୍ୱାଧୀନ ହସ ଛନ୍ଦିଦିଅନ୍ତି ଆକାଶକୁ । ବାରିପଟେ ଶୁଖୁଥିବା ବିବିଧ ପ୍ରକାରର ଶାଢ଼ୀ, ଲୁଙ୍ଗି, ଶାୟା, ଚେଡ଼ି ମଧ୍ୟ ମନେପଡ଼ିଲା; ସେଥିରେ କଳ୍ପନା ଦୃଶ୍ୟ ସଙ୍କୁଚିତ ହେଲା ନାହିଁ, ଆତ୍ମୀୟତାରେ ସିକ୍ତ-ଆପ୍ଲୁତ ହେଲାପରି ଲାଗିଲା ।

"—ବିରାଟ ଜାଗା, ବଢ଼ିଆ !"

ପ୍ରଭାବତୀ ଦେବୀଙ୍କ ମୁହଁଟେ ସାମାନ୍ୟ ବିମୂଢ଼ତାର ଭାବ ଦେଖାଦେଲା, କିନ୍ତୁ, ସେ ଶୁଣି ରହିଲେ । ବିଷ୍ଣୁ ବାରିପଟୁ ଆରମ୍ଭ କରି ଝିଅଙ୍କ ଘର, ପୁଅଙ୍କ ଘର, ଅଫିସ୍‌ଘର (ତାଙ୍କର ଡାକ୍ତରଘର ନାହିଁ), ମାତ୍ର ତିନୋଟି ବଖରାକୁ ସସମ୍ମାନେ ବର୍ଣ୍ଣାଇଲା । ତା'ପରେ ଅଭ୍ୟର୍ଥନାର ପର୍ବକୁ ବଖାଣିଲା । ଯଥା—

"ଭଗବାନ୍‌ର ମାଆ ନିଜେ ତଳେ ସପ ପାରି ଦେଲେ, ଆଉ ମୋତେ ବସିବାକୁ କହିଲେ । ତାଙ୍କ ଝିଅ ସୁଶୀଳା ଜଳଖିଆ ଆଣି ଦେଲା, ତା' ପରେ ଚା' । ଭାରି କଡ଼ା ଚା', ସେମାନେ ଗିଲାସରେ ଖାଆନ୍ତି, କିନ୍ତୁ ମନ୍ଦ ଲାଗିଲା ନାହିଁ । ସେଥିରୁ ବୋଧହୁଏ ଟିକିଏ ଗୁଜୁରାତିର ବାସନା ଆସୁଥିଲା···।"

ବିଷ୍ଣୁ ଏକା ନିଃଶ୍ୱାସରେ କହିଗଲା । ସବା ଶେଷକୁ ଯୋଡ଼ି ଦେଲାପରି କହିଲା, "ତାଙ୍କ ମାଆ ତୋତେ ଜାଣନ୍ତି । ସେ କୁଆଡ଼େ ଆମ ବଡ଼ ମାଇଁଙ୍କର ଦାଦି ଝିଅ

ଭଉଣୀ । କହୁଥିଲେ ଯେ, ସେ ଅନେକ ଦିନୁ ଆମ ଘରକୁ ଆସିବେ ବୋଲି ହେଉଛନ୍ତି, କିନ୍ତୁ ଆସିପାରୁ ନାହାନ୍ତି ।"

ପ୍ରଭାବତୀ ଦେବୀ ଶୁଣି ରହିଲେ । ଶୁଣି ସାରିଲା ପରେ ଭାବିଲେ,—ମୋର ଆଉ କେହି ପିଲା ମୋ ଆଗରେ ଏମିତି ଗପନ୍ତି ନାହିଁ । ଏ ଟୋକାଟା ମଉନ ମୁହାଁ, କିନ୍ତୁ ହଠାତ୍ ମଝିରେ ମଝିରେ ଏମିତି ଗପିଯିବ ମୋ ଆଗରେ । କାହିଁକି ? ଏବେ ଥରେ ସେ ଗପୁଥିଲା ତା'ର ଅଙ୍କ ପ୍ରଫେସରଙ୍କ କଥା । ସେ ଅଙ୍କରେ ଭଲ କରେ ବୋଲି ପ୍ରଫେସର କୁଆଡ଼େ ତାକୁ ଭାରି ଭଲ ପାଆନ୍ତି ଓ ସେଇଥିଲାଗି ବଡ଼ଦିନ ଛୁଟିରେ ତାକୁ ଘରକୁ ଡାକ ନେଇ କେକ୍ ଖୁଆଇଥିଲେ । ତାଙ୍କ ସ୍ତ୍ରୀ ସୁନ୍ଦର ସିଲେଇ କରନ୍ତି, ସେ ଦକ୍ଷିଣୀ ଖ୍ରୀଷ୍ଟିୟାନ୍, ତାଙ୍କର ଗୋଟାଏ ବାଲୁ ପରି ବଡ଼ ରୁମା କୁକୁର ଅଛି, ଇତ୍ୟାଦି ଇତ୍ୟାଦି । ବିଷ୍ଟୁ ଛଡ଼ା ଆଉ କେହି ଏମିତି ଗପନ୍ତି ନାହିଁ ମୋ ଆଗରେ । ବିଷ୍ଟୁ ମୋ ଛଡ଼ା ଘରେ ଆଉ କାହା ସାଙ୍ଗରେ ଏମିତି ଗପେ ନାହିଁ । ଅଦ୍ଭୁତ ପିଲା । ବାହାସାହା ହେଲେ ବଦଳି ଯିବ—କେଜାଣି !...ତାଙ୍କ ମନରେ ସାମାନ୍ୟ ଦୁଃଖର ଭାବ ଆସିଲା ( ଏମିତି କେତେ ଥର ଆସେ ) ଯେ ବିଷ୍ଟୁର ଉଣେଇଶ ବର୍ଷର ଜୀବନରେ ବୋଧହୁଏ କିଛି ଅଭାବ କିଛି ଅପୂରଣ ରହିଗଲା, ଯେଉଁଥିପାଇଁ ତା'ର ଏପରି ସ୍ୱଭାବ ହୋଇଛି । କିନ୍ତୁ ତା'ଠାରୁ ବଳି ସେ ଅନୁଭବ କଲେ ମମତ୍ୱର ମାତ୍ରାଧିକ୍ୟ ଉତ୍ତାପ, ଅସ୍ଥି ମଜ୍ଜା ଭିତରକୁ ଟାଣି ନେଲେ,—ବିଷ୍ଟୁ କେବଳ ମୋରି ସାଙ୍ଗରେ ଏମିତି ଗପେ । ସେ ବଡ଼ ହେଲେ ବାହାସାହା ହେଲେ ମଧ୍ୟ ବଦଳିବ ନାହିଁ । ସେ ମୂଳରୁ ସେଇଆ...।

ତେବେ ବିଷ୍ଟୁର ଏହି ନୂଆ ପରିଚୟର ତାତ୍ପର୍ଯ୍ୟ ସେ ବୁଝି ପାରିଲେ ନାହିଁ । ଗୁଡ଼ାଏ ଝିଅ...ଗ୍ରେଟ ଘର, ବଡ଼ ବାଉ...ତଳେ ବସି ଗିଳସରେ ଚା' ଖାଆନ୍ତି... ଭାଉଜଙ୍କର ଦାଦି ଝିଅ ଭଉଣୀ...ତାଙ୍କ ପୁଅର ସାଙ୍ଗ ପାଇଁ ଏପରି ଉଚ୍ଛୁଳା ସ୍ନେହ...। ସେ କିଛି ଥଳକୂଳ ପାଇଲେ ନାହିଁ । ଶେଷକୁ ଶୋଇବାକୁ ଯିବା ଆଗରୁ ସ୍ୱାମୀ ଗୌରହରିବାବୁଙ୍କୁ ପଚାରିଲେ, "ଶୁଣିଲ,—ତମେ ଜଣେ ପ୍ରଫୁଲ୍ଲ ବାବୁଙ୍କୁ ଜାଣ, ପି. ଡବ୍ଲୁ. ଡି.ରେ କାମ କରନ୍ତି ?"

"ପ୍ରଫୁଲ୍ଲ ବାବୁ ? ନା, ମୁଁ ଚିହ୍ନି ନାହିଁ ।" କାହିଁକି, କଣ ହେଲା କି ?

"ନାଇଁ, କିଛି ନାଇଁ । ତାଙ୍କ ସ୍ତ୍ରୀ କହୁଥିଲେ ଯେ ସେ କୁଆଡ଼େ ମୋ ବଡ଼ ଭାଉଜଙ୍କର ଦାଦି ଝିଅ ଭଉଣୀ ହୁଅନ୍ତି ।"

"ଆଚ୍ଛା ?" ଗୌରହରି ବାବୁଙ୍କ ଖିଆଲ ହେଲା ଯେ ସେ ଏହି ନାଁଟିକୁ ଏବେ କେଉଁଠି ଶୁଣିଛନ୍ତି । କିନ୍ତୁ ସେ ମନେ ପକାଇବାକୁ ଚେଷ୍ଟା କଲେ ନାହିଁ ।

× × ଏହି ଘଟଣାର ପ୍ରାୟ ପାଞ୍ଚ ମାସ ପରେ । ସେତେବେଳକୁ ପ୍ରଫୁଲ୍ଲ ବାବୁଙ୍କ ଘରକୁ ବିଷ୍ଣୁର ଯିବା ଆସିବା ଯଥେଷ୍ଟ ବଢ଼ି ଗଲଣି ଓ ସୁଶୀଳା ତାକୁ 'ବିଷ୍ଣୁ ବାବୁ' ପରିବର୍ତ୍ତେ 'ବିଷ୍ଣୁ ଭାଇ' ବୋଲି ଡାକିବାକୁ ଆରମ୍ଭ କଲଣି ।

ଦିନେ ଗୋଟିଏ ଆଶ୍ୱିନ ସକାଳକୁ ପଛ କରି ସୁଶୀଳା ଲୁହ ଗଡ଼ାଇଲା । ପରିବାରର ଅଧିକାଂଶ ନିଦରୁ ଉଠି ନାହାନ୍ତି,—କେବଳ ବାପା ମନ୍ଦିରକୁ ଯାଇଛନ୍ତି ଓ ଭଗି ଭାଇ ପିଞ୍ଜରାର ଶାରୀକୁ ଖଟେଇ ହେଉଛି ।

ଏଥିରୁ ବୁଝିବାକୁ ହେବ ନାହିଁ ଯେ ଭଗବାନ ଯାହା କହୁଥିଲା ସତ—ଯେ ସୁଶୀଳା ସକାଳେ କେହି ନ ଉଠିବା ଆଗରୁ କାନ୍ଦେ ଓ ଦିନସାରା ହସେ । କହିବାକୁ ଗଲେ ତା'ର ସାବଲୀଳ ହସ ଓ ସହଜ କାନ୍ଦରେ କିଛି ବିଶେଷତ୍ୱ ନାହିଁ, ଏହି ବୟସର ସବୁ ଝିଅମାନେ ଦୁଣା ଅଧିକ ସେମିତି ହୁଅନ୍ତି । କିନ୍ତୁ ଆଜିକା କଥା ଅଲଗା । ଆଜି ସେ ନିଜର ଜୀବନ ଯୌବନକୁ ନିର୍ମଳ ଦର୍ପଣରେ ଦେଖି ନେଲାପରି କାନ୍ଦିଲା । ବିଜ୍ଞଜନ ପରି ଶେଷ କଥାର ସୀମା ଦେଖିବାକୁ ପାଇ ହତାଶାର ବେଦନ କଲା । ଭଗବାନ ମଧ୍ୟ ଶାରୀ ପାଖରୁ ଥକି ଯାଇ ଭଉଣୀକୁ ଦେଖିଲା ଓ ଭାବିଲା ତାକୁ ପ୍ରକୃତରେ କଷ୍ଟ ହେଉଛି ।

...ବିଷ୍ଣୁ ଭାଇ ପ୍ରାୟ ମାସେ ହେଲା ଆସି ନାହାନ୍ତି । ବୋଧହୁଏ ଆଉ ଆସିବେ ନାହିଁ ।

ସେ ଶୋକ କରୁ ନ ଥିଲା—ଯେ ବିଷ୍ଣୁ ଭାଇ ନ ଆସିଲେ ତା'ର ଜୀବନ ଶୂନ୍ୟ ହୋଇ ରହିବ । ବିଷ୍ଣୁ ଭାଇଙ୍କ ପୂର୍ବରୁ କେତେ ଆସିଛନ୍ତି, ତାଙ୍କ ପରେ ପୁଣି କେତେ ଆସିବେ । ଡେଙ୍ଗା, ଗେଡ଼ା, ମୋଟା, ପାତଳା, ଫାଜିଲ୍, ପୋତା ମୁହାଁ— । ଏ ଘରେ ଟୋକାମାନଙ୍କ ଅଭାବ ହେବନାହିଁ, ଭଗିଭାଇର ଅନ୍ତରଙ୍ଗ ସାଙ୍ଗ । କିନ୍ତୁ ଏ ଆସିବା ଯିବା କଣ ସରିବ ନାହିଁ ? ସୁଶୀଳାର ମନେ ହେଲା ଯେ ଏ ହେଉଛି ପ୍ରତିଦିନର ଉଦୟ ଅସ୍ତ, ପ୍ରତ୍ୟହର ବୋଝ, ଜୀବନଯାପନର କ୍ଲେଶ, ଏଥିରୁ ନିସ୍ତାର ନାହିଁ । କାହିଁକି ନା ବାପାଙ୍କର ଛଅଟି ଝିଅ, ଦୁଇ ଜଣ କୌଣସି ମତେ ବାହା ହୋଇ ଯାଇଛନ୍ତି । କାହିଁକି ନା ବାପା ସବୁଦିନେ ମନ୍ଦିରକୁ ଯାଆନ୍ତି, ଉଧାର ଉପରେ ଉଧାର କରି ଯାଆନ୍ତି ଓ ବାହୁ ଟେକି କହନ୍ତି 'ଗୋବିନ୍ଦଙ୍କ ଇଚ୍ଛା ।' କାହିଁକି ନା ମୁଁ ସୁନ୍ଦର ନୁହେଁ, ଆମେ କେହି ସୁନ୍ଦର ନୁହଁ ।

ସେ ବାସି ବିଛଣାର ମଇଳା ମୋକଣ୍ଡ ସ୍ତୂପରୁ ଉଠି ଆସୁଥିବା ଭଉଣୀମାନଙ୍କୁ ଦେଖିଲା ଓ ତା'ର ମନ ବଳାକା ଚକ୍ରଭାରେ ଭାଙ୍ଗିଗଲା । ସୁଦୂର ମୁମୂର୍ଷ, ଜହ୍ନକୁ ଡାକ ଛାଡ଼ିଲା ପରି ସେ ଭାବିଲା,—ଏ ସମାଜରେ ଲଭ୍ ବୋଲି କ'ଣ କିଛି ଜିନିଷ ନାହିଁ ?

ଦୈନନ୍ଦିନ କୋଳାହଳ ଆରମ୍ଭ ହୋଇଗଲା । ସୁଲି ଦର୍ପଣ ପାଇଁ ପାନି କରୁଛି । ନିଦରୁ ଉଠି ପ୍ରଥମେ ମୁହଁର ବ୍ରଣ ନ ଚିପିଲେ ତା'ର ଶାନ୍ତି ଆସେନାହିଁ । ମାଆ ଗୋଟିଏ ସୁଖବର ଦେଲାପରି ସମସ୍ତଙ୍କୁ ଥରେ ଥରେ କହୁଛି ଯେ ତା'ର ଅଣ୍ଟା ପୁଣି ଦରଜ ହେଲାଣି । ମିଲି ଧମକଉଛି ଯେ ସମସ୍ତେ ଏକାଠି ଚା' ଖାଇବ ତ ଆସ, ସେ ଏତେଥର ଗିଲାସ ଧୋଇ ପାରିବ ନାହିଁ । ସବା ସାନ ଭଉଣୀ ପୁଷି କାନ୍ଥ ବାଡ଼କୁ ଶୁଣେଇ କରି କହୁଛି ଯେ ସେ ଆଜି ସ୍କୁଲକୁ ଯିବନାହିଁ, ତା'ର ଚଟି ଏକଦମ୍ ଛିଣ୍ଡି ଗଲାଣି । ମେଟ୍ରିକ୍‌ଫେଲ୍‌ରାଣୀ ବାରି ଦୁଆର ମୁହଁରେ ଛିଡ଼ା ହୋଇ କହି ଚାଲିଛି ଯେ ତା'ର ଡେରି ହେଉଛି, କୋଉଥି ପାଇଁ ଭଗବାନ ଜାଣନ୍ତି । ଉଃ ? ଏ ଘରେ ପାଞ୍ଚମିନିଟ୍ ଏକୁଟିଆ ବସି ଭାବି ହେବ ନାହିଁ । ଏ ଘରେ କେହି କିଛି ଭାବନ୍ତି ନାହିଁ ।

···ପଳେଇ ଯିବି । କେଉଁଠିକି ପଳେଇବ ? ବାପାଙ୍କର ଅଫିସ୍ ଘରକୁ ? ନା, ସେଠି ଭଗି ଭାଇ ପଢ଼ୁଛି, ଆଉ ଭାଇ ଆସି ପହଞ୍ଚି ଯିବ,—ଗୋଟିଏ ଭଙ୍ଗା ଟେବୁଲ ଯୋଡ଼ିଏ ଚଉକି । ବାରିପଟରେ କେଉଁ ଗଛ ମୂଳକୁ ଚାଲିଯିବ ? ନା, ମୁଁ ଏହିକ୍ଷଣି 'ପ୍ରକୃତି' ସାଙ୍ଗରେ କଥାଭାଷା ହୋଇ ପାରିବ ନାହିଁ, ଫୁରୁସତ୍ ନାହିଁ । ଏଇ ଭଲ । ଏଇ ଶୋଇବା ଘର, ମାଆ ଓ ଅଭିଆଡ଼ି ଝିଅମାନଙ୍କର ରୁମ୍ । ଏଇ ଲୁଗାପଟାର ଆବର୍ଜନା, ଏଇ କଚରମଚର, ରୋଷେଇ ଘରୁ ପଶି ଆସୁଥିବା ଧୂଆଁ (ଚା, ପାଣି ଫୁଟା ହେଉଛି ), କେଶବର୍ଦ୍ଧିନୀ ତେଲର ବାସ୍ନା··· । ଆଉ କେଉଁଠିକି ଯିବ ? ସୁଶୀଳା ଝିଅର ଆଉ କେଉଁଠି ଥାନ ଅଛି ? ସେ ଏଇଠି କାନ୍ଦିବ ଓ ଭାବିବ । ସୁଶୀଳା ନାଟକୀୟ ଭଙ୍ଗୀରେ ନିଜକୁ କହିଲା—ଅବସ୍ଥାରେ ଟ୍ରାଜେଡିକୁ ଚହଲାଇବା ପାଇଁ ।

କେହି ତାକୁ ପଚାରିଲେ ନାହିଁ ଯେ ସେ ବାସି ବିଛଣା ଉପରେ କାହିଁକି ଏମିତି ବସି ରହିଛି । ବୋଧହୁଏ ନ ପଚାରିବା ଦ୍ୱାରା ସହାନୁଭୂତି ଦେଖାଇଲେ । ମିଲି ନିଜେ ଆସି ଗିଲାସରେ ଗିଲାସେ ଚା ରଖି ଦେଇଗଲା ।

···ବିଷ୍ଣୁ ଭାଇ କାହିଁକି ଆସୁ ନାହାନ୍ତି ? ସେ ଅନ୍ୟମାନଙ୍କ ପରି ନୁହନ୍ତି । ସେ ଅନ୍ୟମାନଙ୍କ ପରି ଖୋସାମତିଆ କଥା କହନ୍ତି ନାହିଁ, କିମ୍ବା ନିଜ ବଡ଼ପଣକୁ ସମ୍ଭାଳିଲା ପରି ଜାକିଜୁକି ହୋଇ ବସନ୍ତି ନାହିଁ । କିନ୍ତୁ ସେ ବେଳେ ବେଳେ ଏମିତି ମୋତେ ଗୋଡ଼ରୁ ମୁଣ୍ଡଯାଏ ଚାହାନ୍ତି ଯେ ମୁଁ ଅପ୍ରସ୍ତୁତ ହୋଇଯାଏ । ଯେତେ ଯେପରି ସେ ମୋ ଭଳି ଗୋଟିଏ ଝିଅକୁ ଆଗରୁ କେବେ ଦେଖି ନାହାନ୍ତି । କ'ଣ ଦେଖନ୍ତି,— ମୁଁ ଏତେ ଅସୁନ୍ଦର ? ଶାଢ଼ୀ ତଳୁ ଛିଣ୍ଡା ସାୟା ବାହାରି ହୋଇ ଯାଉଛି ? ନା କହିବାକୁ ଚାହାନ୍ତି ଯେ ମୋ ଯୌବନରେ ସତ କେତେ ମିଛ କେତେ ? ଉଃ,—ନିଜେ ଯୋଉ ତ ସୁନ୍ଦର ! ଟାକୁଆ ଗାଲ, ଉଚ୍ଚ କପାଳ । ଧୋଡ଼େଇ ହେଲାପରି ଚାହାଣୀ କିନ୍ତୁ ନରମ, ଅତି ନରମ— ।

—ନା, ସେ ମୋଟେ ସେମିତି ନୁହନ୍ତି, ଅଭଦ୍ର ନୁହନ୍ତି । ସେ ଭାରି ସାଦାସିଧା ସରଳ । ଥରେ ଗୋଟିଏ ଗୁଡ଼ କଥା କହିଲା ପରି କହିଲେ. "ମୋତେ ତୁମ ଘରକୁ ଆସିବାକୁ ଭଲ ଲାଗେ ।" ମୁଁ ହସି ପକାଇଲି; କିନ୍ତୁ ସେ ଗମ୍ଭୀରତାର ଢଙ୍ଗରେ କହିଲେ, "ଏଠିଥିଲେ ମୋତେ ଲାଗେ ଯେ ପୃଥିବୀରେ ସମସ୍ତେ ଏକାଠି ଅଛନ୍ତି, କେହି କାହାଠୁଁ ଦୂରେଇ ଯାଇ ନାହାନ୍ତି ।" ଯାର ମାନେ କଅଣ ? ସବୁଠି ଲୋକମାନେ ଖଣ୍ଡି ଖଣ୍ଡି ହୋଇ ଅଛନ୍ତି, ଆଉ ଆମେ ଏଠି ମେଞ୍ଚାମେଞ୍ଚି ହୋଇ ଅଛୁ ?

"···ସେ ଅଫିସ ଘରେ ବସିବାକୁ ଚାହାନ୍ତି ନାହିଁ । ଅଧିକାଂଶ ସମୟ ଏଇ ଘରେ କାନ୍ଥକୁ ଲାଗି କରି ତଳଟାରେ ଚସି ପଡ଼ନ୍ତି, କଥାବାର୍ତ୍ତା ହେଲାବେଳେ ଅନ୍ୟ-ମନସ୍କ ହୋଇ ଚୂନଛଟାଲାଗା ପାନପେଟରା, ଟ୍ରଙ୍କ ଉପରୁ ଓହଳି ପଡ଼ିଥିବା ମଶାରି, ସତରଞ୍ଜି, କମ୍ବଳ ପୁଡ଼ିରେ ବନ୍ଧା ବସ୍ତାନିରେ ଧୀରେ ଧୀରେ ହାତ ବୁଲାନ୍ତି । ସତେ ଯେପରି ସେ ଗୋଟିଏ ଯୁବତୀର ଦେହକୁ ଆଉଁଷୁଛନ୍ତି !

···ଥରେ ମୋ ଦେହରୁ ଗମ ଗମ୍ ଝାଳ ବହୁଥିଲା । ତାକୁ ଦେଖି ତାଙ୍କ ଚକ୍ଷୁସ୍ଥିର ହୋଇଗଲା ଓ ସେ କହିଲେ, "ତୁମ ଦେହରୁ ଏତେ ଝାଳ ବହେ ?" ଆଉ କେହି ହୋଇଥିଲେ ଏମିତିକା ମନ୍ତବ୍ୟରେ ରାଗିଯାଇ ଥାଆନ୍ତା । ହେଲେ ମୁଁ ରାଗିଲି ନାହିଁ । ମୋର ଖିଆଲ ହେଲା ଯେ ସେ ଝାଳକୁ କୁତ୍ସିତ ବୋଲି ଭାବୁ ନାହାନ୍ତି, ବୋଧହୁଏ ଭାବୁଛନ୍ତି ଯେ ତାହା ହେଉଛି ବେଦନାର ନିଗିଡ଼ା ରସ । କାରଣ ମୁଁ ଦେଖିଲି ଯେ ତାଙ୍କ ହାତ ଚାଲି ଯାଉଛି ପାଖରେ ଥିବା ଗୋଟାଏ ତଉଲିଆ ଆଡ଼କୁ । ଭାଗ୍ୟ ଭଲ ମୁଁ ସାଙ୍ଗେ ସାଙ୍ଗେ ଶାଢ଼ୀ ପଣତରେ ଝାଳ ପୋଛିଦେଲି । ନ ହେଲେ ହୁଏତ—

ଯଥାକ୍ରମେ ସୁଶୀଳା ତାର ସ୍ଥାଣୁଭାବ ତ୍ୟାଗକରି ଉଠି ଠିଆ ହେଲା । କାମରେ ଲାଗିବାକୁ ହେବ । ଭଉଣୀମାନେ ସର୍ବଂସହା ନୁହନ୍ତି ।

କିନ୍ତୁ କାମ କରୁ କରୁ ବିଷ୍ଣୁ ଭାଇଙ୍କର ବିଚିତ୍ର ସ୍ୱଭାବର ବିଭିନ୍ନ ନମୁନା ତାର ମନେ ପଡ଼ି ଯାଉଥାଏ ।

···ସେ ବଡ଼ଲୋକ ପିଲା ? ଭଗିଭାଇ କହୁଥିଲା ଯେ ସେମାନେ ଆମ ପରି ନୁହନ୍ତି କିନ୍ତୁ ସେମିତି କିଛି ବଡ଼ଲୋକ ନୁହନ୍ତି । କେତେ ବଡ଼ଲୋକ ? ବ୍ୟବହାରରୁ କିଛି ଜଣା ପଡ଼ୁନାହିଁ ତ ? ମଣ୍ଟୁଭାଇ, ମୀରେନ୍ ଦା', ବଶୁବାବୁ—ସେମାନେ କିଛି କମ୍ ନୁହନ୍ତି । ସେମାନେ ଆସିଲେ, ତାଙ୍କ ବିଜୁଳିର ଛଟା ଦେଖାଇ ଚାଲିଗଲେ । ସେ ବିଜୁଳିରେ ସୁନା କେତେ ରଙ୍ଗ କେତେ ଭଗବାନ ଜାଣନ୍ତି । କିନ୍ତୁ ଏଇ ବିଷ୍ଣୁଭାଇ ଜଣକ ଚମକେଇ ଦେଇ ପାରିନାହାନ୍ତି, ଚମକେଇବାକୁ ଚାହିଁ

ନାହାନ୍ତି । ସେ ଅନ୍ଧାର ଭିତରେ କଣ ଖୋଜୁଥିଲେ, ଅଣ୍ଡାଳ ହେଉଥିଲେ ପିଲାଙ୍କ ପରି, କାଳେ କୋଉ ନିଧି ମିଳିଯିବ ପରି !

ସୁଶୀଳାର ପୁଣି ମନେ ପଡ଼ିଗଲା, ସେ କେମିତି ବେଳେବେଳେ ଗୋଡ଼ରୁ ମୁଣ୍ଡଯାଏ ଚାହାନ୍ତି । ଏବଂ ହଠାତ୍ ତା'ର ମନେ ହେଲା, (ତା'ର ଛାତି ଦମ୍ ଦମ୍ ହୋଇ ଉଠିଲା) ଯେ ସେ ସେହି ଚାହାଣୀର ଉତ୍ତର ଦେଇ ପାରିବ ।

ବିଷ୍ଣୁଭାଇ ଯଦି ଆସନ୍ତେ, ଫେରିଆସନ୍ତେ ! ଆକସ୍ମିକ ଆତୁରତାରେ ସୁଶୀଳା ଲୁଗାପଟା ସଜାଡ଼ି ପାରିଲା ନାହିଁ, ମାଆ କେଉଁଥିପାଇଁ ଡାକ ହେଉଛି, ଶୁଣି ପାରିଲା ନାହିଁ । ଯେପରିକି ଏହି ହେଉଛି ଲଭ୍ ! ସେ ଏତେଦିନକେ ବିଷ୍ଣୁ ଭାଇଙ୍କୁ ବୁଝିଛି । ବୁଝିଛି ଯେ ସେ ଏମିତିକା ଲୋକଟିକୁ ବାନ୍ଧି ଦେଇ ପାରିବ, ଆଜୀବନ ଆମରଣ ବାନ୍ଧି ଦେଇ ପାରିବ ···ଏହି ଶୋଇବା ଘରର ଖଟ ଖୁରାରେ ମୋ ପାଲଟା ଶାଢ଼ୀର ଦଉଡ଼ିରେ । ଅବଶ୍ୟ ସେ କଷ୍ଟ ପାଇବେ, କିନ୍ତୁ ମୁକୁଳିବାକୁ ଚାହିଁବେ ନାହିଁ··· ।

କଳ୍ପନାରେ ବିଷ୍ଣୁଭାଇଙ୍କର ବନ୍ଧା ହେବା ଦୃଶ୍ୟ ତାକୁ ମୋହିତ କଲା, ସେ ସେଇଠି ଅଟକି ରହିଲା । ସେହି ନରମ ଅଶିର ପୀଡ଼ା—ଇସ୍ । ଏଇୟାକୁ ତ ଲଭ୍ କହନ୍ତି । ବିଷ୍ଣୁଭାଇ, ତୁମେ ନିଶ୍ଚୟ ଆସିବ—ନୁହେଁ ? ···ତା'ର ଶ୍ୟାମଳ ମୁହଁରେ ଥିବା ସ୍ୱଚ୍ଛ ଆଖି ଦୁର୍ବିନୀତ ଆନନ୍ଦରେ ଝଲି ଉଠିଲା । ଯେପରିକି ସେ ଜାଣିଛି ଯେ ବିଷ୍ଣୁଭାଇ ଆସିବେ ଓ ଠାକି ରହିଛି ସେ ଆସିବା ମାତ୍ରେ ହିଁ—

"ସୁଶୀ ଅପା ! ସୁଶୀ ଅପା !" ପୁଷି ଦାଣ୍ଡ ଆଡ଼ୁ ଚିତ୍କାର କରି ଆସିଲା । ହେଲେ ସେ କିଛି କହିବା ଆଗରୁ ସୁଶୀଳା ଜାଣି ପାରିଥିଲା ଯେ ବିଷ୍ଣୁଭାଇ ଫେରି ଆସିଛନ୍ତି । କିନ୍ତୁ ବର୍ତ୍ତମାନ ତା' ମନରେ ଅସ୍ଥିରତାର ଚିହ୍ନ ଲେଶମାତ୍ର ନ ଥିଲା, ତାର ମନେ ହେଲା ଯେ ସେ ସାମାନ୍ୟ ଷୋଳବର୍ଷୀ ନୁହେଁ, ସେ ପ୍ରେମବଳରେ ବଳୀୟା ହୋଇ ଯାଇଛି, ସେ ଜାଣିଛି ଏହାପରେ ଠିକ୍ କଣ କରିବାକୁ ହେବ ।

ବିଷ୍ଣୁ ପାଖରେ ଆସି ମନ୍ଥରଗତିରେ ସୁଶୀଳା ତୃପ୍ତ-ଅଳସ ଭଙ୍ଗୀରେ ଗ୍ରୀବା ଉତ୍ତୋଳନ କଲା ଓ କହିଲା, "କଣ ବିଷ୍ଣୁ ଭାଇ—ଏତେ ଦିନକେ ମନେ ପଡ଼ିଲା ?"

"ଠିକିଏ ପଢ଼ାପଢ଼ିର ପ୍ରେସର୍ ପଡ଼ି ଯାଇଥିଲା । ତା' ଛଡ଼ା,—ତା'ଛଡ଼ା, ମୁଁ ଦେଖୁଥିଲି ଯେ ଏ ଘରକୁ କେତେଦିନ ନ ଆସି ରହିପାରିବି" । ବିଷ୍ଣୁ ହସ ହସ ମୁହଁରେ କହିଲା ।

"କଣ ଦେଖିଲ ?" ସୁଶୀଳାର ମୁହଁରେ ହସ ନ ଥିଲା । ମାନେ ସେ ଏତେ ସହଜରେ କ୍ଷମା କରି ପାରିବନାହିଁ ।

—ନା, ସେ ମୋଟେ ସେମିତି ନୁହନ୍ତି, ଅଭଦ୍ର ନୁହନ୍ତି । ସେ ଭାରି ସାଦାସିଧା ସରଳ । ଥରେ ଗୋଟିଏ ଗୁପ୍ତ କଥା କହିଲା ପରି କହିଲେ. "ମୋତେ ତୁମ ଘରକୁ ଆସିବାକୁ ଭଲ ଲାଗେ ।" ମୁଁ ହସି ପକାଇଲି; କିନ୍ତୁ ସେ ଗମ୍ଭୀରତାର ଢଙ୍ଗରେ କହିଲେ, "ଏଠିଥିଲେ ମୋତେ ଲାଗେ ଯେ ପୃଥିବୀରେ ସମସ୍ତେ ଏକାଠି ଅଛନ୍ତି, କେହି କାହାଠୁଁ ଦୂରେଇ ଯାଇ ନାହାନ୍ତି ।" ଯାର ମାନେ କଅଣ ? ସବୁଠି ଲୋକମାନେ ଖଣ୍ଡି ଖଣ୍ଡି ହୋଇ ଅଛନ୍ତି, ଆଉ ଆମେ ଏଠି ମେଞ୍ଚାମେଞ୍ଚି ହୋଇ ଅଛୁ ?

"...ସେ ଅଫିସ ଘରେ ବସିବାକୁ ଚାହାନ୍ତି ନାହିଁ । ଅଧିକାଂଶ ସମୟ ଏଇ ଘରେ କାନ୍ଥକୁ ଲାଗି କରି ତଳଟାରେ ବସି ପଡ଼ନ୍ତି, କଥାବାର୍ତ୍ତା ହେଲାବେଳେ ଅନ୍ୟମନସ୍କ ହୋଇ ଚୂନଛଟାଲଗା ପାନପେଟରା, ଟ୍ରଙ୍କ ଉପରୁ ଓହଳି ପଡ଼ିଥିବା ମଶାରି, ସତରଞ୍ଜି, କମ୍ବଳ ପୁଷ୍ଠିର ବନ୍ଧ ବସ୍ତାନିରେ ଧୀରେ ଧୀରେ ହାତ ବୁଲାନ୍ତି । ସତେ ଯେପରି ସେ ଗୋଟିଏ ଯୁବତୀର ଦେହକୁ ଆଉଁସୁଛନ୍ତି !

...ଥରେ ମୋ ଦେହରୁ ଗମ ଗମ୍ ଝାଳ ବହୁଥିଲା । ତାକୁ ଦେଖି ତାଙ୍କ ଚକ୍ଷୁସ୍ଥିର ହୋଇଗଲା ଓ ସେ କହିଲେ, "ତୁମ ଦେହରୁ ଏତେ ଝାଳ ବହେ ?" ଆଉ କେହି ହୋଇଥିଲେ ଏମିତିକା ମନ୍ତବ୍ୟରେ ରାଗିଯାଇ ଥାଆନ୍ତା । ହେଲେ ମୁଁ ରାଗିଲି ନାହିଁ । ମୋର ଖିଆଲ ହେଲା ଯେ ସେ ଝାଳକୁ କୁତ୍ସିତ ବୋଲି ଭାବୁ ନାହାନ୍ତି, ବୋଧହୁଏ ଭାବୁଛନ୍ତି ଯେ ତାହା ହେଉଛି ବେଦନାର ନିଗିଡ଼ା ରସ । କାରଣ ମୁଁ ଦେଖିଲି ଯେ ତାଙ୍କ ହାତ ଚାଲି ଯାଉଛି ପାଖରେ ଥିବା ଗୋଟାଏ ତଉଲିଆ ଆଡ଼କୁ । ଭାଗ୍ୟ ଭଲ ମୁଁ ସାଙ୍ଗେ ସାଙ୍ଗେ ଶାଢ଼ୀ ପଣତରେ ଝାଳ ପୋଛିଦେଲି । ନ ହେଲେ ହୁଏତ—

ଯଥାକ୍ରମେ ସୁଶୀଳା ତାର ସ୍ଥାଣୁଭାବ ତ୍ୟାଗକରି ଉଠି ଠିଆ ହେଲା । କାମରେ ଲାଗିବାକୁ ହେବ । ଭଉଣୀମାନେ ସର୍ବଂସହା ନୁହନ୍ତି ।

କିନ୍ତୁ କାମ କରୁ କରୁ ବିଷ୍ଣୁଭାଇଙ୍କର ବିଚିତ୍ର ସ୍ୱଭାବର ବିଭିନ୍ନ ନମୁନା ତାର ମନେ ପଡ଼ି ଯାଉଥାଏ ।

...ସେ ବଡ଼ଲୋକ ପିଲା ? ଭଗିଭାଇ କହୁଥିଲା ଯେ ସେମାନେ ଆମ ପରି ନୁହନ୍ତି କିନ୍ତୁ ସେମିତି କିଛି ବଡ଼ଲୋକ ନୁହନ୍ତି । କେତେ ବଡ଼ଲୋକ ? ବ୍ୟବହାରରୁ କିଛି ଜଣା ପଡ଼ୁନାହିଁ ତ ? ମଣ୍ଟୁଭାଇ, ନୀରେନ୍ ଦା', ବଣୁବାବୁ—ସେମାନେ କିଛି କମ୍ ନୁହନ୍ତି । ସେମାନେ ଆସିଲେ, ତାଙ୍କ ବିଜୁଳିର ଛଟା ଦେଖାଇ ଚାଲିଗଲେ । ସେ ବିଜୁଳିରେ ସୁନା କେତେ ରଙ୍ଗ କେତେ ଭଗବାନ ଜାଣନ୍ତି । କିନ୍ତୁ ଏଇ ବିଷ୍ଣୁଭାଇ ଜଣକ ଚମକେଇ ଦେଇ ପାରନାହାନ୍ତି, ଚମକେଇବାକୁ ଚାହିଁ

ନାହାନ୍ତି । ସେ ଅନ୍ଧାର ଭିତରେ କଣ ଖୋଜୁଥିଲେ, ଅଣ୍ଡାଳ ହେଉଥିଲେ ପିଲାଙ୍କ ପରି, କାଳେ କୋଉ ନିଧି ମିଳିଯିବ ପରା !

ସୁଶୀଳାର ପୁଣି ମନେ ପଡ଼ିଗଲା, ସେ କେମିତି ବେଲେବେଲେ ଗୋଡ଼ରୁ ମୁଣ୍ଡଯାଏ ଚାହାନ୍ତି । ଏବଂ ହଠାତ୍ ତା'ର ମନେ ହେଲା, (ତା'ର ଛାତି ଦମ୍ ଦମ୍ ହୋଇ ଉଠିଲା) ଯେ ସେ ସେହି ଚାହାଣୀର ଉତ୍ତର ଦେଇ ପାରିବ ।

ବିଷ୍ଣୁଭାଇ ଯଦି ଆସନ୍ତେ, ଫେରିଆସନ୍ତେ ! ଆକସ୍ମିକ ଆତୁରତାରେ ସୁଶୀଳା ଲୁଗାପଟା ସଜାଡ଼ି ପାରିଲା ନାହିଁ, ମାଆ କେଉଁଥିପାଇଁ ଡାକ ହେଉଛି, ଶୁଣି ପାରିଲା ନାହିଁ । ଯେପରିକି ଏହି ହେଉଛି ଲଭ୍ ! ସେ ଏତେଦିନକେ ବିଷ୍ଣୁ ଭାଇଙ୍କୁ ବୁଝିଛି । ବୁଝିଛି ଯେ ସେ ଏମିତିକା ଲୋକଟିକୁ ବାନ୍ଧି ଦେଇ ପାରିବ, ଆଜୀବନ ଆମରଣ ବାନ୍ଧି ଦେଇ ପାରିବ ···ଏହି ଶୋଇବା ଘରର ଖଟ ଖୁରାରେ ମୋ ପାଲଟା ଶାଢ଼ୀର ଦଉଡ଼ିରେ । ଅବଶ୍ୟ ସେ କଷ୍ଟ ପାଇବେ, କିନ୍ତୁ ମୁକୁଳିବାକୁ ଚାହିଁବେ ନାହିଁ··· ।

କଳ୍ପନାରେ ବିଷ୍ଣୁଭାଇଙ୍କର ବନ୍ଧା ହେବା ଦୃଶ୍ୟ ତାକୁ ମୋହିତ କଲା, ସେ ସେଇଠି ଅଟକି ରହିଲା । ସେହି ନରମ ଅଖିର ପୀଡ଼ା—ଇସ୍ । ଏଇଥିକୁ ତ ଲଭ୍ କହନ୍ତି । ବିଷ୍ଣୁଭାଇ, ତୁମେ ନିଶ୍ଚୟ ଆସିବ—ନୁହେଁ ? ···ତା'ର ଶ୍ୟାମଳ ମୁହଁରେ ଥିବା ସ୍ୱଚ୍ଛ ଆଖି ଦୁଇଟି ଆନନ୍ଦରେ ଝଲି ଉଠିଲା । ଯେପରିକି ସେ ଜାଣିଛି ଯେ ବିଷ୍ଣୁଭାଇ ଆସିବେ ଓ ଠାକି ରହିଛି ସେ ଆସିବା ମାତ୍ରେ ହିଁ—

"ସୁଶୀ ଅପା ! ସୁଶୀ ଅପା !" ପୁଷି ଦାଣ୍ଡ ଆଡ଼ୁ ଚିତ୍କାର କରି ଆସିଲା । ହେଲେ ସେ କିଛି କହିବା ଆଗରୁ ସୁଶୀଳା ଜାଣି ପାରିଥିଲା ଯେ ବିଷ୍ଣୁଭାଇ ଫେରି ଆସିଛନ୍ତି । କିନ୍ତୁ ବର୍ତ୍ତମାନ ତା' ମନରେ ଅସ୍ଥିରତାର ଚିହ୍ନ ଲେଶମାତ୍ର ନ ଥିଲା, ତାର ମନେ ହେଲା ଯେ ସେ ସାମାନ୍ୟ ଷୋଳବର୍ଷୀ ନୁହେଁ, ସେ ପ୍ରେମବଳରେ ବଳୀୟସୀ ହୋଇ ଯାଇଛି, ସେ ଜାଣିଛି ଏହାପରେ ଠିକ୍ କଣ କରିବାକୁ ହେବ ।

ବିଷ୍ଣୁ ପାଖରେ ଆସି ମହୁଣ୍ଡିଲରୁ ସୁଶୀଳା ତୃପ୍ତ-ଅଳସ ଭଙ୍ଗୀରେ ଗ୍ରୀବା ଉତ୍ତୋଳନ କଲା ଓ କହିଲା, "କଣ ବିଷ୍ଣୁ ଭାଇ—ଏତେ ଦିନକେ ମନେ ପଡ଼ିଲା ?"

"ଟିକିଏ ପଢ଼ାପଢ଼ିରେ ବେହେର୍ ପଡ଼ି ଯାଇଥିଲି । ତା' ଛଡ଼ା,—ତା'ଛଡ଼ା, ମୁଁ ଦେଖୁଥିଲି ଯେ ଏ ଘରକୁ କେତେଦିନ ନ ଆସି ରହିପାରିବି" । ବିଷ୍ଣୁ ହସ ହସ ମୁହଁରେ କହିଲା ।

"କଣ ଦେଖିଲ ?" ସୁଶୀଳାର ମୁହଁରେ ହସ ନ ଥିଲା । ମାନେ ସେ ଏତେ ସହଜରେ କ୍ଷମା କରି ପାରିବନାହିଁ ।

× × ବିଷ୍ଟୁର ପୁନରାଗମନରେ ଯେଉଁମାନେ ଖୁସି ହେଲେ, ସେମାନଙ୍କ ମଧ୍ୟରେ ପ୍ରଫୁଲ୍ଲବାବୁ ଅନ୍ୟତମ ।

ସେ ମନ୍ଦିରରୁ ଫେରି ଘର ଦୁଆର ମୁହଁରେ ପହଞ୍ଚିଥିଲେ, ଏହି ସମୟରେ ବିଷ୍ଟୁକୁ ଦେଖିଲେ, କୁଶଳ ସମ୍ଭାଷଣ କଲେ, ଏବଂ ତାଙ୍କ ମୁହଁରେ ପ୍ରସନ୍ନତା ଚହଟି ଗଲା ।

ପ୍ରଫୁଲ୍ଲବାବୁଙ୍କ ଚେହେରା ସୁନ୍ଦର ନୁହେଁ, କିନ୍ତୁ ସରସ ଓ ଆଖିଦୃଶିଆ । କୃଷ୍ଣବର୍ଣ୍ଣ ବଡ଼ ମୁହଁରେ ପାଚିଲା ଅଧା-ନିଶ, ଗୃହିଣୀ ସତେଜ ଓ ତତ୍ପର (ବୋଧହୁଏ ସୁଶୀଳା ତା'ର ଗୃହିଣୀ ବାପାଙ୍କଠୁଁ ପାଇଛି), ଓଠରେ ତରଳ କଥାକୁହା ଭାବ, ଏବଂ ସୁଗଠିତ ଦେହ । ସେ ଅତି ଧର୍ମପରାୟଣ, ସବୁଦିନେ ମନ୍ଦିରକୁ ଯାଆନ୍ତି । ମନ୍ଦିରରୁ ଫେରିଲା ପରେ ତାଙ୍କୁ ଦେଖିଲେ ମନେ ହୁଏ ଯେ ସେ ଘଣ୍ଟାଏ ଖଣ୍ଡେ ଭଗବାନଙ୍କ ସାଙ୍ଗରେ ଖୁସିଗପ କରି ଆସିଛନ୍ତି, ତାଙ୍କ ଲୀଳାର ଗହଳିଆ କଥା, ମଜାକଥା ଶୁଣି ଆସିଛନ୍ତି । ସେ କିଛି କ୍ଷଣ ପାଇଁ ପରିବାର ସହିତ ମିଶି ଯାଆନ୍ତି । ଦୁଃଖକ୍ଲେଶରେ ଗୃହିଣୀର ଭର୍ତ୍ସନା ଶୁଣିଲେ ମୃଦୁ ମୃଦୁ ହସନ୍ତି, କେବଳ ବାହୁ ଟେକି 'ଗୋବିନ୍ଦଙ୍କ ଇଚ୍ଛା' ବୋଲି କହନ୍ତି । ଅର୍ଥାତ୍ ଜୀବନନିର୍ବାହର ଯେତେକ ଯାତନା—ଅର୍ଥାଭାବ, ଘରେ ଟଙ୍କାଳ, କନ୍ୟାଦାୟ ଇତ୍ୟାଦି ସମସ୍ତ ବିଷୟ ନେଇ ସେ ଗୋବିନ୍ଦଙ୍କ ସାଙ୍ଗରେ କଥାବାର୍ତ୍ତା କରି ନେଇଛନ୍ତି । ଗୋପନ କଥାବାର୍ତ୍ତା ।

ଆଜି କିନ୍ତୁ ସେ କେହି, କିଛି କହିବା ପାଇଁ ଅପେକ୍ଷା କଲେ ନାହିଁ । ବିଷ୍ଟୁକୁ ଦେଖିବାମାତ୍ରେ ତାଙ୍କର ଓଠରେ ସ୍ୱଗତ ଆନନ୍ଦର ହସ ପ୍ରସ୍ଫୁଟିତ ହେଲା ।···ବିଷ୍ଟୁ ଫେରି ଆସିଛି । ମନେ ହେଉଛି ଯେ ସେ ଅନ୍ୟମାନଙ୍କ ପରି ନୁହେଁ, ସହଜେ ଛାଡ଼ି ଦେଇ ଯିବନାହିଁ । ପିଲାଟା ଦେଖିବାକୁ ସେମିତି କିଛି ନୁହେଁ, ତଥାପି ହାତରେ ଥିବା ଭଲ । ଗୌରହରି ବାବୁ ବେଶ୍ ଥିଲାବାଲା ଲୋକ । ଦେଖାଯାଉ କଅଣ ହେଉଛି । ସବୁ ଗୋବିନ୍ଦଙ୍କ ଇଚ୍ଛା । ମୁରଲୀ ହେଲେ ସବୁଠୁ ଭଲ ହୁଅନ୍ତା,—ବହୁଦିନର ଚିହ୍ନା ଘର, ରୂପ, ଗୁଣ, ଧନ ସବୁ ଅଛି । କିନ୍ତୁ ସେ ଧରୁଛୁଆଁ ଦେଉନାହିଁ । ସେ କୁଆଡ଼େ ସୁନ୍ଦର ଝିଅ ଖୋଜୁଛି । ଦେଖାଯାଉ । ଭାବୁଛି ବିଷ୍ଟୁକୁ ଧରି ପିଲାମାନେ ଥରେ ଯାଆନ୍ତୁ ପିକ୍‌ନିକ୍ କରି, ଯାଆନ୍ତୁ ବା ଟୋଟା ନ ହେଲେ ମୁକୁନ୍ଦପୁର ଫାର୍ମ୍ । ମୁରଲୀକୁ ଡାକିଲେ ଆସିବ ? କେଜାଣି ।···ଅଦୂର ଭବିଷ୍ୟତରେ କିଛି ନା କିଛି ଘଟିବ ବୋଲି ମନେ ହେଉଛି । ଲୀଳାମୟଙ୍କର ଅପୂର୍ବ ଲୀଳା,—କାଲି ସକାଳେ କଅଣ ହେବ କିଏ କହିବ ?

× × ପରଦିନ ସକାଳେ ଅବଶ୍ୟ କିଛି ଘଟିଲା ନାହିଁ, କିନ୍ତୁ ଏହାପରେ ବିଷ୍ଟୁର ଜୀବନ ନୌକା ଦ୍ରୁତଗତିରେ ଧାବିତ ହେଲା ।

ହଠାତ୍ ସନ୍ଧ୍ୟାର ଅନ୍ଧାରରେ ବାଗର କେଉଁ ଗଛ ମୂଳରେ ସୁଶୀଳା ବିଷ୍ଣୁର ହାତକୁ ଧରିଲା ଓ ତା'ର ଆଙ୍ଗୁଠିଗୁଡ଼ିକୁ ଗୁଡ଼େଇ ଗୁଡ଼େଇ ପଚାରିଲା "ବିଷ୍ଣୁ ଭାଇ, ତୁମେ ମୋତେ ଛାଡ଼ିକରି ଯିବନାହିଁ, କେବେହେଲେ ଯିବ ନାହିଁ। ମୋ ଦେହ ଛୁଇଁ କହ।"

ବିଷ୍ଣୁ ସ୍ତବ୍ଧ ହେଲା। ଆଘାତ ନୁହେଁ, ଅପ୍ରତ୍ୟାଶିତ ଅବଦାନର ଧକ୍କା। ଯେପରିକି ସେ ଆଶା କରି ନ ଥିଲା ଯେ ଏଭଳି ଗୋଟିଏ ମୁହୂର୍ତ୍ତ ତା' ଜୀବନରେ ଆସିବ, ଜଣେ ଲୋକ ଏତେ ବେଶି ତା' ଠାରୁ ଚାହିଁବ, ଏତେ ବଡ଼ ଦାୟିତ୍ୱର ଗୌରବ ଅଣିଦେବ। ସୁଶୀଳାର ମୁହଁ ଅନ୍ଧାରରେ ଭଲ ଭାବରେ ଦିଶୁ ନାହିଁ। କିନ୍ତୁ ବୋଧହୁଏ ସେଇଥିପାଇଁ ତା'ର ନାୟିକାସ୍ୱର ନବଢ଼ତା ମାଡ଼ି ପଡ଼ୁଛି। ମନେ ହେଉଛି ଯେ ସେ ଆଦିମ ପୃଥିବୀର କନ୍ୟା,—ତା'ର ଅନୁରୋଧ, ଦାବୀ ଓ ଯାଚନା ଗୋଟିଏ ଧାତୁରେ ଗଢ଼ା, ତାକୁ ଟାଳିବାର ନୁହେଁ।... ବିଷ୍ଣୁ ଭୀରୁ ନୁହେଁ, କାପୁରୁଷ ନୁହେଁ। ବାପା ମାଆ, ଭାଇ ଭଉଣୀ, ସାଙ୍ଗସାଥୀ, ସେମାନେ କଣ କିଛି ବୁଝିବେ? ନ ବୁଝନ୍ତୁ? ମୁଁ ସ୍ୱୀକାର କରିବି, ଗ୍ରହଣ କରିବି, ସହିବି।...ଆତ୍ମ-ଅନୁଭୂତିର ଆବେଗରେ ବିଷ୍ଣୁର ଆଖି ଦର୍‌ବୁଜା ହୋଇଗଲା ଓ ସେ ସୁଶୀଳାର ହାତକୁ ନିଜର ଦୁଇ ହାତରେ ମୁଠେଇ ଧରି କହିଲା, "ସୁଶି, ମୋତେ ବିଶ୍ୱାସ କର। ମୁଁ ତୁମକୁ ଛାଡ଼ିକରି ଯିବିନାହିଁ, ବଞ୍ଚିଥିବା ଯାଏଁ। ଯଦି ମରିଯାଏ, ସେ କଥା ଅଲଗା—"

ସୁଶୀଳା ଚଟ୍ କରି ତା' ହାତ ଛଡ଼ାଇ ଅଣି ବିଷ୍ଣୁର ପାଟିକୁ ଘୋଡ଼େଇ ଦେଲା, କହିଲା, "ଛିଃ, ସେମିତି କହିବ ଯଦି ଜାଣିଥା।"

× × ବିଷ୍ଣୁ କାହାକୁ କିଛି କହିଲା ନାହିଁ। ଏ ନିଜ ମନର ଗହନ କଥା, ଦାଣ୍ଡ ଘାଟରେ ପଡ଼ିଲେ ତା'ର ମର୍ଯ୍ୟାଦା ନଷ୍ଟ ହୋଇଯିବ। ସେ ଆଶ୍ଚର୍ଯ୍ୟ ହେଲା— ମୁଁ ଆଗରୁ କେମିତି ଏତେ କଥା ମାଆ ଆଗରେ ଗପୁଥିଲି?

କିନ୍ତୁ ପ୍ରଭାବତୀ ଦେବୀ ଲକ୍ଷ୍ୟକଲେ। ବିଷ୍ଣୁ ଅତି ନୀରବ। ଅବଶ୍ୟ ସେ ଏମିତି ବହୁତ ଦିନ ଚୁପଚାପ ରହେ, ତା'ପରେ ମାଆ ଆଗରେ କ'ଣ ବୋଲି କ'ଣ ଗପିଯାଏ। ଆଜିକାଲି ସେତିକି ବି ନାହିଁ। ମନେ ହେଉଛି ଯେ ସେ ନିଜ ଭିତରେ ମଜ୍ଜି ଯାଇଛି, ତା'ର କିଛି ଅଭାବ ନାହିଁ। ଏହି ମୌନତା ଭିନ୍ନ ଧରଣର, ଏଥିରେ ଅବାନ୍ତରପଣ ନାହିଁ। ସେ ଘରେ ସମସ୍ତଙ୍କ ସାଙ୍ଗରେ ସହଜ ଓ ସମାନ ଭାବରେ ମିଶୁଛି, ଅଡ୍ଡା ପରିହାସରେ ଯୋଗ ଦେଉଛି, ତରତର ହୋଇ ଖାଉ ନାହିଁ, ଭାଇ ଭଉଣୀଙ୍କ ମେଳରୁ ଖସିଯାଇ ତା' ପଢ଼ା ଘରକୁ ପଳାଉ ନାହିଁ। ସେ ଶାନ୍ତ। ସେ ତ ଏମିତି କେବେ ନ ଥିଲା। ବିଷ୍ଣୁ କ'ଣ ହଠାତ୍ ବଦଳି ଯାଇଛି? କ'ଣ ହେଲା?

ପ୍ରଭାବତୀ ଦେବୀଙ୍କର ଖୁସି ହେବାର କଥା, ସେ ଖୁସି ହେବାକୁ ଚେଷ୍ଟା କଲେ । କିନ୍ତୁ ସେ ଅଶାନ୍ତ ହେଲେ । ··· କିଛି ଗୋଟାଏ କାରଣ ଥିବ । ମୋର ଜାଣିବା କଥା, ମୁଁ ତା'ର ମାଆ ।

ତାଙ୍କର ମନେ ପଡ଼ିଲା ଯେ ବିଷ୍ଟୁ ସେହି କେଉଁ ପ୍ରଫୁଲ୍ଲ ବାବୁଙ୍କ ଘର କଥା ଶୁଣାଇଥିଲା । ଗତଥର ବୋଧହୁଏ କହିଥିଲା ଯେ ତାଙ୍କର ଗୋଟାଏ ଶାଗୁଆ ଅଛି, ସେ ଘରୁ ଝିଅଙ୍କ ନାଁ ଧରି ଡାକେ, ଭୋକ କଲେ ଖାଇବାକୁ ମାଗେ ଇତ୍ୟାଦି । ସେ ଘର ତା'ର ଭାରି ପସନ୍ଦ । ସେ ଘରେ ଅନେକ ଝିଅ ଅଛନ୍ତି, ଜଣକ ନା ସୁଶୀଳା । ··· ନା, ବିଷ୍ଟୁ ସେମିତିକା ପିଲା ନୁହେଁ । ଆଉ କୋଉ ପୁଅ ହୋଇଥିଲେ ହୁଏତ ମୁଁ ବିଶ୍ୱାସ କରନ୍ତି । କିନ୍ତୁ ଆଉ କୋଉ ପୁଅ ହୋଇଥିଲେ ମୁଁ ଏତେ ଭାବନ୍ତି ନାହିଁ । ··· ଶେଷକୁ ବାଧ ହେଲାପରି ସେ ପଚାରି ଦେଲେ, "କିରେ ତୁ ଯାହାଙ୍କ କଥା କହୁଥିଲୁ, ତୋ ମାଈଁଙ୍କର ଭଉଣୀ ହେବେ ନା କଅଣ—ତାଙ୍କ ଖବର କଅଣ ? ତାଙ୍କୁ କହିବୁ, ଥରେ କେବେ ପିଲାପିଲିଙ୍କୁ ଧରି ଆମ ଘରକୁ ଆସିବେ ।"

"ଆଚ୍ଛା", କହି ବିଷ୍ଟୁ ଯେମିତି ଭାବରେ ତାଙ୍କ ଆଡ଼କୁ ଚାହିଁଲା, ସେଥିରେ ପ୍ରଭାବତୀ ଦେବୀଙ୍କର ଛାତି ଦବିଗଲା । ଏ ହେଉଛି କୃତଜ୍ଞତାର ଚାହାଣି । ··· ନା, ଅସମ୍ଭବ । ମୋ ମନର ଭ୍ରମ । ··· ଏବଂ ସେହି ପ୍ରଥମେ ତାଙ୍କର ଧାରଣା ହେଲା ଯେ ପ୍ରଫୁଲ୍ଲବାବୁଙ୍କ ଘର ଭଲଲୋକ ନୁହନ୍ତି । ସେମାନେ ହୀନ ଓ ଇତର ।

× × ଯାହାହେଉ, ଗୋଟିଏ ନିର୍ଦ୍ଦିଷ୍ଟ ଦିନ ଉପରବେଳାରେ ସେମାନେ ଆସିଲେ । ସୁଶୀଳା, ତା ସବା ଭଉଣୀ ପୁଷ୍ପି ଓ ତାଙ୍କ ମାଆ । ବିଷ୍ଟୁ ଘରେ ଥାଏ ।

ପ୍ରଭାବତୀଙ୍କ ଦେବୀ ସେମାନଙ୍କୁ ଅପେକ୍ଷା କରିଥିଲେ । ଦିନ ସାରା ଅପେକ୍ଷା କରିଥିଲେ । ଗୌରହରିବାବୁଙ୍କଠାରୁ ଆରମ୍ଭ କରି ପାନୁ ପୂଜାରି ପର୍ଯ୍ୟନ୍ତ ତାଙ୍କର ଉଦ୍‌ବେଗଜନିତ ବିରକ୍ତି ଲକ୍ଷ୍ୟ କଲେ । ତା'ର କାରଣ ବୁଝି ପାରିଲେ ନାହିଁ ।

କିନ୍ତୁ ସେମାନେ ପହଞ୍ଚିବା ମାତ୍ରେ ହିଁ ପ୍ରଭାବତୀ ଦେବୀଙ୍କ ଉଦ୍‌ବେଗ ଦୂର ହୋଇଗଲା । ସେ ଆଶ୍ଚର୍ଯ୍ୟ ହେଲେ, ଖୁସି ହେଲେ ଓ ନିଜର ଆଶଙ୍କାକୁ ଧିକ୍ ବୋଲି କହିଲେ । କାହିଁକି ନା ସେ ସ୍ପଷ୍ଟଭାବରେ ଦେଖିଲେ ଯେ ସନ୍ଦେହର କୌଣସି କାରଣ ନାହିଁ । ··· ଏ ଝିଅଟା ଅସୁନ୍ଦର, ତା' ମାଆ, ତା' ଭଉଣୀ ସମସ୍ତେ ଅସୁନ୍ଦର । ବିଷ୍ଟୁ ଏତେ ବୋକା ନୁହେଁ, ଅଗୁଆଁର ନୁହେଁ । ସେ ଏତେ ଅସୁନ୍ଦର (ଏତେ ଖରାପ) ଲୋକଙ୍କ ଘରେ ଧରା ଦେବନାହିଁ । ସେମାନେ ମୋ ପୁଅକୁ କଅଣ ବୋଲି ପାଇଛନ୍ତି କି ?

ଏହି ଅପ୍ରତ୍ୟାଶିତ ଦୃଶ୍ୟରେ ଅନୁପ୍ରାଣିତ ହୋଇ ବିଷ୍ଟୁର ମାଆ ସେମାନଙ୍କୁ ପାଛୋଟି ଆଣିଲେ, ଉପରେ ପଡ଼ି କଥା କହିଲେ ଓ ଚର୍ଚ୍ଚା କଲେ—"ବିଷ୍ଟୁ କେତେ ଥର ତମ କଥା କହିଲଣି···ତମେ ଅମ ଭାଉଜଙ୍କ ଭଉଣୀ ପରା, ଆଜିଯାଏଁ ନଣନ୍ଦେହି ବଞ୍ଚିଛୁ କି ମଲଣି ବୁଝିବାକୁ ମନ କଲନାହିଁ ? ··· ଆସ ଆସ, ଅମ ଘର ଭିତରକୁ ଆସ ··· ଏ ଝିଅଟି ନାଁ କଅଣ ? କେଉଁ କ୍ଲାସରେ ପଢ଼େ ? ସମସ୍ତଙ୍କୁ କାହିଁକି ନେଇ ଆସିଲ ନାହିଁ ?" ଇତ୍ୟାଦି ଇତ୍ୟାଦି । ପୁଣି ସେ ଉଚ୍ଚଦରର ଜଳଖିଆ ପ୍ଲେଟ୍‌ରେ ଭରି ଦେଲେ, ଥରକୁ ଥର ଖାଇବାକୁ ବଳାଇଲେ ଓ ଭଲ କପ୍ ପ୍ଲେଟରେ ଚା' କରି ଦେଲେ । ··· ଏ ଘରେ ଆଦର ଅଭ୍ୟର୍ଥନାରେ ତ୍ରୁଟି ହେବନାହିଁ । ବିଷ୍ଟୁର କହିବାକୁ ନ ଥିବ ଯେ ତା' ସାଙ୍ଗର ମାଆଭଉଣୀ ଖାତିର ପାଇଲେ ନାହିଁ । କିନ୍ତୁ ଯେତେହେଲେ—

ଅର୍ଥାତ୍ ସେମାନେ ନିକୃଷ୍ଟ । ପ୍ରଭାବତୀ ଦେବୀ ମନେ ମନେ ସେମାନଙ୍କ ନିକୃଷ୍ଟତାର ନମୁନା ଗଣିବାକୁ ଲାଗିଲେ । ··· ତାଙ୍କ ଶାଢ଼ୀ ପିନ୍ଧା ଢଙ୍ଗକୁ ଦେଖ ! ଗାଆଁର ହାଟୁଆ ବାଟୁଆ ଘର ବି ଏମିତି ଆଣ୍ଠୁ ଉପରକୁ ଶାଢ଼ୀ ପିନ୍ଧିବେ ନାହିଁ । ସେଥିରେ ପୁଣି ସ୍ନୋ; ପାଉଡ଼ର୍ କେତେ ପରସ୍ତ ବୋଳା ହୋଇଛି, ଭଗବାନଙ୍କୁ ଜଣା । ··· ବଡ଼ ଝିଅଟା ମୁହଁ ପୋତି ବସିଛି, କିନ୍ତୁ ବେଳେ ବେଳେ କିଛି ହସ କଥା ପଡ଼ିଲେ ଘୋଡ଼ୀଙ୍କ ପରି ହସୁଛି । ଚୁକୁ ଚୁକୁ କରି ଖାଉଛି । ··· ହେଲେ ସେ କମ୍ ଜଣେ ହୋଇ ନ ଥିବ । ଦେଖୁନା ସେ କେମିତି ଲୁଚେଇ ଲୁଚେଇ କଣେଇ କଣେଇ ଚାରିଆଡ଼କୁ ଚାହୁଁଛି, ସତେ ଯେମିତି ସେ ଏଠିକି ଗୋଇନ୍ଦାଗିରି କରିବାକୁ ଆସିଛି । ··· ଗରିବ ଘର ସାଙ୍ଗରେ କିଛି କଥାନାହିଁ, ଅସଲ ହେଉଛି ସଭ୍ୟତା, ଖାନ୍‌ଦାନ । ଏ ଭାଉଜଙ୍କର କୋଉ ଭଉଣୀ କେଜାଣି, ହେଇଥିବେ କୋଉଆଲିଆ ଲେଖାରେ···ବ୍ଲାଉଜର କାଖମୂଳ ପାଖରେ କି କୋଚଟ ମଇଳା !

କହିବାକୁ ଗଲେ ସେ ଗୋଟିଏ ଅସ୍ୱାସ୍ଥ୍ୟକର, ଅପ୍ରୀତିକର ସାପକୁ ପିଟି ପିଟି ମାରିଦେଲେ, ତା ମୁଣ୍ଡକୁ ଛେଚିଦେଲେ···କାଲେ ସେ ବିଷଧର ହୋଇଥିବ, ଓ ପବନ ପିଇ ଜୀଇଁ ଉଠିବ !

ସେମାନେ ଗଲପରେ ପ୍ରଭାବତୀ ଦେବୀ ହସ ହସ ବଦନରେ ବିଷ୍ଟୁ ପାଖକୁ ଯାଇ ତା ଟେବୁଲ ପାଖରେ ଛିଡ଼ା ହେଲେ ଓ ସସ୍ନେହ ଦୃଷ୍ଟିରେ ତା ପାଠପଢ଼ା ଦେଖିଲେ । ମନେ ହେଉଥିଲ ଯେ, ଆଉ ଟିକିଏ ଗଲେ ସେ ତା ମୁଣ୍ଡ ଅଉଁସି ଦେବେ ଓ କହିବେ—ପୁଅରେ, ମୁଁ ତୋତେ ଭୁଲ୍ ବୁଝିଥିଲି ।

ବିଷ୍ଟୁ ପାଠ ପଢ଼ୁ ନ ଥିଲା । ତା ହାତରେ କଲମ ଧରା ହୋଇଥିଲା, ତା' ସାମନାରେ ବହି ଖାତାର ଭିଡ଼, କିନ୍ତୁ ତା ହୃଦୟରେ ଥିଲା ସାମାନ୍ୟତମ କୁଞ୍ଚନ,

ଓଠରେ କ୍ଷୀଣତମ ସ୍ମିତ । ଏକାଗ୍ରତାର ଲକ୍ଷଣ ଦେଖା ଯାଉ ନ ଥିଲା । ପାଠପଢ଼ା, ଖାଇବା ପିଇବା, ଶୋଇବା—ଏ ସବୁ ଗଡ଼ି ଗଡ଼ି ଯିବ, ଯେହେତୁ ଜୀବନରେ ଜଣେ ଅଛି । ସେ ଅଛି, ଉଦ୍ଦେଶ୍ୟ ଓ କାରଣ ଅଛି । ··· ସେ ଆଜି ଆମ ଘରକୁ ଆସିଛି । ନିଜେ ମାଆ ନିମନ୍ତ୍ରଣ କରି ଆଣିଛି ।

ବିଷ୍ଟୁ ମାଆର ଉପସ୍ଥିତି ତଥା ଅନୁରାଗ ଅନୁଭବ କଲା ଏବଂ ଅନ୍ତରଙ୍ଗ ମଧୁର ଭଙ୍ଗୀରେ ପଚାରିଲା—"ଦେଖିଲୁ ?"

"କାହାକୁ ?" ସେ ଓଲଟି ପଚାରି ବସିଲେ । ତାଙ୍କ କଣ୍ଠରେ ସାମାନ୍ୟ ରୁକ୍ଷତା ଥିଲା ।

ବିଷ୍ଟୁ ମାଆର ଭାବାନ୍ତର ଲକ୍ଷ୍ୟ କଲାନାହିଁ । ବୋଧହୁଏ ସେ ସେପରି ଅବସ୍ଥାରେ ନ ଥିଲା । କହିଲା, "ଏଇ ସେମାନେ । ତାଙ୍କ ମାଆ ଆଉ ସୁଶୀଳା । ସୁଶୀଳା ପିଲାଟି ଭଲ ନୁହେଁ ?"

ପ୍ରଭାବତୀ ଦେବୀ ହସିଲେ । ବୋଧହୁଏ ଭାବିଲେ ଯେ ତା ଛଡ଼ା ଅନ୍ୟ ଉପାୟ ନାହିଁ । ହସିଦେଲେ ସନ୍ଦେହ ଭୂତ ଦୂର ହୋଇଯିବ । ସେ ହସିକରି କହିଲେ, "ହଁ, କିନ୍ତୁ ଦେଖିବାକୁ ମୋଟେ ସୁନ୍ଦର ନୁହେଁ ।"

"ନା ସେମିତି କିଛି ସୁନ୍ଦର ନୁହେଁ । କିନ୍ତୁ ତା'ର ସ୍ୱଭାବ ଭଲ ଭାରି ଭଲ । ଆଉ ସେ ଭାରି କାମିକା. ଘରର ଅଧେ କାମ ସେ ନିଜେ କରେ । ତାଙ୍କ ମାଆ ଆଜିକାଲି କାମକୁ ପାରୁ ନାହାନ୍ତି କିନା—"

"ତାର ପାଠ ଶାଠ କେମିତି ?"

"ସାଧାରଣ ।" ଏତିକି କହିଲା ପରେ ବିଷ୍ଟୁ ଚେଇଁ ଉଠିଲା । ମାଆ କଅଣ ମୋତେ ଜେରା କରୁଛି ? ଏବଂ ସେ ମାଆର ମୁହଁରେ ଛପିଲା କ୍ରୋଧ ଓ ହତାଶାର ଲକ୍ଷଣ ଦେଖିବାକୁ ପାଇଲା । ଆଶ୍ଚର୍ଯ୍ୟ । ମାଆର ହାଡ଼ୁଆ ମୁହଁ ଆହୁରି ଶୁଖିଲା ଦେଖା ଯାଉଛି । କିନ୍ତୁ ମନେ ହେଉଛି ଯେ ସେ ହାରିବାକୁ ଚାହେଁ ନାହିଁ । ହୋଇପାରେ ଯେ ସେ ଦୁର୍ବଳା, ତାକୁ ଏ ଘରେ କେହି ପଚାରନ୍ତି ନାହିଁ, କିନ୍ତୁ ସେ ତାର ଶେଷ ଅଧିକାରଟିକ ଛାଡ଼ିବାକୁ ଚାହେଁ ନାହିଁ ।

ପ୍ରଭାବତୀ ଦେବୀ କହି ଚାଲିଲେ ନିଜକୁ ନିଜେ କହିଲାପରି, "ତୁ ଯାହା କହ, ମୋତେ ତାଙ୍କ ଢଙ୍ଗଢାଙ୍ଗ କାହିଁକି ମଫସଲିଆ ଲାଗିଲା । ଆଉ ସେ ଝିଅଟା ଏଡ଼େ ବଡ଼ ହେଲାଣି; ହେଲେ କିଛି ସଣ୍ଢା ଶିଖିନାହିଁ ।··· ତାଙ୍କ ମାଆଙ୍କ କଥାରୁ ଜଣା ପଡ଼ିଲା ଯେ, ସେ ତାକୁ ଶୀଘ୍ର ବାହା କରିଦେବାକୁ ଚାହାନ୍ତି । କିଏ

ତାକୁ ବାହାହେବ କେଳାଣି । ଏକେତ ଦେଖିବାକୁ ସୁନ୍ଦର ନୁହେଁ, ପୁଣି ପାଠ ଶାଠରେ ଭଲ ନୁହେଁ, ଢଙ୍ଗଢାଙ୍ଗ ଯାହା ଦେଖିଲି—ମୁଁ ନିନ୍ଦା କରୁନାହିଁ । ସବୁ ଦୋଷ ତାର ନୁହେଁ—"

ଆଉ ମାଆ ସେତକ ଥାଉ । ମୁଁ ବୁଝୁଛି, ବୁଝିପାରୁଛି । ବିଷ୍ଟୁ ଆଉ ଶୁଣିବାକୁ ଚାହିଁ ନାହିଁ ଓ ମାନସପଟରେ ବଡ଼ ବଡ଼ ଅକ୍ଷରରେ ଲେଖିଦେଲା- ମାଆ ଚାହେଁ ନାହିଁ, ଚାହେଁ ନାହିଁ, ଚାହେଁ ନାହିଁ ।

···ବେଶ୍ ଭଲ କଥା, ସେ ଚାହେଁ ନାହିଁ । ମୁଁ ଗୋଟାଏ ଆଉ ନିଶ୍ଚିନ୍ତ । ମାଆ ନିଜକୁ ଜଣାଇ ଦେଇଛି, ପରିଷ୍କାର ଭାବେ ଜଣାଇ ଦେଇଛି ।···

କିନ୍ତୁ ତାକୁ ରାଗ ଆସିଲା, ଯେତେବେଳେ ପ୍ରଭାବତୀ ଦେବୀ ତାଙ୍କ ବକ୍ତବ୍ୟ ଶେଷକଲା ପରେ ମଧ୍ୟ ସେଇଠି ଛିଡ଼ାହୋଇ ରହିଲେ । ଯେପରିକି ତାଙ୍କ କଥା ସରିନାହିଁ, ସେ ପ୍ରୟୋଜନ ହେଲେ ପୁଣି ଆଉ କିଛି କହିବେ, ପୁଅକୁ ସତ୍ ପଥକୁ ନ ଆଣିବାଯାଏଁ ଫେରିବେ ନାହିଁ । ମାଆ ହୋଇ ସେ ପୁଅର ଏ ଅବସ୍ଥା ଦେଖି ପାରିବେ ନାହିଁ ।

ମାଆ ପୁଅ ଦୁହେଁ ବହୁକ୍ଷଣ ଯାବତ୍ ନୀରବ ରହିଲେ । ଶେଷକୁ ପ୍ରଭାବତୀ ଦେବୀ ବିଷ୍ଟୁର ପିଠିରେ ହାତ ରଖିଲେ, ଓ କ୍ଳାନ୍ତ ସ୍ୱରରେ କହିଲେ, 'ପଢ଼, ମନ ଦେଇ ପାଠ ପଢ଼ ।" ତଦ୍ଦ୍ୱାରା ବିଷ୍ଟୁର କ୍ରୋଧର ମାତ୍ରା ଦ୍ୱିଗୁଣରୁ ବଢ଼ିଗଲା, ଓ ସେ ଭାବିଲା ଯେ ସେ ଦିନେ ନା ଦିନେ ଏହି ମାଆପଣରେ ପ୍ରତିଶୋଧ ନେବ ।

ଦୁର୍ଭାଗ୍ୟ । ବିଷ୍ଟୁ ଗୋଟାଏ ଦିନ ମଧ୍ୟ ନିଜକୁ ସଜାଡ଼ିବାକୁ ବେଳ ପାଇଲା ନାହିଁ । ରାତିରେ ସେ ମାଆବାପାଙ୍କ କଥୋପକଥନ ଶୁଣିବାକୁ ପାଇଲା । ବାରଣ୍ଡାରେ କଥୋପକଥନ । ଦୁହେଁ ଲମ୍ବା ସୋଫାର ଦୁଇ ଧାରରେ ବସିଛନ୍ତି, ଗୌରହରି ବାବୁ ସନ୍ତୁଷ୍ଟ ନୟନରେ ଭଙ୍ଗା ହୋଇ ରହିଥିବା ଖବରକାଗଜ ଆଡ଼କୁ ଚାହିଁଛନ୍ତି ଏବଂ ପ୍ରଭାବତୀ ଦେବୀ କରୁଣ କଥାର ଆକ୍ରମଣ ଚଳାଇଛନ୍ତି । ବିଷ୍ଟୁର ମନେହେଲା ଯେ ବାପାଙ୍କ ପାଖରେ ମାଅର ଏପରି ଏକମୁଖୀ ଏକନିଷ୍ଠ ବ୍ୟବହାର ସେ ଆଗରୁ ଦେଖି ନ ଥିଲା । ସେ ଶୁଣିଲା ବାପା କହୁଛନ୍ତି—"ସେ ସେଠି କାହିଁକି ବାହା ହେବାକୁ ଚାହେଁ ?"

"କାହିଁକି, ସେକଥା ମୁଁ କେମିତି କହିବି ? କିନ୍ତୁ ତା'ର ସେଠି ବାହା ହେବା ମୋଟେ ଉଚିତ ହେବନାହିଁ । ମୁଁ ଆଜି ସେ ଝିଅକୁ ଦେଖିଲି—"

"ବେଶ୍, ବେଶ୍" । ଗୌରହରି ବାବୁ ସ୍ତ୍ରୀଙ୍କର ବକ୍ତବ୍ୟକୁ ଅଧାବାଟରେ କାଟି ଦେଲେ । "କିନ୍ତୁ କଥା ହେଉଛି ଯେ ସେ କେମିତି ବାହା ହେବ ?"

ସ୍ୱାମୀ ସ୍ତ୍ରୀ ପରସ୍ପରକୁ ନ ବୁଝିଲା ପରି ଚାହିଁ ରହିଲେ ।

କିଛି ସମୟ ପରେ ଗୌରହରି ବାବୁ ହସି ଉଠିଲେ । ସେ ଆଉ ସମ୍ଭାଳି ପାରିଲେ ନାହିଁ, ଘଟଣାର ନିର୍ବୋଧତା ତାଙ୍କୁ ଅତିକାନ୍ତ କରିଦେଲା । ତା' ପରେ ସେ କହିଲେ; "କର୍ଣ୍ଣ, ବଷ୍ଟୁ ଆଗେ ମଣିଷ ହେଉ । ଏହିକ୍ଷଣି ତା' ବାହାଘର କଥା କାହିଁକି ପଡ଼ିଛି ? ତମେ ବ୍ୟସ୍ତ ହୁଅନାହିଁ । ମୁଁ ତାକୁ ପଚାରିବି ।"

ବଷ୍ଟୁ ଆଉ ସେଠି (ସିଡ଼ିଘରର ଆଢୁଆଳରେ ) ରହି ପାରିଲା ନାହିଁ, ଧପ୍ ଧପ୍ ହୋଇ ସିଡ଼ି ଚଢ଼ି ତା' ପଢ଼ା ଘରକୁ ଚାଲିଗଲା । କାହିଁକିନା ସେ ଅନୁମାନ କଲା ଯେ ବାପା ଯେ କୌଣସି ମୁହୂର୍ତ୍ତରେ "ପ୍ରଶ୍ନ" ପଚାରିବେ, ସେ ମଣିଷ ପକ୍ଷରେ ସେମିତିକା ପ୍ରଶ୍ନର ଉତ୍ତର ଦେଇ ପାରିବନାହିଁ । ଯଥା—ବଷ୍ଟୁ ତୁ କାହିଁକି ବାହା ହେବୁ ? ଅର୍ଥାତ୍ ତୁ କ'ଣ ମଣିଷ ହେବୁନାହିଁ ?···ତୁ ସେଠି କାହିଁକି ବାହା ହେବୁ ? ଅର୍ଥାତ୍ ପ୍ରେମ'?? ଏପରିକି ତା'ର ଆଶଙ୍କା ହେଲା ଯେ ବାପା ପଚାରି ବସିବେ, ଅସମ୍ଭବ ନୁହେଁ—ସେ ଛୋଟେ କାହିଁକି ବାହା ହେବାକୁ ଚାହେଁ ?

ଏହା ପରେ ବଷ୍ଟୁ କ'ଣ କରି ପାରିଥାଆନ୍ତା ? ସୁଶୀଳା କେବଳ ଜଣେ, ସୁଶୀଳା । ତା'ର ପାଇଁ ବାପା ମାଆଙ୍କର ଏହି ଅଳୋଡ଼ା ସଂସାରକୁ ଛାଡ଼ି ଦେଇ ହେବ, ତ୍ୟାଜ୍ୟ କରି ଦେଇ ହେବ । ସେ ଠିକ୍ କଲା ଯେ ସେ ସୁଶୀଳାକୁ ଦେଖିବାକୁ ଯିବ, ଯେତେ ଶୀଘ୍ର ପାରେ, ଓ ତାକୁ ସବୁକଥା କହିବ । ତା' ଠାରୁ ପୁଣି ସମ୍ପୂର୍ଣ୍ଣ ହୋଇ ଫେରିବ,—ଡର କାହାକୁ, ଭୟ କାହାକୁ !

× × ତେଣୁ ତା' ପରଦିନ ସକାଳେ ତୋଫାନିଆ ବର୍ଷାକୁ ନ ମାନି ସେ ସୁଶୀଳାର ଘରକୁ ଗଲା । ଗଲାବେଳକୁ ତା'ର ମନେ ହେଉଥିଲା ଯେ ଏ ପାଣିପବନ ଯଥେଷ୍ଟ ନୁହେଁ, ପ୍ରବଳ ଝଡ଼ ବହୁଥିଲେ ଗଛବୃକ୍ଷ କଡ଼ମଡ଼ ହୋଇ ଭାଙ୍ଗି ପଡ଼ୁଥିଲେ ମଧ୍ୟ ସେ ସୁଶୀଳା ପାଖକୁ ଯାଇ ଥାଆନ୍ତା ।

ସେ ଯାଇ ଦେଖିଲା ଯେ ସୁଶୀଳା ତାଙ୍କର ସେହି ଶୋଇବା ଘରର ଗୋଟିଏ କୋଣରେ ଛିଡ଼ା ହୋଇ ମୁଣ୍ଡ କୁଣ୍ଡାଉଛି ଓ ଗୁଣୁ ଗୁଣୁ ହୋଇ ଗୀତ ଗାଉଛି । ଜଣା ପଡ଼ୁଛି ଯେ ସେ ଖସିଅଛି ।

ବଷ୍ଟୁ ପଛରୁ ଧୀର କଣ୍ଠରେ ଡାକିଲା—ସୁଶି !

ସୁଶୀଳା ମୁହଁ ଫେରାଇଲା । କିନ୍ତୁ ସେ ଚମକି ପଡ଼ିଲା କାହିଁକି ? ଯାହାହେଉ ବଷ୍ଟୁ ତା'ର କାରଣ ଖୋଜିବାକୁ ଚାହିଁଲା ନାହିଁ । ସୁଶୀଳାର ତ୍ରସ୍ତ ଚାହାଣୀ, ତା'ର ଅବିନ୍ୟସ୍ତ ବେଶଭୂଷା, ଆଲୁଳାୟିତ କୁନ୍ତଳ ଏବଂ ମେଘ ବରଷାର ଛାଇକୁ ନେଇ ଯେଉଁ ମୋହମୟ ରୂପ ଦେଖାଗଲା, ବଷ୍ଟୁ ତାକୁ ହିଁ ଚାହିଁ ରହିଲା । କିଏ କହିଲା ଯେ ସେ ଅସୁନ୍ଦର ? ସେମାନେ ଜାଣନ୍ତି ନାହିଁ । ତା' ଛଡ଼ା ସେ ଅନ୍ୟମାନଙ୍କ ପାଖରେ ସୁନ୍ଦର ହୋଇ ପାରିବ ନାହିଁ, କେବଳ ମୋରି ପାଖରେ ।

ବିଷ୍ଣୁର ମନରେ ଗୋଟିଏ ଅଦୋଭନୀୟ ଭାବର ଉଦୟ ହେଲା ଯେ ସେ ସୁଶୀଳାର ଓଠରେ ଚୁମ୍ବନ ଦେବ । ତା'ର କମ୍ପମାନ ଓଠରେ ଦୀର୍ଘ ଏକ ସୁଦୀର୍ଘ ଚୁମ୍ବନ ଦେବ, ଭେଟି ଦେଲାପରେ । ଯେଉଁଥିରେ ସବୁ ଭାଙ୍ଗି ସିଧା ହୋଇଯିବ, ଅଉ କିଛି କହିବାକୁ, କିଛି ଖାଇବାକୁ ନ ଥିବ । କିନ୍ତୁ ସେ ନିଜକୁ ସଂଯତ କଲା ।···ମୁଁ ସେମିତିକା ପିଲା ନୁହେଁ । ମୁଁ ସୁଶୀଳାର କୁମାରୀତ୍ୱ, ତା'ର ପବିତ୍ରତା ନଷ୍ଟ କରି ପାରିବି ନାହିଁ ।

ସୁଶୀଳା ଅଙ୍ଗ ଅଙ୍ଗ ହୋଇ କହିଲା, "ବିଷ୍ଣୁ ଭାଇ (କ'ଣ କହିବ ? କେମିତି କହିବ ? ଏ ଜଣକ ଅନ୍ୟମାନଙ୍କ ପରି ନୁହେଁ, ଯାଙ୍କୁ ବୁଝାଇବା କଷ୍ଟ)—ବିଷ୍ଣୁ ଭାଇ—କାଲି ଆମେ ତୁମ ଘରକୁ ଯାଇଥିଲୁ । ଆଉ କାଲି ରାତିରେ ବାପା କହିଲେ ଯେ—

ସୁଶୀଳା ଆନତ-ବଦନା । କଥା ଆଗେଇପାରୁ ନାହିଁ । ବିଷ୍ଣୁ ଆଗ୍ରହରେ ଛଟପଟ ହେଲା । ତା ହେଲେ—ତା ହେଲେ—କ'ଣ ପ୍ରସ୍ତାବ ଦେଇ ହୋଇ ଯାଉଛି ? କେତେବେଳେ ଗଲା ? କାହା ହାତରେ ଗଲା ? ଏ ଝିଅଟି ଏମିତି ଲାଜଉଛି କାହିଁକି ?

ବିଷ୍ଣୁଭାଇଙ୍କ ଶୁକୁଟା ମୁହଁ ଉତ୍ତର ଆସୁଛି । ତାଙ୍କ ଭସାଣିଆ ଆଖିରେ ଅସଂଖ୍ୟ ଢେଉ କୁଳୁକୁଳୁ ହେଉଛି । ସୁଶୀଳା ଦେଖିଲା ଓ ତା'ର ରାଗ ଆସିଲା । କେମିତିକା ମଣିଷଟିଏ ମ ? ଏ କ'ଣ କିଛି ବୁଝି ପାରୁ ନାହାନ୍ତି ? କିନ୍ତୁ ମୋର ଦୋଷ ନୁହେଁ, ମୋର ଦୋଷ ନୁହେଁ ।··· ସୁଶୀଳା ଅବିଷ୍କାର କଲା ଯେ ତା'ର ଆଖିରେ ଲୁହ ଜକେଇ ଆସୁଛି ଏବଂ ସେହି ହେତୁ ସେ ନିଜକୁ ପ୍ରମାଣିତ କଲା ଯେ ତା'ର ଦୋଷ ନୁହେଁ, ତା'ର ଦୋଷ ନୁହେଁ, ସେ ବିଷ୍ଣୁ ଭାଇ ପାଇଁ କାନ୍ଦୁଛି ।

ନିଜକୁ ଟାଣ କରିବାକୁ ହେବ । ମୁଁ ନ କହିଲେ ତାଙ୍କୁ ଆଉ କହିବ କିଏ ? ସୁଶୀଳା ମନରେ ଦମ୍ଭ ଆଣିଲା ଓ ମୁହଁ ଉଠାଇ ରୁଦ୍ଧ କଣ୍ଠରେ ତା'ର କଥା ଶେଷ କଲା, "ବାପା କହିଲେ ଯେ ତୁମ ଘରକୁ ପ୍ରସ୍ତାବ ଯିବ ନାହିଁ । ସେ ଆଉ ଗୋଟିଏ ଜାଗାରେ ଠିକ୍ କରିଛନ୍ତି— ।"

"କାହା ଘରେ ? ସେ କିଏ ?"

ସୁଶୀଳା ଦେଖିଲା ଯେ ବିଷ୍ଣୁ ଭାଇଙ୍କର ଗୃହାଣୀ ଗୋଳିଆ ଓ ଗହଳିଆ ହୋଇ ଆସୁଛି । ବିଷ୍ଣୁ ଭାଇ କଷ୍ଟ ପାଉଛନ୍ତି । ସେ ଭାତ ଉଠୁ ନାହାନ୍ତି, ପାଟି କରୁ ନାହାନ୍ତି । ତଥାପି ଡର ଲାଗୁଛି । ହଠାତ କି ସେହି ମନ୍ଥନରୁ ଯାହା ବାହାରିବ ତାକୁ ସହି ହେବନାହିଁ । ···କାଲିକା କଥା ମନେ ପଡ଼ୁଛି । କାଲି ବାପା ଯେତେବେଳେ କହିଲେ ଯେ ସେଠି ପ୍ରସ୍ତାବ ପଡ଼ିବ ନାହିଁ, ସେତେବେଳେ ମନରେ ଦୁଃଖ ହେଲା; କିନ୍ତୁ ଉଶ୍ୱାସ ଲାଗିଲା—ଗୋଟିଏ ଅଜଣା ଭୟରୁ ଯାହି ମିଳିଲା ପରି । ତାପରେ ବାପା କହିଲେ ମୁରଲୀ ଭାଇଙ୍କ କଥା, ଯେ ସେଠି ପ୍ରସ୍ତାବ ପଡ଼ିବ, ତାଙ୍କ ବାପ ମାଆ ବେଳ

ହେବେ ବୋଲି ଜଣା ପଡ଼ୁଛି । ଯେତେବେଳେ ମନରେ ଆସିଲା ଯେ ସେଇଆ ହେଉ । ମୁଁ ଭାବିଲି ଯେ ମୁଁ ମୁରଲୀ ଭାଇଙ୍କୁ ଭଲ ପାଏ ନାହିଁ, ଉତ୍ତମ । ସେଠି ପ୍ରେମ ନାହିଁ, ଡର ନାହିଁ, ଲଗା ନାହିଁ, ପଘା ନାହିଁ । କାହିଁକି ? ମୁଁ କଅଣ ଭଲ ପାଇବାକୁ ଆତୁର ପାଗଳ ନାହିଁ ? ମୁଁ ତା'ର ଯୋଗ୍ୟ ନୁହେଁ ?···

"ସୁଶି, ମୋତେ କୁହ । ମୋତେ କୁହ ।"

···ଓଃ ! ସେ କାହିଁକି ଏମିତି ହେଉଛନ୍ତି ? ଜାଣିଲେ କଣ କରି ପକାଇବେ ? ହିଂସା । ଗ୍ରେଟ୍ ମଣିଷର ହିଂସା···ସୁଶୀଳାର ମନେ ହେଲା ଯେ ସେ ନିଜକୁ ଓ ମୁରଲୀ ଭାଇଙ୍କୁ ଏହି ହିଂସାର ଦାଉରୁ ରକ୍ଷା କରିବ···ମୁଁ କହିବ ନାହିଁ, କିଛି କହିବ ନାହିଁ । ମୁଁ କଅଣ ବା ଜାଣିଛି ? ଶେଷକୁ ମୋର ବାହାଘର କେଉଁଠି ହେବ କିଏ କହିବ ?

ଭଗି ଭାଇ ଘରେ ନାହିଁ । ବାପା ମନ୍ଦିରକୁ ଯାଇଛନ୍ତି (ଯେତେ ଝଡ଼ ବର୍ଷା ହେଲେ ବି ସେ ମନ୍ଦିରକୁ ଯାଆନ୍ତି ) କିନ୍ତୁ ଅନ୍ୟମାନେ ମାଆ, ସୁଲି, ମିଲି ଥରି ଥରି କରି ଅନେଇ ଦେଇ ଗଲେଣି । ଭୁରୁ କୁଞ୍ଚେଇ ଫେରି ଗଲେଣି । ସେମାନେ ମଧ୍ୟ ଏହି ଦୃଶ୍ୟ ଦେଖି ଡରୁଥିବେ । ସୁଶୀଳାକୁ ଲାଗିଲା ଯେ ଅଭିମନ୍ୟୁ ପରି ସେ ଗୋଟିଏ ମରଣାତ୍ମକ ବ୍ୟୂହରେ ପଡ଼ି ଯାଇଛି । ବିଷ୍ଣୁ ଭାଇ ଜଣେ ନୁହେଁ, ଅନେକ ! ପ୍ରେମ ଓ ହିଂସାର ଫଉଜ ।

ମୋତେ ବାଧୁଛି, ମୋତେ ଆଉ ହଇରାଣ କର ନାହିଁ—ଏହି ଭାବରେ ସୁଶୀଳା ତା' ମୁହଁକୁ ଦୁଇ ହାତ ପାପୁଲିରେ ଘୋଡ଼େଇ ଦେଲା ଓ କୌଣସିମତେ କହି ପକାଇଲା, "ମୁଁ ଜାଣେ ନାହିଁ ବିଷ୍ଣୁ ଭାଇ, ମୁଁ ଜାଣେ ନାହିଁ ।"

ବୋଧହୁଏ ବିଷ୍ଣୁର ଦୟା ଆସିଲା । ସେ ଆଉ କିଛି ପଚାରିଲା ନାହିଁ, କିନ୍ତୁ ସେ କହିଲା । ସୁଶୀଳାର ମୁହଁରୁ ତା' ହାତକୁ କାଢ଼ି ଆଣି ଗୋଟେ ଚୋକ କଥା କହିଲା ପରି କହିଲା, "ଶୁଣ । ବ୍ୟସ୍ତ ହୁଅ ନାହିଁ । କାହାର ସାଧ ନାହିଁ ଆମକୁ ଅଲଗା କରି ପାରିବ । ମୋ ବାପା ମାଆ ଚାହାଁନ୍ତି ନାହିଁ—ମୁଁ ସେଇଆ କହିବାକୁ ଆସିଥିଲି । ତୁମ ବାପା ମାଆ ମଧ୍ୟ ଚାହାଁନ୍ତି ନାହିଁ । ନ ଚାହାଁନ୍ତୁ ମୁଁ ତୁମକୁ କଥା ଦେଇଛି ।"

ନା—ବିଷ୍ଣୁ ଭାଇ, ନା ! ସୁଶୀଳାର ଇଚ୍ଛା ହେଲା ପାଟି କରି ଉଠିବ ।···ତୁମେ କିଛି କଥା ଦେଇ ନାହଁ । ମୁଁ ତୁମକୁ କିଛି ମାଗି ନାହିଁ, ତୁମେ କିଛି ଦେଇ ନାହଁ । ଯଦି ମାଗିଥାଏ ମୋର ଭୁଲ ହୋଇଛି, ମୋତେ କ୍ଷମା ଦିଅ ।

କିନ୍ତୁ ବିଷ୍ଣୁ କହି ଚାଲିଲା ଚିର ପ୍ରେମିକର ଅଭସ୍ତ ବାଣୀ । ସେ ସୁଶୀଳାର ବିକଳ ଅବସ୍ଥା ଦେଖିଲା, ଦେଖିଲା ଯେ ସେ କାନ୍ଦୁଛି ଓ ମୁଣ୍ଡ ହଲାଇ 'ନାହିଁ, ନାହିଁ' କରୁଛି । ଅସହାୟା, ଅବଳା ।

ସୁଶୀଳା ପ୍ରକୃତରେ କାନ୍ଦୁଥିଲା । କାନ୍ଦଣା ଭିତରେ ସେ କହୁଥିବା ବୋଲି ହେଉଥିଲା, କହିପାରୁ ନ ଥିଲା—ନା, ନା, ନା ତୁମେ ନୁହଁ । ତୁମକୁ ମୁଁ ଜାଣେ ନାହିଁ । ତୁମେ ଅଜ୍ଞାତ ଜୀବ । ମୁରଲୀ ଭାଇ ଜଣାଶୁଣା, ମୁରଲୀ ଭାଇ ସାଧାରଣ ଓ ସୁନ୍ଦର । (ତା' ମନରେ ଅସିଲା ଯେ ସାଧାରଣ ହେବା ଓ ସୁନ୍ଦର ହେବା ଏକା ଜିନିଷ ) । ତୁମେ ଏକ ବାଗିଆ, ଅସାଧାରଣ, ଅମଣିଷ । କୁତ୍ସିତ ! ମୁଁ ତୁମକୁ ବାହା ହେବାକୁ ଚାହେଁ ନାହିଁ । ମୋର ଦୁର୍ଭାଗ୍ୟ ଯେ ମୁଁ ତୁମକୁ ଭଲ ପାଉଥିଲି, ଭଲପାଏ ··· ।

ସେ ଆଉ ପାରିଲା ନାହିଁ । କହିଁ କହିଁ ହୋଇ ହାତ ଯୋଡ଼ି କହିଲା. "ତୁମ ଗୋଡ଼ତଳେ ପଡ଼ୁଛି ତୁମେ ଏଠୁ ଚାଲିଯାଅ । ପ୍ଲି-ଜ୍ । ତୁମକୁ ମୋ ରାଣ ।"

ବସ୍ତୁ କଥା ମାନିଲା । କହିଲା, "ଆଚ୍ଛା ହେଉ, ମୁଁ ଯାଉଛି କିନ୍ତୁ ଯିବା ଆଗରୁ କହିଯାଉଛି ଯେ ଯଦି ତୁମକୁ ନ ପାଏ, ତାହାହେଲେ ମୁଁ ବଞ୍ଚି ପାରିବି ନାହିଁ । ମୁଁ ଆତ୍ମହତ୍ୟା କରିବି—।" ସେ ବୁଲିପଡ଼ି ଏକ ମୁହାଁ ହୋଇ ଫେରିଗଲା ।

ସୁଶୀଳା ତାକୁ ଅଟକାଇଲା ନାହିଁ କିଛି କହିଲା ନାହିଁ । ତା'ର ମନେହେଲା ଯେ ସେ କିସ୍ମତର ଖେଳ ଦେଖୁଛି, ସେଥିରେ ହାତ ଦେବାର କ୍ଷମତା ତା'ର ନାହିଁ । ଏବଂ ବସ୍ତୁର ଫେରନ୍ତା ବାଟକୁ ଚାହିଁ ରହି ସେ ଭାବିଲା—ଏଇଆ ହେବାକୁ ଥିଲା । ସୁଶୀଳାର ଭାଗ୍ୟରେ ଏଇଆ ଅଛି !

× × କହିବାକୁ ଗଲେ ଏହି ହେଉଛି ନାଟକର ଶେଷ ଦୃଶ୍ୟ । କାରଣ ଏହାପରେ ବସ୍ତୁ ଅପେକ୍ଷା କରି ରହିଲା, କେଉଁ ଦିନ ସେ ଶୁଣିବ ଯେ ସୁଶୀଳାର ଆଉ କେଉଁଠି ବାହାଘର ଠିକ୍ ହୋଇ ଯାଇଛି । ଯେପରିକି ଏହି ଗୋଟିଏ ସୁଯୋଗ ମିଳିଛି, ହାତଛଡ଼ା ହୋଇଗଲେ ପୁଣି ତାକୁ ବଞ୍ଚିବାକୁ ହେବ । ମଣିଷପଣିଆର ଏହି ଗୋଟିଏ ନିଦର୍ଶନ, ଏହି ଗୋଟିଏ ଅଧ୍ୟାୟ ବାକି ରହିଛି,—ଆତ୍ମହତ୍ୟା । ତାହହେଲେ ହୁଏତ ସେମାନେ ବୁଝିବେ । ଶୁଭକାଙ୍କ୍ଷୀ ବାପା, ମମତାମୟୀ ମାଆ, ଧର୍ମାତ୍ମା ପ୍ରଫୁଲ୍ଲ ବାବୁ, ପ୍ରେମଶୀଳା ଅବଳା ସୁଶୀଳା, ଏବଂ ଅନ୍ୟମାନେ ସମବୟସୀ, ସାଙ୍ଗସାଥି, ବନ୍ଧୁବାନ୍ଧବ । ସେମାନେ କଅଣ ବୁଝିବେ ତା'ର ରୂପରେଖା ଅବଶ୍ୟ ସ୍ପଷ୍ଟ ହୁଏନାହିଁ । କିନ୍ତୁ ଅନିର୍ଦ୍ଦିଷ୍ଟ ଭାବରେ ତା' ମନରେ ଅସେ ଯେ ସେମାନେ ବୁଝିବେ —ଯେ ବସ୍ତୁ ସେମିତିକା ପିଲା ନୁହେଁ ।

ବେଳେ ବେଳେ ସେ ଅନୁଭବ କରିବାକୁ ଚେଷ୍ଟା କରେ ଯେ ସେ ମରୁଛି । ନିଜ ହାତରେ ନିଜକୁ ମାରୁଛି । ଧାରୁଆ ଇସ୍ପାତ ଦେହରେ ପଶି ଯାଉଛି ଭିତରକୁ, ଆହୁରି ଭିତରକୁ, ଧଳା ନାଲି ମାଂସ ଭିତରଦେଇ ରକ୍ତସ୍ନାନ କରି ହାଡ଼ର ଖୁଣ୍ଟି ଯାଏଁ । ମୋଟା ଜଡା ଦଉଡ଼ି ବେକକୁ ଚପି ଦେଉଛି, ଜୋରରେ ଅହୁରି ଜୋରରେ,

ବଞ୍ଚିବାର ଶେଷ ନିଶ୍ୱାସଟିକ ଶୁଖେଇ ଦେଉଛି । ବିଷ ! ବିଜୁଳିପରି ବିନ୍ଧ ଦେଉଛି ଓ ଜାଳି ଦେଉଛି । ସେ ବେଦନାର ତୀବ୍ରତାରେ ଛଟପଟ ହୁଏ । କିନ୍ତୁ ତାର ମନେ ହୁଏ ଯେ ଏହି ହେଉଛି ଆନନ୍ଦ, ନିବିଡ଼ତମ ନିଷ୍ଠୁରତମ ପ୍ରେମର ଆନନ୍ଦ ।

ତେବେ ତା ମନରେ ସନ୍ଦେହ ହୁଏ ଯେ ସେ ଯାହାକୁ ପ୍ରେମ ବୋଲି କହୁଛି, ତାହା ହେଉଛି ଘୃଣା । କିମ୍ବା ହୁଏତ ପ୍ରେମ ଓ ଘୃଣା ଭିତରେ କିଛି ପ୍ରଭେଦ ନାହିଁ ।

ବେଶିଦିନ ଅପେକ୍ଷା କରିବାକୁ ପଡ଼ିଲି ନାହିଁ । ଦିନେ ସେ ନିଶ୍ଚିତ ଖବର ପାଇଲା ଯେ ସୁଶୀଳାର ବାହାଘର ପ୍ରସ୍ତାବ ପଡ଼ିଛି ମୁରଲୀ ସାଙ୍ଗରେ ଏବଂ ଶୁଣିଲା ଯେ ମୁରଲୀର ବାପ ମାଆ ରାଜି ହୋଇଛନ୍ତି । ସେ ପୋଟାସିୟମ ସାଏନାଇଡ୍ ଖାଇ ଆତ୍ମହତ୍ୟା କଲା ।

ଯଥାକ୍ରମେ ସମସ୍ତେ ଜାଣିବାକୁ ପାଇଲେ ଯେ ସେ ସୁଶୀଳାକୁ ବାହା ହୋଇ ପାରିବ ନାହିଁ ଭାବି ଜୀବନ ହରାଇ ଦେଲା । କିନ୍ତୁ କାହିଁକି ? କାହିଁକି ସେ ପ୍ରତିବାଦ କଲା ନାହିଁ ? କାହିଁକି ସେ ପଡ଼ି ଉଠି ନିଜର ଦାବୀ ହାସଲ କଲା ନାହିଁ ?

ନିଜେ ବିଷ୍ଣୁ ହୁଏତ ଏହାର ଉତ୍ତର ଦେଇ ପାରି ଥାଆନ୍ତା । କିନ୍ତୁ ଗୋଟାଏ କଥା । ସେ ମଲା ପରେ ତା'ର କୁତ୍ସିତ ବିକୃତ ମୁହଁକୁ ଦେଖି ମନେ ହେଉଥିଲା ଯେ ସେ ତୁଚ୍ଛା ଘୃଣାରେ ମରିଛି । ଏଭଳି ଘୃଣାର ରକ୍ଷା ନାହିଁ ।

## ତିନି

ମୁଁ ଏ ଗପଟିକୁ କାହାକୁ କହିନାହିଁ । କହିବାର ଆବଶ୍ୟକତା ମନେ କରିନାହିଁ କାରଣ ବିଷ୍ଣୁ ଯେତେ ଯାହା ହେଲେ ମଧ୍ୟ ମୋର ବନ୍ଧୁ, ମୁଁ ତା' ମନରେ ଭିତର କଥା ପଦାରେ ପକାଇ ପାରିବି ନାହିଁ ।

କିନ୍ତୁ ମୁରଲୀ ପ୍ରତି ମୋର ଦାୟିତ୍ୱ ରହିଛି । ତା'ଛଡ଼ା ଛଅ ମାସ ନ ପୂରୁଣୁ ସେ ମୋତେ ବସେଇ ଉଠେଇ ଦେଲାନାହିଁ । କହିଲା— କଅଣ ତୋର ଏନ୍‌କ୍ୱାରି ଏ ପର୍ଯ୍ୟନ୍ତ ସରିନାହିଁ ? ଆଉ କେତେ ବାଟ ଅଛି ? ଦେଖ୍ ଏତେ ଡେରିକଲେ ଚଳିବ ନାହିଁ ଇତ୍ୟାଦି । ଶେଷକୁ ସେ ମୋତେ ନେହୁରା ହେଲାପରି କହିଲା,—"ଭାଇଟା ପରି ! ଅସନ୍ତା ମାଘ ମାସ ଆଗରୁ ଜଣାଇ ଦେଇ ପାରିବୁ ନାହିଁ ?"

ତେଣୁ ପୌଷ ଶେଷର ଗୋଟିଏ ଧୂସର-ମନୋରମ ସଞ୍ଜରେ ତାକୁ କହିଲି । ଗପ ନ କହି ଘଟଣାବଳୀର କ୍ରମ ଓ ପରିଣତି ଠିକେ ଠିକେ ଜଣାଇ ଦେଲି ! ସବୁ

ଶୁଣି ସାରିଲା ପରେ ସେ ଦୁର୍ବୁଦ୍ଧିଇ ହୋଇ ପଚାରିଲା, "ବେଶ୍, ଏତିକି ? ଆଉ କିଛି ନାହିଁ ? ସବୁ ସତ କଥା ?"

"ସବୁ ଏତିକି । ଖାଣ୍ଟି ସତ ।"

ସେହିଠୁଁ ସେ ମୁକ୍ତି ପାଇଲା ପରି ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ିଲା, ତା ଓଠରେ ଉଦାର-ମଧୁର ହସ ଫୁଟି ଉଠିଲା ଓ ସେ କହିଲା, "ମୁଁ ଜାଣିଥିଲି । ସେ ନିଜ ଦୋଷରୁ ମଲା । ତଥାପି ମୁଁ ଚାହିଁଲି ଯେ ଏହାର ଗୋଟାଏ ନିରପେକ୍ଷ ବିଚାର ହେଉ, ନ ହେଲେ ମୁଁ ନିଜକୁ କ୍ଷମା କରି ପାରି ନଥାନ୍ତି ।" ତା' ପରେ ସେ ଗମ୍ଭୀର ହୋଇ କହିଲା, "ସେମାନେ ମୋର ବହୁତ ଧନର ଚିନ୍ତା । ସୁଶୀଳା ମୋ ଭଉଣୀ ପରି, ସେଇଥିଲାଗି ମୁଁ ସେଠି ବାହା ହେବାକୁ ଚାହୁଁ ନଥିଲି । ବିଷ୍ଣୁ ମଲା ପରେ ମୁଁ ଟାଣ ହୋଇ ବସିଲି, —ଯେ ନା, ମୁଁ ସେଠି ବାହା ହେବି ନାହିଁ । କିନ୍ତୁ ସେ ଝିଅର ଦୋଷ କଅଣ ? ସେ କାହିଁକି ଏତେ ଅପବାଦ ସହିବ ? ତୁ ନିଜେ କହୁନୁ ! ...ମୁଁ ତୋର ରିପୋର୍ଟକୁ ଅନେଇ ଥିଲି ।"

ସେ ଚୁପ୍ ହୋଇ ରହିଗଲା; କିନ୍ତୁ ମୁଁ ତାର ତାକ୍ଷଣ ନୀରବତା ଓ ବିକଶିତ ଚାହାଣୀକୁ ଦେଖି ଅନୁମାନ କଲି ସେ ଭାବୁଛି—ଏଥର ଦୋଷ କଟିଯାଇଛି । ମୁଁ ସୁଶୀଳାକୁ ବାହା ହେବି । (ବିଚାରି) ! ମୁଁ ତାକୁ ବାହା ହେବାକୁ ଚାହେଁ । ମୁଁ ତାକୁ ବାହା ନ ହୋଇ ରହିପାରିବି ନାହିଁ । ଏ ଭଳି ଇଚ୍ଛା ତ ଆଗରୁ ହେଉ ନ ଥିଲା !



# ନିଷାପ

ପ୍ରେମ ବୋଲି ଗୋଟିଏ ବସ୍ତୁକୁ ଘୃଣା କରି ପାରିବି, ସେ ସାହସ ମୋର ନାହିଁ ବୋଲି କହୁ ନାହିଁ, କିନ୍ତୁ ତା'ର ସଫେଇ ଦେବାକୁ ପଡ଼ୁଛି । କାଳେ ଲୋକେ କହିବେ, ଅର୍ଥାତ୍ ମୋ ନିଜ ମନ ମୋତେ ଛୁରୁଲେଇବ—ତୁ ଆବେଗ ବୋଲି ଗୋଟିଏ ବସ୍ତୁକୁ ଚିହ୍ନିଛୁ କି ନାହିଁ କହିଲୁ ? ସତେକି ମୋର ଇତର ଅକାଂକ୍ଷା ଚେତନାର ଅଧିକାର ନାହିଁ ସେ ବିଷୟରେ ଟୀପ୍ପଣୀ ଦେବା ପାଇଁ । ମୁଁ କୋଉ ଶହୀଦ ଭଗତ୍ ସିଂ ହୋଇ ପାରିବି ନା ପାଗଳ ଠାକୁର ପରମହଂସ ହୋଇ ପାରିବି ଯେ ପ୍ରେମାବେଗର ମର୍ଯ୍ୟାଦା ଲୁଟିବା ମୋର ସାମର୍ଥ୍ୟର ବାହାରେ ନୁହେଁ ବୋଲି ଆପଣ ବିଶ୍ୱାସ କରିବେ ? ଯେଉଁ ସତ୍ୟାନାଶିଆ ପ୍ରେମ ବିଷ୍ଟୁ ଭଳିଆ ପିଲାକୁ ମାରି ପକେଇଲା, ତା'ର ପାଉଣା ଘୃଣା ଛଡ଼ା ଆଉ କିଛି ହୋଇ ନ ପାରେ. ମୋର ଏଇ କ୍ରୋଧ ଯଥାର୍ଥ ବୋଲି ସ୍ୱୀକାର କରିବେ ?

କିନ୍ତୁ ଆପଣ ନିଜେ କୁହନ୍ତୁ—ବିଷ୍ଟୁ ଠଦ କେଇଟା ଦିନ ଆପଣଙ୍କୁ ସମ୍ଭାଳି ରଖି ପାରିଥାଆନ୍ତା, ତାହାହେଲେ ସେ କଣ ବୁଝନ୍ତା ନାହିଁ ଯେ ସେ ସୁଶୀଳାକୁ ଛାଡ଼ି ବେଶ୍ ରହି ପାରିବ, ମଟନ୍ ଚପ୍ ତଥା ଅଶ୍ୱିନ ସନ୍ଧ୍ୟାକୁ ଉପଭୋଗ କରି ପାରିବ, ଏବଂ ଯଥାକ୍ରମେ ଆଉ କାହାକୁ ବାହା ହୋଇ ଆନନ୍ଦରେ ଘର-ସଂସାର କରି ପାରିବ ? ଦେଖନ୍ତା ନାହିଁ ଯେ ସୁଶୀଳା ବି' ଆଉ କାହାର ଘରଅଗଣାରେ କେମିତି ଜମିଯାଇଛି, ସୁଖ କରୁଛି ?

ଆଚ୍ଛା, ପୁରୁଷ-ନାରୀ ପ୍ରେମର ମୂଳକଥା ହେଲା ଯୌନ ଆକର୍ଷଣ ଓ ତା'ର ମୌଳିକ ଉଦ୍ଦେଶ୍ୟ କଅଣ ଆପଣଙ୍କୁ ବତେଇ-ବାକୁ ପଡ଼ିବ ନାହିଁ । ଉଦ୍ଦେଶ୍ୟ, କହିବାକୁ ଗଲେ ଅଭିସନ୍ଧି

ବିଚରା ପ୍ରେମିକର ନୁହେଁ, ଅଂଧ ଦୁରନ୍ତ ପ୍ରକୃତିର ।
ବର୍ଣ୍ଣାଡ଼୍ ଶଙ୍କ ଭାଷାରେ ପ୍ରାଣଶକ୍ତି (Life Force) ନାମକ
ଅଟକ୍ଲାପସ୍ ର ପାହାର କାମ ହେଉଛି ତୁମର ନିଜତ୍ୱକୁ ଏମିତି
ମୋଡ଼ିଦେବ ଯେ ତୁମର ମନେ ହେବ ମୁଁ ମାନେ ସିଏ, ଦେହ ଯାହା
ଆତ୍ମା ସେଇଆ, ସେକସ୍ ର ଅନ୍ୟ ନାଆଁ ସ୍ୱର୍ଗ, ଇତ୍ୟାଦି । ଯେହେତୁ
ସୃଷ୍ଟି ବଞ୍ଚିବା ପାଇଁ ଅପେକ୍ଷା କରିଛି । କିନ୍ତୁ ସେକ୍ସାନନ୍ଦ ସ୍ୱାଧୀନ
ନ ହେଲେ ବିପଦ, ଉଦ୍ଦେଶ୍ୟ ଚେତନାକୁ ଅଗୁରି ବସିଲେ ବିପଦ ।
ଅତଏବ ତୁମେ ତୁମ କାମ କରିଯାଅ, ପ୍ରକୃତି ତା' କାମ କରିବ ।
ବେଶ୍ । ମୁଁ ମୋ ଆନନ୍ଦ କରିଯାଏ, ପ୍ରକୃତି ତା' ଆନନ୍ଦକୁ ଯୋଡ଼ୁ
ମର୍ତ୍ତିରେ ସନ୍ତାନ ଆସୁ, କ୍ଷତି ନାହିଁ, କିନ୍ତୁ ମୋର (ସମାଜର)
ହେଡିକ୍ ଦରକାର । ପ୍ରେମ ଅର୍ଥାତ୍ ଯୌନପ୍ରେମକୁ ନେଇ
ଏତେପରି ଭାବିବା ହେଉଛି ବୁଦ୍ଧିମାନର କାର୍ଯ୍ୟ । ହଁ, ତା'ର
ସଫଳତା ପାଇଁ ଉତ୍ତେଜନା, ତେଣୁ ଆବେଗ ଅବଶ୍ୟ ଗ୍ରାହ୍ୟ, କିନ୍ତୁ
ତା'କୁ ନିଃସ୍ୱାର୍ଥ ଦେଶପ୍ରେମ ଅବା ସ୍ୱାର୍ଥୋତ୍ତର ଭଗବତ୍ ପ୍ରେମ
ସହିତ ତୁଳନା କରିବା ଘୋର ମୂର୍ଖତା ନୁହେଁ କି ?

ନା, ମୁଁ ଭଗତ ସିଂ ବା ପାଗଳାଠାକୁର ନ ହୋଇ
ପାରିଲେ ନାହିଁ ମୋର ଯଥେଷ୍ଟ ଅଧିକାର ଅଛି ମୁଁ ପ୍ରେମକୁ ଘୃଣା
କରିବି, ଯଦି ତା'ର ଦାଉ ଏତେ ଯେ ସେ ବିଷ୍ଣୁ ପରି ପିଲାକୁ...

ମୁଁ ତା'କୁ ହାଡ଼େ ହାଡ଼େ ଘୃଣା କରିବାକୁ ଚାହେଁ, ତା'ର
କାରଣ ବିଷ୍ଣୁ ଥିଲା ମୋର ନିକଟ ଆତ୍ମୀୟ, ଯେ ମୋର ପରି ଅଳ୍ପ
ବହୁତ ପୋଡ଼ାମୁହାଁ, ଅଳ୍ପବହୁତ ଭାବକାତର, ସମ୍ବେଦନଶୀଳ ଏବଂ
ତା'ର ବସ୍ତୁବାଦୀ ପରିବାରଟାରୁ ବାରି ହୋଇ ଯାଉଥିଲା ବୋଲି
ମୋର ବିଶ୍ୱାସ । ସମ୍ଭବତଃ ସେ ଯେଉଁ କବିତା ଲେଖୁଥିଲା
ଲୁଚେଇ ଲୁଚେଇ, ତା'କୁ ମୋ ଛଡ଼ା (ହୁଏତ ସୁଶୀଳାକୁ ବାଦ୍
ଦେଇ) ଆଉ କେହି ବୋଧହୁଏ ପଢ଼ି ନ ଥିବେ, କି ତା'ର ପ୍ରଶଂସା
କରି ନ ଥିବେ । ମୁଁ ତା'କୁ କେତେ ଲମ୍ବା ଲମ୍ବା ଚିଠି ଲେଖି
ବୁଝେଇଥିଲି ଯେ ସବୁର୍ କର , ସୁଶୀଳାକୁ ନ ପାଇଲେ ତୋ
ଜୀବନରେ ମୂଲ୍ୟ ରହିବ ନାହିଁ ଏହାର କୌଣସି ଅର୍ଥ ନାହିଁ, ଏବଂ
କେତେ କବି, ଦାର୍ଶନିକ, ମହାତ୍ମାଙ୍କ ବାଣୀ ଉଦ୍ଧାର କରି ପ୍ରମାଣ
କରି ଦେଇଥିଲି ଯେ ତଥାକଥିତ ପ୍ରେମଠାରୁ ଜୀବନ ବଡ଼ ...କିନ୍ତୁ
ସେ କୋଉ ଶୁଣିଲା । ମୋ କଥା !

ମୋ ଗପର ବସ୍ତୁ ଓ ତା'ର ଆତ୍ମହତ୍ୟା ମୋର ଅଙ୍ଗେ ନଭେଇ ଥିବା ସତ କଥା । କିନ୍ତୁ ଗପର ମୁରଲୀ କିଏ ମୁଁ ଜାଣେ ନାହିଁ । ଆପଣ ବୁଝିନାହାନ୍ତି ? ମୋର ଘୃଣା ଏତେ ବଳବତୀ ଯେ ମୁରଲୀକୁ ଗଢ଼ିବା ଆବଶ୍ୟକ ହୋଇ ପଡ଼ିଲା । ମୁଁ ଦେଖେଇ ଦେବାକୁ ଗ୍ରହିଁଲି ଯେ ଏଇ ପ୍ରେମାବେଗ କେବଳ ଅମଡ଼ା ମାଡ଼-ଯାଏ, ତା' ନୁହେଁ, ପୁନେଇଁଠାରୁ ବଳି ଉଆଁସ ରାତରେ ତା'ର ଜୁଆର ବେଶି ଉପରକୁ ଉଠେ । ସୁଚରିତାଠାରୁ ଦୃପ୍ତା ଦୁର୍ବିନୀତା ଫୁଲେଇ ଛଇଳି, ପରକୀୟା (ତେଣୁ ତରୁଣୀ, ଦୁଷ୍ଟରଜା ), ଏବଂ ସର୍ବୋପରି ମୃତ୍ୟୁଦାୟିନୀ, ଯାହାକୁ ବିଦେଶରେ Feline Fatale ବୋଲି କୁହନ୍ତି, ସେଇ ନାରୀମାନଙ୍କୁ 'ପ୍ରେମ' କରିବା ପାଇଁ ପୁରୁଷ ବେଶି ବିକଳ ହୁଏ । ନ ହେଲେ କି ଅସୁନ୍ଦରୀ ସୁଶୀଳା 'ନଣାପ' ଶେଷରେ ମୁରଲୀର ଆଖିରେ ଏତେ ଲୋଭନୀୟା ହୋଇ ଉଠିଥାଆନ୍ତା ଯେ ସେ କୁହନ୍ତା ମୁଁ ତା'କୁ ବାହା ନ ହୋଇ ରହି ପାରିବ ନାହିଁ ? ମୋ ଗପର ମୁରଲୀ ମିଛ ହୋଇପାରେ କିନ୍ତୁ ସେ ବାସ୍ତବ ନୁହେଁ ବୋଲି କହି ପାରିବେ ?

ହେ ପ୍ରକୃତି । ତୋର ସହଜ ଉଦ୍ଦେଶ୍ୟ ସାଧିତ ହେଉ, କିଏ ମନା କରୁଛି ? କିନ୍ତୁ ପ୍ରେମକୁ ଜଟେଇରୁ ବୋଲି ଏତେ, ପାପ, ଏତେ ମିଛକଥାର ଭୁଆଁ ନ ବୁଲେଇଲେ ଚଳିଥାଆନ୍ତା ବୋଧହୁଏ ।

ଭୁବନେଶ୍ୱର
୨୮ ନଭେମ୍ବର ୧୯୮୭



# ବିଜୟା-ଦଶମୀ

ନରେଶ୍ୱର ଦାସ ଆକାଶକୁ ମୁହଁ କରି ଛିଡ଼ା ହୋଇଥିଲେ । ଦୁଇ ହାତ ଛାତିରେ ଛନ୍ଦି ବିଜୟୀର ଠାଣିରେ ଛିଡ଼ା ହୋଇଥିଲେ । ଯେପରିକି ଆଜିକା ଦିନର ଚନ୍ଦ୍ରିକା, ଏହି ଦଶମୀର ଜହ୍ନ, ଏହି ସୁନାପଦକ ତାଙ୍କରି ପାଇଁ ଗଢ଼ା ହୋଇଛି ।

ଜହ୍ନର ଅସମ୍ପୂର୍ଣ୍ଣତା ତାଙ୍କ ମନରେ ରେଖାପାତ କରି ନ ଥିଲା । ସେ ଅନେକ ସମୟ ହେଲା ଏମିତି ଛିଡ଼ା ହୋଇ ରହିଛନ୍ତି, କଲୋନିର ଏକାଧିକ କାର୍ ଓ ଝରକାଭିତରୁ ଲୋକମାନେ ବାରମ୍ବାର ତାଙ୍କୁ ଏହି ଅବସ୍ଥାରେ ଦେଖି ଆଶ୍ଚର୍ଯ୍ୟ ହୋଇଥିବେ,—ସେ ଧାରଣା ତାଙ୍କ ମନରେ ଆସୁ ନ ଥିଲା । ଏବଂ ସେ ଆପାତତଃ ଭୁଲି ଯାଇଥିଲେ ଯେ ଆଜି ବିଶୁ ମୁହଁ ତଳକୁ ପୋତି ଭଙ୍ଗା ସ୍ୱରରେ ଧମକ ଦେଇ ଯାଇଛି ଯେ ଇଞ୍ଜିନିୟରିଂ କଲେଜରେ ଆଡ୍‌ମିସନ୍ ନ ହେଲେ ସେ ବ୍ୟବସାୟ କରିବ, ଅର୍ଥାତ୍ ଛତର ହୋଇଯିବ । କାରଣ ବର୍ତ୍ତମାନ ସେ ଏକ ଅପୂର୍ବ ସ୍ୱାଧୀନତା ଓ ସମ୍ପୂର୍ଣ୍ଣତାର ଆନନ୍ଦ ପାଉଥିଲେ । ଘ୍ରାଣୀ ତୀବ୍ରତର ହେଉଥିଲା, ନିଃଶ୍ୱାସ ଦୃଢ଼ତର ବହୁଥିଲା, ଓ ମନେ ହେଉଥିଲା ଯେ ସେ ଯେ-କୌଣସି ପ୍ରଶ୍ନ ବା ସନ୍ଦେହର ମୁକାବିଲା କରିପାରିବେ ।

ବେଶ୍ କରିଛି ।

ଏ ସ୍ପର୍ଦ୍ଧା ନୁହେଁ, ବେପରୁଆ ଭାବ ନୁହେଁ । ନରେଶ୍ୱରବାବୁ ନିଜର ମନୋ-ଭାବ ନିଜକୁ ବୁଝାଉଥିଲେ । —ମୁଁ କିଛି ଗୋଟାଏ ଅସାଧାରଣ କାମ କରି ନାହିଁ । ଦେଉଳ ତୋଳି ନାହିଁ କି ବାଟରେ ହଗି ନାହିଁ । ପ୍ରକୃତ ପକ୍ଷରେ ନରେଶ୍ୱର ଦାସ ବଦଳି ନାହିଁ । କିନ୍ତୁ ଆଜି ନରେଶ୍ୱର ଦାସ ଡରି ନାହିଁ । ଡରିବା ହିଁ ଚରମ ଦୁର୍ବଳତା, ପରମ ଶତ୍ରୁ । ମୁଁ କ'ଣ ପିଲା ହୋଇଛି ଯେ ଗୋଟାଏ ମିଛ କୋକବାଦ୍ଧା, ଅନ୍ଧାର-ଗୁଡ଼ିକୁ ଦେଖି ଚଙ୍କିଯିବ ?

ନରେଶ୍ୱରବାବୁ ପିଲା ନୁହନ୍ତି । ବରଂ ସେ ତାଙ୍କର ପଇଁଚାଳିଶ ବର୍ଷର ବୟସ ଅନୁପାତରେ ଅଧିକ ପ୍ରବୀଣ ଓ ବୟସ୍କ ଦେଖାଯାଆନ୍ତି । କେଶ ବିରଳତାରୁ

ଚମଡ଼ା ପାଚିଗଲାଣି, ମୁହଁର ମାଂସପେଶୀ ଢିଲା ଗଲାଣି, ଆଖିତଳେ କଳା ପଡ଼ିଗଲାଣି, ଏବଂ ପେଟଟି ବେଶ୍ ବଡ଼ । ତେବେ ତାଙ୍କ ଭାବଭଙ୍ଗୀରେ ତତ୍ପରତା ଅଛି । ସେ ବଡ଼ପାହାଚରେ ବାଟ ଚାଲନ୍ତି, କୌଣସି ଫାଇଲ୍‌କୁ ବାସି ହେବାକୁ ଦିଅନ୍ତି ନାହିଁ ଓ ପିଲାପିଲି କେହି ସାମାନ୍ୟ ଅସୁସ୍ଥ ହେଲେ ତତ୍‌କ୍ଷଣାତ୍ ଡାକ୍ତର ପାଖକୁ ଛୁଟିଯାଆନ୍ତି ।

ସେହିପ୍ରକାର ନିରଳସ ଉଦ୍ୟତ ଭଙ୍ଗୀରେ ନରେଶ୍ୱରବାବୁ ତାଙ୍କର ଭାବନାକୁ ଛାଣ୍ଟାଇଦେଲେ, ଓ ଦାଣ୍ଡପିଣ୍ଡାରୁ ଓହ୍ଲାଇ ଚାଲିବାକୁ ଲାଗିଲେ । ଯଥାକ୍ରମେ କଲୋନିର ମଝି ରାସ୍ତାଦେଇ ଚାଲିଲେ । ଉଦ୍ଦେଶ୍ୟ,—କଲୋନିର ପୂଜାପେଣ୍ଡାଲ ପାଖକୁ ଯାଇ ଅନ୍ୟମାନଙ୍କ ସଙ୍ଗରେ ଏକାଠି ହେବେ । ପିଲାମାନେ ସେଇଠି ଅଛନ୍ତି । କଲୋନିର ଯେତେକ ଅଫିସର୍, ସେମାନଙ୍କ ପିଲାପିଲି ଅଧିକାଂଶ ସେଇଠି ଥିବେ । ରେଣୁକା ବାରବାର କହିକରି ଯାଇଛି ଯେ ଠିକ୍ ସମୟରେ ଯିବାକୁ ହେବ, ନ ହେଲେ ଦେବୀ ଉଠି ଯିବେ, ଗାଡ଼ି ଭାଙ୍ଗି ଯିବ । ନିଶ୍ଚୟ, ନିଶ୍ଚୟ । ନ ଯିବାର ପ୍ରଶ୍ନ ଉଠୁ ନାହିଁ । ଆମର କଲୋନି, ଆମର ଦୁର୍ଗା । ମୁଁ ଚାଉଳଦାନଯାକ ଯାଇଛି, ଅଞ୍ଜଳି ଧରିଛି, ଆରତି ଦେଖିଛି । ପୂରାପୂରି ଚା-ଉ-ଳ-ଦା-ନ ଯାକ, ଆଉ କେହି ଯାଉ ବା ନ ଯାଉ ।

ନରେଶ୍ୱରବାବୁ ହାତଘଡ଼ି ଦେଖିଲେ । ଆଠଟା ବାଜି ପନ୍ଦର ମିନିଟ୍ । ପ୍ରୋଗ୍ରାମରେ ଥିଲା ଆଠଟା ବେଳକୁ ଦେବୀ ଉଠିବେ, ବେଶି ଡେରି ହୋଇନାହିଁ । ହେଇ ମିଷ୍ଟର ଓ ମିସେସ୍ ବସୁ ଧୀରେ ସୁସ୍ଥେ ଏକୋନବେ ନମ୍ବରରୁ ବାହାରୁଛନ୍ତି । ମିଷ୍ଟର ଓ ମିସେସ ବସୁ ଭଲ ଲୋକ । ବେଶ୍ ମେଳାପୀ । ତାଙ୍କ ଡ୍ରଇଂ ରୁମ୍‌ଟିକୁ ଚମତ୍କାର ସଜେଇଛନ୍ତି । ରେଡ଼ିଓଗ୍ରାମ ଉପରେ ଥିବା ଜାପାନୀ କଣ୍ଢେଇଟି ସବୁଠାରୁ ସୁନ୍ଦର ।

"ନମସ୍ତେ ଅଙ୍କଲ୍ ଜୀ" । ପାଖଦେଇ ବାଳକଟିଏ ଦୋହଲି ଦୋହଲି ଚାଲିଗଲା । ନରେଶ୍ୱରବାବୁ ଚାହିଁ ଦେଖିଲେ,—ସତଚାଳିଶ ନମ୍ବରର ରାଜନ୍, ମିଷ୍ଟର ପିଲେଇଙ୍କ ପୁଅ । ପିଲାଟା ଭାରି ସ୍ମାର୍ଟ୍, ଠିକ୍ ତା' ବାପ ପରି । ମାଲାୟାଲୀ ମାନେ ହିଁ ଏମିତି—ନ ହେଲେ କି ସେମାନେ ଏତେ ଉଚ୍ଚକୁ ଉଠିଥାଆନ୍ତେ ? ବାପ ପୁଅଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦେଖାଇ ନରେଶ୍ୱରବାବୁ ସ୍ମିତହାସ ଦେଲେ ଓ ବଢ଼େଇ ବଢ଼େଇ କହିଲେ, "ନ-ମ-ସ୍ତେ । ଏଥର ଦେବୀଙ୍କ ସାଙ୍ଗରେ ଟ୍ରକ୍‌ରେ ବସି କରି ଯାଉଛ ନା ?" ତା'ପରେ ସେ ହସ ଝରାଇଲେ । ଅଉବର୍ଷ ଏ ଟୋକା ଟ୍ରକ୍ ଉପରେ ଛିଡ଼ା ହୋଇ କମ ତାମସା କରି ନ ଥିଲା । ଭାରି ଫାଜିଲ୍, ଭାରି ସ୍ମାର୍ଟ୍, ଅସଲ ଜଣେ ।

କହିବା ଅନୁଆ ଯଥେଷ୍ଟ ତୋଷ ନ ଥିଲେ ମଧ୍ୟ ରାଜନ୍‌ର ମୁହଁରେ କ୍ଷଣିକ ବିମୂଢ଼ତାର ଲକ୍ଷଣ ଦେଖାଗଲା ଯେତେ କି ସେ ଦାମ୍ ଅଙ୍କଲ୍‌ଙ୍କଠାରୁ ଏତେ କଥା ଏତେ

ହସର ଉତ୍ତର ଆଶା କରି ନ ଥିଲା । ସେ କୌଣସିମତେ ହଁ-ନା-କିଛି ଦେଇ ହେଠ୍ ପଳାଇ ଗଲା । ନରେଶ୍ୱରବାବୁ ପୁଣି ମନକୁ ମନ କହିଲେ,—ଖାହା ପିଲାଟାଏ ।

ଦୂରରୁ ଜଣେ ଭଦ୍ରଲୋକ ଏ ଆଡ଼କୁ ଆସୁଛନ୍ତି । ଅଳିନପଣ ଦିନରେ ବିପଦ୍‌ବାତଦିଗରୁ ଆସୁଥିବା ଏ ଜଣକେ କିଏ ? ନରେଶ୍ୱରବାବୁ ନିରେଖି ଦେଖିଲେ । ହାତରେ ପରିବାଥଳୀ,—ବୋଝେଇ ହୋଇଛି ବୋଲି ମନେ ହେଉଛି, ଇଷତ୍ ଅବନତ ଦୃଷ୍ଟି, ମପାଚୁପା ଗ୍ରତି । ନିଶ୍ଚୟ ୩୨ ନମ୍ବରର ମିଷ୍ଟର କାଶ୍ୟପ୍ । ବିଚ୍ଚରି ! ନରେଶ୍ୱର-ବାବୁଙ୍କର ମନ ଅନୁକମ୍ପାରେ ଭରିଗଲା । ମିଷ୍ଟର କାଶ୍ୟପ୍ ଏହି କଲୋନୀର ଜଣେ ଅଫିସର୍, କିନ୍ତୁ ଶ୍ରେଷ୍ଠ ଅଫିସର୍, ଉଠି ଉଠି ଉପରକୁ ଆସିଛନ୍ତି, ଶଟାପ୍ପାର୍ କରିବାକୁ ବିଶେଷ ଡେରି ନାହିଁ । ଆଜି ମଧ୍ୟ ତାଙ୍କୁ ପରିବାଥଳୀ ହାତରେ ଧରି ଘରମୁହାଁ ଧାଇଁବାକୁ ପଡ଼ୁଛି । ତାଙ୍କର ଦୋଷ ନୁହେଁ, କିନ୍ତୁ କ'ଣ କରାଯିବ ? ମିଷ୍ଟର କାଶ୍ୟପ୍ ମାଡ଼ି ଆସୁଛନ୍ତି । ନିରୁପାୟ ହୋଇ ଲଜ୍ଜିତ ହେଲା ପରି ନରେଶ୍ୱରବାବୁ ନଇଁ ପଡ଼ି ଅଗତ୍ରୁଣ ନମସ୍କାର କଲେ । ଆଉ କିଛି କହିବାକୁ ଭରସା ପାଇଲେ ନାହିଁ ।

ମିଷ୍ଟର କାଶ୍ୟପ୍ ଆପ୍ୟାୟିତ ହେଲେ । ଆତ୍ମୀୟତାରେ ଆଲୋଡ଼ିତ ହୋଇ କହି ପକାଇଲେ, "ଆପଣଙ୍କ ସାଙ୍ଗରେ ବହୁତ ଦିନୁ ଦେଖା ହୋଇ ନାହିଁ । ଭଲ ଅଛନ୍ତି ? ଆଉ ଟିକୁ ଆଜିକାଲି ଆସୁନାହିଁ ଚାହିଁଳ ! କ'ଣ ଖୁବ୍ ପଢ଼ାପଢ଼ି କରୁଛି ? ମୁଁ ରମେଶକୁ କହୁଥିଲି···।" ନରେଶ୍ୱରବାବୁ ଏହି ଉଚ୍ଛ୍ୱାସ ପରେ ସ୍ୱୀକାର କରି ଘନ ଘନ ମୁଣ୍ଡ ହୁଙ୍କାରିଲେ, ଟିକୁକୁ କହିବେ ବୋଲି ଠିକ୍ କଲେ ଯେ ତା'ର ରମେଶ ସାଙ୍ଗରେ ମିଶିବା ଦରକାର, ଏବଂ ମିଷ୍ଟର୍ କାଶ୍ୟପଙ୍କ କଥା ସରିବାଯାଏଁ ଅପେକ୍ଷା କଲେ; କିନ୍ତୁ ଇତି ମଧ୍ୟରେ ମିଷ୍ଟର ଓ ମିସେସ୍ ବସୁ ପାଖରେ ଆସି ପହଞ୍ଚିଗଲେଣି । ଏକାନବେ ନମ୍ବରରୁ ମର୍ଚିଗସ୍ତା ଯାଏଁ ଆସିବାକୁ ଏତେ ସମୟ ଲାଗିଗଲା, କାହିଁକି ନା ସେମାନେ ନିଜଗଢ଼ା ପୁଷ୍ପିତ ଲନ୍‌ର ଶୋଭା ଦେଖି ଗଜଗମନରେ ଆସୁଥିଲେ ।

ନରେଶ୍ୱରବାବୁ ମିଷ୍ଟର୍ କାଶ୍ୟପ୍‌ଙ୍କୁ ଯଥାଯୋଗ୍ୟ କିଛି କହିବାର ସୁବିଧା ପାଇଲେ ନାହିଁ । ମିଷ୍ଟର୍ କାଶ୍ୟପ ମଧ୍ୟ ଶୀଘ୍ର ବିଦାୟ ନେଇ ନିଜ ବାଟରେ ଗଲେ । ନରେଶ୍ୱରବାବୁ ଆହନ୍ତା ଦୁଇଜଣଙ୍କୁ ଦେଖିଲେ ଓ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲେ । ମିଷ୍ଟର୍ ଓ ମିସେସ୍ ବସୁ । କଲୋନୀର ଉଜ୍ଜ୍ୱଳତମ ଯୋଡ଼ି । ନିଖୁଣ ଯୋଡ଼ି ।

ମିସେସ୍ ବସୁଙ୍କର ଶାଢ଼ୀରେ ପେଲବ ରଙ୍ଗହୀନ ରଙ୍ଗ । ଜ୍ୟୋତ୍ସ୍ନାର ଦୀପ୍ତି, ଆବେଶର ଜାଗରଣ । ଏଇ କ'ଣ ଫରେନ୍ ନାଇଲନ୍ ? ନା ଆଉ କିଛି ଅଭିନବ ସୃଷ୍ଟି ଏବଂ ମିଷ୍ଟର୍ ବସୁଙ୍କର ସୁଟ୍‌ରେ ରେଖାର ଶୈଳୀ, ଟେରେ ଉଦ୍ଧତ୍ । ତାଙ୍କର ସବୁ ଦିନ ଓ ସବୁ ଦିନ ସାଙ୍ଗରେ ଖାପ ଖାଇ ଯାଉଛି । କିଏ ସ୍ପେଶାଲ୍ କିଏ ଦେଇକି ସ୍ପେଶାଲ୍ କହି ହେବ ନାହିଁ । ନିଜେ ମିଷ୍ଟର ବସୁହିଁ ସ୍ପେଶାଲ୍ ବିଶିଷ୍ଟ ଟାଇପ୍ ।

ନରେଶ୍ୱରବାବୁ ମିଳନକାମୀ ହୋଇ ହାତ ବଢ଼ାଇଲେ । ମିଷ୍ଟର ବସୁ ଅତି ଲମ୍ବେ ହାତ ମିଳାଇ "ହ୍ୟାଲୋ, ହ୍ୟାଲୋ, ହ୍ୟାଲୋ" ବୋଲି ତିନିଥର କହିଲେ । ତା'ପରେ ମିସେସ୍ ବସୁଙ୍କ ପାଇଁ ନମସ୍କାର ଓ କମନୀୟ ପ୍ରତିନମସ୍କାର ।

ନରେଶବାବୁଙ୍କର ମନେ ହେଲା ଯେ ଏଥିପୂର୍ବରୁ ହୁଏତ ଅନେକଥର ଏମାନଙ୍କ ସାଙ୍ଗରେ ଦେଖା ହୋଇଛି, କଥାବାର୍ତ୍ତା ହୋଇଛି; କିନ୍ତୁ ଆଜିକାର ଏହି ସାକ୍ଷାତରେ କିଛି ଅଧିକ ଗୁଣ ଅଛି ।—କାହିଁକି ନା ଆଜିକାର ମୁଁ ଆଉ ଜଣେ । ଆଜି ମୋର ହୃଦୟଦ୍ୱାର ଉନ୍ମୁକ୍ତ, ଅବାରିତ । ସାନ ବଡ଼ର ବିଗ୍ରହ ନାହିଁ । ମଣିଷ ମଣିଷକୁ ଡାକୁଛି, କଲେଜର ଅଫିସର୍ ଅଫିସର୍-ଭାଇ ସାଙ୍ଗରେ ହାତ ମିଳାଉଛି ।

ତିନିଜଣଯାକ କିଛି ସମୟ ଲଗାଲଗି ହୋଇ ଚାଲିଲେ, ଗପ କଲେ । ନରେଶ୍ୱରବାବୁ ସେମାନଙ୍କର ସାନ୍ନିଧ୍ୟକୁ ଅନୁଭବ କଲେ, ଉପଭୋଗ କଲେ ଏବଂ ତାଙ୍କର ନବଜାଗ୍ରତ ଶଙ୍କାକୁ ବୁଝେଇଲା ପରି ନିଜକୁ କହିଲେ,—ସାଧୁତା ଗୋଟିଏ ଲିଭାର ସାଞ୍ଚ୍ ନୁହେଁ । କଣ୍ଟାର ଖେଳ ନୁହେଁ, ଯୋଧୀ ଜାଲୁଆର ନୁହେଁ । ହୁଏତ ଫରେନ୍ ନାଇଲନ୍ ପରି ନୁହେଁ, ନ ହେଉ; କିନ୍ତୁ ପ୍ରୀତିକର ହେବ ନାହିଁ କାହିଁକି ?

କ୍ରମଶଃ ଆଉ କେତେ ଅଫିସର୍ ତାଙ୍କ ସ୍ତ୍ରୀ ଓ ପିଲାପିଲି ଘରୁ ବାହାରି ପେଣ୍ଡାଲ ଆଡ଼କୁ ମୁହାଁଇବାର ଦେଖାଗଲା । କେତେଜଣ ସୁପରିଚିତ—ମିଷ୍ଟର୍ ଚେଟ୍ଟି ଖାଦ୍ୟ ସରବରାହ; ମିସେସ୍ ନନ୍ଦ ଓ ତାଙ୍କର ଆଧୁନିକା ଚପା ସାଲୁଓ୍ୱାର କାମିଜ୍‌ପିନ୍ଧା ଝିଅ, ସ୍ୱାମୀ ରେଳବାଇ; କଲେଜର ବହୁପ୍ରକ ନିତ୍ୟ ପରମାଣିକ, ଦେଖିଲେ ଜଣା ପଡ଼ିବ ନାହିଁ ଯେ ସେ କଷ୍ଟମସ୍; ଦୁଇ ଭଉଣୀ ତରୁଣୀ ଶୁଭ୍ରା ଓ ଶୁକ୍ଳା, ବାପା ପି. ଡବ୍ଲ୍ୟୁ. ଡି., କେନ୍ଦ୍ରଚ୍ୟୁତ ଗ୍ରହ ଇତସ୍ତତଃ ହେଉଥିବା କେତୋଟି ଯୁବକ, ଦର୍ଶନବିଦିତ କିନ୍ତୁ ଅନିର୍ଦ୍ଦିଷ୍ଟ, କାହାର ପୁଅ ବୋଲି ଜାଣିବା କଷ୍ଟ ।

ସିନେମା ପରଦାରେ ତାରା କମ୍ବା ଫୁଲ ଫୁଟି ଉଠିଲା ପରି ସେମାନେ ଦୃଶ୍ୟମାନ ହେଲେ, ଗୋଟି ଗୋଟି କରି । ଅନ୍ତତଃ ନରେଶବାବୁଙ୍କୁ ସେମିତି ଲାଗିଲା ଏବଂ ତାଙ୍କ ମନରେ ସାର୍ବଜନୀନ ଆହ୍ୱାନ-ଆଲିଙ୍ଗନର ଭାବ ଆସିଲା ।—ଆସ, ସମସ୍ତେ ଆସ । ମୁଁ ତୁମ ସମସ୍ତଙ୍କ ସାଙ୍ଗରେ ମିଶିବାକୁ ଚାହେଁ, ଏକାଠି ହେବାକୁ ଚାହେଁ । ମୁଁ ଗୁହାମାନବ ନୁହେଁ । ପର୍ବତଶିଖରର ମୁନି ନୁହେଁ, ଡରକୁଳା ପିଲା ନୁହେଁ । ମୁଁ ସମାଜର ମଣିଷ ।

କେଉଁ ଦୂରରୁ ସେହି ବିତାଡ଼ିତ ଭୂତପ୍ରେତମାନଙ୍କର ଅଶ୍ଳୀଳ ପଦେ ଅଧେ ଶୁଭିଯାଉଥାଏ, କିନ୍ତୁ ନରେଶ୍ୱରବାବୁ ତାହାକୁ ଅନାୟାସରେ କାଟିଦେଇ ପାରୁଥାଆନ୍ତି । ଶୁଭୁ, ମୁଁ ଶୁଣିବି ନାହିଁ । ଆଜି ମୁଁ ସୁସ୍ଥ ଓ ମୁକ୍ତ ।

ଅତୀତରେ ସେ ଶୁଣିଥାଆନ୍ତେ, ପୁଣି ଶୁଣିଥାଆନ୍ତେ, ରାଗି ଥାଆନ୍ତେ, ଏହି ନାତିଭାଇମାନଙ୍କୁ ଛିଃ ବୋଲି କହୁଥାଆନ୍ତେ, ପୁଣି ରାଗି ଥାଆନ୍ତେ ଓ ମନେ ମନେ କାନ୍ଦିଥାଆନ୍ତେ, କାନ୍ଦିଥାଆନ୍ତେ ଓ ଡରିଥାଆନ୍ତେ, ନିଜ ଗୁମ୍ଫାଭିତରକୁ ଚାଲିଆସି କବାଟ କିଳିଦେଇ ପୁଣି ଛିଃ ବୋଲି କହୁଥାଆନ୍ତେ । ଯଥା :—

ମିସେସ୍ ବସୁ ପୁଚ୍ଛି ହଲେଇ ମୃଦୁ ମୃଦୁ ହସି କାର୍ ଚଲାନ୍ତି, ମୋର ବାଟଦେଇ ଗଡ଼ି ଯାଆନ୍ତି । ମୁଁ ସେତେବେଳେ ଖରାରେ ବସ୍ ପାଇଁ ଅପେକ୍ଷା କରିଥାଏ, ମୋଟା ଖାକି ପ୍ୟାଣ୍ଟ୍ ତଳେ ଝାଳ ଗଳଗଳ ହୋଇ ବହିଯାଉଥାଏ । କାହିଁକି ? ମିଷ୍ଟର୍ ବସୁ ଏମିତି କେତେ ଦରମା ପାଆନ୍ତି କି ? ଦରମା ନୁହେଁ, ଦରମା ନୁହେଁ । ସେ ହରକାଷ୍ଟି କର୍ପୋରେସନ୍‌ର ବଡ଼ କର୍ତ୍ତା, ବଡ଼ କଣ୍ଟ୍ରାକ୍ଟରଙ୍କ ମିତ । ମୁଁ ସେଦିନ ନିଜେ ଦେଖିଛି ଶେଠ ଭଗତ୍ ସିଂର ଗାଡ଼ି ଏକାନବେ ନମ୍ବର ସାମନାରେ ଛିଡ଼ା ହୋଇଥାଏ, ଆଉ ଗାଡ଼ିଭିତରୁ କାଠ ଡାବଲରେ ଭରି ଭରି ଜିନିଷ ବାହାରୁଥାଏ । ବୋତଲର ଡାବଲ ସ୍କଚ୍ ହୁଇସ୍କି ନା ଆଉ କଅଣ ? ହେଉ କେବେହେଲେ କ'ଣ ଧରାପଡ଼ିବ ନାହିଁ ଭାବିଛ ? ଚୋରଘର ସବୁଦିନେ ଆଲୁଅ ନୁହେଁ । ରେଣୁକା କହୁଥିଲା ଯେ ଚେଟ୍ଟୀଙ୍କ ଘରେ ସବୁଦିନେ ସରୁ ବାସୁମତୀ ଚାଉଳ ଖାଆନ୍ତି । ଖାଆନ୍ତୁ, ଜୀଅନ୍ତୁ । ମରନ୍ତୁ । ମୋ ପିଲାଏ ହେଲ୍ଥ ରେସନର ପାଣିପରା ମୋଟା ଚାଉଳ ଖାଇବେ, ଭାରତର ଲକ୍ଷ ଲକ୍ଷ ଲୋକ ଯାହାକୁ ଖାଆନ୍ତି । କିନ୍ତୁ ଚେଟ୍ଟୀ ସେମିତି ନିର୍ଲ୍ଲଜଙ୍କ ପରି ହସେ କାହିଁକି ? କଳା ଫାଲୁଆ ମୁହଁରେ ତା'ର ଦାନ୍ତୁରା ହସକୁ ଦେଖିଲେ ମୋ ହାଡ଼ ଜଳେ···ଏଇ ଆସୁଛି, ଅସଲ ବାଳୁଙ୍ଗା ! ଟିକୁ କେତେଦିନ ତାଙ୍କ ଦଳରେ ପଶିଥିଲା । ଏ ଟୋକା ତାକୁ ମିଛୁଟାରେ ପିଟି ପକାଇଲା, ତା ଦେହଯାକ କାଦୁଅ ବୋଳିଦେଲା, ଆଉ ଥେଇ ଥେଇ ହୋଇ ନାଚିଲା । କିନ୍ତୁ ଇଏ (ରାଜନ୍) ସେଣ୍ଟ୍ ପିଟର୍ସ ସ୍କୁଲ୍‌ରେ ସିଟ୍ ପାଇଛି । ନଡ଼ିଆ ଇଂରେଜି କହେ । ଆଜିଠୁ ଟେନିସ୍ ଖେଳି ଶିଖିଲଣି । କାହିଁକି ହେବ ନାହିଁ ? ସେଣ୍ଟ୍ ପିଟର୍ସର ପ୍ରିନ୍‌ସିପାଲ୍‌ଙ୍କ ନାଁ ଶିବସମୁଦ୍ର ପିଲେଇ, ଦୁଇ ପିଲେଇଯାକ 'ରେଡ୍ ରୋଜ' ରେସ୍ତୋରାଁରେ ଡିନର ଖାଆନ୍ତି । ଠିକ୍ ଅଛି । ତମ ପୁଅ ଆଇ. ଏ. ଏସ୍. ହେଉ, କମ୍ପାନି ମ୍ୟାନେଜର ହେଉ, ମୋ ପୁଅ ଶିଳ୍ପୀ ହେବ, କବି ହେବ, ଦେଶ-ସେବା କରିବ (ଅନ୍ତରର ଓଠକାମୁଡ଼ା କ୍ରନ୍ଦନ) । ଶୁକ୍ଳା ଆଉ ଶୁଭ୍ରା ! କଲ୍‌ଚର୍‌ର ବାହ୍ନାରେ ମହକୁଛନ୍ତି । ଶୁକ୍ଳା ରେଣୁକାକୁ ପଚାରିଲା, 'ଆଣ୍ଟି ଆପଣଙ୍କର ହବି କଅଣ ? ଆପଣ ଇଙ୍ଗର୍ ବର୍ଗମ୍ୟାନ୍‌ର ପିକ୍‌ଚର ଦେଖିନାହାନ୍ତି ? ଆପଣ ରୁଷିଆନ୍‌ବାଲେ ଦେଖିବାକୁ ଗଲେ ନାହିଁ !' ମାଆ ନାହିଁ, ଅଉ ବାପାଙ୍କର ଚୋର ମାଲରେ ଏ ଦୁ'ଜଣଯାକ ଉଡୁରୁଛନ୍ତି । କଲ୍‌ଚର୍ କରୁଛନ୍ତି । ବାପାଙ୍କର କୀର୍ତ୍ତି କିଏ ନ ଜାଣେ ? ଏ ଯେତେକ କଲୋନିର ଘର ଯାଙ୍କର ଦ୍ୱାରା ତିଆରି ହୋଇଛି । ହବୁଥିବୁ ପର୍‌ସେଣ୍ଟେଜ୍ ଏକାଠି କଲେ ତାଜ୍‌ମହଲକୁ ବି କିଣି ନେଇ ହେବ । ଆମେ ହତ୍‌ରେ ଚଳିବୁ, ମୋ ସ୍ତ୍ରୀ ଚୁଲି

ଫୁଙ୍କିବ,—କିଛି ଷଣ୍ଢ ନାହିଁ। ମୁଁ କ'ଣ ଗୋଟାଏ ମୁହାଁମୁହିଁ ଦେଖି ପାରନ୍ତି ନାହିଁ ? ରେଣୁକା ନିଜେ ମନା କଲା। କାଶ୍ୟପ୍ ଲୋକଟା ଏତେ ନିକୁଚ୍ଛିଆଭାବରେ କାହିଁକି ଚଳେ ? ହେଲେ ତା'ର ସାହସ କମ୍ ନୁହେଁ। ମୋତେ ପୁଣି ସେ ମିଛ ଟି. ଏ. ବିଲ୍‌ର ବାଟ ବତାଉଥିଲା ! ନୀଚ, ଅତି ନୀଚ।

ଆଜି ଏଭଳି ମନଭାବନାର ବନ୍ଧୁବିହର୍ଗ ନାହିଁ।

କିଛି ସମୟ ପୂର୍ବରୁ ଘରୁ ବାହାରିଲାବେଳେ ତାଙ୍କ ଆନନ୍ଦରେ ଉତ୍ତରତର ଗୃହିଣୀ ଖରତର ନିଶ୍ୱାସ ଆଦି ଲକ୍ଷଣ ରହିଥିଲା। କ୍ରମଶଃ ସେ ଅବସ୍ଥା ମଧ୍ୟ ପାର ହୋଇ ଗଲାଣି। ବର୍ତ୍ତମାନ ପ୍ରଶାନ୍ତିର ସମତଳ ଭାବ। ଯେତେବେଳେ ସ୍ୱାଧୀନତା ପୂରୁଣା ହୋଇଗଲାଣି ମାତ୍ର ଏଇ ସନ୍ଧ୍ୟାବେଳଟାରୁ ଅରମ୍ଭ ହୋଇ ନାହିଁ।

ହାଲୁକା ଲାଗୁଛି। ମନେ ହେଉଛି ଯେ କ୍ଷଣକେରେ ଏହି ଅଭିମୁଖୀ ଅମଙ୍ଗଳ ବନ୍ଧୁମାନଙ୍କ ସହିତ ମିଶିଯାଇ ହେବ, ପାଖୁଡ଼ାରେ ପାଖୁଡ଼ା ଯୋଡ଼ି ହୋଇଯିବ, ଚୂନା ବର୍ଣ୍ଣରେ ଚୂନା ବର୍ଣ୍ଣ, କୁହୁଧ୍ୱନିରେ କୁହୁଧ୍ୱନି, ଅଦେହରେ ଅଦେହ।

ହାଲୁକା ଲାଗୁଛି।···ହଠାତ୍ ନରେଶ୍ୱରବାବୁଙ୍କୁ ଶୀତ ଲାଗିଲା। ସତେ କି ଏହି ହାଲୁକାପଣରୁ ଶୀତ ଆସୁଛି। ପୁଣି ମୁହୂର୍ତ୍ତରେ କ'ଣ ପଶିଗଲା ପରି ମନେହେଲା, କିନ୍ତୁ ପଶିଲା ନାହିଁ। ନରେଶ୍ୱରବାବୁ ବୁଝିପାରିଲେ ନାହିଁ ଓ ବିରକ୍ତ ହେଲେ। ଭାବିଲେ ଯେ ଏ ବର୍ଷ ଜଲ୍‌ଦି ଥଣ୍ଡା ପଡ଼ିଯାଉଛି। ସ୍ୱେଟର ଖଣ୍ଡେ ପିନ୍ଧି ଆସିବା ଉଚିତ ଥିଲା।

ଭଙ୍ଗୁର ମୁହୂର୍ତ୍ତି ଭାଙ୍ଗିରୁଜି ଗଲା। କମବର୍ଷ୍ମୀମାନ ଢୋଲବାଜା ଓ ସିନେମା-ଗୀତର କୋଳାହଳରେ ସେ ଉତ୍ସାହିତ ହେଲେ, ଧାବିତ ହେଲେ। ମିଷ୍ଟର୍ ବସୁ ତାଙ୍କର ଅଗ୍ରଗତିକୁ ଲକ୍ଷ୍ୟ କରି କହିଲେ, "ବ୍ୟସ୍ତ ହୁଅନ୍ତୁ ନାହିଁ। ଦେବୀ ଆପଣଙ୍କ ସଙ୍ଗରେ ଦେଖା ନ କରି ଯିବେ କୁଆଡ଼େ ?"

ନରେଶ୍ୱରବାବୁ ନିଜର ଗତି କୋହଳ କଲେ। ହେଲେ ଦେବୀମଣ୍ଡପ ଯେତିକି ପାଖ ହୋଇ ଆସୁଥାଏ, ତାଙ୍କର ଦେବୀଦର୍ଶନର ଇଚ୍ଛା ସେତିକି ବଳବତୀ ହେଉ ଥାଏ। ମିଷ୍ଟର୍ ବସୁଙ୍କ କହିଲା ପରି ତାଙ୍କ ମନରେ ଅସୁଥାଏ ଯେ ଆଜି ଶେଷଥରପାଇଁ ଦେବୀଙ୍କ ସାଙ୍ଗରେ ଦେଖା ନ ହେଲେ ଚଳିବ ନାହିଁ।

···ଦେବୀ-ମଣ୍ଡପ। ଦେବୀ ଅସ୍ଥାନ ଗ୍ରୁଡ଼ି ଉଠିଲେଣି। ଟ୍ରକ୍ ଉପରକୁ ନିଆ ହେଉଛନ୍ତି। ଆଉ ଟିକିଏ ଡେରି ହୋଇଥିଲେ—!

ସର୍ବପ୍ରଥମ ନରେଶ୍ୱରବାବୁ ଦେବୀ-ପ୍ରତିମାର ସମ୍ମୁଖରେ ଛିଡ଼ା ହୋଇ ପ୍ରଣାମ କଲେ। ନରେଶ୍ୱରବାବୁ ନାସ୍ତିକ ନୁହନ୍ତି, ଓ ସେ ପ୍ରତିମା ପୂଜାକୁ ହେୟଜ୍ଞାନ

କରନ୍ତି ନାହିଁ, କିନ୍ତୁ ସେ କ୍ୱଚିତ ଏପରି ମୁଣ୍ଡ ନୁଆଁଇ ହାତଯୋଡ଼ି ଦୀର୍ଘକାଳବ୍ୟାପୀ ପ୍ରଣାମ କରିବାର ଦେଖାଯାଇଛି ।

'ମୁହବ୍‌ବତ୍' ଓ 'ପ୍ୟାର୍'ର ସିନେମା ଗୀତ, ତା'ର ଅନ୍ତରାଳରେ ଢୋଲବାଜା ଶଙ୍ଖ ଓ ହୁଳହୁଳି, ସାନପିଲାମାନଙ୍କର କିଚିରିମିଚିରି ଓ ବଡ଼ମାନଙ୍କର ହର୍ଷଧ୍ୱନି,—ନରେଶ୍ୱରବାବୁ ଏ ସବୁରି ଭିତରେ ଦଶଭୁଜାଙ୍କୁ ଧ୍ୟାନ କଲେ । ନିବିଷ୍ଟ ଚିତ୍ତରେ ଧ୍ୟାନ କଲେ । ବୋଧହୁଏ ଏହି ଉତ୍ସବବେଳହେତୁ ସେ ତାଙ୍କୁ ଏକୁଟିଆ ପାଇ ପାରିଲେ ।

ସେ କିଛି କହିଲେ ନାହିଁ, ବର ମାଗିଲେ ନାହିଁ—ମୋର କିଛି କହିବାର ନାହିଁ, ସେ ସବୁ ଜାଣନ୍ତି । ଦେଖା ହୋଇଗଲା, ଏହି ଯଥେଷ୍ଟ । ମୁଁ ଯାହା ଥିଲି, ସେଇଆ ଅଛି । ସେହି ନରେଶ୍ୱର ଦାସ, ସେହି ଦେବୀ, ସେହି ଭକ୍ତ, ସେହି ପ୍ରଣତି । ସେହି ମଣିଷ, ପିଲାଦିନୁ ଆଜଯାଏଁ ।

ନରେଶ୍ୱରବାବୁ ଆଖି ଖୋଲିଲେ । କ୍ଷମା କରିବେ, ମୁଁ ପ୍ରଣାମ କରୁଥିଲି,—ଏହିଭଳିବରେ ସେ ଦ୍ୱିଗୁଣ ଅନୁରାଗ ଦର୍ଶାଇ ଅଫିସର୍ ସାଥୀମାନଙ୍କ ସାଙ୍ଗରେ ମିଶିଗଲେ । ଶତାଧିକ ସେମାନେ ଓ ସେମାନଙ୍କର ପରିବାର । କେଉଁ ଜଣକପାଖରେ ରହିଯିବାର ନୁହେଁ, ନିଜକୁ ଖେଳାଇ ଦେବାକୁ ହେବ । ଆଜିପରି ଦିନ । ପୁଣି କେବେ କାହା ସାଙ୍ଗରେ ଦେଖା ହେବ ।

···ଆସନ୍ତୁ ଆସନ୍ତୁ ମିଷ୍ଟର୍ ଦାସ୍ । ଆପଣ ତ ଇଦ୍‌ର ଗୃହ୍‌ । ଭାଗ୍ୟରେ ଥିଲେ ଦେଖା ମିଳେ । ହେଁଃ ହେଁଃ···ମୋତେ ଏ ଢୋଲବାଜା ଭାରି ପସନ୍ଦ, ଯେତେ ଜୋର୍‌ରେ ବାଜିବ ସେତେ ଭଲ । ଆମ ଧର୍ମରେ ଯାହା ଅଛି, କୌଣସିଟିକୁ ବାଦ୍ ଦେବା ଉଚିତ ନୁହେଁ । ···ଧର୍ମ କଥାରୁ ମନେ ପଡ଼ିଲା । ମୁଁ ଯେବେ ଆମେରିକାରେ ଥିଲି ଜଣେ ଭଦ୍ରଲୋକ ଥଟ୍ଟା କଲା ପରି ପଚାରିଲେ— ଆପଣଙ୍କର କେତୋଟି ଭଗବାନ ଶହେ ନା ହଜାରେ ? ମୁଁ କ'ଣ କହିଲି ଜାଣନ୍ତି ? ଜାଣନ୍ତି ? (ଚତୁର ଚାହାଣୀ) ମୁଁ କହିଲି ହଜାରେ ନୁହେଁ, ଲକ୍ଷେ । ଲକ୍ଷେ ଅଫିସର, ସେକ୍ରେଟେରୀ, ଅଣ୍ଡର୍‌ସେକ୍ରେଟେରୀ, ଆସିଷ୍ଟାଣ୍ଟ ଇତ୍ୟାଦି, କିନ୍ତୁ ସମସ୍ତଙ୍କୁ ମିଶାଇ ଗୋଟିଏ ଗଭର୍ଣ୍ଣମେଣ୍ଟ, ମାତ୍ର ଗୋଟିଏ—ଯାହାକୁ ଦେଖିହେବ ନାହିଁ, ଛୁଇଁ ହେବ ନାହିଁ ··· ।

ଆଉ ଏକ ଦଳ । ଏଠି ନାରୀସଂଖ୍ୟା ଅଧିକ । ···କଅଣ ପୂଜା କରିବ ମଣିଷ ! ଚିନି କାହିଁ ? ଚିନି କଥା ଗୁଡ଼ିଦିଅ । ମଇଦା କାହିଁ ? ଛେନା କାହିଁ ?···ଯେତିକି ଦୁର୍ଦ୍ଦଶା ଆମ ଅଫିସର-ସ୍ତ୍ରୀମାନଙ୍କର । ମୋ ମତରେ ଚାଲ ସମସ୍ତେ ଦଳ ବାନ୍ଧି ଡେପୁଟେସନ୍‌ରେ ଯିବା ମନ୍ତ୍ରୀଙ୍କ ପାଖକୁ । ଉତ୍ତର କଅଣ ? ଆମ ସ୍ୱାମୀମାନେ ସରକାର ଘରେ ଚାକିରି କରିଛନ୍ତି ବୋଲି କଅଣ ଆମେ କରୁଛୁ ? (କୁଳୁ କୁଳୁ ହସ)···

ଅପରେକ ଦଳ । ଏଠି କେତେଜଣ ସିନହର୍ ଅବହରମୁଖୀ ଅଫିହର୍ । ଗମ୍ଭୀର ଟାଣି, ଓଜନଥା ପଦେ ପଦେ କଥା । ...ମୁଁ ଚେଷ୍ଟା କରିବ, ମୁଁ ଚେଷ୍ଟା କରିବ ।...ଆମ ଶାସନ ରସାତଳକୁ ଗଲେଣି । ବ୍ରିଟିଶ୍ ଅମଳ ହୋଇଥିଲେ କ'ଣ ତା'ର ଏମିତିକା ଅବସ୍ଥା ହୋଇଥାଆନ୍ତା ?...ଠିକ୍ କହୁଛନ୍ତି । ପ୍ରକୃତରେ ଆମେ ସ୍ୱାଧୀନତାର ଯୋଗ୍ୟ ନୁହେଁ । ... କଅଣ ମିଷ୍ଟର୍ ଦାସ୍ ? ଆପଣଙ୍କ ମନ୍ତ୍ରୀଙ୍କ ଖବର କଅଣ ? (ଓଠରେ ବଙ୍କ ରେଖା )...

ଏହିପରି କେତେ ଦଳ । ବହୁମୁଖୀ ଆଳାପର ଆନନ୍ଦ । ଯେତେଦୂର ସମ୍ଭବ ନରେଶ୍ୱରବାବୁ ପ୍ରତି ଦଳକୁ ଛୁଇଁବାକୁ ଗ୍ରହିଲେ, କଥା କହିଲେ, ହସିଲେ ଏବଂ ମିଶିଗଲେ ।

ଇତିମଧ୍ୟରେ ଟ୍ରକ୍‌ରେ ବସି ଦେବୀ କ୍ରମଶଃ ପ୍ରସ୍ଥାନ କଲେ । ବାଦ୍ୟଗୀତ କିଛି ସମୟ ଥକା ମାରି ରହିଗଲା ପରେ ଉନ୍ମତ ହୋଇ ଉଠିଲା । ଦେଖାଗଲା ଯେ ଏଥର ଗ୍ରଜନ୍ ଓ ସହଶିଳ୍ପୀବୃନ୍ଦ ଟ୍ରକ୍‌ରେ ଛିଡ଼ା ହୋଇ ନାଚୁନାହାନ୍ତି, ସେମାନେ ବସି ରହି ଢୋଲ ପିଟୁଛନ୍ତି, ଏବଂ ତାଙ୍କ ବଦଳରେ ବାଜାବାଲମାନେ ନାଚୁଛନ୍ତି । ଭାଙ୍ଗଡ଼ା ନାଚ ।

ଦଳମଧ୍ୟରୁ କେହି କେହି ମୁଣ୍ଡ ଟେକି ଫେରନ୍ତା ଦେବୀଙ୍କୁ ଗ୍ରହିଁଲେ ଓ ନମସ୍କାର କଲେ । ବର୍ଷ୍ଣ ବର୍ଷ୍ଣ ସ୍ତ୍ରୀଲୋକ କେତେଜଣ ପୁନର୍ବାର ଶଙ୍ଖ ଫୁଙ୍କିଲେ, ଓ ହୁଳହୁଳି ଦେଲେ । କଲୋନୀର ଦେବୀ ଗ୍ଲଲେ । ପୁଣି ଆର ବର୍ଷ ।

ନରେଶ୍ୱରବାବୁ ମଧ୍ୟ ଗ୍ରହିଁଲେ ଓ ନମସ୍କାର କଲେ, କିନ୍ତୁ ବର୍ତ୍ତମାନ ତାଙ୍କ ମନରେ ଏକୁଟିଆ ରୁମେ-ଓ-ମୁଁ ଭାବ ନ ଥିଲା । କେନମଧ୍ୟରୁ ଜଣେ ସୁସଜ୍ଜିତା ସମ୍ଭ୍ରାନ୍ତ ମହିଳା ବିଦାୟ ନେଲା ପରି ମନେ ହେଲା । ସେ ଗୃହଭଦନପାଇଁ ଆସିଥିଲେ; ଗ୍ଲଲିଗଲେ । ଆମେ ତାଙ୍କୁ ଯଥୋଚିତ ସମ୍ମାନ ଦେଇଛୁ, ଆଶା କରାଯାଏ । ତେବେ ସହିତ ସେ ଭାବିଲେ ଯେ କେତୋଟି ବିଷୟରେ ତ୍ରୁଟି ରହିଗଲା । ଦେବୀଙ୍କ ମୁହଁର ଗଢ଼ଣ ପୁରୁଣା-କାଳିଆ ହୋଇଛି, ଗଣେଶଙ୍କ ଶୁଣ୍ଢ ଭାଙ୍ଗି ଯାଇଛି, ଲକ୍ଷ୍ମୀ ଓ ସରସ୍ୱତୀ ଏକାପରି ଦିଶୁଛନ୍ତି । ତା'ଛଡ଼ା ଏ ବର୍ଷ ଭୋଗରାଗରେ ତେଲ ସହିଲ ହୋଇଛି, ଗୃହଭଦନିଆ ଡ୍ରାମା ହୋଇ ପାରିବ ନାହିଁ, ଏବଂ ଉଦ୍‌ଘାଟନ ପାଇଁ କେହି ନେତା ବା ବିଶିଷ୍ଟ ବ୍ୟକ୍ତି ଆସି ପାରିଲେ ନାହିଁ । ନରେଶ୍ୱରବାବୁ ଠିକ୍ କଲେ ଯେ ଆସନ୍ତା ବର୍ଷ ସେ ଶୁକା ପୂଜାକମିଟିରେ ରହିବ ଓ ସେ କଲ୍‌ଚରାଲ କମିଟିରେ ରହିବେ । କଲୋନୀର ମର୍ଯ୍ୟାଦା ବଢ଼ାଇବା ଦିଗରେ ସମସ୍ତଙ୍କର ଲାଗିପଡ଼ିବା ଦରକାର ।

ଦେବୀ ଗ୍ଲଲିଗଲେ । ଶୂନ୍ୟ ମଣ୍ଡପରେ ପିଲାମାନେ ଅବାଧରେ ଖେଳିବାକୁ ଲାଗିଲେ । କେତେଜଣ ମାଆ ପିଲାମାନଙ୍କୁ ଡାକିଲେ, କିନ୍ତୁ ତାଙ୍କ କଥା କେହି

ଶୁଣିବାକୁ ପ୍ରସ୍ତୁତ ନ ଥିଲେ । ଶୂନ୍ୟତା ତଥା ଶଙ୍କାରେ ମୂର୍ତ୍ତି ମାଉଳପରି ସାନ ପିଲାଟାଏ ମଣ୍ଡପ ଉପରେ ବସିପଡ଼ି ହଠାତ୍ ଭେଁ-କରି କାନ୍ଦି ଉଠିଲା ।

ସେହି କାନ୍ଦଣା ପରେ ପରେ ଅନେକ ଫେରିବାକୁ ବସିଲେ, କିନ୍ତୁ କେତେ ଜଣ ପୂର୍ବପରି ଗପିବାକୁ ଲାଗିଲେ । ନରେଶ୍ୱରବାବୁ ଫେରିଲେ ନାହିଁ, ତାଙ୍କର ଅଧିକ ଗପିବାକୁ ଜଡ଼ ରହିବାକୁ ଇଚ୍ଛା ହେଉଥିଲା ।

ଥରେ ଅଧେ ସେ ସ୍ତ୍ରୀ-ପିଲାଙ୍କୁ ଖୋଜୁଥିଲେ । ରେଣୁକା ସେହି ବାଉଁଶଖୁଣ୍ଟ ପଛରେ ଛିଡ଼ା ହୋଇ ମିସେସ୍ ନନ୍ଦଙ୍କ ସାଙ୍ଗରେ କଥାବାର୍ତ୍ତା କରୁଛି, ଘନ ଘନ ହାତ ହଲଉଛି । ଝିଅ କୁନି ଓ ସାନପୁଅ ଟିକି ଅନ୍ୟ ପିଲାଙ୍କ ସାଙ୍ଗରେ ଖେଳୁଛନ୍ତି, ଦୌଡ଼ା-ଦୌଡ଼ି ହେଉଛନ୍ତି । ଖେଳୁଥାଆନ୍ତୁ । ବଡ଼ପୁଅ ବିଶୁ ବୋଧହୁଏ ଏଠିକି ଆସିନାହିଁ, ସିନେମା ଦେଖି ଯାଇଥିବ । ଯେଝାର ଯେଝା ବଳାନ୍ୱୟର ଉତ୍ସବ ପାଳୁଛନ୍ତି । ନରେଶ୍ୱରବାବୁ ସେମାନଙ୍କ ସହିତ ସାକ୍ଷାତ କରିବାର ବିଶେଷ କାରଣ ଦେଖି ପାରିଲେ ନାହିଁ ।

ସମାବେଶ କ୍ଷୀଣରୁ କ୍ଷୀଣତର ହେଲା, ମାତ୍ର କେତୋଟି ସ୍ତ୍ରୀ ପୁରୁଷ ବାକି ରହିଲେ । ସେମାନେ ମଧ୍ୟ ହାଇ ମାରିଲେଣି, ଥରକୁ ଥର ହାତଘଡ଼ି ଦେଖିଲେଣି ଓ ଶେଷ ସିଗାରେଟକୁ ମୁହଁରେ ଗୁଞ୍ଜି ଖାଲି ପ୍ୟାକେଟ୍‌କୁ ବିରକ୍ତିରେ ଫିଙ୍ଗି ସାରିଲେଣି । ଏଥର ସ୍ତ୍ରୀ ପିଲାଙ୍କୁ ସାଙ୍ଗରେ ଧରି ଘରକୁ ଯିବାକୁ ହେବ ।

ତଥାପି ସେ ଯିବାକୁ ଚାହିଁଲେ ନାହିଁ । କିଏ ହେଲେ ଭାବିବ ଯେ ସେ ଜାଣି ଶୁଣି ଡେରି କରୁଛନ୍ତି, ଯେମିତିକି ସ୍ତ୍ରୀ ପିଲାଏ ଅପେକ୍ଷା କରିବେ ନାହିଁ, ଆପଣା ବାଟରେ ଫେରିଯିବେ !

ସତକୁ ସତ ସେଇଆ ହେଲା । ରେଣୁକା ଦେବୀ ସ୍ୱାମୀଙ୍କର ମଗ୍ନଭାବ ଦେଖି ଆଶ୍ଚର୍ଯ୍ୟ ହେଲେ ଓ ଖୁସି ହେଲେ । (ତାଙ୍କର ଦଶଲୋକଙ୍କ ସାଙ୍ଗରେ ମିଶିବା ଦରକାର ! ଘରକୋଣରେ ବସି ରହିଲେ କିଏ କାହାକୁ ପଚାରୁଛି ଆଜିକାଲି ? ସେ ପିଲା ଦି'ଜଣଙ୍କୁ ସାଙ୍ଗରେ ଧରି ଜନୈକ ମିସେସ୍‌ଙ୍କ ସହିତ ଗପ କରି କରି ଫେରି ଚାଲିଲେ ।

ନରେଶ୍ୱରବାବୁଙ୍କୁ ଏକୁଟିଆ ଆସିବାକୁ ହେଲା ।

ଆକାଶରେ ଜହ୍ନ ପୂର୍ବପରି ଥିଲା; କିନ୍ତୁ ନରେଶ୍ୱରବାବୁ ଲକ୍ଷ୍ୟ କଲେ ଯେ ଜହ୍ନର ଚାରିପାଖରେ କେତେଗୁଡ଼ାଏ କଳା ବାଦଲ ଘୂରି ବୁଲୁଛନ୍ତି, ଯେହି ଦୀର୍ଘାୟୁ ବନ୍ଧୁଟିର ପହରା ଦେଲାପରି । ସେ ସେହି ଦୃଶ୍ୟର ସମାଲୋଚନା କଲେ । ମଣିଷ ଜାତ ହୋଇଛି, ମରିଯିବ, ଅର୍ଥାତ୍ ଆପଣା ଜ୍ୟୋତିରେ ଉଦ୍‌ଭାସିତ ହୋଇ ଜୀବନ ଗଗନରେ

ଭାସି ଭାସି ଉତୁରିଯିବ । ଅପରକୁ ଜ୍ୟୋତି ଦେବ, କିନ୍ତୁ ନିଜେ ନିର୍ବାଧ ନିର୍ଲିପ୍ତ ହୋଇ ତରିଯିବ । ଏତିକି କଅଣ ତା'ର ପ୍ରାପ୍ୟ ନୁହେଁ ? ତେବେ କାହିଁକି ଏହି ହାଲୁବାଲୁ କଲା ଚଢ଼େଇ ? ଏହି ପହରା, ଏହି ବନ୍ଧନ ?

ସେ ଜହ୍ନ ପ୍ରତି ସହାନୁଭୂତି ଦେଖାଇଲେ, କାରଣ ଏକୁଟିଆରେ ତାଙ୍କର ହାଲୁକାଭାବ ପୁଣି ସ୍ପଷ୍ଟ ହୋଇ ଉଠିଥିଲା । ସଦ୍ୟ ନିରାବରଣ ନିଃଶ୍ୱାସନର ସୁଖ ପୁଣି ଅନୁଭବ କରି ହେଉଥିଲା । ଅଃ ! ଆଜି ଦିନଟା ବେଶ୍ କଟିଲା । ବିଜୟା-ଦଶମୀ ।

ନୀରବ ରାତି । କାଁ ଭାଁ ଜଣେ ଦି'ଜଣ ଯେଝା ଯେଝାର ଘରେ ପଶିବାର ଦେଖାଯାଉଛି । ଗୋଡ଼ିବାଗୁ ମଟିରାସ୍ତାରେ ଆପଣା ଜୋତାର ମଚ୍ ମଚ୍, ଗତିଶୀଳତାର ମଚ୍ ମଚ୍ । ନିଜ ଶବ୍ଦ ନିଜକୁ ଶୁଭୁଛି । ନିଜର ଚେତନା ନିଜ ଉପରକୁ ଆଉଜି ହୋଇ ଆସୁଛି । ଅନାବୃତ ଓ ଏକୁଟିଆ ଜହ୍ନ (ଚଢ଼େଇମାନେ ବର୍ତ୍ତମାନ ନାହାନ୍ତି) ଦେହରେ ଲେପି ହୋଇ ଯାଉଛି ଏବଂ ମନେ ପଡ଼ୁଛି ।

ମନେ ପଡ଼ିଲାପରି ଲାଗୁଛି, ହେଲେ ଚାରି ହେଉ ନାହିଁ । ଅତୀତର କେଉଁ ଗୋଟିଏ ମୁହୂର୍ତ୍ତ, ଅବିକଳ ଏମିତି । ଏଇ ସ୍ୱାଧୀନତା, ଏଇ ମୁକ୍ତି । ଏଇ ଶୀତ । ନା, ଶୀତ ନୁହେଁ, ଶୀତ୍କାର । ଅପଣାକୁ ଦେଖି ନ ପାରିବାର ସହି ନ ପାରିବାର ଶୀତ୍କାର—ମୁଁ ନୁହେଁ ମୁଁ ନୁହେଁ, ମୁଁ ନୁହେଁ । ଏ ନବୀନ ଉପଭୋଗ ମୋର ନୁହେଁ ! ଆଉ କାହାର ।

ଘର ପାଖ ହୋଇ ଆସିଲାଣି । ନରେଶ୍ୱରବାବୁ ସ୍ମୃତିର ତାଡ଼ନାକୁ ତିରସ୍କାର କଲେ । କର୍ମବହୁଳ ଜୀବନରେ ଅନେକ କାମଅଛି । ଅତୀତକୁ ଅଣ୍ଟାଳିବାକୁ ବେଳ ନାହିଁ ।

ଘରକୁ ପଶିବା ମାତ୍ରେ ହିଁ ସେ ସେହି ଟୋକେଇଟାକୁ ଦେଖିଲେ । ଭିତର କରିଡରର ଆରମ୍ଭରେ ଡ୍ରଇଁରୁମ୍‌ର ସାମ୍‌ନାରେ ବସି ରହିଛି ଯେମିତି । ସ୍ଥାଣୁ ଓ ନିର୍ବିକାର ।

ଟୋକେଇଟାର ଚେହେରା ନରେଶ୍ୱରବାବୁଙ୍କୁ ଭଲ ଲାଗିଲା ନାହିଁ । ବାଟମଝିରେ ଥୁଆ ହୋଇଛି—କିଏ ହେଲେ ଝୁଣ୍ଟି ପଡ଼ିବେ ନାହିଁ ? ମଦନା କୁଆଡ଼େ ଗଲା ? ମଦନା ସନ୍ଧ୍ୟା ଆଗରୁ ଛୁଟି ନେଇ ଯାଇଛି, ଫେରୁ ଫେରୁ କେତେ ରାତି ହେବ । ବେଶ୍, ମୁଁ ନିଜେ ଉଠେଇ ଦେଇ ପାରିବି ନାହିଁ ? ନାଇଁ, ବହୁତ ଭାରି ହେବ । ଥାଉ ସେମିତି । ଆଳୁଅ ଜଳା ହୋଇ ରହିଛି । ଝୁଣ୍ଟିଲେ ଝୁଣ୍ଟିବେ,—ମୁଁ କଅଣ କରିବି ?

ପିଲମାନେ ଫେରି ନାହାନ୍ତି । ରେଣୁକା ବୋଧହୁଏ କେଉଁଠି ଅଟକି ଯାଇଛି । କିନ୍ତୁ ଯାନଘରେ କିଏ ? ବଶୁ ଫେରି ଆସିଛି ? ନରେଶ୍ୱରବାବୁ ଅନୁସନ୍ଧାନ କରିବାକୁ ଗଲେ ନାହିଁ । ଆସିଲେ ଆସିଥିବ । ତା'ର ଇଂଲଣ୍ଡସଫରରେ ଆଡ୍‌ମିଶନ୍ କଥା କେଉଁଯାଏ ଗଲା ? ଆଉ କାହାଠାରୁ କିଛି ବୁଝିଲା ? ଥାଉ, କାଲି ପଚାରିବ ।

ବଶୁ ନିଶ୍ଚୟ ଆସିଛି । ଖସ୍‌ଖାସ୍ ଶୁଭୁଛି, କାଗଜ ଫଡ଼ ଫଡ଼ ହେଉଛି । ତାହା ହେଲେ ସେ ଏଇ ବାଟଦେଇ ଯାଇଥିବ, ଟୋକେଇ ବାଟଦେଇ । ବୋଧ-ହୁଏ ଦେଖି ପାରି ନାହିଁ, ଅସମ୍ଭବ ନୁହେଁ । ବଶୁଟା ଉପରମୁହାଁ । କଅଣ ଯଦି ଖସୁଥିବ ତଳେ ଗୋଟିଏ ପିଲା ଶୋଇଥିଲେ ବି ତା' ଆଖିକୁ ଦିଶିବ ନାହିଁ । ବଡ଼ପୁଅର ଅନ୍ୟମନସ୍କପଣକୁ ସ୍ନେହର ସହିତ ସ୍ୱୀକାର କରି ନରେଶ୍ୱରବାବୁ ଡ୍ରଇଂରୁମ୍ ଭିତରକୁ ଗଲେ ଓ ସୋଫାରେ ବସି ପଡ଼ିଲେ । ଦୀର୍ଘନିଃଶ୍ୱାସ ଛାଡ଼ିଲେ ଓ ବାସି ଖବରକାଗଜ ପଢ଼ି ବସିଲେ ।···ରେଣୁକା କେତେବେଳେ ଫେରିବ ?

ପ୍ରଥମେ ଟିକୁର ପାଟି ଶୁଭିଲା । ପାଟି ନୁହେଁ, କୁହାଟ । ସେଇଠୁ କୁନିର ଗାଡ଼ଗୁଡ଼ୁରୁ ଗୀତକଥା ଏବଂ ଦୁହିଁଙ୍କ ମଝିରେ ମାତୃତ୍ୱରେ ମଣ୍ଡିତ ହୋଇ ଉଭା ହେଲେ ରେଣୁକା ଦେବୀ । ହସ ହସ ମୁହଁ, କପାଳରେ ନେଖିଏ ସିନ୍ଦୁର ବୋଳା ହୋଇଛି—ବୋଧହୁଏ କେହି ବଙ୍ଗଦେଶୀୟା ସ୍ୱାମୀ ସୁହାଗିନୀ ଦେବୀଙ୍କର ପାଦତଳୁ ଏହି ଆଶୀର୍ବାଦଟିକି ଆଣି ଦେଇଛନ୍ତି । ନିଜର ସ୍ତ୍ରୀ-ପିଲଙ୍କୁ ନୂଆକରି ଦେଖିଲାପରି ନରେଶ୍ୱରବାବୁ ଅବଲୋକନ କଲେ । ଉପଲବ୍ଧି କଲେ । ମୋର ସୁଖର ସଂସାର ।

ସେ ସୋଫାରୁ ଉଠି ପଡ଼ିଲେ ଓ ଆଗେଇ ଗଲେ । ଯେପରିକି ସେ ପ୍ରଥମେ କିଛି କହିବାକୁ ଚାହାନ୍ତି, ଅନେକ କିଛି କହିବାକୁ ଚାହାନ୍ତି; କିନ୍ତୁ ତା' ପୂର୍ବରୁ ରେଣୁକା ଦେବୀ ଅଧୀର ଆବେଗରେ ଆରମ୍ଭ କଲେ—

"କଅଣ ଆଜି ଭାସି ମଜ୍ଜି ଯାଇଥିଲି ଦେଖୁଛ । ମୁଁ ସମସ୍ତଙ୍କୁ କହୁଛି କଅଣ ନା ଆମ ସାହେବ ଶାନ୍ତ ଶିଷ୍ଟ ମଣିଷଟିଏ, ଘରେ ସ୍ତ୍ରୀର ମୁହଁକୁ ଚାହିଁ ବସନ୍ତି । ଅଉ ଅଜି ଦେଖିଲବେଳକୁ ସାହେବ ସଭାମଝିରେ ମଦ୍ଧ ପିଉଛନ୍ତି, ପିଉଛନ୍ତି ! ପୁଣି ମୋ ଆଖି ଆଗରେ ! କିଏ,—ମିସେସ୍ ବସୁ ? ନା ମିସେସ୍ ଦେବଗ୍ୱାଲ୍ ? (ଥଟ୍ଟା ଛଳରେ ପ୍ରଶଂସା କରିବାକୁ ଯାଇ ସେ ଉଚିତରୁ ଅଧିକ ହସିଲେ । ହୁଏତ ଅଉ ଟିକିଏ ପରେ ପାଖକୁ ଯାଇ ଆପୁଡ଼େଇ ଦେବେ, ସାବାସ୍ ବୋଲି କହିବେ)··· ଶୁଣ, ଆଜି ଗୋଟାଏ ମଜା କଥା ହେଲା ।···ଏଇଟା କଅଣ ? କୋଉଠୁ ଅସିଲା ?"

ସେତେବେଳକୁ ଟିକୁ ଓ କୁନି ଟୋକେଇ ଉପରକୁ ବୁଙ୍କି ପଡ଼ିଲେଣି । ଟିକୁ ନାଲି ନେଳି କାଗଜ ନଡ଼ାକୁ ଖେଳାଉଛି । କୁନି,—ତା'ର ଗୋଟାଏ ବଦଭ୍ୟାସ—, ବାସ୍ନା ଶୁଙ୍ଘିଲା ପରି ନାକକୁ କୁଞ୍ଚଉଛି ।

ନରେଶ୍ୱରବାବୁଙ୍କର ମନେ ହେଲା ଯେ ତାଙ୍କ ଉପରେ ଚିତ୍କାର କରି ଉଠିବେ । ଏମାନେ ସମ୍ମାନର ଧାର ଧାରନ୍ତି ନାହିଁ । ଦବେଇଲା ପରି ସେ ପିଲାଙ୍କୁ କହିଲେ, "ସେଥିରେ ଲାଗିବା ଦରକାର ନାହିଁ ।" ଏବଂ ସ୍ତ୍ରୀଙ୍କୁ ଠିକେ ଠିକେ ଜଣାଇଲେ "ଜଣେ ଭଦ୍ରଲୋକ ଦେଇଯାଇଛନ୍ତି ।"

"ମାନେ ?"

ନରେଶ୍ୱରବାବୁ ସ୍ତ୍ରୀଙ୍କ ମୁହଁକୁ ଅନେଇଲେ । ରେଣୁକା ମାନେ ପଚାରୁଛି । କାହିଁକି ? ସେ ମୋର ସ୍ତ୍ରୀ, ମୁଁ ତାକୁ ଯେମିତି ଚଳାଇବି, ସେ ସେମିତି ଚଳିବ । ନରେଶ୍ୱରବାବୁଙ୍କର ଦୃଢ଼ଭାବ କୋହଳ ହେଲା ନାହିଁ । ସେ ଉତ୍ତର ଦେଲେ, "ଦଶହରା-ଭେଟି !" ପୁଣି ଅବହେଳାସୂଚକ ସାମାନ୍ୟ ହସଟିଏ ଯୋଡ଼ି ଦେଲେ ।

"ଆଚ୍ଛା !"

ସ୍ଥିର ଚକ୍ଷୁ, ସଂଯତ ବିସ୍ମୟ । ହେଲା, ହେଉକି ଥାଉ ! ଦଶହରାରେ କ'ଣ କେହି କାହାକୁ ଭେଟି ଦିଅନ୍ତି ନାହିଁ ? ରେଣୁକା କ'ଣ ପିଲା ହୋଇଛି ? ଭେଟି କାହାକୁ କୁହାଯାଏ ଜାଣିନାହିଁ ଆଜଯାଏଁ ? ନା ଫୁଲେଇ ହେଉଛି ? ଯାହାହେଉ ନରେଶ୍ୱରବାବୁ ନିଜକୁ ସମ୍ଭାଳି ନେଇ ସହଜସ୍ୱରରେ ବୁଝାଇ ଦେଲେ, "ମୋର ଜଣେ ସାଙ୍ଗ ଦେଇଯାଇଛି । ଅଫିସ୍ ସାଙ୍ଗ ।"

...ତା'ର ଚେହେରା ସାଙ୍ଗ ପରି ନୁହେଁ । ବଳିଷ୍ଠ ଚକ୍ ଚକ୍ ମୁହଁ । ସେଥିରେ କୁଣ୍ଠା ନାହିଁ, ଲଜ୍ୟା ନାହିଁ, କମନୀୟତା ନାହିଁ,—ଠିକ୍ ତା'ର ଦେହ ନୂଆ ହେଭ୍ରୋଲେଟ୍ ଇମ୍ପାଲ ଗାଡ଼ି ପରି । ତା'କୁ ମୁଁ ମୂଳରୁ ଶେଷଯାଏଁ ଘୃଣା କରେଁ, କିନ୍ତୁ କଥା ହେଉଛି ଯେ...

"ଦେଖିବା, କ'ଣ ଅଛି ଏଥିରେ ।"

"ମାଆ, ମୁଁ ଦେଖିପାରିବି ?"

"ନାହିଁ ମୁଁ ଆଗ, ମୁଁ ଆଗେ ଆସିଛି ।"

...କଥା ହେଉଛି ଯେ ମୁଁ ତାକୁ ଡରିବି କାହିଁକି ? ମୁଁ କାହିଁକି ଡରିବି ଯେ ସେ ମୋତେ ଲାଞ୍ଚ ଦେଉଛି ? ମୁଁ ପ୍ରଥମେ ମନା କରୁଥିଲି; କିନ୍ତୁ ସେ ମୋ କଥାରେ ହସିଲା । ତା'ର ନାଲିଚଟା ମାଂସଳ ମୁହଁକୁ ଥରେଇ ଥରେଇ ହସିଲା । ସତେକି ମୁଁ ଅତି ଭୀରୁ, ଅତି ନାବାଳକ । ମୁଁ ତାକୁ ଡରୁଛି, ତା'ର ପ୍ରଗଲ୍ଭ ସମ୍ପତ୍ତିକୁ ଡରୁଛି ! କହିଲା,—ମୁଁ କଣ ଏତେ ଅଯୋଗ୍ୟ ଯେ ଆପଣ

ମୋ'ଠାରୁ ସାମାନ୍ୟ ଉପହାରଟିକ ଗ୍ରହଣ କରିବେ ନାହିଁ ? କହିସାରି ସେ ମୋ ଆଡ଼କୁ ଚଳେଇ କରି ଗୁହିଁଲ ।···

ମାଆପୁଅଝିଅ ଟୋକେଇକୁ ଖୋଲି ସାରିଲେଣି । ସବୁ ପଦାରେ ପଡ଼ି ଫୁଟି ଦିଶିଲଣି । ସୁନେଲି ଜରି କାଗଜରେ ବିବିଧ ପ୍ୟାକେଟ୍, ଉପରେ ଲେଖାହୋଇଛି, "ଶ୍ରୀ ମିଷ୍ଟାନ୍ନ ଭଣ୍ଡାର,"—ବିଖ୍ୟାତ ହାଲୁଆ, ବିଖ୍ୟାତ ପେଡ଼ା ବରଫି । ତା' ତଳକୁ ଟିସୁ କାଗଜରେ ଗୁଡ଼ା ହୋଇଥିବା ଗୋଲ୍ ଗୋଲ୍ ଫଳ । କାଶ୍ମିରି ଆପ୍‌ଲ୍, କମଳା, ବାଟେଭିଆ । ରେଣୁକା ଆହୁରି ତଳକୁ ହାତ ପୂରେଇଛି ।

···ସେ ମୋତେ ଅଯୋଗ୍ୟ ବୋଲି କହିଲା । ହଁ, ସେ ଯାହା କହିଲା ତା'ର ମାନେ ସେଇଆ । କଲେଜରେ ଆଉ କାହା ଘରକୁ ଯାଇଥିଲେ ସେ କ'ଣ ଏମିତି କହିଥାଆନ୍ତା ? ଏମିତି ଛୁଗୁଲେଇଲା ପରି ଗୁହିଁଥାଆନ୍ତା ? କଦାପି ନୁହେଁ । ସେ ଭାବିଲା ଯେ ମୁଁ ମୋ ନିଜ ଗୋଡ଼ରେ ଠିଆ ହୋଇ ପାରୁନାହିଁ । କେଉଁ ଜଗଜ୍ଜନ୍ତି ଖଣ୍ଡକୁ କୁଣ୍ଢେଇ ଧରିଛି । ଲୁହାଲଉ ଏକାଠି କରି କୁଣ୍ଢେଇ ଧରିଛି । ତେଣୁ ସେ ମୋର ଦୁର୍ଦ୍ଦଶା ଦେଖି ହସୁଛି !···

ରେଣୁକା ହାତ ପୂରାଇ କାଢ଼ି ସାରିଲଣି । ଟୋକେଇର ସର୍ବଶେଷ ସୁନ୍ଦରତମ ବସ୍ତୁ । କହୁଛି,—ଆରେ ଏ ତ ଭାରି ବଢ଼ିଆ ! କନଫଟିଏ ରୂପା ନା ଷ୍ଟେନ୍‌ଲେସ୍ ଷ୍ଟିଲ୍ ? ତମ ସାଙ୍ଗଜଣ ଭାରି ବଡ଼ଲୋକ ଜଣା ପଡ଼ୁଛି ।

"ଆପଣ କ'ଣ ଭାବୁଛନ୍ତି ଯେ—?? ହେଃ ହେଃ । ମୁଁ ଏଇ କଲୋନୀକୁ ନୂଆ ହୋଇ ଆସି ନାହିଁ । ମୋତେ ସମସ୍ତେ ଜାଣନ୍ତି । ମୁଁ କେତେଥର ଆପଣଙ୍କ କ୍ଲବରେ ଟେନିସ୍ ଖେଳିଛି । ଆପଣଙ୍କର ଯେତେକ ଦେବୀପୂଜା, କଲ୍‌ଚରାଲ ଶୋ, ବାହାଘର ରିସେପ୍‌ସନ, ସବୁଥିରେ ସାହାଯ୍ୟ କରିଛି । ମୁଁ କାହାକୁ ପର ବୋଲି ଭାବି ନାହିଁ । ବୁଝିଲେ ?" ବୋଧହୁଏ ଏମିତିକା ଧଳା ଦାଢ଼ୁଆ ଦାନ୍ତ ମୁଁ ଆଗରୁ ଦେଖି ନ ଥିଲି । ଏଭଳି କୁତ୍ସିତ ସ୍ୱାସ୍ଥ୍ୟ, ଏଭଳି ଜାନ୍ତବ ଗ୍ରହଣୀ, ଏଭଳି ନିର୍ଲଜ ଉଜ୍ଜ୍ୱଳତା ମୋ ଆଖିରେ ପଡ଼ି ନ ଥିଲା । ମୁଁ ଉତ୍କଟ ଘୃଣାରେ ମୁହଁ ତଳକୁ କଲି । ··· ତା'ର କଥା ଥମିଗଲା. କିନ୍ତୁ ତା'ର ଟାଣୁଆ ମଣିବନ୍ଧର ଦାମିକା ଘଣ୍ଟା ଚୁପ୍ ହେଲା ନାହିଁ । ତା'ର ଟିକ୍-ଟିକ୍-ଟିକ୍ ମୋତେ ଶୁଭିଲା, ମୋ ଛାତି ଭିତରେ ବାଜେଇ ହେଲା । ଏଇ ଶେଷ ସୁଯୋଗ । ମୁଁ ଆଜଯାଏଁ ଏଇ ଲୋକଟାପାଇଁ ଅପେକ୍ଷା କରିଛି । ଏଇ ମୋତେ ବନ୍ଧନରୁ ମୁକୁଳେଇବ, ସିଧା ହୋଇ ଠିଆ କରାଇବ । ସହଜ ହୋଇ ହସିବାକୁ କହିବ । ······

ବିଶୁ ତା' ରୁମ୍‌ରୁ ଧାଇଁ ଆସିଲାଣି । ପିଲାଙ୍କ ପରି ଗେହ୍ଲେଇ ହୋଇ କହୁଛି, —ମାଆ ! ମୁଁ ଆଜି ଦିନଯାକ ଖାଇନାହିଁ, ଜାଣିଛ ? ମୋର ଖାଲି ସେଇ ପେଡ଼ା

ବରଫରୁ ଗୋଟାଏ ଦରକାର । ନିକୁ ଗୋଟାଏ ଆପ୍‌ଲ୍‌କୁ ଦାନ୍ତଉଛି । କୁନ ତଳେ ବସିପଡ଼ି ଯାଏ ଚୋକେଇର ଜନଷକୁ ପୁଣି ଦେଖୁଛି, ପୁଣି ଶୁଙ୍ଘୁଛି, ମନ ନ ପୂରିଲା ପର । ଆଉ ରେଣୁକା ରୁପା ସିଗାରେଟ କେସ୍‌ଟିକୁ ଆଦରରେ ଆଉଁସୁଛି ।

...ତା'ର ମୋ ପାଖରେ କେସ୍ ଅଛ, ମୁଁ ଜାଣେ । ଥାଉ,—ଭାସିଗଲା କଅଣ ? ଏଇଥିକୁ ପାଇ ମୁଁ କ'ଣ ତା'କୁ କେସ୍‌ରେ ଜିତେଇ ଦେବ ? ନା ମୁଁ ଏଇଥିରେ ବଡ଼ଲୋକ ହୋଇଯିବି ? କେତେଟଙ୍କାର ଜନଷ ହେବ ତିରିଶ, ଚାଳିଶ, ଅଧ ବେଶି ହେଲେ ଶହେ । ସାମାନ୍ୟ ଜନଷ, କିନ୍ତୁ ଏ ମୁହୂର୍ତ୍ତ ଫେରି ଆସିବ ନାହିଁ । ମୁଁ ଅଦମ ଅନ୍ଧକୂପରେ ପଡ଼ି ରହିଥିବି । ହଇରାଣ ହେଉଥିବି । ନା, ମୁଁ ଆଉ ପାରିବି ନାହିଁ । ମୁଁ ବଞ୍ଚିବି, ମୁଁ ସ୍ୱାଧୀନ ହେବି ! ...ମୁଁ ସିଧା ହୋଇ ବସିଲି, ତା' ଆଖିରେ ଆଖି ରଖିଲି । ଅବଲମ୍ବେ ମୋ ଓଠରେ ହସ ଉପୁଜିଲା ଓ ମୁଁ ତା' ହାତରେ ହାତ ମିଳାଇଲି । ଓ୍ୱେଲ, ଥ୍ୟାଙ୍କ୍ୟୁ । ଥ୍ୟାଙ୍କ୍ୟୁ ଭେରି ମଚ୍ ।

ମୋର ନବକଳେବର ଶତଜିହ୍ୱ ହୋଇ ନାଚି ଉଠିଲା । ମୁଁ ତାକୁ ଦବେଇ ପାରିଲି ନାହିଁ । ......

ନରେଶ୍ୱରବାବୁ ସନ୍ତର ସ୍ମୃତିରୁ ଫେରି ଆସିଲେ ଓ ପରିବାରର ଆନନ୍ଦକୁ ଲକ୍ଷ୍ୟ କଲେ । —ଏତେ ଆନନ୍ଦ ! କେହି ସନ୍ଦେହ କରୁନାହିଁ, କେହି ମୋତେ ହୀନ ଦୃଷ୍ଟିରେ ଚାହିଁ ନାହିଁ । ରେଣୁକା ଓ ବଣୁ, ଯାନପିଲା ନୁହନ୍ତି । ସେମାନେ ବୁଝି ପାରୁଛନ୍ତି । ହେଲେ ସେମାନେ ମଧ୍ୟ ଖୁସିରେ ଲହଡ଼ି ଖାଉଛନ୍ତି । ଯତେ ଯେମିତି ରାଜତ୍ୱ ମୋର, ତାଙ୍କର ତାକ ମାରିବା କଥା ।

ଓଃ, ଏତେ ଆନନ୍ଦ ! ଏତେ ଆଲୁଅ ! ନରେଶ୍ୱରବାବୁଙ୍କର ମନେ ହେଲା ଯେ ଯେତେକ ଅଲୁଅ ଏଇଠି ଠୁଳ ହୋଇଛି, ଚୋକେଇ ଉପରେ ଝଟକ ପଡ଼ୁଛି, ଆଉ ସେମାନେ ତା' ଚାରିପାଖରେ ବେଢ଼ି ଯାଇଛନ୍ତି । ସେମାନେ ତା' ପ୍ରାଣକୁ ଶୋଷି ନେବେ, ଖୁସି ହେବେ, ଆହୁରି ଖୁସି ହେବେ ।

ନରେଶ୍ୱରବାବୁଙ୍କର ଦେହ ପୁଣି ଥରେ ଶୀତେଇ ଉଠିଲା, କିନ୍ତୁ ଏଥର ମନେ ପଡ଼ିଲା । ଜଳଜଳ ହୋଇ ଦିଶିଗଲା ।

ଆଜି ମୋର ବାପ ମରିଛି । —ସେଦିନ ପରି ।

କୁନ ଖାଇଲା ପରି ହୋଇ ଗୋଟିଏ ଫଳ ହାତରେ ଧରି ପଚାରିଲା,— ଏମିତିକା । ଆଉ ମିଳିବ ନା ? କେବେ ମିଳିବ ? ନରେଶ୍ୱରବାବୁ ତା ଆଡ଼କୁ ଶୂନ୍ୟ ଦୃଷ୍ଟିରେ ଚାହିଁଲେ । ତାଙ୍କର କହିବାକୁ ଇଚ୍ଛା ହେଲା,—ମିଳିବ ନୋ ଝିଅ ମିଳିବ । ବାପ ମରିଗଲେ ପୁଣି ଉଠିକରି ଆସେ ନାହିଁ ।



# ବିଜୟା-ଦଶମୀ

ଜାଣେ ନାହିଁ ଆଜି ନରେଶ୍ୱରବାବୁ କେଉଁ ଗାଦିରେ ରାଜା ହୋଇ ବସିଥିବେ । କିନ୍ତୁ ଏଇ ବିଜୟା-ଦଶମୀ କଥା ମନେ ପଡ଼ିଲାରୁ ସେ କେତେ ଦୁଃଖ ନ ଥିବେ । କହୁଥିବେ ହେ ଭଗବାନ୍ ! ମୁଁ ଏତେ ପିଲା ଥିଲି ! ଗୋଟାଏ ସାମାନ୍ୟ ଫଳ-ଟୋକେଇ, ତା' ଭିତରେ ରୁପାର ସିଗାରେଟ କେସ୍‌ଟିଏ, ଏଇଆକୁ ନେଇ ମୁଁ ଭାବିଲି ମୁଁ ଗୋଟାଏ ବିରାଟ କାମ (ଧାପକାମ) କରି ପକେଇଲି ! ସେ ଏଥର ଖୋଦ୍ ଶଇତାନ୍ ମୋତେ ପାଖକୁ ଡାକିନେବ ଓ ମୁଁ ତୁମକୁ ଭୁଲିଯିବି ?

ହେ ଭଗବାନ୍ ! କ୍ଷମା କର । ଆଜି ମୁଁ ବଡ଼ ହୋଇ-ଗଲିଣି । ଆଜି ମୁଁ ବୁଝିଛି ଯେ ତୁମେ କି ମୋ ବାପା ସହଜେ ମରିବ ନାହିଁ । ମୁଁ ତୁମକୁ ମରିବାକୁ ଦେବି ନାହିଁ । ହୁଏତ ବାଧି ହୋଇ ତୁମକୁ ପିନ୍ଧୁଥିବ, ପିଠି ଗୁଳିଥିବ, ଯେମିତିକି ତୁମେ ବାକ୍‌ଶକ୍ତି, ଚଳତ୍‌ଶକ୍ତି ଏବଂ ଶେଷରୁ ବୋଧଶକ୍ତି ହରେଇବ; ତୁମ ନିଜ ପୁଅକୁ ଚିହ୍ନି ପାରିବ ନାହିଁ, ତା'କୁ ଠଆରିବା ଦୂରର କଥା । କିନ୍ତୁ ତୁମେ ଥିବ ଓ ମୁଁ ତୁମକୁ ପୂଜୁଥିବି । 'ସତ୍ୟମେବ ଜୟତେ'ର ପାଳି ଧରିବାରେ କେବେହେଲେ ଊଣା କରିବି ନାହିଁ ।

ଅଥବା : ହେ ଭଗବାନ୍ ! କ୍ଷମା କର । ଆଜି ମୁଁ ବଡ଼ ହୋଇଗଲିଣି । ଆଜି ମୁଁ ବୁଝୁଛି ଯେ ତୁମେ କି ମୋ ବାପା ସହଜେ ମରିବ ନାହିଁ । ମୁଁ ତୁମକୁ ମରିବାକୁ ଦେବି ନାହିଁ । ମୁଁ ତୁମକୁ ଚମତ୍କାର ଫଫେଇରେ ଔଷଧ ଚୁଆଇ ବଞ୍ଚେଇ ରଖିବି । ବିଭିନ୍ନ ଔଷଧ ହେଲା,—ମଲା ! କିଏ ଏକଥା ନ କହୁଛି ଯେ ମୁଁ କରିବି ନାହିଁ ? ମୋ ସତଆପଣଙ୍କୁ ଦେଖେଇ ହେବ ? ଏକ-

ଘରକଥା ହୋଇ ରହିବ ? ···ମୁଁ କଣ କାହାର ଅନିଷ୍ଟ କରୁଛି ନା କଅଣ ? ବରଂ ଆମ ଧନିଙ୍କର ଲାଭ ହେଲ, ଏଣେ କାମଟା ବ ସୁରୁଖୁରୁରେ ହୋଇଯିବ । ଏମିତି କାମ ଗ୍ଲଲେ ପଦ୍ମଶ୍ରୀ ମିଳିବାକୁ କେତେ ସମୟ ? ···କଓ, ମୁଁ କଣ ନିଜ ପାଇଁ ନେଉଛି ? ସବୁ ମୋ ପିଲାଛୁଆଙ୍କ ପାଇଁ ତାଙ୍କର ଭବିଷ୍ୟତ ଅର୍ଥାତ୍ ଦେଶର ଭବିଷ୍ୟତ ପାଇଁ । ନହେଲେ ପାର୍ଟିପାଇଁ ଯେମିତକ ଭୋଟକଣାକୁ ସାହାଯ୍ୟ ହେବ, ଅମ ପାର୍ଟି ଜିତିବ, ଦେଶ ଆଗେଇବ···ଲାଞ୍ଚ ? ଲାଞ୍ଚ କାହିଁ ? ସେ୍ ତ ସିଷ୍ଟମ୍ ! କାବ୍ୟିକ ଭାଷାରେ କହିବାକୁ ଗଲେ ଶିରାର ଧମନୀ, ଧମନୀର ରକ୍ତ, ରକ୍ତର ସଞ୍ଚାର. ସଂଚରଣ—ସଙ୍ଗିନ୍ତ ଗଣତନ୍ତ୍ର ଆଉ କାହାକୁ କୁହନ୍ତି ? ଖାଲି କଣ ଆମର ଭାରତରେ ? ପାକିସ୍ତାନରେ ନାହିଁ, କୋରିଆରେ ନାହିଁ ନା ଆମେରିକାରେ ନାହିଁ ? ସେଠି ହୁଏତ ବଡ଼ ଧରଣର କାରବାର, ଅଉ ଆମର ଏଠି ସାମାନ୍ୟ ସାଧାରଣ, କାହିଁକିନା ଆମେ ଗରିବ···ଇତ୍ୟାଦି ଇତ୍ୟାଦି ।

ଅଥବା : ହେ ଭଗବାନ୍ ! କ୍ଷମା କର, ଆଜି ମୁଁ ବଡ଼ ହୋଇଗଲିଣି । ଆଜି ମୁଁ ବୁଝୁଛି ଯେ ତୁମେ କି ମୋ ବାପାଙ୍କର ମରିବା ପ୍ରଶ୍ନ ଉଠୁନାହିଁ । କାହିଁକିନା ଲାଞ୍ଚ ନେବା ନ ନେବା ସାଙ୍ଗରେ ଚରିତ୍ରର ସମ୍ପର୍କ ନାହିଁ, ସ୍ନେହଶ୍ରଦ୍ଧା ପ୍ରୀତି, ଦାନଧାନ, ଜପତପ ଇତ୍ୟାଦିରେ ବାଧା ନାହିଁ । ସ୍ୱର୍ଗକୁ ଅସୁବିଧା ନାହିଁ । ସେ' ହେଉଛି ଇହକାଳର ବିଜିନେସ୍, ଏଥିରେ ପରକାଳର ସମ୍ବନ୍ଧ ନାହିଁ; ସେ୍ ହେଉଛି ଦରକାରୀ ମାମଲା, ଏଥିରେ ଧର୍ମକୁ ପୂରେଇବା ଏକାନ୍ତ ଅନୁଚିତ, ଅଶୋଭନୀୟ । ଯାହାହେଉ ମୁଁ ଠିକ୍ କରିଛି ଯେ ଉପୁରି ଧନରୁ କିଛିଟା ଖର୍ଚ୍ଚ କରି ତୁମ ପାଇଁ ଗୋଟିଏ ମନ୍ଦିର ତୋଳି ଦେଇ ଯିବି । ତାହାହେଲେ ତୁମେ ଖୁସି ହେବ ନାହିଁ ତ ଯିବ କୁଆଡ଼େ ?

ସ୍ବର୍ଗତ ନରେଶ୍ୱରବାବୁ କିଭଳି ହସ ହସୁଥିବେ ଓ ଓ ଭଗବାନଙ୍କୁ କ୍ଷମା ମାଗୁଥିବେ କହି ହେଉନାହିଁ । କିନ୍ତୁ ମୋର ପୂର୍ଣ୍ଣବିଶ୍ୱାସ ଯେ ସେ ବଡ଼ ହୋଇ ଯାଇଥିବେ ଓ ତାଙ୍କର ଦୁଃଖ ପୂରାପୂରି ଦୂର ହୋଇ ଯାଇଥିବ । ଖାଲି ଦି'ଟାଣଟା ବୋଠା ବାଢ଼େଇଥିବେ, କଣ୍ଟେସା କି ମର୍ସେଡିସ୍ ଚଢ଼ି ବୁଲୁଥିବେ ତା' ନୁହେଁ, ତାଙ୍କୁ କୋଉ ବୋସ୍‌ର ଦରୁ ନଣ,

ଚେଷ୍ଟୀର ଦାନ୍ତସ୍ ହସ, କି ଟୋକିମାନଙ୍କର କଲ୍‌ଚର୍ ଛୁଗୁଲେଉ ନଥିବ । ହୁଏତ ୧୯ଅ କ୍ଲବ ଖ ପୁଅ ଟିକୁ ତାଙ୍କୁ ମଫସଲିଆ ବୋଲି ଚିଡ଼ାଉଥିବେ (କୋହିଁକିନା ଗରିବାଙ୍କର ବଦଭ୍ୟାସ ସହଜେ ଯାଏ ନାହିଁ), ହେଲେ ସେଥିରେ ତାଙ୍କୁ ମଜା ଲାଗୁଥିବ । ଏଣେ କୋଉ ସୁପର୍-ଇଗୋ ତାଙ୍କୁ ଖାଇ ଗୋଡ଼ଉ ନ ଥିବ, ତୋ ବାପ ମଲଣି ବୋଲି କହିବାକୁ ସାହସ କରୁ ନ ଥିବ । ମୋର ଏଭଳି ବିଶ୍ୱାସର ଏକମାତ୍ର କାରଣ ଏଇ ଯେ ଯୁଗ ବଦଳି ଗଲଣି । ଏକବିଂଶ ଶତାବ୍ଦୀର ଦ୍ୱାରଦେଶରେ ପହଞ୍ଚିଥିବା ପ୍ରଗଣ୍ଡ ପ୍ରବଳ ଦେଶରେ ସେବକାର ନରେଶ୍ୱରବାବୁ କେବଳ ଅବାସ୍ତବ ନୁହଁନ୍ତି, ନିତାନ୍ତ ଅଲୀକ, ଆବସର୍ଡ୍‌—ହୁଏତ ସେ କେଉଁ ଉଦ୍ଭଟ ନାଟକର ପ୍ରତୀକ-ନାୟକ ହୋଇ ପାରିବେ ! ଅତଏବ ତାଙ୍କୁ ଆଜିର ମଣିଷ ସଚେମଣିଷ ହେବାକୁ ପଡ଼ିବ ।

ହେଲେ ମୋର ଖାଲି କାମନା ଏତିକି ଯେ ସେ ଯେତେ ହସନ୍ତୁ ପଛେ, ବିଜୟା-ଦଶମୀର ସେଇ କାନ୍ତ କୋମଳ ସନ୍ଧ୍ୟାଟି ତାଙ୍କୁ ପ୍ରକୃତରେ ସୁନ୍ଦର ବୋଲି ମନେ ହେଉଥିବ । ଏକପ୍ରକାର ଗୋଲାପି ଦୁଃଖରେ ବାଲିସିବାକୁ ଇଚ୍ଛା ହେଉଥିବ ଯେ ଆହା, ସେଭଳି ସନ୍ଧ୍ୟା ଆଉ ଆସିବାକୁ ନାହିଁ, ସେମିତିକା ଗୋଲ୍ ଜହ୍ନ, ତା' ଚାରିପାଖରେ ପହରା ଦେଉଥିବା ଟିକି ଟିକି କଳା ଚଢ଼େଇ, ଆଉ ସେଇ ବିଚିତ୍ର ଶିହରଣଟିକ...

କଥା ହେଉଛି ଯେ ଏଇ ଗପଟିକୁ ବେଦରକାଶ୍ମି ବୋଲି ଟିକି ଟିକି କରି ଛିଣ୍ଡେଇ ଦେବାକୁ ମୋଟେ ମତ ବଳୁନାହିଁ ମୋର ।

କଟକ
୧ ଡିସେମ୍ବର ୧୯୮୬



# ସୁଖର ସଂସାର

ସୁରବାବୁ ଦୈନିକ ଖବରକାଗଜ ପଢ଼ୁଥିଲେ । ପଢ଼ୁ ପଢ଼ୁ ସିନେମା ପୃଷ୍ଠାରେ ଥିବା ଷ୍ଟାରମାନଙ୍କ ଛବି ତାଙ୍କ ଆଖିରେ ପଡ଼ିଲା । ତାକୁ ଦେଖିବାକୁ ଯାଇ ସେ ପାଞ୍ଚ ଛଅ ଧାଡ଼ି ପଢ଼ି ନେଲେ, ନୂଆ ନୂଆ ଫିଲ୍ମମାନଙ୍କ କଥା । ତା'ପରେ ସେ କାଗଜକୁ ରଖି ଦେଇ ହାଇ ମାରିଲେ ଓ ହସିଲେ ।

ସିନେମାରେ କଣ ନ ଥାଏ ! ଜନ୍ମ ତଲେ ଗୀତ, ହାହାକାର, ଅଶ୍ରୁ, ବକ୍ତୃତା, ମୃତ୍ୟୁ, ପୁଣି ଗୀତ ଶେଷକୁ ଟ୍ରାଜେଡି କିମ୍ବା ମଧୁର ମିଳନ । ଜୀବନରେ କ'ଣ ଏତେ କଥା ଘଟେ ? ଘଟିଥିଲେ ଏହି ଦୀର୍ଘ ତେପନ ବର୍ଷ ଭିତରେ କେତେ କ'ଣ ଘଟି ଯାଆନ୍ତାଣି । ସେ ପାଖ ଚଉକିରେ ବସିଥିବା ସ୍ତ୍ରୀ ଶାନ୍ତିଦେବୀଙ୍କ ଆଡ଼କୁ ଅନାଇଲେ । (ଶାନ୍ତି ଦେବୀ ଛୁଞ୍ଚି ସୂତା ଧରି କେଉଁ ଗୋଟିଏ କନାରେ ଗୋଲ୍ ଗୋଲ୍ ଫୁଲ ରେଣୁ ତିଆରି କରୁଥିଲେ) ମୁ ରୁକି ହସା ଦେଇ ଅନାଇଲେ, ଯାହାର ଭାଷା ତୁମେ ବି, ଦରବୁଢ଼ୀ ହେଲଣି । ତୁମ ଜୀବନରେ କଣ କଣ ଘଟିଛି ଟିକିଏ କହିଗଲ, ଶୁଣିବା ।

ଗୃକର ପୂର୍ବାଶ୍ମ ଦୁଇଜଣ କ'ଣ ଖୁଟ୍ ଖାଟ୍ କରୁଛନ୍ତି, ଦାନର କାମ ଚାଲିଛି । ପଙ୍ଖା ଘୂରୁଛି । ରାସ୍ତାରେ ଚଳନ୍ତା ଦୃଶ୍ୟ,—କାର୍, ରିକ୍ସା, ଟଣା ଶଗଡ଼, ଫୁଟ୍-ପାଥର ଲୋକ, ବୁଲାକୁକୁର ଇତ୍ୟାଦି । ସୁରବାବୁ ଗୃହଆଡ଼କୁ ଆଖି ବୁଲାଇଲେ । ଯେପରିକି ସେ ନମୁନା ହିସାବରେ ଏହି ମୁହୂର୍ତ୍ତଟିକୁ ଦେଖି ନେଇ ଜୀବନର ସ୍ୱରୂପ ବୁଝିପାରୁଛନ୍ତି ।

ତାଙ୍କ ମନରେ ଆସିଲା ଯେ ଚତୁର୍ଦ୍ଦିଗରେ କାମ ଚାଲିଛି, ଏବଂ ସେ ସୁଖୀ । ତା'ର ଅର୍ଥ ନୁହେଁ,—ସେ ନିଜକୁ କହିଲେ—ଯେ ମୁଁ ଭଗବାନଙ୍କ ପରି ଅଲଗା ଏକୁଟିଆ ହୋଇ ବସିଛି ଓ ସଂସାରରେ ଲୀଳାଖେଳା ଦେଖୁଛି । ନା, ମୁଁ ମଧ୍ୟ କାମ କରିଛି, କରୁଛି । ମୁଁ ବାହାଘାହା ହୋଇ ଘରଦ୍ୱାର କରିଛି, ଟଙ୍କା ରୋଜଗାର କରିଛି, ପିଲାଙ୍କୁ ମଣିଷ କରିଛି । ମୁଁ ମୋ ସ୍ତ୍ରୀ ସାଙ୍ଗରେ କଳି କରିଛି, ପିଲାଙ୍କୁ ଗାଳି ଦେଇଛି, କେତେ ଅଭାବ ଅସୁବିଧା ସହିଛି, ଏବଂ ପଡ଼ି ଉଠି ଆଗକୁ ଚାଲିଛି । ମୋଟରେ କେତେ-

ବେଳେ କେମିତି କାନ୍ଦ ମାଡ଼ୁଛି, ମୁଁ ପ୍ରେମ କାହାକୁ କୁହାଯାଏ ଜାଣିଛି ଓ ମୁଁ ଦରକାର ବେଳେ ପ୍ରାର୍ଥନା କରୁଛି। କିନ୍ତୁ ତା ସତ୍ତ୍ୱେ ମୁଁ ଭଗବାନଙ୍କ ପରି ଭାବି ପାରୁଛି। ତେଣୁ ମୁଁ ସୁଖୀ।

ଘଟଣା ମାନେ ବ୍ୟତିକ୍ରମ। ଘଟଣା ଘଟିପାରେ। କିନ୍ତୁ ସେ ସବୁକୁ ତ ଗୋଟାଏ ଫ୍ରେମ୍ ଭିତରେ ରଖିଦେଲେ ଚଳନ୍ତା! ଜୀବନର ବିଭିନ୍ନ ଅବସ୍ଥା ପାଇଁ ବିଭିନ୍ନ ଫ୍ରେମ୍। ଗୃହସ୍ଥ ଜୀବନପାଇଁ ଗୋଟାଏ ଫ୍ରେମ୍,—ପେଟ ପୋଷିବାକୁ ହେବ। ବିବାହିତ ଜୀବନ ପାଇଁ ଗୋଟାଏ ଫ୍ରେମ୍,—ସ୍ତ୍ରୀ ସବୁଦିନର ସାଥୀ। ସାମାଜିକ ଜୀବନ ପାଇଁ ଆଉ ଗୋଟାଏ ଫ୍ରେମ୍,—ସମସ୍ତେ ବନ୍ଧୁ, କେହି ନିଜର ନୁହନ୍ତି। କହିବାକୁ ଗଲେ ସମଗ୍ର ଜୀବନ ପାଇଁ ଗୋଟିଏ ସର୍ବବ୍ୟାପୀ ଫ୍ରେମ୍ ରହିଛି,—ବଞ୍ଚିବାକୁ ହେବ। ଏତିକି ବୁଝିନେଲେ ନାଟକର ପ୍ରଶ୍ନ ଆସୁଛି କେଉଁଠୁ? କେଉଁ ଗୋଟିଏ ଘଟଣାକୁ ନେଇ ଏତେ ଘଣ୍ଟାଚକଟା, ପାଟିତୁଣ୍ଡ, ମୂର୍ଚ୍ଛା ଓ ପତନ, ଆନନ୍ଦ ଓ ବେଦନାର ପାଗଳାମି କାହିଁକି? ସିନେମା, ଥିଏଟର୍, ଉପନ୍ୟାସ। ଆର୍ଟ୍! ଏଥର ସୁରବାବୁ ଲମ୍ବେଇ କରି ହସିଲେ। ଯେପରିକି ସେ ଆର୍ଟ୍ ନାମ୍ନୀ ବାଳିକା ଦୁହିତାର ବେଣୀସାଜ, ଖଣ୍ଡା ଓ ମୁକୁଟ ଦେଖୁଛନ୍ତି, ଓ ତାଙ୍କୁ ମଜା ଲାଗୁଛି। ବେଶ୍ ବେଶ୍। ଆର୍ଟ୍ ଭଲ, ଜୀବନ ଭଲ।

ଶାନ୍ତିଦେବୀ ସ୍ୱାମୀଙ୍କର ଅଲଭ୍ୟ ସ୍ମିତହାସ ଦେଖିଲେ, କିନ୍ତୁ ଡେରିରେ ଦେଖିଲେ। ମନେ ହେଉଥିଲା ଯେ ସେ ତାଙ୍କ ସିଟିଲେଇରେ ମଜ୍ଜି ଯାଇଛନ୍ତି। କେତେବେଳକେ ତାଙ୍କର ଚେତା ହେଲା ଯେ ସ୍ୱାମୀ ଖବରକାଗଜ ପଢ଼ୁନାହାନ୍ତି, ସେ ନିର୍ଭୟରେ ଓ ନିର୍ବୋଧଙ୍କ ପରି ହସୁଛନ୍ତି। ଶାନ୍ତିଦେବୀ ଆଶ୍ଚର୍ଯ୍ୟ ହେଲେ। ସେ ଅଛା କଲା ପରି ଅଥଚ ଭୃକୁ ବଙ୍କାଇ ପଚାରିଲେ, "କଅଣ ହେଲା କି? ସ୍ୱପ୍ନ ଦେଖୁଛ?"

ଶାନ୍ତିଦେବୀଙ୍କର ବଡ଼ ମୁହଁ, ପୂରିଲା ଗାଲ, ସ୍ୱଚ୍ଛ ଗୋଲ ଆଖି। ପାଖକୁ ଯାଇ ଦେଖିଲେ ଜଣା ପଡ଼ିବ ଯେ ସେ ହେଉଛି ପ୍ରୌଢ଼ାର ମୁହଁ,—ସେଥିରେ ଅନେକ ରେଖା ଓ ବିନ୍ଦୁ, ବହୁଳ ପୃଷ୍ଠ, କେତେ ଖରା ଶୀତର ଅଭିଜ୍ଞତା। ତଥାପି ମନେ ହେବ ଯେ ସେ ସ୍ୱଭାବତଃ ଶିଶୁ କିମ୍ବା ଧରଣୀ ରୂପିଣୀ ମାଆ, ଯୌବନ ଅନାବଶ୍ୟକ।

ସୁରବାବୁ ସ୍ତ୍ରୀଙ୍କୁ ଉତ୍ତର ଦେଇ କହିଲେ, "ମୁଁ ସ୍ୱପ୍ନ ଦେଖୁନାହିଁ। ମୁଁ ଗୋଟିଏ ସିନେମାର ସିଚୁଏସନ୍ କଥା ଭାବୁଛି। ସେଥିରେ ଆମେ ଦୁଇଜଣ ହିରୋ ଓ ହିରୋଇନ୍। ଆମେ ତୁମୁଳ ଯୁଦ୍ଧ କରୁଛୁ, ଜୀବନ ମରଣ ସମସ୍ୟା। ଶେଷକୁ ତୁମେ ହାଲିଆ ହୋଇଯାଇ କାଇଁ କାଇଁ ହୋଇ କାନ୍ଦୁଛ। ଆଉ ମୁଁ କଣ୍ଠ ଛିଣ୍ଡାଇ ଦୂରକୁ ଚାହିଁଛି, ଭାବୁଛି ମୁଁ କାହିଁକି ଜନ୍ମ ହେଲି। ପରବର୍ତ୍ତୀ ଦୃଶ୍ୟ। ରୁମ୍ ସ୍ଲିପିଙ୍ଗ୍

ଟେବ୍‌ଲେଟ୍ ଖାଇ ଆତ୍ମହତ୍ୟା କରିବାକୁ ବସିଛ । ମୁଁ ଚମକପଡ଼ି ତୁମ ହାତ ଧରି ପକାଇଛି । ତୁମେ କହୁଛ—ଛାଡ଼ ଛାଡ଼ ମୋତେ ଯିବାକୁ ଦିଅ, ମୁଁ କହୁଛି ମୁଁ ତୁମକୁ ଛାଡ଼ି ରହି ପାରିବି ନାହିଁ । ଆମେ ଦୁହେଁ କାନ୍ଦୁଛୁ । ତା'ପରେ ।"

"ହଉ, ଥାଉ ।" ଶାନ୍ତିଦେବୀ ନ ହସି ରହି ପାରିଲେ ନାହିଁ । "ଘରେ ବସି ଯେତେକ ରୋଗ ବାହାରୁଛି । ଅଫିସ୍ ବେଳ ହୋଇ ନାହିଁ ? ଯାଉନା ବାହାରେ ଟିକିଏ ବୁଲି ଆସିବ ।"

ଶାନ୍ତିଦେବୀ ଭାବିଲେ,—ମୋର ସ୍ୱାମୀଟି ବିଚିତ୍ର । ଆସି ବୁଢ଼ା ହେଲେଣି, ଅଫିସ୍‌ର ବଡ଼ବାବୁ ହେଲେଣି, ଗାଲ ପଶି ଗଲଣି, ମୁଣ୍ଡବାଳ ଅଧେ ଧଳା ହୋଇ ଗଲଣି, ତଥାପି ତାଙ୍କର ପିଲାଳିଆମି ଯାଇନାହିଁ । ତଥାପି ତାଙ୍କର ସ୍ନେହ ଆଖି ନାଚି ଉଠେ ଯେତେବେଳେ ସେ ଖୁସି ଥାଆନ୍ତି, ଆଉ ଏମିତିକା ରୋମାଣ୍ଟିକ୍ କଳ୍ପନା ତାଙ୍କ ମନକୁ ଆସେ । (ଦୀର୍ଘ ନିଃଶ୍ୱାସ) ଆମ ଜୀବନଟା ବେଶ୍ କଟିଗଲା । ସୁଧାର ଭାଗ୍ୟରେ କଅଣ ଅଛି କେଜାଣି !

ଏହାପରେ ସେ ଯେତେବେଳେ ପୁଣି ମୁହଁ ତଳକୁ କରି ମନଯୋଗ ସହ ସିଲେଇ କଲେ, ସୁରବାବୁଙ୍କର ସନ୍ଦେହ ହେଲା । ଶାନ୍ତି ନାଁକୁ ସିଲେଇ କରୁଛି, ସେ ସିଲେଇର ଆଡ଼ୁଆଳରେ କଅଣ ବସି ଭାବୁଛି । ଭାବୁଛି ଓ ଠିକ୍ କରି ପାରୁ ନାହିଁ । ବିଚିତ୍ର ! ତା' ମନଟା ପିଲାଙ୍କ ପରି ନିର୍ମଳ । କେଉଁଠୁ ଗୋଟିଏ ଚିନ୍ତାବାଉଦ ଆସିଗଲେ ସେ ତା'ର କଳା ଛାଇରେ ବ୍ୟତିବ୍ୟସ୍ତ ହୋଇ ପଡ଼େ ।

ସମସ୍ତ ଖରାଦିନିଆ ପ୍ରଶସ୍ତ ସକାଳ । ଅଫିସ ଯିବାକୁ ଡେରି ଅଛି । ସୁରବାବୁ ପୁଣି ଥରେ ଖବରକାଗଜକୁ ଓଲଟାଇଲେ ଏବଂ ମନକୁ ଖେଳାଇଲେ । ଗୋଟିଏ ଚଢ଼େଇର ଚେଁ-ଚ୍ରିକୁ ସେ ଅଲଗା କରି ଶୁଣିବାକୁ ପାଇଲେ, ଓ ଭାବିଲେ ଏ ଏକ ନୂଆ ରକମର ଶବ୍ଦ । ଗୋଟିଏ ପତଙ୍ଗ ଜାତୀୟ ଜୀବ । ଝରକାର ଦୁଇଟି ରେଲିଙ୍ଗ୍ ଭିତରେ ଘୂରି ଘୂରି ଉଡ଼ୁଥିଲା, ତାକୁ ମଧ୍ୟ ସେ ଦେଖିବାକୁ ପାଇଲେ ।

ଶାନ୍ତିଦେବୀ ଅଧିକରୁ ଅଧିକ ଗମ୍ଭୀର ହେଲେ । କ୍ରମଶଃ ଦେଖାଗଲା ଯେ ସେ ଆଉ ସିଲେଇ କରି ପାରିବେ ନାହିଁ । ସେ ଆଉ ଭାବି ପାରିବେ ନାହିଁ । ସେ କିଛି କରିବେ !

ହେହୁଁ ଜରୁରୀ ଭାବ ନେଇ ସେ ପଚାରିଲେ, "ଶୁଣ, ମୁଁ କଣ କହୁଛି । ତୁମର ଖରାଛୁଟି ହେବାକୁ ଆଉ କେତେ ଦିନ ରହିଲା ?"

"କାହିଁକି ? ଆଉ ସାତ ଆଠ ଦିନ ।"

"ତୁମେ ସାନ ପିଲଙ୍କ ଖବର ବୁଝିବ । ମୁଁ ଯାଉଛି, ସୁଧା ଘରେ କିଛି ଦିନ ରହିକରି ଆସିବି । କଣ କହୁଛ ?"

ସୁରବାବୁ ଅପେକ୍ଷା କଲେ । କଥା ସରି ନାହିଁ, ଉଦ୍ଦେଶ୍ୟ ବୁଝି ହେଲା ନାହିଁ ।

"ସୁଧା ଚିଠି ଦେଇଛି । ଲେଖିଛି ଯେ ତା'ମନ ଭଲ ରହୁ ନାହିଁ । ଆଉ ମୋତେ କେତେ କରି ଆସିବାକୁ କହୁଛି ।"

ସୁଧା ବଡ଼ ଝିଅ । ଦୁଇତିନି ବର୍ଷ ହେଲା ବାହା ହେଲଣି କିନ୍ତୁ ଏହି ପ୍ରଥମଥର ସ୍ୱାମୀ ପାଖରେ ରହିବ ବୋଲି ଯାଇଛି । ଜ୍ୱାଇଁ ପ୍ରଭାତକୁମାର ଗୋଟିଏ କମ୍ପାନୀରେ ଚାକିରି କରେ, ଭଲରେ ଅଛି । ସୁଧାର ମନ ଭଲ ରହୁନାହିଁ କାହିଁକି ?···ହୋଇଥିବ, ଅଜଣା ବଡ଼ ସହରରେ ପ୍ରଥମେ ଟିକିଏ ଅଡ଼ୁଆ ଲାଗୁଥିବ । ତେବେ ମାଆ ମନ । ଯାଉ ବୁଲିକରି ଆସୁ··· ।

ପ୍ରସ୍ତାବକୁ ମନ ଭିତରେ ଆଲୋଚନା କରି ସାରିଲା ପରେ ସୁରବାବୁ କହିଲେ, "ବେଶ୍ ଭଲ କଥା । ଯାଅ ଦଶ ପନ୍ଦର ଦିନ ରହି କରି ଆସିବ ।··· ଏଇଯା ବସି ଭାବୁଥିଲ ?"

ଶାନ୍ତିଦେବୀ ଚଟ୍‌କରି ଉତ୍ତର ଦେଇ ପାରିଲେ ନାହିଁ । କହିଲେ, "ନା, ଏମିତି କିଛି ନୁହେଁ । ତେବେ ତୁମ ଝିଅ କଥା ଜାଣିଛ ତ, ଅତି ଗେହ୍ଲାରେ ବଢ଼େଇଛି ଟିକିଏ ଦୁଃଖ କଷ୍ଟ ସହିବ ନାହିଁ । ମୁଁ ଭାବିଲି ଥରେ ଯାଇ ଦେଖି ଆସିଲେ, ବୁଝି ବୁଝି କରିଦେଲେ ଝିଅଙ୍କ ମିଜାଜ ଠିକ୍ ରହିବ । ତୁମେ ତ ଯାଇ ପାରିବ ନାହିଁ, କେତେ ବାହାନା କରିବ । ମୁଁ ପିଲାଙ୍କୁ ଛାଡ଼ି ଯାଇ ପାରୁ ନାହିଁ । ସେଇଲାଗି ମୁଁ କହିଲି ଯେ ଛୁଟି ଆସୁଛି, ଏଇଥରକବେଳେ ସୁବିଧା ଅଛି । ଅବଶ୍ୟ ତୁମେ ହଇରାଣ ହେବ । ଏ ପୁଷ୍ଟାଙ୍ଗ ଟୋକା କିଛି କାମର ନୁହେଁ, କିନ୍ତୁ—।"

ଏତେ ସଫେଇ ଦେବାର କଅଣ ଅଛି ? ସୁରବାବୁ ଅମୋଦିତ ହେଲେ । ଶାନ୍ତି ବଡ଼ ହୋଇନାହିଁ । କେଇଟା ଦିନ ମୋତେ ଛାଡ଼ି କରି ଯିବ, ସେଥିପାଇଁ ଏତେ ବ୍ୟସ୍ତ । ମୁଁ କଅଣ ନୂଆ ବାହା ହୋଇଛି ଯେ ସ୍ତ୍ରୀ ସାତଦିନ ପାଇଁ ବାପ ଘରକୁ ଗଲେ ବିଚ୍ଛେଦ ବୋଲି ମନେକରିବି ଓ ମୁହଁ ଶୁଖେଇବି ?

କିନ୍ତୁ ଶାନ୍ତିଦେବୀ ଭାବିଲେ,—ମୁଁ ଆଉ କଅଣ କହିବି ? ଆଉ କଅଣ କହିପାରି ଥାଆନ୍ତି ? ସେ ମାଆ ନୁହଁନ୍ତି, ସେ ବୁଝିବେ ନାହିଁ ।

× × ×

ଆଜ ଶାନ୍ତଦେବୀ ଝିଅ ଘରକୁ ଯିବେ । ସକାଳ ପହରୁ ସଜଡ଼ା ସଜଡ଼ି ଚାଲିଛି ।

ସୁରବାବୁ ଲକ୍ଷ୍ୟକଲେ ଯେ ଶାନ୍ତ କାମ ଛାଡ଼ି ଦେଇ ବେଳେ ବେଳେ କାନ୍ଥ ବାଡ଼କୁ ଚାହିଁ ରହୁଛି, ଓ ଓଠକୁ ଚାପି ଦେଉଛି ଚାଗିଲା ପରି । କିନ୍ତୁ କିଏ ପାଖକୁ ଆସିଗଲେ ପୁଣି କାମରେ ଲଗି ପଡ଼ୁଛି ।

ତା' ମନରେ ଆଗ୍ରହ ନାହିଁ । କିମ୍ବା କେବଳ ଦୁଃଖ ଥିଲପରି ଲାଗୁନାହିଁ । ମନେ ହେଉଛି ଯେ ସେ କୌଣସି ଶେଷେହକୁ ବାହାରିଛି; ଶତ୍ରୁ ଅତି ବଳଶାଳୀ । ତାକୁ ଏ ଯୁଦ୍ଧ ଭଲ ଲାଗୁନାହିଁ, କିନ୍ତୁ ଅନ୍ୟ ଉପାୟ ନାହିଁ । ସେ ରହି ରହି କହୁଛି, "ମୁଁ କଅଣ ସେଠି ବେଶିଦିନ ରହିବି ? ମୋତେ ଆଉ ରହିବ ନାହିଁ । ମୁଁ ଜଲଦି ଚାଲି ଆସିବି ।" କିନ୍ତୁ ପୁଅ ଦୁଇଜଣ ବାଲୁ ଓ ସୁଲୁ ଯେତେବେଳେ ପଚାରିଲେ, "ମାଆ ତୁମେ କେବେ ଫେରିବ ? ଆର ରବିବାରକୁ ? ପହିଲା ବେଳକୁ ?" ଇତ୍ୟାଦି, ସେ ଚିଡ଼ି ଉଠିଲା । କହିଲା, "ଓଃ । ମୁଁ କଅଣ ସେଠିକି ମଉଜ କରିବାକୁ ଯାଉଛି ? କହିଲି, ତ ଜଲ୍‌ଦି ଫେରି ଆସିବି—"

ସ୍ତ୍ରୀଙ୍କୁ ଶାନ୍ତ କରିବା ଉଦ୍ଦେଶ୍ୟରେ ସୁରବାବୁ ଥରେ ତାଙ୍କ ହାତକୁ ଧରି ପକାଇଲେ । ସେତେବେଳେ ଶାନ୍ତଦେବୀ ଗୋଟାଏ ବଡ଼ କଳା ଟ୍ରଙ୍କ୍ ଉପରେ ବସିଥାଆନ୍ତି । ଚାରିଆଡ଼େ ଖୋଲା ବିଛଣା, ବାସିଲୁଗା, ଦର୍ପଣ ପାନିଆ ପ୍ରଭୃତି ଖେଳା ହୋଇ ପଡ଼ିଥାଏ । ପିଲମାନେ ଆଖି ପାହାନ୍ତାରେ ବୁଲୁଥାଆନ୍ତି । କିନ୍ତୁ ଏହି ପରିବେଶରେ ସଙ୍କୁଚିତ ନହୋଇ ଶାନ୍ତଦେବୀ ସ୍ଥିର, ନମିତ, ଓ ପ୍ରୀତିଭରା ଚାହାଣୀରେ ସ୍ୱାମୀଙ୍କୁ ଅନାଇଲେ, ମନେ ହେଲା ଯେ ସେ କୃତଜ୍ଞତାରେ ତରଳି ଯାଉଛନ୍ତି । ଯେପରିକି ସେ ଯାହା ପାଇଲେ ତାର ତୁଳନା ନାହିଁ । ସତେକି ସେ ଲୁଣିତା ପ୍ରିୟା, ବୟସ ଅଠର ବର୍ଷ ।

ସୁରବାବୁ ଅପ୍ରସ୍ତୁତ ହୋଇ ହାତ ଫେରାଇ ଆଣିଲେ, ଗୋଟିଏ ହାଫିନ୍ ତକିଆ ଖୋଳରେ ହାତ ଘସିଲେ । ତାଙ୍କୁ ଡର ଲାଗିଲା । କାହିଁକନା ତାଙ୍କର ଇଚ୍ଛା ହେଲା ଯେ ଏହି ମୁହୂର୍ତ୍ତରେ ଓ ସବୁ ସମ୍ମୁଖରେ ସେ ସେହି କ୍ଲାନ୍ତ ଧୂସ୍ର, ଶୋଷ ଶୁଖୁଣା ମୁହଁରେ ଚୁମ୍ବନ ଦେବେ ।

ଶାନ୍ତର କଅଣ ହୋଇଛି ?

ମୁହୂର୍ତ୍ତି କଟିଗଲା । କିନ୍ତୁ କେତେବେଳଯାଏଁ ତା'ର ମହତ୍ତ୍ୱ ଶାନ୍ତଦେବୀଙ୍କ ମନରେ ବସା ବାନ୍ଧିଥିଲା । ସେ ଭାବୁଥିଲେ,—ହବୁ ପୁରୁଷ, ହବୁ ସ୍ୱାମୀ, ହବୁ କ୍ୱାଇଁ କଣ ତାଙ୍କପରି ହୋଇ ପାରିବେ ନାହିଁ ? କାହିଁକି ହେବେନାହିଁ ?

···ଟ୍ରେନ୍ ଛାଡ଼ିଲା ବେଳକୁ ସେ ଶେଷ କଥା ସ୍ୱାମୀଙ୍କୁ କହିଲେ, "ଭଲ କରି ଖାଇବ, ଦେହର ଯତ୍ନ ନେବ—"

## ଦୁଇ

ଶାନ୍ତଦେବୀ ଯିବାର ପ୍ରାୟ ସାତଦିନ ହୋଇଗଲାଣି ।

ସୁରବାବୁ ତାଙ୍କର ପୁଅ ଦୁଇଜଣଙ୍କୁ ନେଇ ପାର୍କକୁ ବୁଲି ଯାଇଥିଲେ । ପିଲାମାନେ ତିନିଖଣ୍ଡ କାଠି ପୋତି କ୍ରିକେଟ୍ ଖେଳୁଥାଆନ୍ତି ଓ ସୁରବାବୁ ଦୂରରେ ବହଳିଆ ଘାସ ଉପରେ ବସି ରହି ଥାଆନ୍ତି । ହନ୍ତ ପବନ ସାଙ୍ଗରେ ପ୍ରୀତିକର ଚେତନାର ବିଭିନ୍ନ ରୂପ ତାଙ୍କ ମନକୁ ଛୁଇଁ ଚାଲି ଯାଉଥାଏ । ଯଥା: ଏ ଘାସ ବେଶ୍ ନରମ ଓ ଶାଗୁଆ···ଶାନ୍ତ ଚିଠି ଦେଇଥିଲା, ସେ ଭଲ ଅଛି, ସୁଧା ଭଲ ଅଛି, ବାଲୁ ଭଲ ଖେଳିଆଳି ହେବ କିନ୍ତୁ ସୁଲୁ ପଣ୍ଡିତ ହେବ···ଆଗରେ ଯେଉଁ ସ୍ତ୍ରୀ ଲୋକଟି ଚାଲିଗଲା,—ବିରାଟ ବକ୍ଷ, ବିଶାଳ ନିତମ୍ବ—ସେ ମଧ୍ୟ ଏହି ହନ୍ତକୁ ଉପଭୋଗ କରି ପାରୁଛି !···ସେଦିନ ଶାନ୍ତିର ମୁହଁ ମନେ ପଡ଼ୁଛି, ସେ ମୋତେ ଭାରି ଭଲ ପାଏ । ସୁଧା ନିଶ୍ଚୟ କିଛି ଚିଠିରେ ଲେଖିଥିଲା ଯେଉଁଥିରେ ଶାନ୍ତ କାହାକୁ କିଛି କହି ନ ପାରି ମନେ ମନେ କଷ୍ଟ ପାଉଥିଲା । ମୁଁ ତା'ର ବ୍ୟଥାକୁ ଦେଖିପାରି ଆଉଁସିଦେଲି, ସେଇଥି-ଲାଗି ସେ ଗଦ୍‌ଗଦ ହୋଇ ମୋ ଆଡ଼କୁ ଚାହିଁଲା । ସେ ମୋତେ ଭାରି ଭଲ ପାଏ··· ଯୋଡ଼ାଏ ସାନ ପିଲା ଘାସରେ ଗଡ଼ାଗଡ଼ି, ମରାମରି ହେଉଛନ୍ତି । ତାଙ୍କ ଆଡ଼କୁ ଚାହିଁଲେ ସେମାନେ ଖେଳ ଦେଖାଇଲା ପରି ପୁଣି ମାରୁଛନ୍ତି···ସୁଧା କଅଣ ଲେଖିଥିଲା ? ଯେ ତା'ର ସ୍ୱାମୀ ସାଙ୍ଗରେ ପଡ଼ୁନାହିଁ ? ସେଥିରେ ଏତେ ଭାବିବାର କଅଣ ଅଛି ? ମାଆ ଝିଅ ଦୁହେଁ ସମାନ, କୋମଳ ଭାବରେ ସରି ଯାଇଛନ୍ତି । ସୁଧା ଓ ପ୍ରଭାତ ଦିନେ ବଡ଼ ହେବେ, ଅମ ପରି ହେବେ । ତାଙ୍କ ଜୀବନ ସୁ ରୁଖ୍ ରୁରେ କଟି-ଯିବ···ତେବେ ଶାନ୍ତ ମୋତେ ବେଶି ଭଲ ପାଏ···

ସେ ମୋତେ ବେଶି ଭଲ ପାଏ । ଜୀବନର ଜୟମାଳା । ପ୍ରବୀଣ ଯୋଦ୍ଧାର ସାଜରେ ଉଜ୍ଜଳ ସ୍ୱର୍ଣ୍ଣ ପଦକ । ତା' ବୋଲି କଣ ସେ ରୁଚ୍ଛାଟାକୁ ଝଣଝଣ ହେଉଥିବ ? ଛାତି ଉପରେ ପିଟି ହେଉଥିବ ?

କ୍ରମଶଃ ସୁରବାବୁଙ୍କର ମନେ ହେଲା ଯେ ସେହି କଦା ସୁନାର ବୋଝ ସହି ହେଉ ନାହିଁ । ତା'ର ଚହଟରଙ୍ଗ ଆଖିକୁ ବାଧୁଛି । ଏ ପ୍ରୌଢ଼ତା ଏ ସାସ୍ଥ୍ୟରେ ତା'ର ଏମିତି ଦେଖେଇ ହେବା ଉଚିତ ନୁହେଁ ।

ସଂସାରରେ କଅଣ ଆଉ କେହି ସ୍ୱାମୀ-ସ୍ତ୍ରୀ ନାହାନ୍ତି ? ସେମାନେ କଅଣ ପରସ୍ପରକୁ ଭଲ ପାଆନ୍ତି ନାହିଁ ? ସୁରବାବୁ ନିଜକୁ ପଚାରିବାକୁ ଚାହିଁଲେ ଓ

ପ୍ରୟାଣ ହେଲା ପରେ ପାର୍କରେ ବୁଲୁଥିବା ଯୁଗଳ ମୂର୍ତ୍ତିମାନଙ୍କୁ ନିରେଖି ଦେଖିଲେ । ଏହି ଆସୁଛନ୍ତି ଷଠିଏର ଭିତରର ଦୁଇଜଣ, ସ୍ୱାସ୍ଥ୍ୟବାନ ଓ ସ୍ୱାସ୍ଥ୍ୟବତୀ, ହସଖୁସିରେ ଫାଟି ପଡ଼ୁଛନ୍ତି । ଆଉ ଦୁଇଜଣ ତରୁଣ ତରୁଣୀ, ହୁଏତ ନୂଆ ବାହା ହୋଇଛନ୍ତି କିମ୍ବା ନୂଆ କରି ପ୍ରେମ କରୁଛନ୍ତି, ସେମାନେ ଦେହରେ ଦେହ ଲଗାଇ ଝୁଲି ଝୁଲି ବୁଲୁଛନ୍ତି, —ଯେପରିକି ପ୍ରତି ସ୍ୱର୍ଗରବିନ୍ଦୁ ନେଇ ପ୍ରେମର ସାଗର ଗଢ଼ା ହେଉଛି । ଆଉ ଦୁଇଜଣ କ୍ଷିପ୍ର ଗତିରେ ବୁଲୁଛନ୍ତି, ଯୁକ୍ତିକଲା ପରି କଥା କହୁଛନ୍ତି ଏବଂ ସାନଟିଏ ଅଟିଏ ଟାଣି ନେଲାପରି ଯାଙ୍ଗରେ ଚାଲିଛି । ପୁଣି ଦେଖ ସେ ଦୁଇଜଣଙ୍କୁ, ହାତରେ କୁକୁର ଧରି ହୋଇଛି, ଗର୍ବରେ ଉନ୍ନତ ମସ୍ତକରେ ପବନ ସୁଙ୍ଘୁଛନ୍ତି, କଥା କହିବାର ଆବଶ୍ୟକତା ବୋଧ କରୁ ନାହାନ୍ତି । ଏହିପରି କେତେ । ସମସ୍ତେ ସୁଖୀ, ସୁସ୍ଥ ଓ ସାଧାରଣ । ତାହା ହେଲେ ଶାନ୍ତି ମୋତେ କାହିଁକି ଏମିତି ତର୍ଜମା ଦେଖାଇ ଭଲ ପାଇବ ? ମୁଁ କି ଦୋଷ କରିଛି ?

ସୁରବାବୁ ନିଜକୁ ପ୍ରବୋଧନା ଦେଲେ । ଭାବିଲେ ଯେ ବୋଧହୁଏ ଶାନ୍ତି ପାଖରେ ନ ଥିବାରୁ ଏପରି ଅସଂଗତ ଭାବନା ମନକୁ ଆସୁଛି । କଳ୍ପନାରେ ତା' ମୁହଁ ଅତ୍ୟଧିକ କରୁଣ ଓ ସରଳ ଦେଖା ଯାଉଛି । କିମ୍ବା ହୁଏତ ମୁଁ ବୁଢ଼ା ହୋଇ ଆସୁଛି, —ସୁରବାବୁ ଚିନ୍ତିତ ହେଲେ । ମୋର ମନ ଦୁର୍ବଳ ହେଉଛି । ଅଦୂର ମରଣର ଛାଇରେ ମୋ ଭାବନାର ରଙ୍ଗ ବଦଳି ଯାଉଛି । କାହିଁକି ? ମୋତେ ମୋଟେ ବୃତପନ ବର୍ଷ । ମୋ ଦେହରେ ବଳ ଅଛି, ମୋର ବୁଦ୍ଧି ମଳିନ ହୋଇ ନାହିଁ । ଶେଷକୁ ସେ ଅନୁମାନ କଲେ ଯେ ଏ ହେଉଛି ରାତ୍ରିଜାଗରଣର ଲକ୍ଷଣ ।

କିଛିକ୍ଷଣ ପରେ ସେ ନିଜକୁ ସଜାଡ଼ି ନେଇ ପାରିଲେ । ଦମ୍ଭରେ ହସି ନିଜକୁ କହିଲେ,—ଶାନ୍ତି ମୋତେ ବେଶି ଭଲ ପାଉ, କିଛି ଯାଏ ଆସେ ନାହିଁ । ମୁଁ ମଧ୍ୟ ତାକୁ କିଛି କମ୍ ଭଲ ପାଏ ନାହିଁ ।

...ଆଉ ଥରେ ସେହି ପାର୍କରେ ବାଲୁ ଚକ୍କର କଲା ଯେ ତାଙ୍କର ପାଖ ଦେଇ ଗୋଟାଏ ସାପ ଚାଲିଗଲା । ସରୁ ସାପଟିଏ ଧରି ନ ହେଲା ପରି ସୁର୍‌ସୁର୍ ହୋଇ ପଳେଇଗଲା । ଘାସ ଭିତରୁ ବାହାରି ଘାସରେ ଲୁଚିଗଲା ।

ସୁରବାବୁ ବିଶ୍ୱାସ କଲେ ନାହିଁ । କିନ୍ତୁ ତାଙ୍କର ମନେ ହେଲା ଯେ ସେ ତାକୁ ଦେଖିଛନ୍ତି । ତା'ର ଚେହେରା କେମିତି କହି ହେଉ ନାହିଁ, କିନ୍ତୁ ସେ ଆସିଥିଲା । ମନେ ପକାଇଲେ ମନେ ପଡ଼ୁଛି ଯେ ସେ ଆସିଥିଲା—ଗୋଟିଏ ଦୁଃସ୍ୱପ୍ନ ପରି । ତା'କୁ ଅସ୍ୱୀକାର କଲେ ଚଳିବ, କିନ୍ତୁ କିଛି ଲାଭ ନାହିଁ ।

ଏ ଘାସରେ ଆଉ କଅଣ ବସି ହେବ ? ଦେହ ଘୃଣ୍ୟ ଜନ୍ତୁକୁ ମାରି ହେବ ନାହିଁ, ସେ ପଳେଇ ଯାଇଛି । କିନ୍ତୁ ଏ ଘାସ ଆଉ ପୂର୍ବପରି ନାହିଁ । ଘୋର ବିରକ୍ତି ସହ ସୁରବାବୁ ଉଠି ପଡ଼ିଲେ ଓ ଫଳାଙ୍କ ଢାଙ୍ଗରେ ଧରି ଘରକୁ ଫେରିଲେ ।

ସାମାନ୍ୟ କଥା । ତେବେ ବୋଧହୁଏ ସେଇଥିପାଇଁ ତାଙ୍କର ବିରକ୍ତି ବଢ଼ିବାକୁ ଲାଗିଲା । ଯେପରିକି ଗୃହର କୋଣରେ କେଉଁଠି ଟିକିଏ ଅଳିଆ ରହିଯାଇଛି, ତାକୁ ଦେଖି ଦେଖି ନିଦ ହେଉନାହିଁ । ଅଦୃଶ୍ୟରେ ନିଜ ଦେହରେ କେଉଁଠି ମଇଳା ଲାଗିଯାଇଛି, ତାକୁ ଛଡ଼ାଇ ହେଉ ନାହିଁ ।

ତାଙ୍କର ମନେ ହେଲା ଯେ ଏହି ଅସ୍ୱସ୍ତି ଆଜି ନୁହେଁ, ଅନେକ ଦିନୁ ରହିଛି । କାରଣ ସ୍ମୃତି ମିଛ ନୁହେଁ, ସତକଥାର ଚିହ୍ନକ । ଘାସରେ ଲୁଚିଯାଇଥିବା ସାପର ଚିହ୍ନ ତାକୁ ଲଙ୍ଘି ଦେଇ ହେବ ନାହିଁ । ଆଉ ସେ ଯେତେଦିନ ଥିବ ଶାନ୍ତିର ଗୋଲ୍ ଶିଶୁ ମୁହଁ ଗ୍ରେଟ୍ ଧାଉଁଥିବ,—ମୁଁ ତୁମକୁ ବେଶି ଭଲ ପାଏ, ମୁଁ ତୁମକୁ ବେଶି ଭଲ ପାଏ ।

ଶେଷକୁ ବିରକ୍ତିରୁ କ୍ରୋଧ ଆସିଲା । ଏବଂ ସୁରବାବୁ ପ୍ରତିଜ୍ଞା କଲେ ଯେ ସେ ଶାନ୍ତିଦେବୀଙ୍କୁ ସବୁକଥା କହିଦେବେ । ଶାନ୍ତି ବୁଝିବ, ବୁଝିବା ଉଚିତ ।

ପ୍ରତିଜ୍ଞା କରି ସାରିଲା ପରେ ସୁରବାବୁଙ୍କୁ ହାଲୁକା ଲାଗିଲା । କିବା କଥା ! କେତେବର୍ଷ ତଳେ ଜଣେ ନାରୀ ସହିତ ତାଙ୍କର ଘନିଷ୍ଠତା ଆସି ଯାଇଥିଲା । ପିକ୍‌ନିକ୍‌ରେ ଏକୁଟିଆ ଆଳାପ, ଆଳାପରୁ ଚୁମ୍ବନ, ଚୁମ୍ବନରୁ ବାକି ସବୁ । ଗୁହୁଁ ଗୁହୁଁ କେତୋଟି ମାସ ଭିତରେ ଯାହା ହେବାର ହୋଇଗଲା, ଭାବିବାକୁ ସମୟ ମିଳିବ ନାହିଁ । ତା'ପରେ ସେ ଅନ୍ୟ ସହର, ଅନ୍ୟ ପ୍ରଦେଶ, କହିବାକୁ ଗଲେ ପୃଥିବୀ ବାହାରକୁ ଚାଲିଗଲା । କଥା ଛିଣ୍ଡିଲା । ଏଥିରେ ଶାନ୍ତିକୁ ଜଣାଇବାର କଣ ଥିଲା ?

ସୁରବାବୁ ଭାବିଲେ ଯେ କାହାଣୀ ଶୁଣିଲା ପରେ ଶାନ୍ତି ହସିବ । ଦୁହେଁ ତାକୁ ହସରେ ଉଡ଼ାଇ ଦେବେ । ସାପ ହୋଇଯିବ ଗୋଟିଏ ରବର ଖେଳଣା, ଓ ତାର ଚିହ୍ନକୁ ଦସ୍ତା ଦେଖାଇ ଫୁଙ୍କି ଦେଇ ହେବ ।

ତା' ନାଁ ଯୂଥିକା । ମନେ ପକେଇଲେ ମନେ ପଡ଼ୁଛି ତା'ର ମୁହଁ, ଶସ୍ତାଳିଆ ଗୋପନ ହସ, ତା' ଦେହର ରଙ୍ଗ, ଧାସ ଓ ଫାର୍ଲାସ୍ । ସେ କାମୁକା । ମୋ ଶାନ୍ତି ପରି ମୋଟେ ନୁହେଁ, ରୂପରେ କି ଗୁଣରେ ତା'ର ସରି ହେବ ନାହିଁ । କାହା-ହେଲେ ମୁଁ ତାକୁ କାହିଁକି ଭଲ ପାଇଲି ? ନା, ନା,—ମୁଁ ଭଲ ପାଇ ନାହିଁ । ମୁଁ ତାକୁ ଗୁହିଁଥିଲି ବୋଲି କଣ ଭଲ ପାଇଥିଲି ? ମୋର ଇଚ୍ଛା ହୋଇଥିଲା ଯେ ତା'ର ଗୁମାନ ଭାଙ୍ଗି ଦେବି, ତା'ର ଉଚ୍ଚନୀଚ ପାତଳା ଦେହକୁ ମୁଣ୍ଡିଧରି ନଷ୍ଟ କରି ଦେବି । ଥରେ କେଉଁ ରାତିରେ ମୁଁ ଉନ୍ମତ୍ତ ଉନ୍ମତ୍ତ ଯାଇ ତା' ଘରେ ପହଞ୍ଚିଲି । ସେ ମୋତେ ବଲ୍‌ମଙ୍ଗଲ ବୋଲି କହି ଥଟ୍ଟା କଲା ଓ ଦୂରେଇ ରଖି ଛଟପଟ କଲା । ତା' ବୋଲି ମୁଁ

କିଏ ତା'କୁ ଭଲ ପାଇଥିଲା ? ଶାନ୍ତ ଯାହା ନୁହେଁ ସେ ସେଇଆ । ସେ ସ୍ୱାର୍ଥୀ, ସ୍ୱାଧିକାରିଣୀ, ତାମସୀ । ସେଇଥିପାଇଁ ବୋଧହୁଏ ମୁଁ ତାକୁ ଚାହିଁଥିଲି, ବିପରୀତର ସ୍ୱାଦୁ ପାଇବା ନାହିଁ । ସେ ହେଉଛି ମୋର ମନର ବିକାର, ଆଉ କିଛି ନୁହେଁ ।

ମୁଁ ଭଲକୁ ଅର୍ଥାତ୍ ଶାନ୍ତକୁ ଭଲ ପାଏ, ସବୁ ଦିନେ ଭଲ ପାଇ ଆସିଛି । ଶାନ୍ତ ବୁଝିବ ।

ସୁରବାବୁ କ୍ୟାଲେଣ୍ଡରକୁ ଅନାଇଲେ ଏବଂ ଆବେଗଭରା ହୃଦୟରେ ସ୍ତ୍ରୀଙ୍କର ଫେରିବାକୁ ଅପେକ୍ଷା କଲେ ।

## ତିନି

ଶାନ୍ତଦେବୀ ସମ୍ପଦ ମଣ୍ଡିତା ହୋଇ ଫେରିଲେ । ସାଙ୍ଗରେ କେଜାଣି କେତେ ଟୋକେଇ, ଝୁଡ଼ି, ପ୍ୟାକେଟ୍, ଖୋଳ ଇତ୍ୟାଦି । ପିଲାମାନେ ଲୋଭ ସମ୍ଭାଳି ପାରିଲେ ନାହିଁ । ଘରେ ନ ପହଞ୍ଚୁଣୁ ସେଗୁଡ଼ିକର କୋଣ ଛୁଡ଼େଇ ଉଙ୍କି ମାରି ଦେଖିବାକୁ ଚେଷ୍ଟା କଲେ । ଶାନ୍ତଦେବୀ କୃତ୍ରିମ ରାଗରେ କହିଲେ, "ରୁହ ଦେମିତି କାହିଁକି ହେଉଛ । ମୁଁ କହି ଦେଉଛି କଣ ଆଣିଛି । ସେ ଟୋକେଇରେ ଅଛି ଦଶେରି ଅମ୍ବ, ବଡ଼ ଝୁଡ଼ିରେ ଲିଚୁ, ସାନ ଝୁଡ଼ିରେ ଦି' ରକମର ମିଠା—ମୁଁ ନାହିଁ ନାହିଁ କରୁଥିଲି, ସୁଧାଅପା ଜବରଦସ୍ତି କରି ଦେଇଛି । ବାକି କେତେଖଣ୍ଡ ନାଇଲନ୍ କନା, ବାପାଙ୍କ ପାଇଁ ଖଣ୍ଡେ ସ୍ୱେଟର୍—ଏମିତି । ଆଉ କଅଣ ? ଟଙ୍କା କେତେ ଥିଲା ଯେ ନଡ଼ଲେକି କରି ଥାଆନ୍ତି ? (ଆକ୍ଷେପ କରିବା ଛଳରେ ସେ ସ୍ୱାମୀଙ୍କ ଆଡ଼କୁ ଅନାଇଲେ) ହଁ, ପ୍ରଭାତଭାଇ ତମ ପାଇଁ କ୍ରିକେଟ୍ ବ୍ୟାଟ୍ ଆଉ କଣ ସବୁ ଖେଳ ଜିନିଷ ଦେଇଛି ।"

ତା' ପରେ ଖୁସି ହେଲା ପରି ସ୍ୱାମୀଙ୍କୁ ନିନ୍ଦା କଲେ, "ସେ ସୁଧା ସାଙ୍ଗକୁ ଠିକ୍ ପଡ଼ିଛି । ଭାରି ବଦ୍ ଖର୍ଚ୍ଚୀ ।"

ସୁରବାବୁଙ୍କର ଇଚ୍ଛା ହେଲା କହିବେ, କିନ୍ତୁ ଜଣା ପଡ଼ୁଛି ଯେ ତୁମ ହାତରେ ଟଙ୍କା ଥିଲେ ତୁମ ଝିଅ ଜ୍ୱାଇଁଙ୍କୁ ସାଙ୍ଗରେ ଧରି କଲିକତା ସହରଟାକୁ କିଣିନେଇ ଆସିଥାଅନ୍ତ ! କେଉଁ ଗଡ଼ ଜିତି କରି ଆସିଛ, ଶୁଣିବା ।

ସେ କିଛି କହିଲେ ନାହିଁ, ପଚାରିଲେ ନାହିଁ, ନୀରବରେ ଉପଭୋଗ କଲେ,— ଶାନ୍ତ ଗଲାବେଳକୁ କେମିତି ଦେଖା ଯାଉଥିଲା, ଆଉ ଏହିକ୍ଷଣି କେମିତି ଦେଖାଯାଉଛି । ଅନ୍ଧାର ଓ ଆଲୁଅର ପ୍ରଭେଦ । ତେବେ ସେ ସେହି ପ୍ରଫୁଲ୍ଲ ବଦନରେ ଗୋଟିଏ ତ୍ରୁଟି ଦେଖିପାରିଲେ ଓ ତାକୁହିଁ ନେଇ ଦି'ପଦ ଥଟ୍ଟା କଲେ । ଶାନ୍ତଦେବୀଙ୍କର ଗୋଟିଏ ଦାନ୍ତ ପଡ଼ିଯାଇଛି । ଅକାଳ ବାର୍ଦ୍ଧକ୍ୟ ? ପିତାମହୀ ହେବାର ପୂର୍ବ ଲକ୍ଷଣ ? ଯାହା

ହେଉ ସେଥିରେ ତାଙ୍କ ସମ୍ପଦ କମି ଯାଉନାହିଁ, ବରଂ ମନେ ହେଉଛି ଯେ ଭବିଷ୍ୟତକୁ ଡାକ ଆଣି ଆଗଠୁଁ ଉଜ୍ଜ୍ୱଳ ଉଠୁଛି ।

ବୁଝିବାକୁ ବାକି ରହିଲା ନାହିଁ ଯେ ସୁଧାର ସବୁ ଦୁଃଖ ଦୁର୍ଦ୍ଦଶା ଦୂର ହୋଇ ଯାଇଛି ଏବଂ ଶାନ୍ତ ଦ୍ୱାରା ତାହା ସମ୍ଭବ ହୋଇଛି । କିନ୍ତୁ ଶାନ୍ତଦେବୀ କିଛିଟା ରହସ୍ୟର ସୂଚନା ଦେଇ କହିଲେ,—"ତୁମେ ଅଫିସରୁ ଫେରିଆସ, ମୁଁ ତୁମକୁ ସବୁ କଥା କହିବି ।"

...ତେଣୁ ଶୀତଳ ସନ୍ଧ୍ୟାରେ ବାରପଟେ ଦୁଇଟି ବେତ ଚଉକିରେ ବସିଲା ପରେ, ଧୀରେ ସୁସ୍ପଷ୍ଟ କଥାଟା ପଡ଼ିଲା । ଶାନ୍ତଦେବୀ ଆରମ୍ଭ କଲେ—

"ତୁମ ଝିଅଟି ଅସଲ ନାକ କାନ୍ଦୁରୀ ।"

"ଠିକ୍ ତା' ମାଆ ପରି ।"

"ହଁ, କାହିଁକି କହିବ ନାହିଁ ? ମାଆ ଯଦି କାନ୍ଦୁରୀ ହୋଇଥାନ୍ତା ତାହାହେଲେ ଏତେବେଳକୁ—"

"ତା' ଲୁହରେ ଲଙ୍କା ନଗରୀ ଛାରଖାର ହୋଇ ଯାଆନ୍ତାଣି ।"

ଦୁହେଁ ହସି ଉଠିଲେ । ସେଇଠୁ ଶାନ୍ତଦେବୀ ଗମ୍ଭୀରତା ପୂର୍ବକ କହିଲେ, "ଛାଡ଼ ସେ ବାଜେ କଥା । ମୁଁ ଯାହା କହୁଛି ଶୁଣ । ... ସୁଧା ପ୍ରକୃତରେ ଭାରି ଦବି ଯାଇଥିଲା । ମୁଁ ଯାଇ କରି ଖୁବ୍ ଭଲ କରିଛି ।"

ସେ କହି ଚାଲିଲେ, "ତା' ଦେହ ଭଲ ଅଛି । ଖାଉଛି ପିଉଛି, ସିନେମା ଦେଖୁଛି, ବଜାରକୁ ଯାଉଛି, ମାଷ୍ଟର ରଖି ହିନ୍ଦୀ ଶିଖୁଛି,—କେଉଁଥିରେ ହେଳା ନାହିଁ । ହେଲେ ତା' ମନଟି ମରିଯାଇଥିଲା । ମୋତେ ଦେଖିଲା ମାତ୍ରକେ କୁଣ୍ଢାଇ ପକାଇ କାନ୍ଦି କାନ୍ଦି ହୋଇ କହିଲା,—ମାଆ ମୁଁ ଘରକୁ ଯିବି । ମୁଁ ଏଠି ବଞ୍ଚି ପାରିବି ନାହିଁ ।"

ସୁରବାବୁ ବିଚଳିତ ହେଲେ ନାହିଁ । ବାହା ହେବାର କେତେବର୍ଷ ଯାଏଁ ଝିଅମାନେ ଏମିତି କହିଥାନ୍ତି । ବାପ ମାଆଙ୍କର ସେଥିରେ ଗୁରୁତ୍ୱ ଦେବା ଉଚିତ ନୁହେଁ । ଯାହାହେଉ ସେ ମନୋଯୋଗ ସହ ଶୁଣିଲେ ।

"କେତେଦିନ ପରେ ଅଳ୍ପ ଅଳ୍ପ କରି ମୁଁ ପୂରା ଘଟଣା ଜାଣିବାକୁ ପାଇଲି । ବୁଝିଲି ଯେ ସୁଧାର ସନ୍ଦେହ ହୋଇଛି ।"

"ସନ୍ଦେହ ?"

"ହିଁ । ତା' ମନରେ ଧାରଣା ହେଲ ଯେ ପ୍ରଭାତ— । (ଶାନ୍ତିଦେବୀ ସ୍ୱର ବଦଳାଇଲେ ।) କଥାଟା ପ୍ରକୃତରେ କିଛି ନୁହେଁ ସେଇଲାଗି ତୁମକୁ କହିବ ନାହିଁ ବୋଲି ଭାବୁଥିଲି । ···ତାଙ୍କ ଘର ପାଖରେ ଜଣେ ଇଂଜିନିୟର୍ ଅଛି । ବେଶ୍ ମେଳାପି ଭଦ୍ରଲୋକ । ତା'ର ଗୋଟିଏ ଭଉଣୀ; ଏମ୍. ଏ. ପାସ କରିଛି. ଏଇକ୍ଷଣି ଭାଇ ପାଖରେ ରହି କେଉଁଠି କଣ ଟ୍ରେନିଂ ନେଉଛି । ସେ ସ୍ୱାଙ୍କ ଘରକୁ ବହୁତ ଯିବା ଆସିବା କରେ । ଅକାଳେ ସକାଳେ ପହଞ୍ଚି ଯାଇ ଖାଇବାକୁ ମାଗେ, ରନ୍ଧାରେ ସାହାଯ୍ୟ କରେ, ରେଡିଓ ସାଙ୍ଗରେ ଗୀତ ବୋଲେ, ଇତ୍ୟାଦି । ଝିଅଟି ଭଲ, ଗବ ମୋଟେ ନାହିଁ । ହେଲେ ସେ ସେ ଟିକିଏ ଫାଜିଲ୍ ଆଉ ଫୁଲେଇ, ଆମ ସୁଧା ପରି ନୁହେଁ । ତା' ଛଡ଼ା ସେ ବେଶି ପାଠ ପଢ଼ିଛି କିନା, ସେଇଲାଗି ପ୍ରଭାତ ତାକୁ ବହୁତ କଥା ପଚାରେ, ତା' ସାଙ୍ଗରେ ଘଣ୍ଟା ଘଣ୍ଟା ଧରି ଗପ କରେ । ଏବେ କଣ ହେଲ ନା— ।"

ସୁରବାବୁ ଚୁପ୍ ହୋଇ ରହିଥିଲେ, କିନ୍ତୁ ରହି ପାରୁ ନ ଥିଲେ । ପ୍ରତି ମୁହୂର୍ତ୍ତରେ ତାଙ୍କର ଇଚ୍ଛା ହେଉଥିଲ ଯେ ସେ ଚଉକିରୁ ଉଠି ଛିଡ଼ା ହେବେ ଓ ଶାନ୍ତିଦେବୀଙ୍କୁ ଦି ପଦ ଖାଣ୍ଟି କଥା କହିବେ । କହିବେ ଯେ ସେ ସବୁ ଜାଣନ୍ତି, ସେ ଝିଅ ଗୋଟିଏ ରାକ୍ଷସୀ, ତା' ପରି ଝିଅ ଅନେକ ଅଛନ୍ତି । ପ୍ରଭାତ ତା ଫାନ୍ଦରେ ପଡ଼ିଯାଇଛି । ବୁଝୁନାହିଁ ଯେ ପ୍ରେମ ଭିନ୍ନ ଉପାଦାନରେ ଗଢ଼ା, ପ୍ରେମ ଏକ ମହାନ୍ ବସ୍ତୁ, ପ୍ରେମ······

କିନ୍ତୁ ଶାନ୍ତି ଗପ କହିଲ ପରି କହୁଚି । ତୃତୀୟ ବ୍ୟକ୍ତି ପରି । କେଉଁ ଦମ୍ପତି ଏବଂ କେଉଁ ଫାଜିଲ୍ ଝିଅ ବିଷୟରେ ମନୋରଞ୍ଜକ ଗପ । ହୋଇପାରେ ଯେ କନିଲ ତୁଟି ଯାଇଛି । ତୁଟିଛି ନା ନାହିଁ ? ଶାନ୍ତି ଏ ସବୁ ବିଷୟରେ କଅଣ ଜାଣେ ?

ସେ ଆଗରୁ ଶୁଣିଲେ, ଶାନ୍ତି କହୁଛି, "···ସୁଧା କୁଆଡ଼େ ଦି'ତିନ ଥର ଖାଇବାକୁ ଡାକିଲ, କିନ୍ତୁ ପ୍ରଭାତ ଶୁଣିଲ ନାହିଁ । ଶେଷକୁ ସେ ରାଗି କରି ଶୋଇବାକୁ ଗଲ । ଟିକିଏ ନିଦ ଲାଗି ଯାଇଛି, ଏହି ସମୟରେ ସେ ଶୁଣିଲ ଯେ ଦାଣ୍ଡଘରୁ ହସ ଶୁଭୁଛି । ଦୁଆର ମୁହଁକୁ ଯାଇ ଦେଖେ ଯେ ସେମାନେ ହସୁଚନ୍ତି । ଆଉ ତେବେ······"

ଏଥର ସୁରବାବୁ ଆଉ ସମ୍ଭାଳି ପାରିଲେ ନାହିଁ । କଣ୍ଠରେ ରୁକ୍ଷତା ଆଣି କହିଲେ, "ସେ ଗପରୁ କଣ ମିଳିବ ? ତୁମେ କଅଣ କଲ ମୋତେ କୁହ । ଯଦି ଦରକାର ହୁଏ ମୁଁ ନିଜେ ଯିବି ସେଠିକି ।"

ଶାନ୍ତିଦେବୀ ହସି ଉଠିଲେ । ତାଙ୍କର ସେହି ଭଙ୍ଗା ଦାନ୍ତର ହସ ଭଲ ଦିଶିଲ ନାହିଁ ।

ସେ କହିଲେ, "ମୁଁ କିଛି କଲି ନାହିଁ । ତୁମର ଯିବା ଦରକାର ନାହିଁ ।"

ତା' ପରେ ସେ ସାନ୍ତ୍ୱନା ଦେଲା ପରି କହିଲେ, "ସୁଧା ଭଲ ଅଛି । ସେତିକି ଜାଣିଲେ କଣ ଯଥେଷ୍ଟ ନୁହେଁ ? ମୁଁ ନିଜକୁ ବାହାବା କରୁଛି ଯେ ମୁଁ ଗଲାରୁ ସବୁ ଠିକ୍ ହୋଇଗଲା । ହେଲେ ମୁଁ କଅଣ କରିଛି ? ଟିକିଏ ଲୁହ ପୋଛି ଦେଇଛି । ଧ' ପଦ ଲେକ୍‌ଚର୍ ଦେଇଛି ଯେ ମଣିଷ ଜୀବନରେ ଏମିତି ଅନେକ ଭୁଲ୍ ହୁଏ, ପୁରୁଷ ଭ୍ରମର ଜାତି ସମସ୍ତେ ତା' ବାପା ପରି ଦେବତା ନୁହନ୍ତି—(ଆଦର ବୋଲା ସ୍ମିତ ହାସ) ଟିକିଏ କଥାକୁ ଏତେ ବଡ଼ କରି ଧରିବା ଉଚିତ ନୁହେଁ, ଇତ୍ୟାଦି ଇତ୍ୟାଦି । କିନ୍ତୁ ସୁଧା ନିଜଗୁଣରେ ପୁଣି ହସି ପାରିଛି । ସେ ଆମ ଝିଅ ।"

ଶାନ୍ତିଦେବୀ ତାଙ୍କ ଚଉକି ଟାଣି ଆଣି ପାଖେଇ ଆସିଲେ ଓ ଗଭୀର ସମ୍ବେଦନା ସହ କହିଲେ, "ବ୍ୟସ୍ତ ହୁଅ ନାହିଁ । ସବୁ ସୁଧୁରି ଯାଇଛି ।"

ସେ ଭାବିଲେ,—ମୁଁ ଏତେ କଥା କହିଗଲି । ଆଉ କଣ କହିବି ? ଏ ନିହାତି ସିଧା ମଣିଷ, ଯାଙ୍କ ମୁଣ୍ଡରେ ପଶିବ ନାହିଁ । ତା' ଛଡ଼ା ଆଉ କଣ କହିବାର ଅଛି ? ସେଇ ହିନ୍ଦୀ ମାଷ୍ଟରର ପୁଅ, ସୁଧାଠାରୁ ବର୍ଷେ ବଡ଼ ହେବ କି ନାହିଁ । ସେ ଯଦି ସୁଧାକୁ 'ଭାବୀ' ବୋଲି ଡାକିଲା, ସୁଧାର ହାତ ଦେଖି କହିଲା ଯେ ତା' ଭାଗ୍ୟ ଦପ୍ ଦପ୍ ହୋଇ ଜଳୁଛି ଓ ସେ ମିଠା ଭଲ ପାଏ ବୋଲି ସୁଧା ଯଦି ଧନଯାକ ଲଗି ବରଫି ତିଆରି କଲା ସେଥିରେ କ୍ଷତି କଅଣ ଅଛି ? ପିଲାଟି ଭଲ, ଭାରି ଲାଜକୁଳା । ତା ସାଙ୍ଗରେ ଏବେ ଜଣାଶୁଣା ହେଲା । ସେହିଦିନଠୁଁ କଣ ସୁଧା ଖୁସି ଅଛି, ସେ ପାଠେଇ ଝିଅ ସାଙ୍ଗରେ ବାଦ କରୁନାହିଁ । କିଏ କହିବ ? ··· ଯାହାହେଉ ସୁଧା ବାଟକୁ ଆସିଛି । ସୁଧା ବାଟ ହୁଡ଼ିବ ନାହିଁ, ସେ ଆମର ଝିଅ ।

ସୁରବାବୁ ମୁଗ୍‌ଧ ହୋଇ ସ୍ତ୍ରୀଙ୍କୁ ଚାହିଁଥିଲେ ।

ତାଙ୍କର ନିଜର ପ୍ରତିଜ୍ଞା ମନେ ପଡ଼ିଲା ଏବଂ ସେ ଭାବିଲେ,—କି ନିର୍ବୋଧତା ! କି ଆସ୍ପର୍ଦ୍ଧା ! ଆମେ ଯେଉଁ ସ୍ୱର୍ଗରେ ଅଛୁ, ତା'ର ମିଆଦ ପୂରିବ ନାହିଁ ·· ଅନ୍ତତଃ ମରିବା ଯାଏଁ । କେଉଁ ଯୁଥିକା, ବୀଥିକା, ସାପ, ବେଙ୍ଗ ଚୂଡ଼ୁନ୍ଦ୍ରା ଆମର କଣ କରିପାରିବେ ?



# ସୁଖର ସଂସାର

ମୀଥକାର କହିଲେ ଯେ ଅମୁକ କାମ କରିବ କି ନାହିଁ ବୋଲି ମନରେ ସନ୍ଦେହ ଆସିଲେ, ସେଇ ମନକୁ ପଚ୍ଚର । ପ୍ରମାଣମନ୍ତଃ କରଣ ପ୍ରବୃତ୍ତୟଃ । ଅର୍ଥାତ୍ ଯାହା 'ଆତ୍ମା ଡାକୁଛି' ସେଇଆ କର, ସେଥିରେ ଯୁକ୍ତି ଥାଉ ନ ଥାଉ । ପ୍ରକୃତରେ ଯେଉଁ ପରିସ୍ଥିତିରେ ଏଣୁ ମାରିଲେ ଗୋହତ୍ୟା ତେଣୁ ମାରିଲେ ବ୍ରହ୍ମହତ୍ୟା, ସେଥିରେ ମନଗହ୍ୱରର ଅଦୃଶ୍ୟ ଅଭେଦ୍ୟ ଅନ୍ଧାରିଆ ଦେବତାର ଶରଣ ପଶିବା ଛଡ଼ା ଅନ୍ୟ ଗତି ନାହିଁ । କିନ୍ତୁ ବୁଦ୍ଧିବାଦୀ ଆଧୁନିକ ମଣିଷ କେଣି ସହଜେ ମାନିଯିବ ଯେ ତା'ର ବୁଦ୍ଧି ଭ୍ରଷ୍ଟ ହୋଇଗଲାଣି, ଆଲୁଅ ଲିଭିଗଲାଣି, ଏଣିକି ଶରଣ ନ ହେଲେ ମରଣ ? ନା, ମୋ ଗପର ସୁରବାବୁ କହିଲେ ଯେ ସେତେଦୂର ଯିବା ପୂର୍ବରୁ ଆଉ ଗୋଟିଏ ଉପାୟ ଅଛି । ଯାହା କରିବ-ନ କରିବ ବୋଲି ଡରୁଛ, ତା'କୁ ପୂର୍ବରୁ ଗଢ଼ା ହୋଇଥିବା ଭିଡ଼ା ହୋଇଥିବା କେତୋଟି ମୌଳିକ ଫ୍ରେମ୍ ଭିତରେ ପୂରେଇ ଦିଅ, ବଳିପଡ଼ିଲେ କାଟିଦିଅ, ନିଅଣ୍ଟ ହେଲେ ଯୋଡ଼ିଦିଅ; ମୋଟେ ଖାପ୍ ନ ଖାଇଲେ ଫିଙ୍ଗିଦିଅ । ବୋଧହୁଏ ଜୀବନରେ କୌଣସି ସମସ୍ୟା ନାହିଁ, ଯାହା ପାଇଁ ଉପଯୁକ୍ତ ଫ୍ରେମ୍ ଗଢ଼ା ହୋଇ ନାହିଁ । ଖାଲି ତା'କୁ ଖୋଜି ବାହାର କଲେ ହେଲା । ଏତିକି ବୁଦ୍ଧି କଣ ତୁମର ନାହିଁ ?

ସୁରବାବୁ କହିଲେ ଫ୍ରେମ୍ । ଅଉ କିଏ କହିବ କଷଟି ପଥର । ଅନ୍ୟ ଅର୍ଥରେ ମୂଲ୍ୟବୋଧର ଶେଷ କଥା । ଯେ' ବି ଯଦି କାମ ନ ଦେଲା ତମକୁ ତାହାହେଲେ ଯାଅ କେଉଁ ଦୈତ୍ୟ ଦେବତାର ଶରଣ ପଶିବ ।

ବନ୍ଧୁ ବୃନ୍ଦ, ସୁରବାବୁ । ଆଜି ମୋ ଗପଗୁଡ଼ିକର ବିଭିନ୍ନ ଚରିତ୍ରମାନଙ୍କୁ ନୂଆ କରି ଦେଖିଲା ପରେ ମୁଁ କାହାକୁ କେତେ ଭାବରେ ଥଟ୍ଟା କରିଛି, ଛିଗୁଲେଇଛି, ଦୟା ଦେଖେଇଛି, ମୋଟା-ମୋଟି ଜଣେଇ ଦେଇଛି ଯେ ସେକାଳ ପଖାଳ ଗଲାଣି, ଅଥବା ମୋର ନାବାଳକ କଟି ଗଲାଣି । କିନ୍ତୁ ସୁରବାବୁ, ତୁମେ ଠିକ୍ ଯେମିତି ଅଛ, ଗୁରୁପଣରେ ଝଟକୁଛ । ଅଧିକନ୍ତୁ ମୋର ମନେ ହେଉଛି ଯେ ତୁମେ କେବଳ ମୋର ନୁହେଁ, ପ୍ରତ୍ୟେକ ବୁଦ୍ଧିବାଦୀର ଗୁରୁ ହୋଇ ରହିଛ ଏବଂ ରହିବା ଉଚିତ ।

ବନ୍ଧୁ ବୃନ୍ଦ ସୁରବାବୁ ! ସବୁ ଫ୍ରେମ୍‌ର ବଡ଼ପାପ, ପରିପୂରକ ହେଉଛି ଏଇ ସାମାନ୍ୟକଥନ : ବଞ୍ଚିବାକୁ ହେବ । ତା'ପଛକୁ ଆଉ ଯେତେକ ଗ୍ରେଟବଡ଼ ଫ୍ରେମ୍, ଜୀବନର ବିଭିନ୍ନ ଅବସ୍ଥା ପାଇଁ ଝଞ୍ଜା ହୋଇଛି । ଯାହାକୁ ଯେମିତି । ଗୃହସ୍ଥ ଜୀବନ ପାଇଁ —ପେଟ ପୋଷିବାକୁ ହେବ । ବିବାହିତ ଜୀବନ ପାଇଁ—ସ୍ତ୍ରୀ (ତଥା ସ୍ୱାମୀ) ସବୁଦିନର ସାଥୀ । ସାମାଜିକ ଜୀବନପାଇଁ—ସମସ୍ତେ ବନ୍ଧୁ, କେହି ନିଜର ନୁହଁନ୍ତି । ଆ-ହା-ହା ! କି ଅନବଦ୍ୟ ହେଲେ ସୁଲଭ ଦର୍ଶନ । ତୁମର ସେଇ ସୂତ୍ରଗୁଡ଼ିକ ଦୋହରାଇ-ବାରେ ଆଦୌ ଲଜ୍ଜା ନାହିଁ ମୋର । ବରଂ ଆଜି ଗୋଟିଏ ଦୁଇଟି ଯୋଡ଼ି ଦେବାକୁ ଇଚ୍ଛା ହେଉଛି ଯଥା : ବ୍ୟବସାୟୀ ଜୀବନ ପାଇଁ—ଲାଭ କରିବାକୁ ହେବ । ଲେଖକ ଜୀବନ ପାଇଁ—ବକ୍ତବ୍ୟ ବିକିବାକୁ ହେବ । ଇତ୍ୟାଦି ।

ଏଇ ଫ୍ରେମ୍‌ମାନଙ୍କ ସାଙ୍ଗରେ ଖାପ୍ ଖୁଆଇବାକୁ ହେଲେ ସାଲିସ୍ ଅନିବାର୍ଯ୍ୟ । କିନ୍ତୁ ତା'କୁ ଶଠତା ବୋଲି କହିବ କାହିଁକି ? ଏଠିକି କିଏ ଜଣା ନାହିଁ ଯେ ଅସଲ ମାଛ ଧରିବାକୁ ହେଲେ ଏକାଧିକ ଗ୍ରେଟମାଛର ଥୋପ ଗୁଞ୍ଜିବାକୁ ପଡ଼େ ? ହୁଏତ କେତେକ ଗ୍ରେଟ ମାଛ ଚିତ୍କାର କରିପାରନ୍ତି, ଯେ ମୋତେ ମାରି ନାହିଁ, ମୋ ନାଆଁ 'ହତ୍ୟା', 'ଚିନ୍ତା', 'ଆତ୍ମସମ୍ମାନ', ଇତ୍ୟାଦି । କିନ୍ତୁ ତାଙ୍କ କଥା ଶୁଣିବ କାହିଁକି, ଯଦି ଉଦ୍ଦେଶ୍ୟ ଅସଲ ମାଛ, ବଡ଼ ମାଛ, ଅର୍ଥାତ୍ ମୂଳ ଉଦ୍ଦେଶ୍ୟ ହାସଲ ହୋଇ ପାରିଲା ? ମନେ ରଖ ଯେ ଯେତେଟା ମୂଳ ଉଦ୍ଦେଶ୍ୟ ଅତୁଟ ରଖିପାରିବ, ସେତିକି ସୁଖ ଓ ସଫଳ ମିଳିଯିବ ତୁମକୁ ।

ଆଉ କିଛି ପଚାରିବାର ଅଛି ?

ଅଛି । ଯେ ମୋର ଇଚ୍ଛା ହେଉଛି ଏଇ ଯେତିକ ଫ୍ରେମ୍‌କୁ ଗୋଟି ଗୋଟି କରି ଭାଙ୍ଗି ଦେବି । କାରଣ ମୁଁ କେଉଁଥିରେ ହେଲେ ବାନ୍ଧ ହୋଇ ରହିବାକୁ ଚାହେଁ ନାହିଁ । ବିଶେଷତଃ, ତୁମର ଏଇ ମହାମହନୀୟ 'ବଞ୍ଚି ରହିବା'ର ଫ୍ରେମ୍ , ଯାହା ମୃତ୍ୟୁର ଶିକୁଳିରେ ବନ୍ଧା ହୋଇଛି । ମୁଁ ମୁକ୍ତ ହେବି, ମୁଁ ସ୍ୱାଧୀନ ହେବି । ଅସତ୍ୟରୁ ପଳେଇଯିବି ସତ୍ୟକୁ , ମୃତ୍ୟୁରୁ ଅମୃତକୁ—କିଏ ମୋତେ ମନା କରିବ ? ମୁଁ ମଣିଷ ପିଲା ମୋଠାରୁ ଭଗବାନ୍ ହେବାର ଅଧିକାର ଛଡ଼େଇ ନେବ କିଏ ?

କିନ୍ତୁ ତୁମେ କଣ ସତରେ କହୁଛ ଏ କଥା, ନା ବିବେକା-ନନ୍ଦ ? ନା କେଉଁ ଅବାଧ ଅପ୍ରତିହତ ଆଧ୍ୟାତ୍ମିକତାର ଭୂତ ? ହଉ, ସେ ପାଣି କରୁଥାଉ ବସି । ତେବେ ଯେତେଦିନ ଯାଏଁ ତା' ସାଙ୍ଗରେ ଆଳାପ କରିବାକୁ ବଳ ପାଉ ନାହିଁ, ସେତେଦିନ ଆଖି କଆଖିରେ ଧନ୍ଦାଳ ନ ହୋଇ ଅମ ସୁରବାବୁଙ୍କୁ ଅନୁସରଣ କରିବା ଶ୍ରେୟସ୍କର ନୁହେଁ କି ?

କଟକ

୨ ଡିସେମ୍ବର ୧୯୮୬

# ଶହେ ପୁଅ

ଜୟ ଯୁବ ଶକ୍ତିର ଜୟ !

ଜୟ ଜନତାର ଜୟ !

ଇନ୍ କିଲାବ୍ ଜିନ୍ଦାବାଦ୍ !

ଦୂର ଦୂର, ମୁଁ ଟିକିଏ ନିଃଶ୍ୱାସ ମାରେ । ଏତେ ନିକଟରେ ମୁଁ ତୁମକୁ ଆଗରୁ କେବେ ଦେଖି ନ ଥିଲି କିନା, ସେଥିପାଇଁ । ଅବଶ୍ୟ ଶୋଭାଯାତ୍ରାରେ ଦେଖିଛି, କନ୍‌ଭୋକେସନ୍ ହଲରେ ଦେଖିଛି, ଘେରାଉରେ ଦେଖିଛି । କିନ୍ତୁ ଏମିତି ପାଖାପାଖି ଗୋଟିଏ ବେଞ୍ଚ୍‌ରେ ବସି, ତୁମ ମଇଳା କାମିଜର ବାସ୍ନା ଶୁଙ୍ଘି, ତୁମର ଛୁଞ୍ଚା ଜ୍ୟାମିତି ବାକ୍ସରେ ମାଛି ସୁରୁଡ଼େଇ, ତୁମର ପ୍ରଚଣ୍ଡ ଶକ୍ତିକୁ ଛୁଇଁ ନ ଥିଲି । ଭାବିଲେ ଏବେ ମଧ୍ୟ ହୃଦପିଣ୍ଡର ମଝିରେ ସୁଡ଼ଙ୍ଗ କିଏ ଲଗାଉଛି । ଆରେ, ମୁଁ କଅଣ ଏଇ ଅନ୍ତରଙ୍ଗତାର ବିଜୁଳିରେ ଜଳିଯିବି ନା କଅଣ ? ମୋର ନିଜତ୍ୱ, ମୋର ପ୍ରୌଢ଼ତ୍ୱ, ମୋର ବେଦଦତ୍ତ ଦୂରତ୍ୱକୁ ଭୁଲିଯିବି ?

ତତ୍ ସହ ଗାନ୍ଧାରୀଙ୍କ ଦୃଷ୍ଟି ଧାନ୍ଦା କଡ଼ମଡ଼ କରିବାକୁ ଇଚ୍ଛା ହେଉଛି । କାରଣ ମୁଁ ଜାଣିଛି ଯେ ତୁମେମାନେ ମରିବ । ଅକାଳରେ ମରିବ । ନହେଲେ ମହାଭାରତ ସଫଳ ହେବ କେମିତି ?

ଏଇ କେତେଦିନ ତଳର କଥା ।

ମୁଁ ଛୁଟିରେ ଘରୁ ଫେରିଥିଲି କଲିକତାକୁ । କଲିକତାରେ ମୁଁ ଚାକିରି କରେ । ସେଇଠି ମୋର ଯାନ, ବାହାନ, ଅସ୍ଥାନ ଓ ସମ୍ମାନ । ତେଣୁ କୌଣସିମତେ ବାପାଙ୍କ ପାଖରେ କିଛିଦିନ କଟେଇ ଆପଣା ଜାଗାକୁ ଫେରି ଆସିବା ପାଇଁ ତର ସହୁ ନ ଥିଲା ।

ସିଧା ଟ୍ରେନ୍ । ପାହାନ୍ତିଆ ବେଳକୁ କଲିକତାରେ ପହଞ୍ଚିବି ଏଇ ଭରସାରେ ମୁଁ ଥାର୍ଡ୍ କ୍ଲାସ ସ୍ଲିପର୍‌ର ଟାଣୁଆ ବେଞ୍ଚକୁ ସହି ନେଇଥିଲି । ସହଯାତ୍ରୀମାନଙ୍କୁ

ପ୍ରଚାରଯନ୍ତ୍ରରେ ଜଣାଇ ସାରିଛୁ ଯେ ମୁଁ ଅମୁକ, ଛୁଟିରେ ନ ଥିଲେ ମୁଁ ଏଯାବର କଣ୍ଟିନେଣ୍ଟ ଶ୍ରେଣୀରେ ଯାଉଥାଆନ୍ତି, ଇତ୍ୟାଦି । ବର୍ତ୍ତମାନ ସେମାନେ ନିର୍ଶ୍ଚିନ୍ତରେ ଶୋଇଗଲେଣି, କିନ୍ତୁ ମୋ ଆଖିକୁ ନିଦ ଆସୁ ନାହିଁ । ଅଲୁଅ ଜଳେଇ ଘଡ଼ି ଦେଖିବାକୁ ଯାଉଛି ଏହି ସମୟରେ ଗାଡ଼ି କ୍ରମଶଃ ଗୋଟିଏ ବଡ଼ ଷ୍ଟେସନର ଝଲମଲ ଭିତରକୁ ଗଡ଼ି ଆସିଲା । ଖଡ଼ଗପୁର ! ଗୁଡ୍ । ତାହାହେଲେ ଆଉ ମାତ୍ର ଦୁଇଘଣ୍ଟା । ମୁଁ ଉଠି ପଡ଼ି ଗୋଟାଏ ସ୍ୱସ୍ତିର ସିଗାରେଟ୍ ଟାଣିଲି ।

ଲାଉଡ୍‌ସ୍ପିକର ମୁଖସ୍ଥ ପାଠ କହି ଚାଲିଥାଏ,—ଅମୁକ ଟ୍ରେନ୍ ଅମୁକ ପ୍ଲାଟ୍‌ଫର୍ମରେ, ଅମୁକ ଟାଇମରେ···ଥରେ ବଙ୍ଗଳା, ଥରେ ହିନ୍ଦୀ, ଥରେ ଇଂରେଜୀ । ହଠାତ୍ ମୋର ମନେ ହେଲା ଯେ ସେ କିଛି ନୂଆ କଥା କହୁଛି, ତା'ର ନିଦୁଆ ଧାଡ଼ି-ଗୁଡ଼ିକ ମଝିରେ "କିନ୍ତୁ" ବୋଲି କଣ ଯୋଡ଼ି ଦେଉଛି । କାନ ପାରି ଶୁଣିଲି ବେଳକୁ କହୁଛି—ସେଭେନ୍ ଡାଉନ ଗୃର୍ ବକ୍‌କେ ପହଁଚ୍‌ନେଗି ମିନଟ୍ ପର୍ ଛୁଟେଗୀ, କିନ୍ତୁ ପାଁଶକୁଡ଼ା ମେଁ ରୁକ୍ ଜା'ନେକା ସମ୍ଭାବନା ହୈ ।

ପାଶକୁଡ଼ା ମେଁ ରୁକ୍ ଜାନେକା ସମ୍ଭାବନା ହୈ ? ପାଁଶକୁଡ଼ା କେଉଁଠି ? ସମ୍ଭାବନାର ମତଲବ କଅଣ ?

ମୋର ପ୍ରଥମ ପ୍ରତିକ୍ରିୟା ହେଲା ଯେ ଶୀଘ୍ର ଦେଢ଼ି ନ ପାରୁଣୁ ପ୍ରସ୍ତୁତ ହୋଇ ଯିବାକୁ ପଡ଼ିବ । ହୁଏତ ଗାର୍ଡ଼ିଙ୍କୁ ଷ୍ଟେସନମାଷ୍ଟରଙ୍କୁ କିମ୍ବା ଆଉ କାହାକୁ ନିଜର ପରିଚୟ ଦେବାକୁ ହେବ ଯେ ମୁଁ ଜଣେ ଉଚ୍ଚ ପଦାଧିକାରୀ । ବର୍ତ୍ତମାନ ଛୁଟିରେ ଅଛି, ଛୁଟି ପୂରିବାକୁ ସାତ ଦିନ ବାକୀ ଅଛି । ଯାହାହେଉ ସାମାନ୍ୟ ବ୍ୟତିକ୍ରମ । ଉତ୍ତେଜନା, —ମନ୍ଦ କଅଣ ?

ପାଁଶକୁଡ଼ା ଆସିଲା । ଗ୍ରେଟିଆ ଷ୍ଟେସନଟିଏ । ଫିକିଆସୁଥିବା ଦିନର ଆଲୁଅରେ ସେ ତା'ର ଚେହେରାଟିକୁ ଜମେଇ କରି ବସିଥାଏ । ହଠାତ୍ କି ବିଖ୍ୟାତ ସେଭେନ୍ ଡାଉନ୍ ଏକ୍ସପ୍ରେସ୍ ଆଜି ଏଇଠି ରୋକିଯିବ, ଉକ୍ତ ମର୍ଯ୍ୟାଦାଲାଭ ତାକୁ ବଦଳେଇ ଯିବ ନାହିଁ । କେହି ତରତର ହେଉ ନାହାନ୍ତି । ଷ୍ଟେସନ୍ ବାବୁମାନେ ପ୍ଲାଟ୍‌ଫର୍ମକୁ ଉତୁରି ପଡ଼ିଛନ୍ତି, ଅଥଚ ଧାଁଧପଡ଼ କରୁନାହାନ୍ତି । ଖଲାସି ଦୁଇଜଣ ଶାଗୁଆ-ନାଲି ପତାକାମାନଙ୍କୁ ଗୁଡ଼େଇ ଗୁଡ଼େଇ ଧରି ଦଣ୍ଡାୟମାନ ହୋଇଛନ୍ତି । ମୋର ମନେ ହେଲା ଗୋଟିଏ ଉତ୍ସବ ପାଳନ କରା ହେଉଛି । ଯଥା ସମୟରେ ଉତ୍ସବର ସମାପନ ହେବ, ପାଁଶକୁଡ଼ା ବିଦାୟ ନେବ ।

ତାହାହିଁ ହେଲା । କିନ୍ତୁ ଗାଡ଼ି ଛାଡ଼ିବା ପୂର୍ବରୁ ଗୋଟାଏ ଟ୍ଟ' ବାବ ଟା'ର ଦାଗ ପଡ଼ିସିଆ ମାଟିଖୁରା ମୋ ହାତକୁ ବଢ଼େଇ ଦେଉଁ ଦେଉଁ ଦାନ୍ତ ଖିକିଡ଼ିଲା ।

କହିଲା, "ଏଇଠୁ ସିନା ଛାଡ଼ିଲା, କିନ୍ତୁ ତା' ପରେ ମେଚେଡ଼ା । ସେଇଠି ଟେମ୍ ।" ତା'ର ମଉଜିଆ ଭାବ ମୋତେ ଭଲ ଲାଗିଲା ନାହିଁ ।

ଏଥି ମଧ୍ୟରେ ମୋ'ର ସହଯାତ୍ରୀମାନେ ଉଠି ଗଲେଣି । ଲାଉଡ଼୍‌ସ୍ପିକର୍ ଯାହା କହିଲା ଓ ପାଁଶକୁଡ଼ାର ଚା' ବାଲା ଯାହା କହିଲା ମୁଁ ତାଙ୍କୁ ଠିକେ ଠିକେ ଜଣାଇ ଦେଲି । ଖଦଡ଼ ପିନ୍ଧା ଭଦ୍ରଲୋକ ଜଣକ ଅସ୍ପଷ୍ଟ ସ୍ୱରରେ ସରକାରକୁ ଗାଳି ଦେଲେ । ସ୍ଥୂଳ ବ୍ୟବସାୟୀ ଜଣକ କହିଲେ—ଧ୍ୟାତ୍ ତେରି । ଜନୈକ ଟ୍ରାଉଜର ପିନ୍ଧା ଟାକୁଆ ଗାଲ ଭଦ୍ରବ୍ୟକ୍ତି ମୋ' ଆଡ଼କୁ କଟମଟ କରି ଅନାଇଲେ ମୋତେ, ସତେ କି ମୁଁ ତାଙ୍କ ଦୁଃସ୍ୱପ୍ନରୁ ସମ୍ଭୂତ ।

ମେଚେଡ଼ାଠାରେ ଗାଡ଼ି ପହଞ୍ଚି ଗଲାଣି । ଅନେକ ଯାତ୍ରୀଙ୍କ ସହ ମୁଁ ମଧ୍ୟ ପ୍ଲାଟ୍‌ଫର୍ମକୁ ଓହ୍ଲାଇ ପଡ଼ିଲି । ନିକଟତମ ଜଣେ ଷ୍ଟେସନ୍ ବାବୁଙ୍କୁ ଆକ୍ରମଣ କରି କହିଲି, "ଏକ୍‌ସ୍‌କିଉଜ୍ ମି । ମୁଁ ହେଉଛି ଅମୁକ । ଏ ଗାଡ଼ି କାହିଁକି ବନ୍ଦ ରହିଛି ? କେତେବେଳକୁ ଛାଡ଼ିବ ?" ମୋ ସ୍ୱରରେ ଭର୍ତ୍ସନାର ଇଙ୍ଗିତ ଥିଲା ।

ଷ୍ଟେସନ୍ ବାବୁ ଦାମ୍ଭିକ ଭଦ୍ରତାରେ ଗ୍ରୀବା ଉତ୍ତୋଳନ କରି କହିଲେ,—

"ଉଲୁବେଡ଼ିଆରେ ଘେରାଉ ।"

"ମାନେ ?"

"ରେଲ୍ ଶ୍ରମିକମାନେ ଲାଇନ୍ ଉପରେ ଶୋଇଛନ୍ତି ।"

"ତାହାହେଲେ କ'ଣ ଗାଡ଼ି ଛାଡ଼ିବ ନାହିଁ ?"

"କିଛି କୁହା ଯାଇ ପାରିବ ନାହିଁ ।"

"ଅନ୍ତତଃ ସନ୍ଧ୍ୟା ବେଳକୁ ଛାଡ଼ିବ ତ ?"

"କିଛି କୁହା ଯାଇ ପାରିବ ନାହିଁ ।"

କିଛି କୁହାଯାଇ ପାରିବ ନାହିଁ ! ନିଷ୍ଫଳ କ୍ରୋଧରେ ମୋ'ର ସର୍ବାଙ୍ଗ ତାତି ଗଲା । ଭାବିଲି ଯଦି ଏହି ଲୋକଟାକୁ ପଚାରି ଯାଏ ଯେ ସେ ବଞ୍ଚିବାକୁ ଚାହେଁ କି ମରିବାକୁ ଚାହେଁ, ସେ ତା'ର ପଲମମୁହଁକୁ ଠିକ୍ ସେହିଭଳି ପରିମାଣରେ ଫାଡ଼ିଦେଇ କହିବ,—କିଛି କୁହାଯାଇ ପାରିବ ନାହିଁ ।

ମୁଁ ଫେରି ଆସିଲି । ମୋର ମନେ ହେଲା ଯେ ପାଁଶକୁଡ଼ା ଷ୍ଟେସନର ସେହି ଚା' ବାଲାର ଦାନ୍ତ ନିକୁଡ଼ା ଶ୍ରେୟସ୍କର ଥିଲା । ତା'ର ବେଖାତିରିଆ ଢଙ୍ଗରେ ଅନ୍ତତଃ ଏକ ଜାତୀୟ ଆନନ୍ଦ ଥିଲା । ନୌକରଶାହୀର ନିର୍ବିକାରପଣ ନ ଥିଲା ।

ଆପଣ କହି ପାରନ୍ତି ଯେ ମୁଁ ନିଜେ ବଡ଼ ଅଫିସର ହୋଇଥିବା ଯୋଗୁଁ ଷ୍ଟେଟ ଅଫିସର୍‌ର ବଡ଼ପଣକୁ ସହି ପାରିଲି ନାହିଁ । ଆପଣଙ୍କ ଧାରଣା ଭୁଲ୍ । ମୁଁ ସେମିତିକା ଲୋକ ନୁହେଁ । କିନ୍ତୁ ସେତିକବେଳକୁ ମୋ'ର ଅସହିଷ୍ଣୁତା ବଢ଼ି ଚାଲିଲା । ମୋ'ର ଅଙ୍ଗ ପ୍ରତ୍ୟଙ୍ଗରୁ ଯେଉଁ ନିଆଁ ଝାଳ ବହୁଥିଲା ତା'ର ଅଧିକାଂଶ ଏହିମାନଙ୍କ ଯୋଗୁଁ, ଏହିମାନଙ୍କ ଅବମୃଶ୍ୟତାର ମୁକାବିଲା କରିବା ପାଇଁ ନିଗିଡ଼ି ପଡ଼ୁଥିଲା । ସାତ ପାହାନ୍ତାରୁ ଧୋଇଧାଇ ହୋଇ ପୋଷାକ ପିନ୍ଧି ମୁଁ ଯଦି ଜଣେ ରେଳବାଇ କର୍ମଚାରୀଠାରୁ ଉତ୍ତର ନେଉଛି, ସେ କାହିଁକି ଭଲ ଏମିତି ଓଠ ଚିପି କଥା କହିବ ? ମୋର ସହଯାତ୍ରୀ ଖଦଡ଼ପିନ୍ଧା ନେତା ଜଣକେ କାହିଁକି କହିବେ ଯେ ଯେତେକ ସରକାରୀ ବଡ଼ ଅଫିସର ଅଛନ୍ତି ତାଙ୍କୁ ଗୁଳି ମାରି ଦେବା ଦରକାର ? ମୁଁ କଣ ବୋଲି ମୁଁ ତାଙ୍କୁ ନିଷ୍ଟପ୍ର ଜଣେଇ ଥିଲି,—ସେତିକ ଭୁଲିଗଲେଣି ? ପଟୁଧୋତି, ସୁନାଘଡ଼ି ପିନ୍ଧା ବ୍ୟବସାୟୀ ଜଣକ କାହିଁକି ଚାକୁ ଚାକୁ କରି କାଶ୍ମୀରୀ ଆପଲ ଖାଇବେ ଓ ମୋ ଆଡ଼କୁ ଗୋଟାଏ ଫିକା ଦେଇ କହିବେ,—ଖାଆନ୍ତୁ, ଖାଆନ୍ତୁ, ଭଲ ଜିନିଷ ? ଅର୍ଥାତ୍ ନାକ ଟେକିବେ ଯେ ମୁଁ ଷ୍ଟେସନ୍‌ରୁ ଦ'ଅଣିଆ ପୁରୀ ତରକାରୀ କିଣି କରି ଖାଇଛି ? ଆଉ ସେ ହାଡ଼ୁଆ ବ୍ୟକ୍ତି କାହିଁକି ମୋ ଆଡ଼କୁ ଏମିତି ମୁନିଆଁ ଚାହାଣୀ ଛାଡ଼ି ଦେଇ ପଚାରିବେ—ଗୃହମନ୍ତ୍ରୀଙ୍କୁ ଖବର ଦିଆ ହୋଇଛି ତ ? ଜେନେରାଲ ମ୍ୟାନେଜର ଆସିଲେଣି ନା ନାହିଁ ? ସତେ କି ସେ ମୋ'ର ପ୍ରଚଣ୍ଡ ଗଣଦେବତା, ମୋଠାରୁ କୈଫିୟତ୍ ମାଗୁଛି ! ପ୍ରକୃତରେ ସେହି ଷ୍ଟେସନବାବୁ ଠାରୁ ଆରମ୍ଭ କରି ମୋର ସହଯାତ୍ରୀ ସମେତ ନାନାଦି ଲୋକ ଯେପରି ଭାବରେ ମୋର ବ୍ୟକ୍ତିତ୍ୱକୁ ଖେଞ୍ଚୁଥିଲେ ଏପଟ ସେପଟ କରି ଓଲଟେଉଥିଲେ ସେଥିରୁ ମୁଁ ଛୁଟିପିଟି ହୋଇ ପଳେଇ ଯିବାକୁ ଚାହୁଁଥିଲି । ସେହି ଦୃଷ୍ଟିରୁ ମୁଁ ପ୍ରୀତିପୂର୍ବକ ଉପରୋକ୍ତ ରସିକ ଚା' ବାଲାକୁ ସ୍ମରଣ କରୁଥିଲି ।

ଏଣେ ମେରେଡ଼ା ମୁହଁ ମୋଡ଼ି ଦେଇ ବସିଛି ତ ବସିଛି । ବୁଝିନେଲିଣି ଯେ ଅତିଥିର ନିଜ ରକ୍ଷଣ ଅସମ୍ଭବ । ଘଣ୍ଟାକ ପରେ ଘଣ୍ଟାଏ ଛଅଘଣ୍ଟା ବିତିଗଲଣି । କେବେ ଲାଇନ୍ ଖୋଲିବ, ଟ୍ରେନ୍ ଆଗକୁ ଗୋଡ଼ ବଢ଼ାଇ ପାରିବ, ତା'ର ଠିକ୍ ନାହିଁ ! ଦଳ ଦଳ ଲୋକ ଷ୍ଟେସନ ବାହାରକୁ ଯାଉଛନ୍ତି, ଫେରୁଛନ୍ତି । କିଏ କହୁଛି ଗୁଳି ଚାଳନା ହୋଇଛି, ମିଲିଟାରୀ ଡକା ହୋଇଛି । କିଏ କହୁଛି ଫୋନ କଟିଗଲଣି, ଆଉ ଟିକିଏ ଗଲେ ଅଳିଆ ପାଣି ସବୁ ବନ୍ଦ ହୋଇଯିବ । ପକୋଡ଼ାବାଲା, ପୁରୀ ତରକାରୀବାଲା, କଦଳୀ ବାଲା ଏମାନଙ୍କର ଦାମ୍ ବଢ଼େଇ ବଢ଼େଇ ଥକି ଗଲେଣି, ଏବେ ପସରା ଦେଖାଇ ଚାଙ୍କୁ ନାହାନ୍ତି । ଷ୍ଟେସନବାବୁମାନେ କେଉଁ ଗୁହାରେ ପଶିଗଲେଣି ।

ଏହି ଅବସ୍ଥାରେ ମୁଁ କ'ଣ କରିବି, ଆଉ ଅଟେରେ ଶୋଇ ପଡ଼ିବି କି ନାହିଁ ବୋଲି ଭାବୁଛି, ହଠାତ୍ ମୋତେ ବୁଦ୍ଧି ଜୁଟିଲା । ହାଓଡ଼ା ଆଡ଼କୁ ଗାଡ଼ି ଯାଉ ନାହିଁ ସିନା, କୌଣସି ଗାଡ଼ି ପଛକୁ ଫେରିବ ନାହିଁ ?

ବୁଝିଲି ଯେ ମୋର ଅନୁମାନ ଭୁଲ୍ ନୁହେଁ । ଗୋଟାଏ କେଉଁ ଲୋକାଲ୍ ଟ୍ରେନ୍ ଆଗ ଷ୍ଟେସନକୁ ଫେରିବ, ହାଓଡ଼ା ଯାଇ ନ ପାରି ନିର୍ଗମ ସ୍ଥାନ ଖଡ଼ଗପୁରକୁ ଫେରି ଆସିବ । ଉତ୍ତମ ! ତାହାହେଲେ ମୁଁ ଖଡ଼ଗପୁର ଚାଲିଯିବି । ସେଠି ମୋ ଭଉଣୀ ଘରେ ରହି ଖାଇପିଇ ସୁସ୍ଥ ସତେଜ ହୋଇ କାର୍ଯ୍ୟପନ୍ଥା ସ୍ଥିର କରିବି । ସେଇଠି ରେଲ୍ ଅଧିକାରୀମାନଙ୍କୁ ଫୋନ୍ କରିବି, ସେମାନେ ମୋତେ ଚିହ୍ନିବେ । ଯଥା ସମୟରେ ବ୍ୟବସ୍ଥା କରିଯିବ ଓ ମୁଁ ନିର୍ବିଘ୍ନରେ—ଆଜି ହେଉ ବା କାଲି ହେଉ,—କଲିକତାରେ ଆସି ପହଞ୍ଚିବି ।

ତେଣୁ ଘନ ଦ୍ୱ'ଘଣ୍ଟାରେ ଗୋଟିଏ ବିପରୀତମୁଖୀ ଟ୍ରେନ୍ ଅଟକି ରହିବା ମାତ୍ରେ ହିଁ ମୁଁ ତାକୁ ସ୍ୱାଗତ କଲି । ସୁଟ୍‌କେଶ୍‌ଟି ଧରି ଲାଇନ୍ ପାରି ହୋଇ ପହିଲି ଡବା ଭିତରକୁ ପଶିଗଲି । ପଶିଗଲି ଓ ମୁକ୍ତିର ନିଃଶ୍ୱାସ ଛାଡ଼ିଲି ।

ତା'ପରେ ମୁଁ ଶୁଣିଲି ଗୋଟିଏ ବଳଶାଳୀ କୂଜନକାକଳିର ଶବ୍ଦ । କାକଳିର କଳେବର ମଧ୍ୟରେ କୂଜନର ଧାରେ ।

ଏବଂ ମୁଁ ଦେଖିଲି ସେମାନଙ୍କୁ । ଛଅ ସାତଜଣ ଯୁବକ । କାହାରି ବୟସ ସତରରୁ କମ୍ ହେବ ନାହିଁକି ପଚିଶରୁ ବେଶୀ ହେବ ନାହିଁ । ଛଅ ସାତଟି କଥାକୁହା ଓଠ, ଆଖି ଓ ହାତ !

"ଆସନ୍ତୁ ସାର୍, ଥଣ୍ଡା ପାଣି ପିଇବେ ?"

ମାନେ ? ଏମାନେ,—ଏଇ ଅର୍ବାଚୀନ ବତ୍ସମାନେ, ମୋ ପୁଅ ଭଳିଆ ହେବେ,—ଏମାନେ କ'ଣ ମୋତେ ଥଟ୍ଟା କରୁଛନ୍ତି ?

ମୁଁ ମୋର ପିତୃସୁଲଭ ଦୃଷ୍ଟି ନିକ୍ଷେପ କରି ଯୁବକମାନଙ୍କୁ ଚାହିଁଲି । କେହି ଝାଉଁଳିଗଲେ ନାହିଁ । କିନ୍ତୁ ମୁଁ ସେହି ପ୍ରମତ୍ତ ପ୍ରଦୀପ୍ତ ମୁହଁଗୁଡ଼ିକରେ ଉଦ୍ଦେଶ୍ୟର ଆଭାସ ପାଇଲି ନାହିଁ । ନିର୍ମଳ ଚାହାଣୀରେ ବଙ୍କତା ଶୂନ୍, ଅବଜ୍ଞାର ପ୍ରଶ୍ନ ଆସୁଛି କେଉଁଠୁ ? ବୁଝିଲି ଯେ ଏମାନେ ଦେଖିପାରୁଛନ୍ତି ମୁଁ କ୍ଳାନ୍ତ, ବିରକ୍ତ ଓ ଘର୍ମାକ୍ତ, ତେଣୁ ମୋର ପାଣି ପିଇବାକୁ ଚାହିଁବା ସ୍ୱାଭାବିକ । ଶୀଘ୍ର ଉତ୍ତର ଦେବାକୁ ପଡ଼ିବ, ନ ହେଲେ ପ୍ରଶ୍ନର ମିଆଦ ପୂରିଯିବ । ହେଇ ଦେଖ ଜଣେ ତାହମୁଟାଏ କାଢ଼ିଲାଣି । ଆଉ ଜଣେ ବନ୍ଧୁର କାନ୍ଧକୁ ହଲାଇ ହଲାଇ କ'ଣ କହିବାକୁ ବସିଛି । ଅପରେକ ଝରକାବାଟେ ମୁଣ୍ଡ ଗଳାଇ, କାଢ଼ି ଆଣି, ପୁଣି ଗଳାଇ ହୋଇ ବୋଲ୍ ପାଟି କରୁଛି ।

ଉତ୍ତର ନ ଦେଲେ ମୋରି କ୍ଷତି ହେବ । ତେଣୁ ମୁଁ ଅଧିକ ବିଳମ୍ବ ନ କରି କହିଲି, "ଥ୍ୟାଙ୍କ୍ ୟୁ । ଦୁଇ ଗିଲାସ ।"

ଜଣେ ଗୋଟାଏ ଶସ୍ତା ପ୍ଲାଷ୍ଟିକ ପାଣି ବୋତଲ ମୋ ଆଗରେ ରଖି ଦେଇ କହିଲା, "ପିଅନ୍ତୁ ।" ମୋର ପୂର୍ବତନ ସହଯାତ୍ରୀ ମୋ ଆଡ଼କୁ ଯେମିତି ଅମ୍ଳ ଗୋଟାଏ ଫିଙ୍ଗି ଦେଇଥିଲେ ସେହିପରି ବ୍ୟବହାର । ଶାଳୀନତା ନାସ୍ତି । କିନ୍ତୁ ମୁଁ କ୍ଷୁବ୍ଧ ହୋଇ ପାରିଲି ନାହିଁ । ନିଜକୁ ଚେତାଇ ଦେଲି ଯେ ପାଣିର ରଙ୍ଗ ନାହିଁ ।

ଖଡ଼ଗପୁର ଯିବା ପର୍ଯ୍ୟନ୍ତ,—ପ୍ରାୟ ଦେଢ଼ଘଣ୍ଟାର ରାସ୍ତା—ଏମାନଙ୍କ ସାଙ୍ଗରେ ବସି ରହିବାକୁ ପଡ଼ିବ । ଚୁପ୍ ହୋଇ ବସିବି ? ନା କଥାବାର୍ତ୍ତା କରିବି ? ପ୍ରଥମରୁ ଏମାନେ ମୋତେ ସାର୍ ବୋଲି ଡାକିଛନ୍ତି, ମୋର ପ୍ରବୀଣତାକୁ ସ୍ୱୀକାର କରିଛନ୍ତି । କିନ୍ତୁ ପ୍ରବୀଣତାର ସ୍ଥାନ କେଉଁଠି ତା'ର ହିସାବ କିଏ ଜାଣେ ନାହିଁ । ମୋତେ ଥଣ୍ଡା ପାଣି ପିଆଇ ସାରି ଏମାନେ ପୁଣି ତାଙ୍କ ଅବୋଧ କାକଳିରେ ମଜ୍ଜି ଗଲେଣି । ଠିକ୍ ଅଛି, ମୋତେ କୌଣସି ଅସୁବିଧାରେ ନ ପକେଇଲେ ହେଲା ।

ଏହି ସମୟରେ ଗାଡ଼ି ସିଟି ବଜାଇଲା ଓ ସଙ୍ଗେ ସଙ୍ଗେ ଜଣକ ମୁହଁରୁ ଏକ ତୀବ୍ର କୂଜନର ଶବ୍ଦ ନିର୍ଗତ ହେଲା । ଛିଃ, ମନେ ମନେ ଦଶବର୍ଷିଆ ପିଲା ହୋଇଛ ନା କଅଣ ? ଏହି ମର୍ମରେ ମୁଁ ଅଧିକତର ଗମ୍ଭୀର ହେଲି ।

ଗାଡ଼ି ଚାଲିଲା ।...ହଠାତ୍ ଜଣେ—ଗାଢ଼ ନେଳି କାମିଜ; ମୁହଁରେ ବସନ୍ତଦାଗ, ରୁକ୍ଷୁର କେଶ—ମୋ ପାଖକୁ ଲାଗି ଆସି ପଚାରିଲା, "ସାର୍, ଆପଣ ଏ ସ୍ପେସ୍‌ରେ ବିଶ୍ୱାସ କରନ୍ତି ?"

ଓଃ, କି ହଟହଟା ! ଆସି ପଇଁତିରିଶ ବର୍ଷ ହେଲା ଏଇ ବିଶ୍ୱାସ-ଅବିଶ୍ୱାସର ଦାୟିତ୍ୱକୁ ସମ୍ଭାଳି ଆସିଛି । ଆଜି ଏଇ ଦାୟିତ୍ୱହୀନ ଯୁବକକୁ ଉତ୍ତର ଦେବାକୁ ପଡ଼ିବ ? ନା ଇଏ ଦେଖାଇବାକୁ ଚାହେଁ ଯେ ସେ ଦଶବର୍ଷିଆ ପିଲା ନୁହେଁ ?

ମୁଁ ଉତ୍ତର ଦେଲି, "ନା । ଏଥିରେ କିଛି ଲାଭ ନାହିଁ । ଏତେଗୁଡ଼ିଏ ନିରୀହ ଯାତ୍ରୀମାନଙ୍କୁ କଷ୍ଟ ଦେଇ..."

ସେ ହସି ପକାଇଲା । ସତେ କି ମୁଁ କେଉଁ କୋଟଚନ୍ଦ୍ରରୁ ଗୁଡ଼ିଏ ଆଣି କହୁଛି, ମଗଜ ଖଟାଉ ନାହିଁ । ମୋତେ ଅଟକେଇ ଦେଇ କହିଲା, "ସାର୍, ସେକଥା ନୁହେଁ । କଷ୍ଟ ହେଲେ ହେବ, ସେଥିରେ ଯାଏ ଆସେ ନାହିଁ । ପ୍ରଶ୍ନ ହେଉଛି ଯେ ଏଇ କ'ଣ ବିପ୍ଳବର ବାଟ ।"

ମୁଁ ସମୀଚୀନ ଉତ୍ତର ଦେବାକୁ ଭାବୁଛି, ଏଇ ସମୟରେ ତା' ପଛରୁ ଡାକ ଆସିଲା, "ହଇରେ ମଣ୍ଟୁ, ତୋ ଭଉଣୀ ଡାକ୍ତରଖାନାରେ ପଡ଼ିଥିଲା ପରା ? କ'ଣ ହେଲା ?"

“ଧନ ଆଉ କଣ ? ଶଳା ଡାକ୍ତର ବେଡ୍ କରେଇ ଦେବ ବୋଲି ଶହେ ଟଙ୍କା ମାଗିଲା । ମୁଁ ନ ଦେଲାରୁ କହିଲା କିଛି ହୋଇ ନାହିଁ, ଘରକୁ ନେଇଯାଅ ।

“ସେଇଠୁ ?”

“ମୁଁ ଆଉ ଦେଖା ଦେଉନାହିଁ । ଯଦି ମୋ ଭଉଣୀର କିଛି ହୁଏ ତା’ର ମଜା ଦେଖି ନେବ ନାହିଁ ? ତାଙ୍କ ସାଙ୍ଗ ମସ୍ତାନ୍ ଆମ ଦଳରେ ଅଛି । ଶଳା ଯେତେବେଳେ ରାତିରେ ଡାକ୍ତରଖାନାରୁ ଫେରୁଥିବ···(ଭୁଷି ଦେବାର ଭଙ୍ଗୀ)”

ସମବେତ ହାସ୍ୟରୋଳ ।

ମୁଁ ଅବାକ୍ ହେଲି । ଏମାନେ କିଏ ? କେଉଁ ଧରଣର ପ୍ରାଣୀ ? ହଁ, ଏମାନେ ଯୁବକ, ହାତରେ ଥିବା ବହି ଖାତାରୁ ଜଣା ପଡ଼ୁଛି ଯେ ସ୍କୁଲ କଲେଜରେ ପଢ଼ନ୍ତି । ଏମାନେ ମୋ ପୁଅ ପରି । କିନ୍ତୁ ଇଏ କି କିମ୍ଭୂତ କିମାକାର ପୁଅ ! ମୁଁ ଯେଉଁ-ମାନଙ୍କୁ ଜାଣେ ସେମାନେ ଧରିତ୍ରୀର ଗଣ୍ଡି ଉପରେ ସିଧା ହୋଇ ଚାଲନ୍ତି, ଚଷମା ପିନ୍ଧି ଘଣ୍ଟା ଘଣ୍ଟା ଲାଇବ୍ରେରୀରେ ପଢ଼ନ୍ତି, ଅନୁପ୍ରାଣିତ ହୋଇ ସମାଜସେବା କରନ୍ତି, ଉଦ୍‌ବେଳିତ ହୋଇ କବିତା ଲେଖନ୍ତି, ଉତ୍ତେଜିତ ହୋଇ ଥରେ ଅଧେ କ୍ଲବ ରେସ୍ତୋରାଁରେ ଡ୍ୟାନସ୍ କରନ୍ତି, ଚିନ୍ତିତ ହୋଇ ଥରେ ଅଧେ ବିପ୍ଳବ କରନ୍ତି, ଅର୍ଥାତ୍ ଶୋଭାଯାତ୍ରାରେ ଯୋଗ ଦିଅନ୍ତି । ସେମାନେ ଭାରସାମ୍ୟ ବୁଝନ୍ତି, ତେଣୁ ଚେତନାର କଣ୍ଟାଥୁଣ୍ଟାକୁ କାଟି କାଟି ଚାଲିଛନ୍ତି ଯେପରିକି କ୍ରମଶଃ ଗୋଲ୍ ବୁଲିଯିବେ । ପରିପୂର୍ଣ୍ଣ ହେବେ । ଯଥା ମୁଁ । କିନ୍ତୁ ଏଗୁଡ଼ିକ କଣ ହେବେ ? କେତେ-ବେଳେ କଣ ହେବେ ?

ବାବୁ, ଜୀବନଟା କଣ ଗୋଟିଏ ଫାର୍ସ୍ ? ଭଉଣୀ ଡାକ୍ତରଖାନାରେ ପଡ଼ି ମରିବ କି କଣ ଚିନ୍ତା ନାହିଁ, ଡାକ୍ତରକୁ ଛେଚିବାର କଳ୍ପନାରେ ଠୋ ଠୋ ହୋଇ ହସୁଛ ? ଅକାରଣରେ ଥେଇ ଥେଇ ହେଉଛ, ସିଟି ବଜାଉଛ, ଏଣେ ବିପ୍ଳବର ଧାରା ବାଢ଼ୁଛ ? ମୋତେ ସାର୍ ବୋଲି ଡାକି ପାଣି ପିଆଉଛ, ଏଣେ ଭୁଲି ଯାଉଛ ଯେ ମୁଁ ଅଛି ?

ତା’ ଛଡ଼ା କାହାରି ଜଣକର କାମିଜରେ ଇସ୍ତ୍ରୀ ବାଜିନାହିଁ, କାହାରି କେଶରେ ତେଲ ଲାଗିନାହିଁ । କେତେ ଜଣଙ୍କ ପାଦରେ ଜୋତା ନାହିଁ !

ସେଇଠୁ ମୋର ଦୃଢ଼ ଧାରଣା ହେଲା ଯେ ଏମାନେ ହେ ପୁଅ । ଏମାନଙ୍କର ରକ୍ଷା ନାହିଁ ।

ତଥାପି ମୁଁ ଜାଣିବାକୁ ଚାହିଁଲି । କେତେ ଦୁଇ ମିଛଟିଆ ତାସ୍‌ଖେଳ, ହସ୍ତରେଖାଗଣନ, ଆସ୍ଫାଳନ, ମାଓ-ସେ-ତୁଙ୍ଗ୍‌ଙ୍କ ପ୍ରେମ ଜୀବନ ଧର୍ମକର୍ମରେ ବାଦାନୁବାଦ, କଲିକତାରେ ଭଲ ମୁଡ଼ିମହଲ କେଉଁଠି ମିଳେ ତାର ସତ୍ୟାସତ୍ୟ ବର୍ଣ୍ଣନ ଏବଂ କେତେ ଅବୋଧ କାକଳି କୂଜନର ମଧ୍ୟରେ ମୁଁ ମଣ୍ଟୁ ଓ ଶଙ୍କୁଙ୍କ ସାଙ୍ଗରେ କଥାବାର୍ତ୍ତା କଲି । ଯାହା ବୁଝିଲି ତାର ସାରାଂଶ ହେଲା ଏହି ପ୍ରକାର :—

ଏମାନେ ଦୈନିକ ଲୋକାଲ୍ ପ୍ୟାସେଞ୍ଜର୍, କଲିକତାରେ ପାଠ ପଢ଼ନ୍ତି । ଆଜି ସେବଉରେ ପଢ଼ି ଅସମୟରେ ଫେରି ଆସୁଛନ୍ତି ।

ଏମାନେ କଲିକତାରେ ପଢ଼ନ୍ତି ନାହିଁ କାରଣ ଅଧିକାଂଶ ସମୟ ମନୋହର ଦୋକାନ, ମରମେଠ ଦୋକାନ ଇତ୍ୟାଦିରେ କାମ କରନ୍ତି । (ଯାର୍, ଆମେରିକାରେ ଏମିତି କରନ୍ତି ସବୁ ?)

ଏମାନେ କଲିକତାରେ ପଢ଼ନ୍ତି ନାହିଁ, କାରଣ ବସ୍ତୁତ ପାର୍ଟିକାମ କରିବାକୁ ପଡ଼େ ।

ଏମାନେ କଲିକତାରେ ପାଠ ପଢ଼େଇ ପେଟ ପୋଷନ୍ତି, ଫେରି ଆସି ଗାଁ କଲେଜରେ ପଢ଼ନ୍ତି ।

ମୋଟା ମୋଟି ବୁଝି ହେଲା ତ ? ରହନ୍ତୁ, ଅନ୍ୟାନ୍ୟ ବିବରଣୀ ଶୁଣନ୍ତୁ । ବୁଝିବାକୁ ଚେଷ୍ଟା କରନ୍ତୁ—

ମଣ୍ଟୁର ଭଉଣୀ ଛଅ ମାସ ହେଲା ଶକ୍ତ ବେମାର । ଆଉ ଜଣେ କେଉଁ ବଳଦ କମ୍ପାନୀରେ କିରାଣିଗିରି କରୁଥିଲା । ତାକୁ ଛଡ଼ାଇଦେବା ପାଇଁ ଧମକଉଛନ୍ତି, କାହିଁକନା ସାହେବଙ୍କର ଗୋଟିଏ ଛଇଳା ଜୁଟି ଯାଇଛି । ଏମିତି ପାଞ୍ଚ ଭଉଣୀ ।

ମଣ୍ଟୁ ବାହା ହେବ ନାହିଁ, ଆଉ ଗୋଟାଏ ମାଇକିନିଆ ଘରକୁ ଆଣିବ ନାହିଁ । ( ବୁଦ୍ଧୁ ! )

ଶଙ୍କୁ—ସେଇ ଯେଉଁ ପାତଳା ଟୋକା ନଶ ରଖିଛି—ତା' ବାପା ବଡ଼ ଲୋକ ଥିଲେ, ବଡ଼ ଦୋକାନ କରି ଦଶହଜାର ଟଙ୍କା ଜମେଇ ଥିଲେ । ସ୍ୟାପ ଟଙ୍କାତକ ନେଇ ଗାଏବ୍ ହୋଇଗଲା ।

ଶଙ୍କୁ କମ୍ ଜଣେ ନୁହେଁ, ଥରେ ପ୍ରିନ୍‌ସିପାଲଙ୍କ ଗଳା ଦବେଇବାକୁ ଯାଉଥିଲା, କାହିଁକନା ପ୍ରିନ୍‌ସିପାଲ ତାକୁ ଶ୍ଳେଟଲୋକ ବୋଲି କହିଲେ ।

ନବୀନ,—ଯେ ହାତ ଦେଖୁଛି,—ତା' ବାପା ବଡ଼ ଦେ ଥିଲେ, କ୍ୟାନ୍‌ସରରେ ମରିଗଲେ । ସେ ମୋ ହାତଦେଖି କହିଛି ଯେ ମୁଁ ଫାଶିଖୁଣ୍ଟରେ ମରିବେ । (ମିଛୁଆଟା, ମୁଁ ମରିବ ଯଦି ଗୁଳିଖାଇ ମରିବ) ।

ସନ୍ତୁ ବଡ଼ିଆ ମାଛ ସାଙ୍କ । (ସେ ବାଙ୍ଗାଲ୍ ପରା ! କହିଲେ ଚଢ଼ିଯିବ)

ସନ୍ତୁ କେମିତି ସିଟି ମାରୁଛ ଦେଖିଲେ ? ଅରେ ପୁଲିସ୍‌କୁ ଭୁଟେଇ ଦେଲା, ବିଚରା ଓଲଟା ବାଟରେ ପଳେଇଗଲେ ।

...ଇତ୍ୟାଦି—ଇତ୍ୟାଦି । ଏଥର ବୁଝି ପାରିଲେ ? ଛାତ୍ରମାନଙ୍କର ଦଳ ନିଦର୍ଶନ ଦେଖିଲେ ତ ?

ଆଉ ଗୋଟାଏ ସାନକଥା । ଏମାନେ ସକାଳୁ କିଛି ଖାଇ ନାହାନ୍ତି । ମେଦେଡ଼ାରେ କମ୍ଳା ଆଉ କେଉଁଠି ପୁରୀ ତରକାରୀ ସିଙ୍ଗଡ଼ା ଇତ୍ୟାଦି ଖାଇ ପାରି ନାହାନ୍ତି, କାରଣ ପକେଟରେ ପଇସା ନାହିଁ । କଲିକତାରେ ପହଞ୍ଚିଥିଲେ ବସ୍ତି ଦୋକାନମାନଙ୍କରେ ଖାଇ ଥାଆନ୍ତେ ଯେଉଁଠି ଉଧାର ଆଉ କନ୍‌ସେସନର ବ୍ୟବସ୍ଥା ଅଛି ।

ଆଉ କିଛି ଜାଣିବାକୁ ବାକୀ ରହିଲା ?

ଲୋକାଲ୍ ଟ୍ରେନ୍ ପ୍ରତି ଷ୍ଟେସନରେ ରହି ରହି ଚାଲିଛି । ଲୋକାଲ ଟ୍ରେନ୍‌ରେ କ'ଣ ଏତେ ମାଛି ଥାଆନ୍ତି ? ମୋର ବ୍ୟତିବ୍ୟସ୍ତ ହେବାର ଦେଖି ମଣ୍ଟୁ ତା' ଜ୍ୟାମିତି ବହି ଖଣ୍ଡିକ ମାଛି ହୁରୁଡ଼େଇବା ପାଇଁ ଦେଇ ଦେଲା । ମୁଁ ତା'ର କଥିତ ସଦ୍‌ବ୍ୟବହାର କଲି । କିନ୍ତୁ ମୁଁ ପ୍ରଧାନତଃ ଅଖିବୁଜି ଆମ୍ଭମାନଙ୍କ ଖଡ଼ଗପୁରକୁ ସ୍ମରଣ କଲି, ଯେଉଁଠି ମୁଁ ମୋର ଆପଣା ଘରର ବାଲ୍‌କନି ଉପରୁ ସୁରକ୍ଷିତ ଲନ୍‌ର ଶୋଭା ଦେଖିବି ଓ ଆଜିକାର ଅଡ଼୍‌ଭେଞ୍ଚରକୁ ମନେ ପକାଇ ମନଇଚ୍ଛା ହସିବି ।

ଗୋଟାଏ କେଉଁ ଷ୍ଟେସନରୁ ଗାଡ଼ି ଛାଡ଼ିଛି କି ନାହିଁ ଶଙ୍କୁ କୁହାଟ ଛାଡ଼ିଲା, "ହେଇ ଗ୍ରେଟା ଯାଉଛି ! ଗ୍ରେଟା !"

ମୁଁ ଆଖି ଖୋଲି ଦେଖିଲି ଯେ ସେ ଝରକାବାଟେ ଆଗକୁ ଅନେଇଛି ଓ ଅନ୍ୟମାନେ ତା' ପାଖରେ ଭିଡ଼ିଗଲେଣି । ହସରେ ହସ, ଚିହାଣୀରେ ଚିହାଣୀ ଯୋଡ଼ି ନିମେଷରେ ଗୋଟାଏ ନିଷ୍ପତ୍ତି ହୋଇଗଲା ଓ ଚିହୁଁ ଚିହୁଁ ଜଣକୁ ଜଣେ ଡବାର ବନ୍ଦ ଦଉଡ଼ରେ ଖେଦିଗଲେ । ଖେଦିଗଲେ ଓ ଆଲାର୍ମ୍ ଚେନକୁ ଧରି ଟାଣିଲେ ।

ଇଏ କଣ ? ଇଏ କି କାଣ୍ଡ ? ମୁଁ ଆଉ ଆଉ ବୋଲି ପାଟି କଲି କିନ୍ତୁ ମୋ କଥା କାହାକୁ ଶୁଭିଲା ନାହିଁ । ଏକ ଅପରକୁ କହିଲା, "ଟାଣ୍ । ଅଳ୍ପଟା ଟାଣ୍ । ଆଜେ ଆହୁରି ଟାଣ୍ !"

ମୋ ଛାତି ଦବିଗଲା । ଏଇକ୍ଷଣି ଗାଡ଼ି ବନ୍ଦ ହେବ । ପୁଲିସ ଆସିବ । ମୋତେ ଯେତେବେଳେ ପଚରା ହେବ, ମୁଁ କଣ କହିବି ? ମୁଁ ଏମାନଙ୍କୁ ଧରେଇଦେବି ? ମହା ବିପଦ ! ତା' ଛଡ଼ା—ତା' ଛଡ଼ା ଏମାନେ କଣ ପୁଲିସକୁ ମାନିବେ ? ମାନିବେ ନାହିଁ, ସେଇଠୁ ହାତାହାତି ଚାଲିବ, ସେଇଠୁଁ—

ଓଃ, କି ଦୁର୍ଯୋଗରେ ମୁଁ ଏ ଟ୍ରେନରେ ବସିଲି !

ଦୁର୍ବୃତ୍ତଗଣ ହସୁଥାନ୍ତି, ହସୁଥାଆନ୍ତି ଓ ଚେନ୍ ଟାଣୁଥାଆନ୍ତି । ମୁଁ ଉଠିପଡ଼ି 'ପ୍ଲିଜ୍...ପ୍ଲିଜ୍' ବୋଲି କହି ଚାଲିଥାଏ ।

ଟାଣିବାର ପ୍ରଣାଳୀରେ ଭୁଲ୍ ହେଲା କି କ'ଣ ହେଲା କେଜାଣି ଗାଡ଼ି ଅଟକି ଗଲା ନାହିଁ । ସେଇଠି ଶଙ୍କୁ ମୋ ପାଖକୁ ଭିଡ଼ି ଆସିଲା, କହିଲା, "ସାର୍, ଟଙ୍କା ଗୋଟାଏ ଧରନ୍ତୁ । ଜଲ୍‌ଦି ।"

ମୁଁ ବିମୂଢ଼ ହୋଇ ଟଙ୍କାଟିଏ କାଢ଼ି କରି ଦେଲି । ଶଙ୍କୁ ତାକୁ ରୁମାଲରେ ବାନ୍ଧି ଝରକା ବାଟେ ଫିଙ୍ଗି ଦେଲା । ତା' ପରେ ଘନ ଘନ ତାଳି ବାଜିଲା, ସୁ ସୁ ବାଜିଲା, ଜୁଆର ଫିଟିଲା, ବୋଧହୁଏ ଇନ୍‌କିଲାବ୍‌ର ଧ୍ୱନି ମଧ୍ୟ ଶୁଣାଗଲା ।...ମୁଁ କିଛି ବୁଝି ପାରିବାର ଅବସ୍ଥାରେ ନ ଥିଲି ।

କୋଳାହଳ ଥମିଗଲା ପରେ ମଣ୍ଟୁ ସଂକ୍ଷେପରେ କହିଲା, "ସାର୍, ସେ ଗ୍ରେଟା, ଝିଗଇରେ ଘର, ଗୋପୀମୋହନପୁରକୁ ପଢ଼ିବାକୁ ଯାଏ । ପାଗଳ, ଟ୍ରେନ୍‌ରେ ନ ବସି ଚାଲି ଚାଲି ଯାଉଛି ! ଯାହାହେଉ ଟଙ୍କାଟାଏ । ପାଇଗଲା, ରିକ୍‌ସା କି କଅଣ ଗୋଟାଏ ଧରି ନେବ ।"

ତଥାପି ମୋ ପାଟିରୁ କଥା ବାହାରୁ ନ ଥିଲା । ମୁଁ ଖାଲି ମୁଣ୍ଡ ଟୁଙ୍ଗାରୁଥିଲି ।

ଗୋପୀମୋହନପୁର ଷ୍ଟେସନ୍‌ରେ ସମସ୍ତେ ଓହ୍ଲାଇଗଲେ । ମଣ୍ଟୁ ମୁଖପାତ୍ର ହୋଇ କହିଲା, "ସାର୍, ଯାଉଛୁ । ପୁଣି କେବେ ଦେଖା ହେବ ।"

ମୁଁ ପ୍ରତିନମସ୍କାର କଲି କିନ୍ତୁ ମନେ ମନେ ଭାବିଲି—ଦୁରାଶା । ମୋର ତୁମମାନଙ୍କ ସାଙ୍ଗରେ ଦେଖାହେବ ନାହିଁ । ଦେଖାହେଲେ ମଧ୍ୟ ମୁଁ ଚିହ୍ନିପାରିବି ନାହିଁ । କଥା ହେଉଛି ଯେ ତୁମମାନଙ୍କୁ ଚିହ୍ନିଲେ ମୋ ପଞ୍ଚପାଣ୍ଡବ କୁଆଡ଼େ ଯିବେ ?

ହଁ କହିବାକୁ ଭୁଲିଯାଇଛି ଯେ ସେହି ଷ୍ଟେସନ୍‌ରେ ତାଙ୍କର ଗୋଷ୍ଠୀର ଆଉ ଦୁଇଜଣ ଟ୍ରେନ୍‌ରେ ବସିଲେ । ବାଲିଚକ୍ ଷ୍ଟେସନ୍‌ରେ ଓହ୍ଲେଇଯିବା ଆଗରୁ ଜଣେ ମୋ ଟଙ୍କାଟି ଫେରାଇ ଦେଲା ଓ କହିଲା, "ନିଅନ୍ତୁ, ଶଙ୍କୁଦା ପଠେଇଛି । ଆଉ କହିଛି; ଅନେକ ଅନେକ ଧନ୍ୟବାଦ ।"

# ଶହେ ପୁଅ

ଯଥାକ୍ରମେ ମୁଁ ଯେତେବେଳେ କଲିକତାକୁ ଫେରି ଆସିଲି, ଯେଉଁଠି ମୋ ଯାନବାହାନ, ଆସ୍ଥାନ ଓ ସମ୍ମାନ ମହଜୁଦ୍ ଥିଲା, ଏବଂ ମୋର ବ୍ୟକ୍ତିତ୍ୱ ସୁସ୍ଥ ଏବଂ ଅନୁକୂଳ ପରିବେଶରେ ପୁଣି ଜମିଗଲା, ସେତେବେଳେ ମୁଁ ସେଇ ଲୋକାଲ୍ ଟ୍ରେନ୍‌ରେ ଅନୁଭୂତ ଆଡ଼୍‌ଭେଞ୍ଚର୍‌କୁ ମନେ ପକାଇ ଯଥେଷ୍ଟ ହସିଥିବି, ଏହା ସହଜେ ଅନୁମେୟ । ତା'ଙ୍କୁ ନେଇ ଗପଟିଏ ଲେଖିବା ହିଁ ମୋର ରସବୋଧର ଉତ୍କୃଷ୍ଟ ପ୍ରମାଣ । କିନ୍ତୁ ସେଥିସହ ମୋ ମନରେ ଉଦାରତା କେତେଦୂର ଜଗି ଯାଇଥିବ ଓ ମୁଁ ଶହେ ପୁଅଙ୍କୁ କେବଳ କ୍ଷମା କରିଥିବି ନୁହେଁ, ତାଙ୍କ ପ୍ରତି ଏକ ପ୍ରକାର ପିତୃସୁଲଭ ସ୍ନେହରେ ଆନ୍ଦୋଳିତ ହେଉଥିବି, ଏହା ମଧ୍ୟ ଅନୁମାନ କରି ପାରିବେ ବୋଲି ଆଶା କରୁଛି ।

କେବଳ ସେତିକି ନୁହେଁ । ମୋର ସନ୍ଦେହ ଯେ ଏହା-ପରେ ଦିନେ ଏକୁଟିଆ କଲିକତାର ମଇଦାନରେ ବସି ସନ୍ଧ୍ୟାର ଦୃଶ୍ୟ ଦେଖିଲାବେଳେ ମୋର ମନେ ହୋଇଥିଲା ଯେ ମୋର ସାମନାରେ ଯେଉଁ ଟୋକାଗୁଡ଼ାକ ହୋ-ହଲ୍ଲା ହେଉଛନ୍ତି, ମୁଢ଼ି ଚୋବଉଛନ୍ତି, ହେଲେ ଜଣେକର ଫଟା କାମିଜ, ଆଉ ଜଣେକର ଗୋଡ଼ରେ ଏତେ ବଡ଼ କଟା ଘା' ଯାହାକୁ ସେ ଅଯଥାରେ ଫୁଙ୍କୁଛି, ଆଉ ଜଣେ ପକେଟରୁ ଛୋଟିଆ ବହି ଖଣ୍ଡେ କାଢ଼ି ଆଣି ଗୋଟିଏ ଠାଡ଼ିକୁ ବାରମ୍ବାର ପଢ଼ୁଛି ଓ ଦୋଷି ହେଉଛି ···ଏମାନେ ସମସ୍ତେ ଉକ୍ତ ଲୋକାଲ୍ ଟ୍ରେନ୍‌ର ପ୍ୟାସେଞ୍ଜର୍‌ଙ୍କ

ତାଙ୍କୁ ମୁଁ ବେଶୀ ଭଲ ପାଏ । ପାଣ୍ଡବମାନେ ମୋର ଯୋଗ୍ୟ ପୁଅ ହୋଇପାରନ୍ତି, କିନ୍ତୁ ଏମାନେ ମୋର ଗେହ୍ଲା ପୁଅ । ମୋର ଧାରଣା ହେଲା ଯେ ଏଇମାନେହିଁ ମୋତେ କ୍ଷମା କରୁଛନ୍ତି, ଲଜ୍ଜା ଦେଉଛନ୍ତି । ଯେ ମୁଁ (ମାନେ ମୁଁ ଯୋଉ ସମାଜର ଅନ୍ୟତମ ପଣ୍ଡା, ସେଇ ସମାଜ) ଏଇ ଭେଦଭାବ ସୃଷ୍ଟି କରିଛି, ଶହେ ପୁଅଙ୍କୁ ଦୂରେଇ ଦେଇଛି, ତାଙ୍କୁ ବାଲୁଙ୍ଗା ହେବାକୁ ଛାଡ଼ି ଦେଇଛି, କିନ୍ତୁ ତଥାପି···ତଥାପି ଏମାନେ କେତେ ଖୁସି ହୋଇ ପାରୁଛନ୍ତି ଦେଖ ! ହଁରେ ପିଲାଏ, ମୁଁ ତମକୁ ବେଶି ଭଲ ପାଏ···

ଆପଣ କହି ପାରନ୍ତି ଯେ ଇଏ ହେଉଛି କ୍ଷତିପୂରଣକୋଷ୍ଠୀ ଅର୍ଥାତ୍ ଦୋଷ କଟେଇବାର ରୋମାଣ୍ଟିକ୍ ଭାବପ୍ରବଣତା । ବୁଝିବା ସୁଲଭ । ଅସମ୍ଭବ ନୁହେଁ । ଯେମିତି ଆମେ ବିଦେଶୀ-ମାନଙ୍କୁ ବତେଇ ଥାଉ ଯେ ଆମେ ଗରିବ ହେଲେ କଣ ହେବ, ଦେଖ ଆମ ଗାଁବମାନେ କେମିତି ଥେଇ ଥେଇ ଧେଇ ଧେଇ ହେଉଛନ୍ତି, ଢୋଲ ବେଜାଉଛନ୍ତି, ଦିଆଲିର ଦୀପ ଜଳାଉଛନ୍ତି, ଭଙ୍ଗା ନଈ ଉପରେ ବସି ଭଟିଆଲି ଗାଉଛନ୍ତି । ଆହା, ତାଙ୍କୁ ଭଲ ନ ପାଇ ରହି ହେବ କି ? ସତେକି ଭଗବାନ୍ କରନ୍ତୁ ସେମାନେ ସବୁଦିନେ ଏଇ ଅବସ୍ଥାରେ ଥାଆନ୍ତୁ, ଓ ଆମକୁ ଭଲପାଇବାର ସୁଯୋଗ ଦିଅନ୍ତୁ !

ହାୟ ! ସୁନା ହେଉ କି ପିତଳ ହେଉ ସଚ୍ଚା ହେଉ ବା ନକଲି ହେଉ, ଦୟା ହେଉ ସହାନୁଭୂତି ହେଉ, ବା ଭଲପାଇବା ପରି କିଛି ଗୋଟାଏ ଜିନିଷ ହେଉ, ଆଜି ସେହି ପ୍ରକାର ମନୋଭାବକୁ ମଧ୍ୟ ଧରି ରଖି ପାରୁ ନାହିଁ । କାହିଁକିନା ଆଜିକାର ଶହେପୁଅଙ୍କ କଥା ଭାବିଲେ ମୋତେ ଭୟ ଲାଗୁଛି । ଏବେ ମୁଁ ତାଙ୍କ ସାଙ୍ଗରେ ଲଗାଲଗି ହୋଇ ବସି ପାରିବି, ଅନ୍ତତଃ ବହୁତ ଖୁସିଗପ କରିପାରିବି, ବାଦ୍ଲ ଜଥା ମସଲା ମୁଢ଼ି ଉପରେ ମନ୍ତବ୍ୟ ଦେବାର ସାହସ କରି ପାରିବି, ସେ ବିଶ୍ୱାସ ମୋର ନାହିଁ । ତା'ର କାରଣ କେବଳ ନୁହେଁ ଯେ ବୟସ ବଢ଼ିଲାଣି, ତେଣୁ ସାହସ କମି ଗଲାଣି, ରକ୍ଷଣଶୀଳତାର ପାରା ଆହୁରି ଉପରକୁ ଉଠିଗଲାଣି, ଇତ୍ୟାଦି ।

କଥା ହେଉଛି ଯେ ଶହେପୁଅ ଆଉ ଶହେ ହୋଇ ନାହାନ୍ତି, ହଜାରେ ଲକ୍ଷେ ହୋଇ ଗଲେଣି, ମଫସଲରେ ସହରରେ ବଜାର ଘାଟରେ ଗୁଛ ହୋଇ ଗଲେଣି । ସେମାନେ ପାଠ ପଢ଼ିଛନ୍ତି ହେଲେ ନ ପଢ଼ିଲ ପରି । ତେଣୁ ଚାକିରି ମିଳୁ ନାହିଁ । ଧରାଧରି କରି କେଉଁଠି ଲାଗି ଯିବାର କ୍ଷମତା ମଧ୍ୟ ନାହିଁ । ହାତରେ ଟଙ୍କା ନାହିଁ, ତେଣୁ ବ୍ୟବସାୟ ପାଇଁ ମୂଳଧନର ଅଭାବ । ଅତଏବ ସେମାନେ କଥା କଥାକେ ଘର ପୋଡ଼ିବେ, ବସ୍ ଜାଳିବେ, ଛୁରି ଭୁଷିବେ, ଦଲାଲ୍ ହେଲେ ମଧ୍ୟ ମୁଁ କିଛି କମ୍ ନୁହେଁ ବୋଲି ଦେଖେଇ ହେବେ, ପୁଣି ଆପଣାକୁ ହିନ୍ଦୁ, ମୁସଲମାନ ଅବା ଶିଖ୍ ଧର୍ମପାଳୀ ବୋଲେଇବେ···ଏଇ ଆଖି ଦେଖିବାକୁ ଥିଲା, କାନ ଶୁଣିବାକୁ ଥିଲା ଯେ ସେମାନେ ବସ୍‌ରୁ ଚବିଶ ଜଣ ନିରୀହ ଯାତ୍ରୀଙ୍କୁ ଟାଣି ଆଣି ଗୋଟି ଗୋଟି କରି ଗୁଳି ମାରିବେ, କେଉଁ ଏକ ଆଦର୍ଶର ଆଳରେ ମାରଣରେ ମଜା ଲୁଟିଲା ପରି ! କାହିଁ ଏହି ଧରଣର 'ବୀରତ୍ୱ' ଆଉ କାହିଁ କେଉଁ ଗ୍ରେଟ କି ଅନ୍ଧ ସାଥୀଭାଇ ପାଇଁ ଆଲମି୍ ଚେନ୍ ଟାଣିବାର ପିଲାଳିଆମି !

ମୁଁ ସମାଜକୁ ପଚାରୁଛି, ସରକାରକୁ ପଚାରୁଛି, ନିଜକୁ ପଚାରୁଛି—ଯୁବଶକ୍ତିର ଏଇ ଦଶା ପାଇଁ ଦାୟୀ କିଏ ? ଏବଂ କାନ୍ଦୁଛି (ମୋର ପଞ୍ଚ ପାଣ୍ଡବ କି ତାଙ୍କ ପୁଅ ନାତି କାଲି ସକାଳେ ତାଙ୍କ ସାଙ୍ଗରେ ମିଶିଯିବେ ବୋଲି ମନେ ହେଉଛି )—ଏଇ ମହାଦଶା ଆଉ କେତେ ଦିନ ?

ମୋର ଯେଉଁ ଅଳ୍ପ କେତୋଟି ଗଳ୍ପ ନିଜର ପ୍ରତ୍ୟକ୍ଷ ଅନୁଭୂତି ଉପରେ ଗଢ଼ା, କଳ୍ପନାକୁ ଆଦୌ କଷ୍ଟ କରିବାକୁ ପଡ଼ିନାହିଁ କହିଲେ ଚଳେ, ଏ ସେଥିମଧ୍ୟରୁ ଗୋଟିଏ । ଏବଂ ଏଇ ଗପଟି ବୋଧହୁଏ ସର୍ବାଧିକ ଭାଷାରେ ଅନୂଦିତ ଓ ପ୍ରକାଶିତ ହୋଇଛି । ଏହାର ହିନ୍ଦୀ ଅନୁବାଦ୍ 'ଆଜ୍‌କଲ୍' (କ୍ଷୁଦ୍ରଗଳ୍ପ ବିଶେଷାଙ୍କ, ମେ' ୧୯୭୦), ଉର୍ଦ୍ଦୁ ଅନୁବାଦ 'ଆଜ୍‌କଲ୍' (ଅଗଷ୍ଟ' ୧୯୭୦), ମାଲୟାଲମ୍ ଅନୁବାଦ 'ମାତୃଭୂମି' (ଜାନୁଆରି' ୭୧ ) କନ୍ନଡ଼ ଅନୁବାଦ 'କର୍ମବୀର' (ଜୁଲାଇ, ୭୧ ) ସ୍ୱକୃତ ଇଂରାଜି ଅନୁବାଦ 'Hundred Sons' Ind an Council of Cultural Relations, New Delh ଙ୍କ ମୁଖପତ୍ର "Indian Horizons (No. 3, 1981) ତଥା ତା'ର

ସ୍ପାନିଶ ରୂପାନ୍ତର ସେମାନଙ୍କର ସ୍ପାନିଶ୍ ପତ୍ରିକା Papeles de la India ( Vol. No. 3, 1981ରେ ପ୍ରକାଶିତ ହୋଇଛି । ଏହାର ଆରବୀୟ ଓ ଫ୍ରେଞ୍ଚ୍ ରୂପାନ୍ତର ମଧ୍ୟ ଯଥାଶୀଘ୍ର ପ୍ରକାଶିତ ହେବ ବୋଲି କାଉନ୍‌ସିଲ୍ ମୋତେ ଜଣାଇଥିଲେ । ଏହାଛଡ଼ା ଇଂରାଜୀ ଅନୁବାଦଟି Vikas Publishing House ଦ୍ଵାରା ୧୯୮୩ରେ ପ୍ରକାଶିତ ଗଳ୍ପସଂଗ୍ରହ "Oriya Short Stories" ଓ ୧୯୮୪ରେ ପ୍ରକାଶିତ ହୋଇଥିବା ମୋର ଇଂରାଜୀ ଗଳ୍ପସଂକଳନ "Death of an Indian"ରେ ସଂଗୃହୀତ ହୋଇଛି ।

କଟକ, ଡିସେମ୍ବର ୪,୧୯୮୬

